# ସଂସ୍କୃତି ଜିଜ୍ଞାସା

ଲେଖକ :
ଧନେଶ୍ୱର ସାହୁ

ପ୍ରକାଶକ :
ବିନୋଦ ବିହାରି ବିଶୋଇ
କିତାବ ଭବନ
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୟାପଲ୍ଲୀ, ଭୁବନେଶ୍ୱର - ୧୫
ଫୋନ୍ ନଂ : ୦୬୭୪-୨୩୬୨୦୯୧
ମୋବାଇଲ୍: ୯୯୩୭୬୯୪୭୮୧



ପ୍ରଚ୍ଛଦ : ସମର

ଅକ୍ଷର ସଜ୍ଜା :
ଦମୟନ୍ତୀ ଗ୍ରାଫିକ୍ସ, ନୟାପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ - ୯୦୪୦୦୦୮୬୨୫

ମୁଦ୍ରଣ :
ଲକ୍ଷ୍ମୀ ପ୍ରେସ୍, ଭୁବନେଶ୍ୱର

ପ୍ରଥମ ସଂସ୍କରଣ : ୨୦୧୮

ମୂଲ୍ୟ : ଟ.୩୬୦.୦୦

# ଉତ୍ସର୍ଗ

ସମାଜରେ ସଂସ୍କାର ଓ ସୁଧାର ଆଣିବାକୁ ମୁକ୍ତଚିନ୍ତକ ଓ ଦରଦୀ ମାନବବାଦୀମାନେ ସର୍ବଦା ପ୍ରୟାସ କରିଛନ୍ତି । ଏହି ପ୍ରୟାସ ଭିତରେ ସେମାନେ ରକ୍ଷଣଶୀଳ ଓ ଧର୍ମାନ୍ଧ ଶକ୍ତିମାନଙ୍କ ଦ୍ୱାରା କ୍ଷତବିକ୍ଷତ ହୋଇଛନ୍ତି ଓ ଏପରିକି ଆତ୍ମ ବଳିଦାନ ଦେଇଛନ୍ତି । ତେବେ ସେମାନଙ୍କର ତ୍ୟାଗ ଓ ସାଧନା ବୃଥା ଯାଇନାହିଁ, ବରଂ ସଭ୍ୟତାକୁ ଅଗ୍ରଗାମୀ କରିଛି । ଜ୍ଞାନବିଜ୍ଞାନର ଓ ମାନବିକତାର ବିକାଶରେ ଅବିସ୍ମରଣୀୟ ସ୍ୱାକ୍ଷର ରଖିଥିବା ବିଶ୍ୱପ୍ରାଣ ମୁକ୍ତଚିତକ ଓ ହେତୁବାଦୀମାନଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ଏହି ପୁସ୍ତକଟିକୁ ଉତ୍ସର୍ଗ କରୁଛି ।

- ଲେଖକ -

# ମୁଖବନ୍ଧ

ଏହି ପୁସ୍ତକଟି ଏହି ଧାରାରେ ମୋର ତୃତୀୟ ପୁସ୍ତକ। ପୂର୍ବରୁ "ଜୀବନ ଜିଜ୍ଞାସା" ଓ "ଜୀବନ ଅନ୍ୱେଷା" ନାମରେ ଦୁଇଟି ପୁସ୍ତକ ପ୍ରକାଶ ପାଇଛି। ସେ ପ୍ରତ୍ୟେକ ପୁସ୍ତକରେ ଶହେଟି ଲେଖା ବିଚାରଧର୍ମୀ ନିବନ୍ଧ ଥିବାରୁ ଏହି ପୁସ୍ତକଟିରେ ମଧ ଶହେଟି ପ୍ରବନ୍ଧ ସ୍ଥାନିତ କରାଯାଇଛି। ଏହି ବହିରେ ରହିଥିବା ଶହେଟି ପ୍ରବନ୍ଧ ମଧ୍ୟରୁ ପ୍ରଥମ ଅଣାନବେଟି ଲେଖା ଦୈନିକ ସମ୍ବାଦପତ୍ର "ପ୍ରଗତିବାଦୀ"ରେ ଜୁନ୍ ୨୦୧୫ରୁ ଜାନୁୟାରୀ ୨୦୧୮ ଭିତରେ ପ୍ରକାଶ ପାଇଛି ଓ ଅନ୍ୟ ଏଗାରଟି ଲେଖା ଅନ୍ୟ ପତ୍ରପତ୍ରିକା ଓ ସ୍ମୃତି ଗ୍ରନ୍ଥରେ ପ୍ରକାଶିତ ହୋଇଛି। ଏସବୁକୁ ଏକତ୍ର କରାଯାଇ ଏହି ସଂକଳନଟିରେ ସ୍ଥାନିତ କରାଯିବା ମୋ ପାଇଁ ଆନନ୍ଦର ବିଷୟ।

ପ୍ରଗତିବାଦୀରେ ପ୍ରକାଶ ପାଇଥିବା ପ୍ରବନ୍ଧମାନଙ୍କୁ ପ୍ରକାଶିତ କାଳାନୁକ୍ରମରେ ଦିଆନଯାଇ ସେମାନଙ୍କୁ କେତୋଟି ଶ୍ରେଣୀରେ ବିଭକ୍ତ କରି ଦିଆଯାଇଛି। ଏପରି କରିବାର ଉଦ୍ଦେଶ୍ୟ ହେଉଛି ପରସ୍ପର ସହ ସାମଞ୍ଜସ୍ୟ ଥିବା ଲେଖାମାନଙ୍କୁ ଗୋଟିଏ ଶ୍ରେଣୀରେ ସ୍ଥାନିତ କରିବା। ଏହି ମାନଦଣ୍ଡ ସେପରି ଦୃଢ଼ ନୁହେଁ, ତେବେ କେବଳ ସାଧାରଣ ସୁବିଧା ପାଇଁ ସେପରି କରାଯାଇଛି। ପ୍ରବନ୍ଧମାନଙ୍କୁ ଯେଉଁ ନ'ଟି ଶ୍ରେଣୀରେ ବିଭାଜିତ କରାଯାଇଛି ତାହା ହେଲା-ସଭ୍ୟତା ଓ ସାଂସ୍କୃତିକ ଚେତନା; ନୈତିକତା ଓ ମାନବିକ ମୂଲ୍ୟବୋଧ; ସମାଜ ଓ ସାମାଜିକ ଦୃଶ୍ୟପଟ; ଦାର୍ଶନିକ ଦୃଷ୍ଟି ଓ ଦିଗନ୍ତ; ବିଚାରଶୀଳତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ; ହେତୁବାଦ ବନାମ କୁସଂସ୍କାର; ବ୍ୟକ୍ତି ଓ ବାର୍ତ୍ତା; ମାନବିକ ଦୃଷ୍ଟି; ସ୍ମୃତି ଓ ଅନୁଭୂତି। ପ୍ରତ୍ୟେକ ଶ୍ରେଣୀରେ କେତେଗୁଡ଼ିଏ ସମଧର୍ମୀ ପ୍ରବନ୍ଧ ଥିବାରୁ କୌଣସି ବିଷୟ ଉପରେ ଏକ ବିସ୍ତାରିତ ଚିତ୍ର ପାଠକମାନେ ପାଇବାକୁ ଲକ୍ଷ୍ୟ ରଖି ଏପରି ଶ୍ରେଣୀକରଣ କରି ପ୍ରବନ୍ଧମାନଙ୍କୁ ସ୍ଥାନିତ କରାଯାଇଛି। ଏହା ସହ ପ୍ରତ୍ୟେକ ପ୍ରବନ୍ଧର ଶେଷରେ ପ୍ରକାଶ ସମୟ ଦିଆଯାଇଛି। ଏହି ପ୍ରବନ୍ଧଗୁଡ଼ିକ ସମ୍ବାଦପତ୍ର ଉଦ୍ଦେଶ୍ୟରେ ଲେଖା ଯାଇଥିବାରୁ ପ୍ରତ୍ୟେକର କଳେବର ସୀମିତ। ଏହା ସହିତ ବିଷୟ

ତଥା ଭାବନାର ପୁନରାବୃତ୍ତି ବି କେଉଁଠି କେଉଁଠି ପାଠକମାନଙ୍କ ଦୃଷ୍ଟିକୁ ଆସିପାରେ। ମୁଁ ଏହି ଦୁର୍ବଳତାକୁ ବିନୟର ସହ ସ୍ୱୀକାର କରୁଛି।

ପ୍ରବନ୍ଧମାନ ସାମାଜିକ ସମସ୍ୟା, ସାଂପ୍ରତିକ ପରିବେଶ, ସଭ୍ୟତାର କ୍ରମବିକାଶ, ବିଭିନ୍ନ ନୈତିକ ପ୍ରସଙ୍ଗ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, କେତେକ ଦାର୍ଶନିକ ବିଷୟ ଇତ୍ୟାଦି ପ୍ରସଙ୍ଗ ଉପରେ ଆଲୋଚନା କରିଥିବା ମନେହୁଏ। ମାନବ ସଭ୍ୟତାର ପ୍ରତ୍ୟେକ କାଳଖଣ୍ଡରେ ମଣିଷ ସମାଜ କେଉଁ କେଉଁ ମୁଖ୍ୟ ସଙ୍କଟର ସମ୍ମୁଖୀନ ହୋଇଛି, ଗୋଟିଏ ଯୁଗର ଆହ୍ୱାନକୁ ମଣିଷ କିପରି ନିଜର ବିଚାର ବୁଦ୍ଧିରେ ଅତିକ୍ରମ କରିବାକୁ ପ୍ରୟାସ କରିଛି, ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି କିପରି ସଭ୍ୟତାର ରୂପରେଖ ପରିବର୍ତ୍ତନ କରିବାରେ ସହାୟକ ହୋଇଛି ଏହି ବିଷୟଗୁଡ଼ିକ ପ୍ରବନ୍ଧମାନଙ୍କରେ ମୁଖ୍ୟତଃ ଆଲୋଚିତ ହୋଇଛି। ଜ୍ଞାନ ବିଜ୍ଞାନର ଯେତିକି ବିକାଶ ହେଉଛି, ମାନବିକ ସମସ୍ୟା ମଧ୍ୟ କିପରି ବୃଦ୍ଧି ପାଉଛି ତାହାର କିଛି ଚିତ୍ର କେତେକ ଲେଖାରେ ରହିଛି। କୁସଂସ୍କାର, ଅପବିଶ୍ୱାସ ଓ ପାରଲୌକିକ ଜୀବନଦୃଷ୍ଟି କିପରି ସାଂସ୍କୃତିକ ଅନଗ୍ରସରତା ପାଇଁ ଦାୟୀ ତାହାର ସାମାନ୍ୟ ଝଲକ ଲେଖାରେ ରହିଛି। ଏକ ସୁସ୍ଥ ସମାଜ ଓ ମାନବ ସମୁଦାୟ ପାଇଁ ମାନବବାଦୀ ଜୀବନବୋଧ, ନୈତିକ ମୂଲ୍ୟବୋଧ ଓ ଭ୍ରାତୃତ୍ୱଭାବ କିପରି ଅବଶ୍ୟମ୍ଭାବୀ ତାହା କେତେକ ପ୍ରବନ୍ଧରେ ଆଲୋଚିତ ହୋଇଛି। ସମାଜର ଭୌତିକ ବିକାଶ ସହ ନୈତିକ ବିକାଶ ସମଭାବରେ ନହେଲେ ସଭ୍ୟତା ଯେ ସଂକଟର ସମ୍ମୁଖୀନ ହେବ ଏହାର କିଛି ଚିତ୍ର ଦିଆଯାଇଛି। ଆମ ସାମାଜିକ ଦୃଶ୍ୟପଟରେ କିପରି କୁସଂସ୍କାର, ସାମାଜିକ ଭେଦଭାବ ଓ ବହୁ ମନ୍ଦ ବା ଇଭିଲ୍ ରହିଛି, ସେ ବିଷୟରେ ମଧ୍ୟ କିଛି ସୂଚନା ରହିଛି। ସମାଜର ବୌଦ୍ଧିକ ଓ ନୈତିକ ଉତ୍ତରଣ କ୍ଷେତ୍ରରେ ବିଜ୍ଞାନ, ସାହିତ୍ୟ, ଦର୍ଶନ ଓ ଅନ୍ୟାନ୍ୟ ସୃଜନାତ୍ମକ କ୍ଷେତ୍ରମାନଙ୍କର ଅବଦାନ ବିଷୟରେ କିଛି ଆଲୋଚନା ରହିଛି। ଯେଉଁମାନଙ୍କର ବିଚାର ଓ ଅବଦାନ ସମାଜର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ କିଛି ସହାୟକ ହୋଇଛି ସେହିପରି କିଛି ମୁଷ୍ଟିମେୟ ବ୍ୟକ୍ତିଙ୍କ ବିଷୟରେ କେତୋଟି ଲେଖା ରହିଛି। ଏହା ସହିତ କେତେକ ଅନୁଭୂତି ବିଷୟ କେତେକ ଲେଖାରେ ଅବତାରଣା କରାଯାଇଛି।

"ହେତୁବାଦୀ ଅନୁଭବରେ" ସ୍ଥାନିତ ଛ'ଟି ଲେଖା "ପଞ୍ଚମ ସ୍ତମ୍ଭ" ଓ "ଅଧିକାର" ପତ୍ରିକାରେ ପ୍ରକାଶିତ ହୋଇଥିଲା। ଏସବୁ ଲେଖାରେ କିଛି ବ୍ୟକ୍ତିଗତ

ଅନୁଭୂତିରୁ ମୋତେ ଯେଉଁ ଶିକ୍ଷା ମିଳିଛି ବା ମୋ ମନରେ ଯେଉଁ ଭାବନା ସୃଷ୍ଟି ହୋଇଛି, ତାହାର ପ୍ରତିଫଳନ ରହିଛି । ଏକ ହେତୁବାଦୀ ଦୃଷ୍ଟିଭଙ୍ଗୀରେ ସାମାଜିକ ସ୍ଥିତି ଓ ଘଟଣା ପ୍ରବାହକୁ ଦେଖିବା ବେଳେ ମନରେ ଯେଉଁ ଭାବନା ବା ପ୍ରତିକ୍ରିୟା ଆସିଥାଏ ତାହାର ଅଭିବ୍ୟକ୍ତି ଏହି ଲେଖାମାନଙ୍କରେ ରହିଛି । ଆମ ଚତୁଃପାର୍ଶ୍ୱରେ ଘଟୁଥିବା କିଛି ଘଟଣା ମୋ ମନକୁ କିପରି ଆନ୍ଦୋଳିତ ବା ପ୍ରଭାବିତ କରିଛି ସେ ବିଷୟରେ ମୋର ସାମାନ୍ୟ ମତାମତ ଏହି ଲେଖାମାନଙ୍କରେ ବ୍ୟକ୍ତ ହୋଇଛି । ଆମ ସମାଜର ରୂଢ଼ିବାଦ, ଭେଦଭାବ ଓ ଅପସଂସ୍କୃତିରେ ମୋର ପ୍ରତିକ୍ରିୟା ଏଥିରେ ପ୍ରକାଶିତ ହୋଇଛି ।

ବ୍ୟକ୍ତିଗତ ସଂପର୍କରେ ଆସିଥିବା ଓ ସେମାନଙ୍କ ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ ହୋଇଥିବା କେତେକ ବିଶିଷ୍ଟ ବ୍ୟକ୍ତିଙ୍କର ଦେହାନ୍ତ ଖବର ପାଇ ମୁଁ ମୋର ଦୁଃଖ ବ୍ୟକ୍ତ କରିଛି ଓ ସେମାନଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଲେଖିଛି । ସେ ମଧ୍ୟରୁ ଏହି ସଂକଳନଟିରେ ପାଞ୍ଚଜଣ ବ୍ୟକ୍ତିଙ୍କ ବିଷୟରେ ଲେଖିଥିବା ଶ୍ରଦ୍ଧାସୁମନ ଏଥିରେ ସ୍ଥାନିତ କରିଛି । "ବ୍ୟକ୍ତି ଓ ବାର୍ତ୍ତା" କ୍ଷେତ୍ରରେ ଆଉ ପାଞ୍ଚଜଣ ପ୍ରବୀଣ ବ୍ୟକ୍ତିଙ୍କ ବିଷୟରେ ସାମାନ୍ୟ ସୂଚନା ରହିଛି । ଯେଉଁ ଲୋକମାନେ ନିଜର ବିଚାର, ଜୀବନଧାରା ଓ ସ୍ୱପ୍ନ ମାଧ୍ୟମରେ ସମାଜ ପାଇଁ ପ୍ରେରଣାଦାୟକ ହୁଅନ୍ତି ସେମାନଙ୍କ ସ୍ମୃତିଚାରଣ କରିବାକୁ ପ୍ରୟାସ କରିଛି ।

ସମ୍ବାଦପତ୍ରରେ ଲେଖାଟିଏ ପ୍ରକାଶ ପାଇବା ପରେ କିଛି ପାଠକ ଟେଲିଫୋନ୍ କରି ବା ବେଳେ ବେଳେ ପତ୍ର ଲେଖି ସେମାନଙ୍କର ମତ ବ୍ୟକ୍ତ କରିଥାନ୍ତି । ଲେଖାଟିଏ ପ୍ରକାଶ ପାଇବା ପରେ ତାହା ପାଠକର ମୂଲ୍ୟାୟନ ପାଇଁ ଉନ୍ମୁକ୍ତ ରହେ ଓ ଜଣେ ପାଠକ ଲେଖାର ଭଲ-ମନ୍ଦ ଦିଗ ଦର୍ଶାଇ ପାରନ୍ତି । ସେହି ମତାମତ ଲେଖକକୁ ପ୍ରେରଣା ଦିଏ, ଅଧିକ ଯତ୍ନଶୀଳ ହେବାରେ ସାହାଯ୍ୟ କରେ ଓ ସ୍ଥଳବିଶେଷରେ ଆତ୍ମସମୀକ୍ଷା ପାଇଁ ଅଭିନିବେଶ ଯୋଗାଏ । ସୁତରାଂ ଅନ୍ୟମାନଙ୍କର ମତାମତକୁ ମୁଁ ଗୁରୁତ୍ୱ ଦିଏ ଓ ସମ୍ମାନର ସହ ଗ୍ରହଣକରେ ।

ସମ୍ବାଦପତ୍ରର ମୋର ଲେଖାମାନଙ୍କୁ ବାଙ୍ଗାଲୋରରେ ରହୁଥିବା ବନ୍ଧୁ ଶ୍ରୀ ବାଲ୍ମୀକି ନାୟକ "ଫେସ୍ ବୁକ୍"ରେ ସ୍ଥାନିତ କରନ୍ତି । ଆଜିର ଅତ୍ୟାଧୁନିକ ଗଣମାଧ୍ୟମ ଯୋଗୁ ସମ୍ବାଦପତ୍ର ନ ପାଇ ମଧ୍ୟ ଅନେକ ପାଠକ ଲେଖାମାନଙ୍କୁ ପଢ଼ି ପାରୁଛନ୍ତି ଓ କିଛି

ମତାମତ ଫେସ୍‌ବୁକ୍‌ରେ ଦେଉଛନ୍ତି । ମୁଁ ବନ୍ଧୁ ବାଲ୍ମୀକି ନାୟକ ଓ ଅନ୍ୟ ପାଠକମାନଙ୍କୁ ମୋର କୃତଜ୍ଞତା ଜଣାଉଛି । ସେହିପରି ମୋର ପ୍ରିୟ ବନ୍ଧୁ ଅଧ୍ୟାପକ ଡମ୍ବରୁଧର ବେହେରା, ଡକ୍ଟର ଭରତଚନ୍ଦ୍ର ନାଥ ଓ ନିୟମିତ ପାଠକ ଶ୍ରୀ ମନମୋହନ ମହାପାତ୍ର, ଅଧ୍ୟାପକ ମନୋରଞ୍ଜନ ଦାସ ଓ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ମୋର ଲେଖାଲେଖି ପାଇଁ ପ୍ରେରଣା ଓ ପରିବେଶ ଦେଉଥିବା ମୋ ପତ୍ନୀ ପ୍ରତିମାଙ୍କୁ ବି ମୁଁ ଏହି ଅବସରରେ ଧନ୍ୟବାଦ ଦେଉଛି ।

ଶେଷରେ ଏହି ପୁସ୍ତକଟି ପ୍ରକାଶ କରିବାକୁ କିତାବ ଭବନର ପ୍ରକାଶକ ଶ୍ରୀ ବିନୋଦ ବିହାରି ବିଶୋଇ ଓ ତାଙ୍କର ସହକାରୀ ଶ୍ରୀ ଦେବରାଜ ସାହୁ ଦାୟିତ୍ୱ ବହନ କରିଥିବାରୁ ମୁଁ ସେମାନଙ୍କ ପାଖରେ ମୋର କୃତଜ୍ଞତା ପ୍ରକାଶ କରୁଛି ।

ଧନେଶ୍ୱର ସାହୁ
ମୋବାଇଲ - ୯୪୩୮୫୪୭୮୯୫
ଏ-୧୨, ଭାଗୀରଥି ବିହାର,
ଢେଙ୍କାନାଳ

# ସୂଚୀପତ୍ର

**ବ୍ୟକ୍ତି ଓ ବାର୍ତ୍ତା**



**ମାନବିକ ଦୃଷ୍ଟି**



**ସ୍ମୃତି ଓ ଅନୁଭୂତି**

## ହେତୁବାଦୀ ଅନୁଭବରେ



## ଶ୍ରଦ୍ଧାଞ୍ଜଳି





# ସଭ୍ୟତାର ବିଡମ୍ବନା

ଇତିହାସର ଏହା ଏକ ବିଡମ୍ବନା ଯେ ମାନବ ସଭ୍ୟତାକୁ ମୌଳିକ ଅବଦାନ ଦେଇଥିବା କିଛି ବ୍ୟକ୍ତି ସେମାନଙ୍କର ସମସାମୟିକ ସମାଜରେ ନିନ୍ଦିତ ହୋଇଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି ବା ହତ୍ୟାର ଶିକାର ହୋଇଛନ୍ତି। କେତେକ ମୁକ୍ତଚିନ୍ତକ, ଦାର୍ଶନିକ, ବୈଜ୍ଞାନିକ, ସମାଜ ସଂସ୍କାରକ ଓ ମାନବବାଦୀ ହେତୁବାଦୀ ଗଣ ନିଜ ଜୀବଦଶାରେ ନାନା ବିପର୍ଯ୍ୟୟର ସମ୍ମୁଖୀନ ହୋଇଛନ୍ତି। ବୌଦ୍ଧିକ ଜଗତର ପଥଦ୍ରଷ୍ଟା ବା ମାନବବାଦୀ ମୂଲ୍ୟବୋଧର ପ୍ରବକ୍ତା ଭାବେ ଇତିହାସ ସେମାନଙ୍କୁ ଅମର କରିଛି, ହେଲେ ସେମାନଙ୍କ ଜୀବନକାଳ ଭିତରେ ସେମାନେ ନାନା ଅସମ୍ମାନକୁ ସାମ୍ନା କରିଛନ୍ତି। ଏହା ବିଭିନ୍ନ ସଭ୍ୟତାରେ ଘଟିଛି ଓ ଏବେ ବି କେତେକ ଦେଶରେ ଏହା ଘଟୁଛି। ସକ୍ରେଟିସ୍‌ଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଇଛି, ଯିଶୁଖ୍ରୀଷ୍ଟଙ୍କୁ କ୍ରୁଶବିଦ୍ଧ କରାଯାଇଛି, ଗାଲିଲିଓଙ୍କୁ ବନ୍ଦୀ ଜୀବନ ବିତାଇବାକୁ ହୋଇଛି, ବ୍ରୁନୋଙ୍କୁ ପୋଡ଼ି ହତ୍ୟା କରାଯାଇଛି, ଆବ୍ରାହମ୍ ଲିଙ୍କନ୍, ମାର୍ଟିନ୍ ଲୁଥର କିଙ୍ଗ୍ ଜୁନିଅରଙ୍କୁ ମରାଯାଇଛି ଓ ମହାତ୍ମା ଗାନ୍ଧୀଙ୍କ ବକ୍ଷକୁ ଗୁଳି କରାଯାଇଛି। ଏହି କାହାଣୀ ବେଶ୍ ସୁଦୀର୍ଘ। ଏମାନେ ଓ ଏହିଭଳି ଅଗଣିତ ପ୍ରତିଭାଧର ବ୍ୟକ୍ତି ମାନବିକ ଅନ୍ୟାୟ ଓ ହିଂସାର ଶିକାର ହୋଇଛନ୍ତି, ତେବେ ସେହିମାନଙ୍କର ଅବଦାନ ଯୋଗୁ ସଭ୍ୟତାର ରଥ ଆଗକୁ ଯାଇଛି ଓ ମହତ୍ତର ମୂଲ୍ୟବୋଧର ବାର୍ତ୍ତା ସମାଜରେ ପ୍ରସାରିତ ହୋଇଛି। ସେମାନେ ଯେହେତୁ ସେମାନଙ୍କ ସମସାମୟିକ ସମୟ ଠାରୁ ବହୁ ଆଗରେ ଥିଲେ, ସମ୍ଭବତଃ ସେମାନେ ନିଜ ସମୟରେ ଗୃହୀତ ହୋଇପାରି ନାହାନ୍ତି।

ଆନ୍ତର୍ଜାତିକ ମାନବବାଦୀ ଓ ନୀତିବାଦୀ ସଂଘ (ଇଣ୍ଟରନ୍ୟାସନାଲ୍ ହ୍ୟୁମାନିଷ୍ଟ ଆଣ୍ଡ୍ ଏଥିକାଲ୍ ୟୁନିଅନ୍) ପ୍ରତ୍ୟେକ ବର୍ଷ 'ମୁକ୍ତଚିନ୍ତନ ବିବରଣୀ' ବା 'ଫ୍ରିଡମ୍ ଅଫ୍ ଥଟ୍' ରିପୋର୍ଟ ନାମରେ କେତେକ ତଥ୍ୟ ଅନୁସନ୍ଧାନ କରି ଆନ୍ତର୍ଜାତିକ ସ୍ତରରେ ପ୍ରକାଶ କରିଥାଏ। ବିଶେଷକରି କେଉଁ ସ୍ତରରେ ମାନବିକ ଅଧିକାର ଉଲଙ୍ଘନ ହେଉଛି ଓ କେଉଁ କେଉଁ ରାଷ୍ଟ୍ରରେ ଏହା ବହୁଳ ଭାବେ ହେଉଛି, ତାହାର ଏକ ମୋଟାମୋଟି ଚିତ୍ର ଏହି ବିବରଣୀରେ ଥାଏ। ଚଳିତ ବର୍ଷ ବିବରଣୀରେ କୁହାଯାଉଛି ଯେ, ଧର୍ମ, ଈଶ୍ୱରରେ ବିଶ୍ୱାସ କରିବା ବା ନ କରିବା ବ୍ୟକ୍ତିର ଅଧିକାର ହେଲେ ବି ପୃଥିବୀରେ ବିଭିନ୍ନ ଦେଶର ସାମାଜିକ ପରିବେଶ

ମୁକ୍ତଚିନ୍ତକ, ଧର୍ମନିରପେକ୍ଷବାଦୀ ଓ ନିରୀଶ୍ୱରବାଦୀମାନଙ୍କ ପାଇଁ ଯଥେଷ୍ଟ ଅନୁକୂଳ ନୁହେଁ। କେତେକ ଦେଶରେ ଧର୍ମନିରପେକ୍ଷବାଦୀ ଓ ନିରୀଶ୍ୱରବାଦୀମାନଙ୍କୁ ନାନା ଭାବରେ ସମାଲୋଚନା ଓ ନିନ୍ଦା କରାଯାଏ। କେତେକ ଦେଶରେ ନିଜ ଦେଶର ଧର୍ମ ବା ଈଶ୍ୱରଙ୍କ ବିରୁଦ୍ଧରେ କହିବାକୁ ଏକ 'ଈଶ୍ୱରୀୟ ଅପବାଦ' ବା 'ବ୍ଲାସ୍‌ଫେମି' ଭାବରେ ନିଆଯାଏ ଓ ସେହି ବ୍ୟକ୍ତିଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯାଏ। ସେହିପରି କେତେକ ଦେଶରେ ଧର୍ମମତକୁ ସମାଲୋଚନା କରିବା କାର୍ଯ୍ୟକୁ ଏକ ସନ୍ତ୍ରାସବାଦୀ କାର୍ଯ୍ୟ ଭାବରେ ନିଆଯାଏ। ବିଡମ୍ବନାର ବିଷୟ ସାଂପ୍ରତିକ ବିଶ୍ୱରେ ଧାର୍ମିକ ସାଂପ୍ରଦାୟିକତାବାଦୀ ଓ ମୌଳବାଦୀମାନେ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମରେ ବ୍ରତୀ ଥିବା ବେଳେ ଧର୍ମନିରପେକ୍ଷ ବ୍ୟକ୍ତିମାନଙ୍କୁ ସନ୍ତ୍ରାସବାଦୀ ଭାବେ ଆଖ୍ୟା ଦିଆଯାଉଛି। ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସମଗ୍ର ବିଶ୍ୱକୁ ଏକତାର ରଜ୍ଜୁରେ ବାନ୍ଧିଥିବା ବେଳେ ଧର୍ମ ଓ ତତ୍‌ସଂଲଗ୍ନ ସାଂପ୍ରଦାୟିକତା ମଣିଷ ସମାଜକୁ ଭାଗ ଭାଗ କରି ରଖିଛି। ନିରୀଶ୍ୱରବାଦୀ ଓ ଧର୍ମନିରପେକ୍ଷବାଦୀମାନେ ମଣିଷ ସମାଜକୁ ପ୍ରୀତିପୂର୍ଣ୍ଣ ଏକତ୍ୱର ବନ୍ଧନରେ ଯୋଡ଼ିବା ବେଳେ ସେମାନଙ୍କୁ ଧର୍ମବିରୋଧୀ କହି ନିନ୍ଦିତ କରିବା ଓ ସେମାନଙ୍କର ମୁକ୍ତ ଚିନ୍ତନ ଓ ସ୍ୱାଧୀନ ମତ ପାଇଁ ସେମାନଙ୍କୁ ଅପରାଧୀ ଭାବିବା ସଭ୍ୟ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ମନେହୁଏ। ସାରା ପୃଥିବୀରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଅନୁସନ୍ଧିତ୍ସୁ ମନୋଭାବର ଯେପରି କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତି ହେଉଛି ତାର ପରିଣାମରୁ ନିରୀଶ୍ୱରବାଦୀ, ହେତୁବାଦୀ, ସଂଶୟବାଦୀ ଓ ମାନବବାଦୀଙ୍କର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି। ତେବେ ବିପରୀତ କ୍ରମେ କେତେକ ଦେଶରେ ସାଂପ୍ରଦାୟିକତାବାଦ, ମୌଳବାଦ, ଅନ୍ୟ ଧର୍ମ, ସଂସ୍କୃତି ପ୍ରତି ଅସହିଷ୍ଣୁତାବାଦ ଓ ଧର୍ମ ନାମରେ ହିଂସା, ସନ୍ତ୍ରାସବାଦ ବି ବୃଦ୍ଧି ହେଉଛି। କେତେକ ଦେଶର ଏହି ସାମାଜିକ ସ୍ଥିତି ପାଇଁ ଆନ୍ତର୍ଜାତିକ ମାନବବାଦୀ ଓ ନୀତିବାଦୀ ସଂଘ ଗଭୀର ଉଦ୍‌ବେଗ ପ୍ରକାଶ କରିଛି।

ସାଧାରଣତଃ ଇତିହାସରୁ ଏହା ଜଣାଯାଏ ଯେ ପ୍ରାୟତଃ ସଭ୍ୟତାର ଆରମ୍ଭ ପର୍ବରୁ ମଣିଷ ଅନୁସନ୍ଧିତ୍ସୁ ହୋଇଛି ଓ ଏହି ଅନୁସନ୍ଧିତ୍ସା ଯୋଗୁ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି। ଚିନ୍ତା ଚେତନାରେ କିଛି ବ୍ୟକ୍ତି ଜୀବନ ଓ ଜଗତକୁ ନୂଆ ଭାବରେ ଅନୁଧ୍ୟାନ କରିବାକୁ ପ୍ରୟାସ କରିଛନ୍ତି। ଧାର୍ମିକ ବିଶ୍ୱାସ ଓ ଆବେଗରେ ପ୍ରଭାବିତ ବ୍ୟକ୍ତିମାନେ ଆମ ସଂସାର, ପ୍ରକୃତି, ଜୀବଜଗତ, ମଣିଷ ସମାଜକୁ ଏକ ସର୍ବଶକ୍ତିମାନ ଈଶ୍ୱର ସୃଷ୍ଟି କରିଥିବା ବିଶ୍ୱାସ କରିଥାନ୍ତି। ବିଭିନ୍ନ ଧାର୍ମିକ ବିଶ୍ୱାସରେ ଈଶ୍ୱର ଓ ସୃଷ୍ଟି ସର୍ଜନା ସମ୍ପର୍କିତ ଭାବନାଗୁଡ଼ିକ ପରସ୍ପର ଠାରୁ ପୃଥକ୍ ଓ ସେମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ସେମାନେ ପରସ୍ପର ବିରୋଧୀ ବୋଲି ପ୍ରତୀତ ହୋଇଥାନ୍ତି। ବୈଜ୍ଞାନିକ ତଥ୍ୟରେ ଆସ୍ଥା ସ୍ଥାପନ କରୁଥିବା

ବ୍ୟକ୍ତିମାନେ ସୃଷ୍ଟି ସମ୍ପର୍କିତ ଧାର୍ମିକ ଭାବନାମାନ ଯେ ଆଧାରହୀନ ଏହା ଗ୍ରହଣ କରି କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ପ୍ରକ୍ରିୟାରେ ଜୀବଜଗତର ଉଦ୍‌ଭବ ହୋଇଥିବା ଗ୍ରହଣ କରନ୍ତି । ଧାର୍ମିକ ବିଶ୍ୱାସର ଲୋକମାନେ ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟ, ଦୈବୀବିଧାନ, ପାରଲୌକିକ ଘଟଣା ଇତ୍ୟାଦିରେ ଆସ୍ଥା ସ୍ଥାପନ କରିଥାନ୍ତି । ଆମ ଚତୁଃପାର୍ଶ୍ୱରେ ଘଟୁଥିବା ଘଟଣାମାନଙ୍କୁ ପ୍ରାକୃତିକ ଧାରାରେ ବ୍ୟାଖ୍ୟା କରିବା ଏକ ବୈଜ୍ଞାନିକ ମନୋଭାବ । କିନ୍ତୁ ପାରଲୌକିକ ଶକ୍ତିରେ ବିଶ୍ୱାସ କରୁଥିବା କେତେକ ବ୍ୟକ୍ତି ସବୁ କ୍ଷେତ୍ରରେ କଳ୍ପିତ ଦିଅଁ ଦେବତାଙ୍କୁ ସଂପୃକ୍ତ କରିବାର ମାନସିକତା ପୋଷଣ କରିଥାନ୍ତି । କଳ୍ପିତ ଦିଅଁ ଦେବତାଙ୍କ ନାମରେ କେତେ କେତେ କାହାଣୀ, ଚମତ୍କାରିତା ସୃଷ୍ଟି କରନ୍ତି । ନିଜେ ସବୁ କରୁଥାନ୍ତି, ନିଜର ବା ନିଜ ଗୋଷ୍ଠୀର ସ୍ୱାର୍ଥ ପାଇଁ ସଚେତନ ଥାଆନ୍ତି, ଅଥଚ ସବୁ କଥାକୁ ନିଜ କଳ୍ପିତ ଦିଅଁ ଦେବତାଙ୍କ ନାମରେ ଭଣିତ କରନ୍ତି । ଯେଉଁଠି ରାଷ୍ଟ୍ରଶକ୍ତି ଲୋକଙ୍କ ପାରଲୌକିକ ବିଶ୍ୱାସ, ଧାର୍ମିକ ଆବେଗକୁ ସମର୍ଥନ ଦେଇ ତାହାକୁ ପରମ୍ପରା ଓ ସଂସ୍କୃତିର ରୂପ ଦିଏ, ସେଠାରେ ସମାଜର ନୈତିକ ଓ ବୌଦ୍ଧିକ ବିକାଶ ବାଧାପ୍ରାପ୍ତ ହୋଇଥାଏ । ଯେଉଁ ସାମାଜିକ ପରିବେଶରେ ଦାରିଦ୍ର୍ୟ, ନୈରାଶ୍ୟ, ହତାଶାଭାବ ଅଧିକ ଥାଏ ସେଠାରେ ଲୋକମାନେ ଅଧିକ ପାରଲୌକିକ ମନୋଭାବ ପୋଷଣ କରିବା ଦେଖାଯାଏ । ଦିଅଁ ଦେବତାଙ୍କ ଆଶୀର୍ବାଦରୁ ଜୀବନରୁ ଦୁଃଖ, ଦୁର୍ଦ୍ଦଶା ଯେ ଦୂର ହୋଇଯିବ ଏହି ମାନସିକତାରୁ ଲୋକମାନେ ଅଧିକ ଧାର୍ମିକ ଭାବପ୍ରବଣତା ଦେଖାଇଥାନ୍ତି । କିନ୍ତୁ ବାସ୍ତବତା ହେଉଛି ଯେ ସକଳ ବିକାଶ, ପ୍ରଗତି ଓ ଗୁଣାତ୍ମକ ଜୀବନ ମାନବିକ ପ୍ରୟାସ ଓ ଉତ୍ତମ ସାମାଜିକ ପରିବେଶରୁ ଉଦ୍‌ଭବ ହୋଇଥାଏ । ଯେଉଁ ରାଷ୍ଟ୍ରମାନେ ଅଧିକ ବିକଶିତ ଓ ଯେଉଁଠି ଜୀବନର ଗୁଣାତ୍ମକ ମାନ ତୁଳନାତ୍ମକ ଭାବେ ଉନ୍ନତ, ସେମାନଙ୍କୁ ଦିଅଁ ଦେବତାର ଆଶୀର୍ବାଦ ମିଳି ନାହିଁ । ମଣିଷ ଯେତେବେଳେ ନିଜର ବିଚାର ବୁଦ୍ଧି ପ୍ରୟୋଗ କରି ତାର ସାମୂହିକ ଜୀବନକୁ ଉନ୍ନତ କରିବାକୁ ନିଷ୍ଠାପର ପ୍ରୟାସ କରିଛି, ସେଠାରେ ଜନଜୀବନର ମାନ ଅଧିକ ସୁଖପ୍ରଦ ହୋଇଛି । ନିଜର ଜ୍ଞାନ କୌଶଳକୁ ପ୍ରୟୋଗ କରି ପ୍ରାକୃତିକ ପ୍ରତିକୂଳ ସ୍ଥିତି ଉପରେ ମଣିଷ ଅନେକାଂଶରେ ନିୟନ୍ତ୍ରଣ ଆଣିଛି । ଆଜିର ସମୟରେ ମଣିଷ ପ୍ରକୃତି ପାଖରେ ଅସହାୟ ମନେ କରୁ ନାହିଁ, ବରଂ ପ୍ରାକୃତିକ ପ୍ରତିକୂଳ ସ୍ଥିତିକୁ ଅତିକ୍ରମ କରିବାକୁ ଉଦ୍ୟମ କରିଛି । ଅପର ପକ୍ଷରେ, ପାରଲୌକିକ ଜୀବନଦୃଷ୍ଟି ଓ ଶ୍ରମବିହୀନ ଉପାର୍ଜନର ମନୋଭାବ ଯେଉଁ ସମାଜରେ ଯେତେ ବ୍ୟାପକ ରହିଛି, ସେଠାରେ ପ୍ରାକୃତିକ ପରିବେଶ ଯେତେ ଅନୁକୂଳ ଥିଲେ ବି ସମାଜରେ ଉତ୍କଟ ଦାରିଦ୍ର୍ୟ ରହିଛି । ଦାରିଦ୍ର୍ୟ, ନିରକ୍ଷରତା,

ଅନଗ୍ରସରତା ସହିତ ଧାର୍ମିକ ଆବେଗ, ପାରଲୌକିକ ଜୀବନଦୃଷ୍ଟି, ଅହେତୁକ ବିଶ୍ୱାସ ଓତପ୍ରୋତ ଭାବେ ସଂଶ୍ଳିଷ୍ଟ ହେବା ଦେଖାଯାଏ। ଏକ ବିଷ-ଚକ୍ରରେ ଏମାନେ ପରସ୍ପରର ସହଯୋଗୀ ବୋଲି ମନେହୁଅନ୍ତି।

ଯେଉଁମାନେ ସମାଜର କୁସଂସ୍କାର, ରକ୍ଷଣଶୀଳ ମନୋଭାବ, ପାରଲୌକିକ ଜୀବନାଦର୍ଶ, ସାମନ୍ତବାଦ, ସାଂପ୍ରଦାୟିକତାବାଦ ଓ ଅପସଂସ୍କୃତି ବିରୋଧରେ ସ୍ୱର ଉତ୍ତୋଳନ କରନ୍ତି ସେମାନଙ୍କୁ ନିରୀଶ୍ୱରବାଦୀ, ଧର୍ମବିରୋଧୀ କହି ନିନ୍ଦିତ କରାଯିବାର ମନୋଭାବ ଏବେ ବି ସମାଜରେ କେତେକାଂଶରେ ରହିଛି। ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀର ଲୋକମାନେ ସଂସ୍କାରବାଦୀ ବୁଦ୍ଧିଜୀବୀମାନଙ୍କୁ ସହ୍ୟ କରିପାରୁ ନାହାନ୍ତି। ଅନ୍ୟଙ୍କୁ ଯେତେବେଳେ ବିଚାର, ଯୁକ୍ତି କ୍ଷେତ୍ରରେ ପରାଜିତ କରି ନ ହୁଏ ସେମାନଙ୍କୁ ପଶୁବଳ ପ୍ରୟୋଗ କରି ଜୀବନରେ ମାରି ଦେବାର ପ୍ରୟାସ ବି ହୁଏ। ନିକଟ ଅତୀତରେ ଦୁଇ ଜଣ କ୍ରାନ୍ତିକାରୀ ସଂସ୍କାରକଙ୍କୁ ହତ୍ୟା କରିବା ମାନବିକତା ପ୍ରତି ବଡ଼ ଆହ୍ୱାନ କହିଲେ ଅତ୍ୟୁକ୍ତି ହେବ ନାହିଁ। ଜଣେ ହେଲେ ମହାରାଷ୍ଟ୍ରର ବିଶିଷ୍ଟ ହେତୁବାଦୀ ସଂସ୍କାରକ ଗୋବିନ୍ଦରାଓ ପାନସାରେ। ଦୁଇ ବର୍ଷ ତଳେ ନରେନ୍ଦ୍ର ଦାଭୋଲକରଙ୍କୁ ଯେଉଁ ଭଳି ତାଙ୍କର ପ୍ରାତଃଭ୍ରମଣ ସମୟରେ ଦୁଇ ଜଣ ଆତତାୟୀ ହତ୍ୟା କଲେ, ଠିକ୍ ସେହି ଭଳି ଗୋବିନ୍ଦରାଓ ପାନସାରେ ପ୍ରାତଃଭ୍ରମଣରେ ଥିବା ବେଳେ ଆତତାୟୀମାନେ ବାଇକ୍‌ରେ ଆସି ତାଙ୍କୁ ହତ୍ୟା କଲେ। ନରେନ୍ଦ୍ର ଦାଭୋଲକର ଥିଲେ ମହାରାଷ୍ଟ୍ର ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତିର ପ୍ରତିଷ୍ଠାତା ଓ ଦେଶର ଜଣେ ପ୍ରମୁଖ ହେତୁବାଦୀ ବୁଦ୍ଧିଜୀବୀ। ପାନ୍‌ସାରେ ମଧ୍ୟ ଥିଲେ ମାର୍କସୀୟ ବୁଦ୍ଧିଜୀବୀ, ହେତୁବାଦୀ ଓ ସମାଜ ସଂସ୍କାରକ। ପଶୁବଳରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ ବ୍ୟକ୍ତିକୁ ମାରିପାରନ୍ତି, କିନ୍ତୁ ବିଚାରଶୀଳତା, ମାନବିକତା ଓ ଧର୍ମନିରପେକ୍ଷତାକୁ ଧ୍ୱଂସ କରିପାରିବେ ନାହିଁ। ସଭ୍ୟତା ଯେତିକି ଆଗକୁ ଯାଉଥିବ, ଏହି ସାର୍ବଜନୀନ ମୂଲ୍ୟବୋଧଗୁଡ଼ିକ ସମାଜ ପାଇଁ ସେତେ ଅଧିକ ପ୍ରାସଙ୍ଗିକ ମନେ ହେଉଥିବ।

(ପ୍ରଗତିବାଦୀ, ୨୯.୦୭.୧୫)

# ସାଂସ୍କୃତିକ ସଙ୍କଟ

ପ୍ରତ୍ୟେକ ବ୍ୟକ୍ତିର, ସମାଜର ଓ ମାନବ ସମୁଦାୟର କିଛି ସମସ୍ୟା ଓ ସଙ୍କଟ ରହିବା ଏକ ସାଧାରଣ ଅନୁଭବ। ବ୍ୟଷ୍ଟିଜୀବନ ହେଉ ବା ଗୋଷ୍ଠୀଜୀବନ ହେଉ ସମସ୍ୟା ଓ ସଙ୍କଟ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଛି। ସଭ୍ୟତା ଯେତେ ଆଗକୁ ଗଲେ ବି ଜୀବନ ସମସ୍ୟା-ରହିତ ହୋଇପାରୁ ନାହିଁ। ଆମ ପୃଥିବୀରେ ବହୁ ଦାରିଦ୍ର୍ୟ ରହିଛି। ବିଶେଷ କରି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ, ଅପପୁଷ୍ଟି, ନିରକ୍ଷରତା, ବାଳ ଶ୍ରମିକ, ସ୍ୱାସ୍ଥ୍ୟସେବାର ଅଭାବ ପରି ସମସ୍ୟାମାନ ରହିଛି। ଆମ ସଂସାର ଏତେ ବଡ ହେଲେ ବି ଅନେକ ଲୋକଙ୍କର ମୁଣ୍ଡ ଗୁଞ୍ଜିବା ପାଇଁ ବାସଟିଏ ନାହିଁ। ଅନଗ୍ରସର ରାଷ୍ଟ୍ରମାନଙ୍କରେ ବହୁ ଲୋକ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ସ୍ଲମ୍‌ମାନଙ୍କରେ ରହନ୍ତି। ପୃଥିବୀରେ ବହୁ ପ୍ରାଚୁର୍ଯ୍ୟ ରହିଥିଲେ ମଧ୍ୟ ଜନସଂଖ୍ୟାର ଏକ ଅଂଶ ସମ୍ବଳହୀନ ହୋଇ ରହିଛନ୍ତି। ଆଧୁନିକ ବିଜ୍ଞାନ ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚନ କରିବାରେ ସଫଳ ହୋଇଥିଲେ ମଧ୍ୟ ପ୍ରକୃତିର ବହୁ ରହସ୍ୟ ଏବେ ବି ମଣିଷ ଜ୍ଞାନର ବହିର୍ଭୂତ ହୋଇ ରହିଛି। ସକଳ ପ୍ରାକୃତିକ ଦୁର୍ବିପାକକୁ ମଣିଷ ନିୟନ୍ତ୍ରଣ କରିବାରେ ସଫଳ ହୋଇପାରୁ ନାହିଁ। ଆମ ପୃଥିବୀର ପରିବେଶ ଦିନକୁ ଦିନ ପ୍ରଦୂଷିତ ହେବାରେ ଲାଗିଛି। ଏହା ଏପରି ଏକ ଭୟାନକ ସ୍ଥିତି ଆଡ଼କୁ ଯିବାରେ ଲାଗିଛି ଯାହାର ପରିଣତି ଜୀବଜଗତ ପାଇଁ ଏକ ବଡ଼ ସଙ୍କଟ ଆଣିବ ବୋଲି ଅନୁମାନ କରାଯାଉଛି। ପ୍ରକୃତି ସମ୍ବନ୍ଧରେ ମଣିଷର ଜ୍ଞାନ ସୀମିତ ହୋଇ ରହିଛି। ସବୁ ସଭ୍ୟତାରେ କେତେ ଆଦର୍ଶ, ନୀତି, ନୈତିକତା, ମହତ୍ତ୍ୱର ଜୀବନବୋଧର ବାର୍ତ୍ତା ରହିଛି। ସେ ସବୁ ସତ୍ତ୍ୱେ ତାହା ସାର୍ବଜନୀନ ହୋଇପାରି ନାହିଁ। ଏବେ ବି ଆମ ସଂସାରରେ ବହୁ କ୍ରୂରତା, ହିଂସା, ସନ୍ତ୍ରାସବାଦ, ଶତ୍ରୁତା, ବିଦ୍ୱେଷ ଇତ୍ୟାଦି ରହିଛି। ବିଭିନ୍ନ ଜନଗୋଷ୍ଠୀ ଭିତରେ, ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ତିକ୍ତତା ଓ ଅବିଶ୍ୱାସର ବାତାବରଣ ରହିଛି। ଦାର୍ଶନିକମାନେ ମଣିଷର ସଂଜ୍ଞା ଦେଇଥାନ୍ତି ଯେ, "ମଣିଷ ଏକ ବିଚାରଶୀଳ ପ୍ରାଣୀ"। ଏହି ବୁଦ୍ଧି ଓ ବିଚାରଶୀଳତା ଯୋଗୁ ସଭ୍ୟତାର ବିକାଶ ହୋଇଛି, ଜୀବନ ଅଧିକ ନିରାପଦ ହୋଇପାରିଛି ଓ ଜ୍ଞାନ-ବିଜ୍ଞାନର ବହୁ ଅଗ୍ରଗତି ହୋଇଛି। ଏସବୁ ସତ୍ତ୍ୱେ ବିଚାରଶୀଳତା ସାର୍ବଜନୀନ ଭାବେ ସବୁ ମଣିଷଙ୍କ ପାଖରେ ବିକଶିତ ହୋଇ ନାହିଁ। ସମାଜରେ ବହୁ କୁସଂସ୍କାର, ଭିତ୍ତିହୀନ ବିଶ୍ୱାସ, ଅହେତୁକ

ମାନସିକତା, ଅବୈଜ୍ଞାନିକ ଚିନ୍ତା ବ୍ୟାପକ ଭାବେ ରହିଛି । ଅଶିକ୍ଷିତ ବା ଶିକ୍ଷାର ଆଲୋକରୁ ବଞ୍ଚିତ ଥିବା ଲୋକମାନେ ଯେ କୁସଂସ୍କାରରେ ବିଶ୍ୱାସ କରନ୍ତି ତାହା ନୁହଁ, ସମାଜର ଅନେକ ଶିକ୍ଷିତ, କ୍ଷମତାଧର ରାଜନୀତିଜ୍ଞ ଓ ଉଚ୍ଚ ପଦ ପଦବୀରେ ଥିବା ଲୋକମାନେ ବି କୁସଂସ୍କାରରୁ ମୁକ୍ତ ନୁହନ୍ତି । ମୋଟ ଉପରେ କହିଲେ, ସୀମିତ ସମ୍ବଳ, ସୀମିତ ଜ୍ଞାନ, ସୀମିତ ସମ୍ବେଦନ ଓ ସୀମିତ ବିଚାରବୋଧ ଜନଜୀବନକୁ ନାନା ଭାବରେ ଆକ୍ରାନ୍ତ କରି ରଖିଛି । ଅନଗ୍ରସର ରାଷ୍ଟ୍ରମାନଙ୍କରେ ଜୀବନର ଗୁଣାତ୍ମକ ମାନ ନ୍ୟୁନ ହୋଇ ରହିଛି ଓ ବହୁ ମଣିଷ ଏକ ସୁଖମୟ ନିରାପଦ ଜୀବନର ସମ୍ଭାବନା ଠାରୁ ବହୁ ଦୂରରେ ରହିଛନ୍ତି ।

ତେବେ ସଭ୍ୟତାର ଇତିହାସରୁ ଏହା ଏକ ଗଭୀର ଅନୁଭବ ଯେ ସକଳ ବିକାଶ, ପ୍ରଗତି ଓ ଗୁଣାତ୍ମକ ଜୀବନର ପରିବେଶ ମଣିଷର ପ୍ରୟାସରେ ହିଁ ସମ୍ଭବ ହୋଇଛି । କେତେକ ରାଷ୍ଟ୍ର ବିକଶିତ ହୋଇଛନ୍ତି ଓ ସେମାନଙ୍କର ବିକାଶ ପଛରେ ରାଜନୈତିକ ଘଟଣା ପ୍ରବାହ, ବିଜ୍ଞାନ ଓ ପ୍ରଯୁକ୍ତିର ବହୁଳ ପ୍ରୟୋଗ, ଲୋକ ଚରିତ୍ର, ସାମାଜିକ ପରିବେଶ, କର୍ମସଂସ୍କୃତି ଇତ୍ୟାଦିର କାରଣମାନ ରହିଛି । ବିକଶିତ ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ବାଳଶ୍ରମିକ ପ୍ରଥା, ଭିକ୍ଷାବୃତ୍ତି ଇତ୍ୟାଦି ବହୁ ପୂର୍ବରୁ ବିଲୋପ ହୋଇପାରିଛି । ପ୍ରତ୍ୟେକ ବ୍ୟକ୍ତି ପାଇଁ ଶିକ୍ଷା, ସ୍ୱାସ୍ଥ୍ୟସେବା, କର୍ମସଂସ୍ଥାନ, ନିରାପଦ ସାମାଜିକ ପରିବେଶ ଉପଲବ୍ଧ ହୋଇପାରୁଛି । ଏସବୁ କେଉଁ ଦିଅଁ ଦେବତାର ଆଶୀର୍ବାଦରୁ ସମ୍ଭବ ହୋଇ ନାହିଁ, ଏହା ସମ୍ଭବ ହୋଇଛି ମଣିଷର ଉଦ୍ୟମରୁ । ବିକଶିତ ରାଷ୍ଟ୍ରମାନଙ୍କରେ ଯେ ସମସ୍ୟା ନାହିଁ ତାହା ନୁହଁ, ତେବେ ସେହି ସମସ୍ୟା ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କ୍ଷେତ୍ରରେ ନାହିଁ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ପ୍ରଗତିର ଭିତ୍ତିଭୂମିକୁ ଉନ୍ନତ କରିବାରେ ଅନେକ ସହାୟକ ହୋଇଛି । ପ୍ରାକୃତିକ ପ୍ରତିକୂଳ ପରିବେଶର ସମ୍ମୁଖୀନ ହେବାକୁ ଜ୍ଞାନକୌଶଳର ବିକାଶ କରାଯାଇଛି । ସାମାଜିକ ଜୀବନକୁ କେତେ ଅଧିକ ନିରାପଦ, ପ୍ରୀତିପଦ ଓ ସୁଖମୟ କରାଯାଇ ପାରିବ ସେଥିପାଇଁ ମାନବିକ ପ୍ରୟାସ ଯଥେଷ୍ଟ ସଫଳତା ହାସଲ କରିପାରିଛି ।

ଆମ ଦେଶ ପରି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ବହୁ ଦାରିଦ୍ର୍ୟ ରହିଛି । ଏହି ଦାରିଦ୍ର୍ୟ ପଛରେ ଯାହା ରାଜନୈତିକ ଓ ଅର୍ଥନୈତିକ କାରଣ ଥାଉ ନା କାହିଁକି ଅନେକ ସାମାଜିକ ଓ ସାଂସ୍କୃତିକ କାରଣମାନ ରହିଛି । ଆମ ଦେଶ ପରି ବିକାଶଶୀଳ ରାଷ୍ଟ୍ରରେ ଯେଉଁ ସାମାଜିକ ଭେଦଭାବ ଓ ସାଂସ୍କୃତିକ ପରିବେଶ ରହିଛି ତାହା ଆମର ଅନଗ୍ରସରତା ପାଇଁ କେତେକାଂଶରେ ଦାୟୀ । ଆମ ଦେଶର ଦାରିଦ୍ର୍ୟ, ଅନଗ୍ରସରତା ଉପରେ ଯେଉଁ

ଅର୍ଥଶାସ୍ତ୍ରୀମାନେ ଉଚ୍ଚମାନର ନିବନ୍ଧମାନ ଲେଖିଛନ୍ତି ସେମାନେ ଆମ ସାମାଜିକ ପରିବେଶ ଓ ସାଂସ୍କୃତିକ ଭାବଧାରାକୁ ଏଥିପାଇଁ ଅନେକଟା ଦାୟୀ କରିଛନ୍ତି। ସମାଜର ଏକ ବୃହତ୍ତର ଗୋଷ୍ଠୀ କିପରି ନାନା ଶୋଷଣ, ଭେଦଭାବ ଓ ଅନ୍ୟାୟର ଶିକାର ହୋଇଛି ତାହାର ଚିତ୍ର ମର୍ମାନ୍ତିକ ମନେହୁଏ। ଏହାର ପରିଣାମ ସ୍ୱରୂପ ସମାଜ ପ୍ରତି ଏକ ନୈରାଶ୍ୟର ମନୋଭାବ ଓ ସ୍ଥଳ ବିଶେଷରେ ପ୍ରତିହିଂସାର ମାନସିକତା ସୃଷ୍ଟି ହୋଇଛି। ମାଓବାଦ ଏହି ପ୍ରତିହିଂସାର ଏକ ଅଭିବ୍ୟକ୍ତି ବୋଲି କେତେକ ସମାଜବିଜ୍ଞାନୀ ଏକ ମତ ଦେଇଥାନ୍ତି। ଗୋଷ୍ଠୀ ଗୋଷ୍ଠୀ ଭିତରେ ରହିଥିବା ଭେଦଭାବ ଏକ ଅବିଶ୍ୱାସର ପରିବେଶ ସୃଷ୍ଟି କରି ଆସିଛି। ସ୍ୱାଧୀନତାର ଦୀର୍ଘ ବର୍ଷ ପରେ ବି ଏକ ଭେଦଭାବରହିତ ଏକ ସମତାଭିତ୍ତିକ ସମାଜ ସମ୍ଭବ ହୋଇ ନାହିଁ। ସେହିପରି ଆମ ଜନଜୀବନରେ କୁସଂସ୍କାର, ଅହେତୁକ ବିଶ୍ୱାସ ଓ ଅବୈଜ୍ଞାନିକ ମନୋଭାବ ଯଥେଷ୍ଟ କାୟା ବିସ୍ତାର କରି ରହିଛି। ଯେଉଁମାନେ ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ଆଧାରିତ ହେତୁବାଦର ପ୍ରସାର କରୁଛନ୍ତି, ସେମାନେ ନାନା ବିରୋଧର ସମ୍ମୁଖୀନ ହେଉଛନ୍ତି। ନିକଟ ଅତୀତରେ ଏମ୍.ଏମ୍. କଲବର୍ଗି, ଗୋବିନ୍ଦ ପାନ୍‌ସାରେ ଓ ନରେନ୍ଦ୍ର ଦାଭୋଲକର ଆତତାୟୀଙ୍କ ଦ୍ୱାରା ନିହତ ହେବା ଆମ ରକ୍ଷଣଶୀଳ ସାଂପ୍ରଦାୟିକ ମାନସିକତାର ପ୍ରମାଣ ଦିଏ। ଏହି ପ୍ରତ୍ୟେକ ବ୍ୟକ୍ତି ଜଣେ ଜଣେ ବୁଦ୍ଧିଜୀବୀ, ସୁଲେଖକ, ସମାଜ ସଂସ୍କାରକ ଓ ମାନବବାଦୀ ହେତୁବାଦୀ ଭାବେ ଜାତୀୟ ଜୀବନରେ ପରିଚିତ ଥିଲେ। ଆମ ଜନଜୀବନରେ ଥିବା ନାନା ଅପସଂସ୍କୃତି, ଅହେତୁକ ବିଶ୍ୱାସ, ଭେଦଭାବଜନିତ ମାନସିକତା ଓ ଧାର୍ମିକ କୁସଂସ୍କାର ବିରୁଦ୍ଧରେ ସେମାନେ ସାମାଜିକ ସଚେତନତା ସୃଷ୍ଟି ପାଇଁ କଲମ ଚାଳନା କରୁଥିଲେ। ବୌଦ୍ଧିକ ଅସହିଷ୍ଣୁତା ଓ ରକ୍ଷଣଶୀଳ ଉଗ୍ରବାଦ କେଉଁ ସ୍ତରକୁ ଯାଇପାରେ ଏହା ତାହାର ବଳିଷ୍ଠ ଉଦାହରଣ।

ଆମ ଜନଜୀବନରେ ଆଧୁନିକ ବୈଜ୍ଞାନିକ ସାଧନକୁ କୁସଂସ୍କାର ପ୍ରସାରରେ ବିନିଯୋଗ ହେବାର ଚିତ୍ର ସ୍ପଷ୍ଟ ଭାବେ ଦୃଷ୍ଟିଗୋଚର ହୁଏ। ଲୋକମାନଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ପରିବର୍ତ୍ତେ ଭାଗ୍ୟ, କପାଳ ଲିଖନ, ପୂର୍ବ-ନିର୍ଦ୍ଦିଷ୍ଟବାଦ, ରାଶିଫଳ, ଜାତକଗଣନା, ଶୁଭ ଅଶୁଭ ମୁହୂର୍ତ୍ତ, ବାସ୍ତୁବିଦ୍ୟା ପରି ଅବୈଜ୍ଞାନିକ ବିଚାରର ପ୍ରସାର କରାଯାଏ। ପରିଣାମବଶତଃ ଲୋକମାନେ ନିଜର ପ୍ରତିକୂଳ ପରିସ୍ଥିତିର ମୁକାବିଲା ପାଇଁ ନିଜ ଉପରେ ବା ନିଜର ବୃହତ୍ତର ସାମାଜିକ ପରିବେଶ ଉପରେ ଆସ୍ଥା ସ୍ଥାପନ ନ କରି କଳ୍ପିତ ଦିଅଁ ଦେବତା, ତଥାକଥିତ ବାବା, ମାତାଙ୍କ ଉପରେ ଆସ୍ଥା ସ୍ଥାପନ କରନ୍ତି। ବାବା, ମାତାମାନେ ଲୋକଙ୍କର ମନସ୍ତତ୍ତ୍ୱକୁ ବୁଝିପାରି କିଛି ହାତ ସଫେଇ ଚମତ୍କାରିତା ଦେଖାଇ

ନିଜ ନିଜର ସାମ୍ରାଜ୍ୟ ବିସ୍ତାର କରିବା ଆମ ଅପସାଂସ୍କୃତିକ ସ୍ଥିତିର ପରିଚୟ ଦେଇଥାଏ। ସେହିପରି ସାଧୁତା, ଉଚ୍ଚ କର୍ମସଂସ୍କୃତି, ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ଓ ନାଗରିକ ଶୃଙ୍ଖଳାଜ୍ଞାନ ପ୍ରତି ଆମ ସମାଜରେ ଉଦାସୀନତା ରହିବା ଅଥଚ ଧାର୍ମିକ କର୍ମକାଣ୍ଡ ପ୍ରତି ଅହେତୁକ ଆଗ୍ରହ ପ୍ରକାଶ ପାଇବା ଆମ ଅହେତୁକ ଜୀବନଦୃଷ୍ଟିର ସ୍ୱାକ୍ଷର ବହନ କରେ। ଏହି ଆବେଗ ଦ୍ୱାରା ପରିଚାଳିତ ଜନଗଣ ବର୍ଷସାରା ନାନା ଧାର୍ମିକ ପୂଜା ପାର୍ବଣରେ ମସଗୁଲ ରହିବା ଆମ ଅନଗ୍ରସରତାର ଏକ ପ୍ରମୁଖ କାରଣ ହୋଇଥାଏ। ଲୋକଙ୍କର ଏହି ଭାବାବେଗକୁ ନେଇ ରାଜନୈତିକ ପ୍ରକ୍ରିୟା ବି ପରିଚାଳିତ ହୋଇଥାଏ। ଆମ ରାଷ୍ଟ୍ର ଏ ଯୁଗର ଏକ ସାର୍ବଜନୀନ ମୂଲ୍ୟବୋଧ 'ଧର୍ମନିରପେକ୍ଷତା'କୁ ଆମର ଅଭିଳଷିତ ଲକ୍ଷ୍ୟ ଭାବରେ ଗ୍ରହଣ କରିଥିଲେ ବି ଆମ ସାମାଜିକ ପରିବେଶ ଏହା ଠାରୁ ବହୁ ଦୂରରେ ରହିବା ମନେହୁଏ। ଆହୁରି ବିଡମ୍ବନାର ବିଷୟ ଆମର ଶିକ୍ଷାନୁଷ୍ଠାନ, ସରକାରୀ କାର୍ଯ୍ୟାଳୟ ବି ଧର୍ମନିରପେକ୍ଷତାକୁ ପାଳନ କରେ ନାହିଁ। ଜାତି, ଧର୍ମ, ଆଞ୍ଚଳିକତା ଆଧାରରେ ସମାଜ ଭାଗ ଭାଗ ହୋଇ ରହିବା ଓ ପରସ୍ପର ଭିତରେ ସୌହାର୍ଦ୍ଦ୍ୟ ପରିବର୍ତ୍ତେ ବିଦ୍ୱେଷର ବାତାବରଣ ସୃଷ୍ଟି ହେବା ଆମ ଅନଗ୍ରସରତାର ସୂଚନା ଦିଏ। ଏହି ସବୁ ସଙ୍କଟରୁ ସମାଜ ମୁକ୍ତ ନ ହେଲେ ଆମର ବିକାଶ ବାଧାପ୍ରାପ୍ତ ହେବା ସ୍ୱତଃସିଦ୍ଧ ମନେହୁଏ। ଏହି ସ୍ଥିତିରେ କିପରି ଏକ ସାଂସ୍କୃତିକ ଜାଗରଣ ଆସିପାରିବ ତାହା ଚିନ୍ତାର ବିଷୟ। ଏକ ସାଂସ୍କୃତିକ ନବଜାଗରଣ ଦ୍ୱାରା ମାନବବାଦ, ହେତୁବାଦ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଉଚ୍ଚ କର୍ମସଂସ୍କୃତି, ନାଗରିକ ଶୃଙ୍ଖଳାବୋଧ ଓ ସମତାର ଭାବ ସୃଷ୍ଟି କରାଯାଇ ପାରିବ।

(ପ୍ରଗତିବାଦୀ, ୦୩.୧୦.୧୫)

# ସଭ୍ୟତାର ଉତ୍ତରଣ

ସଭ୍ୟତାର କ୍ରମବିକାଶର ଏକ ସୁଦୀର୍ଘ କାହାଣୀ ରହିଛି । ପ୍ରାଗ୍‌ଐତିହାସିକ ସମୟକୁ ବାଦ୍ ଦେଲେ ଅନ୍ତତଃ ଅଢ଼େଇ ହଜାର ବର୍ଷର ଏକ ଧାରାବାହିକ ଇତିହାସ ବିଷୟରେ ଅନେକ ତଥ୍ୟ ଜଣା ପଡିଥିବା ମନେହୁଏ । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଉଦ୍‌ଭବ ହୋଇଥିବା ବିଭିନ୍ନ ସଭ୍ୟତା, ଧର୍ମଧାରା, ସାମାଜିକ ବିକାଶ, ଜନଗୋଷ୍ଠୀ, ଭାଷା ଓ ସାହିତ୍ୟ, ସାଂସ୍କୃତିକ ଭାବଧାରା, ଦାର୍ଶନିକ ବିଚାର ଇତ୍ୟାଦି ସମ୍ବନ୍ଧରେ ଐତିହାସିକମାନେ ନାନା ତଥ୍ୟ ଓ ରହସ୍ୟକୁ ବୈଜ୍ଞାନିକ ପଦ୍ଧତିରେ ବ୍ୟାଖ୍ୟା କରିଥିବା ଜଣାଯାଏ । କେତେ କେତେ ପ୍ରାକୃତିକ ବିପର୍ଯ୍ୟୟ, ଯୁଦ୍ଧ, ମାନବକୃତ ବିଭୀଷିକା ଭିତରେ ବି ସଭ୍ୟତାର କ୍ରମବିକାଶ ନିରବଚ୍ଛିନ୍ନ ଭାବେ ଅଗ୍ରଗତି କରି ଆସିଛି । ସାମଗ୍ରିକ ଭାବେ ଦେଖିଲେ, ମାନବ ସଭ୍ୟତା ସଂପ୍ରତି ବିକାଶର ଏକ ଉତ୍ତୁଙ୍ଗ ଶିଖରକୁ ଯାଇଥିବା ମନେହୁଏ । ଏହି ଦୁଇ ଶହ ବର୍ଷ ଭିତରେ ଜ୍ଞାନବିଜ୍ଞାନ, ପ୍ରଯୁକ୍ତି, ଜୀବନଶୈଳୀରେ ଯେଉଁ ପରିବର୍ତ୍ତନମାନ ସମ୍ଭବ ହୋଇଛି ତାହା କଳ୍ପନାତୀତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ଏବେ ବି କେତେକ ଦେଶରେ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, କୁସଂସ୍କାର, ସାମାଜିକ ଭେଦଭାବ ପରି ବହୁ ସମସ୍ୟା ରହିଛି । ଏସବୁ ସତ୍ତ୍ୱେ ପୃଥିବୀର ବିକଶିତ ଦେଶମାନଙ୍କରେ ଜୀବନର ଭୌତିକ ଓ ନୈତିକ ମାନ ବହୁ ଉନ୍ନତ ସ୍ଥିତିକୁ ଆସି ପାରିଛି । ସମଗ୍ର ପୃଥିବୀରେ ଏକ ଆନ୍ତର୍ଜାତିକ ମନୋଭାବ ଓ ବିଶ୍ୱଦୃଷ୍ଟିର ଭାବନା ଧୀରେ ଧୀରେ ସୁଦୃଢ଼ ଭିତ୍ତି ନେବାକୁ ଯାଉଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଶ୍ୱ ଜନମାନସକୁ ମାନବିକତାର ଡୋରିରେ ଯୋଡ଼ିବାକୁ ସମର୍ଥ ହେବାରେ ଲାଗିଛି ଯାହା ଏକ ଶତାବ୍ଦୀ ତଳେ ଅଚିନ୍ତନୀୟ ଥିଲା । ମାନବ ସଭ୍ୟତାର ବିକାଶ ଓ ସାଂସ୍କୃତିକ ଉତ୍ତରଣକୁ ବହୁ ଦିଗରୁ ବ୍ୟାଖ୍ୟା କରାଯାଇପାରେ । ତେବେ ଏ କ୍ଷେତ୍ରରେ ଦୁଇଟି ଧାରା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଏହି ଦୁଇଟି ଧାରାକୁ ଭୌତିକ ଓ ନୈତିକ ବିକାଶ ବୋଲି ଅଭିହିତ କରାଯାଏ । ଭୌତିକ ବିକାଶ ପଶ୍ଚାତରେ ଆଧୁନିକ ବିଜ୍ଞାନ ଓ ବିଜ୍ଞାନ-ଆଧାରିତ ପ୍ରଯୁକ୍ତିର ଯଥେଷ୍ଟ ପ୍ରଭାବ ରହିଥିବା ଜଣାଯାଏ । ସପ୍ତଦଶ ଶତାବ୍ଦୀରୁ ଆଧୁନିକ ବିଜ୍ଞାନର ଯୁଗ ଆରମ୍ଭ ହେବା ଓ ଏହା ବିଶ୍ୱବ୍ରହ୍ମାଣ୍ଡ ଓ ଆମର ପ୍ରାକୃତିକ ପରିବେଶକୁ କ୍ରମୋନ୍ନତି ଧାରାରେ ବ୍ୟାଖ୍ୟା କରିବା ଦ୍ୱାରା ବହୁ ରହସ୍ୟ ଉନ୍ମୋଚିତ ହୋଇପାରିଲା । ବିଜ୍ଞାନର ଯୁଗ ଆରମ୍ଭ ହେବାର

ଦୁଇ ଶହ ବର୍ଷ ପରେ ଆଧୁନିକ ପ୍ରଯୁକ୍ତିର ଯୁଗ ଆରମ୍ଭ ହେଲା। ନାନା ଉଦ୍‌ଭାବନ, ଆବିଷ୍କାର, ନୂତନ ପ୍ରଯୁକ୍ତି ଆଧାରରେ ନାନା ଶିଳ୍ପ ଓ କଳକାରଖାନା ପ୍ରତିଷ୍ଠା, ଗମନାଗମନ କ୍ଷେତ୍ରରେ କଳ୍ପନାତୀତ ଅଭିବୃଦ୍ଧି, ରୋଗମାନଙ୍କୁ ନିୟନ୍ତ୍ରଣ କରିବା କ୍ଷେତ୍ରରେ ସାମର୍ଥ୍ୟ ଇତ୍ୟାଦି ଯୋଗୁଁ ଭୌତିକ ବିକାଶ ତ୍ୱରାନ୍ୱିତ ହୋଇଥିବା ଜଣାଯାଏ। ବଞ୍ଚିବାର ମାନରେ ଏହି ଯେଉଁ ସଫଳତାମାନ ହାସଲ ହୋଇପାରିଛି, ତାହା ପଶ୍ଚାତରେ ବୈଜ୍ଞାନିକ ଜ୍ଞାନ ଓ ତାହାର ପ୍ରୟୋଗାତ୍ମକ ଦିଗର ଯଥେଷ୍ଟ ଅବଦାନ ଥିବା ମନେହୁଏ।

ବିକାଶର ଅନ୍ୟ ଦିଗଟି ହେଉଛି ନୈତିକ ବିଚାରବୋଧ ଜନିତ ସାଂସ୍କୃତିକ ଭାବଧାରା। ବିଶ୍ୱ ଚିନ୍ତାମାନସରେ ଏହା କ୍ରମବର୍ଦ୍ଧିଷ୍ଣୁ ଭାବେ ସ୍ୱୀକୃତ ହେବାରେ ଲାଗିଛି ଯେ ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି। ପ୍ରତ୍ୟେକ ବ୍ୟକ୍ତି ସମ୍ମାନ ଓ ମର୍ଯ୍ୟାଦାର ସହ ଜୀବନ ଅତିବାହିତ କରିବା ତାର ଏକ ମୌଳିକ ଅଧିକାର। ସବୁ ମଣିଷ ଶିଶୁ ଜନ୍ମରୁ ସମାନ ଓ ସମାନ ମର୍ଯ୍ୟାଦା ନେଇ ବଞ୍ଚିବା ଓ ସମାନ ଅଧିକାର ଉପଭୋଗ କରିବା ଆବଶ୍ୟକ। "ସବୁ ମଣିଷଙ୍କର ଜୀବନ-ମୂଲ୍ୟ ସମାନ" ଏହି ଭାବଧାରା ସଭ୍ୟତାର ଇତିହାସରେ ଏକ କ୍ରାନ୍ତିକାରୀ ଭାବନା କହିଲେ ଅତ୍ୟୁକ୍ତି ହେବ ନାହିଁ। ହୁଏତ ପୃଥିବୀର କେତେକ ସଂସ୍କୃତିରେ, ଧର୍ମଗ୍ରନ୍ଥରେ ମାନବବାଦୀ ଜୀବନବୋଧର କିଛି ମହତ୍ତର ବାର୍ତ୍ତା ରହିଥିବା ପରିଲକ୍ଷିତ ହୁଏ। ତେବେ ବିଡମ୍ୱନାର ବିଷୟ ନାନା ଯୁଦ୍ଧ, ବିଭୀଷିକା, ସନ୍ତ୍ରାସବାଦ, ଦୁର୍ବଳ ଜନଗୋଷ୍ଠୀ ଉପରେ ଅତ୍ୟାଚାର, ସାମ୍ରାଜ୍ୟବାଦୀ ଶୋଷଣ ମାନବ ଜାତିର ଇତିହାସକୁ ନାନା ଭାବରେ କଳଙ୍କିତ କରିଥିବା ଦେଖାଯାଏ। ସେହିପରି ବିଭିନ୍ନ ସଭ୍ୟତାରେ ଓ ଜନଗୋଷ୍ଠୀରେ ମଣିଷ ମଣିଷ ଭିତରେ ଯେଉଁ ଭେଦଭାବର ପ୍ରାଚୀରମାନ ସୃଷ୍ଟି ହୋଇଛି, ତାହା ଅମାନବିକତାର ବହୁ ଦୁଃଖଦାୟକ ଚିତ୍ର ଦେଇଥାଏ। ବିଜ୍ଞାନର ବିକାଶ ପର୍ବ ଯେଉଁ ଯୁଗରୁ ଏକ ଦୃଢ଼ ଭିତ୍ତି ନେବା ଜଣାଯାଏ, ସେହି ସମୟରୁ 'ମାନବବାଦ'ର ଏକ ପ୍ରଭାବଶାଳୀ ବୌଦ୍ଧିକ ଧାରା ସୃଷ୍ଟି ହେବା ଜଣାଯାଏ। ମାନବବାଦର ବିକାଶ ମଧ୍ୟ ଦେଇ ନାନା ସାମାଜିକ ପରିବର୍ତ୍ତନର ସୂତ୍ରପାତ ହୁଏ। ରାଜତନ୍ତ୍ର, ସାମନ୍ତବାଦ, ସାମ୍ରାଜ୍ୟବାଦ ବିରୁଦ୍ଧରେ ଆଲୋଡ଼ନମାନ ପୃଥିବୀରେ ମୁଣ୍ଡ ଟେକେ। ସେହିପରି ନାନା ଭେଦଭାବ ବିରୁଦ୍ଧରେ ବୈଚାରିକ ସଂଗ୍ରାମ ଆରମ୍ଭ ହୁଏ। ଲିଙ୍ଗଭେଦ, ରଙ୍ଗଭେଦ, ଜାତିଭେଦ ଇତ୍ୟାଦିକୁ ଗୋଟିଏ ସମୟରେ ଯେପରି ଧାର୍ମିକ ସ୍ୱୀକୃତି ଦିଆଯାଇ ସମାଜରେ ସୁଦୃଢ଼ କରାଯାଇଥିଲା ତାହା ଯେ ମାନବିକତା ବିରୋଧୀ ଏହା ମଧ୍ୟ ସାହିତ୍ୟ, ଦର୍ଶନ ଓ ସମାଜଶାସ୍ତ୍ର ଦେଇ ବିଚାର ପରିସରରେ ଦୃଢ଼ ଭିତ୍ତି ନିଏ। ଶିକ୍ଷା ସାର୍ବଜନୀନ ହୁଏ। ସମାଜବାଦର ଆଲୋଡ଼ନ ଆସେ। ପ୍ରତ୍ୟେକ ଜନମଙ୍ଗଳକାରୀ

ରାଷ୍ଟ୍ରରେ ସାର୍ବଜନୀନ ଶିକ୍ଷା, ସ୍ୱାସ୍ଥ୍ୟସେବା ଓ ପ୍ରତ୍ୟେକ ନାଗରିକ ପାଇଁ ସ୍ୱାବଲମ୍ବନଶୀଳ ପରିବେଶ ପାଇଁ ସଂପୃକ୍ତି ପ୍ରକାଶ ପାଏ। ସାମାଜିକ ବିକାଶ ପ୍ରକ୍ରିୟାକୁ ଏସବୁ ସକାରାତ୍ମକ ଭାବେ ପ୍ରଭାବିତ କରେ।

ୟୁରୋପରେ ନବଜାଗରଣର ପରିଣାମରୁ ଯେଉଁ ସାଂସ୍କୃତିକ ଆଲୋଡ଼ନଟି ସୃଷ୍ଟି ହୋଇଥିଲା ଓ ଯାହା ଦ୍ୱାରା ବୈଜ୍ଞାନିକ ଚିନ୍ତା ଓ ମାନବବାଦ ପ୍ରତିଷ୍ଠାର ପରିବେଶ ଆସିଲା ତିନି ଶହ ବର୍ଷ ପରେ ତାହା ସଭ୍ୟତାରେ ନୂଆ ଦିଗନ୍ତ ସୃଷ୍ଟି କଲା। ମଧ୍ୟଯୁଗୀୟ ବର୍ବରତା, ରାଜତନ୍ତ୍ର, ସାମନ୍ତବାଦ ଓ ସାମ୍ରାଜ୍ୟବାଦୀ ଶୋଷଣରୁ ମାନବ ସମାଜ ଧୀରେ ଧୀରେ ମୁକ୍ତ ହେବାକୁ ଲାଗିଲା। ସେହିପରି ମଧ୍ୟଯୁଗୀୟ ମାନସିକତାରେ ଧର୍ମର ଯେଉଁ ଅଖଣ୍ଡ ପ୍ରଭାବ ରହିଥିଲା ଓ ପାରଲୌକିକ ଜୀବନଦୃଷ୍ଟିକୁ ଯେପରି ମହିମା ମଣ୍ଡିତ କରାଯାଉଥିଲା ସେଥିରୁ ମଧ୍ୟ ମାନବ ସମାଜ ମୁକ୍ତ ହେବାକୁ ଲାଗିଲା। ଈଶ୍ୱର ଓ ତତ୍‌ସଂକ୍ରାନ୍ତୀୟ ଅତୀନ୍ଦ୍ରିୟ ତତ୍ତ୍ୱମାନ ଦାର୍ଶନିକ ବିଚାର ପୃଷ୍ଠଭୂମିରେ କେବଳ କାଳ୍ପନିକ କାହାଣୀ ବୋଲି ଗୃହୀତ ହେଲା। ବୈଜ୍ଞାନିକ ପ୍ରଣାଳୀ ଓ ତର୍କସମ୍ମତ ବୁଦ୍ଧିବାଦ ଧାର୍ମିକ କୁସଂସ୍କାର, ମୌଳବାଦୀ ବିଚାର ଓ ପାରଲୌକିକ ଜୀବନଦୃଷ୍ଟିର ପ୍ରଭାବରୁ ମାନବ ସମାଜକୁ ମୁକ୍ତ କରିବାକୁ ଲାଗିଲା। ଗୋଟିଏ ପଟେ ବୈଜ୍ଞାନିକ ଅନୁଶୀଳନ ମନୁଷ୍ୟକୁ କ୍ଷମତାଶାଳୀ କରିବାରେ ସହାୟକ ହେଲା ଓ ଆଉ ଗୋଟିଏ ପଟେ ମାନବବାଦୀ ଜୀବନଦୃଷ୍ଟି ମାନବିକ ଅଧିକାର, ସାମାଜିକ ନ୍ୟାୟ ଓ ସମତାର ବାର୍ତ୍ତା ପ୍ରସାର ଦିଗରେ ପ୍ରମୁଖ ଭୂମିକା ନେଲା। ପରିଣାମତଃ ମାନବିକ ମୂଲ୍ୟବୋଧ କ୍ଷେତ୍ରରେ ଯେଉଁ ବୈପ୍ଳବିକ ବିଚାରବୋଧର ଅବତାରଣା ହେଲା, ତାହାର ପ୍ରତିଫଳନ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ଅଭିବ୍ୟକ୍ତ ହେବା ମନେହୁଏ। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ମାନବବାଦର ଯେଉଁ ଅବକ୍ଷୟ ସୃଷ୍ଟି ହୋଇଥିଲା ଓ ଯେପରି ହିଂସା, ପ୍ରତିହିଂସା ଓ ବର୍ବରତାର ପରିବେଶ ଆସିଥିଲା ତାହା ବିରୁଦ୍ଧରେ ସାରା ବିଶ୍ୱର ଦାର୍ଶନିକ, ହେତୁବାଦୀ, ରାଷ୍ଟ୍ରନୀତିଜ୍ଞ ଓ ମାନବବାଦୀ ଚିନ୍ତାନାୟକଗଣ ଏକ ବୈଚାରିକ କ୍ରାନ୍ତିର ସୂତ୍ରପାତ କରାଇଲେ। ବିଶ୍ୱରେ ଜାତିସଂଘର ପ୍ରତିଷ୍ଠା ଓ ଜାତିସଂଘ ବିଶ୍ୱ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ନିଜର ସଂପୃକ୍ତି ବ୍ୟକ୍ତ କରିବା ସଭ୍ୟତାର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା। ଏହା ସହିତ ପୃଥିବୀରୁ ଦାରିଦ୍ର୍ୟ, ଅଶିକ୍ଷା, ମହାମାରୀ ତଥା ଅମାନବିକ ପରିବେଶର ମୂଳୋତ୍ପାଟନ ପାଇଁ ଯେଉଁ ଆନ୍ତର୍ଜାତିକ ଭାବଧାରା ସୃଷ୍ଟି ହେବାରେ ଲାଗିଛି ତାହା ମଧ୍ୟ ମାନବଜାତିର ସାଂସ୍କୃତିକ ଉତ୍ତରଣର ସୂଚନା ଦେଇଥାଏ।

ସଭ୍ୟତାର ଇତିହାସରେ କେତେ ଯୁଦ୍ଧ, ରକ୍ତପାତ, ସାମନ୍ତବାଦୀ ଶୋଷଣ, ଦାସତ୍ୱର ପରିବେଶ ଓ ନାନା ଭେଦଭାବର ଅମାନବିକ କାହାଣୀ ଦେଖିବାକୁ ମିଳେ। ତେବେ ଏସବୁର ଅବସାନ ପାଇଁ ସାରା ବିଶ୍ୱରେ ଯେ ଏକ ବୌଦ୍ଧିକ ବାତାବରଣ ସୃଷ୍ଟି ହେବାରେ ଲାଗିଛି ଓ ମାନବବାଦୀ ବିଚାରବୋଧ ଦେଇ ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ବିଶ୍ୱ ଭ୍ରାତୃତ୍ୱର ମାନସିକତା ବ୍ୟାପକ ହେବାରେ ଲାଗିଛି ଏହା ନୈତିକ ବିକାଶର ସ୍ୱାକ୍ଷର ବହନ କରେ। ଆମ ସଂସାରରେ ଓ ବିଭିନ୍ନ ସମାଜରେ ଯେତେ ସବୁ ମନ୍ଦ, ବର୍ବରତା ଓ ଅମାନବିକତାର ଯାହା ସବୁ ପରିବେଶ ରହିଛି ତାହାର ଦୂରୀକରଣ ପାଇଁ ଚେତନା ସ୍ତରରେ ଯେ ଆଲୋଡ଼ନ ଆସିବା ଆରମ୍ଭ ହୋଇଛି, ତାହା ଏକ ମହତର ଭବିଷ୍ୟତର ସୂଚନା ଦିଏ। ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ସମତା ଓ ଭ୍ରାତୃତ୍ୱଭାବ ବିଶ୍ୱ ସ୍ତରରେ ଯେ ସୁଦୃଢ଼ ଭିତ୍ତି ନେବାରେ ଲାଗିଛି ତାହା ଏକ ସୁନ୍ଦର ପୃଥିବୀର ଚିତ୍ର ପ୍ରଦାନ କରେ।

(ପ୍ରଗତିବାଦୀ, ୦୮.୧୦.୧୫)

# ଅସ୍ୱଚ୍ଛ ମନ, ଅବକ୍ଷୟ ସଂସ୍କୃତି

ମହାତ୍ମା ଗାନ୍ଧୀଙ୍କ ଶହେ ପଚାଶତମ ଜୟନ୍ତୀ ପାଳନ ବେଳକୁ ଏକ ସୁସ୍ଥ ଓ ନିର୍ମଳ ପରିବେଶ ସୃଷ୍ଟି କରିବାକୁ ଦେଶରେ ଆରମ୍ଭ ହୋଇଥିବା "ସ୍ୱଚ୍ଛ ଭାରତ ଅଭିଯାନ" ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ। ପ୍ରଧାନମନ୍ତ୍ରୀ ଏହିପରି ଏକ ଅଭିଯାନ ଆରମ୍ଭ କରି ଦେଶବାସୀଙ୍କ ସମ୍ମୁଖରେ ଏକ ସୁନ୍ଦର ପ୍ରସ୍ତାବ ରଖିଛନ୍ତି। ନିକଟରେ ମହାମାନ୍ୟ ରାଷ୍ଟ୍ରପତି ପାରିବେଶିକ ସ୍ୱଚ୍ଛତା ସହ ମନର ମଇଳା ଦୂର ହେବାକୁ ପ୍ରାଧାନ୍ୟ ଦେଇଛନ୍ତି। ସମ୍ଭବତଃ ଦେଶରେ ଘଟୁଥିବା ହିଂସା, ସାଂପ୍ରଦାୟିକ ବିଦ୍ୱେଷ, ଭେଦଭାବ ଜନିତ ମାନସିକତା ଓ ଅସହିଷ୍ଣୁତା ପୃଷ୍ଠଭୂମିରେ ରାଷ୍ଟ୍ରପତି ନିଜର କ୍ଷୋଭ ପ୍ରକାଶ କରିବାକୁ ଯାଇ ମାନସିକ ସ୍ୱଚ୍ଛତା ପାଇଁ ଦେଶବାସୀଙ୍କୁ ନିବେଦନ କରିଛନ୍ତି। ଏକ ସୁନ୍ଦର ସମାଜ ଗଠନ ଦିଗରେ ଏ ଉଭୟ କଥାର ଯଥେଷ୍ଟ ମୂଲ୍ୟ ରହିଛି। ବାହ୍ୟ ସ୍ୱଚ୍ଛତା ସାଧାରଣ ପ୍ରତ୍ୟକ୍ଷ ଭିତରେ ଦେଖିହୁଏ। ରାସ୍ତାଘାଟ, ସର୍ବସାଧାରଣ ଗମନାଗମନ ସ୍ଥାନ, ସରକାରୀ କାର୍ଯ୍ୟାଳୟ ଇତ୍ୟାଦିକୁ ପରିଛନ୍ନ ରଖିବା ସର୍ବସାଧାରଣଙ୍କର କର୍ତ୍ତବ୍ୟ। ଏଥିପାଇଁ ଜନମାନସରେ ସଚେତନତା, ରୁଚିବୋଧ, ସୌନ୍ଦର୍ଯ୍ୟ-ଲିପ୍ସା ଓ ନାଗରିକ ଶୃଙ୍ଖଳାବୋଧ ରହିବା ଆବଶ୍ୟକ। ତେବେ ମାନସିକ ସ୍ୱଚ୍ଛତା ଏକ ଜଟିଳ ପ୍ରସଙ୍ଗ କାରଣ ଏହା ପର୍ଯ୍ୟବେକ୍ଷଣୀୟ ବସ୍ତୁ ନୁହେଁ। ସାମାଜିକ ଜୀବନ ପ୍ରବାହରେ ଯଦି ବିଚାରଶୀଳତା, ସହନଶୀଳତା, ଉଦାରତା, ସମ୍ବେଦନଶୀଳତା ଓ ମାନବିକତା ଅଧିକ ପ୍ରକାଶିତ ହେଉଥାଏ ତେବେ ତାହା ଉନ୍ନତ ଜୀବନଦୃଷ୍ଟିର ଉପଲବ୍ଧି ଦେଉଥାଏ। ଅପରପକ୍ଷରେ ଯଦି ଅହେତୁକ ବିଚାରହୀନତା, ଅବୈଜ୍ଞାନିକ ମାନସିକତା, ଭେଦଭାବ ଜନିତ ଭାବଧାରା ଓ ଅମାନବିକ କାର୍ଯ୍ୟକଳାପ ସମାଜରେ ପ୍ରତିଦିନ ଘଟୁଥାଏ ଓ ଜନଜୀବନରେ ସ୍ୱୀକୃତ ହେଉଥାଏ ତେବେ ତାହା ଏକ ଅସୁସ୍ଥ ପରିବେଶର ଚିତ୍ର ଆଣୁଥାଏ।

କେଉଁ ସମାଜ ମାନସିକ ସ୍ତରରେ ସ୍ୱଚ୍ଛ ବା ଅସ୍ୱଚ୍ଛ ତାହାର ଏକ ସାର୍ବଜନୀନ ମାନଦଣ୍ଡ ନିରୂପଣ କରିବା ସହଜସାଧ ନୁହେଁ। ମାନସିକ ସ୍ୱଚ୍ଛତା ବା ମାନସିକ ଅସ୍ୱଚ୍ଛତା ଆପେକ୍ଷିକ ମନେହୁଏ। ଏକ ସମାଜ ଅଧିକ ସ୍ୱଚ୍ଛ ପରିବେଶ ତୁଳନାରେ ଅସ୍ୱଚ୍ଛ ଓ ଅଧିକ ଅସ୍ୱଚ୍ଛ ପରିବେଶ ତୁଳନାରେ ସ୍ୱଚ୍ଛ। ମାନସିକ ସ୍ୱଚ୍ଛତା ବା ଅସ୍ୱଚ୍ଛତା ନିରଙ୍କୁଶ ଭାବନା

ନୁହେଁ। ଏକ ସମାଜ ବି ନିରଙ୍କୁଶ ଭାବେ ପ୍ରଗତିଶୀଳ ବା କ୍ଷୟଶୀଳ ନୁହେଁ। ଏକ ନିର୍ଦ୍ଦିଷ୍ଟ ସମାଜ ଅଧିକ ପ୍ରଗତିଶୀଳ ସମାଜ ତୁଳନାରେ କ୍ଷୟଶୀଳ ଓ ତା' ଠାରୁ ଅଧିକ କ୍ଷୟଶୀଳ ସମାଜ ତୁଳନାରେ ଅଧିକ ପ୍ରଗତିଶୀଳ ବିବେଚିତ ହୋଇଥାଏ।

ଏହା ଏକ ସାଧାରଣ ଉପଲବ୍ଧି ଯେ ସମାଜରେ କେତେକ ପରସ୍ପର ବିରୋଧୀ ଭାବଧାରା ଦେଖାଯାଏ। ସମାଜରେ କେତେକ ବ୍ୟକ୍ତି କୁସଂସ୍କାରରେ ବିଶ୍ୱାସ କରନ୍ତି, ଅହେତୁକ ଜୀବନଦୃଷ୍ଟି ପୋଷଣ କରନ୍ତି ଓ ମୁକ୍ତ ମନ ପୋଷଣ କରିପାରନ୍ତି ନାହିଁ। ଶିକ୍ଷିତ ହେଲେ ମଧ୍ୟ ତାଙ୍କ ବାସ୍ତବ ଜୀବନଧାରାରେ ସବୁ କ୍ଷେତ୍ରରେ ବିଚାରଶୀଳତା ପ୍ରକାଶ ପାଏ ନାହିଁ। ଏପରିକି ବିଜ୍ଞାନରେ ଉଚ୍ଚ ଡିଗ୍ରୀ ପ୍ରାପ୍ତ କେତେକ ବ୍ୟକ୍ତି ବାସ୍ତବ ଜୀବନରେ ନାନା ଅହେତୁକ ଭାବଧାରାରେ ଆସ୍ଥା ସ୍ଥାପନ କରନ୍ତି। ସମାଜରେ କିଛି ମୁଷ୍ଟିମେୟ ବ୍ୟକ୍ତି ବିଜ୍ଞାନ ପଢି ନାହାନ୍ତି ବା ସେପରି ଉଚ୍ଚଶିକ୍ଷିତ ନୁହନ୍ତି ଅଥଚ ନିଜର ଜୀବନଦୃଷ୍ଟିରେ ବୈଜ୍ଞାନିକ ମନୋଭାବ ପୋଷଣ କରନ୍ତି। ସେହିପରି ସମାଜର କେତେକ ସାଧାରଣ ମଣିଷଙ୍କ ପାଖରେ ଉଚ୍ଚ ମାନବିକତା, ଉଦାରତା ଓ ସମ୍ବେଦନଶୀଳତା ଦେଖିବାକୁ ମିଳେ ଅଥଚ ସମାଜର ପ୍ରତିଷ୍ଠିତ ଲୋକମାନଙ୍କ ପାଖରେ ଅନୈତିକତା, କ୍ରୂରତା ଓ ଅମାନବିକତା ଦୃଷ୍ଟିଗୋଚର ହୁଏ। ଶିକ୍ଷା ଅଶିକ୍ଷା ନିର୍ବିଶେଷରେ ବ୍ୟକ୍ତିମାନେ ଭଲ ବା ମନ୍ଦ ହୋଇପାରନ୍ତି।

ବ୍ୟକ୍ତିମାନଙ୍କର ଜୀବନଧାରାକୁ ପରିବାର, ଶିକ୍ଷାୟତନ, ସାମାଜିକ ପରିବେଶ ଓ ନିଜସ୍ୱ ଆବେଗ ବହୁ ଭାବରେ ପ୍ରଭାବିତ କରିଥାଏ। ପ୍ରତ୍ୟେକ ବ୍ୟକ୍ତି ଭିତରେ ଆବେଗ ଯେପରି ରହିଛି ସେହିପରି ବିଚାରଶୀଳତା ବି ରହିଛି। ବ୍ୟକ୍ତିର ଆବେଗିକ ସ୍ତର ଶୃଙ୍ଖଳିତ ହୋଇପାରେ କିମ୍ବା ଅସାମାଜିକ ହୋଇପାରେ। ତେବେ ବ୍ୟକ୍ତି ଭିତରେ ଥିବା ଆବେଗିକ ସ୍ତରକୁ ଉନ୍ନତ, ଶୃଙ୍ଖଳିତ, ମାନବିକ ଓ ଅଧିକ ସାମାଜିକ କରିବାରେ ତା'ର ପରିବେଶ, ଶିକ୍ଷା ଓ ଜୀବନର ଘଟଣା ପ୍ରବାହର ଗଭୀର ପ୍ରଭାବ ରହିଥାଏ। ଆବେଗିକ ସ୍ତର ଯେତେ ଶୃଙ୍ଖଳିତ ହୁଏ, ବ୍ୟକ୍ତି ସେତେ ଅଧିକ ସାମାଜିକ ହୁଏ। ସମାଜରେ କିଛି ବ୍ୟକ୍ତି ବିଶୃଙ୍ଖଳିତ ବା ଅସାମାଜିକ ହେବା ପଶ୍ଚାତରେ ବହୁବିଧ କାରଣ ରହିପାରେ। ତେବେ ସମାଜର ସାଧାରଣ ସ୍ୱାସ୍ଥ୍ୟକୁ ଉନ୍ନତ, ମାନବିକ ଓ ଶୃଙ୍ଖଳିତ ରଖିବାକୁ ହେଲେ ଏକ ସୁସ୍ଥ ପରିବେଶ ଅବଶ୍ୟମ୍ଭାବୀ ହୋଇଥାଏ। ସମାଜର ସାଧାରଣ ଜୀବନ ପ୍ରବାହରେ ଯଦି ପାରଲୌକିକ ବିଶ୍ୱାସ, ଧାର୍ମିକ ଆବେଗ, ଅବୈଜ୍ଞାନିକ ଭାବଧାରାର ପ୍ରାବଲ୍ୟ ରହେ ତେବେ ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇପାରେ ନାହିଁ। ବରଂ ସାମାଜିକ ଜୀବନ ପ୍ରବାହରେ ଯଦି ଲୋକମାନେ ବୃହତ୍ତର

ସମାଜ ଉପରେ ଆସ୍ଥା ସ୍ଥାପନ କରନ୍ତି, ନିଜର କର୍ତ୍ତବ୍ୟକୁ ନିଷ୍ଠାର ସହିତ ପାଳନ କରନ୍ତି ଓ ନାଗରିକ ଶୃଙ୍ଖଳା ପ୍ରତି ନିଜର ପ୍ରତିବଦ୍ଧତା ବ୍ୟକ୍ତ କରନ୍ତି ତେବେ ସାମାଜିକ ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇଥାଏ। ପରନ୍ତୁ ଯଦି ସାମାଜିକ ଜୀବନ ପ୍ରବାହରେ ପାରଲୌକିକ ମନୋଭାବ ଅଧିକ ବ୍ୟକ୍ତ ହୁଏ ଓ ଲୋକଙ୍କର ମନସ୍ତତ୍ତ୍ୱରେ ଭାଗ୍ୟ, କପାଳ ଲିଖନ, ପୂର୍ବ ନିର୍ଦ୍ଦିଷ୍ଟ, ପ୍ରାରବ୍ଧ ଇତ୍ୟାଦି ବିଚାରର ପ୍ରାବଲ୍ୟ ରହେ, ତେବେ ସମାଜର ବିକାଶ ବାଧାପ୍ରାପ୍ତ ହୋଇଥାଏ। ଏହିପରି ବିଶ୍ୱାସରୁ ନାନା କାଳ୍ପନିକ ଦିଅଁ ଦେବତାର ଆରାଧନା, ଅଦୃଷ୍ଟ ଶକ୍ତି ପାଖରେ ନିଜକୁ ସମର୍ପଣ, ଅଦୃଷ୍ଟ ଶକ୍ତିର ତୁଷ୍ଟି ପାଇଁ କେତେ କେତେ କର୍ମକାଣ୍ଡ, ଯଜ୍ଞ, ପୂଜାର ଯଦି ଆୟୋଜନ ହୁଏ ତେବେ ଜନଜୀବନ କୁସଂସ୍କାରଗ୍ରସ୍ତ ହୁଏ। ଏପରିକି କେତେକ ଅହେତୁକ ବିଶ୍ୱାସ ପିଢି ପିଢି ଦେଇ ସମାଜରେ ପ୍ରଚଳନ ରହିବା ଫଳରେ ତାହା ପରମ୍ପରାର ରୂପ ନିଏ। ନିଜର ପରମ୍ପରା ପ୍ରତି ଅନ୍ଧ-ଶ୍ରଦ୍ଧା କିଛି ବ୍ୟକ୍ତି ବ୍ୟକ୍ତ କରନ୍ତି ଓ ସେଥିପାଇଁ ଅହେତୁକ ଭାବପ୍ରବଣତା ପ୍ରକାଶ କରନ୍ତି। ବିଶେଷ କରି ପରମ୍ପରାଗତ ପ୍ରଥାରୁ ଯେଉଁମାନେ ଆର୍ଥିକ ସୁବିଧା ଓ ସୁଯୋଗ ପାଉଥାନ୍ତି ଓ ଶ୍ରମବିହୀନ ଉପାର୍ଜନ ଦ୍ୱାରା ଆର୍ଥିକ ସ୍ୱଚ୍ଛଳତା ଲାଭ କରିଥାନ୍ତି, ସେମାନେ ପ୍ରଚଳିତ ପାରମ୍ପରିକ ଭାବନା ପ୍ରତି ନିବିଡ଼ ହୋଇ ରହନ୍ତି। ସମାଜରେ ଏହିପରି ଏକ ବିଶ୍ୱାସ ସୃଷ୍ଟି ହୁଏ ଯେ, ଅଦୃଷ୍ଟର ଆଶୀର୍ବାଦରୁ ସେହି ବ୍ୟକ୍ତିମାନେ ସମ୍ପନ୍ନ ଜୀବନଯାପନ କରୁଛନ୍ତି। ଶ୍ରମ ମାଧ୍ୟମରେ ସମାଜର ସାଧାରଣ ଆବଶ୍ୟକତା ପୂରଣ କରୁଥିବା ଓ ସାମାଜିକ ପୁଞ୍ଜି ସୃଷ୍ଟି କରୁଥିବା ଉତ୍ପାଦନକାରୀ ଗୋଷ୍ଠୀ ପ୍ରତ୍ୟେକ ସ୍ତରରେ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ସେମାନଙ୍କର ଭାଗ୍ୟ, କର୍ମଫଳ ବୋଲି ମାନି ନେଇଥାନ୍ତି। ପୁନଶ୍ଚ ପାରଲୌକିକ ବିଶ୍ୱାସ, ଜୀବନଦୃଷ୍ଟିକୁ ଆଧାର କରି କିଛି ସୃଜନଶୀଳ ବ୍ୟକ୍ତି ସାହିତ୍ୟ ସୃଷ୍ଟି କରନ୍ତି, ନାନା ଅଲୌକିକତାର ରୋଚକ କାହାଣୀମାନ ପରିବେଷଣ କରନ୍ତି। ବହୁ ଈଶ୍ୱରବାଦର ଭାବନା ଥିବା ଏକ ସାମାଜିକ ଦୃଶ୍ୟପଟରେ ନୂଆ ନୂଆ ପୂଜାସ୍ଥଳ, ଦିଅଁ ଦେବତାର ଆରାଧନା ଦିନକୁ ଦିନ ଅପ୍ରତିହତ ଭାବେ ବୃଦ୍ଧି ପାଇବା ଦେଖାଯାଏ। ଏହା ସହ ତାଳ ଦେଇ ନାନା ପ୍ରବଚକ, ବାବା, ମାତା, ଦେବପୁରୁଷଙ୍କର ଆବିର୍ଭାବ ହେଉଥାଏ। ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସାହାଯ୍ୟରେ ସେମାନେ ପାରଲୌକିକ ଜୀବନଦୃଷ୍ଟି, ମୁକ୍ତି, ମୋକ୍ଷର କେତେ କେତେ କାହାଣୀମାନ ଜନଜୀବନରେ ପ୍ରସାର କରନ୍ତି। ସବୁ କିଛି ପୂର୍ବନିର୍ଦ୍ଦିଷ୍ଟ, ଜୀବନ ଦୁଇଦିନର ଖେଳ, ସମସ୍ତ ସାମାଜିକ ସମ୍ବନ୍ଧ ଅଳୀକ ଇତ୍ୟାଦିର ବାର୍ତ୍ତା ଜନଜୀବନରେ ପ୍ରଚାର କରନ୍ତି। ଏହି ସବୁ ପରିବେଶର ସମନ୍ୱିତ ପ୍ରଭାବରୁ ଜନମାନସରେ କର୍ମ-ବିମୁଖତା ସୃଷ୍ଟି ହୁଏ। ପୁନଶ୍ଚ ଏକ ଭେଦଭାବମୂଳକ ସମାଜରେ ଉଚ୍ଚ କର୍ମସଂସ୍କୃତି ପ୍ରତି ଏକ ନକାରାତ୍ମକ ମନୋଭାବ ଏହା ଦ୍ୱାରା ପରିପୁଷ୍ଟ ହୋଇଥାଏ। ଶରୀର ଶ୍ରମ ପ୍ରତି

ବିମୁଖତା ରହିଥିବା ଏକ ସାମାଜିକ-ଜୀବନ ଅନଗ୍ରସର ରହିବା ଅବଶ୍ୟମ୍ଭାବୀ ମନେହୁଏ। ସମାଜରେ ଉଚ୍ଚ କର୍ମସଂସ୍କୃତି ପ୍ରତି ଆନ୍ତରିକ ଶ୍ରଦ୍ଧା ନ ରହିଲେ ଓ ସମାଜର ସାଧାରଣ ଓ ଶିକ୍ଷିତ ନାଗରିକମାନେ କର୍ତ୍ତବ୍ୟବୋଧ ପ୍ରତି ବିତସ୍ପୃହ ରହିଲେ ସମାଜର ବିକାଶଧାରା ବାଧାପ୍ରାପ୍ତ ହୋଇଥାଏ।

ସେହିପରି ସମାଜର ସାଧାରଣ ଜୀବନଧାରାରେ ଯଦି ଅବୈଜ୍ଞାନିକ ବିଚାରବୋଧର ବଳିଷ୍ଠ ପ୍ରଭାବ ରହେ ତେବେ ଜନଜୀବନ ପ୍ରଗତିଶୀଳ ହୋଇପାରେ ନାହିଁ। ସମ୍ପ୍ରତି ଚିକିତ୍ସା ବିଜ୍ଞାନ, ଗମନାଗମନ, ସଞ୍ଚାର ଇତ୍ୟାଦି କ୍ଷେତ୍ରରେ ଅଭୂତପୂର୍ବ ବିକାଶ ହେବା ପରିଲକ୍ଷିତ ହୁଏ। ତେବେ ସାମାଜିକ ସଚେତନତା, ଶିକ୍ଷା ଓ ବୈଜ୍ଞାନିକ ମାନସିକତା ଅଭାବରେ ଯେଉଁଠି କେତେକ ଲୋକ ଗୁଣି, ମନ୍ତ୍ରତନ୍ତ୍ର ବିଦ୍ୟାରେ ଆସ୍ଥା ସ୍ଥାପନ କରନ୍ତି ସେଠିକାର ସାମାଜିକ ଜୀବନ ଯେ ଅହେତୁକ ଏହା ମନେହୁଏ। ଡାହାଣୀ ଜନିତ ହତ୍ୟାକାଣ୍ଡ, ରୋଗର ଉପଶମ ପାଇଁ କୋମଳ ଶିଶୁମାନଙ୍କୁ ଚେଙ୍କ ଦେବା ପରି ଅଭାବନୀୟ ଘଟଣା ସମାଜରେ ଘଟିବା ଆମ ଅନଗ୍ରସରତାର ନିଦର୍ଶନ ଅଟେ। ପୋଲିସ୍, ପ୍ରଶାସନ ଓ ବୃହତ୍ତର ସମାଜ ଉପରେ ଆସ୍ଥା ନ ରଖି ତାନ୍ତ୍ରିକ, ଗୁଣିଆ ଉପରେ ଆସ୍ଥା ସ୍ଥାପନ କରୁଥିବା ଜନଗଣ ଯେ ଶିକ୍ଷାର ପରିବେଶରୁ ଦୂରରେ ରହିଛନ୍ତି ଏହା ମନେହୁଏ। ଏପରିକି ସମାଜର ଶିକ୍ଷିତ ଓ ସମ୍ପନ୍ନ ବ୍ୟକ୍ତିମାନେ ଚମତ୍କାରିତାରେ ବିଶ୍ୱାସ କରିବା, ଶୁଭ-ଅଶୁଭ ମୁହୂର୍ତ୍ତ, ବସ୍ତୁ, ପ୍ରାଣୀ ଇତ୍ୟାଦିରେ ଆସ୍ଥା ସ୍ଥାପନ କରିବା ଜନଜୀବନରେ ଦେଖାଯାଏ। କେତେକ ବିଶ୍ୱାସ ଯେତେ ଆଧାରହୀନ ହେଲେ ମଧ ତାହାକୁ ଜନମାନସରେ ପ୍ରସାର କରିବା, ଗଣମାଧମ ବୈଜ୍ଞାନିକ ମନୋଭାବ ପ୍ରସାର ଅପେକ୍ଷା ଲୋକବିଶ୍ୱାସଗୁଡ଼ିକୁ ପରମ୍ପରାର ରୂପ ଦେଇ ପ୍ରଚାର କରିବା ଏକ ଅହେତୁକ ବାୟୁମଣ୍ଡଳ ସୃଷ୍ଟି ଦିଗରେ ସହାୟକ ହୋଇଥାଏ। ସମାଜର ସାଧାରଣ ପରିବେଶରେ କୁସଂସ୍କାର, ଅବୈଜ୍ଞାନିକ ମନୋଭାବ, ପାରଲୌକିକ ଭାବଧାରା, ଚମତ୍କାରିତାରେ ବିଶ୍ୱାସ, ବଳିଷ୍ଠ ଧାର୍ମିକ ଆବେଗ, ଜାତିଆଣ ଭେଦଭାବ ଯଦି ବ୍ୟାପକ ଭାବେ ରହେ ତେବେ ସାମାଜିକ ବିକାଶ ବିପଥଗାମୀ ହୁଏ।

ନାଗରିକ ଶୃଙ୍ଖଳାବୋଧ ନେଇ ସାମାଜିକ ଜୀବନଧାରାରେ ସଚେତନତା ପ୍ରକାଶ ନ ପାଇବା ଏକ କ୍ଷୟଶୀଳ ସ୍ଥିତିର ସୂଚନା ଦେଇଥାଏ। ଏହି ପରିବେଶରୁ ଦୁର୍ନୀତି ଜନଜୀବନରେ ବ୍ୟାପକ ହୋଇ ରହେ। ଆମ ସାମାଜିକ ଜୀବନ ପ୍ରବାହରେ ଆମେ ବହୁ କ୍ଷେତ୍ରରେ ଦୁର୍ନୀତିର କରାଳ ରୂପ ଦେଖିବାକୁ ପାଇଥାଏ। ଏପରିକି ଖାଦ୍ୟପଦାର୍ଥରେ ଅପମିଶ୍ରଣ ହେବା, ଔଷଧର ମାନ ପ୍ରତି ସଚେତନତା ନ ରହିବା ପରି ଘଟଣା ଆମର

ନିତିଦିନର ଅନୁଭବର ବିଷୟ। ନିଜର କାର୍ଯ୍ୟଟି ଯେତେ ନ୍ୟାୟୋଚିତ ହେଲେ ବି ତାହା ଅନାୟାସରେ ନ ହେବା ଜଣେ ନାଗରିକର ସାଧାରଣ ଉପଲବ୍ଧି। ଆମର ସାଧାରଣ ଆଚରଣରେ ପନ୍ଥାର ପବିତ୍ରତା ନେଇ ଯେପରି ବଳିଷ୍ଠ ମନୋଭାବ ପ୍ରକାଶ ପାଏ ନାହିଁ। ପରନ୍ତୁ ଅହେତୁକ ପୂଜା ପାର୍ବଣରେ ଯେଉଁ ଭାବାବେଗ ପ୍ରକାଶ ପାଏ ଓ ସେଥିରେ ଜନମାନସ ଯେପରି ସଂପୃକ୍ତି ପ୍ରକାଶ କରେ ତାହା ଆମ କ୍ଷୟଶୀଳତାର ପ୍ରମାଣ ଦିଏ। ସାଧାରଣ ଘଟଣାକୁ ନେଇ ରାସ୍ତାଘାଟ ବନ୍ଦ କରିବା, ଆନ୍ଦୋଳନ କରି ଜନଜୀବନକୁ ବିପର୍ଯ୍ୟସ୍ତ କରିବା, ଅନ୍ୟର ଅସୁବିଧା ପ୍ରତି ସ୍ପର୍ଶକାତରଶୂନ୍ୟ ହେବା ଯଦି ଜନଜୀବନର ସାଧାରଣ ଘଟଣା ହୁଏ ତେବେ ତାହା ସମାଜର ସୁସ୍ଥ ବିକାଶରେ ପ୍ରତିବନ୍ଧକ ହୋଇଥାଏ। ଏସବୁର ସମନ୍ୱିତ ପ୍ରଭାବ ଆମ ଅନଗ୍ରସରତା ପାଇଁ ପରିବେଶ ଯୋଗାଇଥାଏ। ଏହା ସହିତ ଆମ ସମାଜରେ ଭଲ ଓ ନୀତିବାନ୍ ଲୋକମାନେ ସବୁ ସ୍ତରରେ ପ୍ରତିବନ୍ଧକର ସମ୍ମୁଖୀନ ହେବା ଅଥଚ ଯେ କୌଣସି ପନ୍ଥା ପ୍ରୟୋଗ କରି ସଫଳ ହେଉଥିବା ବା ସାମାଜିକ ସମ୍ମାନର ଅଧିକାରୀ ହେଉଥିବା ପରିବେଶ ଏକ ସାଧାରଣ ଅନୁଭବ ଅଟେ।

ବସ୍ତୁତଃ ମାନସିକ ସ୍ତରରେ ମଇଳାକୁ ଦୂର କରିବା ସମାଜ ପାଇଁ ଏକ ବଡ଼ ଆହ୍ୱାନ ମନେହୁଏ। ଏକ ସୁସ୍ଥ ନାଗରିକ ସମାଜର ବିକାଶ ଦ୍ୱାରା ସାମାଜିକ କ୍ଷୟଶୀଳତାକୁ ପ୍ରତିରୋଧ କରାଯାଇ ପାରିବ। ଏହି ପୃଷ୍ଠଭୂମିରେ ବୈଜ୍ଞାନିକ ମନୋଭାବ, ମାନବବାଦୀ ଜୀବନଦୃଷ୍ଟି, ନାଗରିକ ଶୃଙ୍ଖଳାବୋଧ, ଉଚ୍ଚ କର୍ମସଂସ୍କୃତି ଓ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ଭାବନାର ବିକାଶକୁ ପ୍ରାଧାନ୍ୟ ଦେବାକୁ ହେବ। ପାରଲୌକିକ ଜୀବନଦୃଷ୍ଟି, ଧାର୍ମିକ ଭାବାବେଗ, ପରମ୍ପରା ପ୍ରତି ଅହେତୁକ ଶ୍ରଦ୍ଧା, ସାମାଜିକ ଭେଦଭାବ ଓ ସକଳ ପ୍ରକାରର ଅସହିଷ୍ଣୁତାରୁ ସମାଜ ଯେତେ ଅଧିକ ମୁକ୍ତ ହେବ, ଜୀବନର ଗୁଣାତ୍ମକମାନ ସେତେ ଉନ୍ନତ ହେବ। ବାହାରର ପରିଚ୍ଛନ୍ନତା ସହ ମାନସିକ ପରିଚ୍ଛନ୍ନତା ଯେ ସୁସ୍ଥ ଜୀବନର ମାନଦଣ୍ଡ ଏହା କୁହାଯାଇ ପାରେ।

(ପ୍ରଗତିବାଦୀ, ୧୩.୦୧.୨୦୧୬)

# ସମନ୍ୱୟର ଆହ୍ୱାନ

ମଣିଷ ସହଯୋଗରେ ବଞ୍ଚେ, ସେ ଏକ ସାମାଜିକ ପ୍ରାଣୀ। ମଣିଷ ଭିତରର ସାମାଜିକ ପ୍ରବୃତ୍ତି ବଞ୍ଚିବାର ଆବଶ୍ୟକତାରୁ ଉଦ୍ଭବ ହୋଇଛି। ମଣିଷ ଶିଶୁ ସବୁଠାରୁ ଅସହାୟ। ବିବର୍ତ୍ତନ ଧାରାରେ ଜୀବଜଗତରେ ମଣିଷ ସବୁଠାରୁ ବିକଶିତ ପ୍ରାଣୀ ହେଲେ ବି ମଣିଷ ଶିଶୁଟି ଅନ୍ୟର ବିନା ସହଯୋଗରେ ବଞ୍ଚିପାରିବ ନାହିଁ। ଏହି ଆବଶ୍ୟକତାରୁ ପରିବାର, ଗୋଷ୍ଠୀଜୀବନ, ସମାଜ ଓ ରାଷ୍ଟ୍ର ଉଦ୍ଭବ ହୋଇଛି। ଏହି ପାରସ୍ପରିକ ସହଯୋଗ ଯୋଗୁ ଏକ ଆଦିମ ଅବସ୍ଥାରୁ ମଣିଷ ସଭ୍ୟତା, ସଂସ୍କୃତି, କଳା, ସାହିତ୍ୟ, ଦର୍ଶନ ଇତ୍ୟାଦି ନିର୍ମାଣ ବା ସୃଷ୍ଟି କରିଛି। କେତେ କେତେ ସୃଜନଶୀଳ ବ୍ୟକ୍ତିଙ୍କର ବିଭିନ୍ନ ଅବଦାନରେ ସଭ୍ୟତାର ଅଗ୍ରଗତି ଘଟିଛି ଓ ସଂସ୍କୃତି ବିକଶିତ ହୋଇଛି। ଜ୍ଞାନ ବିଜ୍ଞାନର କେତେ କେତେ ଦିଗନ୍ତ ଉନ୍ମୋଚିତ ହୋଇଛି। ସାମାଜିକ ପରିବେଶ ଯେତେ ସୁବ୍ୟବସ୍ଥିତ ହୋଇଛି, ଜୀବନରୁ ଅସହାୟବୋଧ ସେତେ ଅପସରି ଯାଇଛି।

ଗୋଟିଏ ସମୟରେ ଜ୍ଞାନ ବିଜ୍ଞାନର ସେପରି କିଛି ବିକାଶ ହୋଇନଥିଲା। ଜୀବନ ଅତ୍ୟନ୍ତ ବିପଦସଙ୍କୁଳ ଥିଲା। ଏକ ଭୟର ବାତାବରଣ ସବୁ ସ୍ତରରେ ରହିଥିଲା। ଏହି ସ୍ଥିତିରେ କେତେକ ଭୂଖଣ୍ଡରେ କିଛି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ହେଲା। ସାମାଜିକ ଜୀବନ ପ୍ରବାହରେ କିଛି ଶୃଙ୍ଖଳା ସୃଷ୍ଟି କରି ବିଭିନ୍ନ ପ୍ରଶ୍ନମାନଙ୍କର ଉତ୍ତର କଳ୍ପନା କରି ସେମାନେ ଦେବାକୁ ପ୍ରୟାସ କଲେ। ସେହି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ବିଚାରବୋଧ ପରେ ବହୁ ଧର୍ମର ସ୍ଥାନ ନେଲା। ଧୀରେ ଧୀରେ ଧର୍ମ ଏକ ଅନୁଷ୍ଠାନରେ ରୂପାନ୍ତରିତ ହେଲା। ଯାହା ଗୋଟିଏ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ଉଦ୍ଭବ ହୋଇଥିଲା ତାହା ଜନସଂଖ୍ୟାର ବୃଦ୍ଧି, ରାଜ୍ୟ ବିସ୍ତାର ଓ ଅନ୍ୟାନ୍ୟ କାରଣ ଯୋଗୁ ବୃହତ୍ତର ଅଞ୍ଚଳକୁ ପ୍ରସାରିତ ହେଲା। ବିଜ୍ଞାନର ଯୁଗ ଆସିବା ପର୍ଯ୍ୟନ୍ତ ସକଳ ପ୍ରାକୃତିକ ଘଟଣା ଓ ଜୀବନର ଘନଘଟା ମଣିଷ ପାଇଁ ରହସ୍ୟମୟ ଥିଲା। ସେହି ଯୁଗରେ ଘଟଣାମାନଙ୍କର ଏକ ବୈଜ୍ଞାନିକ ବ୍ୟାଖ୍ୟା ଚିନ୍ତାର ବହିର୍ଭୂତ ଥିଲା। ଏହି ସ୍ଥିତିରେ ଯେଉଁ କ୍ରାନ୍ତିକାରୀ ବ୍ୟକ୍ତିମାନେ ଏକ ପାରଲୌକିକ ଜୀବନଦୃଷ୍ଟି, ଏକେଶ୍ୱରବାଦ ଓ ଈଶ୍ୱର-ନିୟନ୍ତ୍ରିତ ବିଚାର ଦେଲେ ତାହା ସେତେବେଳର ବିଚାର ସ୍ତରରେ

ବେଶ୍ ଆକର୍ଷଣୀୟ ମନେ ହେଉଥିଲା। ଏହା ସହିତ ସେମାନଙ୍କର ଉଚ୍ଚ ଜୀବନାଦର୍ଶ ସେମାନଙ୍କୁ ବେଶ୍ ଜନପ୍ରିୟ କରାଇଲା। ପରିଣାମତଃ ସେମାନଙ୍କ ବିଚାରବୋଧକୁ ନେଇ ଏକ ବୃହତ୍ତର ପରିବେଶରେ ଏକ ସାଂସ୍କୃତିକ ସଂହତିର ପରିବେଶ ସୃଷ୍ଟି ହେଲା। ଏହି ପ୍ରକ୍ରିୟାରେ ଧର୍ମ ଏକ ଅନୁଷ୍ଠାନରେ ପରିଣତ ହେଲା। ଯେଉଁ ସବୁ ଘଟଣା ପ୍ରବାହକୁ ଜ୍ଞାନବିଜ୍ଞାନର ବିକାଶ ଦ୍ୱାରା ବସ୍ତୁନିଷ୍ଠ ମାନଦଣ୍ଡରେ ବ୍ୟାଖ୍ୟା କରିବା ସମ୍ଭବ ହେଲା, ଗୋଟିଏ ଯୁଗରେ ସେସବୁକୁ ଧାର୍ମିକ ବିଶ୍ୱାସ ଆଧାରରେ ବ୍ୟାଖ୍ୟା କରାଯାଉଥିଲା। ଅଧିକାଂଶ ଧର୍ମର ବିଶ୍ୱାସ ଥିଲା ଯେ, ଏକ ସର୍ବଶକ୍ତିମାନ ଈଶ୍ୱର ଅଛନ୍ତି, ସେ ସବୁକିଛିକୁ ତାଙ୍କର ଅସୀମ ଜ୍ଞାନ ଓ ଅସୀମ ଶକ୍ତି ଯୋଗୁ ସୃଷ୍ଟି କରିଛନ୍ତି। ସବୁ ତାଙ୍କ ଦ୍ୱାରା ପରିଚାଳିତ ହେଉଛି। ସେ ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ସଂହର୍ତ୍ତା। ଆଦିମ ମଣିଷର ବହୁଈଶ୍ୱରବାଦ ସ୍ଥାନରେ ଏକେଶ୍ୱରବାଦର ପରିକଳ୍ପନା ଚିନ୍ତା ରାଜ୍ୟରେ ବେଶ୍ ବୈପ୍ଳବିକ ଥିଲା। ଏହି ଭାବଧାରାକୁ ନେଇ କେତେ କେତେ ଶାସ୍ତ୍ର ପୁରାଣ ରଚିତ ହେଲା। ଜ୍ଞାନ କେବଳ ଧର୍ମଭିତ୍ତିକ ହୋଇ ରହିଲା। ଶାସ୍ତ୍ର ପୁରାଣ ବାଣୀର ଗଭୀର ପ୍ରଭାବ ଜନଜୀବନକୁ ନାନା ଭାବରେ ପ୍ରଭାବିତ କଲା। ଧର୍ମର ବାଣୀ ଶୁଣାଉଥିବା ଓ ବ୍ୟାଖ୍ୟା ଦେଉଥିବା ବ୍ୟକ୍ତିମାନେ ସମାଜର ସବୁଠାରୁ ସମ୍ମାନନୀୟ ବ୍ୟକ୍ତିତ୍ୱର ଅଧିକାରୀ ହେଲେ। ସମାଜର ରାଜନୀତି, ଅର୍ଥନୀତି ଓ ସକଳ ବ୍ୟବସ୍ଥା ଧର୍ମକୈନ୍ଦ୍ରିକ ହୋଇ ରହିଲା। ଧର୍ମ ଏକ ସର୍ବଗ୍ରାସୀ ଭୂମିକା ନେଇ ସଭ୍ୟତାର ବିକାଶଧାରାକୁ ଗଭୀର ଭାବେ ପ୍ରଭାବିତ କଲା।

ଧର୍ମର ସବୁଠାରୁ ମହତ୍ତର ଆବେଗ ଥିଲା ଏହାର ନୀତିବୋଧ। ପ୍ରତ୍ୟେକ ଧର୍ମଗ୍ରନ୍ଥରେ ଉତ୍ତମ ଜୀବନ ପାଇଁ କେତେକ ନୈତିକ ଆବେଦନ ରହିଲା। ମଣିଷ ପ୍ରବୃତ୍ତିରେ ଭଲ ସ୍ୱଭାବ ଯେପରି ରହିଛି, ମନ୍ଦ ସ୍ୱଭାବ ମଧ୍ୟ ସେହିପରି ରହିଛି। ସତ୍ୟ, ନ୍ୟାୟ, ପରୋପକାର, ଉଦାରତା, ସ୍ନେହ, ପ୍ରୀତିଭାବ ପରି ମାନବିକ ପ୍ରବୃତ୍ତି ଜୀବନର ମହତ୍ତର ଦିଗ। ସେହିପରି ହିଂସା, ପରଶ୍ରୀକାତରତା, ସ୍ୱାର୍ଥପରତା, ଅନ୍ୟକୁ ଶୋଷଣ, ପାଶବିକତା, ଅସତ୍ୟ, ଅନ୍ୟାୟ ଇତ୍ୟାଦି ମନ୍ଦ ସ୍ୱଭାବ ମଧ୍ୟ ମାନବିକ ପ୍ରବୃତ୍ତି। ବ୍ୟକ୍ତି ଭିତରର ମହତ୍ତର ପ୍ରବୃତ୍ତିର ବିକାଶ ଓ ମନ୍ଦ ପ୍ରବୃତ୍ତିର ଦମନ ପାଇଁ ଧର୍ମ ବିଭିନ୍ନ ବିଶ୍ୱାସ ସୃଷ୍ଟି କଲା। ଯେଉଁମାନେ ଭଲ କାର୍ଯ୍ୟ କରିବେ ସେମାନେ ମୃତ୍ୟୁ ପରେ ମୁକ୍ତିଲାଭ କରିବେ ବା ସ୍ୱର୍ଗକୁ ଯିବେ। ଯେଉଁମାନେ ମନ୍ଦ କାର୍ଯ୍ୟରେ ସଂପୃକ୍ତ ହେବେ ସେମାନେ ମୃତ୍ୟୁ ପରେ ଦଣ୍ଡ ପାଇବେ, ନରକଗାମୀ ହେବେ ଓ ଯନ୍ତ୍ରଣା ଜର୍ଜରିତ ହେବେ। ପ୍ରତ୍ୟେକ ଧର୍ମ ନିଜସ୍ୱ ବିଶ୍ୱାସରେ ଆତ୍ମା, ଆତ୍ମାର ଅମରତ୍ୱ, ସ୍ୱର୍ଗ, ନରକ, ପୁନର୍ଜନ୍ମ ଇତ୍ୟାଦି ନାନା ଭାବନା ସୃଷ୍ଟି କଲା।

କେତେକ ଧର୍ମରେ ବିଶ୍ୱାସ ରହିଲା ଯେ, ମଣିଷର ଆତ୍ମା ରହିଛି, ମୃତ୍ୟୁ ପରେ ଆତ୍ମା ବୋଲି ଏକ ଅଶରୀର ସତ୍ତା ରହେ, ଈଶ୍ୱର ଆତ୍ମାର ଭବିଷ୍ୟତ ନିର୍ଣ୍ଣୟ କରିବେ। କେତେକ ଧର୍ମରେ ପୁନର୍ଜନ୍ମବାଦର ବିଶ୍ୱାସ ରହିଲା, ଅର୍ଥାତ୍ ମୃତ୍ୟୁ ପରେ ଜନ୍ମ, ଜନ୍ମ ପରେ ମୃତ୍ୟୁ ଏହା ଚାଲିବ ଯେ ପର୍ଯ୍ୟନ୍ତ ଆତ୍ମା ମୁକ୍ତି ପାଇ ନାହିଁ। ଯେଉଁ ଧର୍ମମାନଙ୍କରେ ପୁନର୍ଜନ୍ମବାଦର ବିଶ୍ୱାସ ରହିଛି, ସେହି ଧର୍ମର ବିଭିନ୍ନ ଦାର୍ଶନିକ ଧାରାରେ ଆତ୍ମାର ସ୍ୱରୂପ ନେଇ ଭିନ୍ନ ଭିନ୍ନ ମତ ବି ରହିଛି, ଆତ୍ମାର ସ୍ୱରୂପ ଓ ସ୍ଥିତି ନେଇ ଏକ ସହମତି ନାହିଁ। ପୁନଶ୍ଚ ଅନ୍ୟ କେତେକ ଧର୍ମରେ ପୁନର୍ଜନ୍ମବାଦର ବିଶ୍ୱାସ ନାହିଁ। ମଣିଷର ଥରଟିଏ ଜନ୍ମ ହୁଏ। ମୃତ୍ୟୁ ପରେ ଆତ୍ମା ଏକ ସ୍ୱତନ୍ତ୍ର ସ୍ଥିତିରେ ରହେ। ସୃଷ୍ଟିର ଅନ୍ତିମ କାଳରେ ଏକ ବିଚାର ଦିବସ ଆସିବ। ଈଶ୍ୱର ଜୀବନକାଳରେ ଅଧିକ ଭଲ କାର୍ଯ୍ୟ କରିଥିବା ଲୋକମାନଙ୍କୁ ସବୁଦିନ ପାଇଁ ସ୍ୱର୍ଗକୁ ପଠାଇବେ ଓ ମନ୍ଦ କାର୍ଯରେ ସଂପୃକ୍ତ ଥିବା ଲୋକମାନଙ୍କୁ ସବୁଦିନ ପାଇଁ ନରକକୁ ପଠାଇବେ। ସ୍ୱର୍ଗ, ନରକର କେତେ କେତେ ଚମତ୍କାର କଳ୍ପନା ମଣିଷ ମନକୁ ସ୍ପର୍ଶ କରିଥିଲା। ଗୋଟିଏ ଯୁଗରେ ପ୍ରତ୍ୟେକ ଧର୍ମ ପରମ୍ପରାରେ ନିଜ ଧର୍ମର ବିଶ୍ୱାସ ସକଳଙ୍କୁ ଅଭ୍ରାନ୍ତ, ଚିରନ୍ତନ ଓ ସାର୍ବଜନୀନ ସତ୍ୟ ଭାବେ ଗ୍ରହଣ କରାଯାଉଥିଲା। ଏସବୁ ବିଶ୍ୱାସର ଗଭୀର ପ୍ରଭାବ ଜନଜୀବନକୁ ନିୟନ୍ତ୍ରଣ କରୁଥିଲା। ସମାଜର ନୀତି, ନୈତିକତା, ମାନବିକ କର୍ତ୍ତବ୍ୟ ଇତ୍ୟାଦି କ୍ଷେତ୍ରରେ ଧର୍ମର ବଳିଷ୍ଠ ପ୍ରଭାବ ରହିଥିଲା।

କାଳକ୍ରମେ ସଭ୍ୟତାର ଅଗ୍ରଗତି ସହ ଧର୍ମ-ଧର୍ମ, ସଭ୍ୟତା-ସଭ୍ୟତା ଓ ସଂସ୍କୃତି-ସଂସ୍କୃତି ଭିତରେ ପରିଚୟ ଘଟିଲା। ଗୋଟିଏ ଭୂଖଣ୍ଡର ସଂସ୍କୃତି, ଦର୍ଶନ, ଧର୍ମଭାବନା ଅନ୍ୟ ଭୂଖଣ୍ଡକୁ ଗଲା ପରେ ଧାର୍ମିକ ରୂଢ଼ିବାଦ, ମୌଳବାଦରେ ରୂପାନ୍ତରିତ ହେଲା। ପ୍ରତ୍ୟେକ ଧର୍ମ ପରମ୍ପରାରେ ବିଶ୍ୱାସ ରହିଥିଲା ଯେ, ତାଙ୍କ ଧର୍ମଗ୍ରନ୍ଥର ବାଣୀ ଈଶ୍ୱରଦତ୍ତ ଜ୍ଞାନ ଓ ଏହା ଚିରନ୍ତନ। ଯେଉଁମାନେ ସେହି ଜ୍ଞାନରେ ବିଶ୍ୱାସ କରୁନାହାନ୍ତି ସେମାନେ ଧର୍ମପଥରେ ନାହାନ୍ତି, ସେମାନେ ବିଧର୍ମୀ। ସେହି ବିଧର୍ମୀମାନଙ୍କୁ ପ୍ରକୃତ ଧର୍ମପଥକୁ ଆଣିବା ପାଇଁ ପ୍ରୟାସ କରାଯିବା ଆବଶ୍ୟକ। ଯେଉଁମାନେ ପ୍ରକୃତ ଧର୍ମକୁ ଗ୍ରହଣ କରୁନାହାନ୍ତି ସେହି ବିଧର୍ମୀ, ମୂଢ଼ମାନଙ୍କୁ ହତ୍ୟା କରିବା ବରଂ ଏକ ଧର୍ମ କାର୍ଯ୍ୟ। ଯେଉଁମାନେ ଧର୍ମଶାସ୍ତ୍ରର ବାଣୀକୁ ମାନୁନାହାନ୍ତି ସେମାନେ ଈଶ୍ୱରୀୟ ଜ୍ଞାନକୁ ସ୍ୱୀକାର କରୁନଥିବା ଯୋଗୁଁ ସେମାନେ ମଧ୍ୟ ବିଧର୍ମୀ ଓ ବିଧର୍ମୀମାନଙ୍କୁ ମୃତ୍ୟୁ ଦଣ୍ଡ ଦେବା ଅଧାର୍ମିକ ନୁହେଁ। ଧର୍ମୀୟ ରୂଢ଼ିବାଦ କିପରି ସାଂପ୍ରଦାୟିକ ମାନସିକତାରେ ରୂପାନ୍ତରିତ ହୋଇ ଧର୍ମର ମୂଳ ଲକ୍ଷ୍ୟ ଠାରୁ ଦୂରେଇ ଗଲା ତାହାର କାହାଣୀ ଇତିହାସରେ ବେଶ୍ ମର୍ମାନ୍ତିକ। ଧର୍ମକୁ ନେଇ ଯେତେ ଯେତେ ଯୁଦ୍ଧ, ବିଭୀଷିକା ଘଟିଯାଇଛି

ତାହା ଅତ୍ୟନ୍ତ ଅମାନବିକ କହିଲେ ଅତ୍ୟୁକ୍ତି ହେବ ନାହିଁ। ପୁନଶ୍ଚ ଧାର୍ମିକ ମୌଳବାଦ ଏକ ବହୁଧର୍ମୀୟ ସମାଜ ପାଇଁ ନାନା ଦିଗରୁ ଅତ୍ୟନ୍ତ କ୍ଷତିକାରକ ହୋଇଛି। ଧାର୍ମିକ ମୌଳବାଦ ସାଂପ୍ରଦାୟିକତାବାଦରେ ରୂପାନ୍ତରିତ ହେବା ଫଳରେ ସମାଜ ଭାଗ ଭାଗ ହୋଇଛି ଓ ସାମାଜିକ ତିକ୍ତତା ଓ ଅସ୍ଥିରତା ବୃଦ୍ଧି ପାଇଛି। ଧର୍ମ ବିଶ୍ୱାସ ସ୍ତରରୁ ସାମାଜିକ ପରିଚୟ ସ୍ତରକୁ ସଂକ୍ରମିତ ହୋଇ ଜନଗୋଷ୍ଠୀ ଭିତରେ ଘୃଣା ଓ ବିଦ୍ୱେଷର ପରିବେଶ ସୃଷ୍ଟି କରିଛି। ଧର୍ମ ମାନବିକତାରେ ରୂପାନ୍ତରିତ ହେବା ପରିବର୍ତ୍ତେ ସାଂପ୍ରଦାୟିକତାରେ ରୂପାନ୍ତରିତ ହେବା ଦ୍ୱାରା ସମାଜ ଓ ରାଷ୍ଟ୍ର ପାଇଁ ଘାତକ ହୋଇଛି। ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଧର୍ମ ପାଇଁ ବହୁ ବିଭତ୍ସ ପରିସ୍ଥିତି ଓ ରକ୍ତପାତ ହୋଇଛି। ଆମ ଦେଶର ସ୍ୱାଧୀନତା ପରିପ୍ରେକ୍ଷୀରେ ଧର୍ମର ମୁଖା ପିନ୍ଧି ସାଂପ୍ରଦାୟିକ ଶକ୍ତିମାନେ ଦେଶକୁ ଭାଗ ଭାଗ କରିଛନ୍ତି। ପରିଣାମତଃ ଲକ୍ଷ ଲକ୍ଷ ମଣିଷ ନିହତ, ଆହତ ଓ ସର୍ବସ୍ୱାନ୍ତ ହୋଇଛନ୍ତି। ସାଂପ୍ରତିକ ସମୟର ଆତଙ୍କବାଦ ଓ ସନ୍ତ୍ରାସବାଦର ମୂଳ ଉତ୍ସ ହେଉଛି ଧାର୍ମିକ ଆବେଗ ଓ ସାଂପ୍ରଦାୟିକ ମନୋଭାବ। ଧର୍ମନିରପେକ୍ଷତା, ଗଣତାନ୍ତ୍ରିକ ଜୀବନଧାରା, ମାନବବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏ ଯୁଗର ସାର୍ବଜନୀନ ଆଦର୍ଶ।

ମାନବ ସମାଜ ଯେଉଁ ସବୁ ସ୍ତର ଦେଇ ଅଗ୍ରସର ହୋଇଛି ସେହି କ୍ଷେତ୍ରରେ ଧର୍ମଭିତ୍ତିକ ଜୀବନଶୈଳୀ ଠାରୁ ସଭ୍ୟତା ବହୁ ଦୂରକୁ ଗଲାଣି। ଆଧୁନିକ ଜୀବନଶୈଳୀରେ ଧର୍ମ ପରିବର୍ତ୍ତେ ସାର୍ବଜନୀନ ଦୃଷ୍ଟି, ମାନବବାଦ ଓ ଆଧୁନିକ ବିଜ୍ଞାନ ନିର୍ଣ୍ଣାୟକ ମନେହୁଏ। ଏହା ହିଁ ଗୁଣାତ୍ମକ ଓ ମହତ୍ତର ଜୀବନ ପାଇଁ ପ୍ରେରଣାର ଉତ୍ସ ହୋଇପାରିବ। ଏହା ହିଁ ସମୟର ଆହ୍ୱାନ।

(ପ୍ରଗତିବାଦୀ, ୨୪.୦୮.୨୦୧୬)

# ଏ ଯୁଗର ମୁକ୍ତିଚେତନା

ଚିନ୍ତା ଚେତନାର ବିକାଶ ପରଠାରୁ ସମାଜର ମୁଷ୍ଟିମେୟ ବ୍ୟକ୍ତି ଏକ ଉନ୍ନତ ଓ ନ୍ୟାୟପୂର୍ଣ୍ଣ ବ୍ୟବସ୍ଥାର ପରିକଳ୍ପନା କରିଛନ୍ତି । ସେମାନେ ପ୍ରାୟତଃ ସମାଜର ପଥ ପ୍ରଦର୍ଶକ ଓ ଦାର୍ଶନିକ । ସମାଜ-ବ୍ୟବସ୍ଥାରେ ଯାହା ସବୁ ଅନୀତି, ଅମାନବିକତା, ଅନ୍ୟାୟ ଓ ଅଶୁଭ ରହିଛି ତାହାକୁ ଦୂର କରି ଏକ ନୀତିପୂର୍ଣ୍ଣ ଓ ମାନବିକ ସମ୍ବନ୍ଧର ଚିନ୍ତା ସେମାନେ ପ୍ରକାଶ କରିଛନ୍ତି । ତେବେ ବିଡମ୍ବନାର ବିଷୟ କେତେ କେତେ ପ୍ରଗତିଶୀଳ ମୂଲ୍ୟବୋଧ ଓ ମାନବବାଦୀ ଆବେଦନ ସତ୍ତ୍ୱେ ଆମ ସଂସାରରେ ଅନେକ ଅନ୍ୟାୟ, ଭେଦଭାବ, ଶୋଷଣ, ହିଂସା-ପ୍ରତିହିଂସା, ସନ୍ତ୍ରାସବାଦ, ସାଂପ୍ରଦାୟିକ ବିଦ୍ୱେଷ ବିସ୍ତାରିତ ହୋଇ ରହିଛି । ଯେଉଁ ଯୁଗରେ ଗଣତାନ୍ତ୍ରିକ ବିଚାରବୋଧ ଓ ଜନମଙ୍ଗଳକାରୀ ଭାବନାର ବିକାଶ ହୋଇନଥିଲା ସେହି ସମୟରେ ରାଜତନ୍ତ୍ର, ସାମନ୍ତବାଦ ଓ ଅର୍ଥନୈତିକ ଶୋଷଣ ନାନା ସମାଜରେ ରହିଥିଲା । ରାଜତନ୍ତ୍ରୀୟ ଶାସନ-ବ୍ୟବସ୍ଥା ବିରୁଦ୍ଧରେ ଦାର୍ଶନିକ ବିଚାର ଦେଇ କେତେକ ରାଷ୍ଟ୍ରରେ ଜନଆନ୍ଦୋଳନ ମୁଣ୍ଡ ଟେକିଲା । ସମାନତା, ସ୍ୱାଧୀନତା ଓ ଭ୍ରାତୃଭାବର ବିଚାର ଜନମାନସକୁ ଏତେ ଗଭୀର ଭାବେ ପ୍ରଭାବିତ କରିଥିଲା ଯେ ତାର ପରିଣାମରୁ କେତେକ ଦେଶରେ ରାଜତନ୍ତ୍ରୀୟ ବ୍ୟବସ୍ଥାର ବିଲୋପ ହେଲା । କ୍ରମେ କ୍ରମେ ରାଜତନ୍ତ୍ର ପରିବର୍ତ୍ତେ ଗଣତନ୍ତ୍ର ଏକ ଉନ୍ନତ ରାଜନୈତିକ ବ୍ୟବସ୍ଥା ବୋଲି ସ୍ୱୀକୃତ ହେବାକୁ ଲାଗିଲା । ସାଂପ୍ରତିକ ବିଚାରବୋଧରେ ଗଣତନ୍ତ୍ର ଓ ଜନମଙ୍ଗଳକାରୀ ରାଷ୍ଟ୍ରୀୟତା ସମଗ୍ର ପୃଥିବୀରେ ଗୃହୀତ ହେବାରେ ଲାଗିଛି । ଶିଳ୍ପବିପ୍ଳବ ପରବର୍ତ୍ତୀ ଯୁଗରେ ସାରା ପୃଥିବୀରେ ସାମ୍ରାଜ୍ୟବାଦ ମୁଣ୍ଡ ଟେକିଥିଲା । ସାମ୍ରାଜ୍ୟବାଦ ଏକ ପୁଞ୍ଜିବାଦୀ ଶୋଷଣ ବ୍ୟବସ୍ଥା ଉପରେ ଆଧାରିତ ଥିଲା । କେତେକ ବିକଶିତ ରାଷ୍ଟ୍ର ସେମାନଙ୍କର ଉନ୍ନତ ସାମରିକ ଶକ୍ତି ଆଧାରରେ ବିଭିନ୍ନ ଦେଶକୁ କବଳିତ କରିବା ସହ ଶୋଷଣରେ ଯେଉଁ ଜାଲ ବୁଣିଥିଲେ ସେହି ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ କେତେକ ଦେଶରେ ଜନଆନ୍ଦୋଳନମାନ ସୃଷ୍ଟି ହୋଇ ଅନେକ ନୂତନ ଆଶା ସଞ୍ଚାର ହୋଇଥିଲା । ଆମ ଦେଶରେ ବିଂଶ ଶତାବ୍ଦୀ ଆରମ୍ଭରୁ ସାମ୍ରାଜ୍ୟବାଦୀ ଶାସନ ବିରୁଦ୍ଧରେ ଯେଉଁ ବ୍ୟାପକ ଜନଆନ୍ଦୋଳନ ସୃଷ୍ଟି ହୋଇଥିଲା ତାହାର ପରିଣାମରୁ ଦେଶ ସ୍ୱାଧୀନତା ଲାଭ କଲା । ଆମ ଦେଶ ପରି ଯେଉଁ ଦେଶମାନେ ସାମ୍ରାଜ୍ୟବାଦ କବଳରେ ଶୋଷିତ ହେଉଥିଲେ ସେ ଦେଶମାନଙ୍କରେ ମଧ୍ୟ ଗଣଆନ୍ଦୋଳନମାନ ସୃଷ୍ଟି ହେଲା ଓ ପ୍ରତ୍ୟେକ ରାଷ୍ଟ୍ର ନିଜର ସ୍ୱାଧୀନତା ଓ ସାର୍ବଭୌମତ୍ୱ

ପାଇଁ ଜାଗ୍ରତ ହୋଇପାରିଲେ। ସେହିପରି ଗୋଟିଏ ସମୟରେ ସମାଜର ଶ୍ରମଜୀବୀ, କୃଷକଶ୍ରେଣୀ ଓ ମେହନତୀ ମଣିଷଙ୍କୁ ପୁଞ୍ଜିବାଦ ଯେପରି ଶୋଷଣ କରୁଥିଲା ତାହା ବିରୁଦ୍ଧରେ ସମାଜବାଦ ଏକ କ୍ରାନ୍ତିକାରୀ ଆଲୋଡ଼ନ ସୃଷ୍ଟି କରିଥିଲା। ସମାଜବାଦୀ ଜନଗଣତାନ୍ତ୍ରିକ ଆନ୍ଦୋଳନ ମାଧ୍ୟମରେ ସାମନ୍ତବାଦ ଓ ଅର୍ଦ୍ଧ-ସାମ୍ରାଜ୍ୟବାଦକୁ ଲୋପ କରିବା ପାଇଁ କେତେକ ରାଷ୍ଟ୍ରରେ ବିପ୍ଳବର ସୂତ୍ରପାତ ହୋଇଥିଲା। ସାମାଜିକ ଶ୍ରେଣୀ ସଂଘର୍ଷ ଓ ଅର୍ଥନୈତିକ ଶୋଷଣ ବିରୁଦ୍ଧରେ ଏକ ସମୟରେ ଯେଉଁ ମୁକ୍ତିଚେତନାର ବାର୍ତ୍ତା କେତେକ ଦେଶରେ ଭିତ୍ତି ନେଇଥିଲା ତାହା ଏବେ ବି ଅନେକ ପ୍ରଗତିଶୀଳ ବ୍ୟକ୍ତିମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇରହିଛି।

ମାନବ ସଭ୍ୟତାର ଇତିହାସରେ କେତେ କେତେ ଶୋଷଣ, ଭେଦଭାବ, ଦାସତ୍ୱ ଓ ଅନ୍ୟମାନଙ୍କ ପ୍ରତି ନ୍ୟୂନଭାବ ରହିବା ଏକ ନିଛକ ବାସ୍ତବତା। ବିଭିନ୍ନ ସଭ୍ୟତାରେ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ଯୁଗ ଯୁଗ ଧରି ଶୋଷଣ କରାଯାଇଛି। ମହିଳାମାନେ ନାନା ନ୍ୟୂନତା ଓ ଶୋଷଣର ଶିକାର ହୋଇଛନ୍ତି। ରଙ୍ଗଭେଦକୁ ଆଧାର କରି ସବଳ ମଣିଷମାନେ ଅନ୍ୟକୁ ଶୋଷଣ କରିଛନ୍ତି। ଆମ ଦେଶରେ ଅସ୍ପୃଶ୍ୟତା ପରି ଏକ ଜଘନ୍ୟ ଓ ଅମାନବିକ ପ୍ରଥା ଶହ ଶହ ବର୍ଷ ଧରି ସାମାଜିକ ମନସ୍ତତ୍ତ୍ୱକୁ କବଳିତ କରିରଖିଛି। ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ, ଧର୍ମଭେଦ ଆଧାରରେ ମାନବ ସମାଜରେ ଏତେ ଅନ୍ୟାୟ ଓ ଅମାନବିକ ପରମ୍ପରା ସୃଷ୍ଟି ହୋଇଛି ତାହା ନାନା ଭାବରେ ମାନବ ସମାଜକୁ ଭାଗ ଭାଗ କରିରଖିଛି। ଏହି ସମସ୍ତ ଭେଦଭାବ ବିରୋଧରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ଏକ ମୁକ୍ତିଚେତନାର ବାର୍ତ୍ତା ପ୍ରଚାରିତ ହୋଇଛି। ମାନବୀୟ ଦୁଃଖଦୁର୍ଦ୍ଦଶା ଓ ମଣିଷକୃତ ଶୋଷଣ ତଥା ଅତ୍ୟାଚାରକୁ ଦୂର କରିବା ପାଇଁ ଆନ୍ତର୍ଜାତିକ ଦୃଶ୍ୟପଟରେ ସାମାଜିକ ଚେତନାର ବିକାଶ ହୋଇଛି। ସବୁ ମଣିଷ ସମାନ ଓ ପ୍ରତ୍ୟେକ ବ୍ୟକ୍ତି ସୁଖ ଓ ମର୍ଯ୍ୟାଦାର ସହ ଜୀବନ ଅତିବାହିତ କରିବା ତାର ଏକ ପ୍ରାକୃତିକ ଓ ମୌଳିକ ଅଧିକାର। ହେତୁବାଦୀ ଜୀବନଦର୍ଶନରୁ ଉଦ୍ଭବ ଏହି ମାନବବାଦୀ ବିଚାରବୋଧ ବିଶ୍ୱ ଚିନ୍ତାମାନସରେ ଏକ ବୈପ୍ଳବିକ ବିଚାର କହିଲେ ଅତ୍ୟୁକ୍ତି ହେବ ନାହିଁ। ଯୁଗ ଯୁଗ ଧରି ସମାଜର ଅବହେଳିତ, ଅଙ୍କ ଓ ଶୋଷିତ ମଣିଷମାନେ କିପରି ମର୍ଯ୍ୟାଦା ଓ ଉତ୍ତମ ଜୀବନର ଅଧିକାରୀ ହେବେ ସେଥିପାଇଁ ବିଶ୍ୱସ୍ତରରେ ଗଭୀର ସଂପୃକ୍ତି ବ୍ୟକ୍ତ ହୋଇଛି। ସମାଜ କେବଳ ମୁଷ୍ଟିମେୟ ସାମନ୍ତମାନଙ୍କୁ ନେଇ ତିଷ୍ଠି ରହିବ ନାହିଁ, ଯାହା ଯୁଗ ଯୁଗ ଧରି ହୋଇ ଆସିଛି। ବରଂ ସମାଜର ପ୍ରତ୍ୟେକ ବ୍ୟକ୍ତି ସମ୍ମାନର ସହ ବଞ୍ଚିବ, ଶୋଷଣ ତଥା କୌଣସି ନ୍ୟୂନତା ଓ ଭେଦଭାବର ଶିକାର ହେବ ନାହିଁ, ଏହା ହିଁ ଧୀରେ ଧୀରେ ମାନବ ସମାଜର ମନସ୍ତତ୍ତ୍ୱ ଭିତରେ ପ୍ରବେଶ କରିଛି।

ପ୍ରତ୍ୟେକ ଦେଶରେ ଏକ ନ୍ୟାୟିକ ବ୍ୟବସ୍ଥା ଦୃଢ଼ ହେବାରେ ଲାଗିଛି ଓ ଅନ୍ୟାୟ, ଶୋଷଣ, ଭେଦଭାବ ଓ ଜାତିବାଦକୁ ଦୂର କରିବା ପାଇଁ ଜାଗରୁକ ନ୍ୟାୟିକ ବ୍ୟବସ୍ଥା ଦୃଢ଼ ହେବାରେ ଲାଗିଛି। ଏତଦ୍ ବ୍ୟତୀତ ବାଳଶ୍ରମିକ ପ୍ରଥା, ଅପପୁଷ୍ଟି, ସାଂପ୍ରଦାୟିକ ହିଂସା, ଦାରିଦ୍ର୍ୟ, ସନ୍ତ୍ରାସବାଦ ଇତ୍ୟାଦିକୁ ଦୂର କରିବା ପାଇଁ ପ୍ରତ୍ୟେକ ରାଷ୍ଟ୍ରରେ ସଂପୃକ୍ତି ବ୍ୟକ୍ତ ହେଉଛି। କେଉଁ ଏକ ଅଖ୍ୟାତ ଆଦିବାସୀ ଗ୍ରାମର ସାଧାରଣ ମଣିଷ ଦାନ ମାଝୀର ଘଟଣା ଏକ ରାଜ୍ୟର ଦାରିଦ୍ର୍ୟ ପ୍ରତି ସମଗ୍ର ଦେଶ ଓ ବିଶ୍ୱର ଦୃଷ୍ଟି ଆକର୍ଷିତ ହେବା ଓ ଗଣମାଧ୍ୟମ ଏହି ଘଟଣାକୁ ନେଇ ଏତେ ଚର୍ଚ୍ଚା କରିବା ଏକ ଅଭିନବ ଘଟଣା। ଏହା ପଶ୍ଚାତରେ ଯାହା ରାଜନୀତି ଥାଉ ନା କାହିଁକି ଏହିପରି ଏକ ଘଟଣା ପ୍ରତି ଯେଉଁ ସମ୍ବେଦନଶୀଳ ପ୍ରତିକ୍ରିୟା ପ୍ରକାଶ ପାଇଲା ତାହା ମାନବିକତାର ଏକ ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ। ପ୍ରାୟ ଚାରି ବର୍ଷ ତଳେ ପାକିସ୍ଥାନର ଏକ ଗ୍ରାମର ଜଣେ ସାଧାରଣ କିଶୋରୀ ଝିଅ ମଲାଲା ୟୁସଫଜାଇ ସନ୍ତ୍ରାସବାଦୀ ଆକ୍ରମଣରେ ଆହତ ହେବା ପରେ ତାଙ୍କ ପ୍ରତି ବିଭିନ୍ନ ଦେଶରୁ ଯେଉଁ ସହାନୁଭୂତି ପ୍ରକାଶ ପାଇଥିଲା ଓ ତାଙ୍କୁ ମାତ୍ର ସତର ବର୍ଷରେ ସେ ଯେପରି ନୋବେଲ ପୁରସ୍କାରରେ ଭୂଷିତ ହେଲେ ତାହା ଏକ ଅଭିନବ ଘଟଣା। ଆମ ସଂସାରରେ ଯାହା କିଛି ଅନ୍ୟାୟ, ଭେଦଭାବ, ବିଦ୍ୱେଷ ରହିଥିଲେ ବି ବିଶ୍ୱସ୍ତରରେ ଯେ ଏକ ମାନବବାଦୀ ଚେତନାର ଉତ୍ତରଣ ଘଟିଛି ଏହାକୁ ଅସ୍ୱୀକାର କରିହେବ ନାହିଁ।

ଇତିହାସର ବିଭିନ୍ନ କାଳଖଣ୍ଡରେ ଓ ବିଭିନ୍ନ ସଭ୍ୟତାରେ ମାନବୀୟ ସଙ୍କଟ ଓ ବିଭିନ୍ନ ମନ୍ଦ ବ୍ୟବସ୍ଥାକୁ ଦୂର କରିବା ପାଇଁ ଯେଉଁ ସଂପୃକ୍ତି ପ୍ରକାଶ ପାଇଛି ତାହା ହିଁ ହେଉଛି ମାନବୀୟ ମୁକ୍ତିଚେତନା। ଏହି ମୁକ୍ତିଚେତନା ମଧ୍ୟ ଦେଇ ମହତ୍ତର ଜୀବନବୋଧର ଯେଉଁ ବାର୍ତ୍ତାଟି ସମାଜରେ ସୃଷ୍ଟି ହୋଇଛି ତାହା ହିଁ ନୂତନ ଆଶାର ଆଲୋକ ସୃଷ୍ଟି କରିଥାଏ। ଏହି କ୍ଷୁଦ୍ର ଆଲୋକ ଶିଖାଟି ଅନେକ ଅନ୍ଧକାରକୁ ଦୂର କରିବା ପାଇଁ ଭିତ୍ତିଟିଏ ପ୍ରସ୍ତୁତ କରେ ଓ କାଳକ୍ରମେ ସେହି ଆଲୋକ ଶିଖାଟି ଏକ ବଡ଼ ଜ୍ୟୋତିରେ ରୂପାନ୍ତରିତ ହୁଏ।

ଏକବିଂଶ ଶତାବ୍ଦୀର ମୁକ୍ତିଚେତନାର କେତେ କେତେ ଦୀପଶିଖାର କିଛି ଝଲକ ସଂପ୍ରତି ଦୃଷ୍ଟିଗୋଚର ହେଉଛି। କେତେକ ବିଶ୍ୱପ୍ରାଣ ମାନବବାଦୀ ଏକ ବିଶ୍ୱ ସରକାରର ବାସ୍ତବତା ନେଇ କିଛି ଯୋଜନା ବ୍ୟକ୍ତ କରୁଛନ୍ତି। ଏକ ସମୟରେ 'ରାଷ୍ଟ୍ରୀୟତା' ଏକ ବଡ଼ ମୂଲ୍ୟବୋଧ ଭାବେ ମଣିଷର ରାଜନୈତିକ ଚେତନା ସ୍ତରକୁ ଗମ୍ଭୀର ଭାବେ ପ୍ରଭାବିତ କରିଥିଲା। କିନ୍ତୁ ପାରିବେଶିକ ପ୍ରଦୂଷଣ ଜନିତ ଭୟାବହତା ସଂପ୍ରତି ସାରା ପୃଥିବୀର ସଚେତନ

ବୁଦ୍ଧିଜୀବୀ ଓ ରାଷ୍ଟ୍ରନୀତିଜ୍ଞଙ୍କୁ ଗଭୀର ଆଲୋଡ଼ିତ କରୁଛି । ଧାର୍ମିକ ମୌଳବାଦ ଓ ତହିଁରୁ ସୃଷ୍ଟ ଆତଙ୍କବାଦ ସେହିପରି ବିଶ୍ୱର ଶାନ୍ତିକାମୀ ଧର୍ମନିରପେକ୍ଷବାଦୀଙ୍କୁ ଗଭୀର ଭାବେ ଆନ୍ଦୋଳିତ କରିବାରେ ଲାଗିଛି । ବିକାଶଶୀଳ ଦେଶମାନଙ୍କରେ ରହିଥିବା ଉତ୍କଟ ଦାରିଦ୍ର୍ୟ ଓ ପାରଲୌକିକ ଜୀବନଦୃଷ୍ଟି ଯେ ସେମାନଙ୍କ ବିକାଶ କ୍ଷେତ୍ରରେ ବଡ଼ ପ୍ରତିବନ୍ଧକ ହୋଇ ରହିଛି, ଏହା ହିଁ ବିଚାର ସ୍ତରରେ ବ୍ୟକ୍ତ ହେଉଛି । ସେହିପରି ବିଡମ୍ବନାର ବିଷୟ ଧାର୍ମିକ ଆବେଗ, ନାନା ପୂଜାପାର୍ବଣ ଓ ପରମ୍ପରାକୁ ଜାବୁଡ଼ି ଧରିଥିବା ସମାଜରେ ଦାରିଦ୍ର୍ୟ, ଅପପୁଷ୍ଟି, ଶୋଷଣ, ଦୁର୍ନୀତି ଯେ ଭରପୂର ହୋଇ ରହିଛି, ଏହା ହିଁ ସାଧାରଣ ଅନୁଭବ । ବସ୍ତୁତଃ ଏହି ସ୍ଥିତିରେ ମାନବବାଦ, ଇହଲୌକିକ ଜୀବନଦୃଷ୍ଟି, ବୈଜ୍ଞାନିକ ମାନସିକତା, ଉନ୍ନତ କର୍ମସଂସ୍କୃତି ଓ ସଂପ୍ରୀତିର ମନୋଭାବ ଭିତରେ ରହିଛି ଆଜିର ମୁକ୍ତିଚେତନା । ଏହି ମୁକ୍ତିଚେତନା ହିଁ ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିବାରେ ଯେ ସହାୟକ ହେବ, ଏହା ନିଃସନ୍ଦେହ ମନେହୁଏ ।

(ପ୍ରଗତିବାଦୀ, ୦୫.୧୦.୨୦୧୬)

# ସାଂସ୍କୃତିକ ଅନଗ୍ରସରତା : ଏକ ଦୃଷ୍ଟିପାତ

ଆମ ରାଜ୍ୟରେ ବହୁ ଦାରିଦ୍ର୍ୟ ରହିଛି, ସରକାରୀ ପରିସଂଖ୍ୟାନ ଅନୁଯାୟୀ ଅନେକ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି। କିଛି ଦିନ ତଳେ ଓଡ଼ିଶାର ଦାରିଦ୍ର୍ୟ ବିଷୟକୁ ମାନ୍ୟବର ପ୍ରଧାନମନ୍ତ୍ରୀ ଏକ ଭିନ୍ନ ପୃଷ୍ଠଭୂମିରେ ସ୍ୱୀକାର କରିଛନ୍ତି। ଓଡ଼ିଶାକୁ ଏକ ଅନଗ୍ରସର ଓ ଦରିଦ୍ର ରାଜ୍ୟ କହିଥିବାରୁ ଆମର ସ୍ୱାଭିମାନ ବ୍ୟାହତ ହୋଇଛି ବୋଲି ରାଜନୈତିକ ସ୍ତରରେ ଓ ଗଣମାଧ୍ୟମରେ ଚର୍ଚ୍ଚା ହୋଇଛି। ଆମ ରାଜ୍ୟରେ କୃଷକ-ଆତ୍ମହତ୍ୟା ପ୍ରସଙ୍ଗ ନେଇ କେତେ କେତେ ହୋ ହଲ୍ଲା ଓ ବିତର୍କ ହେଉଛି। ଚାଷୀମାନେ ପାରିବାରିକ କଳହରୁ ଆତ୍ମହତ୍ୟା କରନ୍ତୁ ବା ଚାଷରେ କ୍ରମାଗତ କ୍ଷତି ଯୋଗୁ ମାନସିକ ଚାପ ଭିତରେ ଆତ୍ମହତ୍ୟା କରନ୍ତୁ ସେମାନଙ୍କର ଆର୍ଥିକ ସ୍ଥିତି ଯେ ଅସ୍ୱଚ୍ଛଳ ଏହା ଅନସ୍ୱୀକାର୍ଯ୍ୟ। ମୋଟ୍ ଉପରେ କହିଲେ, ଆମ ରାଜ୍ୟରେ ବହୁ ଦାରିଦ୍ର୍ୟ ରହିଛି ଓ ସମାଜର ଏକ ତୃତୀୟାଂଶରୁ ଅଧିକ ଲୋକ ଅନଗ୍ରସର ସ୍ଥିତିରେ ରହିଛନ୍ତି। ତେବେ ଆମ ରାଜ୍ୟର ଆର୍ଥିକ ଅନଗ୍ରସରତା ବିଷୟରେ ବିଧାନସଭାରେ, ରାଜନୀତି ସ୍ତରରେ ଓ ଗଣମାଧ୍ୟମରେ ନାନା ଚର୍ଚ୍ଚା ହେଉଛି। ଆମର ଅନଗ୍ରସରତାର ଦୂରୀକରଣ ପାଇଁ ସରକାର, ପ୍ରଶାସନ, ବୁଦ୍ଧିଜୀବୀ ଓ ସ୍ୱେଚ୍ଛାସେବୀ ସଂଗଠନମାନ ବେଶ୍ ସଂପୃକ୍ତି ବ୍ୟକ୍ତ କରୁଛନ୍ତି। ତେବେ ଆମ ସମାଜରେ ଯେଉଁ ସାଂସ୍କୃତିକ ଅନଗ୍ରସରତା ରହିଛି ତାହା ସଂପର୍କରେ ସେପରି କିଛି ସଂପୃକ୍ତି ପ୍ରକାଶ ପାଉ ନାହିଁ। ସାଂସ୍କୃତିକ ଅନଗ୍ରସରତା ଓ ମାନସିକ ଦାରିଦ୍ର୍ୟ ଯେ ଏକ ଜାତିର ବିକାଶରେ ବଡ଼ ପ୍ରତିବନ୍ଧକ ସେ ସଂପର୍କରେ ବିଶେଷ ଆଲୋଚନା ହେଉ ନାହିଁ। ସମାଜର କେତେ ଲୋକ ସାଧାରଣ ସାଂସ୍କୃତିକ ମାନଠାରୁ ତଳେ ରହିଛନ୍ତି ଓ କୁସଂସ୍କାର କେତେ ବ୍ୟାପକ ଭାବରେ ସମାଜରେ ରହିଛି ତାହା ସଂପର୍କରେ ସେପରି କିଛି ଆଲୋଚନା ବା ସଂପୃକ୍ତି ପ୍ରକାଶ ନ ପାଇବା ଆମ ଅନଗ୍ରସରତାର ଏକ ଦିଗନ୍ତ। ଆର୍ଥିକ ଅନଗ୍ରସରତା ସମାଜ ପାଇଁ ଯେପରି କଷ୍ଟଦାୟକ, ସାଂସ୍କୃତିକ ଅନଗ୍ରସରତା ସମାଜ ପାଇଁ ଅଧିକ ବେଦନାଦାୟକ।

ଆମର ସାଂସ୍କୃତିକ ଅନଗ୍ରସରତା ସଂପର୍କରେ ଏଠାରେ ମୁଁ ଦୁଇଟି ଘଟଣାର ଅବତାରଣା କରୁଛି, ଯେଉଁଥିରୁ ଆମର ସାଂସ୍କୃତିକ ମାନ ସଂପର୍କରେ କିଛି ଧାରଣା କରିହେବ। ସମ୍ବାଦ ଅନୁଯାୟୀ ଝାରସୁଗଡ଼ା ଜିଲ୍ଲାର ବିଜାପାଲ୍ଲୀ ଗ୍ରାମରେ ଦୁଇ ଜଣ କଲେଜ ଛାତ୍ରୀ

ଶିବପୂଜାରେ ମଗ୍ନ ହୋଇ ସେମାନଙ୍କର ଜଣେ ସାଙ୍ଗ ଝିଅକୁ ବଳି ପକାଇ ହତ୍ୟା କରିଛନ୍ତି। ପ୍ରକାଶିତ ଖବର ଅନୁସାରେ ସୌଦାମିନୀ, ସନ୍ତୋଷିନୀ ଓ ନବୀନ ନିଜକୁ ବ୍ରହ୍ମା, ବିଷ୍ଣୁ ଓ ହନୁମାନ ମନେକରି ପରିବାର ଲୋକଙ୍କ ସମ୍ମୁଖରେ ସେମାନଙ୍କ ଗ୍ରାମର ସଂଯୁକ୍ତା ଜୟପୁରିଆକୁ ଶିବ ପୂଜାର କର୍ମକାଣ୍ଡ ଭିତରେ ହତ୍ୟା କରିଛନ୍ତି। ସେମାନେ ସଂଯୁକ୍ତା ଉପରେ ନୃତ୍ୟ କରି ତାକୁ ଅତ୍ୟନ୍ତ ଅମାନୁଷିକ ଭାବରେ ଧାର୍ମିକ ଆବେଗରେ ମାରି ଦେଇଛନ୍ତି। ଯେଉଁମାନେ ଏଥିରେ ସଂପୃକ୍ତ ସେମାନେ କଲେଜ ଛାତ୍ରୀ, ନିରକ୍ଷର ମହିଳା ନୁହନ୍ତି। କଲେଜ୍‌ରେ ପାଠ ପଢୁଥିବା ପିଲାମାନେ ଯଦି ଏହିପରି କୁସଂସ୍କାର ଓ ଅପବିଶ୍ୱାସର ଶିକାର ହୋଇ ପାରୁଛନ୍ତି, ତେବେ ସମାଜର ପାଠ ପଢ଼ିନଥିବା ବା ପଢ଼ିବାର ସାମାନ୍ୟ ସୁଯୋଗ ପାଇନଥିବା ଲୋକମାନଙ୍କ ସଂପର୍କରେ କ'ଣ କୁହାଯିବ ତାହା ସହଜରେ ଅନୁମେୟ।

ଦ୍ୱିତୀୟ ଘଟଣାଟି ହେଉଛି ବଲାଙ୍ଗିର ଜିଲ୍ଲାର ଡଙ୍ଗାଘାଟ ଗ୍ରାମର। ରଙ୍ଗ ନାମରେ ସ୍ୱାମୀ ପରିତ୍ୟକ୍ତା ମହିଳାଙ୍କୁ ତାଙ୍କର ନିଜ ଭାଇ ତ୍ରିପୁର, ଗାଁ ଦେବୀ ଦକ୍ଷିଣକାଳୀଙ୍କ ସମ୍ମୁଖରେ ବଳି ଦେଇ ସେଠାରେ ତାଣ୍ଡବ ନୃତ୍ୟ କରିଥିଲେ। ଆଉ କେତେଜଣଙ୍କୁ ବଳି ଦେଲେ କାଳୀ ତାଙ୍କ ପ୍ରତି ପ୍ରସନ୍ନ ହେବେ ବୋଲି କହୁଥିଲେ। ଯେଉଁ ବ୍ୟକ୍ତି ଏହି ହତ୍ୟାକାଣ୍ଡ ଘଟାଇଲେ ସେ ମାନସିକ ବିକୃତି ଯୋଗୁ ଏହା କଲେ, କୌଣସି ପାରିବାରିକ କଳହ ଯୋଗୁ ଏହା କଲେ କିମ୍ବା ଧାର୍ମିକ ଆବେଗରୁ ଏହା କଲେ ଏହା ସମ୍ବାଦରୁ ସ୍ପଷ୍ଟ ହୋଇ ନାହିଁ। ବହୁ ଅତୀତରେ ଦିଅଁ ଦେବତାଙ୍କ ପାଖରେ ବଳି ପକାଇବାର କୁତ୍ସିତ ପରମ୍ପରା ସମାଜରେ ରହିଥିଲା। ନରବଳି ବି ଦିଆଯାଉଥିଲା। ତେବେ ନରବଳି ଏକ ଅମାନବିକ, ଘୃଣ୍ୟ ଓ ଅନୈତିକ ପ୍ରଥା ହୋଇଥିବାରୁ ଏହାକୁ ଆଇନ୍ ଦ୍ୱାରା ନିଷିଦ୍ଧ କରାଗଲା। ତେବେ ରକ୍ଷଣଶୀଳ ପରମ୍ପରାବାଦୀମାନେ ଇତର ପ୍ରାଣୀମାନଙ୍କୁ ବିଭିନ୍ନ ଶକ୍ତିପୀଠମାନଙ୍କରେ ଏବେ ବି ଧାର୍ମିକ ଆବେଗରେ ବଳି ଦେଉଛନ୍ତି। ଲୋକମାନଙ୍କର ଧାର୍ମିକ ଆବେଗକୁ ବନ୍ଦ କରାଯାଇ ପାରିବ ନାହିଁ ବୋଲି ଯୁକ୍ତି କରାଯାଉଛି।

ଏହି ଯେଉଁ ଦୁଇଟି ଘଟଣା ନିକଟରେ ଘଟିଯାଇଛି ଏହା ଏକ ଆକସ୍ମିକ ବ୍ୟାପାର ନୁହେଁ। ବରଂ ଏହି ପ୍ରକାରର ନାନା ଘଟଣା ସମାଜରେ ଘଟୁଛି। ଏହା ସହ ଡାହାଣୀ ଜନିତ ହତ୍ୟାକାଣ୍ଡ, ମନ୍ତ୍ର ତନ୍ତ୍ର ଜନିତ ହିଂସା, ପ୍ରତିହିଂସା ପରି ଘଟଣା ମାନ ଏବେ ବି ଆମ ରାଜ୍ୟରେ ମଝିରେ ମଝିରେ ଗଣମାଧ୍ୟମରେ ପ୍ରଚାରିତ ହେଉଛି। ଆଜିର ଏକବିଂଶ ଶତାବ୍ଦୀରେ ମଧ୍ୟ ମନ୍ତ୍ର ତନ୍ତ୍ର, ଗୁଣି ଗାରେଡ଼ି, କଳା ଯାଦୁ ଇତ୍ୟାଦି ଉପରେ ସମାଜର ବିଶ୍ୱାସ ରହିଛି।

ଅବଶ୍ୟ ସବୁ କଥା ଯେ ଗଣମାଧ୍ୟମକୁ ଆସୁଛି ସେକଥା ନୁହେଁ, ତେବେ ଯେତିକି ସମ୍ବାଦ ପ୍ରକାଶ ପାଉଛି ତାହା ଆମ ସାଂସ୍କୃତିକ ଅନଗ୍ରସରତାର ଚିତ୍ର ଦେଇଥାଏ।

ଏତଦ୍‌ବ୍ୟତୀତ ଆମ ସମାଜର ବହୁ ଲୋକ ତଥାକଥିତ ବାବା, ମାତା ଓ ଚମତ୍କାରିତା ଦେଖାଉଥିବା ଲୋକମାନଙ୍କ ଦ୍ୱାରା ଅକ୍ଳେଶରେ ପ୍ରଭାବିତ ହେବା ଏକ ସାଧାରଣ ଉପଲବ୍ଧି। କେଉଁ ବାବା କିଛି ଚମତ୍କାରିତା ଦେଖାଉଛନ୍ତି, କେଉଁ ବୃକ୍ଷରୁ କ୍ଷୀର ଝରୁଛି, କେଉଁଠି ମାଟି ତଳେ କେଉଁ ଦିଅଁଙ୍କର ମୂର୍ତ୍ତି ରହିଛି ପରି ସମ୍ବାଦ ପ୍ରକାଶ ପାଇଲେ ତାହା ସହଜରେ ଜନଗଣଙ୍କର ଦୃଷ୍ଟି ଆକର୍ଷଣ କରିପାରୁଛି। ବିଶେଷକରି କିଛି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଏହିପରି ମନଗଢା ସମ୍ବାଦ ସୃଷ୍ଟି କରି ଜନମାନସକୁ ଅକ୍ଳେଶରେ ପ୍ରଭାବିତ କରିପାରୁଛନ୍ତି। ସେହିପରି କେଉଁ ମୁଦି ପିନ୍ଧିଲେ ସବୁ ସମସ୍ୟା ଦୂର ହୋଇଯିବ, କେଉଁଠି ବୁଡ଼ ପକାଇଲେ ପୁଣ୍ୟ ଅର୍ଜନ ହେବ, କେଉଁଠି ପାଣି ଢାଳିଲେ ବା କାହା ପାଦ ଦର୍ଶନ କଲେ ସକଳ ଅଭିଳାଷ ପୂରଣ ହେବ ଇତ୍ୟାଦି ବହୁ ବିଶ୍ୱାସ ଆମ ସାମାଜିକ ମନସ୍ତତ୍ତ୍ୱରେ ବ୍ୟାପକ ଭାବେ ରହିଛି।

ଯେତେବେଳେ ମଣିଷ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୁଏ ଓ ବୃହତ୍ତର ସମାଜ ଉପରେ ଆସ୍ଥା ପୋଷଣ କରିପାରେ ନାହିଁ, ସେତେବେଳେ ସେ ବିଭିନ୍ନ ପାରଲୌକିକ ଶକ୍ତି ଉପରେ ଆସ୍ଥା ସ୍ଥାପନ କରେ। ବିଶେଷକରି ଧାର୍ମିକ ଆବେଗ ସମାଜରେ ବ୍ୟାପକ ଭାବେ ରହିଥିଲେ ଲୋକମାନେ କୁସଂସ୍କାରପୂର୍ଣ୍ଣ ବିଶ୍ୱାସର ସହଜରେ ଶିକାର ହୋଇଥାନ୍ତି। ନିଜର ପ୍ରତିକୂଳ ସ୍ଥିତି ଯେ ଦିଅଁ ଦେବତାର ଶୁଭ ଦୃଷ୍ଟି ଦ୍ୱାରା ଦୂର ହୋଇପାରିବ ଏହି ପ୍ରକାରର ମାନସିକତା ସମାଜରେ ସୃଷ୍ଟି ହୁଏ। ସମାଜର ସାଧାରଣ ଲୋକମାନେ ସହଜରେ ଏହି ପ୍ରକାରର ବିଚାରକୁ ସତ୍ୟ ବୋଲି ଗ୍ରହଣ କରିନିଅନ୍ତି। ପୁନଶ୍ଚ ସମାଜର ପ୍ରଭାବଶାଳୀ ବ୍ୟକ୍ତିମାନେ ମଧ୍ୟ ନାନା କାରଣରୁ ଧାର୍ମିକ ଆବେଗ ଦ୍ୱାରା ପରିଚାଳିତ ହୁଅନ୍ତି। ଏହା ପଶ୍ଚାତ୍‌ରେ ବିଭିନ୍ନ ମନସ୍ତାତ୍ତ୍ୱିକ କାରଣ ରହିଥାଏ। ସମାଜର ସଂପନ୍ନ ବ୍ୟକ୍ତିମାନେ କେତେକ ପରିସ୍ଥିତିରେ ଅସାଧୁପୂର୍ଣ୍ଣ କାର୍ଯ୍ୟରେ ସଂପୃକ୍ତ ହେବା ସାଧାରଣ ଘଟଣା। ସରକାରୀ କର୍ମସଂସ୍ଥାନରେ ଥିବା ବ୍ୟକ୍ତିମାନେ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟରେ ଲିପ୍ତ ହେବା ବା ଅନ୍ୟ ବୃତ୍ତିରେ ଥିବା ଲୋକମାନେ ଅସତ୍ ଉପାୟରେ ଅର୍ଥ ଉପାର୍ଜନ କରିବା ଆମ ସମାଜରେ ବ୍ୟତିକ୍ରମ ନୁହେଁ। ନାଗରିକ ଶୃଙ୍ଖଳାବୋଧ ଓ ବୃତ୍ତିଗତ ନୈତିକତାର ମାନ ନିମ୍ନ ସ୍ତରରେ ଥିବାରୁ ଲୋକମାନେ ଅନୈତିକ ପନ୍ଥାରେ ଲକ୍ଷ୍ୟ ସାଧନ କରିବାର ମନୋଭାବ ଆମ ଜନଜୀବନରେ ବ୍ୟାପକ ଥିବା ଦେଖାଯାଏ। ଏହି ମାନସିକତାରୁ ଲୋକମାନେ ପାରଲୌକିକ ଶକ୍ତି ଉପରେ

ବିଶ୍ୱାସ କରିବା ଓ କଳ୍ପିତ ଦିଅଁ ଦେବତା ସେମାନଙ୍କର ପାପ ଯେ କ୍ଷାଳନ କରିଦେବେ ଏହି ଭାବନା ପୋଷଣ କରିଥାନ୍ତି। ସମାଜର ସଂପନ୍ନ ଓ ଶିକ୍ଷିତ ଲୋକମାନେ ଯେଉଁ ଭାବନା ପୋଷଣ କରନ୍ତି ତାହାର ପ୍ରଭାବ ସାଧାରଣ ଜନଗଣଙ୍କୁ ଅକ୍ଳେଶରେ ପ୍ରଭାବିତ କରିଥାଏ।

ଯେଉଁ ଲୋକମାନେ ଗମ୍ଭୀର ଧାର୍ମିକ ଆବେଗରେ ପରିଚାଳିତ ହୋଇ ଭକ୍ତିପୂତ ଜୀବନ ନିର୍ବାହ କରୁଛନ୍ତି ବା ମାନସିକ ସ୍ତରରେ ଶାନ୍ତି ପାଉଛନ୍ତି ତାହାକୁ କେହି ବିରୋଧ କରିବେ ନାହିଁ। କିନ୍ତୁ ଧାର୍ମିକ ଆବେଗରୁ ଅନୈତିକ ଓ ଅସାମାଜିକ କାର୍ଯ୍ୟରେ ସଂପୃକ୍ତ ହେବା ସମାଜ ପାଇଁ ଚିନ୍ତାର ବିଷୟ। ଜନଗଣଙ୍କ ଭିତରେ ପ୍ରଗତିଶୀଳ ବିଚାର, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ବ୍ୟକ୍ତି ଜୀବନର ମୂଲ୍ୟ ନେଇ ଭାବନା ଉଦ୍ରେକ କରିବାକୁ କ'ଣ ପ୍ରୟାସ ହେଉଛି ? ଆମ ସାମାଜିକ ଚେତନାର ସ୍ତର କିପରି ଉନ୍ନତ ହେବ ସେ କ୍ଷେତ୍ରରେ କୌଣସି ଗମ୍ଭୀର ସଂପୃକ୍ତି ପ୍ରକାଶ ପାଉଛି କି ? ଦୁର୍ନୀତି ଓ ଭ୍ରଷ୍ଟାଚାରମାନଙ୍କୁ ପ୍ରତିହତ କରିବାକୁ ଆଇନ୍‌କାନୁନ୍ ରହିଛି, ତେବେ ଏହା ସଙ୍ଗଠିତ ଓ ମୁକ୍ତ ଭାବରେ ହେଉନାହିଁ। କିନ୍ତୁ ସାଂସ୍କୃତିକ ଅନଗ୍ରସରତା ଓ ବିଭିନ୍ନ ଅପସାଂସ୍କୃତିକ କାର୍ଯ୍ୟକୁ ଦୂର କରିବାକୁ ସେପରି କିଛି କାର୍ଯ୍ୟକ୍ରମ ସମାଜରେ ପରିଦୃଶ୍ୟ ହେଉନାହିଁ। ସାଧାରଣ ଲୋକମାନେ ସେମାନଙ୍କର ବିଶ୍ୱାସ ଓ ନୈରାଶ୍ୟ ଭିତରେ ଯେଉଁ ଧାର୍ମିକ ଆବେଗରୁ ମନ୍ଦ କାର୍ଯ୍ୟ କରୁଛନ୍ତି, ତାହାର ଦୂରୀକରଣ ପାଇଁ ଅନେକ କିଛି କାର୍ଯ୍ୟ କରିବାର ରହିଛି। ସମାଜରେ ମୁଷ୍ଟିମେୟ ସଂସ୍କାର ପ୍ରୟାସୀ ବ୍ୟକ୍ତି ବା ହେତୁବାଦୀ ଚିନ୍ତକମାନେ ଯାହା କିଛି କାର୍ଯ୍ୟ କରୁଛନ୍ତି ତାହାର ବିଶେଷ ପ୍ରଭାବ ସମାଜରେ ପଡୁ ନାହିଁ। ଗୋଟିଏ ସାଧାରଣ ବିଶ୍ୱାସ ରହିଛି ଯେ, ସମାଜରେ ଶିକ୍ଷାର ପ୍ରସାର ହେଲେ ସମାଜରୁ କୁସଂସ୍କାର ଓ ଅପସଂସ୍କୃତି ଦୂର ହୋଇଯିବ। କିନ୍ତୁ ଆମ ଦେଶର ଶିକ୍ଷା ବ୍ୟବସ୍ଥାରେ ବୈଜ୍ଞାନିକ ସଚେତନତା ଓ ମାନବିକ ମୂଲ୍ୟବୋଧ ନେଇ ସେପରି କିଛି ଶିକ୍ଷା ଦିଆଯାଏ ନାହିଁ। ଅଧିକନ୍ତୁ ଆମର ସାମାଜିକ ପରିବେଶରେ ନାନା ଅପସଂସ୍କୃତି ଓ ଅହେତୁକ ବିଶ୍ୱାସ ଭରପୁର ହୋଇ ରହିଛି। ଏତଦ୍ ବ୍ୟତୀତ ଦେଶର ଗଣମାଧ୍ୟମ ଜରିଆରେ କେତେକ କୁସଂସ୍କାରକୁ ବ୍ୟାପକ କରାଯାଉଛି। ବିଭିନ୍ନ ଅବାନ୍ତର, ଅବୈଜ୍ଞାନିକ ଓ ମନଗଢ଼ା କାହାଣୀମାନଙ୍କୁ 'ସତ୍ୟ ଘଟଣା' କହି ପ୍ରସାର କରାଯିବାର ପରିଣାମ ଜନମାନସକୁ ବିଭ୍ରାନ୍ତ କରିବାରେ ସହାୟକ ହେଉଛି। ସ୍ଥଳବିଶେଷରେ ବିଭିନ୍ନ କୁସଂସ୍କାର ଓ ଅପସଂସ୍କୃତିକୁ ପରମ୍ପରା ଓ ଐତିହ୍ୟର ପୁଟ ଦିଆଯାଇ ଆବେଗ ସୃଷ୍ଟି କରାଯାଉଛି। ବର୍ଷ ସାରା ନାନା ଧାର୍ମିକ କର୍ମକାଣ୍ଡକୁ କେତେ ଆଡମ୍ବରରେ ପାଳନ କରିବାକୁ ପ୍ରୟାସ ହେଉଛି। ନାଗରିକ ସଚେତନତା, ଉଚ୍ଚ କର୍ମସଂସ୍କୃତି, କର୍ମକ୍ଷେତ୍ରରେ ସାଧୁତା ପ୍ରତି ଆମ ଜୀବନଧାରାରେ ଯେତେ ଆନ୍ତରିକତା

ପ୍ରକାଶ ପାଉ ନାହିଁ, ତାହାପେକ୍ଷା ଧାର୍ମିକ କର୍ମକାଣ୍ଡ ଓ ପୂଜାପାର୍ବଣ ପ୍ରତି ଅଧିକ ସଂପୃକ୍ତି ପ୍ରକାଶ ପାଉଛି। ଆହୁରି ବିଡମ୍ବନାର ବିଷୟ ସମାଜର ଶିକ୍ଷିତ ଗୋଷ୍ଠୀ ବି କୁସଂସ୍କାର ଓ ଅବୈଜ୍ଞାନିକ ଭାବନାର ପ୍ରସାର କ୍ଷେତ୍ରରେ ସହାୟକ ହେଉଛନ୍ତି।

ଏହା ହିଁ ଇତିହାସରୁ ଏକ ଉପଲବ୍ଧି ଯେ ମଣିଷର ପ୍ରୟାସରେ ଜୀବନର ମାନ ଉନ୍ନତ ହୋଇପାରିବ। କୌଣସି କଳ୍ପିତ ଦିଅଁ ଦେବତା ଜାତିର ବିକାଶରେ ସହାୟକ ହେବେ ନାହିଁ କିମ୍ବା ଆମର ଅନଗ୍ରସରତାକୁ ଦୂର କରିବେ ନାହିଁ। ଯେଉଁ ଦେଶର ଲୋକମାନେ ଉନ୍ନତ ଶିକ୍ଷା, ସ୍ୱାସ୍ଥ୍ୟସେବା ଓ ସାମାଜିକ ନିରାପତ୍ତା ଭିତରେ ସଂପନ୍ନ ଜୀବନ ନିର୍ବାହ କରୁଛନ୍ତି, ସେମାନଙ୍କୁ କୌଣସି ଦେବତାର ଆଶୀର୍ବାଦ ମିଳି ନାହିଁ। ସାଧୁତା, ନାଗରିକ ଶୃଙ୍ଖଳାଜ୍ଞାନ, ମାନବିକ ମର୍ଯ୍ୟାଦା ପ୍ରତି ସମ୍ମାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଦ୍ୱାରା ସମାଜର ସାଂସ୍କୃତିକ ମାନ ଉନ୍ନତ ହୋଇପାରିବ। ଏହି ସବୁ ଭାବଧାରାକୁ ଆମର ଶିକ୍ଷା ବ୍ୟବସ୍ଥା ଓ ଗଣମାଧ୍ୟମ ଜରିଆରେ ପ୍ରସାର କରାଯାଇ ପାରିଲେ ସମାଜରୁ ଅନେକ ଅପସଂସ୍କୃତି ଦୂର କରିବା ସମ୍ଭବ ହେବ। ଅର୍ଥନୈତିକ ଅନଗ୍ରସରତାକୁ ଦୂର କରିବା ପାଇଁ ଯେପରି ସଂପୃକ୍ତି ପ୍ରକାଶ ପାଉଛି, ସେହିପରି ସାଂସ୍କୃତିକ ଅନଗ୍ରସରତାକୁ ଦୂର କରିବା ପାଇଁ ନିଷ୍ଠାପର ପ୍ରୟାସ ହେଲେ ଜୀବନର ଗୁଣାତ୍ମକ ମାନରେ ଉନ୍ନତି ଆସିପାରିବ।

(ପ୍ରଗତିବାଦୀ, ୨୯.୦୩.୨୦୧୭)

# ଶହେବର୍ଷରେ ଦୁନିଆ

ବିଂଶ ଶତାବ୍ଦୀ ଆରମ୍ଭରେ ଦେଶ ଦୁନିଆର ସ୍ଥିତି ଯାହା ଥିଲା, ସେହି ପରିସ୍ଥିତି ଠାରୁ ଆଜିର ପରିବେଶ ସମ୍ପୂର୍ଣ୍ଣ ଭିନ୍ନ । ରାଜନୈତିକ ସ୍ତରରେ ସେତେବେଳେ ବହୁ ଦେଶ ସାମ୍ରାଜ୍ୟବାଦୀ ନିୟନ୍ତ୍ରଣ ଭିତରେ ରହିଥିଲେ । ସେମାନଙ୍କର ସ୍ୱାଧୀନତା ନଥିଲା ଓ ସାମ୍ରାଜ୍ୟବାଦର ବିସ୍ତାର ନେଇ ଉନ୍ନତ ରାଷ୍ଟ୍ରମାନଙ୍କ ଭିତରେ ତୁମୁଳ ପ୍ରତିଯୋଗିତା ଓ ଯୁଦ୍ଧ ଲାଗି ରହିଥିଲା । ଏପରିକି ବିଂଶ ଶତାବ୍ଦୀ ଆରମ୍ଭର ପ୍ରଥମ ମଧ୍ୟଭାଗରେ ଦୁଇଟି ବିଶ୍ୱଯୁଦ୍ଧ ମାନବ ସଭ୍ୟତାର ଇତିହାସରେ ଥିଲା ଅତ୍ୟନ୍ତ ଜଘନ୍ୟ ଓ ଲୋମହର୍ଷଣକାରୀ ଘଟଣା । ଶିଳ୍ପ ବିପ୍ଳବର ପରିଣାମରୁ ଯେଉଁ ପୁଞ୍ଜିବାଦର ବିକାଶ ଘଟିଲା ତାହା ଅର୍ଥନୈତିକ ସ୍ତରରେ ବଡ଼ ବୈଷମ୍ୟ ସୃଷ୍ଟି କରିଥିଲା । ମୁଷ୍ଟିମେୟ ଲୋକ ଶିଳ୍ପ ଓ କଳକାରଖାନାର ମାଲିକ ହୋଇ ପ୍ରାଚୁର୍ଯ୍ୟ ଭିତରେ ରହିବା ବେଳେ ସମାଜର ମୁଖ୍ୟଭାଗ ଲୋକ ଦାରିଦ୍ର୍ୟ ଓ ଶୋଷଣର ଶିକାର ହେଉଥିଲେ । ସମାଜର ଲୋକମାନେ ଶ୍ରମଜୀବୀ ଓ ମାଲିକଶ୍ରେଣୀ ଭାବରେ ବିଭାଜିତ ହୋଇ ଏକ ମୁଷ୍ଟିମେୟ ପୁଞ୍ଜିପତି ଶ୍ରେଣୀ ଶ୍ରମଜୀବୀମାନଙ୍କୁ ଶୋଷଣ କରି ରଖିଥିଲେ । ଆମ ଦେଶ ପରି ରକ୍ଷଣଶୀଳ ସମାଜରେ ଜାତିପ୍ରଥା ଅତି ଉତ୍କଟ ହୋଇ ରହିବା ସହ ଜାତି ଜାତି ଭିତରେ ଆଦାନ ପ୍ରଦାନ ସଙ୍କୁଚିତ ହୋଇ ରହିଥିଲା । ଅସ୍ପୃଶ୍ୟତା ଗାଁ ଠାରୁ ସହର ପର୍ଯ୍ୟନ୍ତ ଦୃଢ଼ ହୋଇ ରହିଥିଲା । ନିରକ୍ଷରତା ବ୍ୟାପକ ଭାବେ ରହିଥିଲା ଓ ଶିକ୍ଷା କେବଳ ସମାଜର ଉଚ୍ଚବର୍ଗର ନିୟନ୍ତ୍ରଣ ଭିତରେ ଥିଲା । ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ସେପରି କିଛି ବିକାଶ ହୋଇନଥିଲା ଓ ବିଭିନ୍ନ ମହାମାରୀ ଯୋଗୁ ଗଣମୃତ୍ୟୁ ବ୍ୟାପକ ଭାବେ ଘଟୁଥିଲା । ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ରେଳଯାତ୍ରାର ଜ୍ଞାନ ସମ୍ଭବ ହୋଇଥିଲେ ବି ଗମନାଗମନର ବିକାଶ ହୋଇନଥିଲା । ସ୍ଥଳପଥରେ ଯାତାୟତ କଷ୍ଟକର ବ୍ୟାପାର ଥିଲା ଓ ଦୂରଦୂରାନ୍ତ ଜାଗାମାନଙ୍କୁ ଜଳପଥରେ ଲୋକମାନେ ଯାଉଥିଲେ । ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ପୃଥିବୀର ଲୋକସଂଖ୍ୟା ମାତ୍ର ଶହେ ଷାଠିଏ କୋଟି ଥିଲା ଓ ଅଧିକାଂଶ ଦେଶରେ ବା ଅଞ୍ଚଳରେ ମଝିରେ ମଝିରେ ଦୁର୍ଭିକ୍ଷ ପରିବେଶ ଆସିଲେ ଲୋକମାନେ ଅସହାୟ ହୋଇ ମୃତ୍ୟୁମୁଖରେ ପଡୁଥିଲେ । କୌଣସି ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଲେ ଲୋକମାନେ ଅସହାୟ ହୋଇ ମରୁଥିଲେ । ଏହିପରି ପରିବେଶରେ ଜୀବନ ନିରାପଦବିହୀନ ହୋଇ ରହିଥିଲା । ଏହା ସହିତ ନାନା ପ୍ରକାରର କୁସଂସ୍କାର ଓ ଅହେତୁକ ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଥିଲା । କାଁ ଭାଁ ସହର

ଛାଡ଼ିଦେଲେ ଗ୍ରାମୀଣ ପରିବେଶରେ ଲୋକମାନେ କୌଳିକ ବୃତ୍ତି ଭିତରେ ଜୀବନ ନିର୍ବାହ କରୁଥିଲେ। କୃଷି ହିଁ ଲୋକଙ୍କର ମୁଖ୍ୟ ଆୟର ପନ୍ଥା ଥିଲା। କୌଣସି ବର୍ଷ ଚାଷ ନଷ୍ଟ ହୋଇଗଲେ ଗ୍ରାମମାନଙ୍କରେ ହାହାକାର ପଡୁଥିଲା। ଆମ ଦେଶ ପୃଷ୍ଠଭୂମିରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ରହିଥିଲେ ବି ଶହ ଶହ ଗଡଜାତ ରହିଥିଲା। ବଂଶାନୁକ୍ରମିକ ରାଜତନ୍ତ୍ର ଗଡଜାତମାନଙ୍କରେ ରହିଥିଲା। ସାମାନ୍ୟ କେତେକ ଗଡଜାତକୁ ଛାଡ଼ିଦେଲେ ଅଧିକାଂଶ ରାଜାମାନେ ବହୁ ଅତ୍ୟାଚାରୀ ଥିଲେ ଓ ସେମାନେ ନାନା କର ବସାଇ, ବେଠି ଖଟାଇ ସାଧାରଣ ଲୋକମାନଙ୍କୁ ନାନା ଭାବରେ ଶୋଷଣ କରୁଥିଲେ। ରାଜା, ଜମିଦାରମାନଙ୍କର ନାନା ଅତ୍ୟାଚାର ସାଧାରଣ ଲୋକଙ୍କୁ ସହିବାକୁ ହେଉଥିଲା। ପୃଥିବୀର ଅଧିକାଂଶ ସଭ୍ୟତାରେ ମହିଳାମାନେ ନାନା ଅତ୍ୟାଚାର ଓ ଭେଦଭାବର ଶିକାର ହେଉଥିଲେ। ଏପରିକି ବିଭିନ୍ନ ଗଣତାନ୍ତ୍ରିକ ସଭ୍ୟ ରାଷ୍ଟ୍ରମାନଙ୍କରେ ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ମହିଳାମାନଙ୍କର ଭୋଟ ଦେବାର ଅଧିକାର ନଥିଲା। ଧର୍ମର ଗଭୀର ପ୍ରଭାବ ଥିବା ରକ୍ଷଣଶୀଳ ସମାଜମାନଙ୍କରେ ମହିଳାମାନେ ସାମାଜିକ ସ୍ତରରେ ବହୁ ଭେଦଭାବକୁ ସାମ୍ନା କରୁଥିଲେ। ଭାରତୀୟ ସମାଜରେ ବାଲ୍ୟବିବାହ ଜନିତ ପରିବେଶ ରହିଥିଲା। ଏପରିକି ସ୍ୱାମୀମାନଙ୍କୁ ଦେଖିବା ପୂର୍ବରୁ ଅନେକ ବିଧବା ହେଉଥିଲେ ଓ ବିଧବାମାନଙ୍କ ପ୍ରତି ନାନା ସାମାଜିକ କଟକଣା ରହିଥିଲା।

ସଭ୍ୟତାର ଇତିହାସରେ ପ୍ରତି ଯୁଗରେ ନାନା ଯୁଗଯନ୍ତ୍ରଣା ରହିବା ଏକ ସାଧାରଣ ଉପଲବ୍ଧି। ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ଆମ ଦେଶ ପରି ବହୁ ଦେଶ ଔପନିବେଶିକ ପରାଧୀନତା ବା ରାଜତନ୍ତ୍ର ଭିତରେ ରହିଥିଲା। ଦାରିଦ୍ର୍ୟ, ନିରକ୍ଷରତା, ସାମନ୍ତବାଦୀ ଶୋଷଣ, ନାନା ସାମାଜିକ ଭେଦଭାବ, ମହାମାରୀ ଜନିତ ଗଣମୃତ୍ୟୁ, ଦୁର୍ଭିକ୍ଷ ଇତ୍ୟାଦି ପରିବେଶ ବ୍ୟାପକ ଭାବେ ବିଭିନ୍ନ ଦେଶରେ ରହିଥିଲା। ଏହିସବୁ ଦୃଷ୍ଟିରୁ ଜୀବନର ଗୁଣାତ୍ମକ ମାନ ଅତି ନ୍ୟୂନ ହୋଇ ରହିଥିଲେ।

ତେବେ ବିଂଶ ଶତାବ୍ଦୀ ଆରମ୍ଭରେ ଯେଉଁ ସାମାଜିକ, ରାଜନୈତିକ, ଅର୍ଥନୈତିକ ବାତାବରଣ ରହିଥିଲା ସେଥିରେ ପରିବର୍ତ୍ତନର ସୂତ୍ରପାତ ଆରମ୍ଭ ହେଲା। ସାମ୍ରାଜ୍ୟବାଦକୁ ହଟାଇବା ପାଇଁ ଓ ଉପନିବେଶବାଦରୁ ମୁକ୍ତି ପାଇଁ ପୃଥିବୀର ବିଭିନ୍ନ ଦେଶରେ ସ୍ୱାଧୀନତା ଆନ୍ଦୋଳନମାନ ଧୀରେ ଧୀରେ ମୁଣ୍ଡ ଟେକିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଭିନ୍ନ ଭୂଖଣ୍ଡରେ ସ୍ୱାଧୀନତା ଆନ୍ଦୋଳନ ଏକ ନିର୍ଣ୍ଣାୟକ ସ୍ଥିତିରେ ପହଞ୍ଚି ପାରିଲା ଓ ବହୁ ଦେଶ ସ୍ୱାଧୀନତା

ଲାଭ କଲେ । ଅର୍ଥନୈତିକ ସ୍ତରରେ ସମାଜବାଦ ଓ କମ୍ୟୁନିଜିମ୍ ଗୋଟିଏ ସମୟରେ ବହୁ ଆଶା ସଞ୍ଚାର କରିଥିଲେ । ମାର୍କସଙ୍କର ଶ୍ରେଣୀ ସଂଘର୍ଷ ସିଦ୍ଧାନ୍ତକୁ ଆଧାର କରି କେତେକ ଦେଶରେ ଗଣବିପ୍ଳବର ପରିବେଶ ସୃଷ୍ଟି ହେଲା ଓ ଦେଶରୁ ରାଜତନ୍ତ୍ର, ସାମନ୍ତବାଦ, ପୁଞ୍ଜିବାଦ ଓ ଅର୍ଥନୈତିକ ଶୋଷଣର ବିଲୋପ ପାଇଁ ପ୍ରୟାସ ହେଲା । ଧୀରେ ଧୀରେ ଜନମଙ୍ଗଳକାରୀ ଯୋଜନା ପ୍ରତ୍ୟେକ ରାଷ୍ଟ୍ରର ମୌଳିକ ଆଭିମୁଖ୍ୟ ହେଲା । ଗଣତାନ୍ତ୍ରିକ ବ୍ୟବସ୍ଥା ଏକ ସଭ୍ୟ ଜୀବନବୋଧ ଭାବେ ବୈଚାରିକ ସ୍ତରରେ ସ୍ୱୀକୃତ ହେବାକୁ ଲାଗିଲା । ଏହି ବିଚାରବୋଧର ପରିଣାମରୁ ମହିଳାମାନେ ରାଜନୈତିକ ସ୍ତରରେ ଭୋଟ ଅଧିକାର ପାଇଲେ ଓ ଏପରିକି ଦେଶର ଶାସନ ବ୍ୟବସ୍ଥାରେ ଅଂଶଗ୍ରହଣ କଲେ । ମହିଳା ସଶକ୍ତୀକରଣ ନେଇ ସାମାଜିକ ସଚେତନତା ପ୍ରକାଶ ପାଇଲା । ଯେଉଁ ସବୁ ସମାଜରେ ବିଭିନ୍ନ ପ୍ରକାରର ଭେଦଭାବ ରହିଥିଲା ତାହା ବିରୁଦ୍ଧରେ ଆନ୍ଦୋଳନମାନ ସୃଷ୍ଟି ହେଲା । ମାନବିକ ଅଧିକାର, ସାମାଜିକ ସମତା ଓ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ, ସାର୍ବଜନୀନ ଶିକ୍ଷା ଓ ପ୍ରତ୍ୟେକ ନାଗରିକ ପାଇଁ ସୁସ୍ଥ ଜୀବନର ଭାବନା ରାଷ୍ଟ୍ରର ଇପ୍‌ସିତ ଆଦର୍ଶ ହେଲା । ସମତା, ସ୍ୱତନ୍ତ୍ରତା ଓ ପ୍ରତ୍ୟେକ ବ୍ୟକ୍ତିର ଉତ୍ତମ ଜୀବନ ପାଇଁ ରାଷ୍ଟ୍ରୀୟ ପ୍ରତିବଦ୍ଧତା ପ୍ରକାଶ ପାଇଲା । ସାର୍ବଜନୀନ ଶିକ୍ଷାକୁ ପ୍ରତ୍ୟେକ ରାଷ୍ଟ୍ର ପ୍ରାଧାନ୍ୟ ଦେଲେ । ଦେଶରୁ ନିରକ୍ଷରତା ଦୂରୀକରଣ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ସ୍ୱୀକୃତ ହେବାକୁ ଲାଗିଲା । ଜାତିଭେଦ, ରଙ୍ଗଭେଦ, ଲିଙ୍ଗଭେଦ ପରି ସକଳ ସାମାଜିକ ଭେଦଭାବର ଦୂରୀକରଣ ପାଇଁ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ଆନ୍ତରିକତା ପ୍ରକାଶ ପାଇଲା । ଏହି ସବୁ ବିଚାରବୋଧ ଦେଇ ଏକ ସାଂସ୍କୃତିକ ଜାଗରଣ ଆସିପାରିଲା । ଏକଦା ଯାହା କେବଳ ବୈଚାରିକ ସ୍ତରରେ ଆଦର୍ଶ ହୋଇ ରହିଥିଲା, କାଳକ୍ରମେ ତାହାର ବାସ୍ତବ ରୂପାୟନ ହେବାକୁ ଲାଗିଲା । ହୁଏତ ଏବେ ବି କେତେକ ଦେଶରେ ସାମାଜିକ ଭେଦଭାବ କେଉଁ କେଉଁ ସ୍ତରରେ ରହିଛି, ତେବେ ଏହା ବିରୁଦ୍ଧରେ ସାମାଜିକ ସଚେତନତାର ସ୍ତର ବହୁ ଉନ୍ନତ ହୋଇପାରିଛି । ବିଂଶ ଶତାବ୍ଦୀ ଆରମ୍ଭରୁ ସାମାଜିକ ଦୃଶ୍ୟପଟ ଓ ସାଂପ୍ରତିକ ସମୟର ପରିବେଶ ଭିତରେ ବହୁ ପରିବର୍ତ୍ତନ ଆସିଥିବା ଏକ ସାଧାରଣ ଉପଲବ୍ଧି ।

ସେହିପରି ଚିକିତ୍ସାବିଜ୍ଞାନ କ୍ଷେତ୍ରରେ ଏହି ଶହେ ବର୍ଷ ଭିତରେ ଯେଉଁ ପରିବର୍ତ୍ତନ ହୋଇଛି ତାହା ମାନବ ସଭ୍ୟତାର ଇତିହାସରେ ସବୁଠାରୁ ଉଲ୍ଲେଖନୀୟ ସଫଳତା କହିଲେ ଅତ୍ୟୁକ୍ତି ହେବ ନାହିଁ । ପୃଥିବୀରୁ ମହାମାରୀମାନଙ୍କର ପ୍ରାୟତଃ ମୂଳୋତ୍ପାଟନ ହୋଇପାରିଛି । ଗଣମୃତ୍ୟୁ କେଉଁଠି ହେଲେ ନାହିଁ । ନାନା ରୋଗର କାରଣ ଓ ନିରାକରଣ ନେଇ ଜ୍ଞାନ ହାସଲ ହେବା ଦ୍ୱାରା ସୁସ୍ଥ ଓ ନିରାମୟ ଜୀବନର ପରିବେଶ ଆସିପାରିଛି । ଅବଶ୍ୟ ପ୍ରାକୃତିକ

ପରିବେଶ ଜନିତ ପ୍ରଦୂଷଣ ଓ ଜୀବନଶୈଳୀରେ ପରିବର୍ତ୍ତନ ଯୋଗୁ ଏବେ ରୋଗର ମାତ୍ରା ବଢ଼ିବାରେ ଲାଗିଛି । ଏହା ହିଁ ଆମ ସମୟର ଏକ ବଡ଼ ଯୁଗଯନ୍ତ୍ରଣା । ଏହା ସତ୍ତ୍ୱେ ଏସବୁ ରୋଗମାନଙ୍କର ଚିକିତ୍ସା ଓ ନିଦାନ ନେଇ ଜ୍ଞାନ ହାସଲ ଯୋଗୁ ଲୋକମାନଙ୍କର ହାରାହାରି ଆୟୁ ବୃଦ୍ଧି ପାଇବାରେ ଲାଗିଛି । ଜଟିଳ ଅସ୍ତ୍ରୋପଚାର, ଅଙ୍ଗ ପ୍ରତିରୋପଣ, ସରୋଗେଟ୍ ମାତୃତ୍ୱ ପରି ବହୁ ଯୁଗାନ୍ତକାରୀ ଉଦ୍‌ଭାବନ ଓ ଆବିଷ୍କାର ରୋଗ ବାଧକର ଯନ୍ତ୍ରଣାକୁ ଦୂର କରିବାରେ ସହାୟକ ହୋଇପାରିଛି । ଦୀର୍ଘ ଓ ନିରାମୟ ଜୀବନ ବଞ୍ଚିବାର ପରିବେଶ ଚିକିତ୍ସାବିଜ୍ଞାନର ଅଗ୍ରଗତି ଯୋଗୁ ସମ୍ଭବ ହୋଇପାରୁଛି ।

ଗମନାଗମନ କ୍ଷେତ୍ରରେ ଏହି ଶତାବ୍ଦୀବର୍ଷ ଭିତରେ ଅଭୂତପୂର୍ବ ପରିବର୍ତ୍ତନ ଆସିଛି । ଗମନାଗମନର ବିକାଶ ଯୋଗୁ ପୃଥିବୀ ଏକ କ୍ଷୁଦ୍ର ଗ୍ରାମରେ ପରିଣତ ହୋଇପାରିଛି । ପୃଥିବୀର ଏକ ପ୍ରାନ୍ତରୁ ଅନ୍ୟ ଯେକୌଣସି ପ୍ରାନ୍ତକୁ ଗୋଟିଏ ଦିନ ଭିତରେ ମଣିଷ ଯାଇ ପାରୁଛି । ଏପରିକି ମହାକାଶ ଯାତ୍ରା ଶତାବ୍ଦୀବର୍ଷ ତଳେ ଆମ କଳ୍ପନା ସ୍ତରକୁ ବି ଆସିନଥିଲା ଯାହା ଆଜି ବାସ୍ତବତାରେ ପରିଣତ ହୋଇଛି । ସଞ୍ଚାର ବିଦ୍ୟାର ଯେଉଁ ସଫଳତା ତାହା ବି ସଭ୍ୟତାର ଅଗ୍ରଗତିରେ ଏକ ବଡ଼ ଉପଲବ୍‌ଧି । ପୃଥିବୀରେ ଯେଉଁଠି ଯାହା ଘଟିଲେ ତାହା ତତ୍‌କ୍ଷଣାତ୍ ବିଶ୍ୱରେ ପ୍ରଚାରିତ ହୋଇପାରୁଛି । ଗଣମାଧ୍ୟମ ବିଜ୍ଞାନର ସାହାଯ୍ୟରେ ଏକ ନିର୍ଣ୍ଣାୟକ ସ୍ଥିତିରେ ପହଞ୍ଚି ପାରିଛି । ଏହିସବୁର ସମନ୍ୱିତ ପରିଣତି ଜୀବନର ଗୁଣାତ୍ମକ ମାନକୁ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତ କରିଚାଲିଛି । ଏସବୁ ମାନବିକ ପ୍ରୟାସ, ବୈଜ୍ଞାନିକ ଗବେଷଣା ଓ ବୌଦ୍ଧିକ ଅନୁସନ୍ଧିତ୍ସା ଯୋଗୁ ସମ୍ଭବ ହୋଇଛି ।

(ପ୍ରଗତିବାଦୀ, ୦୩.୦୫.୨୦୧୭)

# ଶହେବର୍ଷର ଯାତ୍ରା

ନିକଟରେ କେରଳ ଯୁକ୍ତିବାଦୀ ସଙ୍ଗମ ବା ହେତୁବାଦୀ ସମାଜର ଶତବାର୍ଷିକୀ ସମାରୋହ ପାଳନ ଉପଲକ୍ଷେ ହେତୁବାଦୀ, ନିରୀଶ୍ୱରବାଦୀ, ମାନବବାଦୀ, ମାନବିକ ଅଧିକାରର ପ୍ରବକ୍ତା ଇତ୍ୟାଦି ପ୍ରଗତିଶୀଳ ବ୍ୟକ୍ତିମାନଙ୍କର ଏକ ତିନିଦିନିଆ ସମ୍ମିଳନୀ କେରଳର କାଲିକଟ ସହରରେ ଅନୁଷ୍ଠିତ ହୋଇଥିଲା । ସେହି ସମ୍ମିଳନୀରେ ଯୋଗଦେବା ଓ ଆଲୋଚନାରେ ଅଂଶଗ୍ରହଣ କରିବା ଅବସରରେ ଯେଉଁ ଅନୁଭୂତି ହୋଇଥିଲା ଏହି ଲେଖାଟି ତାର ସଂକ୍ଷିପ୍ତ ଆଲେଖ୍ୟ ।

ସାଂପ୍ରତିକ ଭାରତବର୍ଷରେ କେରଳ ଏକ ବିକଶିତ ରାଜ୍ୟ । ସାକ୍ଷରତା, ଆର୍ଥିକ ବିକାଶ ଓ ସାମାଜିକ ସ୍ଥିରତା କ୍ଷେତ୍ରରେ କେରଳ ଏକ ଅଗ୍ରଗାମୀ ପ୍ରଦେଶ । କେରଳର ବିକାଶ ପଶ୍ଚାତ୍‌ରେ ଅନ୍ୟାନ୍ୟ କାରଣ ଭିତରେ ସମାଜ ସଂସ୍କାର ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର କିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିବା ମନେହୁଏ । କେରଳର ଜଣେ ବିଶିଷ୍ଟ ହେତୁବାଦୀ ସହୋଦରାନ୍ ଆୟାପନ୍ (୧୮୮୯-୧୯୬୮) ୧୯୧୭ ମସିହାରେ ହେତୁବାଦୀ ସଙ୍ଗଠନ ମାଧ୍ୟମରେ ଏକ ସମାଜ ସଂସ୍କାର କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲେ । ତାହାକୁ ମାଲାୟଲମ୍‌ରେ କୁହାଯାଉଛି ମିଶ୍ର-ଭୋଜନ । ସେହି ସମୟରେ କେରଳରେ ଓ ଭାରତୀୟ ସମାଜରେ ଜାତିପ୍ରଥା ଏକ ଉତ୍କଟ ସାମାଜିକ ବ୍ୟାଧି ଭାବେ ସମାଜକୁ ଭାଗ ଭାଗ କରି ରଖିଥିଲା । ଜାତି ଜାତି ଭିତରେ ସାମାଜିକ ସମ୍ପର୍କ ଅତି ସୀମିତ ଥିଲା ଓ ବିଭିନ୍ନ ଜାତିର ଲୋକମାନେ ଏକାଠି ପଂକ୍ତି ଭୋଜନରେ ଯୋଗଦେବା ଅଚିନ୍ତନୀୟ ଥିଲା । ଏହି ସ୍ଥିତିରେ ଲୋକମାନଙ୍କ ଭିତରୁ ଜାତିଆଣ ମନୋଭାବ ଦୂର କରିବା ପାଇଁ ଆୟାପନ ଗାଁ ଗାଁ ବୁଲି ବିଭିନ୍ନ ଜାତିର ଲୋକମାନଙ୍କ ଭିତରେ ପଂକ୍ତିଭୋଜନର ଆୟୋଜନ କରିଥିଲେ । ସମାଜରୁ ଜାତିଆଣ ମନୋଭାବ ଦୂର କରିବାରେ ଏହା ଥିଲା ଏକ କ୍ରାନ୍ତିକାରୀ ପଦକ୍ଷେପ । ସେହି କାର୍ଯ୍ୟକ୍ରମ ସେ ଶହେ ବର୍ଷ ତଳେ ଆରମ୍ଭ କରିଥିଲେ ଓ ତାର ସ୍ମାରକୀ ସ୍ୱରୂପ ଏହି ଶତବାର୍ଷିକୀ ସମାରୋହ ଆୟୋଜିତ ହୋଇଥିଲା ।

ଅବଶ୍ୟ ସହୋଦରାନ୍ ଆୟାପନ୍ ଥିଲେ ସଂସ୍କାରକ ନାରାୟଣ ଗୁରୁଙ୍କର ଅନୁଗାମୀ । ନାରାୟଣ ଗୁରୁ ଥିଲେ ଗଭୀର ଈଶ୍ୱରବିଶ୍ୱାସୀ । ଏକ ଈଶ୍ୱର, ଏକ ଧର୍ମ ଓ ଏକ ଜାତିର

ଭାବନା ଆଧାରରେ ସେ କେରଳରେ କେତେକ ସମାଜ ସଂସ୍କାର କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ। କିନ୍ତୁ ତାହା କେବଳ ବୈଚାରିକ ସ୍ତରରେ କିଛି ଲୋକଙ୍କୁ ପ୍ରଭାବିତ କରିଥିଲା। ଆୟାପନ୍ ଜଣେ ସମାଜକର୍ମୀ ଭାବରେ ଲୋକମାନଙ୍କ ଭିତରେ ବାସ୍ତବ କାର୍ଯ୍ୟସୂଚୀ ପାଇଁ ନିଷ୍ପତ୍ତି ନେଇଥିଲେ। ଜାତିପ୍ରଥା, ଅସ୍ପୃଶ୍ୟତା ଓ ସାମାଜିକ ଭେଦଭାବର ଦୂରୀକରଣ ପାଇଁ ମିଶ୍ରଭୋଜନ ଓ ଅନ୍ତର୍ଜାତି ବିବାହ ସେ ସମୟରେ ସାମାଜିକ ସଂସ୍କାର କ୍ଷେତ୍ରରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ମନେହୁଏ। କେରଳରେ ଜାତିଗତ ଭେଦଭାବ କେତେ ଦୃଢ଼ ଓ ଅମାନବିକ ଥିଲା ତାହାର ବଳିଷ୍ଠ ଉଦାହରଣ ହେଉଛି ଭାଇକମ ସତ୍ୟାଗ୍ରହ। ଭାରତୀୟ ସମାଜ ସଂସ୍କାର ଆନ୍ଦୋଳନ ଇତିହାସରେ ଭାଇକମ ସତ୍ୟାଗ୍ରହ ଏକ ଉଲ୍ଲେଖନୀୟ ଘଟଣା। ଭାଇକମ ଥିଲା ଏକ ଗଡଜାତ ରାଜ୍ୟ। ସେହି ରାଜ୍ୟର ସହରରେ ମନ୍ଦିର ରାସ୍ତାରେ ଦଳିତ ଲୋକମାନଙ୍କର ଚାଲିବାର ଅଧିକାର ନଥିଲା। ମନ୍ଦିର ରାସ୍ତାରେ ନୀଚ ଲୋକମାନେ ଚାଲି କରି ଗଲେ ଦିଅଁ ଅପବିତ୍ର ହୋଇଯିବେ ବୋଲି ବିଶ୍ୱାସରୁ ଦଳିତ ଲୋକମାନଙ୍କୁ ସର୍ବସାଧାରଣ ରାସ୍ତାରେ ଚାଲିବା ବି ବାରଣ କରାଯାଇଥିଲା। ୧୯୨୪ ମସିହାରେ ଏହି ପ୍ରଥା ବିରୁଦ୍ଧରେ ସେଠାରେ ଆନ୍ଦୋଳନ କେତେକ ଶିକ୍ଷିତ ଲୋକମାନଙ୍କ ଦ୍ୱାରା ଆରମ୍ଭ ହେଲା। ସେମାନଙ୍କୁ ଗିରଫ କରିନେବା ପରେ ସେହି ଆନ୍ଦୋଳନର ନେତୃତ୍ୱ ତାମିଲନାଡୁର ବିଶିଷ୍ଟ ସଂସ୍କାରକ ପେରିୟାର ରାମସ୍ୱାମୀ (୧୮୭୯-୧୯୭୩) ନେଲେ। ଏହି ଆନ୍ଦୋଳନ ମାସ ମାସ ଧରି ଚାଲିବା ପରେ ଏହା ସଫଳ ହେଲା ଓ ଦଳିତ ଲୋକମାନଙ୍କୁ ସର୍ବସାଧାରଣ ରାସ୍ତାରେ ଚାଲିକରି ଯିବାର ଅଧିକାର ମିଳିଲା। ଏହିପରି ଏକ ସାମାଜିକ ପରିବେଶରେ ମିଶ୍ରଭୋଜନ ଓ ଅନ୍ତର୍ଜାତି ବିବାହ କେତେ ସାମାଜିକ ବିରୋଧର ସମ୍ମୁଖୀନ ହୋଇଥିବ ତାହା ସହଜରେ ଅନୁମେୟ। ତେବେ ଆୟାପନ୍ ସମସ୍ତ ପ୍ରତିକୂଳ ସ୍ଥିତି ଓ ସାମାଜିକ ବିରୋଧ ସତ୍ତ୍ୱେ ତାଙ୍କର କାର୍ଯ୍ୟକ୍ରମ ଅବ୍ୟାହତ ରଖିଲେ। ରକ୍ଷଣଶୀଳ ଉଚ୍ଚବର୍ଗର ଲୋକମାନଙ୍କ ବିରୋଧ ସତ୍ତ୍ୱେ ଆୟାପନ୍ ସର୍ବସାଧାରଣରେ ବେଶ୍ ଜନପ୍ରିୟ ହେଲେ। ରାଜନୈତିକ ପରାଧୀନତା ଅପେକ୍ଷା ସାମାଜିକ ଦାସତ୍ୱ ଯେ ସମାଜ ପାଇଁ ଅଧିକ କ୍ଷତିକାରକ ଏହି ଅନୁଭବରୁ ଆୟାପନ୍ ସାମାଜିକ ସଂହତି, ଭ୍ରାତୃତ୍ୱଭାବ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ ଅଧିକ ପ୍ରାଧାନ୍ୟ ଦେଇଥିଲେ। କୋଚିନ୍ ଲେଜିସ୍ଲେଟିଭ କାଉନ୍‌ସିଲ୍ ୧୯୨୩ରେ ଗଠିତ ହେବା ପରେ ୧୯୨୮ରେ ଆୟାପନ୍ ତାଙ୍କର ଜନପ୍ରିୟତା ପାଇଁ ଏଥିର ସଭ୍ୟ ନିର୍ବାଚିତ ହେଲେ। ଅନ୍ତର୍ଜାତି ବିବାହକୁ ସରକାରୀ ସ୍ୱୀକୃତି ପାଇଁ ସେ ଏକ ବିଲ୍ କାଉନ୍‌ସିଲ୍‌ରେ ଆଗତ କରିଥିଲେ। ବିଭିନ୍ନ ସ୍ତରରେ କେତେକ ବିରୋଧ ସତ୍ତ୍ୱେ ୧୯୩୫ରେ ଏହା କାଉନ୍‌ସିଲ୍‌ରେ ଗୃହୀତ ହେଲା, ଯାହା କୋଚିନ୍ ସିଭିଲ୍ ମ୍ୟାରେଜ୍ ରେଗୁଲେସନ୍ ଭାବେ ଜଣାଶୁଣା। ସେତେବେଳର ଭାରତୀୟ ସମାଜରେ ଏହା

ଥିଲା ଏକ କ୍ରାନ୍ତିକାରୀ ପଦକ୍ଷେପ। ଜାତି ବ୍ୟବସ୍ଥାର ଶୃଙ୍ଖଳକୁ ଭାଙ୍ଗିବା ସହ ଶିକ୍ଷାର ପ୍ରସାର ଓ ବୈଜ୍ଞାନିକ ମନୋଭାବର ବିକାଶ ପାଇଁ ସେ ପ୍ରୟାସ କରିଥିଲେ। ସାମାଜିକ ଚେତନାର ସ୍ତର ଉନ୍ନତ ନହେଲେ ଜୀବନର ଗୁଣାତ୍ମକ ମାନରେ ଯେ ପରିବର୍ତ୍ତନ ଆସିପାରିବ ନାହିଁ; ଏହି ଅନୁଭବରୁ ଶିକ୍ଷାର ବିକାଶକୁ ସେ ପ୍ରାଧାନ୍ୟ ଦେଇଥିଲେ। ପୁନଶ୍ଚ ଶିକ୍ଷା ଜରିଆରେ ବୈଜ୍ଞାନିକ ମନୋଭାବ ଓ ମାନବବାଦୀ ଜୀବନଦୃଷ୍ଟିର ପ୍ରସାର କରାଗଲେ ଲୋକମାନଙ୍କର ମାନସିକତାରେ ପରିବର୍ତ୍ତନ ଆସିପାରିବ।

କେରଳରେ ସମାଜ ସଂସ୍କାର, ମାନବବାଦୀ ଜୀବନବୋଧ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଆଧାରିତ ହେତୁବାଦର ଆଉ ଦୁଇ ଜଣ ଯଶସ୍ୱୀ ବୁଦ୍ଧିଜୀବୀ ହେଲେ ଏମ୍.ସି. ଯୋଶେଫ୍ ଓ ଆବ୍ରାହମ୍ ଟି. କୋଭୁର। ଉଭୟ ଖ୍ରୀଷ୍ଟିଆନ୍ ପରିବାରରୁ ଆସିଥିଲେ, କିନ୍ତୁ ନିଜର ବିଚାରଧାରାରେ ଧର୍ମକୁ ପ୍ରତ୍ୟାଖ୍ୟାନ କରି ଧର୍ମନିରପେକ୍ଷ ଜୀବନଧାରାକୁ ପ୍ରାଧାନ୍ୟ ଦେଇଥିଲେ। ଧାର୍ମିକ ଅବବୋଧରେ ରହିଥିବା ପାରଲୌକିକ ବିଶ୍ୱାସ କିପରି ଅହେତୁକ, ଅବୈଜ୍ଞାନିକ ଓ ଅସତ୍ୟ ଏହା ସେମାନଙ୍କର ଗଭୀର ଉପଲବ୍ଧିର ବିଷୟ ଥିଲା। ଯୋଶେଫ୍ ଓକିଲାତି ବୃତ୍ତିକୁ ଗ୍ରହଣ କରିଥିଲେ କିନ୍ତୁ ସମାଜ ସଂସ୍କାର କ୍ଷେତ୍ରରେ ଉତ୍ସର୍ଗୀକୃତ ଥିଲେ। ଆବ୍ରାହମ୍ କୋଭୁର ଅଧ୍ୟାପନା ବୃତ୍ତି ଭିତରେ ରହି ବୈଜ୍ଞାନିକ ମନୋଭାବର ବିକାଶକୁ ଜୀବନର ବ୍ରତ ଭାବରେ ନେଇଥିଲେ। ସେ ପରେ ଶ୍ରୀଲଙ୍କାର ନାଗରିକତ୍ୱ ନେଇଥିଲେ ବି ଆନ୍ତର୍ଜାତିକ ସ୍ତରରେ ହେତୁବାଦୀ ଚିନ୍ତକ ଭାବେ ପରିଚିତ ହୋଇଥିଲେ। କୋଭୁର ଥିଲେ ଜୀବବିଜ୍ଞାନୀ। ସେ ୧୯୬୪ରେ ଆନ୍ତର୍ଜାତିକ ସ୍ତରରେ ଆହ୍ୱାନ ରଖିଥିଲେ ଯେ ଯଦି କୌଣସି ବ୍ୟକ୍ତି ଗୋଟିଏ ଚମତ୍କାରିତା ତାଙ୍କ ସମ୍ମୁଖରେ କିମ୍ବା ତାଙ୍କ ମନୋନୀତ ବ୍ୟକ୍ତିଙ୍କ ପାଖରେ ପ୍ରଦର୍ଶନ କରିପାରିବେ ତେବେ କୋଭୁର ତାଙ୍କୁ ଏକ ଲକ୍ଷ ଟଙ୍କା ଦେବେ। କୋଭୁରଙ୍କର ଏହି ଚାଲେଞ୍ଜ୍ ଆଜି ଆନ୍ତର୍ଜାତିକ ସ୍ତରରେ ମଧ୍ୟ ରହିଛି। ପ୍ରକାଶ ଥାଉ କି, କୋଭୁର ଓ ତାଙ୍କ ପରବର୍ତ୍ତୀ ହେତୁବାଦୀମାନେ ସର୍ବସାଧାରଣରେ ତଥାକଥିତ ବାବା, ମାତା, ଗଡ୍‌ମେନ୍‌ମାନଙ୍କର ଚମତ୍କାରିତାକୁ ପ୍ରଦର୍ଶନ କରି ଲୋକମାନଙ୍କୁ ସଚେତନ କରିବାକୁ ପ୍ରୟାସ କରି ଆସୁଛନ୍ତି। ଆୟାପନ, ଯୋଶେଫ୍ ଓ ଆବ୍ରାହମ୍ କୋଭୁରଙ୍କ ପରେ ବହୁ ବୁଦ୍ଧିଜୀବୀ ଓ ମାନବବାଦୀ-ହେତୁବାଦୀ ଚିନ୍ତକ ସେଠିକାର ଜନଜୀବନକୁ ଗଭୀର ଭାବେ ପ୍ରଭାବିତ କରି ଆସିଛନ୍ତି। ପ୍ରଗତିଶୀଳ ଭାବନା, ସମାଜ ସଂସ୍କାର, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦୀ ଜୀବନଦର୍ଶନ ଓ ଧର୍ମନିରପେକ୍ଷ ମୂଲ୍ୟଚୟ ସମ୍ମିଳିତ ଭାବେ ହେତୁବାଦର ଆଦର୍ଶ। ସଭ୍ୟତାର ବିକାଶ ପାଇଁ ଓ ଜୀବନର ଗୁଣାତ୍ମକ ମାନରେ ଅଭିବୃଦ୍ଧି ପାଇଁ ହେତୁବାଦର ପ୍ରସାର

ଅବଶ୍ୟମ୍ଭାବୀ ମନେହୁଏ। ସାମାଜିକ ମନସ୍ତତ୍ତ୍ୱରେ ହେତୁବାଦର ପ୍ରସାର ଯେତେ ଅଧିକ, ସମାଜ ସେତେ ଅଧିକ ପ୍ରଗତିଶୀଳ ଓ ସାମାଜିକ ମନସ୍ତତ୍ତ୍ୱରେ କୁସଂସ୍କାର ଯେତେ ବ୍ୟାପକ ସମାଜ ସେତେ କ୍ଷୟଶୀଳ। କେରଳରେ ଏହି ଶହେବର୍ଷ ଭିତରେ ସମାଜ ସଂସ୍କାରର ଯେଉଁ ପରମ୍ପରାଟି ନିରବଚ୍ଛିନ୍ନ ଭାବେ ଅଗ୍ରଗତି କରି ଆସିଛି, ତାର ପରିଣାମରୁ କେରଳ ଦେଶରେ ଏକ ପ୍ରଗତିଶୀଳ ଓ ବିକଶିତ ରାଜ୍ୟ ହୋଇପାରିଛି।

ସେଠାରେ ଆଉ ଏକ ଉପଲବ୍ଧି ଥିଲା, ସେଠାରେ ଖୋଲିଥିବା ବିଭିନ୍ନ ପୁସ୍ତକ ଷ୍ଟଲ୍। ପୁସ୍ତକ ଷ୍ଟଲ୍ ସାମୟିକ ଭାବେ ସମ୍ମିଳନୀ ପାଇଁ ଖୋଲିଥିଲା ଓ ସେହି ଷ୍ଟଲ୍‌ମାନଙ୍କରେ ସବୁ ବହି ମାଲାୟାଲମ୍ ଭାଷାରେ ଦେଖିବାକୁ ମିଳୁଥିଲା। ମାଲାୟଲମ୍ ଭାଷାରେ ଏତେ ହେତୁବାଦୀ ସାହିତ୍ୟ ଉପଲବ୍ଧ ତାହା ମୋ ପାଇଁ ଏକ ଆଶ୍ଚର୍ଯ୍ୟର ବିଷୟ ଥିଲା। ମାଲାୟଲମ୍ ଭାଷା ଏକ ଶାସ୍ତ୍ରୀୟ ଦ୍ରାବିଡ଼ ଭାଷା, ତେବେ ସେହି ଭାଷାରେ ଯେ ଏତେ ପ୍ରଗତିଶୀଳ ସାହିତ୍ୟ ରହିଛି ତାହା ମୁଁ କଳ୍ପନା କରିନଥିଲି।

ଦେଶରେ ଶିକ୍ଷାର ବିକାଶ ଓ ସାକ୍ଷରତା ମାନଦଣ୍ଡରୁ କେରଳ ଏକ ନମ୍ବର ରାଜ୍ୟ। ସେହିପରି ସେଠାରେ ଜାଣିବାକୁ ପାଇଲି କେରଳର ପ୍ରତ୍ୟେକ ଗ୍ରାମକୁ ବିଜୁଳି ଆଲୋକ ଯାଇଛି ଓ ପ୍ରତ୍ୟେକ ପରିବାରକୁ ଯାଇଛି। ଶିକ୍ଷା ଓ ସାମାଜିକ ବିକାଶ ଅର୍ଥନୈତିକ ପ୍ରଗତିର ମୂଳଭିତ୍ତି। ଅର୍ଥନୈତିକ ପ୍ରଗତି ପାଇଁ ସାମାଜିକ ଭେଦଭାବ, କୁସଂସ୍କାର, ଧାର୍ମିକ ଆବେଗ ଓ ପାରଲୌକିକ ମାନସିକତା ଯେ ବଡ଼ ପ୍ରତିବନ୍ଧକ ଏହା ହିଁ ଏକ ଐତିହାସିକ ସତ୍ୟ।

(ପ୍ରଗତିବାଦୀ, ୧୨.୦୭.୨୦୧୭)

# ସମସ୍ୟର ଆହ୍ୱାନ

ପୃଥିବୀ ବିବଧବର୍ଣ୍ଣା । ପାହାଡ଼, ପର୍ବତ, ନଦୀ, ସମୁଦ୍ର, ମରୁଭୂମି, ଜଳଭାଗ, ସ୍ଥଳଭାଗ ଇତ୍ୟାଦିକୁ ନେଇ ପୃଥିବୀ ଓ ତାର ପ୍ରାକୃତିକ ପରିବେଶ । ବିବିଧତା ଯେପରି ପ୍ରକୃତିର ବିଭବ, ସେହିପରି ମଣିଷ ସମାଜରେ ରହିଛି କେତେ ବିବିଧତା । ପ୍ରାକୃତିକ ବିବର୍ତ୍ତନ ପ୍ରକ୍ରିୟାରେ ବହୁ ଅଞ୍ଚଳରେ ମଣିଷମାନେ ସୃଷ୍ଟି ହେବା ପରେ ସେମାନେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ଜୀବନ ନିର୍ବାହ କରିଛନ୍ତି । କାଳକ୍ରମେ ସେମାନଙ୍କ ଭିତରେ ବିଚାର ବୁଦ୍ଧି, ସାମର୍ଥ୍ୟ ଓ ଦକ୍ଷତାର ବିକାଶ ହୋଇଛି । ପ୍ରକୃତି ମଣିଷ ପାଖରେ ସ୍ୱରପେଟିକା ଦେଇଥିବାରୁ ମଣିଷ ଭାଷା କହିବାକୁ ସମର୍ଥ ହୋଇଛି ଓ କାଳକ୍ରମେ ହଜାର ହଜାର ଗୋଷ୍ଠୀ ଜୀବନରୁ ହଜାର ହଜାର ଭାଷାର ଉଦ୍ଭବ ହୋଇଛି । ପରିସ୍ଥିତି କ୍ରମେ ସଭ୍ୟତାର କ୍ରମବିକାଶ ସହ କେତେକ ଭାଷା ବିକଶିତ ହୋଇଛନ୍ତି । କେତେକ ଭାଷାରେ ସାହିତ୍ୟ, ଦର୍ଶନ, ଜ୍ଞାନ ବିଜ୍ଞାନ ଓ କଳାତ୍ମକ ଅଭିବ୍ୟକ୍ତିର ବିକାଶ ହୋଇଛି ଓ ଅନେକ ଭାଷା କେବଳ ଏକ ଗୋଷ୍ଠୀର ଭାବର ଆଦାନ ପ୍ରଦାନ କ୍ଷେତ୍ରରେ ସୀମାବଦ୍ଧ ହୋଇଯାଇଛନ୍ତି । ଏକ ଆଦିମ ସ୍ଥିତିରୁ ଆବଶ୍ୟକତା ହେତୁ ମଣିଷ ବୁଦ୍ଧିର ବିକାଶ ଘଟାଇଛି ଓ ପ୍ରାକୃତିକ ପ୍ରତିକୂଳତା ଭିତରେ ସଂଗ୍ରାମ କରି ବଞ୍ଚିବାକୁ ପ୍ରୟାସ କରିଛି । କେତେକ ପ୍ରାଣୀଙ୍କୁ ଗୃହପାଳିତ ଭାବେ ପୋଷା ମନାଇ ସେମାନଙ୍କର ସାହାଯ୍ୟ ନେଇଛି ଓ ନିଜର ସୁବିଧା ପାଇଁ ବିନିଯୋଗ କରିଛି । କୃଷିର ସାମାନ୍ୟ ଧାରଣା ଆସିବା ପରେ ସେ କେତେ ଶ୍ରମ ଦେଇ ଚାଷଜମି ପ୍ରସ୍ତୁତ କରିଛି । ଯେତେ କୃଷିକ୍ଷେତ୍ର ରହିଛି ସେସବୁ ମଣିଷ ହିଁ ଜଙ୍ଗଲ କାଟି, ହାତ ହତିଆର ନିର୍ମାଣ କରି ତା ସାହାଯ୍ୟରେ ବାହାର କରିଛି । ନିଜକୁ ଖରା ବର୍ଷା ଶୀତରୁ ରକ୍ଷା କରିବା ପାଇଁ ଗୃହନିର୍ମାଣ କରିବାକୁ ପ୍ରଯନ୍ କରିଛି । ଆଦିମ ମଣିଷର ଝାଟିମାଟିର ଘର ଠାରୁ ବିକାଶର ଧାରାରେ ଆଜି ବଡ଼ ବଡ଼ ଅଟ୍ଟାଳିକା, ପ୍ରାସାଦମାନ ମଣିଷ ନିଜର ବୁଦ୍ଧି ଖଟାଇ ନିର୍ମାଣ କରିଛି । ଏକ ଆଦିମ ଅବସ୍ଥାରୁ ଧୀର ମନ୍ଥର ଗତିରେ ମଣିଷ ଜାତି ଆଗକୁ ଯାଇଛି ଓ ଜୀବନର ମାନରେ କ୍ରମବିକାଶ ଘଟାଇ ଚାଲିଛି । ହଜାର ହଜାର ବର୍ଷର ପ୍ରୟାସ ଓ ପାରସ୍ପରିକ ସହଯୋଗ ଭିତରେ ସଭ୍ୟତାର କ୍ରମବିକାଶ ହୋଇଛି, ଜ୍ଞାନବିଜ୍ଞାନର ବିକାଶ ଘଟିଛି, ରାଜନୈତିକ ସ୍ଥିରତା ଆସିଛି, କେତେ କେତେ ନୀତି ଆଦର୍ଶର ଭାବନା ସୃଷ୍ଟି ହୋଇଛି ଓ ଜୀବନର ଗୁଣାତ୍ମକ ମାନରେ କ୍ରମୋନ୍ନତି ଘଟିଛି ।

ମାତ୍ର ଦୁଇ ଶତାବ୍ଦୀ ତଳେ ଯେତେବେଳେ ଗମନାଗମନର ବିଶେଷ ବିକାଶ ହୋଇନଥିଲା ଗୋଟିଏ ଭୂଖଣ୍ଡର ଜନଗଣ ଅନ୍ୟ ଭୂଖଣ୍ଡ ବିଷୟରେ ଜାଣିବାର ଅବକାଶ ନଥିଲା। ପ୍ରାକୃତିକ ବିବିଧତା ପରି ବହୁ ସାମାଜିକ ଓ ସାଂସ୍କୃତିକ ବିବିଧତା ମଣିଷ ସମାଜରେ ଯେ ରହିଛି ଏହି ଜ୍ଞାନ ସାମ୍ରାଜ୍ୟବାଦର ବିସ୍ତାର ମଧ୍ୟ ଦେଇ ମଣିଷ ସମାଜରେ ଜ୍ଞାତ ହୋଇଛି। ଏପରିକି ଏହି ପ୍ରକ୍ରିୟାରେ ଗୋଷ୍ଠୀ ଗୋଷ୍ଠୀ ଭିତରେ ଦ୍ୱନ୍ଦ୍ୱ, ସଂଘର୍ଷର ପରିବେଶ ଆସିଛି। ଧର୍ମଗତ ଅସ୍ମିତାକୁ ନେଇ ସାମ୍ପ୍ରଦାୟିକ ତିକ୍ତତା ସୃଷ୍ଟି ହୋଇଛି ଓ ଧର୍ମଗୋଷ୍ଠୀମାନଙ୍କ ଭିତରେ ନାନା କାରଣରୁ ବିବାଦ ସୃଷ୍ଟି ହୋଇଛି। ରାଜନୈତିକ ସ୍ତରରେ କ୍ଷମତାଶାଳୀ ଗୋଷ୍ଠୀ ଅନ୍ୟମାନଙ୍କୁ କବଳିତ କରି ସେମାନଙ୍କ ଭୂଖଣ୍ଡକୁ ଉପନିବେଶ କରିଛନ୍ତି। ବର୍ଣ୍ଣଗତ ପାର୍ଥକ୍ୟକୁ ନେଇ ଏକ ଶକ୍ତିଶାଳୀ ଗୋଷ୍ଠୀ ଅନ୍ୟ ଗୋଷ୍ଠୀକୁ ନିଜର ଦାସ କରିଛନ୍ତି। ଏପରିକି କେତେକ ଭୂଖଣ୍ଡରେ ଏକ ପ୍ରଭାବଶାଳୀ ଗୋଷ୍ଠୀ ଅନ୍ୟମାନଙ୍କୁ ନାନା ଭାବରେ ଶୋଷଣ କରିଛନ୍ତି। ରାଜତନ୍ତ୍ର ଯୁଗରେ ରାଜ୍ୟ ରାଜ୍ୟ ମଧ୍ୟରେ ସର୍ବଦା ବିବାଦ ସୃଷ୍ଟି ହୋଇଛି ଓ ଏପରିକି ପ୍ରତି ଶତାବ୍ଦୀରେ ବିଭିନ୍ନ ଭୂଖଣ୍ଡରେ ନାନା ଯୁଦ୍ଧ ଓ ରକ୍ତପାତ ଘଟିଛି। ଦେଖିବାକୁ ଗଲେ ମଣିଷ ନାନା ଭାବରେ ବିଭାଜିତ ହୋଇ ରହିଛି ଓ ଭିନ୍ନତା ଥିବା ଗୋଷ୍ଠୀମାନଙ୍କ ଭିତରେ ଦ୍ୱନ୍ଦ୍ୱ, ସଂଘର୍ଷ ଓ ନାନା ଅବିଶ୍ୱାସ ରହି ଆସିଛି। ଆଜିର ଏକବିଂଶ ଶତାବ୍ଦୀରେ ବି ରାଜନୈତିକ, ସାଂସ୍କୃତିକ, ଅର୍ଥନୈତିକ ଓ ସାମାଜିକ କାରଣକୁ ନେଇ ମଣିଷ ସମାଜରେ ବିଦ୍ୱେଷ, ଅବିଶ୍ୱାସ ଓ ହିଂସାର ବାତାବରଣ ରହିଛି।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଚିନ୍ତା ରାଜ୍ୟରେ ଏକ ସାଂସ୍କୃତିକ ଓ ନୈତିକ ଉତ୍ତରଣ ଘଟିଛି। ଆଣବିକ ଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ମାନବ ସଭ୍ୟତାକୁ ଏପରି ଏକ ନିର୍ଣ୍ଣାୟକ ସ୍ଥିତିକୁ ନେଇଛି ଯେଉଁଠି ଏହି ଉପଲବ୍ଧି ଆସିଛି ଯେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଅଭାବରେ ସଭ୍ୟତା ଧ୍ୱଂସ ପାଇଯିବ। ଯେଉଁ କାରଣ ସମୂହ ମନୁଷ୍ୟ ସମାଜରେ ତିକ୍ତତା, ଭେଦଭାବ ଓ ହିଂସାର ପରିବେଶ ସୃଷ୍ଟି କରୁଛି ତାହାକୁ ଅତିକ୍ରମ କରିବାକୁ ହେବ। ଆଧୁନିକ ପ୍ରଯୁକ୍ତି ପୃଥିବୀକୁ କ୍ଷୁଦ୍ର ଗ୍ରାମରେ ପରିଣତ କରିପାରିଛି। ବୈଜ୍ଞାନିକ ଜ୍ଞାନକୌଶଳ ଦ୍ୱାରା ମନୁଷ୍ୟ ଦୂରତାକୁ ଅତିକ୍ରମ କରିପାରିଛି। ପୃଥିବୀରୁ ବହୁ ମହାମାରୀକୁ ନିୟନ୍ତ୍ରଣ କରିବାରେ ମନୁଷ୍ୟ ସଫଳ ହୋଇପାରିଛି। ଅତୀତର ଦୁର୍ଭିକ୍ଷ ଓ ଗଣମୃତ୍ୟୁ ଆଜିର ପୃଥିବୀରୁ ଅପସରି ଯାଇଛି। ପୃଥିବୀରେ ଯାହା କିଛି ବାହ୍ୟିକ ସଙ୍କଟ ବା ପାରିବେଶିକ ସମସ୍ୟା ରହିଛି, ମଣିଷ ନିଜର ବୈଜ୍ଞାନିକ ଜ୍ଞାନକୌଶଳ ଦ୍ୱାରା ଅତିକ୍ରମ କରିବାର ସାମର୍ଥ୍ୟ ଆଣିପାରିଛି। ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ମନୁଷ୍ୟକୁ ବହୁ ଭାବରେ ଶକ୍ତିଶାଳୀ କରିବା ସହ ଆମର ସାମର୍ଥ୍ୟକୁ ଅନେକ ବୃଦ୍ଧି କରିପାରିଛି।

ଏ ସବୁ ସତ୍ତ୍ୱେ ସମସ୍ୟା ରହିଛି ଦୃଷ୍ଟିଭଙ୍ଗୀରେ ଓ ମାନସିକତାରେ। ମାନବବାଦ, ମାନବିକ ଅଧିକାର, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ହେତୁବାଦୀ ଦର୍ଶନ ମଣିଷ ସମାଜରେ ବ୍ୟାପକ ଭିତ୍ତି ନେଇ ପାରୁନାହିଁ। ଏବେ ବି ମଣିଷ ସମାଜରେ ଓ ବିଶେଷକରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ମାନବିକ ଅଧିକାରର ଉଲ୍ଲଙ୍ଘନ ବହୁ ଭାବରେ ହେଉଛି। ଧାର୍ମିକ ଆବେଗକୁ ଆଧାର କରି ସାଂପ୍ରଦାୟିକତା ଓ ସନ୍ତ୍ରାସବାଦ କେତେକ ସମାଜରେ ବ୍ୟାପକ ଭାବେ ରହିଛି। ଏପରିକି ରାଜନୈତିକ ଲକ୍ଷ୍ୟ ହାସଲ ପାଇଁ ଧାର୍ମିକ ଆବେଗକୁ ଆୟୁଧ କରାଯାଉଛି। ଜନଗଣଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ପରିବର୍ତ୍ତେ ଅହେତୁକ ଅବୈଜ୍ଞାନିକ ବିଚାରକୁ ପ୍ରଚାର କରାଯାଉଛି। ଶକ୍ତିଶାଳୀ ଗୋଷ୍ଠୀମାନେ ଜନମାନସରେ କୌଶଳକ୍ରମେ ରାଜନୈତିକ ଅଭିସନ୍ଧି ରଖି ଭେଦଭାବର ବିଷ ସଞ୍ଚାର କରୁଛନ୍ତି। ଆନ୍ତର୍ଜାତିକ ଦୃଶ୍ୟପଟରେ କେତେକ ଦେଶ ସେମାନଙ୍କର ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ବିକ୍ରୟ କରି ଅର୍ଥନୀତିକୁ ଦୃଢ଼ କରିବା ପାଇଁ ଅନ୍ୟ ଦେଶମାନଙ୍କ ଭିତରେ ରହିଥିବା ବିବାଦକୁ ପ୍ରୋତ୍ସାହନ ଦେଇ ଚାଲିଛନ୍ତି। ପଡ଼ୋଶୀ ଦେଶମାନଙ୍କ ଭିତରେ ଦାରିଦ୍ର୍ୟ ଦୂରୀକରଣ ଜନିତ ସହଯୋଗ ପରିବର୍ତ୍ତେ ଅସ୍ତ୍ରଶସ୍ତ୍ର ନିର୍ମାଣ ପାଇଁ ପ୍ରତିଯୋଗିତା ତୀବ୍ର ହେବାରେ ଲାଗିଛି। ବିକାଶ, ଦାରିଦ୍ର୍ୟ ଦୂରୀକରଣ, ନାଗରିକଙ୍କର ଗୁଣାତ୍ମକ ଜୀବନ ଓ ଜନହିତକାରୀ ଆଭିମୁଖ୍ୟକୁ ପ୍ରାଧାନ୍ୟ ଦେବା ପରିବର୍ତ୍ତେ ରାଷ୍ଟ୍ର ରାଷ୍ଟ୍ର ଭିତରେ ବିଦ୍ୱେଷକୁ କୌଶଳକ୍ରମେ ପ୍ରସାର କରାଯାଉଛି। ସାଂପ୍ରତିକ ବିଶ୍ୱରେ ଏହି ସବୁ ବିଭେଦକାରୀ ମନୋଭାବକୁ ଦୂର କରି ଏକ ମାନବବାଦୀ ଜୀବନବୋଧ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ବାର୍ତ୍ତାକୁ କିପରି ସାର୍ବଜନୀନ କରାଯାଇ ପାରିବ ତାହା ସବୁଠାରୁ ବଡ଼ ଆହ୍ୱାନ ମନେହୁଏ।

ସୁଖର କଥା ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ବିଶ୍ୱ ସ୍ତରରେ କେତେକ ସଚେତନତା ପ୍ରକାଶ ପାଉଛି। ସମଗ୍ର ବିଶ୍ୱରେ ଆନ୍ତର୍ଜାତିକ ମନୋଭାବ ଓ ମାନବବାଦୀ ଜୀବନ ଦୃଷ୍ଟିର ପ୍ରସାରକୁ କେତେକ ଦାର୍ଶନିକ ଓ ରାଷ୍ଟ୍ରନୀତିଜ୍ଞ ପ୍ରାଧାନ୍ୟ ଦେଉଛନ୍ତି। ଯେତେ ଦିନ ପର୍ଯ୍ୟନ୍ତ ବିଶ୍ୱ ସରକାରର ବାସ୍ତବ ରୂପରେଖଟି ଭିତ୍ତି ନେଇ ନାହିଁ ସେ ପର୍ଯ୍ୟନ୍ତ ରାଷ୍ଟ୍ରମାନଙ୍କ ମଧ୍ୟରେ କିପରି ଶାନ୍ତିପୂର୍ଣ୍ଣ ସହଯୋଗ ରହିପାରିବ ସେ ପାଇଁ ଗୋଷ୍ଠୀନିରପେକ୍ଷତା ଭାବନାକୁ ଅଧିକ ବ୍ୟାପକ କରିବାର ଆବଶ୍ୟକତା ରହିଛି। ସକଳ ମାନବିକ ସମସ୍ୟାର ସମାଧାନ ଶାନ୍ତିପୂର୍ଣ୍ଣ ଭାବରେ କରାଯିବା ଏକ ସଭ୍ୟ ଜୀବନବୋଧ ଓ ଯୁଦ୍ଧ ଯେ ଏକ ଆଦିମ ବର୍ବରତା ଏହି ବିଚାରବୋଧ ଆମ ସମୟର ଏକ ବଡ଼ ମୂଲ୍ୟବୋଧ। ଯୁଦ୍ଧ, ହିଂସା, ମିଲିଟାରିଜିମ୍ ଯେ ସଭ୍ୟ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ଏହା ହିଁ ସାଂପ୍ରତିକ ଯୁଗର ବଡ ମାନବିକ ଉପଲବ୍ଧି। ଏହି

ପୃଷ୍ଠଭୂମିରେ ଏହି ମୂଲ୍ୟବୋଧକୁ ସାର୍ବଜନୀନ କରିବା ପାଇଁ ଆନ୍ତର୍ଜାତିକ ସ୍ତରରେ ବିଶ୍ୱଶାନ୍ତି ପାଇଁ ଅବଦାନ ଦେଉଥିବା ବ୍ୟକ୍ତିଙ୍କୁ ଶାନ୍ତି ନୋବେଲ୍ ପୁରସ୍କାର ଦେବା ଏକ ଉଲ୍ଲେଖନୀୟ ଘଟଣା। ମହାତ୍ମା ଗାନ୍ଧୀଙ୍କ ଶହେ ପଚିଶତମ ଜନ୍ମଶତବାର୍ଷିକୀ ଠାରୁ ୧୯୯୫ରୁ "ଗାନ୍ଧୀ ଶାନ୍ତି ପୁରସ୍କାର" ଆନ୍ତର୍ଜାତିକ ସ୍ତରରେ ବି ପ୍ରଦାନ କରାଯାଉଛି। ଏହିପରି କେତେକ ଆନ୍ତର୍ଜାତିକ ପୁରସ୍କାର ଶାନ୍ତି ପ୍ରତିଷ୍ଠା ପାଇଁ ବିଭିନ୍ନ ଦେଶରେ ମଧ୍ୟ ଦିଆଯାଉଛି। ଏସବୁର ଆଭିମୁଖ୍ୟ ହେଉଛି ଏକ ଶାନ୍ତିପୂର୍ଣ୍ଣ ବିଶ୍ୱର ପ୍ରତିଷ୍ଠା। ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବା ସଭ୍ୟତାର ଆତ୍ମହତ୍ୟା-ଏହା ହିଁ ଆମ ପାଇଁ ସବୁଠାରୁ ବଡ଼ ଆହ୍ୱାନ।

(ପ୍ରଗତିବାଦୀ, ୨୦.୦୯.୨୦୧୭)

# ସଦ୍‌ଭାବନା ବନାମ ଯୁଦ୍ଧ

ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଗଢ଼ି ଉଠିଥିବା ସଭ୍ୟତାମାନଙ୍କର କ୍ରମବିକାଶର ଐତିହାସିକ ଅନୁଶୀଳନରୁ ଆଜିର ଏକବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଆମେ ଦେଖିବାକୁ ପାଉ ଯେ ସର୍ବଦା ପୃଥିବୀ ପୃଷ୍ଠରେ ଯୁଦ୍ଧ, ହିଂସାର ବାତାବରଣ କିଛି ନା କିଛି ରହିଆସିଛି। ଏକ ଯୁଦ୍ଧମୁକ୍ତ ପୃଥିବୀ କେବେ ବି ବାସ୍ତବ ରୂପରେଖ ନେଇପାରି ନାହିଁ। ଏପରିକି କେତେକ ଭାଷାରେ ରହିଥିବା ମହାକାବ୍ୟମାନଙ୍କରେ ବି ଯୁଦ୍ଧର ବର୍ଣ୍ଣନା ଦେଖିବାକୁ ମିଳେ। ଗ୍ରୀକ୍ ଭାଷାରେ ଇଲିଆଡ୍ ଓ ଅଡିଶି ନାମରେ ଯେଉଁ ଦୁଇଟି ମହାକାବ୍ୟ ହୋମର୍ ଖ୍ରୀ.ପୂ. ଅଷ୍ଟମ-ନବମ ଶତାବ୍ଦୀରେ ଲେଖିଥିଲେ ସେଥିରେ ଯୁଦ୍ଧର କେତେ କେତେ ବର୍ଣ୍ଣନାର ଚିତ୍ର ରହିଛି। ଇଲିଆଡ୍ ମହାକାବ୍ୟରେ ଗ୍ରୀକ୍ ରାଣୀ ହେଲେନ୍‌ଙ୍କୁ ଟ୍ରୋଜାନ୍‌ଙ୍କ କବଳରୁ ମୁକ୍ତ କରିବା ପାଇଁ ଯୁଦ୍ଧର ବହୁ ବର୍ଣ୍ଣନା ଦେଖିବାକୁ ମିଳେ। ଅଡିଶି ମହାକାବ୍ୟ ବି ହେଉଛି ଏକ ଦୁଃସାହାସିକ ବୀରଗାଥାର କାହାଣୀ। ଅଡିସିଅସ୍ ଚରିତ୍ର ଭିତର ଦେଇ ମହାକବି ହୋମର ଜଣେ ଗ୍ରୀକ୍ ହିରୋଙ୍କ ଯେଉଁ ଗୁରୁତ୍ୱପୂର୍ଣ୍ଣ କାହାଣୀର ବର୍ଣ୍ଣନା ଦେଇଛନ୍ତି ସେଥିରୁ ସେହି ସମୟର ସାମାଜିକ ସ୍ଥିତିରେ କିପରି ଯୁଦ୍ଧ ହେଉଥିଲା ତାହାର ଚିତ୍ର ମିଳିଥାଏ। ଆମ ଦେଶରେ ଲେଖା ଯାଇଥିବା ମହାଭାରତ ଓ ରାମାୟଣ ଦୁଇଟି ମହାକାବ୍ୟ। ମହାଭାରତ ମହାକାବ୍ୟରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧର ଯେଉଁ ବର୍ଣ୍ଣନା ରହିଛି ତାହା ସେହି ସମୟର ସମାଜର କିଛି ଚିତ୍ର ପ୍ରଦାନ କରିଥାଏ। ସେହିପରି ରାମାୟଣରେ ସୀତାଙ୍କୁ ଉଦ୍ଧାର କରିବା ପାଇଁ ରାମ ଓ ରାବଣଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧ ମହାକାବ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ବର୍ଣ୍ଣନା। ବ୍ୟାସଦେବଙ୍କ ମହାଭାରତ ଓ ବାଲ୍ମୀକିଙ୍କର ରାମାୟଣ ଖ୍ରୀ.ପୂ. ପାଞ୍ଚଶହ ଓ ଖ୍ରୀ.ପୂ. ତିନିଶହ ଭିତରେ ଯଥାକ୍ରମେ ଲେଖାଯିବା ଅନୁମାନ କରାଯାଏ। ତେବେ ଦୁଇ ମହାକାବ୍ୟରେ ଯୁଦ୍ଧର ଅନେକ ବର୍ଣ୍ଣନାରୁ ସେହି ସମୟର ସାମାଜିକ ସ୍ଥିତି ସଂପର୍କରେ ସୂଚନା ମିଳିଥାଏ। ବିଭିନ୍ନ ଭାଷାରେ ଲେଖା ଯାଇଥିବା ମହାକାବ୍ୟର କାହାଣୀମାନ କାଳ୍ପନିକ ହେଲେ ବି ସେହି କାବ୍ୟମାନଙ୍କରେ ରହିଥିବା ନାନା ଯୁଦ୍ଧର କାହାଣୀ ତତ୍‌କାଳୀନ ସମୟର ସଂଘର୍ଷପୂର୍ଣ୍ଣ ସ୍ଥିତିର ସୂଚନା ଦେଇଥାଏ। ବିଭିନ୍ନ ଦେଶର ଧାରାବାହିକ ଇତିହାସର ଯେଉଁ ଚିତ୍ର ଐତିହାସିକମାନେ ନିର୍ମାଣ କରିଛନ୍ତି ସେଥିରେ ଯୁଦ୍ଧ କିପରି ସବୁ ଭୂଖଣ୍ଡରେ ଓ ସବୁ ଶତାବ୍ଦୀରେ ଘଟିଛି ତାହାର ନିଛକ ଚିତ୍ର ମିଳିଥାଏ। ଏପରି କୌଣସି ଶତାବ୍ଦୀ ନାହିଁ ଯେଉଁ ଶତାବ୍ଦୀରେ ଏକ ଭୂଖଣ୍ଡରେ ଯୁଦ୍ଧ ହୋଇ ନାହିଁ।

ଇତିହାସରେ ପ୍ରସିଦ୍ଧ ଧର୍ମଯୁଦ୍ଧ ବା କ୍ରୁସେଡ୍ ଏକାଦଶ ଶତାବ୍ଦୀର ଶେଷଭାଗରୁ ତ୍ରୟୋଦଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ଦୁଇ ଶହ ବର୍ଷ ଧରି ଚାଲିବାର ଘଟଣା ସୁବିଦିତ। ୟୁରୋପୀୟ ଖ୍ରୀଷ୍ଟିୟାନମାନେ ହୋଲି ଲ୍ୟାଣ୍ଡ କୁହାଯାଉଥିବା ଜେରୁଜେଲମକୁ ମୁକ୍ତ କରିବା ପାଇଁ ଓ ଇସ୍‌ଲାମ୍‌ର ପ୍ରସାରକୁ ପ୍ରତିହତ କରିବା ପାଇଁ ମୁସଲମାନଙ୍କ ସହ ଏହି ଯୁଦ୍ଧ କରିଥିବା ଏକ ଐତିହାସିକ ସତ୍ୟ। ଯେଉଁ ସମୟରେ ରାଷ୍ଟ୍ରର ଭାବନା ନ ଥିଲା ବା ଏକ ରାଷ୍ଟ୍ରୀୟ ଚେତନାର ବିକାଶ ହୋଇନଥିଲା ସେ ସମୟରେ ଇତିହାସରେ ଅନେକ ଯୁଦ୍ଧର କାହାଣୀ ଦେଖିବାକୁ ମିଳେ। ରାଜତନ୍ତ୍ର ଯୁଗରେ ରାଜ୍ୟ ବିସ୍ତାର କରିବାର ମନୋଭାବ ସାରା ପୃଥିବୀରେ ରହିଥିଲା ଓ ବଳଶାଳୀ ରାଜାମାନେ ଅନ୍ୟ ରାଜ୍ୟମାନଙ୍କୁ ଆକ୍ରମଣ କରିବାର ବହୁ ଲୋମହର୍ଷଣ କାହାଣୀ ଇତିହାସରୁ ଜାଣିବାକୁ ମିଳିଥାଏ।

ବିଂଶଶତାବ୍ଦୀର ପ୍ରଥମ ଭାଗରେ ଦୁଇଟି ବିଶ୍ୱଯୁଦ୍ଧର କାହାଣୀ ଇତିହାସରେ ପ୍ରସିଦ୍ଧ। ପ୍ରଥମ ବିଶ୍ୱଯୁଦ୍ଧ ୧୯୧୪ ମସିହାରୁ ୧୯୧୮ ମସିହା ପର୍ଯ୍ୟନ୍ତ ଚାଲିଥିଲା ଯେଉଁଥିରେ ଅଧିକାଂଶ ଦେଶ ଦୁଇ ପକ୍ଷ ଭିତରୁ ଗୋଟିଏ ପକ୍ଷକୁ ସମର୍ଥନ କରି ଯୁଦ୍ଧରେ ସଂପୃକ୍ତ ହୋଇଥିଲେ। କୁହାଯାଏ ଯେ, ଏହି ଯୁଦ୍ଧରେ ପ୍ରାୟ ସାତ କୋଟି ଲୋକ ସୈନ୍ୟବାହିନୀରେ ସଂପୃକ୍ତ ହୋଇ ଯୁଦ୍ଧରେ ଭାଗ ନେଇଥିଲେ ଓ ସେ ମଧ୍ୟରୁ ଦେଢ଼ କୋଟି ଲୋକ ମୃତ୍ୟୁବରଣ କରିଥିଲେ ଓ ଦୁଇ କୋଟି ଲୋକ କ୍ଷତବିକ୍ଷତ ହୋଇ ମୃତ୍ୟୁ ସହ ସଂଗ୍ରାମ କରିଥିଲେ। ପ୍ରଥମ ବିଶ୍ୱଯୁଦ୍ଧ ସରିବାର ଦୁଇ ଦଶନ୍ଧି ପରେ ୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା ଓ ଛ' ବର୍ଷ ଧରି ଏହି ଯୁଦ୍ଧ ଚାଲିଥିଲା ଯେଉଁଥିରେ ପୃଥିବୀରୁ ଅଧିକାଂଶ ରାଷ୍ଟ୍ର କୌଣସି ପକ୍ଷରେ ରହିଥିଲେ। ସେପ୍ଟେମ୍ବର ୧୯୪୫ରେ ଯୁଦ୍ଧର ଅବସାନ ଘଟିଲା ଓ ଏହି ଯୁଦ୍ଧରେ ପ୍ରାୟ ପାଞ୍ଚ କୋଟି ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ। କେବଳ ଯେ ସୈନ୍ୟବିଭାଗର ଲୋକମାନେ ମୃତ୍ୟୁବରଣ କରିଥିଲେ ତାହା ନୁହେଁ, ବହୁ ବେସାମରିକ ଲୋକ ବି ମୃତ୍ୟୁର ଶିକାର ହୋଇଥିଲେ। ଜର୍ମାନୀରେ ହିଟ୍‌ଲର ବେସାମରିକ ଷାଠିଏ ଲକ୍ଷ ଜିଉମାନଙ୍କୁ ନିର୍ଦ୍ଦୟ ଭାବେ ମାରିବା ଓ ଆମେରିକା, ଜାପାନ୍‌ର ଦୁଇଟି ଜନାକୀର୍ଣ୍ଣ ସହର ଉପରେ ପରମାଣୁ ବୋମା ନିକ୍ଷେପ କରି ଲକ୍ଷାଧିକ ସାଧାରଣ ଲୋକଙ୍କୁ ମାରିବାର କାହାଣୀ ହୃଦୟ ବିଦାରକ। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏହି ଚେତନାର ବିକାଶ ହେଲା ଯେ ଯଦି କୌଣସି କାରଣରୁ ପୃଥିବୀରେ ତୃତୀୟ ବିଶ୍ୱଯୁଦ୍ଧର ପରିସ୍ଥିତି ଆସେ ତେବେ ପୃଥିବୀ ଧ୍ୱଂସସ୍ତୂପରେ ପରିଣତ ହେବ। ଆଣବିକ ଅସ୍ତ୍ର ନିର୍ମାଣ ଦ୍ୱିତୀୟ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ମଣିଷ ଜାଣିନଥିଲା, କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୃଥିବୀର ଅନେକ ଦେଶ ଏବେ ଆଣବିକ ଅସ୍ତ୍ର ନିର୍ମାଣ କରିବାରେ ସମର୍ଥ ହୋଇ ସାରିଛନ୍ତି।

ଦେଶ ଦେଶ ମଧ୍ୟରେ ଯୁଦ୍ଧ ବ୍ୟତୀତ କେତେକ ଦେଶର ଗୃହଯୁଦ୍ଧ ବି ଇତିହାସରେ ବିଭିନ୍ନ ସମୟରେ ଘଟିଯାଇଛି । ଆମେରିକୀୟ ସମାଜରୁ ଦାସତ୍ୱ ପ୍ରଥାର ବିଲୋପ ପାଇଁ ଆବ୍ରାହମ୍ ଲିଙ୍କନ୍ ରାଷ୍ଟ୍ରପତି ହେବା ପରେ ଯେଉଁ ପଦକ୍ଷେପ ନେଲେ ତାର ପରିଣାମ ସ୍ୱରୂପ ଆମେରିକାରେ ଏକ ଗୃହ ଯୁଦ୍ଧ ସୃଷ୍ଟି ହୋଇଥିଲା । ଏଗାରଟି ଦକ୍ଷିଣ ଆମେରିକୀୟ ରାଜ୍ୟ ଯେଉଁମାନେ ଦାସତ୍ୱ ବ୍ୟବସ୍ଥାର ସମର୍ଥକ ଥିଲେ ସେମାନେ ଆମେରିକାରୁ ପୃଥକ ହେବା ଚାହିଁଲେ ଓ ଦେଶରେ ଏକ ଗୃହ ଯୁଦ୍ଧ ସୃଷ୍ଟି ହେଲା । ୧୮୬୧ରୁ ୧୮୬୫, ଚାରିବର୍ଷ ଧରି ଲାଗି ରହିଥିବା ଏହି ଗୃହଯୁଦ୍ଧରେ ଛ'ଲକ୍ଷ କୋଡ଼ିଏ ହଜାର ସୈନ୍ୟ ମରିଥିଲେ ଓ ଶେଷରେ ଏହାର ପରିସମାପ୍ତି ଘଟିଥିଲା ଓ ଆମେରିକା ଭାଗ ଭାଗ ହେଲା ନାହିଁ । ଦେଶର ଏକ ମନ୍ଦ ବ୍ୟବସ୍ଥାକୁ ଦୂର କରିବା ପାଇଁ ଦେଶରେ ଗୃହ ଯୁଦ୍ଧ ଲାଗିବା ଓ ଲକ୍ଷ ଲକ୍ଷ ଲୋକ ମୃତ୍ୟୁବରଣ କରିବା ଇତିହାସର ଏକ କଳଙ୍କିତ ଘଟଣା । ସେହିପରି ଫରାସୀ ରାଷ୍ଟ୍ରବିପ୍ଳବ ଇତିହାସର ମୋଡ ପରିବର୍ତ୍ତନ କରିଥିବା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ରାଜତନ୍ତ୍ର, ସାମନ୍ତବାଦ ଓ ଧର୍ମତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ଦୂର କରି ଏକ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ପ୍ରଚଳନ ପାଇଁ ଫ୍ରାନ୍ସରେ ୧୭୮୯ରୁ ୧୭୯୯ ପର୍ଯ୍ୟନ୍ତ ଗୃହଯୁଦ୍ଧ ଲାଗି ରହିଥିଲା । ଏହି ଗଣବିପ୍ଳବ ସଫଳ ହୋଇ ଦେଶରେ ରାଜତନ୍ତ୍ରର ବିଲୁପ୍ତ ହେଲା ଓ ନେପୋଲିୟନ୍‌ଙ୍କର ଆବିର୍ଭାବ ଘଟିଥିଲା । ନେପୋଲିୟନ୍‌ଙ୍କ ପତନ ପରେ ଏକଛତ୍ରବାଦର ବିଲୋପ ହୋଇ ଫ୍ରାନ୍ସ ଏକ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ ହେଲା । ବ୍ୟକ୍ତି ସ୍ୱାଧୀନତା, ସମତା ଓ ଭ୍ରାତୃତ୍ୱବୋଧ ଥିଲା ଗଣତନ୍ତ୍ରର ମୂଳମନ୍ତ୍ର । ଏକଛତ୍ରବାଦ, ରାଜତନ୍ତ୍ର ଓ ଫାସିବାଦ ବିରୁଦ୍ଧରେ ସଂଗ୍ରାମ କରି ଗଣତନ୍ତ୍ରର ପ୍ରତିଷ୍ଠା ବିଶ୍ୱ ଦୃଶ୍ୟପଟରେ ଏକ ଯୁଗାନ୍ତକାରୀ ଘଟଣା । ଏହି ପୃଷ୍ଠଭୂମିରେ ଫରାସୀ ରାଷ୍ଟ୍ରବିପ୍ଳବ ମହତ୍ତ୍ୱପୂର୍ଣ୍ଣ ହେଲେ ମଧ୍ୟ ଏଥିପାଇଁ ବହୁ ତ୍ୟାଗ ସହିବାକୁ ହୋଇଥିଲା । ସେହିପରି ରୁଷରେ ଭ୍ଲାଡିମିର ଲେନିନ୍‌ଙ୍କ ନେତୃତ୍ୱରେ ୧୯୧୭ରେ ଯେଉଁ ବିପ୍ଳବ ସୃଷ୍ଟି ହୋଇ ସେଠାରେ କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠା ହେଲା, ତାହା ଥିଲା ଏକ ହିଂସାତ୍ମକ ଗଣବିପ୍ଳବ । ଲେନିନ୍(୧୮୭୦-୧୯୨୪)ଙ୍କ ପରେ ଷ୍ଟାଲିନ୍ ଯେଉଁପରି ହିଂସାତ୍ମକ ପନ୍ଥାର ଆଶ୍ରୟ ନେଇ ବିରୋଧୀମାନଙ୍କୁ ସୈନ୍ୟବାହିନୀଦ୍ୱାରା ନିପାତ କରିଥିଲେ ଓ କମ୍ୟୁନିଷ୍ଟ ଆଦର୍ଶକୁ ଦୃଢ ଭିତ୍ତି ଦେଇଥିଲେ ତାହା ଥିଲା ଏକ ହିଂସାତ୍ମକ ଦମନ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୁଞ୍ଜିବାଦ ଓ ସମାଜବାଦ ଦୁଇଟି ଆଦର୍ଶକୁ ଆଧାର କରି ଆମେରିକା ଓ ରୁଷ ଭିତରେ ଯେଉଁ ଶୀତଳ ଯୁଦ୍ଧର ପରିବେଶ ୧୯୯୦ ମସିହା ପର୍ଯ୍ୟନ୍ତ ଲାଗି ରହିଥିଲା ଓ ପୃଥିବୀ ଦୁଇଟି ବ୍ଲକ୍‌ରେ ବିଭାଜିତ ହୋଇ ଯାଇଥିଲା ତାହା ଇତିହାସର ଏକ ଦୁଃଖଦ ଘଟଣା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆମେରିକା ପରି ଏକ ବୃହତ୍ ଶକ୍ତି ବିଭିନ୍ନ ଦେଶ ଉପରେ ଆକ୍ରମଣ

କରିବାର କାହାଣୀ ସୁବିଦିତ। ଆମେରିକା କୋଡିଏ ବର୍ଷ ଧରି ଉତ୍ତର ଭିଏତ୍‌ନାମ୍ ସହ ଯୁଦ୍ଧ କରିବା ବା ଇରାକ୍ ଉପରେ ଆକ୍ରମଣ କରି ସେଠାରେ ଧ୍ୱଂସର ତାଣ୍ଡବ ସୃଷ୍ଟି କରିବା ଏକ ଅମାନବିକ କାହାଣୀ। ସେହିପରି ଦେଖିଲେ ଜାତିସଂଘର ବହୁ ପ୍ରୟାସ ସତ୍ତ୍ୱେ ପୃଥିବୀର ବିଭିନ୍ନ ଅଞ୍ଚଳରେ ହିଂସାତ୍ମକ ବିଦ୍ୱେଷ ଲାଗି ରହିବା ମାନବିକ ବର୍ବରତାର ଚିତ୍ର ଦେଇଥାଏ।

ହିଂସା, ସନ୍ତ୍ରାସବାଦ, ସାମ୍ପ୍ରଦାୟିକ ବିଦ୍ୱେଷ, ଗଣସଂହାର ଇତ୍ୟାଦି ମାନବ ସଭ୍ୟତାର ଅନ୍ଧକାରର କାହାଣୀ। ସାଂପ୍ରତିକ ପରିଭାଷାରେ ଏହା ହେଉଛି କ୍ରାଇମ୍ ଏଗେନ୍‌ଷ୍ଟ ହ୍ୟୁମାନିଟି। ଆଜିର ଆଣବିକ ଯୁଗରେ ଏହି ସବୁ ବିଦ୍ୱେଷାତ୍ମକ ମାନସିକତାର ଅବସାନ ନହେଲେ ମାନବଜାତିର ଭବିଷ୍ୟତ ଯେ ଅନ୍ଧକାରମୟ ଏହା ଏକ ଉପଲବ୍ଧି। ସୁଖର କଥା, ବିଭିନ୍ନ ଦେଶର ହେତୁବାଦୀ ମହାକାଂକ୍ଷୀମାନେ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ଓ ସଦ୍‌ଭାବନାପୂର୍ଣ୍ଣ ମାନବ ସମାଜ ପାଇଁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରି ଆସୁଛନ୍ତି। ସଂପ୍ରତି ଜ୍ଞାନବିଜ୍ଞାନ ଓ ପ୍ରଯୁକ୍ତିର ଯେଉଁ ଅଭୂତପୂର୍ବ ବିକାଶ ହୋଇଛି ତାହା ସହ ମାନବିକତା, ବିଚାରଶୀଳତା ଓ ସଦ୍‌ଭାବନାର ବିକାଶ ଘଟିଲେ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ସମ୍ଭବ ହୋଇପାରିବ।

(ପ୍ରଗତିବାଦୀ, ୨୫.୧୦.୨୦୧୭)

# ସହିଷ୍ଣୁତାର ସ୍ୱର

ଜାତିସଂଘର ୟୁଏନ୍‌ସ୍କୋ ତରଫରୁ ନଭେମ୍ବର ଷୋହଳ ତାରିଖକୁ ଆନ୍ତର୍ଜାତିକ ସହିଷ୍ଣୁତା ଦିବସ ଭାବେ ପାଳନ କରାଯାଉଛି। ୧୯୯୫ ମସିହାରେ ଜାତିସଂଘ ସାରା ବିଶ୍ୱରେ ସହନଶୀଳତାର ମନୋଭାବ ସୃଷ୍ଟି କରିବା ପାଇଁ ଏକ ସହିଷ୍ଣୁତା ଦିବସ ପାଳନ କରୁଛି। ପୃଥିବୀ ହେଉଛି ବିବଧବର୍ଣ୍ଣା। ମଣିଷ ସମାଜରେ ସେହିପରି ନାନା ବିବିଧତା ରହିଛି। ପୃଥିବୀରେ ପାଞ୍ଚ ହଜାରରୁ ଅଧିକ ଭାଷା ରହିଛି। ଦୁଇଶହ ପାଖାପାଖି ରାଷ୍ଟ୍ର ରହିଛନ୍ତି ଓ ଦଶଟି ବିଶ୍ୱପ୍ରସିଦ୍ଧ ଧର୍ମ ରହିଛି। ସେହିପରି ନାନା ବର୍ଣ୍ଣର ଲୋକ ରହିଛନ୍ତି, ବିଭିନ୍ନ ସଂସ୍କୃତି ଓ ଜୀବନଧାରା ପୃଥିବୀରେ ରହିଛି। ଏହି ବିବିଧତା ରହିବା ପଶ୍ଚାତରେ ନାନା ଐତିହାସିକ ଓ ପ୍ରାକୃତିକ କାରଣ ରହିଛି। ବହୁ ଅତୀତରେ କୃଷିର ଜ୍ଞାନ ପରେ ବିଭିନ୍ନ ନଦୀକୂଳମାନଙ୍କରେ ଗ୍ରାମୀଣ ଜୀବନ ଆରମ୍ଭ ହୋଇଥିଲା। ଏକ ଅଞ୍ଚଳର ଲୋକ ଅନ୍ୟ ଅଞ୍ଚଳ ବିଷୟରେ ଜାଣିବାର ଅବକାଶ ନଥିଲା। ମଣିଷର ଗତିଶୀଳତା ଅତି ସୀମିତ ଥିଲା। ପୃଥିବୀର ସ୍ଥଳଭାଗ ନଦୀ, ପାହାଡ, ପର୍ବତ, ସମୁଦ୍ର ଯୋଗୁ ଭାଗ ଭାଗ ହୋଇ ରହିଥିଲା ଓ ବିସ୍ତୃତ ଅଞ୍ଚଳ ବଣ ଜଙ୍ଗଲରେ ଭରପୁର ଥିଲା। ଏହିପରି କାରଣ ଯୋଗୁ ପୃଥିବୀରେ ଏତେ ଭାଷା ସୃଷ୍ଟି ହୋଇଗଲା। ବିଭିନ୍ନ ଅଞ୍ଚଳରେ ଧୀରେ ଧୀରେ ଯେଉଁ ସଭ୍ୟତାମାନ ଗଢ଼ି ଉଠିଲା, ପ୍ରତ୍ୟେକ ସଭ୍ୟତାର ଜନଗଣଙ୍କର ଜୀବନଶୈଳୀ, ରୁଚିବୋଧ, ଖାଦ୍ୟ, ପୋଷାକ ସ୍ୱତନ୍ତ୍ର ଭାବେ ବିକଶିତ ହେଲା। ପ୍ରାକୃତିକ ପରିବେଶ, ଜଳବାୟୁ, ଶସ୍ୟ ଉତ୍ପାଦନ ଲୋକମାନଙ୍କର ଖାଦ୍ୟ, ପୋଷାକ, ଜୀବନଧାରାକୁ ପ୍ରଭାବିତ କଲା। କାଳକ୍ରମେ ସଭ୍ୟତାର ବିକାଶଧାରାରେ ସାଂସ୍କୃତିକ ଆଲୋଡନମାନ ଆସିଲା। ଜଗତ, ଜୀବନକୁ ଅବବୋଧ କରିବା ପାଇଁ ଓ ମହତର ଜୀବନବୋଧର ବାର୍ତ୍ତା ଦେଇଥିବା କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କୁ ନେଇ ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ସାଂସ୍କୃତିକ ପ୍ରବାହ ଭାବେ ଉଦ୍ଭବ ହେଲା। ଏହା ପରେ କାଳକ୍ରମେ ରାଷ୍ଟ୍ରର ଭାବନା ଆସିଲା ଓ ପ୍ରତ୍ୟେକ ରାଷ୍ଟ୍ର ଏକ ଭୌଗୋଳିକ ଆୟତନ, ଜନଗଣ, ସାର୍ବଭୌମତ୍ୱ ଓ ଶାସନ ବ୍ୟବସ୍ଥା ଆଧାରରେ ଏକ ପ୍ରଭାବଶାଳୀ ରାଜନୈତିକ ସଙ୍ଗଠନ ଭାବେ ଜନଗଣଙ୍କ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କଲା। ବହୁ ଭାଷା, ଧର୍ମ, ରାଷ୍ଟ୍ର, ଜୀବନଶୈଳୀ, ନାନା ସଭ୍ୟତା ଓ ସଂସ୍କୃତିକୁ ନେଇ ଆମ ପୃଥିବୀ ବିବିଧବର୍ଣ୍ଣା।

ସପ୍ତଦଶ ଶତାବ୍ଦୀରେ ବିଜ୍ଞାନର ଯୁଗ ଆସିବା ପରେ ଓ ସମୁଦ୍ରରେ ଜଳଯାତ୍ରାର କୌଶଳ ହାସଲ ପରେ ବିଭିନ୍ନ ଭୂଖଣ୍ଡ ବିଷୟରେ ଜଣାପଡ଼ିଲା । ଅଷ୍ଟାଦଶ ଶତାବ୍ଦୀ ବେଳକୁ ପୃଥିବୀପୃଷ୍ଠର ବିଭିନ୍ନ ଭୂଖଣ୍ଡ ବିଷୟରେ ଜ୍ଞାନ ଆସିଲା ଓ ବିଂଶ ଶତାବ୍ଦୀର ଆରମ୍ଭରେ ଉଡାଜାହାଜର ଉଦ୍‌ଭାବନ ଯୋଗୁ ବିଭିନ୍ନ ଅଞ୍ଚଳମାନଙ୍କ ମଧ୍ୟରେ ସଂପର୍କ ସୃଷ୍ଟି ହେଲା । ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ଯୋଗୁ ପ୍ରତ୍ୟେକ ଅଞ୍ଚଳର ଅଧିବାସୀ, ସଭ୍ୟତା, ସଂସ୍କୃତି, ଧର୍ମ, ଭାଷା, ସାହିତ୍ୟ, ଜୀବନଶୈଳୀ ବିଷୟରେ ଜଣାପଡ଼ିଲା । ଆଧୁନିକ ଜ୍ଞାନ, ପ୍ରଯୁକ୍ତି ବାହ୍ୟ ସ୍ତରରେ ପୃଥିବୀକୁ ଯୋଡ଼ିବାରେ ସହାୟକ ହେଲା ।

ଏହା ସତ୍ୟ ଯେ, ଆମ ସଂସାରରେ ବହୁ ଭିନ୍ନତା ଓ ବିବିଧତା ରହିଛି । ନାନା ଐତିହାସିକ ଓ ରାଜନୈତିକ କାରଣ ଯୋଗୁ ଆମ ସଂସାରରେ ଗୋଷ୍ଠୀଗତ ତିକ୍ତତା ଓ କେତେକ ଭେଦଭାବ ରହିଛି । ନାନା କାରଣ ଯୋଗୁଁ ଅତୀତରେ କେତେ ଯୁଦ୍ଧର ବିଭୀଷିକାକୁ ଧରିତ୍ରୀ ମା' ଅବଲୋକନ କରିଛି । ମଣିଷ, ମଣିଷର ଶତ୍ରୁ ପାଲଟିଛି ଓ ଧରିତ୍ରୀ ନାନା କାରଣ ଯୋଗୁଁ ରକ୍ତରଞ୍ଜିତ ହୋଇଛି । କେତେ କେତେ କ୍ରୂରତା, ବିଭୀଷିକା, ଯୁଦ୍ଧ ଓ ହିଂସାରେ ଧରିତ୍ରୀ ରକ୍ତରଞ୍ଜିତ ହୋଇଛି । ନାନା ପ୍ରକାର ଭେଦଭାବ ମଣିଷ ମଣିଷ ଭିତରେ ଦୁର୍ଲଙ୍ଘ୍ୟ ପ୍ରାଚୀର ସୃଷ୍ଟି କରିଛି । ଜାତିଗତ, ବର୍ଣ୍ଣଗତ, ରଙ୍ଗଗତ, ଲିଙ୍ଗଗତ ଭେଦଭାବ ନାନା ଭାବରେ ସମାଜରେ ଘୃଣାର ପରିବେଶ ସୃଷ୍ଟି କରିଛି । ମାନସିକତାରେ ଯେତେବେଳେ ଅନ୍ୟ ଜନଗୋଷ୍ଠୀ ପ୍ରତି ଘୃଣାଭାବ ରହେ, ସେତେବେଳେ ହିଂସା, ପ୍ରତିହିଂସାର ମନୋଭାବ ଆସେ । ବିଦ୍ୱେଷରୁ ସୃଷ୍ଟି ହୁଏ ବର୍ବରତା । ମାନବ ସମାଜର ଇତିହାସରେ ବହୁ ବର୍ବରତା, କ୍ରୂରତାର କାହାଣୀ ଅତ୍ୟନ୍ତ ମର୍ମାନ୍ତିକ ମନେହୁଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ରାଷ୍ଟ୍ରସଂଘର ପ୍ରତିଷ୍ଠା ଓ ଏକ ଆନ୍ତର୍ଜାତିକ ଚେତନାର ବିକାଶ ସଭ୍ୟତାର ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । ଏହି ପୃଷ୍ଠଭୂମିରେ ହିଂସା, ପ୍ରତିହିଂସା, ଭେଦଭାବ, ସନ୍ତ୍ରାସବାଦ, ବିଦ୍ୱେଷଭାବ ଇତ୍ୟାଦି ଦୃଷ୍ଟିଭଙ୍ଗୀକୁ ଦୂର କରି ଏକ ସହିଷ୍ଣୁତାର ବାୟୁମଣ୍ଡଳ ସୃଷ୍ଟି କରିବାରେ ୟୁଏନ୍‌ସ୍କୋ ବିଶ୍ୱ ଦୃଶ୍ୟପଟରେ କେତେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେବା ଦେଖାଯାଏ । ଆମ ଭିତରର ଭିନ୍ନତା ସତ୍ତ୍ୱେ ଆମେ ମଣିଷଗୋଷ୍ଠୀ ଶାନ୍ତି, ଭ୍ରାତୃତ୍ୱ ଓ ବନ୍ଧୁ ଭାବାପନ୍ନ ହୋଇ ବଞ୍ଚିବାକୁ ଚାହୁଁ । ଆମେ ଶାନ୍ତି, ସୌହାର୍ଦ୍ଦ୍ୟ ଓ ପ୍ରୀତିଭାବ ନେଇ ବଞ୍ଚିବା ସହ ଆମର ଆଗାମୀ ପିଢ଼ିର ଜନଗଣ ଯେପରି ଅଧିକ ସୌହାର୍ଦ୍ଦ୍ୟପୂର୍ଣ୍ଣ ଓ ଭ୍ରାତୃତ୍ୱପୂର୍ଣ୍ଣ ପରିବେଶରେ ଜୀବନ ନିର୍ବାହ କରିବେ, ସେ ପାଇଁ ଆମେ ସଂପୃକ୍ତ ହେବା ଦରକାର ।

ପୃଥିବୀରେ ଯେତେଦିନ ପର୍ଯ୍ୟନ୍ତ ରାଷ୍ଟ୍ରୀୟତାର ସ୍ଥିତି ରହିଛି, ରାଷ୍ଟ୍ରମାନେ ପଡୋଶୀ ଭାବେ ଅନ୍ୟ ରାଷ୍ଟ୍ରମାନଙ୍କ ପ୍ରତି ଭ୍ରାତୃତ୍ୱର ମନୋଭାବ ପୋଷଣ କରିବା ଉଚିତ୍। ମଣିଷ ଜାତି ଗୋଟିଏ ସୁସଂହତ ଗୋଷ୍ଠୀ ଭାବେ ଧରାପୃଷ୍ଠରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ଭାବେ ବଞ୍ଚିବାକୁ ଚାହେଁ- ଏହି ବାର୍ତ୍ତା ସହିଷ୍ଣୁତା ଦିବସର ତାତ୍ପର୍ଯ୍ୟ ଅଟେ।

ବିଂଶ ଶତାବ୍ଦୀରେ ଜ୍ଞାନ ବିଜ୍ଞାନର ଅଭୂତପୂର୍ବ ବିକାଶ ହୋଇଛି। ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଜ୍ଞାନର ନାନା ଦିଗନ୍ତକୁ ସ୍ପର୍ଶ କରିପାରିଛି। ସଂପ୍ରତି ଆମେ ଏକ ପରସ୍ପର ନିର୍ଭରଶୀଳ ଦୁନିଆରେ ବାସ କରୁଛେ। କୌଣସି ରାଷ୍ଟ୍ର ଅନ୍ୟ ରାଷ୍ଟ୍ରମାନଙ୍କର ବିନା ସହଯୋଗରେ ବିକାଶ କରିବା ସମ୍ଭବ ନୁହେଁ। ଆମେ ଯେଉଁ ଯୁଗରେ ବାସ କରୁଛେ ଓ ଯେତେ ସୁବିଧା, ସୁଯୋଗର ଅଧିକାରୀ ହୋଇଛେ ତାହା ପଛରେ ପୃଥିବୀର ନାନା ଦେଶର ବହୁ ବୈଜ୍ଞାନିକ, ଜ୍ଞାନୀ, ସୃଜନଶୀଳ ମନୀଷୀଙ୍କର ଅବଦାନ ରହିଛି। ଯେଉଁ ମନୀଷୀମାନଙ୍କର ଅବଦାନ ଫଳରେ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି, ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିଛି, ଚିକିତ୍ସା ବିଜ୍ଞାନ ମଣିଷ ସମାଜକୁ ସୁସ୍ଥ ଓ ନୀରୋଗ କରିବାକୁ ନିଦାନ ବାହାର କରିଛି, ସେହି ପ୍ରତିଭାଧର ବ୍ୟକ୍ତିମାନେ ସମଗ୍ର ମଣିଷ ସମାଜ ପାଇଁ ଚିନ୍ତା କରିଛନ୍ତି। ସେମାନେ କେବଳ ନିଜ ଦେଶର ଲୋକଙ୍କ ପାଇଁ ସେମାନଙ୍କର ଅବଦାନ ଦେଇ ନାହାନ୍ତି, ବରଂ ବିଶ୍ୱ ସମୂହର ମଙ୍ଗଳ ପାଇଁ ସଂପୃକ୍ତି ବ୍ୟକ୍ତ କରିଛନ୍ତି। ବୈଜ୍ଞାନିକ, ଦାର୍ଶନିକ, ମାନବହିତୈଷୀ ହେତୁବାଦୀ ଓ ରାଷ୍ଟ୍ରନୀତିଜ୍ଞମାନେ ସମଗ୍ର ମଣିଷ ସମାଜର ହିତ ପାଇଁ କାର୍ଯ୍ୟ କରିଛନ୍ତି। ସେହି ପରିଣାମରୁ ଆଜିର ମାନବ ସମାଜ ଉନ୍ନତିର ଚରମ ସୋପାନକୁ ଉନ୍ନିତ ହୋଇପାରିଛି। ଆମେ ଯେହେତୁ ଏକ ପରସ୍ପର ନିର୍ଭରଶୀଳ ପୃଥିବୀରେ ବାସ କରୁଛେ ଆମ ଦୃଷ୍ଟିଭଙ୍ଗୀରେ ଉଦାରତା, ମାନବିକତା ଓ ସହିଷ୍ଣୁତା ରହିଲେ ଆମ ସଂସାର ଅଧିକ ମହନୀୟ ଓ ପ୍ରୀତିପଦ ହୋଇପାରିବ। ଆନ୍ତର୍ଜାତିକ ସହିଷ୍ଣୁତା ଦିବସ ପୃଥିବୀର ଜନଗଣଙ୍କ ଭିତରେ ଏହି ଜୀବନବୋଧର ବାର୍ତ୍ତା ଦେବାକୁ ସାରା ବିଶ୍ୱରେ ପାଳିତ ହେଉଛି।

ଆମ ସଂସାରରେ ଅତୀତରେ ଯେଉଁ ସବୁ କାରଣ ଯୋଗୁ ଭେଦଭାବ, ତିକ୍ତତା, ଯୁଦ୍ଧର ବିଭୀଷିକା, ଶୋଷଣ ଓ ଅତ୍ୟାଚାରମାନ ହୋଇଯାଇଛି ସେ ସବୁକୁ ଅତୀତର ଦୁର୍ଘଟଣା ମନେ କରିବା ଉଚିତ୍। ସେହି ସ୍ଥିତି ଠାରୁ ମଣିଷ ସଭ୍ୟତା ଆଜି ବହୁ ଆଗକୁ ଅଗ୍ରସର ହୋଇ ପାରିଲାଣି। ଆଜି ମଣିଷ ହାତରେ ଯେତିକି ଆଧୁନିକ ସାଧନ ରହିଲାଣି, ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଯେଉଁ ବିସ୍ଫୋରଣ ହେଲାଣି, ସେଥିରେ ମାନବିକତାର ସ୍ପର୍ଶ ରହିଲେ ଆମ ସଂସାର

କେତେ ମଧୁମୟ ହୋଇ ଉଠନ୍ତା। ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ଜାତୀୟତା ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ, ମାନବିକ ଅଧିକାର ଓ ସୁସ୍ଥ ବିକାଶକୁ ଆମର ଲକ୍ଷ୍ୟ ଭାବେ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ଜାତିସଂଘ ସ୍ୱୀକୃତି ଦେଇଛି। ସେହିପରି ଚିନ୍ତା, ବିଚାର, ଭାବପ୍ରକାଶ କ୍ଷେତ୍ରରେ ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତା ଓ ମହତ୍ତ୍ୱକୁ ପ୍ରାଧାନ୍ୟ ଦିଆଯାଉଛି। ସାମାଜିକ, ନୈତିକ ଓ ବୌଦ୍ଧିକ ସ୍ତରରେ ସମଗ୍ର ମଣିଷ ସମାଜର ଏକତ୍ୱର ଭାବନା ବିଶ୍ୱ ସ୍ତରରେ ଆଲୋଚିତ ହେଉଛି। ଆଗାମୀ ଦିନର ସଙ୍କଟକୁ କିପରି ବିଶ୍ୱ ସ୍ତରରେ ମୁକାବିଲା କରାଯାଇ ପାରିବ ସେଥିପାଇଁ ସାରା ପୃଥିବୀର ବୈଷୟିକ ବିଜ୍ଞାନୀମାନେ ଚିନ୍ତା ପ୍ରକଟ କରୁଛନ୍ତି। ପରିବେଶ ଯେଉଁ ଭାବରେ ପଦୂଷିତ ହୋଇଚାଲିଛି ତାହାର ନିରାକରଣ ପାଇଁ ବିଶ୍ୱ ସ୍ତରରେ ଗବେଷଣା କରାଯାଉଛି। ମଣିଷ ସମୂହର ସୁସ୍ଥ ବିକାଶ ଓ ଏକ ପ୍ରୀତିପଦ ପୃଥିବୀ ପାଇଁ ସହନଶୀଳତା ଯେ ଏକ ମାନବିକ ମୂଲ୍ୟବୋଧ ଏହି ବାର୍ତ୍ତା ଆନ୍ତର୍ଜାତିକ ସହିଷ୍ଣୁତା ଦିବସର ଅନ୍ତଃସ୍ୱର ମନେହୁଏ।

(ପ୍ରଗତିବାଦୀ, ୨୫.୧୧.୨୦୧୫)

# ସହିଷ୍ଣୁତା ଓ ଆନ୍ତର୍ଜାତିକ ଦୃଷ୍ଟି

ଆନ୍ତର୍ଜାତିକ ସ୍ତରରେ ଏବେ ବହୁ ଦିବସ ବିଭିନ୍ନ ଦିନମାନଙ୍କରେ ପାଳିତ ହେଉଛି । ତେବେ ବିଶ୍ୱ ଦୃଶ୍ୟପଟରେ କେତେକ ଦିବସ ବହୁ ଗୁରୁତ୍ୱ ବହନ କରେ । ସେପ୍ଟେମ୍ବର ଏକୋଇଶ ବିଶ୍ୱ ଶାନ୍ତି ଦିବସ, ଅକ୍ଟୋବର ଦୁଇ ତାରିଖ ଅହିଂସା ଦିବସ ଓ ନଭେମ୍ବର ଷୋହଳ ତାରିଖ ସହିଷ୍ଣୁତା ଦିବସ ଭାବେ ଆନ୍ତର୍ଜାତିକ ସ୍ତରରେ ପାଳିତ ହେଉଛି । ବିଶ୍ୱରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଅହିଂସା ଓ ସହିଷ୍ଣୁତା ଦୁଇଟି ମହତ୍ତର ଆଦର୍ଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅହିଂସା ଓ ସହିଷ୍ଣୁତା ସଭ୍ୟ ଜୀବନଦୃଷ୍ଟିର ବାର୍ତ୍ତା ଦେଇଥାଏ । ହିଂସା ଓ ଅସହିଷ୍ଣୁତା କେବେ ହେଲେ କୌଣସି ସମାଜର ଆଦର୍ଶ ହୋଇପାରିବ ନାହିଁ । ତେବେ ପରିତାପର ବିଷୟ ମଣିଷ ସଭ୍ୟତାର ଇତିହାସରେ ହିଂସା ଓ ଅସହିଷ୍ଣୁତାର ବହୁ ଦୁଃଖଭରା ଘଟଣା ଦେଖିବାକୁ ମିଳିଥାଏ । ନାନା ପ୍ରକାରର କ୍ରୂରତା, ବର୍ବରତା, ଅମାନବିକତା ଓ ଶୋଷଣ ସବୁ ସଭ୍ୟତାରେ ଦେଖିବାକୁ ମିଳେ । କେତେ ଯୁଦ୍ଧ, ବିଭୀଷିକା, ଉତ୍ପୀଡନର ନାନା ଲୋମହର୍ଷଣମୂଳକ କାହାଣୀ ଅତୀତରେ ଘଟିଥିବା ଇତିହାସରୁ ଜଣାପଡ଼େ । ଏ ସତ୍ତ୍ୱେ ସଭ୍ୟତା ସର୍ବଦା ଅଗ୍ରଗାମୀ ହୋଇଛି, ଜ୍ଞାନ ବିଜ୍ଞାନର ଉତ୍ତୁଙ୍ଗ ବିକଶ ଘଟିଛି ଓ ମାନବିକତାର ସ୍ୱର ନାନା ଭାବରେ ଝଙ୍କୃତ ହୋଇଛି । ଯେଉଁମାନେ ଜ୍ଞାନବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇଛନ୍ତି, ମାନବବାଦର ବାର୍ତ୍ତାବହ ହୋଇଛନ୍ତି, ସୃଜନଶୀଳତାର ଦିଗନ୍ତ ସୃଷ୍ଟି କରିଛନ୍ତି ସେମାନେ ସମଗ୍ର ମାନବଜାତିକୁ ଏକତ୍ୱର ଡୋରିରେ ଛନ୍ଦି ପାରିଛନ୍ତି । ଧର୍ମ, ଜାତୀୟତା, ଭାଷା ବା ଆଞ୍ଚଳିକତାର ଊର୍ଦ୍ଧ୍ୱକୁ ଯାଇ ସେମାନେ ବିଶ୍ୱ-ବିବେକର ପ୍ରତିନିଧି ପାଲଟିଛନ୍ତି ।

ମାନବ ସଭ୍ୟତାର ଏହା ଏକ ବିଡମ୍ବନା ଯେ, ଆମ ସଂସାରରେ ନାନା ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ କାରଣରୁ ମଣିଷ ମଣିଷ ଭିତରେ ବହୁ ଭେଦଭାବ ସୃଷ୍ଟି ହୋଇଛି । ଭିନ୍ନ ଭିନ୍ନ ଗୋଷ୍ଠୀମାନଙ୍କ ଭିତରେ ହିଂସା, ପ୍ରତିହିଂସାର ମନୋଭାବ ଆସିଛି । ପୃଥିବୀ ରାଜ୍ୟ, ରାଷ୍ଟ୍ରୀୟତା ଆଧାରରେ ଭାଗ ହୋଇ ରହିଛି । ରାଜ୍ୟ ରାଜ୍ୟ, ଦେଶ ଦେଶ ଭିତରେ ତିକ୍ତତାର ବାତାବରଣ ଆସିଛି । ଧର୍ମଭିତ୍ତିକ ବିଶ୍ୱାସକୁ ନେଇ ସାମ୍ପ୍ରଦାୟିକତା ଓ ସନ୍ତ୍ରାସବାଦ ଧର୍ମଗୋଷ୍ଠୀ ଭିତରେ ସୃଷ୍ଟି ହୋଇଛି । ବର୍ଣ୍ଣଗତ ପ୍ରାକୃତିକ ପାର୍ଥକ୍ୟକୁ ନେଇ ଏକ ସବଳ ଗୋଷ୍ଠୀ, ଦୁର୍ବଳ ଗୋଷ୍ଠୀକୁ କ୍ରୀତଦାସ କରିଛି । ଜାତିଗତ ସାମାଜିକ ବିଭାଜନ

ସୃଷ୍ଟି କରି ମଣିଷ ମଣିଷକୁ ଅସ୍ପୃଶ୍ୟ କରିଛି । ଲିଙ୍ଗଗତ ଭେଦଭାବ ଆଧାରରେ ମହିଳାମାନଙ୍କୁ ବିଭିନ୍ନ ସଭ୍ୟତାରେ ନ୍ୟୂନ କରାଯାଇଛି । ସକଳ ଭେଦଭାବକୁ ସ୍ଥାୟୀ କରିବା ପାଇଁ ଏହାକୁ ଈଶ୍ୱରୀୟ ବିଧାନ ବୋଲି କହିଛି । ସେହି ଅନ୍ୟାୟ, ଅନୀତି ଓ ଅମାନବିକତାକୁ କେତେ କେତେ ଶାସ୍ତ୍ରୀୟ ସ୍ୱୀକୃତି ଦେବାକୁ ପ୍ରୟାସ ହୋଇଛି । ସବୁ ସଭ୍ୟତାରେ ଅତୀତରେ ମଣିଷ ମଣିଷ ଭିତରେ ଘୃଣା ଓ ବିଦ୍ୱେଷର ପ୍ରାଚୀର ସୃଷ୍ଟି କରାଯାଇଛି ।

ଧୀରେ ଧୀରେ ମାନବବାଦୀ ଜୀବନବୋଧର ପ୍ରସାର ଫଳରେ ଆମ ସଂସାରରୁ ସକଳ ଭେଦଭାବ, ଘୃଣା, ଅମାନବିକତା ଓ ଅସହିଷ୍ଣୁତା ଦୂର କରିବାକୁ ପ୍ରୟାସ ହୋଇଛି । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି । ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବାର ଅବକାଶ ପ୍ରତ୍ୟେକ ବ୍ୟକ୍ତିର ଏକ ପ୍ରାକୃତିକ ଅଧିକାର ଏହି ଚେତନା ବିଂଶ ଶତାବ୍ଦୀରେ ବିଶ୍ୱ ଦୃଶ୍ୟପଟରେ ସୃଷ୍ଟି ହୋଇଛି । ମଣିଷ ସମାଜରୁ ସକଳ ବର୍ଣ୍ଣବୈଷମ୍ୟକୁ ବିଲୋପ କରିବାକୁ ଯେଉଁ ମହତାକାଂକ୍ଷୀ ବ୍ୟକ୍ତିଗଣ ଅତୀତରେ ଉଦ୍ୟମ କରିଥିଲେ ତାହା କ୍ରମେ ବିଶ୍ୱ ବିବେକକୁ ସ୍ପର୍ଶ କରିଛି । ଆମ ସଂସାରରେ ଅତୀତରେ ଯେଉଁମାନେ ଦେଶପ୍ରେମ ବା ଜାତୀୟତା ଆଧାରରେ ଗଣସଂହାର କରିଛନ୍ତି, କେତେ କେତେ ହିଂସାତ୍ମକ ପରିବେଶ ସୃଷ୍ଟି କରିଛନ୍ତି, ଧର୍ମଗତ ଉତ୍ତେଜନା ସୃଷ୍ଟି କରି ସାମ୍ପ୍ରଦାୟିକତାର ବିଷ-ମଞ୍ଜି ବୁଣିଛନ୍ତି ମଣିଷ ସମାଜ ବିରୁଦ୍ଧରେ ସେମାନେ ଅପରାଧ କରିଛନ୍ତି ଏହି ଭାବନା ସାଂପ୍ରତିକ ବିଶ୍ୱରେ ଗଣ ସମର୍ଥନ ଲାଭ କରିବାରେ ଲାଗିଛି । ଉଗ୍ରବାଦ, ସନ୍ତ୍ରାସବାଦ, ସାମ୍ପ୍ରଦାୟିକତାବାଦ, ଆତଙ୍କବାଦ ବିରୁଦ୍ଧରେ ବିଶ୍ୱ ସ୍ତରରେ ସଚେତନତା ଆସି ପାରିଛି । ଜାତି, ଧର୍ମ, ଆଞ୍ଚଳିକତା ଆଧାରରେ ସମାଜକୁ ଭାଗ କରିବା, ଘୃଣାର ପରିବେଶ ସୃଷ୍ଟି କରିବା ଓ ଜନଗୋଷ୍ଠୀ ଭିତରେ ଅବିଶ୍ୱାସର ବାତାବରଣ ଆଣିବା ଯେ ଅମାନବିକତା ଏହା ଏବେ ଜନଚେତନାରେ ଭିତ୍ତି ନେବା ମନେହେଉଛି । ବ୍ୟକ୍ତି ମର୍ଯ୍ୟାଦାବୋଧକୁ ସମ୍ମାନ କରିବା, ପ୍ରତ୍ୟେକ ବ୍ୟକ୍ତିର ମାନବିକ ଅଧିକାରକୁ ସ୍ୱୀକୃତି ଦେବା, ଯେଉଁ ସଂଖ୍ୟାଲଘୁ ଶ୍ରେଣୀ ସଂଖ୍ୟାଗରିଷ୍ଠ ଶ୍ରେଣୀ ଦ୍ୱାରା ଶୋଷିତ ହେଉଛି, ସେହି ସଂଖ୍ୟାଲଘୁ ଗୋଷ୍ଠୀର ଅଧିକାର ଓ ସମ୍ମାନଜନକ ଜୀବନ ନିର୍ବାହ ପାଇଁ ଆଇନଗତ ବ୍ୟବସ୍ଥା କରିବା ପ୍ରତ୍ୟେକ ସଭ୍ୟ ରାଷ୍ଟ୍ରରେ ପ୍ରୟାସ ହୋଇଛି । ମାନବ ସମାଜରେ ସାଂସ୍କୃତିକ ଭିନ୍ନତା ନାନା ଭାବରେ ରହିବା ଏକ ଐତିହାସିକ ଘଟଣା । ସାଂସ୍କୃତିକ ଭେଦଭାବ ପରିବର୍ତ୍ତେ ସାଂସ୍କୃତିକ ଉଦାରତା ସଭ୍ୟ ଜୀବନବୋଧର ସ୍ୱାକ୍ଷର ବହନ କରିଥାଏ । ପ୍ରତ୍ୟେକ ସଂସ୍କୃତିରେ ରହିଥିବା ମହନୀୟତା, ଉଦାରତା, ମାନବଧର୍ମୀ ଜୀବନବୋଧକୁ ଗ୍ରହଣ କଲେ ଜୀବନର ସାଂସ୍କୃତିକ ଉତ୍ତରଣ ଘଟିବ ଏହା ସାଂପ୍ରତିକ ଚେତନାରେ ଦୃଢ଼ ହେବାରେ ଲାଗିଛି ।

ଆମ ସଂସାରରେ ଯେତେ ଭିନ୍ନତା ଓ ବିବିଧତା ଥିଲେ ମଧ୍ୟ ଆମେ ମଣିଷ ଭାବେ ଐକ୍ୟବଦ୍ଧ ହୋଇ ବଞ୍ଚିବା ଓ ପରସ୍ପରର ହିତ ପାଇଁ ସହାନୁଭୂତିର ହାତ ବଢ଼ାଇବା ହେଉଛି ପ୍ରକୃତ ମାନବିକତା ଓ ସହିଷ୍ଣୁତାର ଆଦର୍ଶ। ଆମେ ପରସ୍ପରର ଧର୍ମ, ସଂସ୍କୃତିକୁ ସମ୍ମାନ କରିବା ଓ ଏକ ସାଂସ୍କୃତିକ ସମନ୍ୱୟ ପାଇଁ ଉଦାର ରହିବା ହେଲା ସହିଷ୍ଣୁତା। କୌଣସି ଗୋଷ୍ଠୀ ପ୍ରତି ଶତ୍ରୁତା, ବିଦ୍ୱେଷ ଓ ଘୃଣାଭାବ ପୋଷଣ କରିବା ମାନବିକତାର ଯେ ପରିପନ୍ଥୀ, ଏହା ହିଁ ସହିଷ୍ଣୁତାର ମନ୍ତ୍ର। ଅନ୍ୟାୟକୁ ବିରୋଧ କରାଯିବା ଆବଶ୍ୟକ; ଅନ୍ୟାୟ, ଅସତ୍ୟକୁ ସହ୍ୟ କରିବା ସହିଷ୍ଣୁତାର ଆଦର୍ଶ ନୁହେଁ। ସହିଷ୍ଣୁତା ଏକ ମୂଲ୍ୟବୋଧ ଓ ଏକ ସଭ୍ୟ ଜୀବନଦୃଷ୍ଟି। ତେବେ ଏକ ମୂଲ୍ୟବୋଧ ବହୁ ଗୁଡ଼ିଏ ଆଦର୍ଶ ସହ ସଂଶ୍ଳିଷ୍ଟ। ସେହି ଦୃଷ୍ଟିରୁ ସହିଷ୍ଣୁତା, ଅହିଂସା, ମାନବିକ ଅଧିକାର, ଉଦାରତା ଇତ୍ୟାଦି ଜୀବନବୋଧ ସହ ସଂପୃକ୍ତ ଥିବା ମନେହୁଏ। ହିଂସା, ସନ୍ତ୍ରାସବାଦ ଓ ସାମ୍ପ୍ରଦାୟିକ ମାନସିକତା ସହିଷ୍ଣୁତାର ପରିପନ୍ଥୀ।

ବିଚାରଶୀଳ ଦୃଷ୍ଟି ଓ ମାନବିକ ସମ୍ବେଦନଶୀଳତା ସହିଷ୍ଣୁତା ସହ ସମତାଳ ମନେହୁଏ। ମଣିଷ ଯେତେ ଅଧିକ ବିଚାରଶୀଳ ହୁଏ ଓ ବିଚାରଶୀଳତାକୁ ଏକ ଶ୍ରେୟ ଭାବରେ ଗ୍ରହଣ କରେ, ସେ ସେତେ ଉଦାର ହୁଏ। ଅପରପକ୍ଷରେ ଯେଉଁଠି ମାନସିକ ସ୍ତରରେ ମଣିଷ ନିଜ ସଂସ୍କୃତି, ଧର୍ମ, ଜାତୀୟତାକୁ ସର୍ବଶ୍ରେଷ୍ଠ ମନେକରେ ସେ ଉଗ୍ରବାଦ ଆଡକୁ ଯାଏ। ଯେଉଁମାନେ ଆମ ଧର୍ମର ନୁହଁନ୍ତି ସେମାନେ ଆମର ଶତ୍ରୁ ଏହି ମାନସିକତାରୁ ସାମ୍ପ୍ରଦାୟିକତା ଆସିଥାଏ। ସେହିପରି ନିଜ ସଂସ୍କୃତି, ଜୀବନଶୈଳୀ ଓ ବିଶ୍ୱାସକୁ ମହତ୍ତମ ବୋଲି ମନେକରିବା ଓ ଅନ୍ୟ ସଂସ୍କୃତି ଓ ଜୀବନଶୈଳୀକୁ ହୀନ ଦୃଷ୍ଟିରେ ଦେଖିବା ଏକ ନୀତିପୂର୍ଣ୍ଣ ମନୋଭାବ ହୋଇନପାରେ। ବିଚାରଶୀଳତାର କଷଟିରେ ସବୁର ମୂଲ୍ୟାୟନ କରିବା ଓ ଯେଉଁଠି ମହତ୍ତର ଭାବନା ରହିଛି ତାକୁ ମୁକ୍ତ ମନରେ ସ୍ୱୀକାର କରିବା ହେଉଛି ସହିଷ୍ଣୁ ମନୋଭାବ। ସେହିପରି ସମ୍ବେଦନଶୀଳ ଜୀବନଦୃଷ୍ଟି ସଭ୍ୟ ଜୀବନଧାରାର ଏକ ସ୍ୱାକ୍ଷର ବହନ କରେ। କୌଣସି ବିଚାର, ଦୃଷ୍ଟିଭଙ୍ଗୀ ଓ ଜୀବନଦର୍ଶନ ସହ ମତ ପାର୍ଥକ୍ୟ ରହିପାରେ ଓ ରହିବା ସ୍ୱାଭାବିକ ମଧ୍ୟ। ତେବେ ଅନ୍ୟ ସହ ମତ ପାର୍ଥକ୍ୟ ସତ୍ତ୍ୱେ ଅନ୍ୟର ଭାବନା ଓ ଦୃଷ୍ଟିଭଙ୍ଗୀ ପ୍ରତି ସମ୍ମାନ ରଖିବା ହେଉଛି ସହିଷ୍ଣୁତା। ନିଜ ବିଚାର ଓ ମତଟି ଭିତରେ ରୁଦ୍ଧ ହୋଇ ରହିବା ଏକ ଯଥାର୍ଥ ମନୋଭାବ ନୁହେଁ। ବରଂ ମୁକ୍ତ ମନ ଓ ଅନ୍ୟ ପ୍ରତି ସମ୍ମାନବୋଧ ସଭ୍ୟ ଜୀବନଦୃଷ୍ଟିର ପ୍ରତିଫଳନ। ଅନେକାନ୍ତବାଦ ଏକ ସୁନ୍ଦର ଜୀବନ-ଦର୍ଶନର ବାର୍ତ୍ତା ଦେଇଥାଏ।

ବିଚାରଶୀଳତା, ସମ୍ବେଦନଶୀଳତା ଓ ଉଦାରତା ସହିଷ୍ଣୁତାର ବୌଦ୍ଧିକ ଓ ମାନବିକ ଅଭିବ୍ୟକ୍ତି ମନେହୁଏ। ଏକ ସୁନ୍ଦରତର ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ସହନଶୀଳତା ଏକ ମହତ୍ତର ଜୀବନବୋଧ କହିଲେ ଅତ୍ୟୁକ୍ତି ହେବ ନାହିଁ। ମାନବ ସମାଜରେ ଏହି ଜୀବନଦୃଷ୍ଟିର ପ୍ରସାର ଯେତେ ଅଧିକ ହେବ ଆମ ସଂସାରରୁ ନାନା ଭେଦଭାବ, ସନ୍ତ୍ରାସବାଦ, ସାମ୍ପ୍ରଦାୟିକତାବାଦ, ଉଗ୍ରବାଦ ସେତେ ଅପସରି ପାରିବ। ଆଜିର ବିଶ୍ୱ ସମୁଦାୟ ପାଇଁ ସବୁଠାରୁ ବଡ଼ ଆହ୍ୱାନ ହେଉଛି : ଆମେ କେଉଁ ପ୍ରକାରର ପୃଥିବୀ ଆମ ପାଇଁ ଓ ଆଗାମୀ ପିଢ଼ି ପାଇଁ ଚାହୁଁ? ହିଂସା, ସନ୍ତ୍ରାସବାଦ ଓ ସାମ୍ପ୍ରଦାୟିକତା ଆଗାମୀ ବିଶ୍ୱ ପାଇଁ କେଉଁ ପ୍ରକାରର ପରିବେଶ ସୃଷ୍ଟି କରିବ! ପ୍ରତ୍ୟେକ ରାଷ୍ଟ୍ର ଯଦି ତାର ଚତୁଃପାର୍ଶ୍ୱର ଓ ପୃଥିବୀର ରାଷ୍ଟ୍ର ସମୂହ ସହ ଭ୍ରାତୃତ୍ୱର ସମ୍ବନ୍ଧ ନ ଯୋଡ଼େ ତେବେ ସେ ସଭ୍ୟତା ପାଇଁ ବିପଦର କାରଣ ହେବ। ସେହିପରି ଗୋଟିଏ ଦେଶ ଭିତରେ ଯଦି ଧର୍ମଗତ, ଭାଷାଗତ, ଜାତିଗତ ଭିନ୍ନତା ସତ୍ତ୍ୱେ ଏକ ସହିଷ୍ଣୁତାର ପରିବେଶ ଜନଜୀବନର ଆଦର୍ଶ ହୁଏ, ତେବେ ତାହା ରାଷ୍ଟ୍ରର ଭୌତିକ ଓ ସାଂସ୍କୃତିକ ବିକାଶରେ ସହାୟକ ହୁଏ। ଅପରପକ୍ଷରେ ଯଦି ଅବିଶ୍ୱାସ ଓ ଅସହିଷ୍ଣୁତାର ମନୋଭାବ ଜନଜୀବନରେ ବ୍ୟାପକ ହୁଏ, ତେବେ ତାହା ସମାଜକୁ କ୍ଷୟଶୀଳ କରାଏ। ବିଶେଷ କରି ଧାର୍ମିକ ଅସହିଷ୍ଣୁତା ଦ୍ୱାରା ରକ୍ଷଣଶୀଳତା ଓ ଅବୈଜ୍ଞାନିକ ମନୋଭାବର ପ୍ରସାର ହୋଇଥାଏ। ଯେଉଁ ସାମାଜିକ ଜୀବନଧାରାରେ ରକ୍ଷଣଶୀଳତା, ରୂଢ଼ିବାଦ ଓ ଅବୈଜ୍ଞାନିକ ମନୋଭାବ ବ୍ୟାପକ ହୋଇ ରହେ, ସେହି ସମାଜ ଅନଗ୍ରସର ହୋଇଥାଏ। ଏହା ହିଁ ଐତିହାସିକ ବିକାଶରୁ ଏକ ବଡ଼ ଉପଲବ୍ଧି। ସୁତରାଂ ସହିଷ୍ଣୁତା ଓ ତାର ଆନୁଷଙ୍ଗିକ ମୂଲ୍ୟଚୟ ଯଥା ଉଦାରତା, ମାନବିକତା, ଅହିଂସା ଓ ସମ୍ବେଦନଶୀଳତା ସାଂପ୍ରତିକ ଜୀବନବୋଧରେ ସବୁଠାରୁ ବଡ଼ ଆଦର୍ଶ ମନେହୁଏ। ଏହି ଆଦର୍ଶର ବ୍ୟାପକତା ଉପରେ ସମାଜର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନିର୍ଭର କରେ।

(ପ୍ରଗତିବାଦୀ, ୦୨.୧୨.୨୦୧୫)

# ମାନବିକ ଦୃଷ୍ଟି

**ଯେଉଁ** ସମୟରେ ଜ୍ଞାନବିଜ୍ଞାନର ବିକାଶ ହୋଇନଥିଲା, ପ୍ରତ୍ୟେକ ସ୍ତରରେ ଜୀବନ ବିପଦସଙ୍କୁଳ ଥିଲା, ରୋଗ ବାଧକ ବା ମହାମାରୀରେ ମଣିଷ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା ସେତେବେଳେ ମଣିଷ ନିଜକୁ ପ୍ରକୃତିର ଦାସ, ପରିବେଶର କ୍ରୀଡନକ ଓ ଏକ ଅଦୃଷ୍ଟ ଶକ୍ତି ହାତରେ ନିଜ ଜୀବନକୁ ଗୋଟି ମଣୁଥିଲା। ଏହି ଅସହାୟବୋଧରୁ ଏକ ଦର୍ଶନର ବିକାଶ ହୋଇଥିଲା ଯେ ଜୀବନ ଦୁଇ ଦିନର ଖେଳ, ସଂସାରର ସକଳ ସମ୍ବନ୍ଧ ତୁଚ୍ଛ ଓ ଅଳୀକ। ଏ ସଂସାର ମାୟା ଓ ସକଳ ଐହିକ ସୁଖ ଶାନ୍ତି ନରକର ଦ୍ୱାର। ଏହି ଭାବନା ମଧ୍ୟ ଦେଇ ଏକ ପାରଲୌକିକ ଜୀବନବୋଧ ମଣିଷ ପ୍ରତି ଅଧିକ ଆକର୍ଷଣୀୟ ମନେ ହେଉଥିଲା। ବିଭିନ୍ନ ଧର୍ମରେ ଓ ଦର୍ଶନରେ ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ବା ଈଶ୍ୱର ଉପଲବ୍ଧି ପରି ଭାବନାକୁ ଜୀବନର ଲକ୍ଷ୍ୟ ଭାବରେ ନିଆ ଯାଉଥିଲା। ସାଂସାରିକ ଜୀବନକୁ ଦୁଇଦିନର ଖେଳ ଭାବେ ନେଇ ମୃତ୍ୟୁ ପରେ ଏକ ଶାଶ୍ୱତ ଓ ଆନନ୍ଦମୟ ଜୀବନର କେତେ କେତେ କଳ୍ପନା ମଣିଷର ମନକୁ ସ୍ପର୍ଶ କରିଥିଲା। ସେହି ଲକ୍ଷ୍ୟ ପାଇଁ ସଂସାରରେ କେତେକ ବ୍ୟକ୍ତି ନିଜ ଧର୍ମର ବିଶ୍ୱାସାନୁଯାୟୀ କେତେକ କୃଚ୍ଛ୍ର ସାଧନାରେ ବ୍ରତୀ ହେଉଥିଲେ। ଅନ୍ୟ କେତେକ ଧର୍ମ ଧାରଣାରେ ଦୁଃସ୍ଥ ମଣିଷର ସେବା ହିଁ ସ୍ୱର୍ଗପ୍ରାପ୍ତିର ସାଧନ ଭାବି ମାନବିକ ମହାନତାର ପରିଚୟ ଦେଉଥିଲେ। ଅନ୍ୟ କେତେକ ଧର୍ମୀୟ ଭାବନାରେ ବିଶ୍ୱାସ ଥିଲା ନିଜ ଧର୍ମର ବାଣୀ, ଆଦର୍ଶ ଓ ତତ୍ତ୍ୱ ଯେତେ ପ୍ରଚାରିତ ହେବ, ତାହା ଦ୍ୱାରା ମାନବ ସମାଜ ଅନ୍ଧକାରରୁ ମୁକ୍ତ ହୋଇ ପ୍ରକୃତ ଧର୍ମର ଅନୁଭବ ପାଇପାରିବ ଓ ତାହା ଦ୍ୱାରା ଈଶ୍ୱରଙ୍କ ନିକଟବର୍ତ୍ତୀ ହୋଇପାରିବ। ତେବେ ଏହି ସବୁ ଭାବନାର ମୂଳ ଲକ୍ଷ୍ୟ ଥିଲା ଏକ ପାରଲୌକିକ ଜୀବନଦର୍ଶନ ଓ ଜୀବନର ଅବସାନ ପରେ ସ୍ୱର୍ଗରାଜ୍ୟରେ ପ୍ରବେଶ ଓ ଈଶ୍ୱରଙ୍କ ସାନ୍ନିଧ୍ୟ। ଏହିପରି ନାନା ଛବିଳ କଳ୍ପନା ଓ ଜୀବନଦର୍ଶନ ମାନବିକ ଅସହାୟତାରୁ ବିଭିନ୍ନ ଧର୍ମ, ସଂସ୍କୃତିରେ ସୃଷ୍ଟି ହୋଇଥିଲା।

ତେବେ ଯେଉଁ ଯୁଗରେ ଏହିପରି ଜୀବନଦର୍ଶନ ଏକ ସାଂସ୍କୃତିକ ଭାବଧାରା ଭାବେ ବିଭିନ୍ନ ସଭ୍ୟତାରେ ପରିବ୍ୟାପ୍ତ ଥିଲା ସେହି ଯୁଗରେ ସମାଜରେ ନାନା ପ୍ରକାରର ଭେଦଭାବ ମଧ୍ୟ ସୁଦୃଢ଼ ହୋଇ ରହିଥିଲା। ମଣିଷ ମଣିଷ ଭିତରେ ଭେଦଭାବ, ବିଦ୍ୱେଷ ଓ

ବୈଷମ୍ୟର ପ୍ରାଚୀର ଛିଡ଼ା ହୋଇଥିଲା। ଶାରୀରିକ ରଙ୍ଗକୁ ନେଇ ରଙ୍ଗଭେଦଜନିତ ବନ୍ଧୁ ବିଦ୍ୱେଷ, ଗୋଷ୍ଠୀ ଗୋଷ୍ଠୀ ଭିତରେ ସୃଷ୍ଟି ହୋଇଥିଲା। ବଳଶାଳୀ ଗୋରା ଲୋକମାନେ କଳା ଲୋକଙ୍କ ଉପରେ ଦାସତ୍ୱର ବେଡ଼ି ପିନ୍ଧାଇଥିଲେ। ଲିଙ୍ଗଭେଦ ସବୁ ସମାଜରେ ରହିଥିଲା ଓ ମହିଳାମାନଙ୍କୁ ନାନା ନିର୍ଯ୍ୟାତନା ସହ୍ୟ କରିବାକୁ ପଡୁଥିଲା। କେଉଁଠି ମହିଳାମାନଙ୍କୁ ଡାହାଣୀ ଭାବି ମାରି ଦିଆ ଯାଉଥିଲା, କେଉଁଠି ପରଦା ଆଢୁଆଳରେ ସେମାନଙ୍କୁ ଦାସୀ ଭାବେ ବଞ୍ଚିବାକୁ ହେଉଥିଲା, ଅନ୍ୟ କେଉଁଠି ସ୍ୱାମୀର ମୃତ୍ୟୁ ପରେ ସତୀ ହୋଇ ମରିବାକୁ ହେଉଥିଲା ବା ବନ୍ଧୁ କଟକଣା ଭିତରେ ନ୍ୟୂନ ହୋଇ ଜୀବନ ନିର୍ବାହ କରିବାକୁ ପଡୁଥିଲା। ପୁନଶ୍ଚ କେଉଁ ସମାଜରେ ଜାତିକୁ ଆଧାର କରି ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି କରାଯାଇଥିଲା ଓ ଜନ୍ମକୁ ନେଇ ଉଚ୍ଚ-ନୀଚ ଜନିତ ସ୍ତରୀଭୂତ ବୈଷମ୍ୟ ରହିଥିଲା। ଆହୁରି ବିଡମ୍ବନାର ବିଷୟ ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ ପରି ନାନା ଭେଦଭାବକୁ ଧର୍ମୀୟ ସ୍ୱୀକୃତି ବିଭିନ୍ନ ସଂସ୍କୃତିରେ ପ୍ରଦାନ କରାଯାଇଥିଲା। ଏସବୁ ଯେ ଦୈବୀବିଧାନ ଏହି ବିଚାରବୋଧ ସମାଜରେ ଅନ୍ତବହୁତ ରହିଥିଲା।

ଏସବୁ ଭେଦଭାବ ଜନିତ ପରିବେଶ ସହ ଧର୍ମର ଗଭୀର ପ୍ରଭାବ ସମାଜରେ ରହିଥିବା ସମୟରେ ରାଜନୈତିକ ସ୍ତରରେ ଏକଛତ୍ରବାଦ ଓ ରାଜତନ୍ତ୍ର ସାରା ପୃଥିବୀରେ ରହିଥିଲା। ରାଜାମାନେ ଚଳନ୍ତି ବିଷ୍ଣୁ, ଈଶ୍ୱରଙ୍କ ପ୍ରତିନିଧି ବୋଲି ବିଶ୍ୱାସ କରାଯାଉଥିଲା। ସେହିପରି ଏକ ସାମନ୍ତବାଦୀ ସଂସ୍କୃତି ସମାଜରେ ପରିବ୍ୟାପ୍ତ ଥିଲା। ସମାଜର ମୁଷ୍ଟିମେୟ ଲୋକ ଧନ, କ୍ଷମତା, ପ୍ରଭାବର ଅଧିକାରୀ ଥିଲେ ଓ ସାଧାରଣ ମଣିଷର କୌଣସି ମହତ୍ତ୍ୱ ନଥିଲା। ଶିକ୍ଷା ସମାଜର ମୁଷ୍ଟିମେୟ ବ୍ୟକ୍ତିଙ୍କର ଅଧିକାରର ବିଷୟ ହୋଇ ରହିଥିଲା ଓ ଅଗଣିତ ବ୍ୟକ୍ତି ଶିକ୍ଷାରୁ ବଞ୍ଚିତ ହୋଇ ରହିଥିଲେ। ନିରକ୍ଷରତା ଗୋଟିଏ ଦୁଇଟି ଶତାବ୍ଦୀ ତଳେ ବ୍ୟାପକ ଭାବେ ରହିଥିଲା।

ସଭ୍ୟତାର କ୍ରମବିକାଶ ଧାରାରେ ଜ୍ଞାନବିଜ୍ଞାନର ବିକାଶ ପର ଠାରୁ ସାଂସ୍କୃତିକ ଦୃଶ୍ୟପଟରେ, ରାଜନୈତିକ ପରିସ୍ଥିତିରେ ଓ ନୈତିକ ବିଚାରବୋଧରେ ଚ୍ଚମୂଳ ପରିବର୍ତ୍ତନର ସୂତ୍ରପାତ ହେଲା। ରାଜତନ୍ତ୍ର ବିରୁଦ୍ଧରେ ଫରାସୀ ରାଷ୍ଟ୍ରବିପ୍ଳବ ଇତିହାସରେ ଥିଲା ଏକ ଯୁଗାନ୍ତକାରୀ ଘଟଣା। ସ୍ୱାଧୀନତା, ସମତା ଓ ଭ୍ରାତୃତ୍ୱଭାବର ଯେଉଁ ବିଚାରବୋଧ ଦାର୍ଶନିକ ଅନ୍ୱେଷା ମଧ୍ୟ ଦେଇ ବୌଦ୍ଧିକ ସ୍ତରରେ ପ୍ରକାଶ ପାଇଲା, ସେଥିରୁ ଏକ ନୂତନ ରାଜନୈତିକ ସଂସ୍କୃତିର ଅଭ୍ୟୁଦୟ ହେଲା। ଏକଛତ୍ରବାଦ, ସାମନ୍ତବାଦ, ରାଜତନ୍ତ୍ର ବିରୁଦ୍ଧରେ ଗଣତାନ୍ତ୍ରିକ

ବିଚାରବୋଧ ଚିନ୍ତାରାଜ୍ୟରେ ତୁମୁଳ ଆଲୋଡ଼ନ ଆଣିଲା। ରାଜନୈତିକ ବ୍ୟବସ୍ଥା ଓ ସାମାଜିକ ମୂଲ୍ୟବୋଧ ସ୍ତରରେ ଗଣତନ୍ତ୍ର ଏକ ଆଦର୍ଶ ଭାବେ ଅଧିକରୁ ଅଧିକ ସ୍ୱୀକୃତ ହେବାକୁ ଲାଗିଲା। ସେହିପରି ସାମ୍ରାଜ୍ୟବାଦ ବିରୋଧରେ ବିପ୍ଳବର ସୂତ୍ରପାତ ହେଲା। ଦେଶାତ୍ମବୋଧ, ରାଷ୍ଟ୍ରୀୟତା ପରି ମୂଲ୍ୟବୋଧର ବିକାଶରୁ ପରାଧୀନ ରାଷ୍ଟ୍ରମାନେ ନିଜ ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ କଲେ। ଧୀରେ ଧୀରେ ରାଜନୈତିକ ସାମ୍ରାଜ୍ୟବାଦର ବିଲୋପ ପ୍ରକ୍ରିୟା ଆରମ୍ଭ ହେଲା। ସେହିପରି ଶିଳ୍ପ ବିପ୍ଳବ ପରିଣାମରୁ ଯେଉଁ ପୁଞ୍ଜିବାଦୀ ବ୍ୟବସ୍ଥାର ବିକାଶ ହୋଇଥିଲା ଓ ଅଗଣିତ ମଣିଷ ଦାରିଦ୍ର୍ୟ ଭିତରକୁ ପେଷି ହୋଇ ଯାଇଥିଲେ ତାହା ବିରୁଦ୍ଧରେ ସମାଜବାଦ ଏକ ଅର୍ଥନୈତିକ ଆଦର୍ଶ ଭାବେ ଏକ ନୂତନ ଆଲୋଡ଼ନ ସୃଷ୍ଟି କଲା। ଏକ ଶୋଷଣମୁକ୍ତ ଓ ସମତାଭିତ୍ତିକ ବ୍ୟବସ୍ଥାର ରୂପାୟନ ପାଇଁ କେତେକ ଦେଶରେ ବିପ୍ଳବର ସୂତ୍ରପାତ ହେଲା। ମୋଟ୍ ଉପରେ ଏକଛତ୍ରବାଦ, ରାଜତନ୍ତ୍ର, ସାମ୍ରାଜ୍ୟବାଦ, ପୁଞ୍ଜିବାଦ ଇତ୍ୟାଦି ଭେଦଭାବ-ଆଧାରିତ ବ୍ୟବସ୍ଥାମାନଙ୍କୁ ଦୂର କରି ଗଣତନ୍ତ୍ର, ସମାଜବାଦ ଓ ସମତାର ଭାବନା ବୈଚାରିକ ସ୍ତରରେ ଅଧିକ ନ୍ୟାୟଯୁକ୍ତ ତଥା ମାନବିକ ବୋଲି ବିଚାର ପ୍ରକାଶ ପାଇଲା। ବିଭିନ୍ନ ହିଂସାତ୍ମକ ବା ଅହିଂସାତ୍ମକ ଜନ ଆନ୍ଦୋଳନ ମଧ୍ୟ ଦେଇ କେତେକ କ୍ରାନ୍ତିକାରୀ ଭାବଧାରାର ପ୍ରତିଷ୍ଠା ପାଇଁ ବିଶ୍ୱ ସ୍ତରରେ ପ୍ରୟାସ ହେଲା।

ଏହା ସହିତ ଯେଉଁଠି ଉତ୍କଟ ସାମାଜିକ ବୈଷମ୍ୟ ରହିଥିଲା ତାହା ବିରୋଧରେ ଜନଆନ୍ଦୋଳନମାନ ମଧ୍ୟ ମୁଣ୍ଡ ଟେକିଲା। ଲିଙ୍ଗଭେଦକୁ ଦୂର କରିବା ପାଇଁ ନାରୀମୁକ୍ତି ଆନ୍ଦୋଳନ ବିଭିନ୍ନ ଦେଶରେ ସୃଷ୍ଟି ହେଲା। ରଙ୍ଗଭେଦ ଜନିତ ଭେଦଭାବକୁ ଦୂର କରିବାକୁ କେତେକ ରାଷ୍ଟ୍ରରେ ଗୃହଯୁଦ୍ଧ ଓ ସାମାଜିକ ବିପ୍ଳବ ସୃଷ୍ଟି ହେଲା। ଜାତିଭେଦକୁ ଦୂର କରିବାକୁ ରାଷ୍ଟ୍ରୀୟ ସ୍ତରରେ ପ୍ରୟାସ ହେଲା ଓ ଜାତି ଆଧାରରେ ସାମାଜିକ ଶୋଷଣ ଓ ଭେଦଭାବକୁ ଦୂର କରିବାକୁ କଠୋର ଆଇନ୍ ପ୍ରଣୟନ କରାଗଲା। ଏକ ଶୋଷଣମୁକ୍ତ ଓ ଭେଦଭାବରହିତ ସାମାଜିକ ବ୍ୟବସ୍ଥାର ବିକାଶକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଗଲା।

ଏସବୁ ବୈଚାରିକ ଆଲୋଡ଼ନ ଓ ସାମାଜିକ କ୍ରାନ୍ତିର ମୂଳ ଉତ୍ସ ଥିଲା ମାନବବାଦ ଓ ହେତୁବାଦ। ହେତୁବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନବୋଧକୁ ନେଇ ବିକଶିତ ହୋଇଥିଲା। ଧାର୍ମିକ ବିଶ୍ୱାସ ସ୍ତରରେ ରହିଥିବା ସ୍ୱର୍ଗ, ନରକ, ଆତ୍ମା, ପୁନର୍ଜନ୍ମ, ବିଚାର ଦିବସ, ଜନ୍ମାନ୍ତରବାଦ ଭାବନାମାନ ବିଜ୍ଞାନ ଦୃଷ୍ଟିରୁ ଆଧାରହୀନ ଓ ତଥ୍ୟରହିତ ବୋଲି ଗୃହୀତ ହେଲା। ପରିଣାମତଃ ପାରଲୌକିକ ଭାବନା ସକଳ ଯେ ନିରାଧାର ଓ

କେବଳ କଳ୍ପନା, ତାହା ଜଣାପଡ଼ିଲା । ଧାର୍ମିକ ବିଶ୍ୱାସମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଧର୍ମମାନଙ୍କର ବିଶ୍ୱାସ ମାନ କିପରି ପରସ୍ପର ବିରୋଧୀ, ଏହା ବି ପ୍ରତିଷ୍ଠିତ ହେଲା । ବିଜ୍ଞାନକୁ ଆଧାର କରି ଯେଉଁ ସବୁ ପ୍ରଯୁକ୍ତିର ବିକାଶ ହେଲା ତାହାର ପରିଣାମରୁ ପୃଥିବୀର ଦୂରତ୍ୱ କମିଗଲା ଓ ସମଗ୍ର ପୃଥିବୀରେ ଏକ ଆନ୍ତର୍ଜାତିକ ମନୋଭାବର ଅଭ୍ୟୁଦୟ ହେଲା ।

ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ମାନବବାଦୀ ଜୀବନବୋଧ ଦେଇ ସମଗ୍ର ପୃଥିବୀରେ ବିକଶିତ ହେବାରେ ଲାଗିଛି । ମାନବବାଦ ଏକ ସମ୍ବେଦନଶୀଳ ଜୀବନବୋଧ ଓ ସମତାର ଭାବନା ଉପରେ ବିକଶିତ ଏକ ଜୀବନ-ଦର୍ଶନ । ମାନବିକ ସମ୍ବେଦନଶୀଳତା ଓ ନୀତିବୋଧର ଭାବନା ସାମାଜିକ ଶ୍ରେୟସାଧନ କ୍ଷେତ୍ରରେ ଯେ ସବୁଠାରୁ ବଡ଼ ସାଧନ ଏହା ହିଁ ଇତିହାସରୁ ଏକ ଉପଲବ୍ଧି । ଘୃଣା, ଅସହିଷ୍ଣୁତା, ଭେଦଭାବ ଓ ନିଷ୍ଠୁରତା ମାନବିକ ଦୁଃଖଦୁର୍ଦ୍ଦଶାର ମୁଖ୍ୟ କାରଣ । ସାମାଜିକ ଜୀବନ ପ୍ରବାହରେ ଏହି ସବୁ ମନୋଭାବ ଦ୍ୱାରା ମାନବିକ ସମ୍ବନ୍ଧ ନିମ୍ନଗାମୀ ହେବା ସହ ସାମାଜିକ ଶାନ୍ତି, ସ୍ଥିରତା ନଷ୍ଟ ହୋଇଥାଏ । ଯେଉଁଠି ବିଦ୍ୱେଷ ଓ ଭେଦଭାବ ପ୍ରଭାବ ବିସ୍ତାର କରେ ସେଠାରେ ସୁଖ, ସଂହତି ଦୂର ହୋଇଯାଏ । ଏକ ସମ୍ବେଦନଶୀଳ ଅନୁଭବ ଯେତେ ଅଧିକ ସାମାଜିକ ଜୀବନଧାରାରେ ପ୍ରତିଫଳିତ ହୁଏ, ସମାଜ ସେତେ ଉନ୍ନତ ଓ ପ୍ରଗତିଶୀଳ ହୋଇଥାଏ ।

ବସ୍ତୁତଃ ମାନବବାଦୀ ଜୀବନବୋଧ ସାମାଜିକ ନ୍ୟାୟ, ସମତା, ବ୍ୟକ୍ତି ସ୍ୱାଧୀନତା ଓ ଭ୍ରାତୃତ୍ୱଭାବ ବିଚାରଧାରା ମଧ୍ୟ ଦେଇ ବିକଶିତ ହୋଇଛି । ବିଶେଷତଃ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ଏହି ଆଦର୍ଶର ଏକ ସୈଦ୍ଧାନ୍ତିକ ପ୍ରତିଫଳନ ଦେଖିବାକୁ ମିଳେ । ସବୁ ମଣିଷ ଜନ୍ମରୁ ସମାନ ଓ ପ୍ରତ୍ୟେକ ବ୍ୟକ୍ତି ଏକ ମର୍ଯ୍ୟାଦାର ସହ ଜୀବନ ଅତିବାହିତ କରିବା, ତାହାର ଏକ ପ୍ରାକୃତିକ ଅଧିକାର । ମଣିଷ ପାରଲୌକିକ ନିର୍ବାଣ ଚାହେଁ ନାହିଁ, ସେ ସମାଜରେ ଏକ ମର୍ଯ୍ୟାଦାର ଜୀବନ ଚାହେଁ, ହେଉଛି ମାନବବାଦର ମୂଳମନ୍ତ୍ର ।

(ପ୍ରଗତିବାଦୀ, ୦୭.୧୨. ୨୦୧୬)

# ସାମାଜିକ ପରିବର୍ତ୍ତନ ଓ ନୈତିକତା

ଏହି ଶହେବର୍ଷ ଭିତରେ ଦେଶ ଦୁନିଆରେ ବହୁ ପରିବର୍ତ୍ତନ ଘଟିଛି। ଜ୍ଞାନ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ଯୋଗୁ ଏହି ପରିବର୍ତ୍ତନ ସମ୍ଭବ ହୋଇପାରିଛି। ବହୁ ସ୍ତରରେ ନାନା ଭୌତିକ ଉନ୍ନତି ପରିଲକ୍ଷିତ ହେଉଛି। ରାସ୍ତାଘାଟ, ଯାନବାହନ ଓ ଗମନାଗମନ କ୍ଷେତ୍ରରେ ବହୁ ପ୍ରଗତି ସାଧିତ ହୋଇପାରିଛି। ପୃଥିବୀରୁ ଦୂରତା ହ୍ରାସ ପାଇଛି। ଏପରିକି ମଣିଷ ପୃଥିବୀ ବାହାରେ ଥିବା ଉପଗ୍ରହ ଓ ଅନ୍ୟାନ୍ୟ ଗ୍ରହକୁ ମହାକାଶ ଯାତ୍ରା କରିବାର ଜ୍ଞାନ ହାସଲ କରିଛି। ରେଡିଓ, ଦୂରଦର୍ଶନ, ଇଣ୍ଟରନେଟ୍ ସାରା ପୃଥିବୀକୁ ଯୋଡ଼ିବାରେ ସକ୍ଷମ ହୋଇଛି। ଯେଉଁଠି ଯାହା ଘଟୁଛି ତାହା ତତ୍‌କ୍ଷଣାତ୍ ସାରା ପୃଥିବୀରେ ପ୍ରସାରିତ ହୋଇପାରୁଛି। ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ବହୁ ସଫଳତା ମିଳିପାରିଛି। ୧୯୦୦ ମସିହାରେ ସମଗ୍ର ପୃଥିବୀରେ ଯେତିକି ଲୋକ ରହିଥିଲେ, ଏହା ଭିତରେ ଲୋକସଂଖ୍ୟା ତାର ଚାରିଗୁଣରୁ ଅଧିକ ବୃଦ୍ଧି ପାଇଛି। ଏହି ବର୍ଦ୍ଧିତ ଲୋକସଂଖ୍ୟା ପାଇଁ ଉତ୍ପାଦନ ମଧ୍ୟ ବଢ଼ିଛି, ନହେଲେ ପୃଥିବୀରେ ଦୁର୍ଭିକ୍ଷ ପରି ପରିବେଶ ସୃଷ୍ଟି ହୁଅନ୍ତା। ଚିକିତ୍ସା ବିଜ୍ଞାନରେ ବି ଆଶାତୀତ ଉନ୍ନତି ଘଟିଛି। ଶିକ୍ଷା, ସାମାଜିକ ସଚେତନତା କ୍ଷେତ୍ରରେ ବି ଯଥେଷ୍ଟ ଉନ୍ନତି ସାଧିତ ହୋଇଛି। ପଚାଶ ଷାଠିଏ ବର୍ଷ ତଳେ ଗାଁ ଗହଳର ଯାହା ଚିତ୍ର ଥିଲା, ଏବେ ସେହି ଚିତ୍ରରେ ଅନେକ ପରିବର୍ତ୍ତନ ଆସିପାରିଛି। ଗାଁ ଗହଳରେ ବି ବିଜୁଳି ଆଲୁଅ ଉପଲବ୍ଧ ହୋଇପାରୁଛି, ରାସ୍ତାଘାଟରେ ଉନ୍ନତି ଘଟିଛି। ସହର ବଜାରର ଅଧିକାଂଶ ଜିନିଷ ମିଳିପାରୁଛି, ସ୍ୱାସ୍ଥ୍ୟଗତ ସଚେତନତା ବୃଦ୍ଧି ପାଇଛି ଓ ସାଧାରଣ ଜୀବନର ମାନରେ ଗୁଣାତ୍ମକ ବିକାଶ ଘଟିଛି। ଭୌତିକ ବିକାଶ ସହ ନୈତିକତା, ମାନବିକ ମୂଲ୍ୟବୋଧ କ୍ଷେତ୍ରରେ ଅବକ୍ଷୟ ଘଟୁଛି କି? ଭୌତିକ ପ୍ରଗତି ମାନବିକ ମୂଲ୍ୟବୋଧର ପରିପନ୍ଥୀ କି? କେତେକ ମତପୋଷଣ କରନ୍ତି ଯେ, ଭୌତିକ ବିକାଶ ଘଟୁଥିଲେ ବି ମାନବିକତା ସ୍ତରରେ ଅବକ୍ଷୟ ଘଟୁଛି। ହିଂସା ଓ ଅପରାଧ ସମାଜରେ ବୃଦ୍ଧି ପାଇବାରେ ଲାଗିଛି। ସମାଜର ନୈତିକ ବିକାଶ ନ ଘଟିଲେ ଭୌତିକ ବିକାଶ ଯେ ନାନା ଜଟିଳ ପରିସ୍ଥିତି ସୃଷ୍ଟି କରିବ, ଏହିପରି କିଛି ଆଶଙ୍କା ପ୍ରକାଶ ପାଉଛି। ସମାଜର ବୁଦ୍ଧିଦୀପ୍ତ ଓ ସଚେତନ ବ୍ୟକ୍ତିମାନେ ନୈତିକ ଅବକ୍ଷୟ ନେଇ ଚିନ୍ତା ପ୍ରକଟ କରୁଛନ୍ତି।

ଏହା ଅବିବାଦୀୟ ସତ୍ୟ ଯେ, ସାମାଜିକ ସମ୍ବନ୍ଧ ଦିନକୁ ଦିନ ଜଟିଳ ହେବାରେ ଲାଗିଛି। ଗ୍ରାମୀଣ ପରିବେଶରେ ଓ ସର୍ବନିମ୍ନ ଆବଶ୍ୟକତା ଭିତରେ ମଣିଷ ରହିଥିବା ବେଳେ ତାର ଜୀବନବୋଧ କ୍ଷେତ୍ରରେ ଯେଉଁ ମାନବିକ ମୂଲ୍ୟଚୟ ରହିଥିଲା, ଆଜିର ଜଟିଳ ପରିବେଶରେ ସେଥିରେ କିଛି ଅବକ୍ଷୟ ଦେଖାଦେବା କିଛିଟା ସ୍ୱାଭାବିକ। ଏକ ପ୍ରତିଯୋଗିତାହୀନ କ୍ଷୁଦ୍ର ପରିସରରେ ଓ ସ୍ୱଳ୍ପ ଆବଶ୍ୟକତା ଭିତରେ ଜୀବନ ନିର୍ବାହ କରୁଥିଲା ବେଳେ ବ୍ୟକ୍ତି କେତେକ ପାରମ୍ପାରିକ ଆଦର୍ଶ ଓ ମାନବିକ ମୂଲ୍ୟବୋଧକୁ ଜୀବନଧାରାରେ ଗ୍ରହଣ କରିବା ଏକ ସାଧାରଣ ଉପଲବ୍ଧି। କିନ୍ତୁ ସାଂପ୍ରତିକ ସ୍ଥିତିରେ ସାମାଜିକ ସମ୍ବନ୍ଧ ଅଧିକ ଜଟିଳ ହୋଇଚାଲିଛି। ପ୍ରତ୍ୟେକ ସ୍ତରରେ ବ୍ୟକ୍ତିକୁ ନାନା ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡୁଛି। ଜୀବନର ଆବଶ୍ୟକତା ବୃଦ୍ଧି ପାଇବାରେ ଲାଗିଛି। ସମାଜରେ ଆର୍ଥିକ ବୈଷମ୍ୟ ମଧ୍ୟ ଉତ୍କଟ ହେବାରେ ଲାଗିଛି। ଗ୍ରାମମାନଙ୍କରେ ଆବଶ୍ୟକୀୟ କର୍ମସଂସ୍ଥାନ ମିଳିପାରୁ ନାହିଁ, ବୃତ୍ତି ଅନ୍ୱେଷଣରେ କିଛି ଲୋକ ଗାଁ ଛାଡ଼ି ସହରକୁ ଉପାର୍ଜନ ପାଇଁ ଆସୁଛନ୍ତି। ସହରରେ ବିଭିନ୍ନ ସ୍ଲମ୍ ବଢ଼ିବାରେ ଲାଗିଛି। ସମାଜର ଶ୍ରମଜୀବୀ ଗୋଷ୍ଠୀ ବହୁ ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନ ନିର୍ବାହ କରିବାକୁ ବାଧ୍ୟ ହେଉଛନ୍ତି। ଗ୍ରାମୀଣ ଜୀବନରେ ରହିଥିବା ପାରମ୍ପରିକ କୌଳିକ ବୃତ୍ତିଗୁଡ଼ିକ ପରିବର୍ତ୍ତିତ ପରିସ୍ଥିତିରେ ନଷ୍ଟ ହେବାରେ ଲାଗିଛି। ଏହି ଦୃଷ୍ଟିରୁ ବେକାରି ସମସ୍ୟା ବି ବୃଦ୍ଧି ପାଇବାରେ ଲାଗିଛି। ଚାଷୀମାନେ ବି ଆଜିର ପରିସ୍ଥିତିରେ ମାନସିକ ଚାପଗ୍ରସ୍ତ ହେଉଛନ୍ତି ଓ କେହି କେହି ଆତ୍ମହତ୍ୟା କରୁଥିବାର ସମ୍ବାଦ ପ୍ରକାଶ ପାଉଛି ଓ କିଛିଟା ଆଲୋଡ଼ନ ସୃଷ୍ଟି କରୁଛି। ଶିକ୍ଷା ବ୍ୟାବସାୟିକ ହୋଇଉଠୁଛି ଓ ଗୁଣାତ୍ମକ ଶିକ୍ଷା ସାଧାରଣ ପରିବାର ପାଇଁ ଅସମ୍ଭବ ହେବାରେ ଲାଗିଛି। ମୋଟ୍ ଉପରେ କହିଲେ, ସାମାଜିକ ସଂପର୍କ ଓ ଜୀବନ ପ୍ରବାହ ଦିନକୁ ଦିନ ଜଟିଳ ହୋଇଉଠୁଛି। ଏକ କ୍ଷୁଦ୍ର ପରିସରରେ ଓ ସୀମିତ ଆବଶ୍ୟକତା ଭିତରେ ଜୀବନ ନିର୍ବାହ କରିବା ବେଳେ ଯେଉଁ ସରଳତା ଓ ନୈତିକତା ପ୍ରକାଶିତ ହୋଇଥାଏ, ଏକ ଜଟିଳ ପରିବେଶରେ ତାହାର ଅଭାବ ପରିଲକ୍ଷିତ ହେବା ଏକ ସ୍ୱାଭାବିକ ଘଟଣା ମନେ ହୋଇପାରେ।

କିନ୍ତୁ ବୈଚାରିକ ସ୍ତରରେ ମାନବବାଦର ଯେଉଁ ଆବେଦନଗୁଡ଼ିକ ସଂପ୍ରତି ସାର୍ବଜନୀନ ହେବାରେ ଲାଗିଛି ତାହା ବହୁ ଦୃଷ୍ଟିରୁ ଏକ ନୈତିକ ଉତ୍ତରଣର ଚିତ୍ର ଦେଇଥାଏ। ଭାରତୀୟ ସମାଜ ପୃଷ୍ଠଭୂମିରେ ପଚାଶ ଶହେ ବର୍ଷ ତଳେ ଯେଉଁ ଜାତିଆଣ ଉଚ୍ଚ-ନୀଚ ଭେଦଭାବ ସମାଜରେ ଦୃଢ଼ ହୋଇ ରହିଥିଲା, ସେହି ବ୍ୟବସ୍ଥାରେ ବହୁ ପରିବର୍ତ୍ତନ ଆସିପାରିଛି। ଜାତିଗତ କଠୋରତା ସମାଜରୁ ନାନା କାରଣ ଯୋଗୁ ହ୍ରାସ ପାଇବାରେ

ଲାଗିଛି । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଓ ସମ୍ମାନଜନକ ଜୀବନ ବଞ୍ଚିବାର ଅଧିକାରକୁ ପ୍ରତ୍ୟେକ ରାଷ୍ଟ୍ର ନୀତିଗତ ଭାବେ ସ୍ୱୀକାର କରୁଛନ୍ତି ଓ ଏହା ହିଁ ଏକ ସାର୍ବଜନୀନ ଆଦର୍ଶ ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହୋଇଛି । ସେହିପରି ଅତୀତରେ ମହିଳାମାନେ ଯେଉଁ ଭେଦଭାବ ଓ କଟକଣାର ଶିକାର ହେଉଥିଲେ ସେହି ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହୋଇଛି । ପୁରୁଷକୈନ୍ଦ୍ରିକ ସମାଜ ବ୍ୟବସ୍ଥାରେ ପରିବର୍ତ୍ତନ ଆସିଛି ଓ ମହିଳାମାନେ ସବୁ ସ୍ତରରେ ନିଜର ପ୍ରାଧାନ୍ୟକୁ ସାବ୍ୟସ୍ତ କରିବାର ଅବକାଶ ପାଉଛନ୍ତି । ଆଇନ୍ ଦୃଷ୍ଟିରେ ସମସ୍ତେ ସମାନ ବିବେଚିତ ହେଉଛନ୍ତି ଓ ସମାଜରୁ ସାମନ୍ତବାଦୀ ମାନସିକତା ଅନେକାଂଶରେ ଦୂର ହେବାରେ ଲାଗିଛି । ଗଣତନ୍ତ୍ର ଏକ ରାଜନୈତିକ ଆଦର୍ଶରୁ ଏକ ସାମାଜିକ ମୂଲ୍ୟବୋଧ ଭାବେ ଧୀରେ ଧୀରେ ସ୍ୱୀକୃତ ହେବାରେ ଲାଗିଛି । ପ୍ରତ୍ୟେକ ନାଗରିକ କିପରି ସ୍ୱାବଲମ୍ବୀ ହୋଇ ଏକ ସୁସ୍ଥ ସାମାଜିକ ଜୀବନ ଅତିବାହିତ କରିପାରିବ ଏଥିପାଇଁ ରାଷ୍ଟ୍ର ଜନମଙ୍ଗଳକାରୀ ଯୋଜନାମାନ କାର୍ଯ୍ୟକାରୀ କରୁଛି । ସାମାଜିକ ନ୍ୟାୟ, ସମତାର ପରିବେଶ ଓ ଜନକଲ୍ୟାଣକାରୀ ଆଭିମୁଖ୍ୟ ରାଷ୍ଟ୍ରର ଅଭିଳଷିତ ଲକ୍ଷ୍ୟ ଭାବେ ଅଧିକରୁ ଅଧିକ ଗୃହୀତ ହେବାରେ ଲାଗିଛି । ଏହି ସବୁ ଦୃଷ୍ଟିରୁ ବିଚାର କଲେ ସାମଗ୍ରିକ ଭାବେ ସାମାଜିକ ଚେତନାର ସ୍ତରରେ କିଛିଟା ନୈତିକ ଉତ୍ତରଣ ସୃଷ୍ଟି ହୋଇଛି । କେତେକ ମହତ୍ତର ମାନବବାଦୀ ମୂଲ୍ୟବୋଧକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଉଛି ।

ଅତୀତରେ ନୈତିକ ମୂଲ୍ୟଚୟର ଭିତ୍ତି ଧର୍ମକୈନ୍ଦ୍ରିକ ଓ ଈଶ୍ୱର-ବିଶ୍ୱାସ ଭିତ୍ତିକ ହୋଇ ରହିଥିଲା । ଭଲ-ମନ୍ଦ, ନୀତି-ଅନୀତି, ନ୍ୟାୟ-ଅନ୍ୟାୟ ଭାବନାର ଆଧାର ଥିଲା ଧର୍ମଶାସ୍ତ୍ର । ଯାହା ଧର୍ମଗ୍ରନ୍ଥ ଦ୍ୱାରା ଅନୁମୋଦିତ ତାହା ହିଁ ନୀତିପୂର୍ଣ୍ଣ । ବ୍ୟକ୍ତି କାହିଁକି ଏକ ନୀତିପୂର୍ଣ୍ଣ ଜୀବନ ବଞ୍ଚିବା ଆବଶ୍ୟକ-ପ୍ରଶ୍ନର ସାଧାରଣ ଉତ୍ତର ଥିଲା ଏହା ଧର୍ମାନୁମୋଦିତ ଓ ଏହା ଦ୍ୱାରା ଏକ ପାରଲୌକିକ ପ୍ରାପ୍ତି ସମ୍ଭବ ହେବ । ଧର୍ମରେ ବିଶ୍ୱାସ ଅର୍ଥ ନୈତିକ ହେବା ଓ ଧର୍ମରେ ଅବିଶ୍ୱାସ ଅର୍ଥ ଅନୈତିକ ହେବା ବୋଲି ବିଚାର ପ୍ରତ୍ୟେକ ଧର୍ମଗୋଷ୍ଠୀରେ ବ୍ୟାପକ ଭାବେ ରହିଥିଲା । ସୁତରାଂ କୌଣସି ସାମାଜିକ ବ୍ୟବସ୍ଥା ବା ଚଳଣିକୁ ସ୍ୱୀକୃତି ଦେବାକୁ ତାହାକୁ ଧର୍ମ-ଆଧାରିତ କରାଯାଇଥିଲା । ଅଧିକାଂଶ ଧର୍ମ ପରମ୍ପରାରେ ନାରୀମାନଙ୍କୁ ନ୍ୟୂନ କରାଯାଇଥିଲା, ସୁତରାଂ ଏହାକୁ ସମାଜ ଗ୍ରହଣ କରି ପୁରୁଷ ପ୍ରାଧାନ୍ୟକୁ ସ୍ୱୀକାର କରୁଥିଲା । କେତେକ ସମାଜରେ ଭେଦଭାବମୂଳକ ଜାତି ବ୍ୟବସ୍ଥାକୁ ଗ୍ରହଣ କରାଯାଉଥିଲା ଓ ଏହା ଯେ ଧର୍ମାନୁମୋଦିତ ଏହି ବିଶ୍ୱାସ ଧର୍ମଗୋଷ୍ଠୀରେ ରହିଥିଲା । ଗୋଟିଏ ସମୟରେ ଧର୍ମାନୁମୋଦିତ ଭାବନାମାନଙ୍କୁ

ଈଶ୍ୱରଦତ୍ତ ଜ୍ଞାନ ବୋଲି ମନେ କରାଯାଉଥିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀରେ ବିଶ୍ୱାସ ଥିଲା ଯେ, ତାଙ୍କ ଧର୍ମଗ୍ରନ୍ଥରେ ଯେଉଁ ସବୁ ବିଷୟ ରହିଛି ତାହା ଈଶ୍ୱରପ୍ରେରିତ ଜ୍ଞାନ ଓ ପବିତ୍ର । ସେହି ଜ୍ଞାନକୁ ବିରୋଧ କରିବା ଏକ ଅଧର୍ମୀୟ କାର୍ଯ୍ୟ । ଯେଉଁମାନେ ଧର୍ମଗ୍ରନ୍ଥର ଭାବନାକୁ ବିରୋଧ କରନ୍ତି ସେମାନେ ଧର୍ମଦ୍ରୋହୀ ଓ ସେମାନେ ଦଣ୍ଡ (ଏପରିକି ମୃତ୍ୟୁ ଦଣ୍ଡ) ପାଇବା ଯୋଗ୍ୟ । ଅତୀତରେ ବିଭିନ୍ନ ଧର୍ମ ପରମ୍ପରାରେ ବହୁ ସଂସ୍କାରବାଦୀ, ମାନବବାଦୀ ଓ ସତ୍ୟନିଷ୍ଠ ବୈଜ୍ଞାନିକ କିପରି ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି, ତାହାର କାହାଣୀ ବେଶ୍ ମର୍ମାନ୍ତିକ ମନେହୁଏ ।

ପୁନଶ୍ଚ ନୈତିକ ଜୀବନର ଆଭିମୁଖ୍ୟ ଐହିକ ସୁଖଶାନ୍ତି ପାଇଁ ଉଦ୍ଦିଷ୍ଟ ନ ହୋଇ ପାରଲୌକିକ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ବୋଲି ବିଚାର ରହିଥିଲା । ବିଭିନ୍ନ ଧର୍ମ ପରମ୍ପରାରେ ପାରଲୌକିକ ଜୀବନ ନେଇ କେତେ କେତେ କଳ୍ପନା ପ୍ରକାଶ ପାଇଥିଲା । ସ୍ୱର୍ଗ, ନରକ, ଜନ୍ମାନ୍ତରବାଦ, ମୁକ୍ତି, ମୋକ୍ଷ, ନିର୍ବାଣ ପରି ବିଭିନ୍ନ କଳ୍ପନା ପାରଲୌକିକ ଜୀବନବୋଧର ଅଙ୍ଗବିଶେଷ ଥିଲା । କିନ୍ତୁ ଜ୍ଞାନ ବିଜ୍ଞାନର ବିକାଶ ଓ ଦାର୍ଶନିକ ଅନୁସନ୍ଧିତ୍ସାରୁ ଏହି ସବୁ ବିଶ୍ୱାସମାନ ଆଧାରହୀନ ଓ ଅଯୌକ୍ତିକ ବୋଲି ଧୀରେ ଧୀରେ ପ୍ରତିପାଦିତ ହେବାକୁ ଲାଗିଲା । ନୈତିକତାର ଆଧାର ପାରଲୌକିକ ବା ଧାର୍ମିକ ନ ହୋଇ ସମାଜଭିତ୍ତିକ ହେଲା । ସୁଖଶାନ୍ତିର ସାମାଜିକ ଜୀବନ ପାଇଁ ନୈତିକ ଜୀବନବୋଧ ଅବଶ୍ୟମ୍ଭାବୀ ବୋଲି ଚିନ୍ତାସ୍ତରରେ ଗୃହୀତ ହେବାକୁ ଲାଗିଲା । ନୈତିକତା ଯେ ଏକ ସାମାଜିକ କର୍ତ୍ତବ୍ୟ ଏହା ବୌଦ୍ଧିକ ସ୍ତରରେ ସ୍ୱୀକୃତ ହେଲା । ନୈତିକତା ଈଶ୍ୱରଭାବନାରୁ ମୁକ୍ତ ହେଲା । ପ୍ରତ୍ୟେକ ନୀତିବାନ୍ ବ୍ୟକ୍ତି ଈଶ୍ୱରବିଶ୍ୱାସୀ ନୁହନ୍ତି ବା ପ୍ରତ୍ୟେକ ଈଶ୍ୱରବିଶ୍ୱାସୀ ବ୍ୟକ୍ତି ନୀତିବାନ୍ ନୁହନ୍ତି । ସୁତରାଂ ନୈତିକତା ଓ ଈଶ୍ୱର ଭାବନା ପରସ୍ପର ଠାରୁ ପୃଥକ୍ ଏହା ଦାର୍ଶନିକ ଅନୁଶୀଳନରେ ସ୍ପଷ୍ଟ ହେଲା । ଧର୍ମ, ଈଶ୍ୱର ବିଶ୍ୱାସ, ପାରଲୌକିକ ଜୀବନବୋଧ ବ୍ୟକ୍ତିଗତ ବିଶ୍ୱାସର ବିଷୟ । କିନ୍ତୁ ସାମାଜିକ ଆଦାନ ପ୍ରଦାନ ଓ ସମ୍ବନ୍ଧ ପୃଷ୍ଠଭୂମିରେ ନୈତିକ ଆଚରଣ ଓ ମାନବବାଦୀ ଜୀବନବୋଧ ଅପରିହାର୍ଯ୍ୟ । ସଂପ୍ରତି ବୃତ୍ତିଗତ ନୈତିକତା ଠାରୁ ଆରମ୍ଭ କରି ପ୍ରତ୍ୟେକ ସ୍ତରରେ ନୈତିକ ଆଚରଣକୁ ପ୍ରାଧାନ୍ୟ ଦିଆଯାଉଛି । ବ୍ୟକ୍ତିଗତ ସ୍ତରରେ ହେଉ ବା ଗୋଷ୍ଠୀଗତ ସ୍ତରରେ ହେଉ ନୈତିକ ଶୃଙ୍ଖଳା ଓ ନାଗରିକ କର୍ତ୍ତବ୍ୟବୋଧକୁ ଗୁଣାତ୍ମକ ଜୀବନର ମାପକାଠି ବୋଲି ନିଆଯାଉଛି । ସାମାଜିକ ଜୀବନଧାରାରେ ନୈତିକ ଆଚରଣ ଓ ନାଗରିକ ଶୃଙ୍ଖଳାଜ୍ଞାନ ଯେତେ ଅଧିକ ପ୍ରତିଫଳିତ ହେବ ସାମାଜିକ ଜୀବନର ଗୁଣାତ୍ମକ

ମାନ ସେତେ ଉନ୍ନତ ହୋଇପାରିବ। ପରନ୍ତୁ ଯଦି ସମାଜରେ ଅସାଧୁତା, କର୍ତ୍ତବ୍ୟ ସଂପାଦନା କ୍ଷେତ୍ରରେ ଅନାଗ୍ରହତା ଓ କୌଣସି ଲକ୍ଷ୍ୟ ହାସଲ ପାଇଁ ଯେ କୌଣସି ପନ୍ଥା ଅବଲମ୍ବନ କରିବାର ମାନସିକତା ବୃଦ୍ଧି ପାଏ ସମାଜ କ୍ଷୟଶୀଳ ହୋଇଥାଏ। ସାମାଜିକ କ୍ଷୟଶୀଳତା ଅଶାନ୍ତି, ଅସ୍ଥିରତା ଓ ଜନଗଣଙ୍କର ଦୁଃଖ ଦୁର୍ଦ୍ଦଶାର କାରଣ ହେବା ଏକ ସାଧାରଣ ଉପଲବ୍ଧି।

ସାମାଜିକ ବିକାଶ ଓ ପରିବର୍ତ୍ତନ ପୃଷ୍ଠଭୂମିରେ ନୀତି ଆଦର୍ଶର ଭାବନାମାନ ମଧ୍ୟ ପରିବର୍ତ୍ତିତ ହେଉଛି। ସଂପ୍ରତି ବ୍ୟକ୍ତିର କର୍ତ୍ତବ୍ୟବୋଧ ଏକ କ୍ଷୁଦ୍ର ପରିସରରେ ସୀମିତ ରହୁ ନାହିଁ, ବରଂ ବ୍ୟକ୍ତିର ନୈତିକତା ଓ କର୍ତ୍ତବ୍ୟବୋଧ ବୃହତ୍ତର ପରିସରକୁ ପ୍ରସାରିତ ହୋଇଚାଲିଛି। ସାଂପ୍ରତିକ ବିଚାରବୋଧରେ ନୈତିକତା ଯେପରି ଏକ ସାମାଜିକ କର୍ତ୍ତବ୍ୟ ଏହା ସେହିପରି ଏକ ପରିବ୍ୟାପ୍ତ ସାମାଜିକ ଚେତନା। ସାମାଜିକ ଜୀବନଧାରାକୁ ଅର୍ଥପୂର୍ଣ୍ଣ, ସୁଖପ୍ରଦ ଓ ଅନୁପମ କରିବା ପାଇଁ ନୈତିକତା ଅବଶ୍ୟମ୍ଭାବୀ। ନୈତିକତାର ଆଧାର ଓ ବିକାଶ ହେଉଛି ମଣିଷର ବିଚାରଶୀଳ ଦୃଷ୍ଟିର ପରିଣାମ। ମଣିଷ ଯେତେ ଅଧିକ ବିଚାରଶୀଳ ହେବ ଓ ସମାଜ ପ୍ରତି ଉତ୍ତରଦାୟୀ ମନୋଭାବ ରଖିବ, ସେ ନୈତିକ ଆଦର୍ଶକୁ ସେତେ ମହତ୍ତ୍ୱ ଦେବ।

(ପ୍ରଗତିବାଦୀ, ୧୭. ୦୫. ୨୦୧୭)

# କିଛି ସ୍ୱପ୍ନ, କିଛି ବାସ୍ତବତା

ସବୁ ସଭ୍ୟତାର ମାନବବାଦୀ ହେତୁବାଦୀମାନେ ସର୍ବଦା ଦୁଇଟି ସ୍ୱପ୍ନ ଦେଖିଛନ୍ତି, ତାହା ହେଲା ଏକ ଦାରିଦ୍ର୍ୟହୀନ ପୃଥିବୀ ଓ ଏକ ହିଂସା ବା ଯୁଦ୍ଧରହିତ ମାନବସମାଜ। ଆମ ସଂସାରରେ ସବୁ ସମୟରେ କିଛି ବ୍ୟକ୍ତି ଉତ୍କଟ ଦାରିଦ୍ର୍ୟ ଭିତରେ ଜୀବନ ବଞ୍ଚିବାକୁ ବାଧ ହୋଇଛନ୍ତି ଓ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାରେ ସମର୍ଥ ହୋଇପାରି ନାହାନ୍ତି। କେଉଁଠି ପେଟର ଜ୍ୱାଳା ରହିଛି, କେଉଁଠି ରୋଗର ଯନ୍ତ୍ରଣା ରହିଛି ଓ କାହା ପାଖରେ ମୁଣ୍ଡ ଗୁଞ୍ଜିବା ପାଇଁ କ୍ଷୁଦ୍ର ଆଶ୍ରୟଟିଏ ମଧ ନାହିଁ। ଏସବୁ ତ ନିଛକ ବାସ୍ତବତା। ବିଶେଷକରି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଏବେ ବି ଏହି ସ୍ଥିତି ରହିଛି। ଏସବୁ ବ୍ୟତୀତ ଆହୁରି ଅନେକ ପ୍ରକାରର ଦାରିଦ୍ର୍ୟ ବି ସମାଜରେ ରହିଛି। ଅଶିକ୍ଷା, ନିରକ୍ଷରତା ମଧ ଦାରିଦ୍ର୍ୟର ଏକ ବିସ୍ତାରିତ ଅର୍ଥ। କୌଣସି କାରଣବଶତଃ ଯେଉଁ ମଣିଷମାନେ ସାକ୍ଷର ହୋଇପାରି ନାହାନ୍ତି କିମ୍ବା ପାଠ ପଢ଼ିବାକୁ ଅବକାଶ ପାଇନାହାନ୍ତି ସେମାନେ ଦାରିଦ୍ର୍ୟର ପରିସରଭୁକ୍ତ। ସେମାନଙ୍କ ପାଖରେ ପେଟର ଜ୍ୱାଳା ନଥାଇପାରେ ଓ ଏପରିକି କିଛି ସମ୍ପନ୍ନତା ଥାଇପାରେ ତଥାପି ଆଜିର ମାନଦଣ୍ଡରେ ନିରକ୍ଷରତା ଦାରିଦ୍ର୍ୟର ପ୍ରତୀକ। ଆହୁରି ସୂକ୍ଷ୍ମ ସ୍ତରରେ ଦାରିଦ୍ର୍ୟର ମଧ ବ୍ୟାଖ୍ୟା କରାଯାଏ। ଯାହା ଅହେତୁକ, ଅବୈଜ୍ଞାନିକ ଓ ଅସତ୍ୟ ସେଥିରେ ଗଭୀର ଆସ୍ଥା ରଖିବା ମାନସିକ ଦାରିଦ୍ର୍ୟର ସୂଚନା ଦେଇଥାଏ। ସମାଜରେ ନାନା ଅଜ୍ଞତା ଓ ଅହେତୁକ ଭାବନା ରହିବା ଏକ ସ୍ୱାଭାବିକ ପ୍ରକ୍ରିୟା। ତେବେ ମୁକ୍ତ ମନ, ବିଚାରଶୀଳତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ପ୍ରତ୍ୟାଖ୍ୟାନ କରିବା, ବା ସେସବୁ ପ୍ରତି ନାସ୍ତିସୂଚକ ମନୋଭାବ ପୋଷଣ କରିବା ମାନସିକ ଦାରିଦ୍ର୍ୟର ସଙ୍କେତ ବହନ କରେ। ଯେଉଁ ପ୍ରକାରର ଦାରିଦ୍ର୍ୟ ହେଉନା କାହିଁକି ତାହା ଯେ ସୁସ୍ଥ ଜୀବନର ପରିପନ୍ଥୀ ଏହା ଏକ ବୌଦ୍ଧିକ ଉପଲବ୍ଧି। ଦାରିଦ୍ର୍ୟମାନଙ୍କ ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିପାରେ ତେବେ ଦାରିଦ୍ର୍ୟ ଯେ ଏକ ମନ୍ଦ, ଅଶୁଭ ବା ଇଭିଲ ଏହା ଅନସ୍ୱୀକାର୍ଯ୍ୟ।

ସେହିପରି ହିଂସା, ଯୁଦ୍ଧ, ଶୋଷଣ, ଅତ୍ୟାଚାର, ଅସହିଷ୍ଣୁତା ମାନବିକ ଜୀବନଦୃଷ୍ଟିର ପରିପନ୍ଥୀ। ତେବେ ସଭ୍ୟତାର ଇତିହାସରେ ବିଭିନ୍ନ ସମାଜରେ କେତେ କେତେ ଦୌରାତ୍ମ୍ୟ

ଓ ଅମାନବିକତାର କାହାଣୀ ରହିଛି। ଅତୀତରେ ନାନା ଯୁଦ୍ଧ ଓ ସଂଘର୍ଷ ରାଜ୍ୟ ରାଜ୍ୟ ଭିତରେ ଘଟିଛି। ସାମ୍ରାଜ୍ୟବାଦ, ରାଜ୍ୟଜୟ କାରଣରୁ କେତେ ରକ୍ତପାତ ହୋଇଛି। ଜାତିବାଦ, ବର୍ଣ୍ଣବୈଷମ୍ୟ, ଲିଙ୍ଗଭେଦ ଇତ୍ୟାଦି କାରଣରୁ କେତେ କେତେ ଭେଦଭାବ ଓ ଅସହିଷ୍ଣୁତାର ପରିବେଶ ଆସିଛି। ସଭ୍ୟତା ଓ ଧର୍ମମାନଙ୍କ ମଧ୍ୟରେ ଆଦାନ ପ୍ରଦାନ ପୂର୍ବରୁ ପ୍ରତ୍ୟେକ ଧର୍ମ ନିଜକୁ ଅନନ୍ୟ ଓ ସତ୍ୟ ବୋଲି ମନେ କରୁଥିଲା। ନିଜର ବିଶ୍ୱାସ, ପରମ୍ପରା ଓ ନୈତିକତାର ଢାଞ୍ଚାଟିକୁ ସବୁଠାରୁ ଶ୍ରେଷ୍ଠ ଓ ଶ୍ରେୟସ୍କର ଭାବୁଥିଲା। ସମସ୍ତେ ସେହି ଢାଞ୍ଚା ଓ ଜୀବନବୋଧକୁ ଗ୍ରହଣ କରିବା ଦରକାର ଏହି ଭାବନାରୁ କେତେ ଘୃଣା ଓ ଉଗ୍ରଭାବନା ପୃଥିବୀରେ ନାନା ଅସହିଷ୍ଣୁତାକୁ ଜନ୍ମ ଦେଇଥିଲା। ଏବେ ବି ସାମ୍ପ୍ରଦାୟିକ ଉଗ୍ରବାଦ କେତେକ ସମାଜର ନିଛକ ବାସ୍ତବତା।

ମାନବ ସଭ୍ୟତାର କେତେକ ବାସ୍ତବତାକୁ ସ୍ୱୀକାର କଲେ ସମ୍ଭବତଃ ଏହି ଅସହିଷ୍ଣୁତା ଓ ଉଗ୍ରବାଦକୁ ଦୂର କରାଯାଇପାରିବ। ମାନବ ସଭ୍ୟତାର ଇତିହାସ ବହୁ ବର୍ଣ୍ଣାଢ୍ୟଯୁକ୍ତ। କେତେ ଭାଷା, ଧର୍ମ, ସଂସ୍କୃତି, ସାହିତ୍ୟ, ସଙ୍ଗୀତ, ସ୍ଥାପତ୍ୟ ଆମ ସଂସାରରେ ବିଦ୍ୟମାନ। ବହୁ ଅତୀତରୁ ବିଭିନ୍ନ ଭୂଖଣ୍ଡରେ ଗଢ଼ି ଉଠିଥିବା ଭିନ୍ନ ଭିନ୍ନ ସାମାଜିକ ଜନଗୋଷ୍ଠୀର ଜୀବନଧାରାରେ ଭିନ୍ନତା ରହିବ ହିଁ ରହିବ। ଐତିହାସିକ କ୍ରମବିକାଶ ଧାରାରେ ଏକାଧିକ ରାଜନୈତିକ ଆଦର୍ଶ, ସାମାଜିକ ମୂଲ୍ୟଚୟ, ଆଧ୍ୟାତ୍ମିକ ଜୀବନବୋଧ ଇତ୍ୟାଦିର ବିକାଶ ହେବା ଏକ ସ୍ୱାଭାବିକ ପ୍ରକ୍ରିୟା। ନିଜ ଭାଷା, ଧର୍ମ, ସଂସ୍କୃତି, ସମାଜ ପ୍ରତି ଆବେଗିକ ବନ୍ଧନ ରହିବାକୁ କେହି ଅସ୍ୱୀକାର କରିବେ ନାହିଁ। କିନ୍ତୁ ତାହା ଯଦି ଘୃଣା, ବିଦ୍ୱେଷ, ଈର୍ଷା ଓ ଅସହିଷ୍ଣୁତାର ରୂପ ନିଏ ତାହା ହିଁ ସଭ୍ୟତା ପାଇଁ ବିପଦ ଆଣେ। ସମସ୍ତ ପ୍ରକାର ଅସହିଷ୍ଣୁତାର ଊର୍ଦ୍ଧ୍ୱକୁ ଯାଇ ମାନବସମୂହକୁ ଏକ ଅବିଚ୍ଛେଦ୍ୟ ସମାଜ ଭାବେ ଦେଖିବାକୁ ହେତୁବାଦୀ-ମାନବବାଦୀମାନେ ସର୍ବଦା ନିବେଦନ କରି ଆସିଛନ୍ତି। ଯଦି ମାନବସମୂହକୁ ଏକତ୍ୱର ଡୋରିରେ ବାନ୍ଧିବାର ପ୍ରୟାସ ହୁଏ ତେବେ ତାହା ମାନବବାଦର ଦିଗ୍‌ବଳୟକୁ ପ୍ରସାରିତ କରିବା ସହ ଆମ ସଂସାରରେ ଶାନ୍ତିର ପରିବେଶ ସୃଷ୍ଟି କରିପାରିବ। ମଣିଷର ପ୍ରୟାସରେ ଏକ ସ୍ୱର୍ଗରାଜ୍ୟର ପ୍ରତିଷ୍ଠା ପୃଥିବୀପୃଷ୍ଠରେ ସମ୍ଭବ ହେବ, ଯଦି ଜୀବନବୋଧର ମୂଳଭିତ୍ତି ମାନବବାଦ ଉପରେ ପ୍ରତିଷ୍ଠା ଲାଭ କରେ। ନାନା ସାମାଜିକ, ଭୌଗୋଳିକ ଓ ସାଂସ୍କୃତିକ କାରଣରୁ ଭାଗ ଭାଗ ହୋଇ ରହିଥିବା ମାନବ ସମାଜ ଭିତରେ ଏକତ୍ୱବୋଧର ବାର୍ତ୍ତା ପାଇଁ ସଂସାରରେ ଅତୀତରେ କିଛି ମହାକାଂକ୍ଷୀ ବ୍ୟକ୍ତି ପ୍ରୟାସ କରିଛନ୍ତି। ବିଶ୍ୱ ଏକ ପରିବାର ବୋଲି ଚିନ୍ତା ପ୍ରକଟ କରିଛନ୍ତି, ଜଗତରେ ଶାନ୍ତି ଓ ଅହିଂସାର ବାର୍ତ୍ତା ପ୍ରସାର କରିଛନ୍ତି,

ତେବେ ତାହା ମାନବିକ ଚେତନାର ନୈତିକ ଉତ୍ତରଣ ଦିଗରେ ସହାୟକ ହୋଇଥିଲେ ମଧ୍ୟ ସଫଳ ଦ୍ୱାରଦେଶକୁ ଯାଇପାରି ନାହିଁ। ତେବେ ସାଂପ୍ରତିକ ବିଶ୍ୱରେ ଆଧୁନିକ ପ୍ରଯୁକ୍ତି ବା ଟେକ୍‌ନୋଲୋଜି ପୃଥିବୀର ଜନସମୂହ ଭିତରେ ଏକ ବାହ୍ୟିକ ସମ୍ବନ୍ଧ ପ୍ରତିଷ୍ଠା କରିବାରେ କିଛିଟା ସଫଳ ହୋଇଛି। ବିଜ୍ଞାନର କେତେ କେତେ ସାଧନ ସମ୍ବନ୍ଧ ସ୍ଥାପନ କ୍ଷେତ୍ରରେ ଅନୁକୂଳ ପରିବେଶ ସୃଷ୍ଟି କରିପାରିଛି। ଏହା ସହିତ ଏକ ଆତ୍ମିକ ବନ୍ଧନର ଆବଶ୍ୟକତା ରହିଛି। ଜନସମୁଦାୟ ଭିତରେ ଏହି ବନ୍ଧନକୁ ସୁଦୃଢ଼ କରିବାକୁ କେତେ କେତେ ସଂଗଠନ ଓ ମହାକାଂକ୍ଷୀ ବ୍ୟକ୍ତି ମଧ୍ୟ ପ୍ରୟାସ କରୁଛନ୍ତି। ନାନା ଆଶା, ଆଶଙ୍କା ଭିତରେ ଏହି ପ୍ରୟାସର ଯେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି ଏହା ନିଃସନ୍ଦେହ ମନେହୁଏ।

ମଣିଷର ସୃଜନ ସାମର୍ଥ୍ୟ ଭିତରୁ ଆଧୁନିକ ବିଜ୍ଞାନ ଜୀବନକୁ ସରସ, ସୁଖମୟ ଓ ନିରାମୟ କରିବାର ବହୁ ସମ୍ଭାବନା ଏହି ଗୋଟିଏ ଦୁଇଟି ଶତାବ୍ଦୀ ଭିତରେ ସୃଷ୍ଟି କରିପାରିଛି। ମଣିଷ ହାତରେ ଅମାପ ଜ୍ଞାନ, ସାଧନ ଓ ପ୍ରଯୁକ୍ତି ରହିଛି। ତେବେ ବିଡମ୍ବନାର ବସ୍ତୁ ହେଉଛି, ଏସବୁ ସତ୍ତ୍ୱେ ପୃଥିବୀ ଅସୁରକ୍ଷିତ ମନେହେଉଛି ଓ ମାନବିକ ସମ୍ପର୍କ କଳୁଷିତ ହେବାରେ ଲାଗିଛି। ପୃଥିବୀରୁ ବହୁ ବର୍ବରତା ଦୂର ହୋଇଥିଲେ ମଧ୍ୟ ମଣିଷର ନୈତିକ ସ୍ଖଳନ ଦୂରୀଭୂତ ହୋଇପାରୁ ନାହିଁ। ଏହି ପୃଷ୍ଠଭୂମିରେ ମାନବବାଦୀ ଜୀବନବୋଧର ବାର୍ତ୍ତାକୁ କିପରି ବ୍ୟାପକ କରିହେବ ତାହା ପ୍ରଶ୍ନବାଚୀ ହୋଇ ରହୁଛି। ଶାଳୀନତା, ନ୍ୟାୟବୋଧ ଓ ବିବେକର ଆହ୍ୱାନ ମାନବବାଦୀ ଆଦର୍ଶର କେତେକ ମୌଳିକ ଲକ୍ଷଣ। ଏହି ମୂଲ୍ୟଚୟକୁ ପ୍ରସାର କରାଯାଇ ସେସବୁ ସଭ୍ୟ ଜୀବନବୋଧର ଆଦର୍ଶ ହୋଇପାରିଲେ ସମାଜର ଯେ ମୌଳିକ ପରିବର୍ତ୍ତନ ଆସିପାରିବ ଏହା ଆଶା କରାଯାଏ। ଏତଦ୍ ବ୍ୟତୀତ ବିଚାରଶୀଳତା ଓ ନୀତିବୋଧ କେତେ ବ୍ୟାପକ ଭାବରେ ଆମ ଜୀବନଧାରାରେ ପ୍ରତିଫଳିତ ହେବ ତାହା ପାଇଁ ଗମ୍ଭୀର ଉଦ୍ୟମର ଆବଶ୍ୟକତା ରହିଛି। ଆଜିର ପରିବେଶରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସଭ୍ୟତାର ବିକାଶ ପାଇଁ ଯେ ନିର୍ଣ୍ଣାୟକ ମନେହୁଏ, ଏହି ବିଚାରଧାରାକୁ ବ୍ୟାପକ କରାଇବା ଆବଶ୍ୟକ ଅଟେ।

ଏହି ପୃଷ୍ଠଭୂମିରେ କେତେକ ଚିନ୍ତାନାୟକ କେତେକ ପଦକ୍ଷେପ ଉପରେ ପ୍ରାଧାନ୍ୟ ଦେଉଛନ୍ତି। ବିଜ୍ଞାନ ସଭ୍ୟତାକୁ ଯେଉଁ ଅବଦାନ ଦେଇଛି ଓ ଏକ ନିର୍ଣ୍ଣାୟକ ସ୍ଥିତିକୁ ନେଇଛି ସେହି ସ୍ଥିତିରେ ବିଜ୍ଞାନର ସକଳ ଅପପ୍ରୟୋଗକୁ ପ୍ରତିହତ କରିବା ଆମ ସମୟର ଏକ ବଡ଼ ଆବଶ୍ୟକତା। ବିଜ୍ଞାନ ଓ ପ୍ରଯୁକ୍ତିର ଅପପ୍ରୟୋଗ ଯେ ସଭ୍ୟତା ବିନାଶର ମୁଖ୍ୟ କାରଣ

ହୋଇପାରେ ଏହି ସତ୍ୟକୁ ସ୍ୱୀକାର କରିବାକୁ ହେବ। ବିଜ୍ଞାନ ଅତୀତରେ ଯୁଦ୍ଧ ପାଇଁ ନୂତନ କୌଶଳମାନ ଯୋଗାଇଛି। ଆଜିର ଆଣବିକ ବିଶ୍ୱରେ ଯୁଦ୍ଧ ସଭ୍ୟତାର ମୃତ୍ୟୁଘଣ୍ଟି ବି ବଜାଇବ ଏହି ବାସ୍ତବତାକୁ ସ୍ୱୀକାର କରିବାକୁ ହେବ। ସେହିପରି ଜାତୀୟତାବୋଧକୁ ଏକ ମୂଲ୍ୟବୋଧ ଭାବରେ ନିଆଯିବା ଯଥାର୍ଥ ମନେହୁଏ ନାହିଁ। ଅତୀତରେ ଜାତୀୟତାବାଦୀ ଉନ୍ମାଦନା ସଂସାରରେ ବହୁ ହିଂସା ଓ ରକ୍ତପାତର କାରଣ ହୋଇଛି। ଜାତୀୟତାବାଦ ଏକ ସୀମିତ ଆଦର୍ଶ ହୋଇପାରେ, କିନ୍ତୁ ଏହା ମାନବବାଦର ପରିପନ୍ଥୀ ହେବା ଉଚିତ୍ ନୁହେଁ। ଅନ୍ୟ ଦେଶ, ଜାତି, ଭାଷାର ଜନଗଣଙ୍କୁ ଘୃଣା ଓ ସନ୍ଦେହ ଦୃଷ୍ଟିରେ ଦେଖିବା ଅମାନବିକତାର ପରିଚାୟକ ଅଟେ। ମନ୍ଦ ଆବେଗମୟତା ଯେ ସଂସାରରେ କେତେ କେତେ ହିଂସା ଓ ବର୍ବରତାର କାରଣ ହୋଇଛି ତାହାର କାହାଣୀ ସୁଦୀର୍ଘ ମନେହୁଏ।

ଏହାଛଡ଼ା ଯେଉଁ କେତେକ ସଙ୍କଟ ସଭ୍ୟତା ପାଇଁ ଆହ୍ୱାନ ସୃଷ୍ଟି କରୁଛି, ସେ ସବୁର ମୁକାବିଲା ପାଇଁ ଆନ୍ତର୍ଜାତିକ ସହମତିର ଆବଶ୍ୟକତା ରହିଛି। ଆଞ୍ଚଳିକ ସ୍ୱାର୍ଥ ଓ ସୁବିଧାର ଊର୍ଦ୍ଧ୍ୱରେ ସମୁଦାୟ ମାନବ ସମାଜକୁ ବିଚାରର ପରିସରକୁ ଆଣିବା ଆବଶ୍ୟକ। ହୁଏତ ଆଗାମୀ ଶତାବ୍ଦୀରେ ସମଗ୍ର ପୃଥିବୀ ଏକ ରାଜନୈତିକ ବୁଝାମଣା ଭିତରେ ରହିପାରେ ବା ଏକ ବିଶ୍ୱ ସରକାରର ପରିକଳ୍ପନା ଆସିପାରେ। ତାହା ଅନେକାଂଶରେ ସ୍ୱାଗତଯୋଗ୍ୟ, କାରଣ ତାହା ଦ୍ୱାରା ସବୁଦିନ ପାଇଁ ପୃଥିବୀପୃଷ୍ଠରୁ ଯୁଦ୍ଧର ସମ୍ଭାବନା ଲୋପ ପାଇବ। ଏହା ସହିତ ଜନସଂଖ୍ୟାର ନିୟନ୍ତ୍ରଣ ଓ ପରିବେଶ ସୁରକ୍ଷା ଆନ୍ତର୍ଜାତିକ ସହମତି ଆଧାରରେ ସମ୍ଭବ ହୋଇପାରିବ। ଯେଉଁ କାରଣଗୁଡ଼ିକ ସଭ୍ୟତା ପାଇଁ ବିପଦ ସୃଷ୍ଟି କରିବାର ସମ୍ଭାବନା ରଖୁଛି ତାହାର ନିରାକରଣ ଏକ ବିଶ୍ୱ ରାଜନୈତିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ହୋଇପାରିବ। ପୁନଶ୍ଚ ଯେତେ ସବୁ ଦାରିଦ୍ର୍ୟ ରହିଛି ତାହାର ଦୂରୀକରଣ ପାଇଁ ଆନ୍ତର୍ଜାତିକ ପ୍ରୟାସର ଆବଶ୍ୟକତା ରହିଛି। ମୁଷ୍ଟିମେୟ ଲୋକଙ୍କ ହାତରେ ସମସ୍ତ ପୁଞ୍ଜି କେନ୍ଦ୍ରିତ ହୋଇ ରହିବା ଗଣଦାରିଦ୍ର୍ୟର କାରଣ ହୋଇଛି। ସକଳ ପୁଞ୍ଜି ଅଧିକରୁ ଅଧିକ ଲୋକ ବା ସମସ୍ତ ଲୋକଙ୍କର ଆବଶ୍ୟକତା ପୂରଣ ପାଇଁ ବିନିଯୋଗ ହେବା ଦ୍ୱାରା ମଣିଷ ସମାଜରେ ଗୁଣାତ୍ମକ ପରିବର୍ତ୍ତନର ସୂତ୍ରପାତ ହୋଇପାରିବ। ଅନ୍ୟ ପ୍ରତି କୌଣସି କ୍ଷତି ସୃଷ୍ଟି ନ କରି ପ୍ରତ୍ୟେକ ବ୍ୟକ୍ତିର ବିକାଶ ହେବା ଯୁଗଧର୍ମ ହେବ। ଏହି ସ୍ୱପ୍ନ ଯଦି ମାନବିକ ପ୍ରୟାସରେ ସଫଳ ହୁଏ, ତେବେ ମାନବଜାତିର ପୁନର୍ଜନ୍ମ ହେବ।

(ପ୍ରଗତିବାଦୀ, ୧୯.୦୭.୨୦୧୭)

# କିଛି ମୂଲ୍ୟାଦର୍ଶ, କିଛି ବିଡ଼ମ୍ବନା

ଜନମତ, ନାଗରିକ ସମାଜ, ସ୍ୱାଧୀନ ଗଣମାଧ୍ୟମ, ମୁକ୍ତ ଚିନ୍ତନର ପରିବେଶ ଇତ୍ୟାଦି ମୂଲ୍ୟାଦର୍ଶମାନ ସାଂପ୍ରତିକ ଜୀବନବୋଧରେ ମହତ୍ତ୍ୱପୂର୍ଣ୍ଣ ଭାବେ ଗୃହୀତ। ପ୍ରତ୍ୟେକ ସଭ୍ୟ ସମାଜରେ ଏସବୁ ଭାବନାମାନଙ୍କୁ ବହୁ ଗୁରୁତ୍ୱ ଦିଆଯାଉଛି। ସଭ୍ୟ ଜୀବନବୋଧର ପ୍ରସାର କ୍ଷେତ୍ରରେ ଏସବୁର ବି ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିବା ମନେହୁଏ। ପୁନଶ୍ଚ ଏସବୁ ଯେତିକି ସୁଦୃଢ଼ ଭିତ୍ତି ନିଏ, ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା ସେତିକି ଦୃଢ଼ ହୋଇଥାଏ। ଦେଶର ଗଣତନ୍ତ୍ରକୁ ଦୃଢ଼ ଭିତ୍ତି ଦେବାରେ ଏସବୁର ଅବଦାନ ଗୁରୁତ୍ୱପୂର୍ଣ୍ଣ ବୋଲି ସ୍ୱୀକୃତ। ତେବେ ଏସବୁ ଯଦି କଳୁଷିତ ହୁଏ, ଦେଶର ସାଧାରଣ ଜୀବନଧାରାରେ ଅବକ୍ଷୟ ଆସିଥାଏ। ଏ ପ୍ରତ୍ୟେକ ଭାବନା ସହିତ କେତେକ ଆଦର୍ଶ ସଂଶ୍ଳିଷ୍ଟ ହେବା ଦେଖାଯାଏ। ସେହି ଆଦର୍ଶମାନ ଯେତେ ଉନ୍ନତ ଭିତ୍ତି ନିଏ, ସାମାଜିକ ଜୀବନ ସେତେ ଉନ୍ନତ ହୋଇଥାଏ।

ଜନମତ କେବଳ ବହୁଲୋକଙ୍କର ମତ ନ ହୋଇ ଏହା ଏକ ବିଚାରଶୀଳ ମତ ହେବା ଆବଶ୍ୟକ। ଯେଉଁ କାରଣରୁ ହେଉ ନା କାହିଁକି, ଭାରତୀୟ ସମାଜରେ ଅଧିକାଂଶ ଲୋକ ଜାତିପ୍ରଥାରେ ବିଶ୍ୱାସ କରନ୍ତି। ଏହା ଯେତେ ଭେଦଭାବମୂଳକ ହେଲେ ମଧ୍ୟ ଏହାକୁ ଅନେକ ବ୍ୟକ୍ତି ପ୍ରତ୍ୟକ୍ଷରେ ବା ପରୋକ୍ଷରେ ସ୍ୱୀକୃତି ଦେଇ ଆସିଛନ୍ତି। ସ୍ୱାଧୀନତାର ଦୀର୍ଘ ବର୍ଷ ପରେ ମଧ୍ୟ ଭାରତୀୟ ସମାଜରେ ପ୍ରକାଶ୍ୟରେ ହେଉ ବା ନ ହେଉ, ଅସ୍ପୃଶ୍ୟତା ଓ ଜାତିବାଦୀ ମାନସିକତା ରହିଆସିଛି। ଏହା ଭାରତୀୟ ସମାଜ ବ୍ୟବସ୍ଥା, ଅର୍ଥନୀତି ଓ ସାଂସ୍କୃତିକ ଜୀବନବୋଧରେ ଏପରି ଦୃଢ଼ ହୋଇ ରହିଛି ଯାହା ଦ୍ୱାରା ଏହାର ବିଲୋପ ସମ୍ଭବ ହେଉ ନାହିଁ। ଏକ ଭେଦଭାବରହିତ ସମାଜ ଆମର ଜାତୀୟ ଲକ୍ଷ୍ୟ ବୋଲି ଦେଶର ସମ୍ବିଧାନ ମୁକ୍ତ ଭାବରେ ବ୍ୟକ୍ତ କରିଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ତାହା ଏକ ସୁଦୂରପ୍ରସାରୀ ଲକ୍ଷ୍ୟ ହୋଇରହିବା ମନେହୁଏ। ଜାତିପ୍ରଥା ପରି ମହିଳାମାନଙ୍କ ଅଧିକାର, ପାରିବାରିକ ହିଂସାର ବିଲୋପ, ଶିଶୁ ଶ୍ରମିକ ପ୍ରଥାର ମୂଳୋତ୍ପାଟନ ଆମର ଆଭିମୁଖ୍ୟ ହୋଇଥିଲେ ମଧ୍ୟ ଏହା ସମାଜରୁ ଦୂର ହୋଇପାରୁ

ନାହିଁ। ଯେତେ ମହିଳା ସଶକ୍ତୀକରଣ ବିଷୟ କୁହାଗଲେ ମଧ୍ୟ ସାମାଜିକ ମନସ୍ତତ୍ତ୍ୱରେ ଲିଙ୍ଗଗତ ଭେଦଭାବ ରହିଆସିଛି। ଅବଶ୍ୟ ଗୋଟିଏ ଗୋଟିଏ ଘଟଣା ନାଗରିକ ସଚେତନତାର ସ୍ତରକୁ ଉନ୍ନତ କରିଥିବା ମନେହୁଏ। ୨୦୧୨ ମସିହା, ଡିସେମ୍ବର ମାସରେ ନିର୍ଭୟା ଗଣବଳାତ୍କାର ଘଟଣା ସାରା ଦେଶରେ ଯେଉଁ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିଲା, ମନେ ହେଉଥିଲା ସତେ ଯେପରି ମହିଳାମାନଙ୍କର ସୁରକ୍ଷା ନେଇ ସମାଜ ବେଶ୍ ସଚେତନ ହେଲାଣି। ସେତେବେଳେ ସାରା ଦେଶରେ ବିଭିନ୍ନ ସହରରେ ପ୍ରତିବାଦ ସଭା ହୋଇଥିଲା ଓ ଏହା ଏକ ଆନ୍ତର୍ଜାତିକ ବିଷୟ ହୋଇଯାଇଥିଲା। ପରିଣାମ ସ୍ୱରୂପ ଆଇନ୍‌ରେ ପରିବର୍ତ୍ତନ ପାଇଁ ସରକାର ଜୁଡିସିଆଲ୍ କମିଟି ଗଠନ କଲେ, ତ୍ୱରିତ ବିଷୟଟିର ଫଇସଲା ପାଇଁ ଫାଷ୍ଟ୍ ଟ୍ରାକ୍ କୋର୍ଟରେ ବିଚାର କରାଗଲା ଓ ଅପରାଧୀମାନଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଗଲା। ସକାରାତ୍ମକ ଜନମତ ସରକାରଙ୍କୁ କିପରି ଆଲୋଡ଼ିତ କରିପାରେ, ଏହା ଏକ ବଳିଷ୍ଠ ଉଦାହରଣ କହିଲେ ଅତ୍ୟୁକ୍ତି ହେବନାହିଁ।

ସମାଜର ଶିକ୍ଷିତ ଓ ସଚେତନ ଗୋଷ୍ଠୀ ହେଉଛି ନାଗରିକ ସମାଜ ବା ସିଭିଲ୍ ସୋସାଇଟି। ସରକାର, ବ୍ୟବସାୟ ଇତ୍ୟାଦିରେ ସଂପୃକ୍ତ କର୍ପୋରେଟ୍ ସେକ୍ଟରକୁ ବାଦ୍ ଦେଇ ସମାଜର ବିକାଶ ପାଇଁ କାର୍ଯ୍ୟ କରୁଥିବା ବିଭିନ୍ନ ଏନ୍‌ଜିଓ ବା ବେସରକାରୀ ସଙ୍ଗଠନ, ଶ୍ରମିକ ସଙ୍ଗଠନ, ବିଭିନ୍ନ ସଂସ୍କାରବାଦୀ ସଙ୍ଗଠନ, ମିଡିଆ ପର୍ସନ୍ ଇତ୍ୟାଦି ନାଗରିକ ସମାଜର ଅଙ୍ଗବିଶେଷ। ନାଗରିକ ସମାଜ, ସମାଜର ବିବେକ ଭାବେ କାର୍ଯ୍ୟ କରିଥାଏ। ଦେଶରେ ଉତ୍ତମ ଶାସନ ବ୍ୟବସ୍ଥା, ସବୁ ସ୍ତରରେ ସ୍ୱଚ୍ଛତା, ଆଇନ୍‌ର ଶାସନ, ମାନବିକ ଅଧିକାର ସୁରକ୍ଷା, ଆଇନ୍‌ର ମାନବିକ ଦିଗ ଇତ୍ୟାଦି ପାଇଁ ନାଗରିକ ସମାଜ ପ୍ରଯତ୍ନ କରିଥାଏ। ନାଗରିକ ସମାଜ ଯେତେ ପ୍ରଭାବଶାଳୀ ହୁଏ, ଦେଶର ରାଜନୈତିକ ବ୍ୟବସ୍ଥା ସେତେ ଉନ୍ନତ ହୁଏ। ଏହି ପୃଷ୍ଠଭୂମିରେ ନାଗରିକ ସମାଜ କିପରି ପ୍ରଭାବଶାଳୀ ହୋଇ ସରକାରକୁ ପ୍ରଭାବିତ କରିପାରେ ତାହାର ଏକ ଉଦାହରଣ ଦିଆଯାଇପାରେ। ୨୦୧୧ ମସିହାରେ ରାଜନୈତିକ ସ୍ତରରୁ ଦୁର୍ନୀତିର ବିଲୋପ ପାଇଁ ବିଶିଷ୍ଟ ସମାଜସେବୀ ଆନ୍ନା ହଜାରେ ଦିଲ୍ଲୀରେ ଯେଉଁ ଅନଶନ କରିଥିଲେ, ତାହା ସେତେବେଳେ ଜାତୀୟ ସ୍ତରରେ ଏକ ବଡ଼ ଆଲୋଡ଼ନ ସୃଷ୍ଟି କରିଥିଲା। ରାଜନୈତିକ ଲୋକମାନେ କ୍ଷମତାର ଅପପ୍ରୟୋଗ କରି ଯେପରି ଦୁର୍ନୀତିରେ ସଂପୃକ୍ତ ହେଉଛନ୍ତି ସେଥିପାଇଁ ଲୋକପାଳ ବିଲ୍ ମାଧ୍ୟମରେ ତାହାକୁ ପ୍ରତିହତ କରାଯାଇପାରିବ ବୋଲି ସେ

ଦାବି କରୁଥିଲେ । ଆନ୍ନା ହଜାରେ, ତାଙ୍କ ଅନଶନ ମାଧ୍ୟମରେ ସାଧାରଣ ଜୀବନରେ ଯେଉଁ ଆଲୋଡ଼ନ ଆଣିଥିଲେ ତାହାର ଗଭୀର ପ୍ରଭାବ ସରକାରଙ୍କ ଉପରେ ପଡ଼ିଥିଲା । ନାଗରିକ ସମାଜର ସଚେତନତା ଉପରେ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାର ସଫଳତା ନିର୍ଭର କରିଥାଏ ।

ସେହିପରି ଆଧୁନିକ ଜୀବନ ପ୍ରବାହରେ ଏକ ନିରପେକ୍ଷ ଗଣମାଧ୍ୟମ ଏକ ମୁଖ୍ୟ ଭୂମିକା ନେଇଥାଏ । ଲୋକମତକୁ ପ୍ରଭାବିତ କରିବା, ସମାଜର ବାସ୍ତବ ସ୍ଥିତିକୁ ଲୋକଲୋଚନକୁ ଆଣିବା ଓ ସରକାରୀ ବ୍ୟବସ୍ଥାର ଦୋଷତ୍ରୁଟି ବାହାର କରିବା କ୍ଷେତ୍ରରେ ଦେଶର ଗଣମାଧ୍ୟମର ଗୁରୁଦାୟିତ୍ୱ ଥିବା ମନେହୁଏ । ତେବେ ଦେଶର ଗଣମାଧ୍ୟମ ଯଦି ନିରପେକ୍ଷ ନରହି ରାଜନୈତିକ ଦଳର ହାତବାରିଶି ହୁଏ ଓ ସମାଜରେ ବୈଜ୍ଞାନିକ ମନୋଭାବର ପ୍ରସାର କରିବା ପରିବର୍ତ୍ତେ ଅହେତୁକ ବିଶ୍ୱାସ, କୁସଂସ୍କାର ଓ ଅବୈଜ୍ଞାନିକ ଭାବନାର ପ୍ରସାର କରେ, ତେବେ ସାମାଜିକ ଅବକ୍ଷୟ ତ୍ୱରାନ୍ୱିତ ହୋଇଥାଏ । ସାଂପ୍ରତିକ ପରିବେଶରେ ଗଣମାଧ୍ୟମ ଜନମାନସକୁ ପ୍ରଭାବିତ କରିବା କ୍ଷେତ୍ରରେ ଏକ ମୁଖ୍ୟ ଭୂମିକା ନେଉଥିବା ମନେହୁଏ । ତେବେ ପରିତାପର ବିଷୟ, ଏତେ ବଡ଼ ବୈଜ୍ଞାନିକ ସାଧନକୁ ଯଦି କୁସଂସ୍କାର ଓ ଅପସଂସ୍କୃତି ପ୍ରସାର ପାଇଁ ବିନିଯୋଗ କରାଯାଏ, ତେବେ ସମାଜରେ କ୍ଷୟଶୀଳତା ବୃଦ୍ଧି ପାଏ ।

ସାମାଜିକ ଜୀବନଧାରାରେ ମୁକ୍ତ ଚିନ୍ତନର ପରିବେଶ ଯେତେ ବ୍ୟାପକ ହୁଏ ଓ ଜନମାନସକୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଦିଗରେ ପ୍ରଭାବିତ କରିବାକୁ ଉଦ୍ୟମ ହୁଏ, ତାହା ସମାଜକୁ ଉନ୍ନତ କରିଥାଏ । ଏହା ବି ଆମ ସମ୍ବିଧାନରେ ନାଗରିକର ମୌଳିକ କର୍ତ୍ତବ୍ୟ ବୋଲି ଉଲ୍ଲେଖ କରାଯାଇଛି । କିନ୍ତୁ ସାମାଜିକ ବାସ୍ତବତା ଏହାଠାରୁ ବହୁ ଦୂରରେ । ନାନା କୁସଂସ୍କାର, ଅପବିଶ୍ୱାସ, ପାରଲୌକିକ ଜୀବନବୋଧ ଓ ଅବୈଜ୍ଞାନିକ ଭାବଧାରା ଆମ ସାମାଜିକ ଜୀବନର ଛତ୍ରେ ଛତ୍ରେ ପରିଲକ୍ଷିତ ହୁଏ । ଆଧ୍ୟାତ୍ମିକ ଓ ଅଲୌକିକ ଶକ୍ତିର ଅଧିକାରୀ ବୋଲି ଲୋକମାନଙ୍କୁ ବିଶ୍ୱାସ ଦିଆଯାଇ କେତେକ ବାବା ନିଜ ନିଜର ସାମ୍ରାଜ୍ୟ ସୃଷ୍ଟି କରିବା ସାଂପ୍ରତିକ ସମୟର ବଡ଼ ପ୍ରହେଳିକା ମନେହୁଏ । ଆପରାଧିକ ଘଟଣାରେ ସଂପୃକ୍ତ ହୋଇ ଦଣ୍ଡିତ ହେବାପରେ ମଧ୍ୟ ବାବାଙ୍କର ଭକ୍ତମାନେ ବାବାଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ଓ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିବା, ଆମ ସାମାଜିକ କ୍ଷୟଶୀଳତାର ଚିତ୍ର ଦେଇଥାଏ । ଡେରା ସଚ୍ଚା ସୌଦା ସଙ୍ଗଠନର

ମୁଖ୍ୟ ଗୁରୁମିତ ରାମ ରହିମ୍ ସିଂହ ବିଭିନ୍ନ ଦୁଷ୍କର୍ମ ମାମଲାରେ ସଂପୃକ୍ତ ବୋଲି ନିକଟରେ ଦଣ୍ଡିତ ହୋଇ ଜେଲ୍‌ରେ ରହିଛନ୍ତି। ତେବେ ଏହିଭଳି ବ୍ୟକ୍ତିମାନଙ୍କର ଯେ ଲକ୍ଷ ଲକ୍ଷ ଭକ୍ତ ରହିଛନ୍ତି ଓ ବାବାମାନଙ୍କ ପ୍ରତି ଗଭୀର ଆନୁଗତ୍ୟ ରଖିଛନ୍ତି, ଏହା ଆମ ସମାଜର କେଉଁ ଚିତ୍ର ଦେଉଛି ? ଧାର୍ମିକ ଆବେଗ କିପରି ଏତେ ସହଜରେ ଲୋକମାନଙ୍କୁ ପ୍ରଭାବିତ କରିପାରୁଛି, ତାହା ସମ୍ଭବତଃ ମନୋବୈଜ୍ଞାନିକ ଗବେଷଣାର ବିଷୟ।

ଆମେ ଆଜି ଏକବିଂଶ ଶତାବ୍ଦୀର ପ୍ରଯୁକ୍ତି ଓ ସାଧନ ବ୍ୟବହାର କରୁଛେ, କିନ୍ତୁ ଆମର ମାନସିକତା ମଧ୍ୟଯୁଗୀୟ ଆଦର୍ଶ ଭିତରେ ରହିଛି। ଏହା ହିଁ ସାଂପ୍ରତିକ ସମୟର ବିଡମ୍ବନା। ଏହି ମାନସିକତାରେ ପରିବର୍ତ୍ତନ ନହେଲେ ଜୀବନର ଗୁଣାତ୍ମକ ମାନରେ ଉନ୍ନତି ଆସିପାରିବ ନାହିଁ।

(ପ୍ରଗତିବାଦୀ, ୦୬.୦୯.୨୦୧୭)

# ଭ୍ରାତୃତ୍ୱ ବନାମ ଭେଦଭାବ

ସଭ୍ୟତା ସଂପ୍ରତି ଯେଉଁ ସ୍ତରରେ ପହଞ୍ଚିଛି, ସେଥିରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଅବଶ୍ୟମ୍ଭାବୀ ମନେହୁଏ। ଏପରି ଏକ ବିଶ୍ୱ ହୁଅନ୍ତା, ଯେଉଁଠି କୌଣସି ହିଂସା, ଘୃଣା, ଭେଦଭାବ ରହିନଥାନ୍ତା ଓ ଦୁନିଆର ସବୁ ମଣିଷ ଭ୍ରାତୃତ୍ୱର ମନୋଭାବ ପୋଷଣ କରନ୍ତେ। ଏଥିପାଇଁ ଆନ୍ତର୍ଜାତିକ ସ୍ତରରେ କେତେକ ସଙ୍ଗଠନ, ବ୍ୟକ୍ତିବିଶେଷ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରୁଛନ୍ତି ଓ ସମଗ୍ର ବିଶ୍ୱରେ ଶାନ୍ତିପୂର୍ଣ୍ଣ ପରିବେଶ ପାଇଁ କିଛି କିଛି ପଦକ୍ଷେପ ନେଉଛନ୍ତି। ତା ସତ୍ତ୍ୱେ ଦୁନିଆରେ ବହୁ ବିଦ୍ୱେଷ, ଭେଦଭାବ ଓ ହିଂସାତ୍ମକ ପରିବେଶ ରହିଆସିଛି। ମାନବ ସଭ୍ୟତାର କ୍ରମବିକାଶ ପ୍ରକ୍ରିୟାରେ ଅବଶ୍ୟ ସବୁ ସମୟରେ ପୃଥିବୀରେ କେତେ କେତେ ଯୁଦ୍ଧ, ହିଂସାର ପରିବେଶ ରହିଆସିଛି ଓ ଏକ ହିଂସାରହିତ ଓ ଯୁଦ୍ଧମୁକ୍ତ ବିଶ୍ୱ ରୂପରେଖ ନେଇ ନାହିଁ। ଇତିହାସରେ ଏପରି କୌଣସି ଶତାବ୍ଦୀ ନାହିଁ ଯେଉଁ ସମୟରେ ପୃଥିବୀରେ କିଛି ଯୁଦ୍ଧ ହୋଇନାହିଁ। ସଭ୍ୟତାର ଇତିହାସରେ ବହୁ ଯୁଦ୍ଧ, ବିଭୀଷିକା ଓ ଦୁର୍ବଳ ଉପରେ ଅତ୍ୟାଚାରର କାହାଣୀ ରହିଛି। ଏସବୁର ବିପରୀତ ହେଉଛି ଶାନ୍ତିପୂର୍ଣ୍ଣ ସହାବସ୍ଥାନ। ସମସ୍ତେ ଶାନ୍ତିପୂର୍ଣ୍ଣ ଜୀବନ ନିର୍ବାହ କରନ୍ତୁ, ସଂସାରରୁ ସକଳ ହିଂସା, ଭେଦଭାବ ଓ ବିଦ୍ୱେଷର ବିଲୋପ ହେଉ, ଏହି ବାର୍ତ୍ତା ବିଭିନ୍ନ ଧର୍ମଗ୍ରନ୍ଥରେ କିଛି ବ୍ୟକ୍ତ ହୋଇଛି। ଯର୍ଜୁବେଦର କେତେକ ମନ୍ତ୍ରରେ ସମସ୍ତେ ପରସ୍ପରକୁ ମିତ୍ରଦୃଷ୍ଟିରେ ଦେଖିବାକୁ ନିବେଦନ ରହିଛି। ଛାନ୍ଦୋଗ୍ୟ ଉପନିଷଦ୍‌ରେ ଅହିଂସାକୁ ଏକ ମହାନ୍ ମୂଲ୍ୟବୋଧ ଭାବେ ଗ୍ରହଣ କରାଯାଇଛି। ଭାରତ ଭୂଖଣ୍ଡରେ ପ୍ରଚାରିତ ଦୁଇଟି ଧର୍ମଧାରା ଜୈନଧର୍ମ ଓ ବୌଦ୍ଧଧର୍ମରେ ବି ଅହିଂସାର ବାର୍ତ୍ତା ରହିଛି। ବ୍ୟକ୍ତି ଓ ଗୋଷ୍ଠୀ ଜୀବନରୁ ହିଂସାର ବିଲୋପ ଦ୍ୱାରା ଯେ ଜୀବନର ଆଧ୍ୟାତ୍ମିକ ଉତ୍ତରଣ ସମ୍ଭବ ଏହି ଭାବନା ବ୍ୟକ୍ତ ହୋଇଛି। ଜୈନଧର୍ମରେ ଅହିଂସାକୁ ଏକ ମହାବ୍ରତ ଭାବରେ ନିଆଯାଇଛି ଓ ବୌଦ୍ଧଧର୍ମର ନୈତିକ ଜୀବନବୋଧରେ ଅହିଂସାକୁ ଉଚ୍ଚ ସ୍ଥାନ ଦିଆଯାଇଛି। ବୃହଦାରଣ୍ୟକ ଉପନିଷଦ୍‌ରେ ସମସ୍ତେ ଅସତ୍ୟରୁ ସତ୍ୟ ଆଡ଼କୁ, ଅନ୍ଧକାରରୁ ଆଲୋକ ଆଡ଼କୁ ଓ ମୃତ୍ୟୁରୁ ଅମୃତତ୍ୱ ଆଡ଼କୁ ଯିବା ସହ ସର୍ବତ୍ର ଶାନ୍ତି ବିରାଜମାନ କରିବାର ଭାବନା ବ୍ୟକ୍ତ ହୋଇଛି। ସେହିପରି ବାଇବେଲ୍‌ର 'ସର୍ମୋନ୍ ଅଫ୍ ଦି ମାଉଣ୍ଟ'ରେ ଯେଉଁ ଉପଦେଶ ରହିଛି ତାହାର ଏକ ଚିରନ୍ତନ ପ୍ରଭାବ ରହିବା ମନେହୁଏ। ନିଜର ପ୍ରତିବେଶକୁ

ଭଲ ପାଅ ଓ ମଣିଷ ସମାଜକୁ ଭ୍ରାତୃତ୍ୱର ଦୃଷ୍ଟିରେ ଦେଖ ଉଚ୍ଚତର ମୂଲ୍ୟବୋଧର ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ। ଶିଖ୍ ଧର୍ମରେ ଥିବା ପାଞ୍ଚଟି ମୌଳିକ ଆଦର୍ଶ ଭିତରୁ ଗୋଟିଏ ହେଉଛି ସମସ୍ତଙ୍କ ପ୍ରତି ସଂପ୍ରୀତିର ମନୋଭାବ ପୋଷଣ କରିବା। ଏସବୁ ଭାବନା ଭିତରେ ନୈତିକ ଚେତନା ଓ ଶାନ୍ତିପୂର୍ଣ୍ଣ ଜୀବନ ପାଇଁ ଯେ ପ୍ରେରଣା ରହିଛି, ଏହାକୁ ଅସ୍ୱୀକାର କରିହେବ ନାହିଁ।

କିନ୍ତୁ ବିଡମ୍ବନାର ବିଷୟ ହେଉଛି, ଧର୍ମଗୋଷ୍ଠୀମାନଙ୍କ ଭିତରେ ସାମ୍ପ୍ରଦାୟିକ ବିଦ୍ୱେଷ ସର୍ବଦା ରହିଆସିଛି। ଯେଉଁ ଯୁଗରେ ଧର୍ମମାନଙ୍କର ଉଦ୍ଭବ ହୋଇଥିଲା ବା ଧର୍ମଗ୍ରନ୍ଥମାନ ରଚିତ ହୋଇଥିଲା ସେହି ସମୟରେ ପୃଥିବୀ ସଂପର୍କିତ ଜ୍ଞାନ ସୀମିତ ରହିଥିଲା; ପୃଥିବୀରେ ଯେ ବହୁ ସଭ୍ୟତା, ଧର୍ମ, ସଂସ୍କୃତି, ଜୀବନବୋଧ ଇତ୍ୟାଦି ରହିଛି ସେ ସଂପର୍କିତ ଜ୍ଞାନ ସାର୍ବଜନୀନ ନ ଥିଲା। ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମ ଓ ଧର୍ମଗ୍ରନ୍ଥକୁ ପବିତ୍ର, ଈଶ୍ୱରୀୟ ଜ୍ଞାନ ବୋଲି ଗ୍ରହଣ କରୁଥିଲେ। ସେହି ବିଚାରବୋଧରେ କିଛି ସାର୍ବଜନୀନ ମୂଲ୍ୟବୋଧର ଅବତାରଣା କରିଥିଲେ। କିନ୍ତୁ ସଭ୍ୟତାର କ୍ରମବିସ୍ତାର ଓ ବିଭିନ୍ନ ଭୌଗୋଳିକ ଭୂଖଣ୍ଡ ବିଷୟରେ ଜ୍ଞାନରୁ ଧର୍ମଗୋଷ୍ଠୀମାନଙ୍କ ମଧ୍ୟରେ ବିଦ୍ୱେଷର ମନୋଭାବ ସୃଷ୍ଟି ହେଲା ଓ ମାନବବାଦୀ ନୈତିକବୋଧ ଅପସରି ଗଲା। ଇତିହାସର ଏହା ବି ବିଡମ୍ବନା ଯେ, ଧର୍ମ ମଣିଷ ସମାଜରେ ସଂହତି ପରିବର୍ତ୍ତେ ବିଦ୍ୱେଷ ଓ ସଂଘର୍ଷର ମନୋଭାବ ସୃଷ୍ଟି କଲା। ଧାର୍ମିକ ପରିଭାଷାରେ ଧର୍ମଯୁଦ୍ଧ, ହୋଲି ୱାର, ଜିହାଦ୍ ଇତ୍ୟାଦି ଭାବନା ଧର୍ମଗୋଷ୍ଠୀକୁ ସାମ୍ପ୍ରଦାୟିକ ଚେତନାରେ କଳୁଷିତ କରିପାରିଲା। ସାମ୍ପ୍ରଦାୟିକ ବିଦ୍ୱେଷ ଜନିତ କାରଣରୁ ବହୁ ଯୁଦ୍ଧ, ସଂଘର୍ଷରେ ପୃଥିବୀ ନାନା ଭାବରେ ରକ୍ତରଞ୍ଜିତ ହେବାର କାହାଣୀ ବେଶ୍ ମର୍ମାନ୍ତିକ କହିଲେ ଅତ୍ୟୁକ୍ତି ହେବ ନାହିଁ। ଅନ୍ୟ ଧର୍ମବିଶ୍ୱାସୀଙ୍କ ପୂଜାସ୍ଥଳୀକୁ ଧ୍ୱଂସ କରିବାକୁ ଏକ ଧାର୍ମିକ କାର୍ଯ୍ୟ ବୋଲି ମନେ କରିବା, ଅନ୍ୟ ଧର୍ମାବଲମ୍ବୀଙ୍କ ପ୍ରତି ହିଂସା ଆଚରଣ କରିବାରେ ଗୌରବ ଅନୁଭବ କରିବା, ଧାର୍ମିକ ବିଶ୍ୱାସ ଓ ଅସ୍ମିତାରୁ ପ୍ରେରଣା ନେଇ ସନ୍ତ୍ରାସବାଦୀ କାର୍ଯ୍ୟକଳାପରେ ଲିପ୍ତ ହେବାର ବହୁ ଦୃଷ୍ଟାନ୍ତ ଏକ ସାଧାରଣ ଉପଲବ୍ଧି। ନୈତିକତା, ମହତ୍ତର ଜୀବନବୋଧ ଓ ଉଦାରବାଦୀ ମାନବିକତା ପରିବର୍ତ୍ତେ ଧର୍ମ ସାମ୍ପ୍ରଦାୟିକତା ଓ ମୌଳବାଦୀ ମାନସିକତା ଉଦ୍ରେକ କରିବା ଏକ ସାଂସ୍କୃତିକ ବିଡମ୍ବନା। ଏପରିକି ବୈଜ୍ଞାନିକ ମାନସିକତା ଓ ପ୍ରଗତିଶୀଳ ଭାବନାର ବିକାଶରେ ଧାର୍ମିକ ମନୋଭାବ ପ୍ରତିବନ୍ଧକ ହେବା ଏକ ଐତିହାସିକ ବାସ୍ତବତା। ଏହି ମାନଦଣ୍ଡରୁ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ଧର୍ମ ଓ ଧର୍ମାନ୍ଧତା ଯେ ବଡ଼ ପ୍ରତିବନ୍ଧକ, ଏହା ଅନ୍ୟ ଏକ ଉପଲବ୍ଧି।

ଯେବେ ଠାରୁ ରାଷ୍ଟ୍ରୀୟ ଭାବନାର ବିକାଶ ହେଲାଣି, ଦେଶପ୍ରେମ, ଦେଶାତ୍ମବୋଧ ମୂଲ୍ୟବୋଧମାନ ସଭ୍ୟତାରେ ବିକଶିତ ହେବା ଦେଖାଯାଏ। ସାମ୍ରାଜ୍ୟବାଦୀ ଯୁଗରେ ନିଜ ଦେଶର ରାଜନୈତିକ ସ୍ୱାଧୀନତା ପାଇଁ ବହୁ ଲୋକ ଅନେକ ତ୍ୟାଗ ସହିବାର କାହାଣୀ ସୁବିଦିତ। ନିଜ ମାତୃଭୂମିର ସ୍ୱାଧୀନତା, ସ୍ୱାଭିମାନ ଓ ନିଜର ରାଷ୍ଟ୍ରୀୟ ଅସ୍ମିତା ଏକ ସମୟରେ ବଡ଼ ମୂଲ୍ୟବୋଧ ଭାବେ ସାର୍ବଜନୀନ ଭାବେ ସ୍ୱୀକୃତ ହେଉଥିଲା। ଏହି ଭାବନାର ପ୍ରଭାବରୁ ରାଜନୈତିକ ସ୍ତରରେ ପୃଥିବୀ ପାଖାପାଖି ଦୁଇଶହ ଭାଗରେ ବିଭକ୍ତ ହେବା ମନେହୁଏ। ପ୍ରତ୍ୟେକ ରାଷ୍ଟ୍ର ନିଜର ସାର୍ବଭୌମତ୍ୱ, ନାଗରିକଙ୍କ ପାଇଁ ସ୍ୱତନ୍ତ୍ର ପରିଚୟ, ନିଜ ଭୂଖଣ୍ଡ ପାଇଁ ସ୍ୱତନ୍ତ୍ର ପତାକା, ଜାତୀୟ ସଙ୍ଗୀତ ଇତ୍ୟାଦି ନେଇ ନିଜର ଅସ୍ମିତା ସୃଷ୍ଟି କରିବା ଦେଖାଯାଏ। ଏହି ପ୍ରକ୍ରିୟାରେ ଦେଶ ଦେଶ ଭିତରେ ତିକ୍ତତା ଓ ଅବିଶ୍ୱାସର ଭାବନାରୁ ଯୁଦ୍ଧର ପରିବେଶ ଆସିବା ଜଣାଯାଏ। ଏପରିକି ପାରସ୍ପରିକ ତିକ୍ତତା ଓ ଦେଶ ଦେଶ ଭିତରେ ଅବିଶ୍ୱାସରୁ ବିଶ୍ୱଯୁଦ୍ଧ ସୃଷ୍ଟି ହେବା ଏକ ଐତିହାସିକ ସତ୍ୟ। ପ୍ରତ୍ୟେକ ରାଷ୍ଟ୍ର ତାର ନାଗରିକମାନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟସେବା, ନିରାପତ୍ତା, ଗୁଣାତ୍ମକ ଜୀବନର ପରିବେଶ ଯୋଗାଇବା ଘଟଣାକୁ ଅସ୍ୱୀକାର କରାଯାଇପାରିବ ନାହିଁ। ତେବେ ରାଷ୍ଟ୍ରୀୟତାର ନକାରାତ୍ମକ ଦିଗଟି ହେଲା, ଏହା ବି ମାନବସମାଜକୁ ଭାଗ କରିବାରେ ତଥା ଦେଶ ଦେଶ ଭିତରେ ତିକ୍ତତାର ବାତାବରଣ ସୃଷ୍ଟି କରିବାରେ ମୁଖ୍ୟ ଭୂମିକା ନେଇଥିବା ମନେହୁଏ। ବିଶେଷକରି ବିଭିନ୍ନ ଭୂଖଣ୍ଡରେ ପଡୋଶୀ ରାଷ୍ଟ୍ରମାନଙ୍କ ଭିତରେ ସୀମା ବିବାଦ, ଜଳ ବିବାଦ ପରି ଘଟଣାକୁ ନେଇ ତିକ୍ତତା ସୃଷ୍ଟି ହେବା ଏକ ନିଛକ ବାସ୍ତବତା। ପୁନଶ୍ଚ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ରାଜନୈତିକ ଆଦର୍ଶ, ଅର୍ଥନୈତିକ ଢାଞ୍ଚା, ଧର୍ମଗତ ବିଭେଦ ଇତ୍ୟାଦିକୁ ନେଇ ସାଂସ୍କୃତିକ ଓ ସାମାଜିକ ଭେଦଭାବ ବି ରହିବା ଦେଖାଯାଏ। ଏହିପରି ନାନା କାରଣରୁ ମାନବ ସମାଜ ବିଭାଜିତ ହୋଇ ରହିବା ଓ କୌଣସି କାରଣରୁ ପାର୍ଥକ୍ୟ ଥିବା ଦୁଇ ଗୋଷ୍ଠୀ ଭିତରେ ବିବାଦ, ସଂଘର୍ଷ ଓ ଅବିଶ୍ୱାସ ରହିବା ସାଧାରଣ ଘଟଣା। ଏହି ସ୍ଥିତିରେ ସମଗ୍ର ମଣିଷ ସମାଜ ଭିତରେ ଏକ ଭ୍ରାତୃତ୍ୱର ବନ୍ଧନ ସୃଷ୍ଟି କରିବା ଜଟିଳ ମନେହୁଏ। ଏହି ବାସ୍ତବତାକୁ ସ୍ୱୀକାର କଲେ ମଧ୍ୟ ଶୁଦ୍ଧ ମାନବିକତା ଓ ଏକ ସମ୍ବେଦନଶୀଳ ଜୀବନବୋଧର ମନୋଭାବ ଦ୍ୱାରା ମାନବ ସମୁଦାୟ ଭିତରେ ଯେ ଐକ୍ୟ ଓ ଭ୍ରାତୃତ୍ୱବୋଧ ସୃଷ୍ଟି କରାଯାଇପାରିବ, ଏହାକୁ ମାନବବାଦୀମାନେ ଗ୍ରହଣ କରିବା ଦେଖାଯାଏ।

(ପ୍ରଗତିବାଦୀ, ୧୩.୦୯.୨୦୧୭)

# ଶାନ୍ତିର ସ୍ୱର

୧୯୮୨ ପରଠାରୁ ପ୍ରତିବର୍ଷ ସେପ୍ଟେମ୍ବର ୨୧ ତାରିଖକୁ ବିଶ୍ୱ ଶାନ୍ତିଦିବସ ଭାବରେ ସମଗ୍ର ପୃଥିବୀରେ ପାଳନ କରାଯାଉଛି। ଏହାର ତାତ୍ପର୍ଯ୍ୟ ହେଉଛି, ଏକ ହିଂସାମୁକ୍ତ, ଯୁଦ୍ଧମୁକ୍ତ ଓ ଉତ୍ତେଜନାରହିତ ବିଶ୍ୱ। ଆମେ ପୃଥିବୀର ସାଧାରଣ ଜନତା ଏହା କାମନା କରୁଛୁ। ଜାତିସଂଘଦ୍ୱାରା ସ୍ୱୀକୃତ ପୃଥିବୀର ବିଭିନ୍ନ ଦେଶ ଏଥିପାଇଁ ସମ୍ମତି ଦେଇଛନ୍ତି। ଆମେ ତଥା ଆଗାମୀ ବଂଶଧରମାନେ କିପରି ଏକ ଶାନ୍ତିପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ବିଶ୍ୱରେ ଜୀବନ ନିର୍ବାହ କରିପାରିବା, ସେଥିପାଇଁ ବିଭିନ୍ନ ଦେଶର ଶାନ୍ତିକାମୀ ମାନବବନ୍ଦରଦୀ ବ୍ୟକ୍ତିମାନେ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଆସୁଛନ୍ତି। ଅତୀତରେ କେତେ ଯୁଦ୍ଧ, ହିଂସା, ଗଣହତ୍ୟାର ନାନା ବିଭତ୍ସ କାହାଣୀମାନ ମାନବ ସଭ୍ୟତାର ଇତିହାସରେ ଦେଖିବାକୁ ମିଳେ। ଅତୀତର ସେହି ତ୍ରୁଟି ଓ ଅମାନବିକ ଘଟଣା ଭବିଷ୍ୟତରେ ଆମେ ଘଟିବାକୁ ଦେବା ନାହିଁ। ଆମେ ଏହି ପୃଥିବୀର ଜନଗଣ ଶାନ୍ତିରେ ବଞ୍ଚିବା ପାଇଁ ପରସ୍ପର ପ୍ରତି ସହାନୁଭୂତିର ହାତ ବଢାଇବା। ସଂସାରରେ ଯାହା ସବୁ ସମସ୍ୟା ରହିଛି, ଆମେ ଆମର ବିଚାରବୁଦ୍ଧି ପ୍ରୟୋଗ କରି ତାହାର ଶାନ୍ତିପୂର୍ଣ୍ଣ ସମାଧାନ କରିବା। ଯାହା ଶାନ୍ତିପୂର୍ଣ୍ଣ ଉପାୟରେ ସମାଧାନ ହୋଇପାରିବ ନାହିଁ, ତାହା ହିଂସା ଦ୍ୱାରା ବି ହୋଇପାରିବ ନାହିଁ। ହିଂସା, ପ୍ରତିହିଂସା ହେଉଛି ବର୍ବରତା। ଆମେ କିନ୍ତୁ ବିବେକବାନ୍ ଓ ବିଚାରଶୀଳ ମଣିଷ ଭାବେ ଆମର ସକଳ ସମସ୍ୟାକୁ ଶାନ୍ତିପୂର୍ଣ୍ଣ ସମାଧାନ କରିବା। ଏହି ଦୃଷ୍ଟିଭଙ୍ଗୀକୁ ବ୍ୟାପକ ଓ ସାର୍ବଜନୀନ କରିବା ପାଇଁ ବିଶ୍ୱ ଶାନ୍ତିଦିବସ ପାଳିତ ହୋଇଆସୁଛି।

ବିଶ୍ୱ ଶାନ୍ତିଦିବସ ପରିପ୍ରେକ୍ଷୀରେ ଜାତିସଂଘର ମହାସଚିବ ସମଗ୍ର ମାନବସମାଜ ପାଇଁ କିଛି ବାର୍ତ୍ତା ଦେଇଥାନ୍ତି। ଚଳିତ ବର୍ଷ ଅର୍ଥାତ୍ ୨୦୧୭ ପାଇଁ ବାର୍ତ୍ତା ଥିଲା - ଆମେ ସମସ୍ତେ ଶାନ୍ତି ପାଇଁ ପ୍ରୟାସ କରିବା, ଏଥିପାଇଁ ଆମେ ପରସ୍ପରକୁ ସମ୍ମାନ କରିବା, ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନକୁ ଧ୍ୟାନ ଦେବା ଓ ନିରାପଦ ରହିବା। ଜାତିସଂଘ ପ୍ରତିଷ୍ଠା ହେବା ପରଠାରୁ ଏହା ମଣିଷ ସମାଜର ବିବେକ ଭାବେ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଆସୁଛି। ପୃଥିବୀର ଜନସମୂହ ଭିତରେ ଏକ ଭ୍ରାତୃତ୍ୱପୂର୍ଣ୍ଣ ଓ ସମ୍ବେଦନଶୀଳ

ଜୀବନବୋଧର ଭାବନାକୁ ଦୃଢ଼ କରିବା ପାଇଁ ଏହା ନାନା ଭାବରେ ଉଦ୍ୟମ କରୁଛି। ସମସ୍ତ ମାନବିକ ସମସ୍ୟା ତଥା ଦେଶ ଦେଶ ମଧ୍ୟରେ ରହିଥିବା ବିବାଦର କିପରି ଶାନ୍ତିପୂର୍ଣ୍ଣ ସମାଧାନ ହୋଇପାରିବ ଓ ଯୁଦ୍ଧକୁ ଏଡାଯାଇ ପାରିବ, ଏହି ଲକ୍ଷ୍ୟ ଦିଗରେ ଏହା କାର୍ଯ୍ୟ କରୁଛି। ଏହା ସହିତ ମାନବିକ ଅଧିକାରର ସୁରକ୍ଷା କ୍ଷେତ୍ରରେ ଏହା ମଧ୍ୟ ଆନ୍ତର୍ଜାତିକ ସ୍ତରରେ ପ୍ରୟାସ କରିଆସୁଛି। ଜାତିସଂଘରେ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ଯେଉଁ ଜୀବନବୋଧର ବାର୍ତ୍ତା ପ୍ରତିଫଳିତ ହୋଇଛି, ତାହା ସଭ୍ୟତାର ଏକ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ। ଆମ ସଂସାରରେ ରହିଥିବା ନାନା ଭେଦଭାବ, ଅସହିଷ୍ଣୁତା ଓ ଶୋଷଣକୁ ଆମେ ଦୂର କରି ଏକ ମାନବିକ ବିଶ୍ୱ ଗଠନ କରିପାରିବା। ଯେଉଁ ସବୁ କାରଣ ଯୋଗୁ ସମାଜରେ ରଙ୍ଗଭେଦ, ଜାତିଭେଦ, ଲିଙ୍ଗଭେଦ ଇତ୍ୟାଦି ରହିଛି ତାକୁ ଆମେ ଦୂର କରି ଏକ ସମତାଭିତ୍ତିକ ବିଶ୍ୱ ନିର୍ମାଣ କରିବା ପାଇଁ ପ୍ରଯତ୍ନ କରିବା। ନାନା ସାମାଜିକ, ସାଂସ୍କୃତିକ, ରାଜନୈତିକ, ଅର୍ଥନୈତିକ ବା ସେପରି କିଛି କାରଣରୁ ମଣିଷ ସମାଜରେ କେତେ କେତେ ଭେଦଭାବ ସୃଷ୍ଟି ହୋଇଛି। ପୁନଶ୍ଚ ସାମ୍ରାଜ୍ୟବାଦ, ସାମନ୍ତବାଦ ଜନିତ କାରଣରୁ ମଣିଷ ମଣିଷ ଭିତରେ ପ୍ରାଚୀର ଗଢ଼ି ଉଠିଛି। ଶକ୍ତିଶାଳୀ ଗୋଷ୍ଠୀମାନେ ଅନ୍ୟ ମଣିଷମାନଙ୍କୁ ଦାସତ୍ୱର ବେଡି ପିନ୍ଧାଇଛନ୍ତି। ତେବେ ଯେତେ ଯାହା ଅନ୍ୟାୟ ଅତୀତରେ ଘଟିଯାଇଛି, ତାହାକୁ ଅତୀତର କାହାଣୀ ଭାବରେ ନେଇ ଆମେ ସେଥିରୁ ମୁକ୍ତ ହେବା। ବ୍ୟକ୍ତି ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱଭାବ ଆମ ପାଇଁ ନୂତନ ମାନବିକ ମୂଲ୍ୟବୋଧ ଭାବେ ପ୍ରେରଣାଦାୟକ ହୋଇ ରହିବ। ସବୁ ମଣିଷ ସମାନ ମର୍ଯ୍ୟାଦା ଓ ସମାନ ଅଧିକାର ନେଇ ଜନ୍ମ ହୋଇଛନ୍ତି। ପ୍ରତ୍ୟେକଙ୍କ ଭିତରେ ବିଚାରଶୀଳତା ଓ ବିବେକବୋଧ ରହିଛି। ସୁତରାଂ ଆମେ ପରସ୍ପର ପ୍ରତି ଭ୍ରାତୃତ୍ୱର ଦୃଷ୍ଟିଭଙ୍ଗୀ ନେଇ ଜୀବନ ନିର୍ବାହ କରିବା। ଅତୀତରେ ଯେଉଁ ସବୁ କାରଣ ଯୋଗୁ ମଣିଷ ମଣିଷ ଭିତରେ ଯାହା ସବୁ ଭେଦଭାବ ସୃଷ୍ଟି ହୋଇଛି ସେସବୁକୁ ଦୂର କରିବାକୁ ସଂକଳ୍ପ କରି ଆମେ କାର୍ଯ୍ୟ କରିବା। ସେହିପରି ପୃଥିବୀର କେତେକ ଭାଗରେ ଦାରିଦ୍ର୍ୟ, ଅପପୁଷ୍ଟି, ନିରକ୍ଷରତା, ଶିଶୁମୃତ୍ୟୁ ଇତ୍ୟାଦି ସମସ୍ୟାମାନ ରହିଛି, ତାକୁ ଦୂର କରିବାକୁ ଆମେ ପ୍ରୟାସ କରିପାରିବା।

ବିଶ୍ୱର ଜନଗଣଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଏହି ପ୍ରକାରର ଏକ ପ୍ରୟାସ ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ। ଶାନ୍ତିର ଏକ ବ୍ୟାପକ ପରିଭାଷା ଏହା ମଧ୍ୟ ଦେଇ ବ୍ୟକ୍ତ ହେବା ମଧ୍ୟ ସ୍ୱାଗତଯୋଗ୍ୟ। ଶାନ୍ତି ସହ ସମତା ଓ ନ୍ୟାୟର ଭାବନା ମଧ୍ୟ ସଂଶ୍ଳିଷ୍ଟ। ଏହାଛଡ଼ା ଆମ ସଂସାରରେ ବିବିଧତା ରହିବା

ଏକ ପ୍ରାକୃତିକ ଘଟଣା। ବହୁ ଧର୍ମ, ସଂସ୍କୃତି, ଭାଷା, ଜୀବନବୋଧ, ଜାତୀୟତା ଇତ୍ୟାଦି ଆମ ସଂସାରର ବିଭବ, ଏହାକୁ ଅସ୍ୱୀକାର କରିହେବ ନାହିଁ। ଏହି ବିବିଧତାକୁ ଗ୍ରହଣ କରି ଆମେ ପରସ୍ପର ପ୍ରତି ଭ୍ରାତୃତ୍ୱର ମନୋଭାବ ପୋଷଣ କଲେ ଶାନ୍ତିର ପରିବେଶ ଆସିପାରିବ। ଅତୀତରେ ନାନା ପ୍ରକାରର ଉଗ୍ର ମାନସିକତା ସମାଜରେ ବହୁ ବିଦ୍ୱେଷର କାରଣ ହୋଇଛି। ଗୋଟିଏ ସମୟରେ ଧର୍ମ, ଜାତୀୟତାବୋଧ ଓ ବର୍ଣ୍ଣବାଦ ନାନା ଅସହିଷ୍ଣୁତାର ମନୋଭାବ ସୃଷ୍ଟି କରିଥିଲା। ଏସବୁକୁ ଆଧାର କରି ଧର୍ମୋନ୍ମାଦବାଦ ବା ଫାନାଟିସିଜିମ୍, ମୌଳବାଦ ବା ଫଣ୍ଡାମେଣ୍ଟାଲିଜିମ୍, ସ୍ୱେଚ୍ଛାଚାରିତାବାଦ ବା ଫାସିଜିମ୍ ଓ ସାମନ୍ତବାଦ ବା ଫିଉଡାଲିଜିମ୍ ପରି ମାନବିକତା ପରିପନ୍ଥୀ ଭାବନାମାନ ସୃଷ୍ଟି ହୋଇଛି। ଏସବୁରୁ ଆମକୁ ମୁକ୍ତ ହେବାକୁ ହେବ। ସମଗ୍ର ମାନବ ସମାଜରେ ଯେତେସବୁ ବିବିଧତା ରହିଛି ତାହାକୁ ସ୍ୱୀକାର କରି ଏକ ସଂପ୍ରୀତିର ବନ୍ଧନକୁ ଆମେ ଦୃଢ଼ କରିପାରିବା।

ଏହି ପରିପ୍ରେକ୍ଷୀରେ ମାନବିକ ଅଧିକାର ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନକୁ ଶିକ୍ଷାରେ ଅନ୍ତର୍ଭୁକ୍ତ କରିବାକୁ ବିଶ୍ୱ ସ୍ତରରେ ମଧ୍ୟ ଆବେଦନ ରହିଛି। ଆଗାମୀ ବଂଶଧରମାନଙ୍କୁ ଆମେ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱର ଆବଶ୍ୟକତା ନେଇ ଶିକ୍ଷା ଦେଇପାରିବା। ଘୃଣା, ବିଦ୍ୱେଷ, ଭେଦଭାବ ଓ ଅସହିଷ୍ଣୁତା ସଭ୍ୟ ଜୀବନବୋଧର ପରିପନ୍ଥୀ। ଏହା ଯଦି ଏକ ଜନସମୂହ ବିରୁଦ୍ଧରେ ପ୍ରଚାର ହୁଏ, ତାହାର ପରିଣତି ଉଭୟ ଗୋଷ୍ଠୀ ପାଇଁ କ୍ଷତିକାରକ ହେବ। ସ୍ଥଳବିଶେଷରେ ରାଜନୈତିକ ଉଦ୍ଦେଶ୍ୟ ରଖି ଗୋଷ୍ଠୀ ଗୋଷ୍ଠୀ ଭିତରେ ବିଦ୍ୱେଷ ଓ ଘୃଣାର ଭାବନା ବିଚାର କରାଯାଏ। ତେବେ ତାହାର ପରିଣତି କିପରି ଭୟାନକ ହୁଏ ତାହାର ବହୁ ଦୃଷ୍ଟାନ୍ତ ଇତିହାସରେ ଦେଖିବାକୁ ମିଳେ। ଇତିହାସର ଅନୁଭୂତିରୁ ଏହି ଶିକ୍ଷା ମିଳେ ଯେ, ହିଂସା ଓ ଅସହିଷ୍ଣୁତା ସକଳ ମାନବିକ ଆଦର୍ଶର ପ୍ରତିକୂଳ। ଏହା ବର୍ବରତାର ପ୍ରତୀକ। ପରନ୍ତୁ ଅହିଂସା, ଭ୍ରାତୃତ୍ୱଭାବ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ସଂସ୍କୃତିସଂପନ୍ନ ଜୀବନବୋଧର ପ୍ରତୀକ।

ପୁନଶ୍ଚ ଆଜି ମାନବ ସମାଜ ଯେଉଁ ସନ୍ଧିକ୍ଷଣରେ ରହିଛି, ସେହି ସ୍ଥିତିରେ ଆନ୍ତର୍ଜାତିକ ସହଯୋଗ ବ୍ୟତୀତ ସଭ୍ୟତା ଧ୍ୱଂସ ପାଇଯିବା ଅସମ୍ଭବ ନୁହେଁ। ସଂପ୍ରତି ପାରିବେଶିକ ପ୍ରଦୂଷଣ ଓ ଜଳବାୟୁରେ ପରିବର୍ତ୍ତନ ଏକ ଗୁରୁତର ସଙ୍କଟ ଭାବେ ସଭ୍ୟତା ପ୍ରତି ଆହ୍ୱାନ ସୃଷ୍ଟି କରିଛି। ଏହି ସଙ୍କଟକୁ କୌଣସି ଗୋଟିଏ ବା କେତୋଟି ଦେଶ ଏଡାଇ ପାରିବେ ନାହିଁ। ଏଥିପାଇଁ ଆନ୍ତର୍ଜାତିକ ସ୍ତରରେ ପଦକ୍ଷେପ ନେବାର ରହିଛି। ଆଣବିକ ଯୁଦ୍ଧର ଭୟାବହତା, କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ନିୟନ୍ତ୍ରଣ ଓ ପରିବେଶର ସୁରକ୍ଷା

ସମସ୍ୟାମାନଙ୍କୁ ସମ୍ମୁଖୀନ ହେବାକୁ ଆନ୍ତର୍ଜାତିକ ସହମତିର ଆବଶ୍ୟକତା ରହିଛି। ଏକ ଆନ୍ତର୍ଜାତିକ ସହଯୋଗ ବ୍ୟତୀତ ଏହି ବିଶ୍ୱ ସମସ୍ୟାମାନଙ୍କର ନିରାକରଣ ସମ୍ଭବ ନୁହେଁ। ବସ୍ତୁତଃ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଏଥିପାଇଁ ଅବଶ୍ୟମ୍ଭାବୀ ମନେହୁଏ। ପୃଥିବୀ ହେଉଛି ଆମ ସୌରମଣ୍ଡଳର ଏକମାତ୍ର ଗ୍ରହ ଯେଉଁଠି ପ୍ରାଣୀଜଗତ ରହିଛି ଓ ମାନବ ସଭ୍ୟତାର ଅଭ୍ୟୁଦୟ ହୋଇଛି। ପୃଥିବୀ ବାହାରେ ଯଦି ଅନ୍ୟ କୌଣସି ସୌରମଣ୍ଡଳରେ ସଭ୍ୟତା ଥାଏ, ତାହା ଆମ ଜ୍ଞାନର ବହିର୍ଭୂତ ଓ ଆମ ପାଇଁ ଅପହଞ୍ଚ। ସୁତରାଂ ମାନବ ସଭ୍ୟତାକୁ ଓ ଭବିଷ୍ୟତର ବଂଶଧରମାନଙ୍କୁ ପୃଥିବୀରେ ବଞ୍ଚିବାର ଅଧିକାର ଦେବା ଆମର ଏକ ନୈତିକ କର୍ତ୍ତବ୍ୟ। ଏଥିପାଇଁ ଶାନ୍ତିପୂର୍ଣ୍ଣ ବିଶ୍ୱର ଆବଶ୍ୟକତା ଅପରିହାର୍ଯ୍ୟ ମନେହୁଏ। ପୁନଶ୍ଚ ବର୍ତ୍ତମାନ ଜ୍ଞାନବିଜ୍ଞାନ ଓ ପ୍ରଯୁକ୍ତିର ଯେଉଁ ବିକାଶ ହୋଇଛି ତାହାକୁ ଯଦି ଯୁଦ୍ଧ ବା ଧ୍ୱଂସ ଦିଗରେ ବିନିଯୋଗ କରାଯାଏ, ତେବେ ସଭ୍ୟତା ଆତ୍ମହତ୍ୟା କରିବ। ଯଦି ପୃଥିବୀରେ ଆଣବିକ ଯୁଦ୍ଧ କୌଣସି କାରଣରୁ ହୁଏ ତେବେ ସଭ୍ୟତା ଲୋପ ପାଇବ। ବସ୍ତୁତଃ ଏହି ସବୁ ପରିସ୍ଥିତି ପରିପ୍ରେକ୍ଷୀରେ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ଆଜି ପାଇଁ ଏକ ବଡ଼ ଆବଶ୍ୟକତା କହିଲେ ଅତ୍ୟୁକ୍ତି ହେବ ନାହିଁ। ସୁଖର କଥା, ସମଗ୍ର ପୃଥିବୀରେ ଏକ ଆନ୍ତର୍ଜାତିକ ଚେତନାର ବିକାଶ ହେଉଛି ଓ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ଗଠନ ପାଇଁ ମହତ୍ତ୍ୱାକାଂକ୍ଷା ପ୍ରକାଶ ପାଉଛି।

(ପ୍ରଗତିବାଦୀ, ୧୧.୧୦.୨୦୧୭)

# ନୈତିକତା ଓ ସାମାଜିକ ବିବର୍ତ୍ତନ

ପ୍ରତ୍ୟେକ ସମାଜରେ ବା ମାନବ ସମୁଦାୟରେ ବିଭିନ୍ନ ନୀତି, ଆଦର୍ଶ ଓ ମୂଲ୍ୟବୋଧର କ୍ରମବିକାଶ ହୋଇଛି । ସାମାଜିକ ସମ୍ବନ୍ଧ ପୃଷ୍ଠଭୂମିରେ ନୀତି ଓ ଆଦର୍ଶର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି । ପ୍ରାଚୀନ ସମାଜରେ ଯେଉଁ ନୀତି, ଆଦର୍ଶ ସୃଷ୍ଟି ହୋଇଥିଲା ତାହା ସେ ଯୁଗ ବା ସମୟ ପାଇଁ ହୁଏତ ଉପଯୋଗୀ ଥିଲା, କିନ୍ତୁ ସଭ୍ୟତାର କ୍ରମବିକାଶ ସହ ସେଥିରେ ଧୀରେ ଧୀରେ ପରିବର୍ତ୍ତନମାନ ଆସିଲା । ସମାଜରେ ଯେତେବେଳେ ସାମନ୍ତବାଦର ପ୍ରାଧାନ୍ୟ ରହିଥିଲା, ସେତେବେଳେ ସମାଜର ସାଧାରଣ ମଣିଷର ମୂଲ୍ୟ ବିଶେଷ ଗୁରୁତ୍ୱ ବହନ କରୁନଥିଲା । ଅତୀତରେ କେତେକ ସମାଜରେ ଦାସତ୍ୱ ପ୍ରଥା ରହିଥିଲା । ପ୍ରାଚୀନ ଗ୍ରୀସ୍‌ରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ସିଟି ଷ୍ଟେଟସ୍‌ମାନଙ୍କରେ ରହିଥିଲେ ବି ସେଠାରେ ଦାସମାନଙ୍କର କୌଣସି ମାନବିକ ଅଧିକାର ନଥିଲା । ସାମ୍ରାଜ୍ୟବାଦ ବିସ୍ତାର ଯୁଗରେ ଦାସତ୍ୱ ପ୍ରଥା ଉତ୍କଟ ହୋଇ ରହିଥିଲା । ଅଗଣିତ ମଣିଷଙ୍କୁ ପଶୁ ପରି ବ୍ୟବହାର ପ୍ରଦର୍ଶନ କରାଯାଉଥିଲା; ଗାଈ, ଛେଳି, ମଇଁଷିମାନଙ୍କୁ ବିକ୍ରି କରିବା ପରି ଦାସମାନେ ବିକ୍ରି ହେଉଥିଲେ । ଭାରତୀୟ ସମାଜରେ ଜାତିଗତ ଭେଦଭାବ ଉତ୍କଟ ହୋଇ ରହିଥିଲା ଓ ତଥାକଥିତ ଶୂଦ୍ର ଓ ଦଳିତମାନେ ନାନା ଭାବରେ ଶୋଷିତ ହେଉଥିଲେ । ଶିକ୍ଷା, ସମ୍ପତ୍ତି ଓ ଅସ୍ତ୍ରଧାରଣରୁ ସେମାନେ ବଞ୍ଚିତ ହୋଇଥିଲେ ଓ ତଥାକଥିତ ଉଚ୍ଚଜାତି ଲୋକଙ୍କର ସେବା କରିବା ସେମାନଙ୍କ ଜୀବନର ଏକମାତ୍ର ଆଦର୍ଶ ଥିଲା । ସବୁ ସଭ୍ୟତାରେ ଅତୀତରେ ମହିଳାମାନେ ନିର୍ଯ୍ୟାତିତ ଓ ଶୋଷିତ ହୋଇ ରହିଥିଲେ । ସେମାନଙ୍କର କୌଣସି ରାଜନୈତିକ ଅଧିକାର ନଥିଲା ଓ ପୃଥିବୀରେ ବହୁ ଭାଗରେ ପୁରୁଷ-କୈନ୍ଦ୍ରିକ ସମାଜ ବ୍ୟବସ୍ଥା ପ୍ରଚଳିତ ଥିଲା । ଏପରିକି ଆମ ଦେଶର କେତେକ ଗୋଷ୍ଠୀରେ ସତୀଦାହ ପ୍ରଥା ପରି ଅତି ଜଘନ୍ୟ ବ୍ୟବସ୍ଥାମାନ ମଧ୍ୟ ରହିଥିଲା । ଏହିପରି ଦେଖିବାକୁ ଗଲେ ବହୁ ଅନୀତି ଓ ଅମାନବିକ ପରମ୍ପରା ବିଭିନ୍ନ ସମାଜରେ ଦୃଢ଼ ହୋଇ ରହିଥିଲା । ରାଜତନ୍ତ୍ର ଯୁଗରେ ରାଜାମାନେ ସର୍ବେସର୍ବା ରହିଥିଲେ ଓ ସେମାନେ ନିଜର ରାଜ୍ୟ ବିସ୍ତାର ପାଇଁ ବହୁ ସମୟରେ ଯୁଦ୍ଧମାନଙ୍କରେ ବ୍ୟାପୃତ ରହୁଥିଲେ । ରାଜା ଯେ ଈଶ୍ୱରଙ୍କର ପ୍ରତିନିଧି ଓ ତାଙ୍କର ସକଳ ନିର୍ଦ୍ଦେଶ ରାଜ୍ୟର ଜନଗଣଙ୍କର ଶିରୋଧାର୍ଯ୍ୟ, ଏହା ହିଁ ସାଧାରଣ ଜନବିଶ୍ୱାସ ଥିଲା ।

କୌଣସି ସାମାଜିକ ଭେଦଭାବ, ଅନ୍ୟାୟ ବା ଶୋଷଣକୁ ସ୍ଥାୟୀ ଭିତ୍ତି ଦେବାକୁ ସେସବୁକୁ ଧର୍ମୀୟ ବା ଈଶ୍ୱରୀୟ ବିଧାନ ବୋଲି ଭାବନା ସୃଷ୍ଟି କରାଯାଇଥିଲା। କଳା ଗୋରା ଭେଦଭାବ ଆଧାରରେ, କଳା ଲୋକମାନଙ୍କୁ ଦାସତ୍ୱର ନିୟନ୍ତ୍ରଣ ଭିତରେ ରଖିବାକୁ ବିଶ୍ୱାସ ସୃଷ୍ଟି ହୋଇଥିଲା ଯେ ଈଶ୍ୱର ଗୋରା ଲୋକମାନଙ୍କର ସେବା କରିବା ପାଇଁ କଳା ଲୋକମାନଙ୍କୁ ସୃଷ୍ଟି କରିଛନ୍ତି। ସେହିପରି ମହିଳାମାନଙ୍କୁ ନ୍ୟୂନ କରି ରଖିବା ପାଇଁ ବିଭିନ୍ନ ଧର୍ମଗ୍ରନ୍ଥ, ପୌରାଣିକ ଉପାଖ୍ୟାନ ଓ ମିଥ୍‌ମାନ ସୃଷ୍ଟି କରାଯାଇଥିଲା। ଜାତିଗତ ଭେଦଭାବକୁ ଏକ ଦୈବୀବିଧାନ ବୋଲି ବିଚାର ବ୍ୟକ୍ତ ହୋଇଥିଲା। ସବୁ ମଣିଷଙ୍କର ସାମାଜିକ ସ୍ତର ଯେ କେବେ ସମାନ ହୋଇପାରିବ ନାହିଁ, ଏଥିପାଇଁ କେତେ କେତେ ଯୁକ୍ତିର ଅବତାରଣା ହେବା ଇତିହାସରେ ଦେଖିବାକୁ ମିଳେ। ସାମନ୍ତବାଦ, ଜାତିବାଦ, ସାମ୍ରାଜ୍ୟବାଦ, ରାଜତନ୍ତ୍ର, ରଙ୍ଗଭେଦ, ଲିଙ୍ଗଭେଦ ପରି ନାନା ବୈଷମ୍ୟ, ଭେଦଭାବ ମାନବ ସଭ୍ୟତାର ଇତିହାସରେ ସାଧାରଣ ଘଟଣା ଭାବେ ଦୀର୍ଘ ସମୟ ଧରି ରହିଆସିଥିଲା।

ପୁନଶ୍ଚ ଅତୀତରେ ସକଳ ଦୁଃଖ, ଦୁର୍ଦ୍ଦିନ ଓ ଦୁର୍ଭାଗ୍ୟରୁ ରକ୍ଷା ପାଇବା ପାଇଁ ମଣିଷ ଅସହାୟ ହୋଇ ଦେବତାର ଶରଣ ପଶୁଥିଲା। ସମାଜରେ ଏହି ବିଶ୍ୱାସ ବଳବତ୍ତର ଥିଲା ଯେ, ସବୁ କିଛି ଈଶ୍ୱରୀୟ ନିୟନ୍ତ୍ରଣ ଭିତରେ ସଂଘଟିତ ହେଉଛି। ସଂସାରରେ ଯାହା କିଛି ରହିଛି ବା ଯାହା କିଛି ଘଟୁଛି ସେସବୁ କାହାର ନିର୍ଦ୍ଦେଶରେ ପରିଚାଳିତ ହେଉଛି। ଦିନ ରାତି ଠାରୁ ଆରମ୍ଭ କରି ରୋଗବାଧକ, ଜନ୍ମମୃତ୍ୟୁ ସବୁକିଛି ଦେବତା ବା ଈଶ୍ୱରଙ୍କର ଇଚ୍ଛାରେ ଘଟୁଛି। ସେ ଚାହିଁଲେ ସୃଷ୍ଟି ସୁଖପ୍ରଦ ହେବ, ସେ ନ ଚାହିଁଲେ ଦୁଃଖ ଦୁର୍ଦ୍ଦଶାର ପରିବେଶ ଆସିବ। ତେଣୁ ସେହି କର୍ତ୍ତା, ହର୍ତ୍ତା ବା ବିଧାତାଙ୍କୁ ସର୍ବଦା ପୂଜା ଆରାଧନା ଦ୍ୱାରା ସନ୍ତୁଷ୍ଟ କରି ରଖିବାକୁ ହେବ। ଯେଉଁ ଯୁଗରେ ମହାମାରୀମାନଙ୍କ ଯୋଗୁ ଗଣମୃତ୍ୟୁ ଘଟୁଥିଲା, ସେସବୁର ନିରାକରଣ ଜନିତ ଜ୍ଞାନ ଅଭାବରୁ ଲୋକମାନେ କେତେ କେତେ ଧାର୍ମିକ କର୍ମକାଣ୍ଡ କରୁଥିଲେ। ପ୍ରାକୃତିକ ବିପର୍ଯ୍ୟରୁ ବା ରୋଗବାଧକରୁ ରକ୍ଷା ପାଇବା ପାଇଁ କାଳ୍ପନିକ ଦେବତାଙ୍କ ପାଖରେ ଶରଣ ପଶୁଥିଲେ ବା କେତେ କେତେ ମାନସିକ କରୁଥିଲେ। ପ୍ରାକୃତିକ ଶକ୍ତିମାନଙ୍କୁ ଦେବତାର ରୂପ ଦେଇ ପୂଜା ପ୍ରାର୍ଥନା କରିବା ଗୋଟିଏ ଯୁଗର ମୂଲ୍ୟବୋଧ ଥିଲା। କେତେକ ସଭ୍ୟତାରେ ବିଶ୍ୱାସ ଥିଲା ଯେ, ସୂର୍ଯ୍ୟ ଏକ ଦେବତା। ସନ୍ଧ୍ୟା ସମୟରେ ସମସ୍ତେ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ଦୀପ ଜାଳି ପ୍ରାର୍ଥନା କରୁଥିଲେ। ଏହି ପ୍ରାର୍ଥନା କରି ପରଦିନ ପୁନଶ୍ଚ ସକାଳେ ଉଦୟ ହେବାକୁ ସୂର୍ଯ୍ୟଙ୍କୁ ନିବେଦନ କରାଯାଉଥିଲା। ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ଏହି ଭକ୍ତି-ଅର୍ଘ୍ୟ ପ୍ରଦାନ ନକଲେ ସୂର୍ଯ୍ୟ ଯେ ଉଦୟ ହେବେ ନାହିଁ, ଏହା ହିଁ ଲୋକବିଶ୍ୱାସ ଥିଲା।

ଆନୁଷ୍ଠାନିକ ଧର୍ମମାନଙ୍କର ଅଭ୍ୟୁଦୟ ପୂର୍ବରୁ ପ୍ରତ୍ୟେକ ସମାଜରେ ନାନା ପ୍ରକାର କର୍ମକାଣ୍ଡ, ଅତୀନ୍ଦ୍ରିୟ ବିଶ୍ୱାସ, ଧାର୍ମିକ ଉପଚାର ଓ ବହୁଈଶ୍ୱରବାଦର ଭାବନା ରହିଥିଲା। ପ୍ରାଗ୍‌ଧର୍ମୀୟ ସମାଜରେ ନାନା ଦେବାଦେବୀ ଓ ବହୁଈଶ୍ୱରବାଦର ଭାବନା ବିଭିନ୍ନ ଗୋଷ୍ଠୀରେ ପ୍ରଚଳିତ ଥିଲା। ପୁନଶ୍ଚ ପ୍ରତ୍ୟେକ ନୃବଂଶୀୟ ଜନଗୋଷ୍ଠୀ ବିଶ୍ୱାସ କରୁଥିଲେ ଯେ, ସେମାନେ ଏକ ନିର୍ଦ୍ଦିଷ୍ଟ ଦେବତାଙ୍କ ପାଖରୁ ସୃଷ୍ଟି ହୋଇଛନ୍ତି। ତାଙ୍କ ଗୋଷ୍ଠୀ ବା ବଂଶ ଯେଉଁ ଦେବତାଙ୍କ ପାଖରୁ ସୃଷ୍ଟି ହୋଇଛନ୍ତି, ସେ ହିଁ କେବଳ ସେହି ଗୋଷ୍ଠୀର ଲୋକଙ୍କର ପ୍ରାର୍ଥନା ଶୁଣିବେ। ଏହି ପ୍ରକ୍ରିୟାରେ ଯେତେ ଜନଗୋଷ୍ଠୀ ରହିଥିଲେ ସେତେ ଦେବତାଙ୍କର କଳ୍ପନା କରାଯାଇଥିଲା। ଏହା ସହିତ ଜନଗୋଷ୍ଠୀରେ କେତେକ ନୀତିବୋଧ ଓ ବିଧିବିଧାନମାନ ସୃଷ୍ଟି ହୋଇଥିଲା। ପ୍ରତ୍ୟେକ ଜନଗୋଷ୍ଠୀରେ କିଛି ବୁଦ୍ଧିମାନ୍ ଓ ଚିନ୍ତାଶୀଳ ଲୋକ ଉତ୍ତମ ଜୀବନ ଓ ସୁନ୍ଦର ସମାଜର କେତେକ ପରିକଳ୍ପନା କରିଥିଲେ। ଏପରିକି କେତେକ ଜନଗୋଷ୍ଠୀରେ ଦୁଃସାହାସିକ କାର୍ଯ୍ୟକୁ ସବୁଠାରୁ ଅଧିକ ମୂଲ୍ୟ ଦିଆଯାଉଥିଲା। ନିଜ ଗୋଷ୍ଠୀ ବାହାରେ ଅନ୍ୟ ଗୋଷ୍ଠୀର ଲୋକମାନଙ୍କୁ ଯୁଦ୍ଧରେ ହରାଇବା, ହତ୍ୟା କରିବା ବା ସେମାନଙ୍କୁ ଲୁଣ୍ଠନ କରିବା ଏକ ବୀରର କାର୍ଯ୍ୟ ବୋଲି ଗୃହୀତ ହେଉଥିଲା। ଶୌର୍ଯ୍ୟବାନ୍ ଲୋକମାନେ ନିଜ ଗୋଷ୍ଠୀ ଭିତରେ ସବୁଠାରୁ ଅଧିକ ସମ୍ମାନିତ ବ୍ୟକ୍ତି ଥିଲେ। ଏପରିକି ପ୍ରାଚୀନ ଯୁଗରେ ରାଜାମାନେ ନିଜର କନ୍ୟାମାନଙ୍କୁ ବିବାହ ଦେବା ପାଇଁ ସ୍ୱୟଂବରମାନ ଆୟୋଜନ କରି ସବୁଠାରୁ ଶକ୍ତିଶାଳୀ ବ୍ୟକ୍ତିଙ୍କୁ ଜାମାତା ଭାବେ ମନୋନୀତ କରୁଥିଲେ। ବଳଶାଳୀ ଲୋକମାନେ ଗୋଟିଏ ସମୟରେ ଅଧିକ ସମ୍ମାନର ଅଧିକାରୀ ଥିଲେ।

ବହୁଦେବବାଦ ବା ବହୁଈଶ୍ୱର ଭାବନାରୁ ଏକେଶ୍ୱରବାଦର ପରିକଳ୍ପନା ଥିଲା ଏକ ବୌଦ୍ଧିକ ଉତ୍ତରଣ। ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀ ପରଠାରୁ ବିଭିନ୍ନ ସଭ୍ୟତାରେ କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ଓ ସେମାନଙ୍କର ବିଚାର ମଧ୍ୟ ଦେଇ ଏକେଶ୍ୱରବାଦର ଭାବନାର ବିକାଶ ହୋଇଥିଲା। କେତେକ ଆନୁଷ୍ଠାନିକ ଧର୍ମଧାରାରେ ଓ କେତେକ ଦାର୍ଶନିକ ବିଚାରରେ ଏକେଶ୍ୱରବାଦର ଭାବନା ସ୍ପଷ୍ଟ ରୂପରେଖ ନେଲା। ଈଶ୍ୱରବାଦୀ ଧର୍ମମାନ ଈଶ୍ୱରଙ୍କୁ ବ୍ୟକ୍ତିସତ୍ତା ଆଧାରରେ ପରିକଳ୍ପନା କଲେ। ଈଶ୍ୱର ଏକ ବ୍ୟକ୍ତି, ତାଙ୍କର ବ୍ୟକ୍ତିସତ୍ତା ରହିଛି। ତେବେ ସେହି ଈଶ୍ୱର ସର୍ବଜ୍ଞ, ସର୍ବଶକ୍ତିମାନ୍ ଓ କରୁଣାମୟ। ସେ ହେଉଛନ୍ତି ସବୁକିଛିର ସ୍ରଷ୍ଟା। ପୃଥିବୀ, ଗ୍ରହମଣ୍ଡଳ, ପ୍ରକୃତି ଓ ଜୀବଜଗତ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇଛି। ଏସବୁ ଈଶ୍ୱରଙ୍କ ଲୀଳା। ସେ କେବଳ ସ୍ରଷ୍ଟା ନୁହନ୍ତି ସେ ମଧ୍ୟ ପାଳନକର୍ତ୍ତା ଓ ସଂହର୍ତ୍ତା। ସବୁ କିଛି ତାଙ୍କ ନିର୍ଦ୍ଦେଶରେ ସମାହିତ ହୁଏ। ତେବେ କେତେକ ଧର୍ମରେ ଈଶ୍ୱରଙ୍କର

ଅବତାର ଭାବନା ରହିଛି, ଅଧିକାଂଶ ଧର୍ମରେ ଅବତାରବାଦ ନାହିଁ। ଦାର୍ଶନିକ ଅବବୋଧରେ ଈଶ୍ୱରଙ୍କର ଭିନ୍ନ ଭିନ୍ନ ପରିକଳ୍ପନାମାନ ରହିଛି। କେତେକ ଦର୍ଶନରେ ଈଶ୍ୱରଙ୍କୁ ଅବ୍ୟକ୍ତିକ ସତ୍ତା ଭାବେ ପରିକଳ୍ପନା କରାଯାଇଛି ଅର୍ଥାତ୍ ତାଙ୍କର ବ୍ୟକ୍ତିସତ୍ତା ନାହିଁ। ତାଙ୍କର କୌଣସି ରୂପ, ଗୁଣ ନାହିଁ। ସେ ନିରାକାର ଓ ପରମ। ଏପରିକି ଈଶ୍ୱର ମାନବିକ ବୋଧଶକ୍ତିର ଊର୍ଦ୍ଧ୍ୱରେ ବୋଲି କେତେକ ଦାର୍ଶନିକ ମନେକରନ୍ତି। କାହା ମତରେ ଈଶ୍ୱର ବିଶ୍ୱାତୀତ, ଅନ୍ୟ ମତରେ ଈଶ୍ୱର ସର୍ବବିଦ୍ୟମାନ। ଏହିପରି ଈଶ୍ୱର ଭାବନାକୁ ନେଇ ଧର୍ମ ଓ ଦର୍ଶନମାନଙ୍କରେ ନାନାବିଧ ପରିକଳ୍ପନାମାନ ରହିଛି।

ଅଧିକାଂଶ ଧର୍ମରେ ନୈତିକ ଆଦର୍ଶକୁ ଈଶ୍ୱରକୈନ୍ଦ୍ରିକ କରାଯାଇଛି। ସତ୍ୟ, ନ୍ୟାୟ, ଅହିଂସା, ଅପରିଗ୍ରହ ଇତ୍ୟାଦି ମୂଲ୍ୟବୋଧମାନ ଈଶ୍ୱରୀୟ ଅନୁଜ୍ଞା। ଯାହା ନୀତି, ନୈତିକତା ଆଧାରିତ, ତାହା ଈଶ୍ୱରଙ୍କ ଦ୍ୱାରା ଗୃହୀତ। ତେବେ ପରବର୍ତ୍ତୀ ପର୍ଯ୍ୟାୟରେ ଈଶ୍ୱର ଓ ନୈତିକ ଭାବନା ଭିତରେ ସମ୍ବନ୍ଧ ନେଇ ବହୁ ଗମ୍ଭୀର ଚର୍ଚ୍ଚା ଦର୍ଶନ ପରିସରରେ କରାଯାଇଛି। ଏହା ଦର୍ଶନ ପରିସରରେ ଏକ ସ୍ୱୀକୃତ ମତ ଯେ, ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ଏହା ସହ ଈଶ୍ୱର ଭାବନାର କୌଣସି ସମ୍ବନ୍ଧ ନାହିଁ। ଜଣେ ଈଶ୍ୱରବିଶ୍ୱାସୀ ନ ହୋଇ ଏକ ମହାନ୍ ଜୀବନର ଅଧିକାରୀ ହୋଇପାରନ୍ତି ବା ଏକ ନୀତିନିଷ୍ଠ ଜୀବନ ବଞ୍ଚିପାରନ୍ତି, ଅଥଚ ଜଣେ ଈଶ୍ୱରବିଶ୍ୱାସୀ ବ୍ୟକ୍ତି ଅତ୍ୟନ୍ତ ଅମାନବିକ ଓ ହିଂସ୍ର ହୋଇପାରନ୍ତି। ବସ୍ତୁତଃ ଈଶ୍ୱର ଭାବନା ଓ ନୈତିକତା ଦୁଇଟି ପୃଥକ୍ ପ୍ରତ୍ୟୟ ଓ ସେମାନେ ପରସ୍ପର ଠାରୁ ଭିନ୍ନ।

(ପ୍ରଗତିବାଦୀ, ୧୩.୧୨.୨୦୧୭)

# ନୈତିକତା ଓ ନାଗରିକ ସମାଜ

ସାମାଜିକ ଜୀବନ ପ୍ରବାହରେ କେତେକ ଶୃଙ୍ଖଳାକୁ ପ୍ରାଧାନ୍ୟ ଦିଆଯାଏ, ଯାହାକୁ ସାଧାରଣତଃ ନୈତିକତା କୁହାଯାଏ। ନୈତିକତା ଏକ ସାମାଜିକ କର୍ତ୍ତବ୍ୟବୋଧ। ଯେବେଠାରୁ ମଣିଷର ଗୋଷ୍ଠୀଜୀବନ ଆରମ୍ଭ ହେଲାଣି ସେବେଠାରୁ କେତେକ ଶୃଙ୍ଖଳା, ସାମାଜିକ ଦାୟିତ୍ୱ ଓ ମାନବିକ ପ୍ରୟାସର ଭାବନା ସୃଷ୍ଟି ହେଲାଣି। ଏସବୁର ସମ୍ମିଳିତ ଅଭିବ୍ୟକ୍ତି ହିଁ ନୈତିକତା। ମଣିଷର ଗୋଷ୍ଠୀଜୀବନ ଏକ କ୍ଷୁଦ୍ର ଗୋଷ୍ଠୀରୁ ଆରମ୍ଭ ହୋଇ ରାଜ୍ୟ, ଗୋଷ୍ଠୀ ଓ ଏପରିକି ଆନ୍ତଃରାଷ୍ଟ୍ରୀୟ ସ୍ତରକୁ ପ୍ରସାରିତ ହେଲାଣି। ସେହି ପ୍ରକ୍ରିୟାରେ ବ୍ୟକ୍ତିର କର୍ତ୍ତବ୍ୟବୋଧ କ୍ଷୁଦ୍ର ଗୋଷ୍ଠୀରୁ ବୃହତ୍ତର ପରିବେଶ ପ୍ରତି ସଂପ୍ରସାରିତ ହେବାରେ ଲାଗିଛି। ବ୍ୟକ୍ତିର ନୈତିକ ଶୃଙ୍ଖଳା ନାନା ଭାବରେ ବିକଶିତ ହୋଇଥାଏ। ପାରିବାରିକ ସଂସ୍କାର, ଶିକ୍ଷା, ବୃତ୍ତିଗତ ଆଦର୍ଶ, ସାମାଜିକ ଶୃଙ୍ଖଳା ଇତ୍ୟାଦି ଦେଇ ବ୍ୟକ୍ତି ବା ଗୋଷ୍ଠୀର ନୈତିକ ଭାବନାର କ୍ରମବିକାଶ ଘଟିଥାଏ। ଶୃଙ୍ଖଳିତ ନାଗରିକ ଜୀବନ ପାଇଁ ପ୍ରୟାସରୁ ସମାଜରେ ନୈତିକ ଭାବନାର ପ୍ରସାର ହେବା ଏକ ସାଧାରଣ ଉପଲବ୍ଧି। ନୈତିକ ଭାବନା ଭିତରେ ମାନବଧର୍ମୀ ପ୍ରୟାସଗୁଡ଼ିକ ପ୍ରତି ଉତ୍ତରଦାୟିତ୍ୱର ବାର୍ତ୍ତା ରହିଥାଏ। ସାମାଜିକ ଶାନ୍ତି, ସ୍ଥିରତା ଓ ବିକାଶ ଅନେକାଂଶରେ ନୈତିକ କର୍ତ୍ତବ୍ୟ ଓ ପ୍ରତିବଦ୍ଧତା ଉପରେ ନିର୍ଭର କରିଥାଏ। ସାମାଜିକ ଜୀବନଧାରାରେ ସାଧୁତା, କର୍ତ୍ତବ୍ୟବୋଧ, ଶୃଙ୍ଖଳା ଓ ମାନବିକ ସମ୍ବେଦନଶୀଳତା ଯେତେ ଅଧିକ ପ୍ରତିଫଳିତ ହୁଏ, ସମାଜ ସେତିକି ଉନ୍ନତ ହୋଇଥାଏ। ବିପରୀତ କ୍ରମେ ଯେଉଁ ସାମାଜିକ ପରିବେଶରେ ଦୁର୍ନୀତି, ଅସାଧୁତା, ବିଶୃଙ୍ଖଳା ଓ ପାରସ୍ପରିକ ଅବିଶ୍ୱାସର ବାତାବରଣ ଅଧିକ ପ୍ରସାର ଲାଭ କରିଥାଏ, ତାହା ସାମାଜିକ କ୍ଷୟଶୀଳତାର ଚିତ୍ର ଦେଇଥାଏ। ନାଗରିକମାନଙ୍କ ଭିତରେ କର୍ତ୍ତବ୍ୟଜ୍ଞାନ ଓ ସାଧୁତାର ମନୋଭାବ ସୃଷ୍ଟିକରିବା ପାଇଁ ବହୁ ଅତୀତରୁ ପ୍ରୟାସ ହେବା ଜଣାଯାଏ। ତେବେ ସାମାଜିକ ବିବର୍ତ୍ତନ ଧାରାରେ ନୈତିକ ଆଦର୍ଶ ଓ ମାନବବାଦୀ ମୂଲ୍ୟବୋଧର କ୍ରମବିକାଶ ହେବା ଦେଖାଯାଏ। ସାଧୁତା, ଉଚ୍ଚ କର୍ମସଂସ୍କୃତି, ମାନବବାଦୀ ସମ୍ବେଦନ ଓ ଶୃଙ୍ଖଳାବୋଧ ପଶ୍ଚାତ୍‌ରେ ସାମାଜିକ ହିତସାଧନର ବାର୍ତ୍ତା ନିହିତ ଥାଏ।

ଏହା ଏକ ଉପଲବ୍ଧି ଯେ, ବ୍ୟକ୍ତି ଭିତରେ ସାମାଜିକ ପ୍ରବୃତ୍ତି ରହିଛି ଓ ସେହି ସାମାଜିକ ପ୍ରବୃତ୍ତି ମାନବୀୟ ସ୍ଥିତିରୁ ଉଦ୍ଭବ ହୋଇଛି। ପ୍ରାକୃତିକ ପରିବେଶରେ ମଣିଷ ହିଁ

ବୁଦ୍ଧିମାନ ପ୍ରାଣୀ ଭାବେ ବିକଶିତ ବା ବିବର୍ତ୍ତିତ ହୋଇଛି। ମଣିଷ ପାଖରେ ବୁଦ୍ଧି, ବିଚାରଶୀଳତା ଓ ଜ୍ଞାନଲାଭ ପାଇଁ ଜିଜ୍ଞାସା ରହିଛି। ଏହା ସହିତ ବ୍ୟକ୍ତି ଭିତରେ ରହିଛି ସାମାଜିକ ପ୍ରବୃତ୍ତି। ମଣିଷର ସାମାଜିକ ପ୍ରବୃତ୍ତି ଓ ବିଚାରଶୀଳ ସାମର୍ଥ୍ୟ ଯୋଗୁ ଏକ ଆଦିମ ସ୍ଥିତିରୁ କେତେ କେତେ ସ୍ତର ଦେଇ ମଣିଷ ଆଗକୁ ଯାଇଛି। ନିଜର ଅସହାୟତା ଓ ଦୁରାବସ୍ଥାରୁ ନିଷ୍କୃତି ପାଇବା ପାଇଁ ବୃହତ୍ତର ସାମାଜିକ ଅନୁଷ୍ଠାନମାନ କାଳକ୍ରମେ ଉଦ୍ଭବ ହୋଇଛି। ବ୍ୟକ୍ତିର ଗୋଷ୍ଠୀଜୀବନ ପ୍ରସାରିତ ହୋଇଛି ବୃହତ୍ତର ସମାଜ, ରାଷ୍ଟ୍ର ଓ ନାନା ସଙ୍ଗଠନକୁ। ଏହି ଧାରାରେ କେତେ କେତେ ଆଦର୍ଶ, ସାମାଜିକ ବ୍ୟବସ୍ଥା, ନୀତି ନୈତିକତା, ଧାର୍ମିକ ଭାବନା, ଉଚ୍ଚତର ମୂଲ୍ୟବୋଧମାନ ସୃଷ୍ଟି ହୋଇଛି। ଏହା ସହିତ ବ୍ୟକ୍ତି ଭିତରେ ରହିଥିବା ସ୍ୱାର୍ଥପରତା, ଅସାମାଜିକ ମନୋଭାବ, ଅପରାଧ ପ୍ରବଣତା, ହିଂସାତ୍ମକ ଆବେଗ, ପାଶବିକ ପ୍ରବୃତ୍ତିକୁ ପ୍ରତିହତ କରିବାକୁ କେତେ କେତେ ପ୍ରତିକାରାତ୍ମକ ବ୍ୟବସ୍ଥା ମଧ୍ୟ ସୃଷ୍ଟି ହୋଇଛି। ଆଧୁନିକ ଜୀବନ ପ୍ରବାହରେ ବ୍ୟକ୍ତିର ଅପରାଧମୂଳକ କାର୍ଯ୍ୟକଳାପକୁ ପ୍ରତିହତ କରିବାକୁ ବିଭିନ୍ନ ଦଣ୍ଡସଂହିତାର ବ୍ୟବସ୍ଥା ହୋଇଛି। ରାଜତନ୍ତ୍ର ଯୁଗରେ ବହୁ ଅମାନବିକ ଅତ୍ୟାଚାରର କାହାଣୀର ଚିତ୍ର ଦେଖିବାକୁ ମିଳେ।

ଅତୀତରେ ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ଦ୍ୱାରା ସକଳ ନୀତି, ନୈତିକତାର ଆଧାର ଧର୍ମକୈନ୍ଦ୍ରିକ ହୋଇ ରହିଥିଲା। ପ୍ରତ୍ୟେକ ଧର୍ମ ପରମ୍ପରାରେ କେତେକ ଉଚ୍ଚତର ମୂଲ୍ୟବୋଧର ଭାବନା ସୃଷ୍ଟି ହୋଇଥିଲା। ସମାଜରେ ମାନବିକ ମୂଲ୍ୟବୋଧର କ୍ରମବିକାଶ କ୍ଷେତ୍ରରେ ଧର୍ମମାନଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ। ମଣିଷ ଭିତରର ପାଶବିକ ପ୍ରବୃତ୍ତିକୁ ପ୍ରତିହତ କରି ନୀତିପୂର୍ଣ୍ଣ ଜୀବନର ବାର୍ତ୍ତା ଧର୍ମଗ୍ରନ୍ଥମାନଙ୍କରେ ପ୍ରଦାନ କରାଯାଇଥିଲା। ତେବେ ଅଧିକାଂଶ ଧର୍ମରେ ନୀତିପୂର୍ଣ୍ଣ ଜୀବନଯାପନ ପଶ୍ଚାତ୍‌ରେ ଏକ ପାରଲୌକିକ ଦୃଷ୍ଟି ରହିଥିଲା। ନୈତିକ ଜୀବନଦ୍ୱାରା ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ଇତ୍ୟାଦି ସମ୍ଭବ ଓ ଏହା ହିଁ ଜୀବନର ଲକ୍ଷ୍ୟ ବୋଲି ବିଶ୍ୱାସ କରାଯାଉଥିଲା। ଏପରିକି ନୈତିକତାର ଆଧାର ଯେ ଈଶ୍ୱର ଓ ଧର୍ମଗ୍ରନ୍ଥ, ଏହା ହିଁ ସାଧାରଣ ଭାବନା ରହିଥିଲା। ଈଶ୍ୱର-ବିଶ୍ୱାସ ଯେ ନୈତିକ ମୂଲ୍ୟବୋଧର ମୌଳିକ ଉତ୍ସ ଏହି ଭାବନା ସର୍ବବ୍ୟାପକ ଥିଲା। ଏହି ପ୍ରକ୍ରିୟାରେ ଯେଉଁମାନେ ଧାର୍ମିକ ବିଶ୍ୱାସକୁ ଅବିଶ୍ୱାସ କରୁଥିଲେ କିମ୍ବା ଈଶ୍ୱରଙ୍କ ସ୍ଥିତି ନେଇ ସନ୍ଦେହ ପ୍ରକାଶ କରୁଥିଲେ, ସେମାନଙ୍କୁ ନାନା ଅମାନବିକ ନିର୍ଯ୍ୟାତନା ଦିଆଯିବାର କାହାଣୀ ସୁବିଦିତ।

ତେବେ ନୈତିକତାର ଆଧାର ନେଇ ବହୁ ଗମ୍ଭୀର ଚର୍ଚ୍ଚା ଦର୍ଶନ ପରିସରରେ କରାଗଲା। ନୈତିକ ଜୀବନ ପାଇଁ ଈଶ୍ୱର-ବିଶ୍ୱାସ ପ୍ରେରଣାର ଉତ୍ସ କି? ଏହି ପ୍ରସଙ୍ଗ

ଉପରେ ଦର୍ଶନ ପରିସରରେ ହୋଇଥିବା ଗମ୍ଭୀର ଚର୍ଚ୍ଚାରୁ ଏହି ସିଦ୍ଧାନ୍ତ ଆସିଲା ଯେ, ଈଶ୍ୱର ଓ ନୈତିକତା ଦୁଇଟି ପୃଥକ୍ ପ୍ରସଙ୍ଗ। ପ୍ରତ୍ୟେକ ଈଶ୍ୱରବିଶ୍ୱାସୀ ବ୍ୟକ୍ତି ନୀତିପୂର୍ଣ୍ଣ ଜୀବନଯାପନ କରନ୍ତି ନାହିଁ। ସେହିପରି ନୈତିକ ଆଚରଣକୁ ଜୀବନରେ ବହୁ ପ୍ରାଧାନ୍ୟ ଦେଉଥିବା ପ୍ରତ୍ୟେକ ବ୍ୟକ୍ତି ଈଶ୍ୱର ବିଶ୍ୱାସୀ ନୁହଁନ୍ତି। ନୈତିକ ଆଚରଣ ଓ ଈଶ୍ୱର ବିଶ୍ୱାସ ଭିତରେ କେବଳ ଏକ ମନସ୍ତାତ୍ତ୍ୱିକ ସମ୍ପର୍କ ରହିପାରେ। ତେବେ ନୀତିପୂର୍ଣ୍ଣ ଜୀବନ ପାଇଁ ବ୍ୟକ୍ତି ବହୁ କ୍ଷେତ୍ରରୁ ପ୍ରେରଣା ଲାଭକରିପାରେ। ବୌଦ୍ଧ ଓ ଜୈନମାନେ ଈଶ୍ୱର ବିଶ୍ୱାସ ପ୍ରତି କୌଣସି ପ୍ରାଧାନ୍ୟ ଦିଅନ୍ତି ନାହିଁ, ତେବେ ଏହି ଦୁଇ ଧର୍ମରେ ନୈତିକ ମୂଲ୍ୟବୋଧ ପ୍ରତି ବହୁ ପ୍ରାଧାନ୍ୟ ଦିଆଯିବା ଦେଖାଯାଏ। ସତ୍ୟ, ଅହିଂସା, ଅସ୍ତେୟ ଓ ଅପରିଗ୍ରହ ମୂଲ୍ୟବୋଧକୁ ବୌଦ୍ଧଧର୍ମ ଓ ଜୈନଧର୍ମରେ ମୂଳମନ୍ତ୍ର ଭାବେ ଗ୍ରହଣ କରାଯାଏ। କେତେକ ବ୍ୟକ୍ତି ନୈତିକ ଆଚରଣକୁ ସଭ୍ୟ ଜୀବନର ତାତ୍ପର୍ଯ୍ୟ ଭାବରେ ଗ୍ରହଣ କରନ୍ତି। ନୈତିକ ଶୃଙ୍ଖଳା ସାମାଜିକ ଶାନ୍ତି ଓ ସ୍ଥିରତାର ଆଧାର ବୋଲି ବିଶ୍ୱାସରୁ ନୈତିକତା ଉପରେ ପ୍ରାଧାନ୍ୟ ଦେଇଥାନ୍ତି। ନୈତିକ ଆଚରଣର ଅନ୍ତର୍ନିହିତ ପବିତ୍ରତା ଉପରେ ବିଶ୍ୱାସ ବି ନୈତିକ ଜୀବନ ପାଇଁ ପ୍ରେରଣାର ଉତ୍ସ ହୋଇପାରେ। ସୁତରାଂ ନୈତିକ ଆଚରଣ ପାଇଁ ବ୍ୟକ୍ତିକୁ ବହୁ କ୍ଷେତ୍ରରୁ ଅଭିନିବେଶ ମିଳିଥାଏ। ଅନୈତିକ ବା ଅସାମାଜିକ କାର୍ଯ୍ୟକଳାପ ଦ୍ୱାରା ବ୍ୟକ୍ତିର ସାମାଜିକ ମର୍ଯ୍ୟାଦା କ୍ଷୁର୍ଣ୍ଣ ହେବା ବା ବ୍ୟକ୍ତି ଦଣ୍ଡିତ ହେବାର ସମ୍ଭାବନାରୁ ନୈତିକ ଆଚରଣ ପ୍ରତି ପ୍ରେରଣା ଆସିବା ଏକ ସାଧାରଣ ଉପଲବ୍ଧି ଅଟେ।

ସାମାଜିକ ସମ୍ବନ୍ଧ ସାଂପ୍ରତିକ ପରିସ୍ଥିତିରେ ଅଧିକ ଜଟିଳ ହେବା ଦେଖାଯାଏ। ସୁତରାଂ ବ୍ୟକ୍ତିର ସାମାଜିକ କର୍ତ୍ତବ୍ୟର ପରିସର ଧୀରେ ଧୀରେ ଅଧିକ ଜଟିଳ ଓ ବ୍ୟାପକ ହେବା ମନେହୁଏ। ଗୋଟିଏ ସମୟରେ ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ପରିବାର ଓ ଏକ କ୍ଷୁଦ୍ର ଗୋଷ୍ଠୀ ଭିତରେ ସଙ୍କୁଚିତ ହୋଇ ରହିଥିଲା। ସାମାଜିକ ପରିସର ଯେତେ ବ୍ୟାପକ ଓ ପ୍ରସାରିତ ହେଲା ବ୍ୟକ୍ତିର ନୈତିକ କର୍ତ୍ତବ୍ୟବୋଧର ପରିସର ସେତେ ପ୍ରସାରିତ ହୋଇଚାଲିଲା। ଏହି ପ୍ରକ୍ରିୟାରେ ବିଭିନ୍ନ ପ୍ରକାରର ବୃତ୍ତିଗତ ଶୃଙ୍ଖଳା ଓ କର୍ତ୍ତବ୍ୟବୋଧର ଭାବନାମାନ ସମାଜରେ ସୃଷ୍ଟି ହେଲା। ଅହିଂସା, ସାଧୁତା, କର୍ତ୍ତବ୍ୟପରାୟଣତା ଓ ସମ୍ବେଦନଶୀଳତା ପରି ମୂଲ୍ୟଚୟମାନ ସାର୍ବଜନୀନ ଆବେଦନ ରଖୁଥିବା ବେଳେ ବୃତ୍ତିଗତ ଶୃଙ୍ଖଳା ଓ ନୈତିକତାର ପରିସର ନିର୍ଦ୍ଦିଷ୍ଟ ଓ ସଙ୍କୁଚିତ ହେବା ଦେଖାଯାଏ।

ସାମାଜିକ ସଚେତନତାର ସରିସର ଧୀରେ ଧୀରେ ବ୍ୟାପକ ହେବା ଦେଖାଯାଏ। ଏହି ପ୍ରକ୍ରିୟାରେ କେତେକ ସାମାଜିକ ଆଦର୍ଶ ମଧ୍ୟ ସମାଜରେ ଦୃଢ଼ ହେବା ବା ବିବର୍ତ୍ତିତ

ହେବା ଜଣାଯାଏ। ବିଶେଷକରି ଗଣତାନ୍ତ୍ରିକ ବ୍ୟବସ୍ଥା, ମାନବିକ ଅଧିକାର, ବ୍ୟକ୍ତିମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ସମତାର ଭାବ ଇତ୍ୟାଦି ମୂଲ୍ୟଚୟମାନ ଆଧୁନିକ ଜୀବନଧାରାର ମୂଲ୍ୟଚୟ। ସେହିପରି ବିଭିନ୍ନ ସମାଜରେ ରହିଥିବା ନାନା ପ୍ରକାରର ଭେଦଭାବ, ବୈଷମ୍ୟ ଯେ ମାନବିକ ମୂଲ୍ୟବୋଧର ପରିପନ୍ଥୀ ଏହି ଭାବନା ସମାଜରେ ବହୁ ପରେ ବିକଶିତ ହୋଇଛି। ଅତୀତରେ ବିଭିନ୍ନ ପ୍ରକାରର ସାମାଜିକ ଭେଦଭାବକୁ ଦୃଢ଼ କରିବା ପାଇଁ ସେସବୁକୁ ଧାର୍ମିକ ସ୍ୱୀକୃତି ଦିଆଯିବାର କାହାଣୀ ସୁବିଦିତ। ତେବେ ସାମାଜିକ ସଚେତନତାର ସ୍ତର ବୃଦ୍ଧି ପାଇବା ସହ ଅତୀତର ବହୁ ଅନ୍ୟାୟ ଓ ଅମାନବିକ ପ୍ରଥାର ଦୂରୀକରଣ ପାଇଁ ନାଗରିକ ସମାଜ ନାନା ଭାବରେ କାର୍ଯ୍ୟ କରିବା ଦେଖାଯାଏ। ସମାଜର ଶିକ୍ଷିତ ଓ ସଚେତନ ବର୍ଗ ବିଭିନ୍ନ ସଙ୍ଗଠନ ମାଧ୍ୟମରେ ସମାଜ ସଂସ୍କାର ଓ ବୈଜ୍ଞାନିକ ଚିନ୍ତାଧାରାର ବିକାଶକୁ ପ୍ରାଧାନ୍ୟ ଦେବାର ପରିବେଶ ସୃଷ୍ଟି ହୋଇଛି। ଯେଉଁମାନେ ବିଭିନ୍ନ ଅହିଂସାତ୍ମକ ପଦ୍ଧତିରେ ଜନବାଦୀ ଆନ୍ଦୋଳନମାନ ସୃଷ୍ଟି କରି ସମାଜର ସାଂସ୍କୃତିକ, ନୈତିକ ଓ ବୌଦ୍ଧିକ ବାତାବରଣକୁ ଉନ୍ନତ କରିଚାଲିଛନ୍ତି, ସେମାନଙ୍କୁ ନାଗରିକ ସମାଜ କୁହାଯାଉଛି। ସାମାଜିକ ପରିବର୍ତ୍ତନ, ସଂସ୍କାରବାଦୀ ଚେତନାର ବିକାଶ, ସାମାଜିକ ନ୍ୟାୟର ପରିବେଶ, ବିଭିନ୍ନ କୁସଂସ୍କାରର ବିଲୋପ, ପରିବେଶର ସୁରକ୍ଷା ଇତ୍ୟାଦି ପାଇଁ ଯେଉଁ ସଚେତନ ବର୍ଗଟି କାର୍ଯ୍ୟ କରୁଛି, ତାହା ହେଉଛି ନାଗରିକ ସମାଜ। ଏହି ଗୋଷ୍ଠୀଟି ହିଁ ସମାଜର ବୁଦ୍ଧିଜୀବୀ ଓ ସଚେତନ ବର୍ଗ। ପ୍ରତ୍ୟେକ ରାଷ୍ଟ୍ରରେ ସରକାର ଓ ଆଇନ୍‌କାନୁନ ମାଧ୍ୟମରେ ସାମାଜିକ ଚେତନାକୁ ଉନ୍ନତ କରିବା ସମ୍ଭବ ହୋଇନଥାଏ। ବରଂ କେତେକ ନାଗରିକ ସମାଜ ଜରିଆରେ ସାମାଜିକ ଚେତନାକୁ ଉନ୍ନତ ଓ ବିକଶିତ କରାଯାଏ। ସମାଜରେ ଶିକ୍ଷିତ, ସଚେତନ, କର୍ତ୍ତବ୍ୟ ପରାୟଣ ଓ ଦାୟିତ୍ୱସଂପନ୍ନ ବ୍ୟକ୍ତିମାନେ ସାମାଜିକ ବିକାଶ ଓ ଏକ ସୁସ୍ଥ ପରିବେଶ ସୃଷ୍ଟି ଦିଗରେ ନିର୍ଣ୍ଣାୟକ ଭୂମିକା ନେବା ଦେଖାଯାଏ। ନାଗରିକ ସମାଜକୁ ସଂପ୍ରତି ଲୋକଶକ୍ତି କୁହାଯାଉଛି। କ୍ଷମତା ବା ସରକାର ଠାରୁ ଦୂରରେ ରହି ମଧ୍ୟ ଯେଉଁ ଶିକ୍ଷିତ ଓ ସଚେତନ ଗୋଷ୍ଠୀ ମାନବିକ ମୂଲ୍ୟବୋଧ, ସାମାଜିକ ନ୍ୟାୟ, ସଂପ୍ରୀତିର ପରିବେଶ ସୃଷ୍ଟି କରିବାରେ ନିଜର ଅବଦାନ ଦେଉଛନ୍ତି, ସେହିମାନେ ଲୋକଶକ୍ତିର ଆଧାର। ଗଣତନ୍ତ୍ର, ଧର୍ମନିରପେକ୍ଷତା, ସାମାଜିକ ନ୍ୟାୟ, ଭେଦଭାବରହିତ ସମାଜ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନଦୃଷ୍ଟି ନୈତିକ ମୂଲ୍ୟବୋଧର ଯେ ପ୍ରସାରିତ ଅଭିବ୍ୟକ୍ତି ଏହା କୁହାଯାଇପାରେ।

(ପ୍ରଗତିବାଦୀ, ୨୪.୦୧.୨୦୧୮)

# ମାତୃଦିବସର ଅନୁଚିନ୍ତା

ଆନ୍ତର୍ଜାତିକ ସ୍ତରରେ ବହୁ ଦିବସ ଏବେ ପାଳିତ ହେଉଛି । ମାନବ ସମାଜ ପାଇଁ ଗୁରୁତ୍ୱ ରଖୁଥିବା ବା ଉଲ୍ଲେଖନୀୟ ତାତ୍ପର୍ଯ୍ୟ ବହନ କରୁଥିବା କୌଣସି ଘଟଣାକୁ ନେଇ ବିଭିନ୍ନ ଦିବସକୁ ପାଳନ କରାଯାଉଛି । ଏହି ପୃଷ୍ଠଭୂମିରେ ମେ' ମାସ ୧୦ ତାରିଖରେ "ବିଶ୍ୱ ମାତୃ ଦିବସ" ବା "ୱାର୍ଲଡ୍ ମଦରସ୍ ଡେ" ଆନ୍ତର୍ଜାତିକ ସ୍ତରରେ ପାଳିତ ହେବା ଏକ ଉଲ୍ଲେଖନୀୟ ଘଟଣା । ଆମେରିକାରେ ଆନା ଜାର୍ଭିସ୍ ନାମକ ଜଣେ ମହିଳା ୧୯୦୮ ମସିହାରେ ପ୍ରଥମେ ନିଜ ମା'ଙ୍କ ସ୍ମୃତି ଦିବସରେ ଏହା ପାଳନ କରିଥିଲେ । ତାଙ୍କ ମା' ଥିଲେ ଜଣେ ଶାନ୍ତିପ୍ରିୟ ସମାଜକର୍ମୀ । ଆମେରିକାରେ ଯେତେବେଳେ ଗୃହଯୁଦ୍ଧ ବା ସିଭିଲ୍ ୱାର (୧୮୬୧-୧୮୬୫) ଚାଲିଥିଲା ଜାର୍ଭିସ୍‌ଙ୍କର ମା' ରିଭେସ୍ ଜାର୍ଭିସ କ୍ଷତାକ୍ତ ବ୍ୟକ୍ତିମାନଙ୍କର ସେବା କରୁଥିଲେ । କୌଣସି ବାଛ ବିଚାର ନ ରଖି ଉଭୟ ପକ୍ଷର ଯେଉଁମାନେ ଆଘାତପ୍ରାପ୍ତ ହେଉଥିଲେ ସେମାନଙ୍କୁ ସହାନୁଭୂତିର ହାତ ବଢ଼ାଇ ସେମାନଙ୍କୁ ସେବା ଦେଉଥିଲେ । ୧୯୦୫ ମସିହାରେ ତାଙ୍କର ଦେହାନ୍ତ ପରେ ତାଙ୍କ ଝିଅ 'ମଦରସ୍ ଡେ' ୧୯୦୮ରେ ପାଳନ କଲେ । ତାଙ୍କର ଏହି ପଦକ୍ଷେପ ଧୀରେ ଧୀରେ ପ୍ରସାର ଲାଭ କରି ଆମେରିକାରେ ପାଳିତ ହେବାକୁ ଲାଗିଲା । ଏହା ଯେତେବେଳେ ଆମେରିକାରେ ଏକ ବ୍ୟାବସାୟିକ ଭିତ୍ତି ନେଲା, ଜାର୍ଭିସ୍ ଏହାକୁ ବିରୋଧ କଲେ । ମାତୃଦିବସ ଉପଲକ୍ଷେ ମାଆମାନଙ୍କୁ ଉପହାର ଦେବା, ମାତୃ କାର୍ଡ ପଠାଇବା ଏକ ଫେସନ୍ ହେଲା । କେତେକ ଗିଫ୍ଟ, କାର୍ଡ ଛାପି ବ୍ୟବସାୟ ଆରମ୍ଭ କଲେ । ମାଆମାନଙ୍କ ପ୍ରତି ଅନ୍ତରର କୃତଜ୍ଞତା ଓ ଭଲ ପାଇବା ବ୍ୟକ୍ତ କରିବା, ମାତୃ ଦିବସ ପାଳନ ପଶ୍ଚାତ୍‌ର ଆଦର୍ଶ ଥିଲା । ତେବେ ସମୟର ବ୍ୟବଧାନ ଭିତରେ ଏକ ଆଦର୍ଶ ଓ ପବିତ୍ର ଲକ୍ଷ୍ୟ ପଛକୁ ଚାଲିଯାଏ ଓ ଏକ ଔପଚାରିକତା ସୃଷ୍ଟି ହୁଏ । ସୁଖର କଥା, ମାତୃଦିବସ ସଂପ୍ରତି ବିଭିନ୍ନ ଦେଶରେ ଧାର୍ମିକ, ଐତିହାସିକ ବା ସାମାଜିକ ପ୍ରସଙ୍ଗ ସହ ସଂଶ୍ଳିଷ୍ଟ ହୋଇ ପାଳିତ ହେଉଛି ।

ଯେଉଁ ଆମେରିକାରେ ଏହା ପ୍ରଥମେ ଆରମ୍ଭ ହୋଇଥିଲା, ଆମେରିକାର ଜଣେ ରାଷ୍ଟ୍ରପତି ଉଡ୍ରୋ ୱିଲସନ୍ ଏହାର ମହତ୍ତ୍ୱକୁ ଅନୁଭବ କରି ଏହି ଦିବସକୁ ଏକ ଛୁଟି ଦିବସ

ଘୋଷଣା କଲେ । କେତେକ ରାଷ୍ଟ୍ରରେ ଆନ୍ତର୍ଜାତିକ ମହିଳା ଦିବସ ସହ ଏହାକୁ ସଂଶ୍ଳିଷ୍ଟ କରାଯାଇ ସେହିଦିନକୁ ମାତୃଦିବସ ଭାବେ ପାଳନ କରାଗଲା । ଫ୍ରାନ୍ସରେ ଲୋକସଂଖ୍ୟା କମୁଥିବାରୁ ଅଧିକ ସନ୍ତାନ ଜନ୍ମ କରି ବଡ଼ ପରିବାର କରିଥିବା ମହିଳାମାନଙ୍କୁ ମାତୃଦିବସ ପାଳନ କରାଯାଇ ସମ୍ମାନିତ କରାଗଲା । ଖ୍ରୀଷ୍ଟିଆନ୍ କାଥୋଲିକ୍ ରାଷ୍ଟ୍ରମାନଙ୍କରେ ଭର୍ଜିନ୍ ମେରୀଙ୍କ ଜୟନ୍ତୀକୁ (ଭର୍ଜିନ୍ ମେରୀ ଯିଶୁଙ୍କର ମାଆ) ମାତୃଦିବସ ଭାବେ ପାଳନ କରାଯାଉଛି । କେତେକ ଆରବ ରାଷ୍ଟ୍ରରେ ବସନ୍ତର ପ୍ରଥମ ଦିବସକୁ ମାତୃଦିବସ କରାଯାଇଛି । ମୋଟ ଉପରେ ପୃଥିବୀର ଅଧିକାଂଶ ରାଷ୍ଟ୍ରର ଜନଗଣ ଏବେ ମାତୃଦିବସ ପାଳନ କରୁଛନ୍ତି । ମାତୃଦିବସର ଭାବନା ପରେ ଜୁନ୍ ମାସର ତୃତୀୟ ରବିବାରକୁ ପିତୃଦିବସ ଭାବେ ନେଇ ଏହା ବି କେତେକ ଦେଶରେ ପାଳନ କରାଯିବାର ପରମ୍ପରା ସୃଷ୍ଟି ହୋଇଛି ।

ମଣିଷର ସାମାଜିକ ଜୀବନ ପାରିବାରିକ ପରିବେଶରୁ ଭିତ୍ତି ନେଇଥାଏ । ପରିବାର ହିଁ ସାମାଜିକ ଜୀବନର ମୂଳ ଉତ୍ସ । ପରିବାର କହିଲେ ମୁଖ୍ୟତଃ ପତି, ପତ୍ନୀ ଓ ସେମାନଙ୍କର ସନ୍ତାନ ସନ୍ତତି । ତେବେ ଗ୍ରାମୀଣ ସଂସ୍କୃତିରେ ଓ ବିଶେଷ କରି କୃଷିଭିତ୍ତିକ ସମାଜରେ ଯୌଥ ପରିବାର ଦେଖାଯାଏ । ଆଧୁନିକ କାଳରେ ଯୌଥ ପରିବାର ଲୋପ ପାଇଆସୁଛି । ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ତାଙ୍କର ବାପା, ମା ଯଥେଷ୍ଟ ଗୁରୁତ୍ୱ ବହନ କରନ୍ତି । ବିଶେଷ କରି, ପ୍ରତ୍ୟେକ ବ୍ୟକ୍ତି ପ୍ରାଣରେ ନିଜର ମାଆ ପ୍ରତି ଶ୍ରଦ୍ଧା ଓ ସମ୍ବେଦନ ରହିବା ଏକ ପ୍ରାକୃତିକ ଆବେଗ । ହୁଏତ ସ୍ଥଳ ବିଶେଷରେ କିଛି ବ୍ୟତିକ୍ରମ ଥାଇପାରେ, କିନ୍ତୁ ସାଧାରଣ ଭାବେ ଦେଖିଲେ ମାଆ ଓ ସେ ଜନ୍ମ ଦେଇଥିଲା ପିଲାଙ୍କ ଭିତରେ ହୃଦୟର ଆବେଗ ବେଶ୍ ଦୃଢ଼ । ପଶୁ ଜଗତରେ ହେଉ ବା ମଣିଷ ସମାଜରେ ହେଉ, ମାଆ ଭିତରେ ନିଜର ସନ୍ତାନ ପ୍ରତି ମାତୃ-ପ୍ରବୃତ୍ତି ରହିବା ଏକ ପ୍ରାକୃତିକ ଘଟଣା । ସନ୍ତାନଟିଏ ଜନ୍ମ ନେବା ପରେ ମାଆର ଯତ୍ନ ଆଦରରେ ଶିଶୁଟି ଆଗକୁ ଯାଏ । ଶିଶୁର ଶୈଶବକାଳୀନ ଯତ୍ନ କ୍ଷେତ୍ରରେ ମା'ର ଭୂମିକା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ମା'ର କୋଳ ଶିଶୁଟି ପାଇଁ ସବୁଠାରୁ ବଡ଼ ନିରାପଦ ଆଶ୍ରୟ ହୋଇଥାଏ । ପିଲାଟି ନିଜ ଗୋଡ଼ରେ ଛିଡ଼ା ହୋଇ ସାମାଜିକ ପରିବେଶରେ ନିଜର ଦାୟିତ୍ୱ ନିଜେ ବହନ କରିବା ପର୍ଯ୍ୟନ୍ତ ମାଆ-ବାପା ତା' ପାଇଁ ସୁରକ୍ଷାର ପରିବେଶ ଦେଇଥାନ୍ତି । ପ୍ରତି ସଭ୍ୟତାରେ ପ୍ରତ୍ୟେକ ବ୍ୟକ୍ତି ମାଆ-ବାପାଙ୍କର ସ୍ନେହ ଆଦର ଓ ପରିଚୟ ନେଇ ସମାଜରେ ନିଜର ସ୍ଥାନ ନେଇଥାଏ ।

ଭାରତୀୟ ଜୀବନଧାରାରେ ମାଆମାନଙ୍କୁ ଯଥେଷ୍ଟ ମହତ୍ତ୍ୱ ଦିଆଯାଇଛି । ମାଆ

ହେଉଛି ଦେବତାତୁଲ୍ୟ, ଦେବତା ଯେପରି ସମ୍ମାନର ପାତ୍ର, ମାଆ ମଧ୍ୟ ସମ୍ମାନର ଅଧିକାରୀ। 'ମାତୃ ଦେବ ଭବୋ', ମାଆ ସ୍ୱର୍ଗ ଠାରୁ ଆହୁରି ପୂଜ୍ୟତର ଓ ଗରୀୟାନ୍ ଭାବନା ଆମ ସଂସ୍କୃତିରେ ବ୍ୟକ୍ତ ହୋଇଛି। ହୁଏତ ଅନ୍ୟାନ୍ୟ ସଂସ୍କୃତିରେ ବି ଏହି ବିଚାରବୋଧ ରହିବା ଅସମ୍ଭବ ନୁହେଁ। ଗୋଟିଏ ସମୟରେ ମାତୃ-କୈନ୍ଦ୍ରିକ ସମାଜ ସବୁ ସଭ୍ୟତାରେ ମୁଣ୍ଡ ଟେକିଥିଲା। ତେବେ ସମୟର ଆବର୍ତ୍ତନ ଭିତରେ ଓ ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ଯୋଗୁ ମାତୃ-କୈନ୍ଦ୍ରିକ ସମାଜ ପୁରୁଷ ପ୍ରାଧାନ୍ୟ ସମାଜରେ ରୂପାନ୍ତରିତ ହେବା ଏକ ଐତିହାସିକ ଘଟଣା।

ମାନବ ସଭ୍ୟତାର ଏକ ବିଡମ୍ବନା ଯେ, ମାଆମାନଙ୍କର ଗୌରବଗାନ ସତ୍ତ୍ୱେ ସବୁ ସଭ୍ୟତାରେ ମହିଳାମାନେ ଅତୀତରେ ନାନା ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି। ଲିଙ୍ଗଗତ ଭେଦଭାବ ସବୁ ସଭ୍ୟତାରେ ସୃଷ୍ଟି ହୋଇଛି। ନାରୀମାନଙ୍କୁ ନ୍ୟୂନ କରିବା ପାଇଁ ନର-ନାରୀ ଜନିତ ଲିଙ୍ଗଗତ ଭେଦଭାବକୁ ଧାର୍ମିକ ସ୍ୱୀକୃତି ବି ଦିଆଯାଇଛି। ନାରୀ ସବୁ ପାପର ମୂଳ ଓ ନରକର ପ୍ରତୀକ ବୋଲି ଅମାନବିକ ଭାବନା ସୃଷ୍ଟି ହୋଇଛି। ଆମ ଦେଶର କେତେକ ଶାସ୍ତ୍ରରେ ନାରୀର ମହତ୍ତ୍ୱ, ପୁତ୍ର ସନ୍ତାନ ଜନ୍ମ ପାଇଁ ଉଦ୍ଦିଷ୍ଟ ବୋଲି କୁହାଯାଇଛି। ଜଣେ ପ୍ରଭାବଶାଳୀ କବି ନାରୀ ଢୋଲ ଓ ପଶୁ ପରି ତାଡନାର ଯୋଗ୍ୟ ବୋଲି ଭାବନା ବ୍ୟକ୍ତ କରିଛନ୍ତି। ଶାସ୍ତ୍ରରେ ଆହୁରି ବର୍ଣ୍ଣିତ ହୋଇଛି ଯେ, ନାରୀମାନେ କୌଣସି ସମୟରେ ସ୍ୱାଧୀନତା ଉପଭୋଗ କରିପାରିବେ ନାହିଁ। ବାଲ୍ୟକାଳରେ ସେମାନେ ପିତାର ନିୟନ୍ତ୍ରଣରେ, ବିବାହ ପରେ ସ୍ୱାମୀର ଅଧୀନରେ ଓ ବାର୍ଦ୍ଧକ୍ୟରେ ପୁତ୍ରର ଅଧୀନରେ ରହିବେ ଓ କେବେ ହେଲେ ନିଜେ ସ୍ୱାଧୀନ ରହିପାରିବେ ନାହିଁ।

ଆମ ଦେଶର ସାମାଜିକ ଜୀବନ ପ୍ରବାହରେ ନାନା ଧାର୍ମିକ, ସାଂସ୍କୃତିକ ଓ ପରମ୍ପରା ଜନିତ କାରଣ ଯୋଗୁ ନାରୀମାନେ ନାନା ବୈଷମ୍ୟର ସମ୍ମୁଖୀନ ହେଉଛନ୍ତି। ନାନା ବାର, ବ୍ରତ, ଓଷା, ଉପବାସ କେବଳ ନାରୀମାନଙ୍କ ପାଇଁ ଖଞ୍ଜା ଯାଇଛି। ଗୋଟିଏ ସମୟରେ ବାଲ୍ୟ ବିବାହ ପ୍ରଥା ଆମ ସମାଜର ଧାରା ଥିଲା ଓ ଏବେ ବି ତାହା ସଂମ୍ପୂର୍ଣ୍ଣ ଦୂର ହୋଇ ନାହିଁ। ବାଲ୍ୟବିବାହ ପ୍ରଥାରୁ ବାଲ୍ୟବିଧବାର ପରିବେଶ ଆସୁଥିଲା, ବିଧବା ବିବାହ ସମାଜରେ ସ୍ୱୀକୃତ ହେଉନଥିଲା। ଅନେକ ଝିଅ ବାଲ୍ୟକାଳରୁ ବିଧବା ହୋଇ ଜୀବନ ସାରା ଅକଥନୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଥିଲେ। ସେହିପରି ସତୀଦାହ ପ୍ରଥା ପରି ଗୁଡ଼ିଏ କଳଙ୍କ ବା ସୋସିଆଲ୍ ଇଭିଲ୍ ଆମ ସମାଜରେ ରହିଥିଲା। ତେବେ ଚିନ୍ତା ଚେତନାରେ ପରିବର୍ତ୍ତନ ଯୋଗୁ ଏହି ସବୁ ମନ୍ଦ ପରମ୍ପରା ଏବେ ସମାଜରେ ନାହିଁ।

ସାଂପ୍ରତିକ ସମାଜରେ ଆଉ ଏକ ସମସ୍ୟା ମୁଣ୍ଡ ଟେକିଛି । ପୁରୁଷ ପ୍ରାଧାନ୍ୟ ମାନସିକତା ଯୋଗୁ ଓ କ୍ଷୁଦ୍ର ପରିବାରର ଭାବନାରୁ ଅଧିକାଂଶ ଦମ୍ପତି କନ୍ୟା ସନ୍ତାନ ଜନ୍ମ ପାଇଁ ଆଗ୍ରହୀ ହେଉ ନାହାନ୍ତି । ଚିକିତ୍ସା ବିଜ୍ଞାନରେ ଉନ୍ନତି ଯୋଗୁ ଗର୍ଭସ୍ଥ ସନ୍ତାନର ଲିଙ୍ଗ ନିରୂପଣ କରାଯାଇ ପାରୁଛି ଓ ତାହା କନ୍ୟା ସନ୍ତାନ ବୋଲି ଜଣାପଡ଼ିଲେ ଭ୍ରୁଣ ହତ୍ୟା କରାଯାଉଛି । ନାନା ସାମାଜିକ କାରଣରୁ ପୁତ୍ର ସନ୍ତାନମାନେ ସମାଜରେ ଯେଉଁ ସ୍ନେହ ଆଦର ପାଉଛନ୍ତି, କନ୍ୟା ସନ୍ତାନମାନେ ପରିବାରରେ ତାହା ପାଇପାରୁ ନାହାନ୍ତି । ଭ୍ରୁଣ ହତ୍ୟା ଓ କନ୍ୟା ସନ୍ତାନମାନଙ୍କର ହତାଦାର ଯୋଗୁ ଝିଅଙ୍କର ସଂଖ୍ୟା ସମାଜରେ କମି ଚାଲିଛି । ପ୍ରକୃତି ପୁଅ-ଝିଅ ଅନୁପାତରେ ଯେଉଁ ଭାରସାମ୍ୟତା ରକ୍ଷା କରୁଥିଲା, ମଣିଷ ନିଜର ଜ୍ଞାନ ଓ ଦୁର୍ବୁଦ୍ଧି ଯୋଗୁ  ସେହି ସନ୍ତୁଳନ ଆମ ସମାଜରେ ନଷ୍ଟ କରିଚାଲିଛି । ଏହା ଭବିଷ୍ୟତରେ ଏକ ଭୟଙ୍କର ସାମାଜିକ ସମସ୍ୟା ସୃଷ୍ଟି କରିବାର ଆଶଙ୍କା ସୃଷ୍ଟି ହେଉଛି ।

ଭାରତୀୟ ସମାଜ ଯୁଗ ଯୁଗ ଧରି ଏକ ସାମନ୍ତବାଦୀ ବ୍ୟବସ୍ଥାର ଚିତ୍ର ପ୍ରଦାନ କରିଥାଏ । ଜାତିଗତ ଭେଦଭାବ ଓ ତତ୍‌ସଂଲଗ୍ନ ଉଚ୍ଚ-ନୀଚ ମନୋଭାବ ସମାଜରେ ଅତି ବ୍ୟାପକ ଭାବେ ରହି ଆସିଛି । ଅଧିକାଂଶ ବିବାହ ଜାତି ଭିତରେ ସଂପନ୍ନ ହୁଏ ଓ ଜାତିବିହୀନ ବିବାହ ସମାଜର ବ୍ୟତିକ୍ରମ ବୋଲି ଧରାଯାଏ । ଜାତିଗତ ମାନସିକତାର ପରିଣାମ ହେଉଛି ଯୌତୁକ ସମସ୍ୟା । ଗୋଟିଏ ଝିଅକୁ ବିବାହ ଦେବା ବେଳେ ତାର ପରିବାରକୁ ପୁଅ ଘରକୁ ଅନେକ ଯୌତୁକ ଦେବାକୁ ହୁଏ । ସ୍ଥଳ ବିଶେଷରେ କେତେକ ମହିଳା ଶ୍ୱଶୁର ଘରେ ଯୌତୁକ ଆଣିବା ନେଇ ନାନା ଅସମ୍ମାନ ଓ ଅତ୍ୟାଚାରର ସମ୍ମୁଖୀନ ହୁଅନ୍ତି । ଯୌତୁକ ଜନିତ କାରଣରୁ ବେଳେ ବେଳେ ବଧୂହତ୍ୟା ଘଟଣା ବି ଘଟେ । କେତେକ ମହିଳା ଯୌତୁକ ନିର୍ଯ୍ୟାତନାର ଶରବ୍ୟ ହୋଇ ଆତ୍ମହତ୍ୟା କରିବାର ଦୃଷ୍ଟାନ୍ତ ବି ସମାଜରେ ରହିଛି । ଯୌତୁକ ଜନିତ ହତ୍ୟା ବା ଆତ୍ମହତ୍ୟା ଏକ ଗମ୍ଭୀର ସାମାଜିକ ସମସ୍ୟା, ଯାହା ଆମ ଜନଜୀବନର ଏକ କଳଙ୍କିତ ଦିଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜାତିପ୍ରଥା ଜନିତ ଉଚ୍ଚ-ନୀଚ ଭେଦଭାବ, ଭୟଙ୍କର ଆର୍ଥିକ ବିଷମତା, ରକ୍ଷଣଶୀଳ ପରିବେଶ, ଯୌତୁକ ସମସ୍ୟା, ନାନା ଅମାନବିକ ପରମ୍ପରା ଓ ନାରୀମାନଙ୍କ ପ୍ରତି ସାମାଜିକ ଦୃଷ୍ଟିଭଙ୍ଗୀର ସମନ୍ୱିତ ପରିଣାମରୁ ଆମ ସମାଜରେ ମହିଳାମାନେ ଅସୁରକ୍ଷିତ ମନେହୁଅନ୍ତି ଓ ପୁରୁଷମାନଙ୍କ ତୁଳନାରେ ଅଧିକ ଯନ୍ତ୍ରଣା ଜର୍ଜରିତ ହୁଅନ୍ତି । ଏହି ସ୍ଥିତିରେ ନାରୀମାନଙ୍କୁ ସାମାଜିକ ସୁରକ୍ଷା ଦେବା ପାଇଁ ଓ ସେମାନଙ୍କର ଅଧିକାର କ୍ଷୁର୍ଣ୍ଣ ନହେବା ପାଇଁ ଆଇନ୍‌ଗତ ବ୍ୟବସ୍ଥା ଅତି କଠୋର କରାଯାଇଛି । କୌଣସି ମହିଳା ଯୌତୁକ ଜନିତ ନିର୍ଯ୍ୟାତନା ପାଉଥିଲେ କିମ୍ବା କୌଣସି କାରଣରୁ ଅତ୍ୟାଚାରିତ

ହେଉଥିଲେ ତାହା ପୁଲିସ୍‌ର ନଜରକୁ ବା ମହିଳା କମିସନ୍ ସନ୍ମୁଖକୁ ଆଣି ନ୍ୟାୟ ପାଇବା ପାଇଁ ନାନା ବିଧାନ କରାଯାଇଛି । ଏପରିକି ଆଇନ୍ ଓ ବିଚାର ବ୍ୟବସ୍ଥା ପୁରୁଷମାନଙ୍କ ପାଇଁ ବହୁ କଠୋର କରାଯାଇଛି । ସତ୍ୟତା ଥାଉ ବା ନ ଥାଉ, କୌଣସି ମହିଳାଙ୍କର କିଛି ଅଭିଯୋଗ ଆସିଲେ, ତାଙ୍କ ସ୍ୱାମୀ ଓ ପରିବାରର ଲୋକମାନେ ଅସମ୍ମାନ ଓ ନୈରାଶ୍ୟର ସନ୍ମୁଖୀନ ହୁଅନ୍ତି । ଏପରିକି କେତେକ ଉଦୀୟମାନ ଯୁବକ ବୈବାହିକ ଜୀବନରେ ସାମାନ୍ୟ ମନୋମାଳିନ୍ୟରୁ ପତ୍ନୀଙ୍କର ମିଥ୍ୟା ଅଭିଯୋଗ ହେତୁ ମାନସିକ ଯନ୍ତ୍ରଣାର ଶରବ୍ୟ ହୋଇଥିବାର ଦୃଷ୍ଟାନ୍ତ ବି ରହିଛି । ଆଇନ ଯେ ଏକପାଖିଆ ହୋଇଛି ଓ ତାର ସୁଯୋଗ ମହିଳାମାନେ ନେଉଛନ୍ତି, ଏହି ଉପଲବ୍ଧିରୁ ବହୁତ କଷ୍ଟ ପାଉଥିବା କେତେକ ଯୁବକ "ସେଭ୍ ଇଣ୍ଡିଆନ୍ ଫାମିଲି ଫାଉଣ୍ଡେସନ" ନାମରେ ଏକ ସଙ୍ଗଠନ କରି ପୁରୁଷମାନଙ୍କର ନ୍ୟାୟୋଚିତ ଅଧିକାର ପାଇଁ ସାମାଜିକ ସ୍ତରରେ ଓ ଆଇନ୍‌ଗତ ସ୍ତରରେ ଉଦ୍ୟମ କରୁଛନ୍ତି । ଆଇନ୍‌ର ଦୁରୁପଯୋଗକୁ ବନ୍ଦ କରି ଏକ ସୁସ୍ଥ ସମାଜ ପାଇଁ ଏହି ମଞ୍ଚ କାର୍ଯ୍ୟ କରୁଛି । ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର ଓ ସମତାର ଭାବନା ସମାଜରେ ଦୃଢ଼ ଭିତ୍ତି ନ ନେଲେ ଏକ ପାରମ୍ପରିକ ସାମାଜିକ ଦୃଶ୍ୟପଟରେ ପରିବର୍ତ୍ତନ ଆସିପାରିବ ନାହିଁ । ଗୋଟିଏ ପଟେ ମାଆକୁ ଦେବତାତୁଲ୍ୟ ମନେକରିବା ଓ ଆଉ ଗୋଟିଏ ପଟେ ମହିଳାମାନଙ୍କୁ ନ୍ୟୂନ କରିବା ବିରୋଧାଭାସରୁ ଉଦ୍ଭବ ସାମାଜିକ ସମସ୍ୟାରୁ ନାନା ଜଟିଳ ପରିସ୍ଥିତି ସୃଷ୍ଟି ହେବ ।

(ପ୍ରଗତିବାଦୀ, ୨୪.୦୬.୨୦୧୫)

# ପିତୃଦିବସର ଅନୁଚିନ୍ତା

ପୃଥିବୀର ବିଭିନ୍ନ ଦେଶରେ ଜୁନ୍ ମାସର ତୃତୀୟ ରବିବାରଟି ପିତୃଦିବସ ଭାବେ ପାଳିତ ହେଉଛି । ମାତୃଦିବସ ପାଳନ ପରିପ୍ରେକ୍ଷୀରେ ପିତୃଦିବସ ପାଳନର ଭାବନା ସୃଷ୍ଟି ହୋଇଥିଲା । କେତେକ ପାଶ୍ଚାତ୍ୟ ଦେଶମାନଙ୍କରେ ପିଲାମାନେ ନିଜ ନିଜର ବାପାଙ୍କୁ ସମ୍ମାନିତ କରିବା, ଉପହାର ଦେବା ଓ ସେମାନଙ୍କର ନିରାମୟ ଜୀବନ କାମନା କରିବାର ଏକ ପରମ୍ପରା କେତେ ଦଶନ୍ଧି ଧରି ସୃଷ୍ଟି ହୋଇଛି । ବିଶେଷ କରି ଆମେରିକା ଭଳି ସମୃଦ୍ଧ ଦେଶମାନଙ୍କରେ ପିତୃଦିବସ ପାଳନ ଉପଲକ୍ଷେ ବିଭିନ୍ନ ଉପହାର ବଜାରରେ ମିଳେ, ପିଲାମାନେ ନିଜ ବାପାଙ୍କର ରୁଚି ଅନୁଯାୟୀ ବାପାମାନଙ୍କୁ ଉପହାର ଦେଇ ସେମାନଙ୍କର ଶୁଭକାମନା କରିଥାନ୍ତି । ଆନ୍ତର୍ଜାତିକ ସ୍ତରରେ ଏବେ ବହୁ ଦିବସ ପାଳିତ ହେଉଛି । ମାନବ ସମାଜ ପାଇଁ ତାତ୍ପର୍ଯ୍ୟ ରଖିଥିବା କେତେକ ଘଟଣା ବିଭିନ୍ନ ଦେଶରେ ସ୍ୱତନ୍ତ୍ର ଭାବେ ପାଳନ କରାଯାଉଛି । କେତେକ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଆନ୍ତର୍ଜାତିକ ସ୍ତରରେ ନିର୍ଦ୍ଦିଷ୍ଟ ଦିବସରେ ସବୁ ଦେଶରେ ପାଳିତ ହୋଇଥାଏ । ଅନ୍ୟ କ୍ଷେତ୍ରରେ ଗୁରୁତ୍ୱ ବହନ କରୁଥିବା ଏକ ଘଟଣା ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ଦିବସରେ ପାଳନ କରାଯାଏ ।

ପିତୃଦିବସ ଆମେରିକାରେ ପାରିବାରିକ ସ୍ତରରେ ପାଳିତ ହେବା ପରେ ସରକାରୀ ସ୍ତରରେ ଏହାକୁ ଜାତୀୟ ଦିବସ ଭାବେ ଘୋଷଣା କରାଗଲା । ସରକାରୀ ଘୋଷଣା ପରେ ଜୁନ୍ ମାସର ତୃତୀୟ ରବିବାର ଦିନଟିକୁ ପିତୃଦିବସ ବା ୱାର୍ଲଡ୍ ଫାଦରସ୍ ଡେ ଭାବେ ଏବେ ବିଭିନ୍ନ ଦେଶରେ ପାଳିତ ହେଉଛି । ଭାରତୀୟ ଜୀବନଧାରାରେ 'ପିତୃପକ୍ଷ'ର ଏକ ଭାବନା ରହିଛି । ଆଶ୍ୱିନ ମାସ କୃଷ୍ଣପକ୍ଷ ଆରମ୍ଭରୁ ଅମାବାସ୍ୟା ପର୍ଯ୍ୟନ୍ତ ଦୁଇ ସପ୍ତାହକୁ ପିତୃପକ୍ଷ କୁହାଯାଏ । ଏହି ସମୟରେ ପିତୃପକ୍ଷର ସ୍ୱର୍ଗତ ଲୋକମାନଙ୍କର ତର୍ପଣ କରାଯାଇ ମହାଳୟା ଶ୍ରାଦ୍ଧଦିନ ସେମାନଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରାଯାଏ । ତେବେ ପିତୃପକ୍ଷ ଭାବନା କେବଳ ଦେହାନ୍ତ ହୋଇଥିବା ବ୍ୟକ୍ତିମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ କରାଯାଉଥିବା କାର୍ଯ୍ୟ ସହ ସଂଶ୍ଳିଷ୍ଟ । ମୃତ ଲୋକଙ୍କର ପାରଲୌକିକ ସଦ୍‌ଗତି ପାଇଁ ଏହା ଉଦ୍ଦିଷ୍ଟ । ପାରଲୌକିକ ମାନସିକତା ଆମ ବିଶ୍ୱାସ ଓ ପରମ୍ପରାରେ ଅଧିକ ପ୍ରତିଫଳିତ ହେବା ଦେଖାଯାଏ । ବିଭିନ୍ନ ସଂସ୍କୃତିରେ ପିତା-ମାତାଙ୍କର ସୁଖ ଓ ସ୍ମୃତି ପାଇଁ ଭିନ୍ନ ଭିନ୍ନ ବିଶ୍ୱାସ ଓ ପରମ୍ପରା ରହିବା ବା କାର୍ଯ୍ୟସୂଚୀ ପାଳିତ ହେବା ଜଣାଯାଏ ।

ପିତୃଦିବସ ପରି 'ଆନ୍ତର୍ଜାତିକ ପୁରୁଷ ଦିବସ' (ଇଣ୍ଟରନେସ୍‌ନାଲ୍ ମେନ୍‌ସ ଡେ), ନଭେମ୍ବରର ୧୯ ତାରିଖ ଦିନ ପାଳିତ ହେଉଛି। 'ଆନ୍ତର୍ଜାତିକ ମହିଳା ଦିବସ' ପରି 'ଆନ୍ତର୍ଜାତିକ ପୁରୁଷ ଦିବସ'କୁ ବି ବିଭିନ୍ନ ଦେଶରେ ପାଳନ କରାଯାଉଛି। ମାତୃ ଦିବସ, ପିତୃଦିବସ, ଆନ୍ତର୍ଜାତିକ ମହିଳା ଦିବସ ଓ ଆନ୍ତର୍ଜାତିକ ପୁରୁଷ ଦିବସ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ବିଭିନ୍ନ ଦେଶରେ ପାଳିତ ହେଉଛି। ଏହି ସବୁ ଭାବନା ବିଂଶ ଶତାବ୍ଦୀ ଭିତରେ ଉଦ୍ଭବ ହୋଇଛି ଓ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ସହ ଏସବୁ ଧୀରେ ଧୀରେ ଆନ୍ତର୍ଜାତିକ ହେବାରେ ଲାଗିଛି। ଏସବୁ ପଶ୍ଚାତ୍‌ରେ ମାନବ ଗୋଷ୍ଠୀର ସୁଖ, ଶାନ୍ତି ଓ ପ୍ରୀତିପଦ ଜୀବନର ବାର୍ତ୍ତା ରହିଛି। ଏହା ସହିତ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀ ପ୍ରତି ଅନ୍ୟମାନଙ୍କର ଯେ କିଛି ନୈତିକ କର୍ତ୍ତବ୍ୟ ରହିଛି, ଏହା ବି ଦିବସ ପାଳନର ଏକ ତାତ୍ପର୍ଯ୍ୟ ମନେହୁଏ।

ଗୋଟିଏ ସମୟରେ ମଣିଷମାନେ ଗୋଷ୍ଠୀ ଜୀବନଯାପନ କରୁଥିଲେ। ତାହାରି ଭିତରୁ ପାରିବାରିକ ଜୀବନର ସୂତ୍ରପାତ ହେଲା। ପରିବାର ହିଁ ସାମାଜିକ ଜୀବନଧାରାର କେନ୍ଦ୍ରବିନ୍ଦୁ ପାଲଟିଲା। ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ପରିବାରର ସୁଖ, ଶାନ୍ତି ପାଇଁ ଅଭିପ୍ରେତ ରହିଥିଲା। ବିଶେଷକରି କୃଷିଭିତ୍ତିକ ସମାଜରେ ଗ୍ରାମୀଣ ସଭ୍ୟତା ପରିବାରକୁ ନେଇ ସୁଦୃଢ ହୋଇଥିଲା। ପ୍ରତ୍ୟେକ ବ୍ୟକ୍ତି ଏକ ପାରିବାରିକ ପରିବେଶରେ ହିଁ ଗଢି ଉଠିଥାଏ। ଯୁବ ଅବସ୍ଥାକୁ ଆସିଲେ ସେ ବିବାହ ବନ୍ଧନରେ ଆବଦ୍ଧ ହୋଇ ପରିବାର ଗଠନ କରେ ଓ ନିଜର ବୃଦ୍ଧ ପିତା ମାତା ଓ ସନ୍ତାନ ସନ୍ତତିଙ୍କର ଦାୟିତ୍ୱ ବହନ କରେ। ଏହି ସାମାଜିକ ଧାରା ସାରା ପୃଥିବୀରେ ରହିଥିବା ଦେଖାଯାଏ।

ଏକଦା ସାରା ପୃଥିବୀରେ ଯୌଥ ପରିବାର ରହିଥିଲା। ତେବେ ସାଂପ୍ରତିକ ପରିସ୍ଥିତିରେ ଯୌଥ ପରିବାରର ପ୍ରାକୃତିକ ବିଲୟ ହୋଇଛି। ଯୌଥ ପରିବାରର ବିଲୟ ଘଟିବା ପଶ୍ଚାତରେ ବିଭିନ୍ନ କାରଣ ରହିଛି। କ୍ଷୁଦ୍ର ପରିବାର ସାଂପ୍ରତିକ ସମୟର ଆବଶ୍ୟକତା। ଜନସଂଖ୍ୟାର ବିସ୍ଫୋରଣକୁ ପ୍ରତିହତ କରିବାକୁ ପ୍ରତ୍ୟେକ ଦମ୍ପତି ସେମାନଙ୍କର ପରିବାରକୁ ଗୋଟିଏ ଦୁଇଟି ସନ୍ତାନ ଭିତରେ ସୀମିତ ରଖୁଛନ୍ତି। ପୁନଶ୍ଚ ଗ୍ରାମୀଣ କୃଷିଭିତ୍ତିକ ଜୀବନଶୈଳୀରେ ମଧ୍ୟ ପରିବର୍ତ୍ତନ ହୋଇଯାଇଛି। ୟୁରୋପରେ ଶିଳ୍ପ ବିପ୍ଳବ ଆସିବା ପରେ ସହରମାନ ଗଢ଼ି ଉଠିଲା। ବିଭିନ୍ନ କଳ କାରଖାନା ସହରମାନଙ୍କରେ ସୃଷ୍ଟି ହେଲା ଓ ଗାଁ ଗହଳରୁ ଲୋକମାନେ ସହରକୁ ସ୍ୱଚ୍ଛଳ ଜୀବନ ପାଇଁ ଆସିଲେ। ଗମନାଗମନର ବିକାଶ ଓ ଗତିଶୀଳତା ବୃଦ୍ଧି ଯୋଗୁ ଯେଉଁଠି କର୍ମସଂସ୍ଥାନ ଉପଲବ୍ଧ ହେଲା, ସେଠାକୁ ଲୋକମାନେ

ଯାଇ ନିଜକୁ ସ୍ୱାବଲମ୍ବୀ କରାଇଲେ । ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ସମାଜରେ ବିଭିନ୍ନ ପରିବର୍ତ୍ତନର ସୂତ୍ରପାତ କରାଇଲା । ପରିସ୍ଥିତି କ୍ରମେ ବାପା-ମା'ଙ୍କ ଠାରୁ ପିଲାମାନେ ଦୂରେଇ ଯିବାକୁ ବାଧ ହେଲେ, କାରଣ ସେମାନେ ଦୂରରେ କର୍ମସଂସ୍ଥାନ ପାଇଲେ । ବୃତ୍ତିଗତ ଚାପ, କର୍ମକ୍ଷେତ୍ରରେ ପ୍ରତିଯୋଗିତାର ପରିବେଶ, ଆର୍ଥିକ ପରିସ୍ଥିତି ଓ ସ୍ଥାନାଭାବ ପରି ନାନା କାରଣରୁ ପିଲାମାନେ ବାପା-ମା'ଙ୍କ ଠାରୁ ପୃଥକ୍ ହୋଇ ରହିବାର ଏକ ପ୍ରାକୃତିକ ପରିବେଶ ସ୍ୱତଃ ସୃଷ୍ଟି ହୋଇଗଲା । କୌଳିକ ବୃତ୍ତିର ବିଲୋପ ସହ ଏକ ନୂତନ ଅର୍ଥନୈତିକ ପରିବେଶର ଅଭ୍ୟୁଦୟ ହେଲା । ତାର ପ୍ରଭାବରେ ସାମାଜିକ ସ୍ଥିତିରେ ବି ବଡ଼ ପରିବର୍ତ୍ତନ ଦେଖାଦେଲା । ବାପା, ମା'ଙ୍କ ଠାରୁ ବାଧ ହୋଇ ଦୂରରେ ରହୁଥିବା ପିଲାମାନେ ପିତୃଦିବସ, ମାତୃଦିବସରେ ବାପା, ମା'ଙ୍କ ପ୍ରତି ହୃଦୟର ବନ୍ଧନ ବ୍ୟକ୍ତ କରିବା ଏକ ପ୍ରାକୃତିକ ଆବେଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଂଶ ଶତାବ୍ଦୀର ଶେଷ ଦୁଇ ତିନି ଦଶକରୁ ଆଉ ଏକ ସମସ୍ୟା ମୁଣ୍ଡ ଟେକିଛି । ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ଓ ସାମାଜିକ ଗତିଶୀଳତା ବିଂଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧରୁ ବୃଦ୍ଧି ପାଇବାରେ ଲାଗିଛି । ଏହା ସହିତ ଆଧୁନିକ ଚିକିତ୍ସା ବିଜ୍ଞାନରେ ଆଶାତୀତ ଉନ୍ନତି ହୋଇଛି । ସବୁ ଦେଶରେ ଲୋକମାନଙ୍କର ସାଧାରଣ ଆୟୁ ବଢ଼ି ବଢ଼ି ଚାଲିଛି । ଏବେ ସବୁ ଦେଶରେ ବୟସ୍କ ଲୋକମାନଙ୍କର ସଂଖ୍ୟା ବି ବୃଦ୍ଧି ହେବା ଦେଖାଯାଉଛି । ଫଳତଃ ବରିଷ୍ଠ ନାଗରିକମାନଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା ସୁଯୋଗ ସୃଷ୍ଟି କରାଯାଉଛି । ଆନ୍ତର୍ଜାତିକ ସ୍ତରରେ ପ୍ରତ୍ୟେକ ବର୍ଷ ଅକ୍ଟୋବର ମାସ ଏକ ତାରିଖକୁ "ବରିଷ୍ଠ ବ୍ୟକ୍ତି ଦିବସ" ଭାବେ ପାଳନ କରାଯାଉଛି । ସେମାନଙ୍କର ସାମାଜିକ ସୁରକ୍ଷା, ନିରାପତ୍ତା, ଚିକିତ୍ସା ଓ ଯତ୍ନ ପାଇଁ ବିଭିନ୍ନ ସଭ୍ୟ ଦେଶମାନଙ୍କରେ ନାନା ସ୍ୱତନ୍ତ୍ର ସୁବିଧାମାନ ଉପଲବ୍ଧ ହେଲାଣି । ପ୍ରତ୍ୟେକ ସହରମାନଙ୍କରେ ଓଲ୍ଡ ଏଜ୍ ହୋମ୍ ସ୍ଥାପିତ ହୋଇ ସେଠାରେ ବୟସ୍କ ଲୋକମାନେ କିପରି ସମବୟସର ଲୋକମାନଙ୍କ ସହ ରହିବେ, ସେମାନଙ୍କ ସହ ଭାବଗତ ଆଦାନ ପ୍ରଦାନ, ଖେଳ, ମନୋରଞ୍ଜନରେ ସମୟ ଅତିବାହିତ କରିବେ, ତାହାର ସୁବ୍ୟବସ୍ଥା କରାଗଲାଣି । ପିଲାମାନେ ଦୂରରେ କର୍ମସଂସ୍ଥାନ ପାଇଁ ରହୁଥିବାରୁ ସେମାନେ ବୃଦ୍ଧ ପିତା-ମାତାଙ୍କର ଯତ୍ନ ନେବା ସମ୍ଭବ ନୁହେଁ । ଏହା ସହିତ ସେମାନଙ୍କର ସ୍ୱାସ୍ଥ୍ୟଗତ ସେବା ଯତ୍ନ କ୍ଷେତ୍ରରେ ପିଲାମାନେ ପ୍ରଶିକ୍ଷିତ ନୁହନ୍ତି । ପୁନଶ୍ଚ ସ୍ୱାମୀ-ସ୍ତ୍ରୀ ଉଭୟ କର୍ମଜୀବୀ ହୋଇଥିବାରୁ ବାପା-ମା'ଙ୍କର ଦେଖାଶୁଣା କରିବା ପାଇଁ ସେମାନଙ୍କ ପାଖରେ ସମୟର ଘୋର ଅଭାବ । ଏହିପରି ନାନା ପରିସ୍ଥିତିଗତ ବାଧବାଧକତାରୁ ବୟସ୍କ ଲୋକମାନଙ୍କର ସୁଖମୟ ଶେଷ

ଜୀବନ ପାଇଁ ସମୃଦ୍ଧ ଦେଶମାନଙ୍କରେ 'ଜରା-ନିବାସ'ମାନ ସ୍ଥାପିତ ହୋଇଚାଲିଛି। ବୟସ୍କ ଲୋକମାନେ ଜରା ନିବାସରେ ଚିକିତ୍ସାର ସୁଯୋଗ ପାଇବେ, ସମ ବୟସ୍କ ଲୋକଙ୍କ ସହିତ ଭାବର ଆଦାନ ପ୍ରଦାନ କରିବେ, ମନୋରଂଜନର ପରିବେଶ ପାଇବେ, ଯାହା ପରିବାର ଭିତରେ ସମ୍ଭବ ନୁହେଁ।

ମଣିଷ ସାମାଜିକ ପରିବର୍ତ୍ତନ ସହ ନିଜକୁ ଖାପ ଖୁଆଇ ଚଳିବାକୁ ବାଧ୍। ପରିବର୍ତ୍ତନ ବି ଏକ ଅବଶ୍ୟମ୍ଭାବୀ ପ୍ରକ୍ରିୟା। ସାମାଜିକ ପରିବର୍ତ୍ତନ ଧାରାରେ ନାନା ଆହ୍ୱାନ ଓ ପରିସ୍ଥିତି ଆସିବା ସ୍ୱାଭାବିକ। ପାଶ୍ଚାତ୍ୟ ଦେଶମାନଙ୍କରେ ସାମାଜିକ ବିବର୍ତ୍ତନ ଶିଳ୍ପ ବିପ୍ଳବ ପରଠାରୁ ତ୍ୱରାନ୍ୱିତ ହୋଇଚାଲିଛି। ନୂଆ ନୂଆ ପରିସ୍ଥିତି ଭିତରୁ ମଣିଷ ନିଜର ବୁଦ୍ଧି ଦ୍ୱାରା ନୂଆ ନୂଆ ସମାଧାନର ପନ୍ଥା ବାହାର କରିଛି। କୃଷିଭିତ୍ତିକ ଗ୍ରାମୀଣ ପରିବେଶ ଓ ସେ ସମୟର ନୀତି ଆଦର୍ଶ ସାଂପ୍ରତିକ ପରିବର୍ତ୍ତିତ ସ୍ଥିତିରେ ଅପାଂକ୍ତେୟ ମନେ ହେବା ସ୍ୱାଭାବିକ। ଏହି ସ୍ଥିତିରେ ହୃଦୟର ବନ୍ଧନ ନୂଆ ଧାରାରେ ବ୍ୟକ୍ତ ହେବା ସମ୍ଭବତଃ ଅପ୍ରାସଙ୍ଗିକ ନୁହେଁ। ପାରିବାରିକ ସ୍ଥିତିରେ ପରିବର୍ତ୍ତନ ପରିପ୍ରେକ୍ଷୀରେ ବିଭିନ୍ନ ଦିବସ ପାଳନ କରିବାର ମନୋଭାବ ନିଶ୍ଚୟ ଗୁରୁତ୍ୱ ବହନ କରେ। ଆମର ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି କିଛିଟା ଭିନ୍ନ ହୋଇଥିବାରୁ ହୁଏତ ଏହା ଆମକୁ ଅତ୍ୟନ୍ତ ପ୍ରୀତିପଦ ମନେ ନ ହୋଇପାରେ। ତେବେ ୟୁରୋପୀୟ ପାଶ୍ଚାତ୍ୟ ସମାଜ ଯେଉଁ ସ୍ଥିତିରେ ରହିଛି, ଆମେ ଯେ ଅଲକ୍ଷ୍ୟରେ ସେହିପରି ଏକ ସ୍ଥିତି ଆଡକୁ ଆଗେଇ ଚାଲିଛୁ, ଏହା ମନେହୁଏ।

(ପ୍ରଗତିବାଦୀ, ୦୧.୦୭.୨୦୧୫)

# ମାନବିକ ଅଧିକାର ଓ ଅନ୍ତର୍ଜାତୀୟତା

ଆଧୁନିକ ସଭ୍ୟତାର ବିକାଶ ପଶ୍ଚାତରେ ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତିର ଯଥେଷ୍ଟ ପ୍ରଭାବ ରହିଥିବା ମନେହୁଏ। ସେହିପରି ସଭ୍ୟ ଜୀବନଦୃଷ୍ଟିର ବିକାଶ କ୍ଷେତ୍ରରେ ମାନବବାଦୀ ଜୀବନବୋଧର ବହୁ ପ୍ରେରଣା ରହିଥିବା ଜଣାଯାଏ। ସଭ୍ୟ ଜୀବନଦୃଷ୍ଟିର ମୂଲ୍ୟାୟନ କ୍ଷେତ୍ରରେ ନାନା ମାନଦଣ୍ଡ ହୁଏତ ରହିପାରେ। ଗୋଟିଏ ଜନଗୋଷ୍ଠୀ ବା ସମାଜ କ୍ଷେତ୍ରରେ ନାଗରିକ ଶୃଙ୍ଖଳାବୋଧ, ସମତାର ଭାବ ଓ ଅନ୍ୟ ପ୍ରତି ମାନବିକ ଦୃଷ୍ଟିର ପ୍ରତିଫଳନ ଯେତେ ଅଧିକ ସେହି ସମାଜ ସେତେ ସଂସ୍କୃତି-ସଂପନ୍ନ ବୋଲି ଏକ ବିଚାର ରହିଛି। ବିଶେଷକରି ମାନବିକ ଅଧିକାର ନେଇ ଯେଉଁ ଆନ୍ତର୍ଜାତିକ ସଚେତନତାର ଭାବଧାରାଟି ବିଶ୍ୱ ଦୃଶ୍ୟପଟରେ ଗୃହୀତ ହୋଇଛି, ତାହା ସଭ୍ୟତାର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ବେଶ୍ ଯୁଗାନ୍ତକାରୀ ମନେହୁଏ। ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ଯେଉଁ ତିରିଶଟି ଧାରା ଓ ଧାରାମାନଙ୍କର ଉପଧାରା ରହିଛି ତାହା ସଭ୍ୟ ଦୃଷ୍ଟିଭଙ୍ଗୀର ଏକ ସୁନ୍ଦର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ। ବିଶ୍ୱରେ ମାନବିକ ସମ୍ବନ୍ଧ କ'ଣ ହେବା ଦରକାର, ବ୍ୟକ୍ତି-ବ୍ୟକ୍ତି, ବ୍ୟକ୍ତି-ସମାଜ ଓ ସମାଜ-ସମାଜ ଭିତରେ କିପରି ସଂପର୍କ ରହିବା ଉଚିତ୍ ତାହାର ଏକ ନୈତିକ ଓ ନ୍ୟାୟପୂର୍ଣ୍ଣ ବିଚାର ମାନବିକ ଅଧିକାରର ଘୋଷଣାନାମା ସନନ୍ଦଟିରେ ବ୍ୟକ୍ତ ହୋଇଥିବା ଦେଖାଯାଏ। ସମାଜରୁ ସକଳ ଭେଦଭାବ, ଶୋଷଣ, ଅତ୍ୟାଚାର ଓ ଅନ୍ୟାୟକୁ ଦୂର କରି ଏକ ପ୍ରୀତିପୂର୍ଣ୍ଣ ସାମାଜିକ ପରିବେଶରେ ଜୀବନ ବଞ୍ଚିବାର ଯେଉଁ ଜୀବନବୋଧ ଏଥିରେ ଅଭିବ୍ୟକ୍ତ ହୋଇଥିବା ଦେଖାଯାଏ, ତାହା ବୌଦ୍ଧିକ ଓ ନୈତିକ ଉତ୍ତରଣର ସ୍ୱାକ୍ଷର ବହନ କରେ। ଏପରି ଏକ ବିଚାର ଆନ୍ତର୍ଜାତିକ ସ୍ତରରେ ଗୃହୀତ ଓ ସ୍ୱୀକୃତ ହେବା ମଣିଷ ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ବିଷୟ।

ପୃଥିବୀ ଗ୍ରହମଣ୍ଡଳରେ ଯେତେ ମଣିଷ ରହିଛନ୍ତି ବା ରହିଥିଲେ, ଆମେ ସମସ୍ତେ ଏକ ପ୍ରଜାତିର ଅନ୍ତର୍ଭୁକ୍ତ। ନାନା ପାରିବେଶିକ, ଭୌଗୋଳିକ ଓ ସାଂସ୍କୃତିକ କାରଣରୁ ଆମ ଭିତରେ ଭାଷାଗତ, ପରମ୍ପରାଗତ ଓ ଧର୍ମଗତ ପାର୍ଥକ୍ୟ ଥାଇପାରେ। ତେବେ ଆମ ଭିତରେ ଚିନ୍ତା କରିବାର ସାମର୍ଥ୍ୟ ରହିଛି। ଆମର ଆବେଗ, ଅନୁଭବ ଓ ବିଚାରବୋଧ ରହିଛି।

ଆମ ଭିତରେ ସ୍ନେହ, ପ୍ରୀତି, ମମତ୍ୱବୋଧକୁ ଆମେ ଅକ୍ଳେଶରେ ବିକଶିତ କରି ଏହାକୁ ସମଗ୍ର ମଣିଷ ସମାଜ ପ୍ରତି ପ୍ରସାରିତ କରିପାରିବା। ଏହି ଅବବୋଧରୁ ଆମ ସଂସାରରୁ ସକଳ ଭେଦଭାବ, ହିଂସା-ପ୍ରତିହିଂସା, ଅସହିଷ୍ଣୁତାକୁ ଆମେ ଚାହିଁଲେ ଦୂର କରି ଭ୍ରାତୃତ୍ୱବୋଧର ଡୋରିରେ ଛନ୍ଦି ହୋଇପାରିବା। ଏହି ଆଭିମୁଖ୍ୟକୁ ଆମେ କିପରି ଜୀବନଧାରାରେ ରୂପାନ୍ତରିତ କରି ଆମ ସଂସାରକୁ ଅଧିକ ପ୍ରୀତିପୂର୍ଣ୍ଣ କରିପାରିବା, ସେହିପରି କିଛି ମହତ୍ତର ଚିନ୍ତା କେତେକ ମାନବ-ଦରଦୀ ଶାନ୍ତିକାମୀ ବ୍ୟକ୍ତିମାନଙ୍କୁ ଗଭୀର ଭାବେ ଆଲୋଡ଼ିତ କରିଆସିଛି। ବିଶେଷକରି ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା, ହିଂସା-ପ୍ରତିହିଂସା ଓ ଅସହିଷ୍ଣୁତାର ବାୟୁମଣ୍ଡଳରୁ ଯୁଦ୍ଧର ଅବସାନ ପରେ ଜାତିସଂଘ ପ୍ରତିଷ୍ଠା ଲାଭକରିବା ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା। ସେହି ବିକ୍ଷୁବ୍ଧ ପରିବେଶରେ ମହାତ୍ମା ଗାନ୍ଧୀଙ୍କ ଅହିଂସାର ଭାବନା ବିଶ୍ୱ ବିବେକକୁ କେତେକାଂଶରେ ପ୍ରଭାବିତ କରିଥିଲା। କିଛି ରାଷ୍ଟ୍ରନୀତିଜ୍ଞ ଓ ଦାର୍ଶନିକ ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ସମତାର ଯେଉଁ ବିଚାର ବ୍ୟକ୍ତ କରିଥିଲେ ତାହା ପ୍ରତିଫଳିତ ହେଲା ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ। ପ୍ରଥମ ଧାରାଟିରେ କୁହାଗଲା ଯେ, ସମସ୍ତ ବ୍ୟକ୍ତି ମୁକ୍ତ ଓ ସମାନ ହୋଇ ଜନ୍ମ ହୋଇଛନ୍ତି। ସମସ୍ତଙ୍କର ଅଧିକାର ଓ ଆତ୍ମମର୍ଯ୍ୟାଦା ରହିଛି। ପ୍ରତ୍ୟେକଙ୍କ ଭିତରେ ବୁଦ୍ଧି ଓ ବିବେକ ରହିଛି। ସମସ୍ତେ ପରସ୍ପର ପ୍ରତି ଭ୍ରାତୃତ୍ୱର ଦୃଷ୍ଟି ନେଇ କାର୍ଯ୍ୟ କରିବା ଦରକାର।

କିନ୍ତୁ ମାନବିକ ଅଧିକାରର ଉଲଘଂନ ବିଭିନ୍ନ ସମାଜରେ ପ୍ରତିଦିନ ଘଟୁଛି। ବ୍ୟକ୍ତି ସ୍ୱାଧୀନତା ଓ ନାଗରିକ କର୍ତ୍ତବ୍ୟବୋଧ ସବୁ ସମାଜରେ ସମାନ ନୁହେଁ। ଯେଉଁ ଦେଶର ସାମାଜିକ ଜୀବନ ପ୍ରବାହରେ ବ୍ୟକ୍ତିମର୍ଯ୍ୟାଦା, ଆଇନ୍ ଓ ନାଗରିକ ଶୃଙ୍ଖଳା ପ୍ରତି ସମ୍ମାନ ରହିଛି ସେହି ସମାଜ ଉନ୍ନତ ମନେହୁଏ। ତେବେ କେତେକ ସମାଜରେ ବିଭିନ୍ନ ପ୍ରକାରର ଭେଦଭାବ ରହିଛି। ଏପରିକି ପାରିବାରିକ ହିଂସା, ସାଧାରଣ ଘଟଣା ଭାବେ ସମାଜରେ ଘଟୁଛି। ଦାରିଦ୍ର୍ୟର କଶାଘାତରେ ଅନେକ ପୁଅ ଝିଅ କଅଁଳ ବୟସରୁ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ ସଂଗ୍ରାମ କରୁଛନ୍ତି। ଦାରିଦ୍ର୍ୟ ବା ଅନ୍ୟାନ୍ୟ କିଛି ସାମାଜିକ କାରଣରୁ କେତେକ ସମାଜରେ ପିଲାମାନେ ପ୍ରାଥମିକ ଶିକ୍ଷାରୁ ବି ବଞ୍ଚିତ ହେଉଛନ୍ତି। ଏସବୁ ବି ମାନବିକ ଅଧିକାରର ଉଲଘଂନ ପରିସରକୁ ଆସୁଛି। ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଇତ୍ୟାଦି ଭାବଧାରାକୁ ଆନ୍ତର୍ଜାତିକ ସ୍ୱୀକୃତି ଦିଆଯାଇଥିଲେ ମଧ ଏହା ବାସ୍ତବରେ ଏକ ସାର୍ବଜନୀନ ଭିତ୍ତି ନେଇପାରି ନାହିଁ। ଅତୀତରେ ମାନବିକ ଅଧିକାରର ଭାବନା ହିଁ ସୃଷ୍ଟି ହୋଇନଥିଲା। ସଭ୍ୟତାର ବିକାଶଧାରାରେ ବହୁ ପରେ ମାନବିକ ମର୍ଯ୍ୟାଦା

ଓ ଅଧିକାରର ଭାବନା ମାନବବାଦୀ ବିଚାରବୋଧରୁ ରୂପ ନେଇଥିଲା । ତେବେ ମନୁଷ୍ୟର ସମ୍ମାନଜନକ ଭାବେ ବଞ୍ଚିବାର ଅଧିକାରକୁ 'ପ୍ରାକୃତିକ ନିୟମ' ଭାବେ ଏବେ ଚିତ୍ରଣ କରାଯାଉଛି । ଅବଶ୍ୟ ବହୁ ଅତୀତରୁ ସମାଜରେ ପ୍ରାକୃତିକ ନିୟମ ଭାବେ କେତେକ ବିଧିବିଧାନର ପ୍ରଚଳନ ରହିଛି । ସମସ୍ତଙ୍କର ସମାନ ଅଧିକାର ନେଇ କେତେକ ସଚେତନତା ବା ବିଧାନ ରହିଥିଲେ ବି ବିଭିନ୍ନ ସମାଜରେ ନାନା ପ୍ରକାରର ଭେଦଭାବ ରହିଆସିଛି । ବିଶେଷକରି ଆମ ଦେଶରେ ଲିଙ୍ଗଗତ ଓ ଜାତିଗତ ଭେଦଭାବ ଆମ ଧର୍ମ, ପରମ୍ପରା, ସଂସ୍କୃତି ସହ ସଂଶ୍ଳିଷ୍ଟ ହୋଇ ରହିଛି । ନାନା ଆଇନଗତ ବ୍ୟବସ୍ଥା ସତ୍ତ୍ୱେ ସାମାଜିକ ମନସ୍ତତ୍ତ୍ୱରୁ ଭେଦଭାବ ଦୂର ହୋଇପାରୁ ନାହିଁ । ହୁଏତ ଅଜ୍ଞତା, ଅଶିକ୍ଷା ଓ ଅବିବେକିତା କାରଣରୁ ଜାତିଗତ, ଧର୍ମଗତ, ଲିଙ୍ଗଗତ ଭେଦଭାବ ତିଷ୍ଠି ରହିଛି । ଏପରିକି ଭେଦଭାବକୁ ସ୍ୱୀକୃତି ଦେବା ପାଇଁ ଖଳ ଯୁକ୍ତିର ଆଶ୍ରୟ ବି ନିଆଯାଉଛି । ତେବେ ସବୁ ସମାଜରେ ଏପରି ସ୍ଥିତି ନାହିଁ । ଯେଉଁ ସମାଜରେ ଧାର୍ମିକ ରକ୍ଷଣଶୀଳତାର ପ୍ରାବଲ୍ୟ ରହିଛି, ସେହି ପରିବେଶରେ ମାନବିକ ଅଧିକାରର ଉଲଘନ ସାଧାରଣ ଘଟଣା ହୋଇ ରହିଛି ।

ଆନ୍ତର୍ଜାତିକ ଦୃଶ୍ୟପଟରେ ସମତାବୋଧ ଓ ମାନବିକ ଅଧିକାର ନେଇ ସଚେତନତା କେତେକ ଗଣତାନ୍ତ୍ରିକ ରାଷ୍ଟ୍ରରେ ବହୁ ଅତୀତରୁ ସୃଷ୍ଟି ହେଲାଣି । ଗଣତାନ୍ତ୍ରିକ ଚେତନାର ବିକାଶ ସହ କେତେକ ମନ୍ଦ ବ୍ୟବସ୍ଥା ବିରୁଦ୍ଧରେ ବିଭିନ୍ନ ରାଷ୍ଟ୍ରରେ ଜନବାଦୀ ଆନ୍ଦୋଳନମାନ ସୃଷ୍ଟି ହୋଇଛି । ପରିଣାମ ସ୍ୱରୂପ ସମାଜରୁ ଲିଙ୍ଗଭେଦ, ରଙ୍ଗଭେଦ ପରି ନାନା ସାମାଜିକ ଭେଦଭାବ ଦୂର ହେବାରେ ଲାଗିଛି । ଆଇନଗତ ପରିସରରେ ସେଥିପାଇଁ ନିୟମ ରହିଛି ଓ ତାହା ସହ ସାମାଜିକ ଚେତନାର ସ୍ତରକୁ ଉନ୍ନତ କରାଯିବାକୁ ପ୍ରୟାସ କରାଯାଉଛି । ମାନବିକ ଅଧିକାର ବିଷୟକୁ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇ ତାହାକୁ ଶିକ୍ଷା ଦିଆଯାଉଛି । ପ୍ରତ୍ୟେକ ନାଗରିକ ଯେପରି ମାନବିକ ଅଧିକାର ବିଷୟରେ ସଚେତନ ହୋଇପାରିବ ଓ ସାମାଜିକ ତଥା ରାଜନୈତିକ ସ୍ତରରେ ନିଜର ଅଧିକାରକୁ ସାବ୍ୟସ୍ତ କରିପାରିବ ସେଥିପାଇଁ ପ୍ରୟାସ ହୋଇଛି । ସମାଜର ଅନ୍ୟାୟ, ଅନୀତି ଓ ଭେଦଭାବକୁ ଦୂର କରିବା ନେଇ ନାଗରିକ ସମାଜ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିପାରିବ । ସମାଜର ନୈତିକ, ବୌଦ୍ଧିକ ଓ ମାନବିକ ଉତ୍ତରଣ କ୍ଷେତ୍ରରେ ନାଗରିକ ସମାଜ ଏକ ମୁଖ୍ୟ ଭୂମିକା ନେଇପାରିବ । ବିଶେଷକରି, ମାନବିକ ଅଧିକାରର ଉଲଘନ ହେଉଥିବା ସମାଜରେ ନାଗରିକ ସମାଜ ଯେ ଏକ ମୁଖ୍ୟ ଦାୟିତ୍ୱ ବହନ କରିପାରିବ ଏହା ନିଃସନ୍ଦେହ ମନେହୁଏ ।

ଆମେରିକାରେ ଏକଦା ରହିଥିବା ଦାସତ୍ୱ ପ୍ରଥା, ଆଫ୍ରିକାର ବର୍ଣ୍ଣ-ବୈଷମ୍ୟ ବା ଆପରଥେଡ୍, ଭାରତୀୟ ସମାଜରେ ରହିଥିବା ଜାତିଭେଦ ଓ ଅସ୍ପୃଶ୍ୟତା ଅମାନବିକ ପ୍ରଥାଗୁଡ଼ିକ ସଭ୍ୟତାର ଇତିହାସରେ କଳଙ୍କମୟ ଘଟଣା। ଜର୍ମାନୀରେ ଜିଉମାନଙ୍କର ଗଣହତ୍ୟା, ସାମ୍ପ୍ରଦାୟିକ ଦଙ୍ଗାରେ ହେଉଥିବା ହିଂସା ମାନବିକତା ବିରୁଦ୍ଧରେ ଅପରାଧ ବୋଲି ନିଆଯାଉଛି। ଅତୀତରେ ଏହି ସବୁ ଅମାନବିକ ପ୍ରଥା ଠାରୁ ଦେଶ ଦୁନିଆ ଯେ ମୁକ୍ତ ହୋଇପାରିଲାଣି ଏହା ସଭ୍ୟତାର ଇତିହାସରେ ଏକ ବଡ ସଫଳତା କହିବାକୁ ହେବ। ତେବେ ଏବେ ବି କେତେକ ରାଷ୍ଟ୍ର ଗଣ ବିଧ୍ୱଂସକାରୀ ମାରଣାସ୍ତ୍ର ନିର୍ମାଣ କରିବାକୁ ପ୍ରୟାସ କରୁଛନ୍ତି। ତାହାକୁ ବି ମାନବିକତା ବିରୁଦ୍ଧରେ ଅପରାଧ କୁହାଯାଇପାରେ। ଏହି ପରିପ୍ରେକ୍ଷୀରେ ପୃଥିବୀର ଶାନ୍ତିକାମୀ ରାଷ୍ଟ୍ରନୀତିଜ୍ଞ ଓ କେତେକ ଦାର୍ଶନିକ ବିଶ୍ୱ ସରକାରର ପରିକଳ୍ପନା କରୁଛନ୍ତି। ରାଷ୍ଟ୍ରୀୟତା, ଦେଶାତ୍ମବୋଧ ପରିବର୍ତ୍ତେ ଆନ୍ତର୍ଜାତୀୟତା ଓ ଶୁଦ୍ଧ ମାନବିକତା ହିଁ ଆଗାମୀ ବିଶ୍ୱର ଆଦର୍ଶ ହେବ ବୋଲି ଚିନ୍ତା ପ୍ରକଟ ହେବାରେ ଲାଗିଛି। ସଭ୍ୟତାର କ୍ରମ ଉତ୍ତରଣ ଧାରାରେ ମାନବିକ ଅଧିକାରର ବିଶ୍ୱ ଘୋଷଣା, ବିଶ୍ୱ ରାଷ୍ଟ୍ର ଓ ବିଶ୍ୱ ସରକାର, ଆନ୍ତର୍ଜାତିକ ମନୋଭାବ ଓ ମାନବବାଦ ସାର୍ବଜନୀନ ମୂଲ୍ୟବୋଧ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏକ ଭେଦଭାବରହିତ ପୃଥିବୀ ଓ ବିଶ୍ୱ ଭ୍ରାତୃତ୍ୱଭାବର ସଫଳ ରୂପାୟନ କ୍ଷେତ୍ରରେ ଏହି ସବୁ ଆଦର୍ଶମାନ ଯେ ଆଲୋକ ବର୍ତ୍ତିକା, ଏହା କୁହାଯାଇପାରେ।

(ପ୍ରଗତିବାଦୀ, ୧୪.୧୦.୨୦୧୫)

# ବିକାଶର ଦିଗନ୍ତ

•

ଏହା ଏକ ସାଧାରଣ ଅନୁଭବ ଓ ବୈଜ୍ଞାନିକ ସତ୍ୟ ଯେ ମଣିଷ ଏକ ସାମାଜିକ ପ୍ରାଣୀ, ମଣିଷ ଭିତରେ ରହିଛି ସାମାଜିକ ପ୍ରବୃତ୍ତି। ଶିଶୁଟିଏ ଜନ୍ମ ହେବା ପରେ ସେ ସବୁଠାରୁ ଅସହାୟ ହୋଇ ଜୀବନ ଆରମ୍ଭ କରେ। ଅନ୍ୟର ଯତ୍ନ, ସହାୟତା ଓ ସହଯୋଗରେ ସେ ଧୀରେ ଧୀରେ ବଡ଼ ହୁଏ। ତାର ସାମାଜିକ ପରିବେଶ, ଚଳଣି, ବିଶ୍ୱାସ, ଶିଷ୍ଟାଚାର, ନୀତିବୋଧ ଇତ୍ୟାଦି ବ୍ୟକ୍ତିର ଜୀବନ ପ୍ରବାହକୁ ପ୍ରଭାବିତ କରେ। ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶରେ ଶିକ୍ଷା, ସାଂସ୍କୃତିକ ଭାବଧାରା, ସମାଜର ପ୍ରଚଳିତ ବ୍ୟବସ୍ଥା ଗଭୀର ପ୍ରଭାବ ପକାଇଥାଏ। ଜଣେ ସାଧାରଣ ବ୍ୟକ୍ତି ତାର ସମାଜ, ସାମାଜିକ ମୂଲ୍ୟବୋଧ, ଜୀବନଦୃଷ୍ଟିର ଅଙ୍ଗ ହୋଇଯାଏ। ସ୍ଥଳବିଶେଷରେ କେତେ କେତେ ପ୍ରତିକୂଳ ସ୍ଥିତିର ମଧ୍ୟ ସମ୍ମୁଖୀନ ହୁଏ, ସ୍ୱାବଲମ୍ବୀ ହୋଇ ଜୀବନ ନିର୍ବାହ କରିବାକୁ ନିଜେ ସଂଗ୍ରାମ କରେ। ପରିବାର କରେ, ପରିବାର ଓ ବୃହତ୍ତର ପରିବେଶ ପାଖରେ କେତେକ ନୈତିକ ଦାୟିତ୍ୱବୋଧ ସମାପନ କରେ।

ଆଜି ସଭ୍ୟତା ଯେଉଁ ସ୍ଥିତିକୁ ଆସିଛି, ଏହା ପଶ୍ଚାତ୍‌ରେ ଏକ ସୁଦୀର୍ଘ ଇତିହାସ ଓ କାହାଣୀ ରହିଛି। ମଣିଷର ଉତ୍ପତ୍ତି ପରଠାରୁ ନିଜକୁ ଓ ନିଜର ଗୋଷ୍ଠୀକୁ ବଞ୍ଚାଇବା ପାଇଁ ମଣିଷକୁ ନାନା ସଂଗ୍ରାମ କରିବାକୁ ହୋଇଛି। ପ୍ରତିକୂଳ ପ୍ରାକୃତିକ ପରିବେଶରେ ସେ କିପରି ବଞ୍ଚିରହିବ, ସେଥିପାଇଁ ସେ ଜୀବନରେ ନାନା ସଂଘର୍ଷ କରିଛି। ଖାଦ୍ୟ ପାଇଁ ଓ ଜଳ ପାଇଁ ସେ ଅନୁକୂଳ ପରିବେଶ ବାଛିଚି ଓ ସଂଗ୍ରାମ ଭିତରେ ବଞ୍ଚିରହିଛି। ଧୀରେ ଧୀରେ ସେ ମନର ଭାବକୁ ବ୍ୟକ୍ତ କରିବାକୁ ଭାଷାର ବିକାଶ କରିଛି। ଆଦିମ ମଣିଷର ସଂସାରଟି ବହୁତ ସୀମିତ ଥିଲା ଓ ତାର ସାମାଜିକ ଗତିଶୀଳତା ଅତି ସଙ୍କୁଚିତ ହୋଇ ରହିଥିଲା। ପୃଥିବୀ ନଦୀ, ପାହାଡ଼, ପର୍ବତ, ସମୁଦ୍ର, ଜଙ୍ଗଲ ଇତ୍ୟାଦି ଦ୍ୱାରା ଭାଗ ଭାଗ ହୋଇ ରହିଥିଲା ଓ ଏକ ଅଞ୍ଚଳର ଜନଗୋଷ୍ଠୀ ଅନ୍ୟ ଅଞ୍ଚଳ ବିଷୟରେ ଜାଣିବାର ଅବକାଶ ନଥିଲା। ସୁତରାଂ କାଳକ୍ରମେ ପୃଥିବୀରେ ପାଞ୍ଚ ହଜାରରୁ ଅଧିକ ଭାଷା ସୃଷ୍ଟି ହେଲା। କାଳକ୍ରମେ କୃଷିର କିଛି ଧାରଣା ଆସିଲା ଓ ଯେବେଠାରୁ ମଣିଷ ଚାଷର ଧାରଣା ଆଣିଲା, ସେବେଠାରୁ ତାର ଯାଯାବର ଜୀବନର ପରିସମାପ୍ତି ଘଟିଲା। ଆସ୍ତେ ଆସ୍ତେ ଗ୍ରାମୀଣ ଜୀବନର ପରିବେଶ ସୃଷ୍ଟି ହେଲା ଓ ମଣିଷ ଧୀରେ ଧୀରେ ସଭ୍ୟ ହେବାକୁ ଲାଗିଲା।

ଯେତେ ସୀମିତ ଅର୍ଥରେ ହେଲେ ବି ସେ ନିଜର ବିଚାର, ବୁଦ୍ଧି ପ୍ରୟୋଗ କରି ପ୍ରକୃତିରେ ଉପଲବ୍ଧ ବସ୍ତୁକୁ ବିନିଯୋଗ କରି ବିଭିନ୍ନ ଜିନିଷ ନିର୍ମାଣ କଲା। ଗ୍ରାମୀଣ ପରିବେଶ ଲୋକସଂଖ୍ୟାର ବୃଦ୍ଧି ସହ ପ୍ରସାରିତ ହେବାକୁ ଲାଗିଲା। କାଳକ୍ରମେ କ୍ଷୁଦ୍ର କ୍ଷୁଦ୍ର ସହର ଓ ଜନବସତିମାନ ଗଢି ଉଠିଲା ଓ ସାମାଜିକ ସମ୍ବନ୍ଧ ଭିତରେ କିଛି ନୀତି, ନୈତିକତା, ଆଦର୍ଶମାନ ବିକଶିତ ହେଲା। ପ୍ରକୃତିର ଜଟିଳତା, ବିଶାଳତା ନେଇ ମଣିଷ ମନରେ ଅଲୌକିକ ଶକ୍ତି ସଂପର୍କରେ ଧାରଣାମାନ ସୃଷ୍ଟି ହେଲା। ଜୀବନର ନାନା ଘନଘଟା, ଭୟ ଓ ଅସହାୟବୋଧରୁ ଦେବ-ଦେବୀ, ଈଶ୍ୱର ବିଷୟରେ ଚିନ୍ତାର ଉଦ୍ରେକ ହେଲା। ସାମାଜିକ ବିକାଶ ଓ ବିବର୍ତ୍ତନ ପ୍ରକ୍ରିୟାରେ ବିଭିନ୍ନ ଜନଗୋଷ୍ଠୀ ମଧ୍ୟରେ ଭାଷା, ସାହିତ୍ୟ, କଳା, ସଙ୍ଗୀତ, ନୃତ୍ୟର ଅଭ୍ୟୁଦୟ ହେଲା। ଭାବନା ସୃଷ୍ଟି ହେଲା ଯେ, ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର କୌଣସି ଦେବୀ ବା ଦେବତା ଦ୍ୱାରା ନିୟନ୍ତ୍ରିତ ହେଉଛି। ଦେବୀ ବା ଦେବଙ୍କୁ ସନ୍ତୁଷ୍ଟ କଲେ ତାଙ୍କର ଆଶୀର୍ବାଦ ମିଳିବ। ଦୈବୀକରୁଣା ମିଳିଲେ ଜୀବନର ପ୍ରତିକୂଳ ପରିବେଶ ଦୂର ହୋଇପାରିବ। ସେହିପରି ବିଭିନ୍ନ ଜନଗୋଷ୍ଠୀରେ ଭାବନା ଆସିଲା ଯେ, ସେମାନଙ୍କର ଆଦିପୁରୁଷ ଏକ ଦୈବୀଶକ୍ତି। ସେମାନେ ହେଉଛନ୍ତି ଏକ ଦୈବୀଶକ୍ତିର ସୃଜନ। ସେହି ଶକ୍ତିକୁ ଆରାଧନା କଲେ ସେମାନେ ସୁଖରେ ରହିପାରିବେ। ଏହିଭଳି ଭାବନାରୁ କାଳକ୍ରମେ ନାନା ଦିଅଁ ଦେବତାର ଭାବନା ସମାଜରେ ସୃଷ୍ଟି ହେଲେ। ସମାଜ ଯେତେ ବ୍ୟବସ୍ଥିତ ରୂପ ନେଲା, ରାଜାମାନେ ସେତିକି ଶକ୍ତିଶାଳୀ ହେବାକୁ ଲାଗିଲେ। ରାଜତନ୍ତ୍ର ପୁରୁଷାନୁକ୍ରମିକ ହେଲା। କେହି କେହି ରାଜା ନିଜର ଶକ୍ତିର ପରିଚୟ ଦେବାକୁ ଅନ୍ୟ ରାଜ୍ୟ ଉପରେ ଆକ୍ରମଣ କରି ନିଜ ରାଜ୍ୟର ପରିସୀମା ବୃଦ୍ଧି କରିବାକୁ ଲାଗିଲେ। ଏହି ପ୍ରକ୍ରିୟାରେ ସମାଜରେ ସାମନ୍ତବର୍ଗ ସୃଷ୍ଟି ହେଲେ। ରାଜା, ସାମନ୍ତବର୍ଗ ଓ ପୂଜକବର୍ଗ ସମାଜର ସବୁଠାରୁ ପ୍ରଭାବଶାଳୀ ଗୋଷ୍ଠୀ ହେଲେ।

ସଭ୍ୟତାର କ୍ରମବିକାଶଧାରାରେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଏକ ଏକ ବଡ଼ ସାଂସ୍କୃତିକ ଆଲୋଡ଼ନ ଆସିଲା। ସେହି ଧାରାରେ ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ହେଲା। ପ୍ରତ୍ୟେକ ଧର୍ମ ଗୋଟିଏ ଗୋଟିଏ ଅଞ୍ଚଳର ଏକ ସାଂସ୍କୃତିକ ନବଜାଗରଣ ଥିଲା। ଜନଜୀବନକୁ ଶୃଙ୍ଖଳିତ, ନୀତିନିଷ୍ଠ ଓ ସୁସଂହତ କରିବାରେ ସେ ଯୁଗରେ ଧର୍ମମାନ ବଳିଷ୍ଠ ଭୂମିକା ନେଇଥିଲେ। ପ୍ରତ୍ୟେକ ଧର୍ମକୁ ଆଧାର କରି ଜୀବନର ମୂଲ୍ୟ, ଜଗତର ଉତ୍ପତ୍ତି, ଦୁଃଖର କାରଣ, ମୁକ୍ତି, ନିର୍ବାଣ ଇତ୍ୟାଦି ଭାବନାମାନ ସୃଷ୍ଟି ହେଲା। ପ୍ରତ୍ୟେକ ଧର୍ମ ପରମ୍ପରାରେ ବିଭିନ୍ନ କର୍ମକାଣ୍ଡ, ଆଚାର ପଦ୍ଧତି, କେତେକ ସାମାଜିକ ଶୃଙ୍ଖଳାର ଭାବନାମାନ ବ୍ୟକ୍ତ ହେଲା। ସାମାଜିକ ସଂହତି କ୍ଷେତ୍ରରେ ଧର୍ମ ଏକ ବଳିଷ୍ଠ ଭୂମିକା ନେଇପାରିଲା।

ପ୍ରତ୍ୟେକ ଧର୍ମ ସହ କେତେକ ଧର୍ମଗ୍ରନ୍ଥ ସଂଶ୍ଳିଷ୍ଟ ହେଲା । ଧର୍ମଗ୍ରନ୍ଥର ବାଣୀ ଚିରନ୍ତନ ଓ ଈଶ୍ୱର-ପ୍ରେରିତ ଜ୍ଞାନ ବୋଲି ଧର୍ମଗୋଷ୍ଠୀରେ ବିଶ୍ୱାସ ଦୃଢ ହେବାକୁ ଲାଗିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥର ତାତ୍ତ୍ୱିକ ଭାବନା ସକଳକୁ ଶାଶ୍ୱତ ମନେ କରୁଥିବା ବେଳେ ସେହି ଧାରାରେ ଜୀବନ ବଞ୍ଚିବାକୁ ପ୍ରୟାସ କରିବା ଗୋଟିଏ ଯୁଗର ଆଦର୍ଶ ଥିଲା । ଗୋଟିଏ ସଭ୍ୟତା ଓ ଧର୍ମର ଜନଗଣ ଅନ୍ୟ ସଭ୍ୟତା ବିଷୟରେ ଜାଣିବାର ସେପରି ସୁଯୋଗ ନଥିଲା । ଧର୍ମ ସକଳ ସାମାଜିକ ନିୟନ୍ତ୍ରଣର ଭିତ୍ତି ଥିଲା । ବିଶେଷକରି ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ସାଂସ୍କୃତିକ ଜୀବନ ପ୍ରବାହର ମୁଖ୍ୟ ଆଧାର ହୋଇଗଲା । ବିଶେଷକରି, ମଧ୍ୟଯୁଗୀୟ ପରିବେଶରେ ଧର୍ମର ଏକ ସର୍ବଗ୍ରାସୀ ପ୍ରଭାବ ରହିଥିଲା ଓ ସେହି ସମୟକୁ ଇତିହାସରେ ଅନ୍ଧକାରର ଯୁଗ ବୋଲି କୁହାଯାଇଛି । ଏହି ଯୁଗରେ ଜ୍ଞାନ ବିଜ୍ଞାନ କ୍ଷେତ୍ରରେ କୌଣସି ବିକାଶ ହୋଇନଥିଲା ଓ ନାନା କୁସଂସ୍କାର ଓ ବର୍ବରତା ସମାଜରେ ରହିଥିଲା ।

କାଳକ୍ରମେ ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା । ବିଜ୍ଞାନର ଆଦି ପର୍ବଟି ଥିଲା ଏକ ସଂଘର୍ଷର ଯୁଗ । ବୈଜ୍ଞାନିକ ଜ୍ଞାନ ଧାର୍ମିକ ବିଶ୍ୱାସ ସକଳକୁ ଅସତ୍ୟ ବୋଲି ପ୍ରମାଣ କରିବାକୁ ଲାଗିଲା । ଏ ପୃଥିବୀକୁ ଓ ଜୀବଜଗତକୁ କେତେ ହଜାର ବର୍ଷ ତଳେ ଈଶ୍ୱର ସୃଷ୍ଟି କରିଛନ୍ତି ବୋଲି କେତେକ ଧର୍ମରେ ଯେଉଁ ବିଶ୍ୱାସ ରହିଥିଲା ତାହା ବିଜ୍ଞାନ ଦୃଷ୍ଟିରୁ ଭ୍ରମାତ୍ମକ ବୋଲି ଭାବନା ଆସିଲା । ଆମ ପୃଥିବୀ ଯେଉଁ ସୌରମଣ୍ଡଳରେ ରହିଛି, ସେହିପରି କୋଟି କୋଟି ସୌରମଣ୍ଡଳ ବିଶ୍ୱରେ ରହିଛି । କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ଧାରାରେ ଜୀବଜଗତର ଉଦ୍ଭବ ହୋଇଛି । ମଣିଷକୁ କେଉଁ ଈଶ୍ୱର ନିଜ ସ୍ୱରୂପରେ ସୃଷ୍ଟି କରିନାହାନ୍ତି । ପୃଥିବୀ ସ୍ଥିର ନୁହେଁ । ଏହି ସବୁ ବିଶ୍ୱାସ ସକଳ ବିଜ୍ଞାନ ଆଧାରରେ ପ୍ରମାଣିତ ହେବା ପରେ ମଣିଷର ଚିନ୍ତାରାଜ୍ୟରେ ଦ୍ରୁମୂଳ ପରିବର୍ତ୍ତନର ସୂତ୍ରପାତ ହେଲା । ବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇ ଏହାର ପଥ ପ୍ରଦର୍ଶକ ହୋଇଥିବା ଜ୍ଞାନାନ୍ୱେଷୀ ବ୍ୟକ୍ତିମାନଙ୍କୁ ସେମାନଙ୍କ ସମସାମୟିକ ଯୁଗରେ ବହୁ ନିର୍ଯ୍ୟାତନା ସହିବାକୁ ପଡ଼ିଛି ଓ ଏପରିକି ଶହୀଦ ହେବାକୁ ପଡ଼ିଛି । ତେବେ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ସତ୍ୟାଧାରିତ, ପରୀକ୍ଷା ସାପେକ୍ଷ ଓ ପ୍ରଣାଳୀବଦ୍ଧ ହୋଇଥିବାରୁ ବିଜ୍ଞାନର ବିକାଶକୁ ଧର୍ମ ପ୍ରତିରୋଧ କରିପାରିଲା ନାହିଁ । ବିଜ୍ଞାନ ଯେଉଁ ବୌଦ୍ଧିକ କ୍ରାନ୍ତିର ସୂତ୍ରପାତ କଲା ତାହାର ଆଧାର ଥିଲା ପ୍ରକୃତିବାଦ ଓ ଏକ ସାର୍ବଜନୀନ ପ୍ରଣାଳୀ । ପ୍ରକୃତିରେ ଯାହା କିଛି ଘଟେ ବା ଯାହା କିଛି ରହିଛି ସେ ସବୁ ପଶ୍ଚାତ୍‌ରେ କେବଳ ପ୍ରାକୃତିକ ନିୟମ ବା କାରଣ ରହିଛି । କୌଣସି ଅତିପ୍ରାକୃତିକ ସତ୍ତା ପ୍ରାକୃତିକ ଘଟଣା ପ୍ରବାହକୁ ନିୟନ୍ତ୍ରଣ କରୁନାହିଁ । ପ୍ରକୃତିର ଜଟିଳତା ଓ ବିଶାଳତା ପୃଷ୍ଠଭୂମିରେ ପ୍ରକୃତିରେ ଅନେକ ରହସ୍ୟ ରହିଛି, ତେବେ କିଛି ଚମତ୍କାରିତା ନାହିଁ । ଜ୍ଞାନ ବିଜ୍ଞାନର ଯେତେ ଅଧିକ ବିକାଶ ହେଉଥିବ, ପ୍ରକୃତିର ରହସ୍ୟମାନ ମଣିଷ ଜାଣିବାକୁ ସମର୍ଥ ହେଉଥିବ ।

ବିଜ୍ଞାନର ବିକାଶପର୍ବର ଦୁଇଶହ ବର୍ଷ ପରେ ପ୍ରଯୁକ୍ତିର ଯୁଗ ଆରମ୍ଭ ହେଲା। ବୈଜ୍ଞାନିକ ସିଦ୍ଧାନ୍ତ ସକଳକୁ ପ୍ରୟୋଗ କରି ନାନା ଯନ୍ତ୍ର ଓ ଉପକରଣ ଯେ ନିର୍ମାଣ କରିହେବ ଏହି ଭାବନା ଯୁଗାନ୍ତକାରୀ ଥିଲା। ପ୍ରଯୁକ୍ତିର ଯୁଗ ଆସିବା ପରେ ବିଭିନ୍ନ କଳକାରଖାନାମାନ ଗଢ଼ି ଉଠିଲା। ସବୁ କ୍ଷେତ୍ରରେ ଉତ୍ପାଦନ ବହୁଗୁଣିତ ହେବାରେ ଲାଗିଲା। ସାମାଜିକ ଜୀବନ ପ୍ରବାହରେ ମଧ୍ୟ ନାନା ପରିବର୍ତ୍ତନ ଘଟିଲା। ଗ୍ରାମୀଣ ଜୀବନ ପ୍ରବାହରୁ ସହରୀ ସଭ୍ୟତା ଗଢ଼ି ଉଠିଲା। ଶିଳ୍ପ ବିପ୍ଳବର ଯୁଗ ଆସିଲା। ଗମନାଗମନରେ ଅଭୂତପୂର୍ବ ବିକାଶ ହେଲା। ବିଶେଷକରି ଏହି ଶହେ ବର୍ଷ ଭିତରେ ଏକ ନୂଆ ଦୁନିଆ ଗଢ଼ି ଉଠିଲା। ସଂପ୍ରତି ସହରାଧିକରଣ ଓ ଶିଳ୍ପର ପ୍ରସାର ଆଧୁନିକତା ଓ ବିକାଶର ମାନଦଣ୍ଡ ହୋଇଥିବା ମନେହୁଏ। ସମଗ୍ର ପୃଥିବୀରେ ସଂପ୍ରତି ଏକ ସହରୀ ଜୀବନର ପରିବେଶ ଦ୍ରୁତ ଗତିରେ ବିକଶିତ ହେବା ସାଧାରଣ ଘଟଣା ହେବାରେ ଲାଗିଛି। ନୂତନ ପ୍ରଯୁକ୍ତି, ସହରୀ ଜୀବନ, ଶିଳ୍ପର ପ୍ରସାର, କେତେ କେତେ ପ୍ରକାରର ମନୋରଞ୍ଜନ ଆଧୁନିକ ଜୀବନଶୈଳୀର ଅଙ୍ଗ ହେବାରେ ଲାଗିଛି ଓ ତାହାକୁ ହିଁ 'ବିକାଶ'ର ଚିତ୍ର ଦିଆଯାଉଛି।

ଏକ ଆଦିମ ସ୍ଥିତିରୁ ନାନା ପରିବର୍ତ୍ତନ ଦେଇ ମାନବ ସଭ୍ୟତାର ଯେଉଁ ଉତ୍ତରଣ ଘଟିଛି ତାହାର ଭବିଷ୍ୟତ ନେଇ ଏବେ କେତେକ ଆଶଙ୍କା ପ୍ରକାଶ ପାଉଛି। ବିଶେଷକରି ପରିବେଶ ପ୍ରଦୂଷଣ, ଜନସଂଖ୍ୟାର ଆଶାତୀତ ଅଭିବୃଦ୍ଧି, ତୃତୀୟ ବିଶ୍ୱର ଦାରିଦ୍ର୍ୟ ଓ ଏକ ହିଂସାତ୍ମକ ବାୟୁମଣ୍ଡଳ ପରି ନାନା ସମସ୍ୟା ମାନବ ସମାଜକୁ ପ୍ରଭାବିତ କରୁଛି। ଧୀରେ ଧୀରେ ପାରିବାରିକ ବନ୍ଧନ ଶିଥିଳ ହୋଇଯାଉଛି ଓ ମାନବିକ ମୂଲ୍ୟବୋଧ ଅବକ୍ଷୟ ହେବାରେ ଲାଗିଛି। ଏକ ଉପଭୋକ୍ତାବାଦୀ ମାନସିକତାର ପ୍ରସାର ଘଟୁଛି ଓ ମଣିଷ କ୍ରମେ କ୍ରମେ ବ୍ୟକ୍ତିକୈନ୍ଦ୍ରିକ ଓ ସ୍ୱାର୍ଥପର ହେବା ମନେହେଉଛି। ତେବେ ଆଧୁନିକ ସଭ୍ୟତାର କେତେକ ନକାରାତ୍ମକ ଚିତ୍ର ସତ୍ତ୍ୱେ ମଣିଷର ସୁଖ, ଶାନ୍ତି ବୃଦ୍ଧି ପାଇବାରେ ଲାଗିଛି। ଏହି ସ୍ଥିତିରେ ମାନବିକତାର ବିକାଶ ପାଇଁ ସାମାଜିକ ଚେତନା ସ୍ତରରେ ପରିବର୍ତ୍ତନ ଏକ ବଡ଼ ଆବଶ୍ୟକତା କହିବାକୁ ହେବ। ବିକାଶ କେବଳ ଏକ ଭୌତିକ ଅଭିବୃଦ୍ଧିକୁ ବୁଝାଏ ନାହିଁ, ଏହା ଏକ ଉନ୍ନତ, ମାନବିକ ଓ ନ୍ୟାୟନିଷ୍ଠ ମାନସିକତାର ବିକାଶକୁ ମଧ୍ୟ ବୁଝାଏ। ଭୌତିକ ଓ ନୈତିକ ବିକାଶର ସମନ୍ୱୟରେ ଏକ ଉନ୍ନତ ସମାଜ ଯେ ରୂପରେଖ ନେଇପାରିବ, ଏହା ଏକ ବଡ଼ ଉପଲବ୍ଧି କହିଲେ ଅତ୍ୟୁକ୍ତି ହେବ ନାହିଁ। ଉଦାରବାଦ, ସହିଷ୍ଣୁତା, ସାମାଜିକ ସମତା ଓ ନ୍ୟାୟବୋଧ ପ୍ରତି ପ୍ରତିବଦ୍ଧତା ଏବଂ ମାନବବାଦୀ ଜୀବନଦୃଷ୍ଟିର ବିକାଶ ମାଧ୍ୟମରେ ନୈତିକ ଚେତନାର ଯେ ବିକାଶ ହେବ ଏହା ମନେହୁଏ।

(ପ୍ରଗତିବାଦୀ, ୧୬.୦୩.୨୦୧୬)

# ବିଭାଜିତ ସମାଜ ଓ ମାନବିକ ଦୃଷ୍ଟି

ସଭ୍ୟତାର ଏହା ଏକ ବିଡମ୍ବନା ଯେ, ମଣିଷ ସମାଜ ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା ଓ ଜାତୀୟତା ଆଧାରରେ ବିଭାଜିତ ହୋଇରହିଛି । ଏହି ବିଭାଜନକୁ ନେଇ ପରସ୍ପର ଭିତରେ ତିକ୍ତତା ସୃଷ୍ଟି ହୋଇଛି । ବର୍ଣ୍ଣଗତ ବା ଲିଙ୍ଗଗତ ବିଭାଜନ ତ ପ୍ରାକୃତିକ ବିଭାଜନ । ଜାତି, ଧର୍ମ, ଜାତୀୟତା ଇତ୍ୟାଦି ସାମାଜିକ ବିଭାଜନ । ପ୍ରାକୃତିକ ବିଭାଜନ କ୍ଷେତ୍ରରେ ଏକ ବଳଶାଳୀ ଗୋଷ୍ଠୀ ଅନ୍ୟ ଗୋଷ୍ଠୀକୁ ନ୍ୟୂନ କରିବାରେ ବା ଶୋଷଣ କରିବାରେ ପ୍ରୟାସ କରିଛି । ଇତିହାସର ଗୋଟିଏ କାଳଖଣ୍ଡରେ ଶିଳ୍ପ ବିପ୍ଳବ ଆସିଥିବା ଭୂଖଣ୍ଡମାନ ଅନ୍ୟମାନଙ୍କ ତୁଳନାରେ ବିତ୍ତଶାଳୀ ହୋଇଉଠିଲେ । ଧୀରେ ଧୀରେ ସାମ୍ରାଜ୍ୟବାଦ ବିସ୍ତାରର ଯୁଗ ଆସିଲା । ସାରା ପୃଥିବୀରେ ଭୌଗୋଳିକ ସ୍ଥିତି ଜଣାପଡ଼ିଯିବା ପରେ ୟୁରୋପର ଲୋକମାନେ ଅନ୍ୟ ଅଞ୍ଚଳକୁ ରାଜନୈତିକ ସ୍ତରରେ କବଳିତ କଲେ । ବିଶେଷକରି ଏସିଆ ଓ ଆଫ୍ରିକାର ରାଷ୍ଟ୍ରମାନେ ପାଶ୍ଚାତ୍ୟ ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କର ନିୟନ୍ତ୍ରଣାଧୀନ ହେଲେ । ୟୁରୋପର ଗୋରା ଲୋକମାନେ କଳା ଲୋକମାନଙ୍କୁ ଦାସତ୍ୱର ବେଡି ପିନ୍ଧାଇଲେ । ଏପରିକି କଳା ଲୋକମାନେ ଗୋରା ଲୋକଙ୍କର ଦାସ ହେବାକୁ ଈଶ୍ୱର ସେମାନଙ୍କୁ କଳା କରିଛନ୍ତି ବୋଲି କେତେକ ଯୁକ୍ତି କଲେ । ରଙ୍ଗ-ଭେଦ ଆଧାରାରେ ମଣିଷ ସମାଜରେ ଏକ ଭେଦଭାବ ଜନିତ ମାନସିକତା ବିସ୍ତାର ଲାଭ କରିଥିବା ଜଣାଯାଏ । କେତେକ ସମାଜରେ ମହିଳାମାନଙ୍କର ସାମାଜିକ ସ୍ଥିତି ଅତ୍ୟନ୍ତ ଦୟନୀୟ ହୋଇ ରହିବା ଏକ ଐତିହାସିକ ସତ୍ୟ । ଲିଙ୍ଗଗତ ପାର୍ଥକ୍ୟକୁ ନେଇ ସମାଜରେ ପୁରୁଷ-ନାରୀ ଭେଦଭାବ ହେବା, ମାନବିକ ଅଧିକାରରୁ ବଞ୍ଚିତ ହେବା ବିଭିନ୍ନ ସମାଜରେ ରହିଆସିଥିଲା । ଏପରିକି ସତୀଦାହ ପ୍ରଥା, ବାଲ୍ୟ ବିବାହ, ମହିଳାମାନଙ୍କ ପ୍ରତି ନାନା ସାମାଜିକ କଟକଣା ସମାଜରେ ସୃଷ୍ଟି ହୋଇଥିଲା । କେତେକ ପ୍ରାକୃତିକ ପାର୍ଥକ୍ୟକୁ ନେଇ ମାନବ ସମାଜରେ ବହୁ ବର୍ବରତାର କାହାଣୀ ପ୍ରଚଳିତ ଥିଲା ।

ପ୍ରାକୃତିକ ପାର୍ଥକ୍ୟକୁ ନେଇ ସୃଷ୍ଟି ହୋଇଥିବା ଭେଦଭାବ ବ୍ୟତୀତ କେତେକ ସମାଜରେ କେତେକ ଜଟିଳ ସାମାଜିକ ଭେଦଭାବ ଉଦ୍ଭବ ହୋଇଥିଲା । ଭାରତୀୟ ସମାଜର ଜାତିପ୍ରଥା ଓ ବର୍ଣ୍ଣବ୍ୟବସ୍ଥା ଏକ ସାମାଜିକ ଭେଦଭାବ ଭାବେ ବହୁ ଅତୀତରୁ ରହିଆସିଛି ।

ବର୍ଣ୍ଣ ବ୍ୟବସ୍ଥା ଯେ ଏକ ଈଶ୍ୱରୀୟ ବିଧାନ ଏହି ଭାବନା କେତେକ ଚତୁର ଲୋକ ନିଜର ପ୍ରଭୁତ୍ୱ ବିସ୍ତାର ପାଇଁ ସୃଷ୍ଟି କରିଥିଲେ। କାଳକ୍ରମେ ଜନ୍ମଗତ ମାନଦଣ୍ଡରୁ ବୈଷମ୍ୟପୂର୍ଣ୍ଣ ସାମାଜିକ ଭେଦଭାବ ସମାଜରେ ଦୃଢ଼ ଭିତ୍ତି ନେଇଥିଲା। ଜାତି ଆଧାରରେ ସମାଜ ଭାଗ ଭାଗ ହୋଇଯିବା ଓ ଏକ ଅନ୍ୟାୟ ଓ ଭେଦଭାବମୂଳକ ପ୍ରଥାକୁ ଦୃଢ଼ କରିବା ପାଇଁ ଶାସ୍ତ୍ର, ପୁରାଣ ବି ରଚନା କରାଗଲା। ସମାଜର ପ୍ରଭାବଶାଳୀ ଓ ପ୍ରତିପତ୍ତିଶାଳୀ ଲୋକମାନେ ଏକ ନୀତିହୀନ ଓ ମାନବିକତାବିହୀନ ବ୍ୟବସ୍ଥାକୁ ପ୍ରସାର କରିବା ଓ ଦୃଢ଼ କରିବାରେ ପ୍ରୟାସ କରିଥିଲେ। ଉଚ୍ଚ-ନୀଚ ଭେଦଭାବ ଓ ଏପରିକି ମଣିଷ ଯେ ଅସ୍ପୃଶ୍ୟ ଏହିପରି କେତେକ ଭାବନା ବହୁ ଶତାବ୍ଦୀ ଧରି ସମାଜରେ ପ୍ରଚଳିତ ରହିବା, ଏକ ମନ୍ଦ ପରିବେଶର ସୂଚନା ଦିଏ।

ଊନବିଂଶ ଶତାବ୍ଦୀରେ ଜାତୀୟତାବାଦ ଭାବନା ବିକଶିତ ହେବା ଦେଖାଯାଏ। ପ୍ରତ୍ୟେକ ରାଷ୍ଟ୍ର ନିଜର ସାର୍ବଭୌମତ୍ୱ, ଜନଗୋଷ୍ଠୀ, ଭୌଗୋଳିକ ସୀମା ଓ ସରକାର ନେଇ ସଚେତନ ହେବାକୁ ଲାଗିଲା। ଏକ ରାଷ୍ଟ୍ରର ଜନଗଣଙ୍କ ଭିତରେ ଏକ ଭାବଗତ ଓ ମନସ୍ତାତ୍ତ୍ୱିକ ଏକତ୍ୱବୋଧର ଭାବନା ସୃଷ୍ଟି ହେଲା। ସ୍ଥଳବିଶେଷରେ ଭାଷା, ସଂସ୍କୃତି, ଐତିହାସିକ ଘଟଣାବଳୀ ଏକ ଜନଗୋଷ୍ଠୀ ଭିତରେ ରାଷ୍ଟ୍ରୀୟତାର ଭାବନା ସୃଷ୍ଟି କରିବା ସହ ଏକ ସଂହତିର ଆବେଗ ସୃଷ୍ଟି କଲା। ଏହି ଭାବବୋଧକୁ ନେଇ ଦେଶାତ୍ମବୋଧ ଏକ ରାଷ୍ଟ୍ରର ଆଦର୍ଶ ହେଲା। ନିଜ ରାଷ୍ଟ୍ର ପ୍ରତି ଉତ୍ତରଦାୟୀ ରହିବା ଏକ ନାଗରିକ କର୍ତ୍ତବ୍ୟ ବୋଲି ଭାବନା ଦୃଢ଼ ଭିତ୍ତି ନେଲା। ରାଷ୍ଟ୍ରର ରାଜନୈତିକ ସ୍ୱାଧୀନତା ପାଇଁ କେତେକ କ୍ଷେତ୍ରରେ ଆନ୍ଦୋଳନ ବା ବିପ୍ଳବ ସଙ୍ଘଟିତ ହେଲା। ବିଶ୍ୱରେ ଯେଉଁଠି ସାମ୍ରାଜ୍ୟବାଦ ଥିଲା, ତାହା ବିରୁଦ୍ଧରେ ରାଜନୈତିକ ଆନ୍ଦୋଳନ ମୁଣ୍ଡ ଟେକିଲା। ନିଜ ଦେଶକୁ ସ୍ୱାଧୀନ କରିବା ପାଇଁ ବା ସାମ୍ରାଜ୍ୟବାଦୀ ଶକ୍ତିର ନିୟନ୍ତ୍ରଣରୁ ମୁକ୍ତି ପାଇଁ କିଛି ବ୍ୟକ୍ତି ଆତ୍ମବଳି ଦେଇଛନ୍ତି। ରାଷ୍ଟ୍ରୀୟ ଚେତନା ଦେଶାତ୍ମବୋଧରେ ରୂପାନ୍ତରିତ ହୋଇ ଏକ ଦେଶର ନାଗରିକଙ୍କୁ ସଂହତି ସୂତ୍ରରେ ଆବଦ୍ଧ କଲା। ଏକ ରାଷ୍ଟ୍ରରେ ଯେତେ ଭିନ୍ନତା ଓ ଏପରିକି ଭେଦଭାବ ଥିଲେ ମଧ୍ୟ ସବୁ ନାଗରିକଙ୍କୁ ରାଷ୍ଟ୍ରୀୟତା ଏକ ସଂହତି ସୂତ୍ରରେ ଆବଦ୍ଧ କରିପାରୁଛି। ସମସ୍ତ ନାଗରିକ ଦେଶର ସଂହତି, ସ୍ୱାଧୀନତା ଓ ସାର୍ବଭୌମତ୍ୱ ପ୍ରତି ଉତ୍ତରଦାୟୀ ରହିବା ସେମାନଙ୍କର ଏକ ନୈତିକ କର୍ତ୍ତବ୍ୟ ବୋଲି ବିଚାର କରାଯାଉଛି। ତେବେ ପୃଥିବୀରେ ପ୍ରାୟ ଦୁଇ ଶହ ରାଷ୍ଟ୍ର ରହିଛନ୍ତି। ପ୍ରତ୍ୟେକ ରାଷ୍ଟ୍ରର ସାର୍ବଭୌମତ୍ୱ, ଅଖଣ୍ଡତା ଓ ରାଜନୈତିକ ଅସ୍ମିତା ତାର ନାଗରିକଙ୍କ ପାଇଁ ସ୍ୱାଭିମାନର ପ୍ରଶ୍ନ ହୋଇଛି।

ତେବେ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ବିଭେଦ ଓ ବିଦ୍ୱେଷ ନାନା କାରଣ ଯୋଗୁ ରହିଆସିଛି । ସେହି ଧାରାରେ ଗୋଟିଏ ଦେଶର ଜନଗଣ ଅନ୍ୟ ଦେଶର ଜନଗଣଙ୍କୁ ଭ୍ରାତୃତ୍ୱର ଦୃଷ୍ଟିରେ ଦେଖିପାରୁ ନାହାନ୍ତି । ଅତୀତରେ ରାଜ୍ୟ-ରାଜ୍ୟ ମଧ୍ୟରେ ଯେପରି ଯୁଦ୍ଧ ଓ ବିଭୀଷିକାର ପରିବେଶ ରହିଥିଲା ସାଂପ୍ରତିକ ସ୍ଥିତିରେ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ସାମରିକ ପ୍ରତିଯୋଗିତା ଓ କିଛି ତିକ୍ତତା ରହିଛି । ତାର ପ୍ରତିଫଳନ ଦୁଇ ଦେଶର ଜନଗଣଙ୍କ ମଧ୍ୟରେ ବିଭେଦତାର କାରଣ ହେଉଛି । ଏହି ବିଭେଦତା ରାଜନୈତିକ ସ୍ତରରେ ସୀମାବଦ୍ଧ ନ ରହି, ଏହା ନାନା ସାମାଜିକ ଓ ସାଂସ୍କୃତିକ ସ୍ତରକୁ ପ୍ରସାରିତ ହେଉଛି । ଏପରିକି ଦୁଇ ପଡୋଶୀ ରାଷ୍ଟ୍ର ଭିତରେ ଯେତେ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ସାମଞ୍ଜସ୍ୟ ଥିଲେ ବି ରାଜନୈତିକ କାରଣରୁ ସେମାନଙ୍କ ମଧ୍ୟରେ ବିଦ୍ୱେଷ ସୃଷ୍ଟି ହେଉଛି । ପ୍ରତ୍ୟେକ ରାଷ୍ଟ୍ର ଅନ୍ୟ ପଡୋଶୀ ରାଷ୍ଟ୍ର ଠାରୁ କିପରି ପ୍ରତିରକ୍ଷା କ୍ଷେତ୍ରରେ ଅଧିକ ଶକ୍ତିଶାଳୀ ହେବ ସେ ପାଇଁ ପ୍ରୟାସ କରୁଛି । ଏହି ପ୍ରକ୍ରିୟାରେ ପ୍ରତ୍ୟେକ ଦେଶର ଏକ ବିପୁଳ ପୁଞ୍ଜି ପ୍ରତିରକ୍ଷା କ୍ଷେତ୍ରରେ ବ୍ୟୟ ହେଉଛି । ଯଦି ପ୍ରତିରକ୍ଷା ଖର୍ଚ୍ଚକୁ ସମାଜ ହିତକର ଲକ୍ଷ୍ୟରେ ବ୍ୟୟ କରାଯାନ୍ତା ତେବେ ପୃଥିବୀରୁ ସକଳ ଦାରିଦ୍ର୍ୟର ବିଲୋପ ସମ୍ଭବପର ହୋଇପାରନ୍ତା । ବିଂଶ ଶତାବ୍ଦୀର ବିଶ୍ୱଯୁଦ୍ଧ ପରଠାରୁ ପ୍ରତ୍ୟେକ ରାଷ୍ଟ୍ର ନିଜର ପ୍ରତିରକ୍ଷା କ୍ଷେତ୍ରକୁ ଉନ୍ନତ କରିବା ପାଇଁ ପ୍ରୟାସ କରିଆସୁଛି । ଏହି ଧାରାରେ ପ୍ରକୃତିର ବହୁ ଉନ୍ନତ ଉପାଦାନ ଓ ସମ୍ପଦ ବିଲୀନ ହେବାରେ ଲାଗିଛି ।

ଏତଦ୍‌ବ୍ୟତୀତ ପୃଥିବୀର ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ ଓ ଅର୍ଥନୈତିକ ଭେଦଭାବ ଉତ୍କଟ ହୋଇ ରହିଛି । ସମାଜର ମୁଷ୍ଟିମେୟ ଲୋକ ବହୁ ସମ୍ପଦ ଓ ପୁଞ୍ଜିର ଅଧିକାରୀ ହୋଇ ରହିବା ବେଳେ ଅଧିକାଂଶ ଲୋକ ଜୀବନର ନିମ୍ନତମ ଆବଶ୍ୟକତା ପୂରଣ କରିପାରୁ ନାହାନ୍ତି । ସମାଜ ଅର୍ଥନୈତିକ ମାନଦଣ୍ଡରୁ ମଧ୍ୟ ବିଭାଜିତ ହୋଇ ରହିଛି । ରାଷ୍ଟ୍ରର ନାନା ଜନମଙ୍ଗଳକାରୀ ଯୋଜନା ସତ୍ତ୍ୱେ ସବୁ ଲୋକଙ୍କର ଜୀବନର ଆର୍ଥିକ ମାନ ଉନ୍ନତ ହୋଇପାରୁ ନାହିଁ । ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ବାଳଶ୍ରମିକ, ଅସ୍ୱାସ୍ଥ୍ୟକର ଜୀବନ ଭିତରେ ସମାଜର ବହୁ ଲୋକ ରହିଛନ୍ତି । ଏହି ସ୍ଥିତି ଥିବା ଦେଶମାନଙ୍କରେ ସାମାଜିକ ଜୀବନଧାରାରେ ସନ୍ତ୍ରାସବାଦ, ହିଂସା, ପ୍ରତିହିଂସାର ପରିବେଶ ଲାଗିରହିଛି । ସମାଜରେ ଏକ ସୁସ୍ଥ, ସଂହତିପୂର୍ଣ୍ଣ ଓ ସମତାର ପରିବେଶ ସୃଷ୍ଟି ହୋଇପାରୁ ନାହିଁ ।

ମାନବ ସମାଜକୁ ଧର୍ମ ବି ବିଭାଜିତ କରି ରଖିଛି । ଗୋଟିଏ ସମୟରେ ଧର୍ମ ଥିଲା ସାମାଜିକ ନିୟନ୍ତ୍ରଣର ମୂଳଭିତ୍ତି । ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର

ଏକ ସାଂସ୍କୃତିକ ଜାଗରଣ ଭାବେ ଉଦ୍ଭବ ହୋଇଥିଲା। କେତେକ ତାତ୍ତ୍ୱିକ ଭାବନା, କର୍ମକାଣ୍ଡ, ଧର୍ମଗ୍ରନ୍ଥ, କିଛି ନୈତିକ ବିଧାନ, ବିଭିନ୍ନ ବିଶ୍ୱାସ ଓ ନାନା କାହାଣୀ କିମ୍ବଦନ୍ତୀକୁ ନେଇ ପ୍ରତ୍ୟେକ ଧର୍ମର ଆଧାର ଗଢ଼ି ଉଠିଥିଲା। ସାମାଜିକ ବିକାଶ ଓ ବିବର୍ତ୍ତନ ପ୍ରକ୍ରିୟାରେ ଧର୍ମ ଏକ ବଳିଷ୍ଠ ସାଂସ୍କୃତିକ ପ୍ରବାହ ଭାବେ ଏକ ଏକ ଭୂଖଣ୍ଡର ଜନଗୋଷ୍ଠୀର ସଂହତି ଓ ଅସ୍ମିତାର ପ୍ରଶ୍ନ ହେଲା। ପରିଣାମତଃ ଧାର୍ମିକ ବିଚାରବୋଧକୁ ନେଇ ମାନବ ସମାଜ ଧର୍ମଭିତ୍ତିରେ ବିଭାଜିତ ହେଲା। ପ୍ରତ୍ୟେକ ଧର୍ମର ରକ୍ଷଣଶୀଳ ଗୋଷ୍ଠୀ ନିଜ ଧର୍ମକୁ ମହାନ୍, ଈଶ୍ୱରୀୟ ବିଧାନ ଓ ଅଲଂଘ୍ୟ ବୋଲି ବିଚାର କରି ଅନ୍ୟ ଧର୍ମଗୋଷ୍ଠୀ ପ୍ରତି ଏକ ଅସୂୟାର ଭାବନା ସୃଷ୍ଟି କଲେ। ସାମ୍ପ୍ରଦାୟିକତା ସାମାଜିକ ଭେଦଭାବ ପାଇଁ ଆୟୁଧ ହୋଇପାରିଲା। ବିଶେଷକରି ଏକ ବହୁ ଧର୍ମୀୟ ସମାଜରେ ସାମ୍ପ୍ରଦାୟିକତା ଏକ ଅସୂୟା ଓ ଅସହିଷ୍ଣୁତାର ମାନସିକତା ସୃଷ୍ଟି ହେଲା। ଧର୍ମଗତ ବିଶ୍ୱାସରୁ ସମାଜର ସଂପ୍ରୀତି, ଭ୍ରାତୃତ୍ୱଭାବ ବହୁ ଭାବରେ ଆହ୍ୱାନର ସମ୍ମୁଖୀନ ହେବା ଦେଖାଯାଏ। ଧର୍ମକୁ ଆଧାର କରି ନାନା ସାମ୍ପ୍ରଦାୟିକ ସଂଘର୍ଷ, ରାଷ୍ଟ୍ରର ବିଭାଜନ ଓ ହିଂସାତ୍ମକ ପରିବେଶ ମାନବ ସମାଜକୁ ଆକ୍ରାନ୍ତ କରିଥିବାର ବହୁ ଲୋମହର୍ଷଣ କାହାଣୀ ଇତିହାସରୁ ଜଣାଯାଏ।

ଏହା ବିଡମ୍ବନା ଯେ, ମାନବ ସମାଜ ନାନା ଭାବରେ ଓ ବିଭିନ୍ନ ଅସ୍ମିତା ଆଧାରରେ ଭାଗ ଭାଗ ହୋଇରହିଛି। ଏହା ସତ୍ତ୍ୱେ ସବୁ ସଭ୍ୟତାରେ ଓ ସଭ୍ୟତାର ଇତିହାସରେ କେତେକ ମାନବହିତୈଷୀ ବ୍ୟକ୍ତି ବିଶ୍ୱଦୃଷ୍ଟିର ଭାବନା ବ୍ୟକ୍ତ କରିଆସିଛନ୍ତି। ସବୁ ମଣିଷଙ୍କ ଭିତରେ ଭ୍ରାତୃତ୍ୱର ବନ୍ଧନ ପାଇଁ ନିଜ ପ୍ରାଣର ଉଚ୍ଚାକାଂକ୍ଷା ପ୍ରକାଶ କରିଛନ୍ତି। ସମସ୍ତ ଭେଦଭାବର ଊର୍ଦ୍ଧ୍ୱକୁ ଯାଇ ବିଶ୍ୱପ୍ରୀତିର ବାର୍ତ୍ତା ସେହି ମନୀଷୀମାନେ ସେମାନଙ୍କ ବିଚାର ଓ ଲେଖା ମାଧ୍ୟମରେ ଶୁଣାଇଛନ୍ତି। ଏହି ମନୀଷୀମାନେ ହିଁ ହେଉଛନ୍ତି ବିଶ୍ୱବିବେକର ପ୍ରତିନିଧି ଓ ମାନବୀୟତାର ପ୍ରତୀକ। ସେହି ମାନବୀୟ ବାର୍ତ୍ତା ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ପ୍ରତିଫଳିତ ହେବ ଜୀବନର ଗୁଣାତ୍ମକ ମାନରେ ସେତେ ସକାରାତ୍ମକ ପରିବର୍ତ୍ତନ ହେବ। ମାନବିକ ମୂଲ୍ୟବୋଧର ସାର୍ବଜନୀନ ପ୍ରସାର ଦ୍ୱାରା ହିଁ ଏକ ମହତ୍ତର ସଂସ୍କୃତିର ପରିବେଶ ସୃଷ୍ଟି ହେବ।

(ପ୍ରଗତିବାଦୀ, ୨୩.୦୩.୨୦୧୬)

# ବିକାଶ ଓ ସଙ୍କଟ

ମାନବ ସଭ୍ୟତାର କ୍ରମବିକାଶର ଧାରାକୁ ଐତିହାସିକ ଓ ସମାଜବିଜ୍ଞାନୀମାନେ ନାନା ଭାବରେ ଅନୁଶୀଳନ କରିଛନ୍ତି । ଆଜି ସଭ୍ୟତା ଯେଉଁ ସ୍ତରରେ ପହଞ୍ଚିଛି ତାହା ପଶ୍ଚାତ୍‌ରେ ଏକ ସୁଦୀର୍ଘ ଇତିହାସ ରହିଛି । କେତେ ଉତ୍ଥାନ ପତନ ଦେଇ ସଭ୍ୟତାର ଅଗ୍ରଗତି ଘଟିଛି । ସଂପ୍ରତି ମଣିଷଜାତି ଯେଉଁ ଜ୍ଞାନ, କୌଶଳ ଓ ବିଚାରଶୀଳ ପ୍ରଜ୍ଞାର ଅଧିକାରୀ ହୋଇଛି ତାହା ପଶ୍ଚାତରେ ବହୁ ପ୍ରୟାସ, ଗବେଷଣା ଓ ଅନୁସନ୍ଧିତ୍ସାର କାହାଣୀ ରହିଛି । ଜ୍ଞାନ ଓ କୌଶଳର ସର୍ବଦା କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତି ହୋଇଚାଲିଛି ଓ ମଣିଷ ପ୍ରକୃତି ଉପରେ ଅଧିକରୁ ଅଧିକ ନିୟନ୍ତ୍ରଣ ଆଣିବାରେ ସମର୍ଥ ହୋଇଛି । ଏକ ଆଦିମ ସ୍ଥିତିରୁ ନାନା ପରିବର୍ତ୍ତନ ଓ ବିକାଶ ମଧ୍ୟ ଦେଇ ସମାଜର ଅଗ୍ରଗତି ଘଟିଛି । ନାନା ସାମାଜିକ, ରାଜନୈତିକ, ସାଂସ୍କୃତିକ ଓ ଶୈକ୍ଷିକ ଅନୁଷ୍ଠାନମାନ ସାମାଜିକ ଜୀବନ ପ୍ରବାହରେ କେତେ କେତେ ଆଲୋଡନ ଆଣିଛନ୍ତି । ଧର୍ମ, ନୈତିକତା, ଶିକ୍ଷା, ସଭ୍ୟ ଜୀବନଦୃଷ୍ଟି ସମାଜକୁ ସୁବ୍ୟବସ୍ଥିତ କରିବାରେ ବିଚାର ସୃଷ୍ଟି କରିଛି । ବିଶେଷତଃ ବୈଜ୍ଞାନିକ ଅନୁଶୀଳନ ବିଶାଳ ପ୍ରକୃତିର ରହସ୍ୟକୁ ଆବିଷ୍କାର କରି ଜ୍ଞାନର ପରିସୀମାକୁ ବୃଦ୍ଧି କରିବାରେ ସହାୟକ ହୋଇଛି । କେତେ କେତେ ପ୍ରାଯୁକ୍ତିକ ଜ୍ଞାନ ଜୀବନ ପ୍ରବାହକୁ ସୁଖମୟ କରିବାରେ ସାହାଯ୍ୟ କରିଛି । ମଣିଷର ଅନୁସନ୍ଧିତ୍ସା, ପ୍ରୟାସ ଓ ପ୍ରକୃତି ଉପରେ କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ନିରବଚ୍ଛିନ୍ନ ଭାବେ ଅଗ୍ରଗତି କରିଚାଲିଛି । ଏହିସବୁର ପରିଣାମରୁ ଏକ ଆଦିମ ସ୍ଥିତିରୁ ସାମଗ୍ରିକ ଭାବେ ମଣିଷ ସମାଜ ଏକ ସୁଖମୟ ଅବସ୍ଥାକୁ ଆସିବାରେ ସମର୍ଥ ହୋଇଛି ।

ତେବେ ବିଡମ୍ବନାର ବିଷୟ ସଭ୍ୟତାର ଯେତେ ଉତ୍ତରଣ ଘଟିଲେ ମଧ୍ୟ ମାନବ ସମାଜରୁ ସମସ୍ୟା ଓ ସଙ୍କଟ ଦୂର ହେଉନାହିଁ । ସବୁ ସମୟରେ ଜୀବନ ସହିତ କିଛି ସଙ୍କଟ ସଂଶ୍ଳିଷ୍ଟ ହୋଇରହିଛି । ଆଦିମ ସମାଜରେ ହେଉ ବା ଆଜିର ଆଧୁନିକ ଜୀବନଧାରାରେ ହେଉ ଏକ ସଙ୍କଟମୁକ୍ତ ଅବସ୍ଥା ସାରା ପୃଥିବୀରେ ଭିତ୍ତି ନେଇପାରି ନାହିଁ । ଯେତେବେଳେ କିଛି କିଛି ଜ୍ଞାନ, କୌଶଳ ଜନିତ ସାମର୍ଥ୍ୟ ମଣିଷ ହାସଲ କରିବାରେ ସମର୍ଥ ହୋଇଛି, ତାହା ସଭ୍ୟତାର ଅଗ୍ରଗତିରେ ସାହାଯ୍ୟ କରିଛି । ଗୋଟିଏ ଗୋଟିଏ ଉଦ୍ଭାବନ ବା ଆବିଷ୍କାର

ଜୀବନଧାରାକୁ ସରସ, ସୁଗମ କରିବାରେ ସାହାଯ୍ୟ କରିଛି ତେବେ ତାହା ସହିତ ନୂଆ ସମସ୍ୟା ବି ମୁଣ୍ଡ ଟେକିଛି । ସଭ୍ୟତାର ଆରମ୍ଭ ପର୍ବରେ କୃଷି ଜନିତ ଜ୍ଞାନ ବା ପଶୁପାଳନ କରିବାର ସାମର୍ଥ୍ୟରୁ ବିକାଶର ଧାରା ଆରମ୍ଭ ହୋଇଛି । ତେବେ କୃଷିର ଜ୍ଞାନ ସହ ନରବଳି ଓ ପଶୁବଳି ଦ୍ୱାରା ଅଧିକ ଫସଲ ଉତ୍ପାଦନ ହେବ, ଏହି ଭାବନା ସୃଷ୍ଟି ହୋଇଛି । ଏହାର ପରିଣାମରୁ ନାନା ଧାର୍ମିକ ଆବେଗ ଓ ପାରଲୌକିକ ବିଶ୍ୱାସ ଜନିତ ଅହେତୁକ ଭାବନାମାନ ସମାଜରେ ବିସ୍ତାରଲାଭ କରିଛି । ଘୋଡାମାନଙ୍କୁ ଗୃହପାଳିତ ପ୍ରାଣୀ କରିବାର ସାମର୍ଥ୍ୟ ମଣିଷର ଗତିଶୀଳତା ବୃଦ୍ଧି ଦିଗରେ ସହାୟକ ହୋଇଛି । ତେବେ ଯେଉଁମାନେ ପ୍ରଥମେ ଏହି ସାମର୍ଥ୍ୟ ହାସଲ କରିଛନ୍ତି, ସେମାନେ ଅନ୍ୟ ଭୂଖଣ୍ଡର ଲୋକମାନଙ୍କୁ ଆକ୍ରମଣ କରି ସେମାନଙ୍କୁ ଶୋଷଣ କରିଛନ୍ତି । ସାମାଜିକ ବିକାଶଧାରାରେ ବିଭିନ୍ନ ଭୂଖଣ୍ଡରେ ଆସିଥିବା ସାଂସ୍କୃତିକ ଜାଗରଣ ପରବର୍ତ୍ତୀ ସମୟରେ ଆନୁଷ୍ଠାନିକ ଧର୍ମର ଭିତ୍ତି ନେବା ସୁବିଦିତ ଘଟଣା । ସାମାଜିକ ଜୀବନ ପ୍ରବାହକୁ ସୁବ୍ୟବସ୍ଥିତ, ଶୃଙ୍ଖଳିତ କରିବାରେ ତଥା ନୀତି ଓ ନୈତିକତାର ବିଚାର ଦେବାରେ ପ୍ରତ୍ୟେକ ଧର୍ମ ଗୋଟିଏ ବଡ଼ ଭୌଗୋଳିକ ଭୂଖଣ୍ଡରେ ମୁଖ୍ୟ ଭୂମିକା ନିର୍ବାହ କରିଛି । ଗୋଟିଏ ଭୂଖଣ୍ଡର ସଭ୍ୟତା, ସଂସ୍କୃତି, କଳା, ସାହିତ୍ୟ, ଭାସ୍କର୍ଯ୍ୟ ନିର୍ମାଣ କରିବାରେ ଧର୍ମ ପ୍ରମୁଖ ଭୂମିକା ନେଇଛି । ତେବେ ବିଡମ୍ବନାର ବିଷୟ ପରବର୍ତ୍ତୀ ସମୟରେ ଧର୍ମକୁ ଆଧାର କରି ସାମ୍ପ୍ରଦାୟିକ ବିଦ୍ୱେଷ ମାନବ ସମାଜକୁ ଭାଗ ଭାଗ କରିଛି । ଧର୍ମକୁ ନେଇ ପୃଥିବୀପୃଷ୍ଠରେ ବହୁ ଯୁଦ୍ଧ, ବିଭୀଷିକା, ତିକ୍ତତାର ପରିବେଶ ସୃଷ୍ଟି ହୋଇଛି । ଏତଦ୍ ବ୍ୟତୀତ ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ, ସମତାର ଭାବନା ସୃଷ୍ଟି ଦିଗରେ, ମାନବିକ ଅଧିକାରର ପ୍ରସାର ପୃଷ୍ଠଭୂମିରେ ଧାର୍ମିକ ମାନସିକତା ସବୁଠାରୁ ବଡ ପ୍ରତିବନ୍ଧକ ହୋଇଛି । ଧାର୍ମିକ କୁସଂସ୍କାର, ରୂଢ଼ିବାଦ, ସନ୍ତ୍ରାସବାଦ ଓ ମୌଳବାଦ ସଭ୍ୟତାର ସୁସ୍ଥ ବିକାଶ କ୍ଷେତ୍ରରେ ଅନ୍ତରାୟ ହୋଇଆସିଛି । ସପ୍ତଦଶ ଶତାବ୍ଦୀରେ ବିଜ୍ଞାନର ଯୁଗ ଆରମ୍ଭ ହେବାରୁ ତାହାର ପରିଣାମରୁ ୟୁରୋପରେ ଆଧୁନିକ ପ୍ରଯୁକ୍ତି ଓ ଶିଳ୍ପ ବିପ୍ଳବର ପରିବେଶ ଆସିଛି । ପ୍ରଚୁର ଉତ୍ପାଦନ, ସହରୀ ସଭ୍ୟତାର ବିକାଶ, ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ପ୍ରଚଳନ, ସାର୍ବଜନୀନ ଶିକ୍ଷାର ପରିସର ଇତ୍ୟାଦି ଧୀରେ ଧୀରେ ଦୃଢ଼ ଭିତ୍ତି ନେଇଛି । ତେବେ ଏହା ସହିତ ଶିଳ୍ପବିପ୍ଳବର ପରିଣାମରୁ ଶିଶୁ ଶ୍ରମିକ ପ୍ରଥା, ଅର୍ଥନୈତିକ ଶୋଷଣ, ସାମ୍ରାଜ୍ୟବାଦର ବିସ୍ତାର ମନ୍ଦ ସ୍ଥିତିର ଉଦ୍ଭବ ହୋଇଛି । ପୁଞ୍ଜିବାଦ, ସାମ୍ରାଜ୍ୟବାଦ ଓ ଅର୍ଥନୈତିକ ଶୋଷଣ ମାନବ ସମାଜରେ ବହୁ ଯୁଦ୍ଧ ଓ ବିଦ୍ୱେଷର ମନୋଭାବ ସୃଷ୍ଟି କରିଛି । ଦୁଇ ଦୁଇଟି ବିଶ୍ୱଯୁଦ୍ଧ ମାନବ ଇତିହାସରେ ସବୁଠାରୁ କଳଙ୍କମୟ ପରିବେଶ ସୃଷ୍ଟି କରିଥିବା ମନେହୁଏ ।

ବିଂଶ ଶତାବ୍ଦୀରେ ବିଜ୍ଞାନ ଏକ ନିର୍ଣ୍ଣାୟକ ସ୍ଥିତିକୁ ଆସିଛି। ଜ୍ଞାନବିଜ୍ଞାନର ଦିଗନ୍ତ ନାନା ଭାବରେ ବିସ୍ତାରଲାଭ କରିଛି। ପ୍ରକୃତିର ବହୁ ରହସ୍ୟକୁ ଉଦ୍‌ଘାଟନ କରିବାରେ ମଣିଷ ସମର୍ଥ ହୋଇଛି। ଶହେ ବର୍ଷ ତଳେ ଅଚିନ୍ତନୀୟ ଥିବା ମହାକାଶ ଯାତ୍ରା କରିବାର ଜ୍ଞାନ ମଣିଷ ହାସଲ କରିଛି। ବହୁ ଦୁରାରୋଗ୍ୟ ବ୍ୟାଧିମାନଙ୍କୁ ନିୟନ୍ତ୍ରଣ କରିବାର ଜ୍ଞାନ ଆସିଛି। ଗମନାଗମନ କ୍ଷେତ୍ରରେ ଆଶାତୀତ ସଫଳତା ମିଳିପାରିଛି। ସମଗ୍ର ପୃଥିବୀ ଏକ କ୍ଷୁଦ୍ର ଗ୍ରାମରେ ପରିଣତ ହୋଇଛି। ଶିକ୍ଷା ସାର୍ବଜନୀନ ହୋଇଛି ଓ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନକୁ ଆନ୍ତର୍ଜାତିକ ସ୍ୱୀକୃତି ମିଳିପାରିଛି। ଉନ୍ନତ ଦେଶମାନଙ୍କରେ ଜୀବନର ଭୌତିକ ଓ ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସିପାରିଛି। ସାରା ପୃଥିବୀରେ ଏକ ଆନ୍ତର୍ଜାତିକ ମନୋଭାବ ଓ ସାର୍ବଜନୀନ ଜୀବନଦୃଷ୍ଟି ସୃଷ୍ଟି ହେବାରେ ଲାଗିଛି। ମାନବ ସଭ୍ୟତାର ଇତିହାସରେ ଏସବୁ ଉଲ୍ଲେଖନୀୟ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ। ତେବେ ବିଡମ୍ବନାର ବିଷୟ ଜ୍ଞାନକୁ ମନ୍ଦ ଦିଗରେ ପ୍ରୟୋଗ କରିବାର ଦୁର୍ବୁଦ୍ଧି ମଧ୍ୟ ସୃଷ୍ଟି ହୋଇଛି। ଗଣବିଧ୍ୱଂସକାରୀ ମାରଣାସ୍ତ୍ର ବି ମଣିଷ ନିର୍ମାଣ କରିବାରେ ବହୁ ପ୍ରାକୃତିକ ସାଧନକୁ ଧ୍ୱଂସ କରିଚାଲିଛି। ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ନାନା ବିଦ୍ୱେଷ ମନୋଭାବରୁ ପ୍ରତ୍ୟେକ ରାଷ୍ଟ୍ର ଆଣବିକ ଅସ୍ତ୍ର ନିର୍ମାଣରେ ସ୍ୱାବଲମ୍ବୀ ଓ ଶକ୍ତିଶାଳୀ ହେବାକୁ ପ୍ରୟାସ କରୁଛି ଓ ପ୍ରକାରାନ୍ତରେ ସଭ୍ୟତା ପାଇଁ ବିପଦପୂର୍ଣ୍ଣ ପରିବେଶ ସୃଷ୍ଟି କରିଚାଲିଛି। ସେହିପରି ଏକ ଉପଭୋକ୍ତାବାଦୀ ଜୀବନଶୈଳୀ ପୃଥିବୀର ପ୍ରାକୃତିକ ପରିବେଶ ପାଇଁ ବଡ଼ ଆହ୍ୱାନ ସୃଷ୍ଟି କରିବାରେ ଲାଗିଛି। ପ୍ରାକୃତିକ ପ୍ରଦୂଷଣ ଦ୍ରୁତଗତିରେ ବୃଦ୍ଧି ପାଇବାରେ ଲାଗିଛି ଯାହା ଭବିଷ୍ୟତରେ ଏକ ଭୟଙ୍କର ପରିବେଶ ସୃଷ୍ଟି କରିବ ବୋଲି କେତେ ଆଶଙ୍କା ପ୍ରକାଶ ପାଉଛି। ଜ୍ଞାନବିଜ୍ଞାନର ବହୁ ବିକାଶ, ବିଜ୍ଞାନର ଅଭୂତପୂର୍ବ ସଫଳତା, ଆନ୍ତର୍ଜାତିକ ମନୋଭାବର ଅଭ୍ୟୁଦୟ ଓ ବହୁ ବିଶ୍ୱ ସଙ୍ଗଠନ ସୃଷ୍ଟି କରିବାରେ ମଣିଷ ଅନେକ ସଫଳତା ହାସଲ କରିପାରିଛି। ଏହା ସହିତ ସମଗ୍ର ବିଶ୍ୱକୁ କ୍ଷୁଧାମୁକ୍ତ, ରୋଗମୁକ୍ତ ଓ ଭେଦଭାବମୁକ୍ତ କରିବା ପାଇଁ ବିଭିନ୍ନ ଦେଶର ମାନବବାଦୀ, ହେତୁବାଦୀ ଓ ମହାକାଂକ୍ଷୀ ବ୍ୟକ୍ତିମାନେ ନିଜର ସଂପୃକ୍ତି ବ୍ୟକ୍ତ କରିଆସୁଛନ୍ତି।

ଏହିସବୁ ସକାରାତ୍ମକ ପରିସ୍ଥିତି ସତ୍ତ୍ୱେ ତଥାପି ଆମ ସଂସାରରେ ବହୁ ଅଜ୍ଞତା, ଅମାନବିକତା, ଅହେତୁକ ମାନସିକତା ଓ ଅନ୍ୟାୟର ଅନେକ ପ୍ରାବଲ୍ୟ ରହିଛି। ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ବହୁ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ବାଳଶ୍ରମିକ ପ୍ରଥା, ନାନା ଜାତିଆଣ ଭେଦଭାବ ଓ ସାମ୍ପ୍ରଦାୟିକ ବିଦ୍ୱେଷ ବିସ୍ତାରଲାଭ କରି ରହିଛି। ସୀମା ପାର ଆତଙ୍କବାଦ ଓ ହିଂସାତ୍ମକ ଅଭିବ୍ୟକ୍ତି ଏବେ ବି ମାନବ ସମାଜକୁ ଭାରାକ୍ରାନ୍ତ କରିରଖିଛି।

ଧାର୍ମିକ ବିଶ୍ୱାସ, ରାଷ୍ଟ୍ରୀୟତାର ମନୋଭାବ, ବର୍ଣ୍ଣଗତ ବିଦ୍ୱେଷ ପରି ନାନା ମନସ୍ତାତ୍ତ୍ୱିକ ଆବେଗ ଜନମାନସକୁ ନାନା ଭାବରେ ବିଭାଜିତ କରିରଖିଛି । ଶୁଦ୍ଧ ମାନବିକତାର ବିକାଶ ଓ ଭ୍ରାତୃତ୍ୱଭାବ ଜୀବନଦୃଷ୍ଟି ସାର୍ବଜନୀନ ହୋଇପାରୁ ନାହିଁ । ବିଜ୍ଞାନ ମାନବ ସମାଜ ପାଇଁ ଯେଉଁ ସବୁ ସୁନ୍ଦର ସମ୍ଭାବନା ସୃଷ୍ଟି କରିଛି ସେହି ଧାରାରେ ମାନବିକ ସଂପ୍ରୀତି ଓ ସମ୍ବେଦନଶୀଳ ଦୃଷ୍ଟି ଯଦି ଏକ ସାର୍ବଜନୀନ ଭିତ୍ତି ନେଇପାରନ୍ତା ତେବେ ଆମ ସଂସାର ମଧୁମୟ ହୋଇପାରନ୍ତା । ପୃଥିବୀର ବିଭିନ୍ନ ଦେଶର କେତେକ ମାନବହିତୈଷୀ ବ୍ୟକ୍ତି ଏକ ସୁନ୍ଦର ବିଶ୍ୱଦୃଷ୍ଟିର ଝଲକ ସେମାନଙ୍କ ସୃଷ୍ଟି ମଧ୍ୟରେ ବ୍ୟକ୍ତ କରିଛନ୍ତି । କିନ୍ତୁ ତାହା କେବଳ ପୋଥି ବାଇଗଣ ହୋଇଛି । ସର୍ବେ ଭବନ୍ତୁ ସୁଖୀନ, ସାରା ବିଶ୍ୱ ମୋର ପରିବାର ଏହି ଚେତନାର ପ୍ରତିଫଳନ । ନିଜ ପ୍ରତିବେଶୀକୁ ଭଲ ପାଅ ଓ ପ୍ରତ୍ୟେକ ମଣିଷ ଯେ ଆମର ପ୍ରତିବେଶୀ ଏହି ଭାବନା ବିଶ୍ୱ ବିବେକର ବାର୍ତ୍ତା ଦେଇଥାଏ । ଏହି ମାନବିକ ଦୃଷ୍ଟିର ସାର୍ବଜନୀନ ବିକାଶ ହେଲେ ମାନବ ସମାଜର ଯେ ନବଜନ୍ମ ହୋଇପାରିବ ଏହା ମନେହୁଏ ।

(ପ୍ରଗତିବାଦୀ, ୧୧.୦୫.୨୦୧୬)

# ବିପ୍ଳବର ବାର୍ତ୍ତା

ସାମାଜିକ ବିକାଶ ଏକ ନିରନ୍ତର ପ୍ରକ୍ରିୟା। ସାମାଜିକ ବିକାଶଧାରାରେ ବେଳେ ବେଳେ କିନ୍ତୁ ଏକ ବୈପ୍ଳବିକ ପରିବର୍ତ୍ତନର ପରିବେଶ ଆସେ। ରାଜନୈତିକ ସ୍ଥିତି, ଅର୍ଥନୈତିକ ବ୍ୟବସ୍ଥା, ସାଂସ୍କୃତିକ ଭାବାଧାରା ଇତ୍ୟାଦିରେ ଯଦି କୌଣସି କାରଣରୁ ଏକ ତୃଣମୂଳ ପରିବର୍ତ୍ତନର ସ୍ଥିତି ଆସେ, ତେବେ ତାହାକୁ 'କ୍ରାନ୍ତି' କୁହାଯାଏ। ବିଭିନ୍ନ ଦେଶରେ ବା ସଭ୍ୟତାର ଇତିହାସରେ ଅତୀତରେ କେତେକ କ୍ରାନ୍ତିକାରୀ ପରିବର୍ତ୍ତନ ଆସିଥିବା ଜଣାଯାଏ। କ୍ରାନ୍ତିକାରୀ ପରିବର୍ତ୍ତନର ପରିଣାମରୁ ବିଭିନ୍ନ କ୍ଷେତ୍ରରେ କେତେକ ଆଲୋଡ଼ନ ଆସେ ଯାହା ସଭ୍ୟତାକୁ ଲମ୍ଫ ପ୍ରଦାନ କରିଥାଏ। ଗ୍ରାମୀଣ କୃଷିଭିତ୍ତିକ ସମାଜ ପରିବର୍ତ୍ତନ ପ୍ରକ୍ରିୟାରେ ସହରୀ ଶିଳ୍ପଭିତ୍ତିକ ସମାଜରେ ରୂପାନ୍ତରିତ ହେବା ଓ ସେହି ଧାରାରେ ଏକ ସ୍ୱୟଂଚାଳିତ ଯୁଗ ବା ଏଜେ ଅଫ୍ ଅଟୋମେସନ୍‌ର ପରିବେଶ ଆସିବା କ୍ରାନ୍ତିକାରୀ ପରିବର୍ତ୍ତନର ସୂଚନା ଦିଏ। ଶିଳ୍ପବିପ୍ଳବ ପରଠାରୁ ପ୍ରାଯୁକ୍ତିକ ଜ୍ଞାନକୌଶଳରେ ଯେଉଁସବୁ ପରିବର୍ତ୍ତନମାନ ଆସିବାରେ ଲାଗିଛି ତାହାର ଗଭୀର ପ୍ରଭାବ ଜନଜୀବନରେ ଅନୁଭୂତ ହେଉଛି।

ସାମାଜିକ ପରିବର୍ତ୍ତନର ଗତି ଓ ସ୍ୱରୂପ ବିଷୟରେ ସମାଜବିଜ୍ଞାନୀମାନେ ନାନା ଅନୁଶୀଳନ କରିବା ଦେଖାଯାଏ। ଏହି ପରିପ୍ରେକ୍ଷୀରେ କୌଣସି କ୍ରାନ୍ତିକାରୀ ପରିବର୍ତ୍ତନ ଅଧିକ ଚର୍ଚ୍ଚାର ପରିସରକୁ ଆସିଥାଏ। ବିପ୍ଳବ ବା କ୍ରାନ୍ତିକୁ ବହୁ ଦିଗରୁ ଆଲୋଚନା କରାଯାଇପାରେ। ଐତିହାସିକମାନେ ରାଜନୈତିକ ବିପ୍ଳବ ଉପରେ ଅଧିକ ପ୍ରାଧାନ୍ୟ ଦେବା ଦେଖାଯାଏ। କୌଣସି ସରକାରୀ ବ୍ୟବସ୍ଥା ବା ସାମ୍ବିଧାନିକ ଢାଞ୍ଚାରେ ଯଦି ଏକ ରାଷ୍ଟ୍ରରେ ତୃଣମୂଳ ପରିବର୍ତ୍ତନର ସୂତ୍ରପାତ ହେବା ଦେଖାଯାଏ, ତାହାକୁ ଐତିହାସିକମାନେ ବିପ୍ଳବ କହିଥାନ୍ତି। ତେବେ ରାଜନୈତିକ ବିପ୍ଳବ ବ୍ୟତୀତ ଅନ୍ୟ ସ୍ତରରେ ମଧ୍ୟ କ୍ରାନ୍ତିକାରୀ ପରିବର୍ତ୍ତନର ନାନା ଦୃଷ୍ଟାନ୍ତ ରହିବା ଦେଖାଯାଏ। କୌଣସି କ୍ରାନ୍ତିକାରୀ ପରିବର୍ତ୍ତନ ପଶ୍ଚାତ୍‌ରେ ବହୁବିଧ କାରଣ ରହିଥାଏ। ପ୍ରତ୍ୟେକ ବୈପ୍ଳବିକ ପରିବର୍ତ୍ତନର ପ୍ରଣାଳୀ, ସମୟ ସୀମା, ଆଦର୍ଶଗତ ବିଚାର ଓ କୌଶଳ ସ୍ୱତନ୍ତ୍ର ମନେହୁଏ। ତେବେ ସମାଜର କୌଣସି ସ୍ତରରେ କିଛି କ୍ରାନ୍ତିକାରୀ ପରିବର୍ତ୍ତନର ପରିବେଶ ଆସିଲେ ତାହାର ପ୍ରଭାବ ସମାଜର ଅନ୍ୟ କ୍ଷେତ୍ରକୁ ମଧ୍ୟ ପ୍ରଭାବିତ କରିଥାଏ।

ସାଧାରଣ ଭାବେ ଦେଖିଲେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ଆକସ୍ମିକ ଭାବେ ଘଟେ ନାହିଁ। ବିଶେଷକରି ଏକ ରାଜନୈତିକ ବିପ୍ଲବ ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ଥାଇପାରେ। ସାମାଜିକ ଅସନ୍ତୋଷ, ଅର୍ଥନୈତିକ ସମସ୍ୟା, ରାଜନୈତିକ ଅସୁରକ୍ଷିତ ପରିବେଶ, ପ୍ରଶାସନିକ ସ୍ଥାଣୁତା, ବ୍ୟାପକ ନୈରାଶ୍ୟବୋଧ ଇତ୍ୟାଦି କାରଣ ବୈପ୍ଲବାତ୍ମକ ଆଲୋଡ଼ନ ପାଇଁ ପରିବେଶ ଯୋଗାଇଥାଏ। ଏହିପରି ଏକ ସ୍ଥିତିରେ ସମାଜକୁ ନେତୃତ୍ୱ ଦେବା ଭଳି କିଛି ବ୍ୟକ୍ତିତ୍ୱ ସୃଷ୍ଟି ହେଲେ ଜନଗଣଙ୍କ ଭିତରେ ଆଲୋଡ଼ନ ଆସିଥାଏ। ଯେତେବେଳେ ଏକ ଉନ୍ନତ ସ୍ଥିତିର ସ୍ୱପ୍ନ ଜନମାନସକୁ ଗଭୀର ଭାବେ ପ୍ରଚୋଦିତ କରେ, ସେତେବେଳେ ଜନଗଣ ଏକ ସଂଗ୍ରାମରେ ଅଂଶୀଦାର ହୁଅନ୍ତି। ଇତିହାସରେ ଦେଖାଯାଏ ଯେ, ରାଜନୈତିକ ବିପ୍ଲବ କ୍ଷେତ୍ରରେ ହିଂସାତ୍ମକ ପନ୍ଥା ହିଁ ପ୍ରାୟତଃ ପ୍ରୟୋଗ ହୁଏ। ଏହି ପରିପ୍ରେକ୍ଷୀରେ ଏକ ବିପ୍ଲବକୁ ସାମରିକ ବିଦ୍ରୋହ ଠାରୁ ପୃଥକ୍ କରାଯାଇପାରେ। ସାମରିକ ବିଦ୍ରୋହ କ୍ଷେତ୍ରରେ ବରିଷ୍ଠ ସେନାଧିକାରୀମାନେ ଷଡଯନ୍ତ୍ର କରି ରାଷ୍ଟ୍ରର କ୍ଷମତା ନିଜ ହାତକୁ ନିଅନ୍ତି। ସୁତରାଂ ଏକ ସାମରିକ ବିଦ୍ରୋହ ବିପ୍ଲବ ନୁହେଁ। ଏକ ବିପ୍ଲବ କ୍ଷେତ୍ରରେ ଜନସଂପୃକ୍ତି ରହିଥାଏ। ଜନଗଣ ସାଧାରଣତଃ କିଛି ଆଦର୍ଶଗତ ସ୍ୱପ୍ନ ଦ୍ୱାରା ପରିଚାଳିତ ହୋଇଥାନ୍ତି। କିଛି ଆଦର୍ଶର ରୂପାୟନ ପାଇଁ ଯେତେବେଳେ ଜନଗଣ ବା ଜନସମୂହର ଏକ ପ୍ରଭାବଶାଳୀ ଗୋଷ୍ଠୀ ସମାଜରେ ଏକ ତୁମୁଳ ଆଲୋଡ଼ନର ପରିବେଶ ସୃଷ୍ଟି କରନ୍ତି ତାର ପରିଣାମ ସ୍ୱରୂପ ଏକ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହୁଏ। ରାଜତନ୍ତ୍ର, ଏକଛତ୍ରବାଦର ବିଲୋପ ପାଇଁ ଅତୀତରେ କେତେକ ରାଷ୍ଟ୍ରରେ ବିପ୍ଲବର ସୂତ୍ରପାତ ହୋଇଛି। ଆଜି ପୃଥିବୀର ଉନ୍ନତ ଦେଶମାନଙ୍କରେ ଯେଉଁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ପରିବେଶ ଆସିଛି ତାହା ଆକସ୍ମିକ ଆସିନାହିଁ ବା ପ୍ରଥମରୁ ରହିନାହିଁ। ସେହିପରି ଶିଳ୍ପବିପ୍ଳବ ପରବର୍ତ୍ତୀ ଯୁଗରେ ଯେଉଁ ସାମ୍ରାଜ୍ୟବାଦର ବିସ୍ତାର ହୋଇଥିଲା ତାହାର ବିଲୋପ ପାଇଁ ସାମ୍ରାଜ୍ୟବାଦୀ ନିୟନ୍ତ୍ରଣରେ ଥିବା ରାଷ୍ଟ୍ରମାନଙ୍କରେ ବିପ୍ଲବ ସୃଷ୍ଟି ହୋଇଛି। ଜାତୀୟତାବାଦର ଭାବନା ଦୃଢ଼ ଭିତ୍ତି ନେବା ପରେ ସାମ୍ରାଜ୍ୟବାଦୀ ନିୟନ୍ତ୍ରଣରୁ ମୁକ୍ତ ହେବା ପାଇଁ ପରାଧୀନ ଦେଶମାନଙ୍କରେ ବିପ୍ଲବ ଆସିଛି, ସେ ବିପ୍ଲବ ହିଂସାତ୍ମକ ହେଉ ବା ଅହିଂସାତ୍ମକ ହେଉ। କେତେକ ରାଷ୍ଟ୍ରରେ ମାର୍କସ୍‌ବାଦୀ ବିଚାରବୋଧ ଆଧାରରେ ସମାଜବାଦର ପ୍ରତିଷ୍ଠା ପାଇଁ ବିପ୍ଲବର ସୂତ୍ରପାତ ମଧ୍ୟ ହୋଇଛି। ସାମନ୍ତବାଦ, ପୁଞ୍ଜିବାଦ ଏକ ବୈଷମ୍ୟପୂର୍ଣ୍ଣ ସମାଜ ଓ ଶୋଷଣର ଚିତ୍ର ଦେଇଥାଏ। ପରନ୍ତୁ ସମାଜବାଦ ଏକ ସମତାଭିତ୍ତିକ ଓ ଶୋଷଣମୁକ୍ତ ସମାଜର ବାର୍ତ୍ତା ଦେଉଥିବାରୁ ଏହି ଆଦର୍ଶ ଜନଗଣଙ୍କୁ ସଂଗ୍ରାମ କରିବାକୁ ଅଭିନିବେଶ ଯୋଗାଇଥିବା ମନେହୁଏ। ସମାଜବାଦ ବା କମ୍ୟୁନିଷ୍ଟବାଦର ପ୍ରତିଷ୍ଠା ପାଇଁ କେତେକ ରାଷ୍ଟ୍ରରେ ହିଂସାତ୍ମକ ବିପ୍ଲବ ଆସିଥିବା ଜଣାଯାଏ। ଏକ ପ୍ରଚଳିତ

ରାଜନୈତିକ ବା ଅର୍ଥନୈତିକ ଢାଞ୍ଚାରେ କିଛି ମୌଳିକ ପରିବର୍ତ୍ତନ ଆଣି ତାହା ବଦଳରେ ଅଧିକ ପ୍ରଗତିଶୀଳ ଓ ନ୍ୟାୟପୂର୍ଣ୍ଣ ବ୍ୟବସ୍ଥା ପ୍ରତିଷ୍ଠା ପାଇଁ ପୃଥିବୀର ବିଭିନ୍ନ ରାଷ୍ଟ୍ରରେ ଅତୀତରେ ନାନା ବିପ୍ଲବ ସଂଘଟିତ ହେବା ଦେଖାଯାଏ । ଯେତେବେଳେ ଏକ ପ୍ରଚଳିତ ବ୍ୟବସ୍ଥା ତୁଳନାରେ ଅନ୍ୟ ପ୍ରଗତିଶୀଳ ବ୍ୟବସ୍ଥାର ବିଚାରବୋଧ ଜନମାନସକୁ ପ୍ରଭାବିତ କରେ, ସେତେବେଳେ ଦ୍ୱନ୍ଦ୍ୱର ପରିବେଶ ଆସେ । ଅଧିକ ନ୍ୟାୟପୂର୍ଣ୍ଣ ଓ ମାନବିକ ମନେ ହେଉଥିବା ଏକ ନୂତନ ବ୍ୟବସ୍ଥା ପାଇଁ ଜନମାନସରେ ଆଲୋଡ଼ନ ସୃଷ୍ଟି ହେଲେ, ତାହା ଉପଯୁକ୍ତ ପରିବେଶ ପାଇଲେ ଏକ ବିପ୍ଲବର ପରିବେଶ ଆଣେ । ତେବେ ଏକ ବିପ୍ଲବ ସହସା ସଂଘଟିତ ହୁଏ ନାହିଁ ବା ସହଜରେ ହୁଏ ନାହିଁ । ଏକ ବିପ୍ଲବର ସଫଳତା ବହୁ କାରଣ ଉପରେ ନିର୍ଭର କରେ । ଜନଗଣଙ୍କର ଗମ୍ଭୀର ସଂପୃକ୍ତି, ଉପଯୁକ୍ତ ନେତୃତ୍ୱ ପରିସ୍ଥିତିକୁ ସୁବିଧାଜନକ ସ୍ଥିତିକୁ ନେବାର କୌଶଳ, ପାରିପାର୍ଶ୍ୱିକ ସହଯୋଗ, ଆଦର୍ଶଗତ ଅଭିନିବେଶ ଇତ୍ୟାଦି କାରଣ ସମୂହ ବିପ୍ଲବର ସଫଳତା ଦିଗରେ ସହାୟକ ହୋଇଥାଏ । ଏକ ବିପ୍ଲବ ଦ୍ୱାରା ସମାଜରେ କିଛି ଉଲ୍ଲେଖନୀୟ ପରିବର୍ତ୍ତନ ଆସେ ଓ ଏପରିକି ଜୀବନର ଗୁଣାତ୍ମକ ମାନରେ ବି କିଛି ଉନ୍ନତି ଘଟିଥାଏ ।

ସ୍ଥଳବିଶେଷରେ ଇତିହାସରେ ପ୍ରତିବିପ୍ଳବ ଆସିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଏକ ପ୍ରତିବିପ୍ଳବ ସମାଜର ଗୁଣାତ୍ମକ ବିକାଶରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ସାମରିକ ବିଦ୍ରୋହ, ରାଷ୍ଟ୍ର ବିଭାଜନ, ସକଳ ବ୍ୟବସ୍ଥାର କେନ୍ଦ୍ରୀକରଣ, ସାମ୍ପ୍ରଦାୟିକ ମାନସିକତାରେ ଅଭିବୃଦ୍ଧି, ସାମାଜିକ ବିଭାଜନ, ଅସହିଷ୍ଣୁ ମାନସିକତାର ବିକାଶ ଇତ୍ୟାଦି କାରଣ ସାମାଜିକ ବିକାଶ ପ୍ରକ୍ରିୟାକୁ ନକାରାତ୍ମକ ଭାବେ ପ୍ରଭାବିତ କରିଥାଏ । ଏକ ମନ୍ଦ ସ୍ଥିତିରୁ ଭଲ ସ୍ଥିତିକୁ ଲମ୍ଫ ଏକ ସାଂସ୍କୃତିକ ଉତ୍ତରଣ, କିନ୍ତୁ ଏକ ପରିସ୍ଥିତିରୁ ଏକ ମନ୍ଦ ସ୍ଥିତିକୁ ପରିବର୍ତ୍ତନ ପ୍ରତିବିପ୍ଳବ ବୋଲି ନିଆଯାଇପାରେ । ଯେଉଁ ବିଚାରବୋଧ ବା ସାମାଜିକ ଆଲୋଡ଼ନରୁ ଏକ ଅବକ୍ଷୟର ସ୍ଥିତି ଆସେ, ପ୍ରଗତିଶୀଳ ମୂଲ୍ୟବୋଧଠାରୁ ସମାଜ ଦୂରେଇଯାଏ, ସାମ୍ପ୍ରଦାୟିକ ବିଦ୍ୱେଷ ବୃଦ୍ଧି ପାଏ ଓ ଏକ ଅସହିଷ୍ଣୁତାର ପରିବେଶ ସୃଷ୍ଟି ହୁଏ ତାହାକୁ ପ୍ରତିବିପ୍ଳବ କୁହାଯାଇପାରେ । ରାଜନୈତିକ ଅଭିସନ୍ଧିରୁ ଯଦି ସମାଜକୁ ଜାତି, ଧର୍ମ ବା ସେପରି କିଛି ବିଭାଜନ କାରଣରୁ ଭାଗ ଭାଗ କରାଯାଏ, ତେବେ ତାହା ଦ୍ୱାରା ମାନବିକ ମୂଲ୍ୟବୋଧ ଓ ମହତ୍ତର ଜୀବନବୋଧର ଅବକ୍ଷୟ ଘଟେ । ଯେଉଁ ଭାବନା, ପରମ୍ପରା ଓ ବିଶ୍ୱାସ ଜନଗଣଙ୍କୁ ବିଚାରଶୀଳ କରିବା ପରିବର୍ତ୍ତେ ଅହେତୁକ ଓ ଅମାନବିକ କରେ ତାହା ସମାଜର କ୍ଷତିସାଧନ କରିଥାଏ । ଯଦି ସମାଜର ବୃହତ୍ତର ପରିବେଶରେ ବିଚାରଶୀଳତା ପରିବର୍ତ୍ତେ ଧାର୍ମିକ

ଭାବପ୍ରବଣତା ଓ ପାରଲୌକିକ ମାନସିକତାର ବିକାଶ ଘଟେ ତେବେ ସମାଜ କ୍ଷୟଶୀଳ ହୁଏ। ଧାର୍ମିକ ଭାବପ୍ରବଣତାରୁ ବିଚାରହୀନତା ଓ କୁସଂସ୍କାରର ପ୍ରସାର ହୋଇଥାଏ। ଜନଗଣଙ୍କ ନୈତିକତା, ମାନବିକ ମୂଲ୍ୟବୋଧ, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ସମତାର ଭାବ ସାମାଜିକ ଆଦର୍ଶ ନ ହୋଇ ପାରଲୌକିକ ବିଶ୍ୱାସ, ଧାର୍ମିକ କର୍ମକାଣ୍ଡ ଓ ସ୍ୱର୍ଣକାତରଶୂନ୍ୟ ମନୋଭାବ ବୃଦ୍ଧି ପାଇବା ସମାଜ ପାଇଁ କ୍ଷତିକାରକ ହୋଇଥାଏ।

ରାଜନୈତିକ ପରିବର୍ତ୍ତନ, ଅର୍ଥନୈତିକ ବିକାଶ, ସାଂସ୍କୃତିକ ଉତ୍ତରଣ ଓ ସମାଜର କ୍ରାନ୍ତି ପରସ୍ପର ସହ ସୁସମ୍ବନ୍ଧିତ। ତେବେ ଅନ୍ୟ ଭାବଧାରା ଅପେକ୍ଷା ସାମାଜିକ କ୍ରାନ୍ତି ଏକ ଜଟିଳ ପ୍ରକ୍ରିୟା। ଯେଉଁ ବିଚାରବୋଧ, ପରମ୍ପରା ଓ ଜୀବନଦୃଷ୍ଟି ସମାଜରେ ଦୃଢ଼ ହୋଇ ରହିଛି, ସେଥିରେ ଗୁଣାତ୍ମକ ପରିବର୍ତ୍ତନ ଆଣିବା ଏତେ ସହଜସାଧ୍ୟ ମନେହୁଏ ନାହିଁ। ସାମାଜିକ କ୍ରାନ୍ତି ପାଇଁ ଆବଶ୍ୟକ ଏକ ବୌଦ୍ଧିକ କ୍ରାନ୍ତି। ମାନସିକତାରେ ପରିବର୍ତ୍ତନ ଦ୍ୱାରା ବୌଦ୍ଧିକ କ୍ରାନ୍ତି ଆସିବା ସହଜ ହୋଇଥାଏ। ବୌଦ୍ଧିକ କ୍ରାନ୍ତିର ମୂଳଭିତ୍ତି ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ବିଚାରଶୀଳତାକୁ ସ୍ୱୀକୃତି ଓ ସମ୍ବେଦନଶୀଳ ଜୀବନବୋଧର ପ୍ରସାର। ଏସବୁର ପ୍ରସାର ସମାଜରେ ଦୃଢ଼ ଭିତ୍ତି ନେଲେ ହିଁ ସମାଜରେ ଏକ ଉନ୍ନତ ସ୍ଥିତି ସମ୍ଭବ ହେବ। ତାହା ଦ୍ୱାରା ଏକ ଯଥାର୍ଥ ବିପ୍ଳବ ସଂଘଟିତ ହୋଇପାରିବ।

(ପ୍ରଗତିବାଦୀ, ୨୨.୦୬.୨୦୧୬)

# ବିକାଶର ବିଡମ୍ବନା

ପରିବର୍ତ୍ତନ ଏକ ଅବଶ୍ୟମ୍ଭାବୀ ପ୍ରକ୍ରିୟା। ଆମ ଚତୁଃପାର୍ଶ୍ୱର ପ୍ରକୃତି ବି ପରିବର୍ତ୍ତନଶୀଳ। ପ୍ରତ୍ୟେକ ଅଞ୍ଚଳର ପରିବେଶ ମଧ୍ୟ ସମାନ ନୁହଁ। ପ୍ରାକୃତିକ ପରିବେଶରେ ଭିନ୍ନତା ଦୃଷ୍ଟିଗୋଚର ହୋଇଥାଏ। ପ୍ରାକୃତିକ ପରିବେଶରେ ଯେପରି ଭିନ୍ନତା ପରିଲକ୍ଷିତ ହୁଏ, ମାନବ ସମାଜରେ ମଧ୍ୟ ନାନା ବିବିଧତା ଦୃଷ୍ଟିପଥକୁ ଆସିଥାଏ। ଭାଷା କହିବାର ସାମର୍ଥ୍ୟ ମଣିଷର ଏକ ସହଜାତ ପ୍ରବୃତ୍ତି, କିନ୍ତୁ ଆମ ପୃଥିବୀରେ ହଜାର ହଜାର ପୃଥକ ଭାଷାଗୋଷ୍ଠୀର ଲୋକ ରହିବା ଦେଖାଯାଏ। ଚେହେରାରେ, ଆକୃତିରେ ଦୁଇ ଜଣ ବ୍ୟକ୍ତି ସମାନ ନୁହନ୍ତି। କୌଣସି ଦୁଇ ଜଣ ବ୍ୟକ୍ତିଙ୍କର ସ୍ୱର ସମାନ ନୁହଁ। ଭିନ୍ନତା ଓ ବିବିଧତା ଏକ ପ୍ରାକୃତିକ ବାସ୍ତବତା।

ମଣିଷର ସାମାଜିକ ବ୍ୟବସ୍ଥା ବି ପରିବର୍ତ୍ତନଶୀଳ। ଶହେବର୍ଷ ତଳର ସାମାଜିକ ସ୍ଥିତି ଓ ଆଜିର ସ୍ଥିତି ଭିତରେ ବହୁ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ। ଆଜିର ଜ୍ଞାନବିଜ୍ଞାନ, ପ୍ରଯୁକ୍ତି ଓ ଭୌତିକ ମାନ ଶହେ ଦୁଇଶହ ବର୍ଷ ତଳେ ଚିନ୍ତାର ପରିସରକୁ ମଧ୍ୟ ଆସିନଥିଲା। ଜଣେ ହାଇସ୍କୁଲ ଛାତ୍ର ସଂପ୍ରତି ଯାହା ଜାଣିବାକୁ ସମର୍ଥ ହୋଇପାରିଛି, ଦୁଇ ଶହ ତିନି ଶହ ବର୍ଷ ତଳେ ସମାଜର ସବୁଠାରୁ ମେଧାବାନ୍ ବ୍ୟକ୍ତିମାନେ ମଧ୍ୟ ତାହା ଜାଣିବାକୁ ସମର୍ଥ ନଥିଲେ। ଆଜି ସଭ୍ୟତାର ଯେଉଁ କାଳଖଣ୍ଡରେ ଆମେ ରହିଛେ ସେହି ସ୍ଥିତିକୁ ଆସିବା ପାଇଁ ହଜାର ହଜାର ବର୍ଷର ପ୍ରୟାସ ରହିଛି। ଜ୍ଞାନବିଜ୍ଞାନ, ପ୍ରଯୁକ୍ତି, ଶିକ୍ଷା, ନୀତିବୋଧ ଇତ୍ୟାଦି ପ୍ରତ୍ୟେକ ବୌଦ୍ଧିକ ସୋପାନରେ ନାନା ପରିବର୍ତ୍ତନମାନ ସଭ୍ୟତାର ଆରମ୍ଭ କାଳରୁ ଆରମ୍ଭ ହୋଇ ଆଜିର ସ୍ଥିତିରେ ଆମେ ପହଞ୍ଚିଛେ। ସଭ୍ୟତା ଆଜିର ସୋପାନରେ ପହଞ୍ଚିବା ପଶ୍ଚାତ୍‌ରେ ଆମ ପିତାମହ, ପ୍ରପିତାମହମାନଙ୍କର ବହୁ ଅବଦାନ ରହିଛି। ହଜାର ହଜାର ବର୍ଷର ପ୍ରୟାସ, ପ୍ରଚେଷ୍ଟା ଫଳରେ ଆଜିର ପରିସ୍ଥିତି ଏତେ ଉନ୍ନତ ସ୍ତରକୁ ଆସିପାରିଛି। ଭାଷା କହିବାର ସାମର୍ଥ୍ୟ, ପ୍ରକୃତିରେ ଉପଲବ୍ଧ ବସ୍ତୁମାନଙ୍କ ସାହାଯ୍ୟରେ ବିଭିନ୍ନ ବିଷୟ ଓ ଉପକରଣ ନିର୍ମାଣ କରିବାର କୌଶଳ, ବିଚାରଶୀଳ ଓ ଅନୁସନ୍ଧିତ୍ସୁ ମନୋଭାବ ଓ ମଣିଷର ସାମାଜିକ ପ୍ରବୃତ୍ତିର ସମ୍ମିଳିତ ପ୍ରଭାବରୁ ମଣିଷ ବିକାଶର ଶିଡ଼ିରେ ଆଗକୁ ଯାଇଛି। ଏକ ଆଦିମ ସ୍ଥିତିରୁ ନାନା ସ୍ତର ଓ ପରିବର୍ତ୍ତନ ମଧ୍ୟ ଦେଇ ସମାଜର ବିକାଶପର୍ବ ଅଗ୍ରଗତି କରିଛି।

ତେବେ ବିଡମ୍ବନାର ବିଷୟ ହେଉଛି ପୃଥିବୀର ସମସ୍ତ ଦେଶ ବା ସମାଜ ସମାନ ଭାବରେ ଅଗ୍ରଗତି କରିପାରି ନାହାନ୍ତି। ସବୁ ମଣିଷଙ୍କର ଜୀବନର ଭୌତିକ ସ୍ତର ସମାନ ହୋଇନାହିଁ। କେତେକ ସମାଜରେ କିଛି ଲୋକ ପ୍ରାଚୁର୍ଯ୍ୟ ଭିତରେ ବଞ୍ଚୁଥିବା ବେଳେ ଅନ୍ୟ କେତେକ ସମାଜରେ କିଛି ଲୋକ ନିଜର ସର୍ବନିମ୍ନ ଆବଶ୍ୟକତା ବି ପୂରଣ କରିପାରୁ ନାହାନ୍ତି। ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ଶିଶୁ ଶ୍ରମିକ ପ୍ରଥା, ଭିକ୍ଷାବୃତ୍ତି, ବେକାରୀ, ସାମାଜିକ ଭେଦଭାବ ଇତ୍ୟାଦି ସମସ୍ୟାମାନ ଉତ୍କଟ ହୋଇ ରହିଛି। ଏହି ଦୁଇ ଶହ ବର୍ଷ ଭିତରେ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ବହୁ ଉନ୍ନତି ସାଧନ ହୋଇପାରିଛି। ବହୁ ମାରାତ୍ମକ ରୋଗମାନଙ୍କର ଚିକିତ୍ସା ବାହାର କରିବାରେ ବିଜ୍ଞାନ ସଫଳତା ହାସଲ କରିଛି ଓ ଏହାର ପରିଣାମ ସ୍ୱରୂପ ପୃଥିବୀରୁ ଗଣମୃତ୍ୟୁ ଲୋପ ପାଇଛି। ଅତ୍ୟାଧୁନିକ ଚିକିତ୍ସା ବ୍ୟବସ୍ଥା ଉପଲବ୍ଧ ହେଉଥିବାରୁ ବିକଶିତ ରାଷ୍ଟ୍ରମାନଙ୍କରେ ଲୋକମାନଙ୍କର ହାରାହାରି ଆୟୁ ଯଥେଷ୍ଟ ବୃଦ୍ଧି ପାଇଛି। ତେବେ ଏହି ସୁବିଧା ସୁଯୋଗ ତୃତୀୟ ବିଶ୍ୱର ଲୋକମାନଙ୍କ ପାଖରେ ସମ୍ପୂର୍ଣ୍ଣ ଉପଲବ୍ଧ ହୋଇପାରୁନାହିଁ।

ଆନ୍ତର୍ଜାତିକ ଦୃଶ୍ୟପଟରେ ଗଣତାନ୍ତ୍ରିକ ଚେତନା, ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ମାନବବାଦୀ ମୂଲ୍ୟବୋଧର ଦ୍ରୁତ ପ୍ରସାର ହେବାରେ ଲାଗିଛି। ଯୁଗ ଯୁଗ ଧରି ମଣିଷ ସମାଜରେ ଲାଗି ରହିଥିବା ନାନା ଭେଦଭାବକୁ ଦୂର କରିବାକୁ ବିଶ୍ୱ ସ୍ତରରେ ପ୍ରୟାସ ହୋଇଛି। ମାନବିକ ଅଧିକାରର ବିଶ୍ୱଘୋଷଣା, ମାନବବାଦୀ ଘୋଷଣାପତ୍ର ଇତ୍ୟାଦି ଦଲିଲମାନ ମାନବିକ ପ୍ରଜ୍ଞା ଓ ସମତାଭିତ୍ତିକ ଜୀବନବୋଧର ସୁନ୍ଦର ଚିତ୍ର ପ୍ରଦାନ କରିଥାନ୍ତି। ତେବେ ଏସବୁ ଆଦର୍ଶ ସବୁ ସମାଜରେ ପ୍ରତିଫଳିତ ହେବା ସମ୍ଭବ ହୋଇ ନାହିଁ। ନାନା ପ୍ରକାରର ଭେଦଭାବ, ଜାତିବାଦୀ ମାନସିକତା ଓ ସାମ୍ପ୍ରଦାୟିକ ବିଦ୍ୱେଷ ଭାବ ଏବେ ବି ଆମ ଦେଶର ସାମାଜିକ ଜୀବନଧାରାରେ ଭରପୁର ହୋଇରହିଛି। ଆମର ରାଜନୈତିକ ବ୍ୟବସ୍ଥା ଗଣତାନ୍ତ୍ରିକ ହେଲେ ବି ସାମାଜିକ ଗଣତନ୍ତ୍ର ଆମ ଦେଶର ଜୀବନଧାରାରେ ଦୃଢ଼ ଭିତ୍ତି ନେଇପାରି ନାହିଁ। ସାମନ୍ତବାଦୀ ଭାବଧାରାରୁ ଆମର ସାମାଜିକ ବ୍ୟବସ୍ଥା ମୁକ୍ତ ହୋଇପାରୁ ନାହିଁ। ଅସ୍ପୃଶ୍ୟତା, ଅନର କିଲିଂ, କନ୍ୟା ଭ୍ରୁଣହତ୍ୟା ପରି ଜଘନ୍ୟ ଘଟଣାମାନ ଆମ ସାମାଜିକ ଜୀବନ ପ୍ରବାହରେ ଏବେ ବି ଘଟୁଛି।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଯେଉଁ ସ୍ତରକୁ ଯାଇଛି ଓ ଯାହାଦ୍ୱାରା ସଭ୍ୟତାର ରୂପରେଖ ବଦଳିବାରେ ଲାଗିଛି ତାହା ପଶ୍ଚାତରେ ଏକ ବିଚାରବୋଧ ରହିଛି। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ଯୋଗୁ ବିଜ୍ଞାନ ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚିତ କରିବାରେ ସଫଳ

ହୋଇଛି । ମୁକ୍ତ ମନ, ବୈଜ୍ଞାନିକ ପଦ୍ଧତିରେ ସାର୍ବଜନୀନ ପ୍ରୟୋଗ, ତଥ୍ୟ ଆଧାରିତ ଜ୍ଞାନ ବିଜ୍ଞାନର ଅନ୍ତଃସ୍ୱର । ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପ୍ରଣାଳୀବଦ୍ଧ, ସ୍ୱସଂଶୋଧନାତ୍ମକ, ପରୀକ୍ଷା ସାପେକ୍ଷ ଓ ସାର୍ବଜନୀନ । ପ୍ରତ୍ୟେକଟି ଘଟଣା ପଶ୍ଚାତରେ ପ୍ରାକୃତିକ ନିୟମ ବା ପ୍ରାକୃତିକ କାରଣ ନିହିତ । ଚମତ୍କାରିତା, ଅଲୌକିକତା, ଆଧିଭୌତିକ କାରଣ ଇତ୍ୟାଦିର ଭାବନା ବୈଜ୍ଞାନିକ ମାନଦଣ୍ଡରୁ ଅସତ୍ୟ, ଅମୂଳକ ଓ ଆଧାରହୀନ । କିନ୍ତୁ ବିଡମ୍ବନାର ବିଷୟ ବିଜ୍ଞାନର ଏତେ ବିକାଶ ସତ୍ତ୍ୱେ ନାନା ଅବୈଜ୍ଞାନିକ ଭାବନା, ଅହେତୁକ ମନୋଭାବ ଓ ପାରଲୌକିକ ବିଶ୍ୱାସ ଆମ ସମାଜରେ ବହୁଳ ଭାବେ ପରିବ୍ୟାପ୍ତ । ଏପରିକି ବିଜ୍ଞାନରେ ଉଚ୍ଚଶିକ୍ଷା ପ୍ରାପ୍ତ ବ୍ୟକ୍ତିମାନେ ମଧ୍ୟ ଅବୈଜ୍ଞାନିକ ଭାବଧାରାରୁ ମୁକ୍ତ ହୋଇପାରୁ ନାହାନ୍ତି । ଗଣମାଧ୍ୟମରେ ଅବୈଜ୍ଞାନିକ ଭାବନାର ପ୍ରସାର ଏକ ସାଧାରଣ ଘଟଣା । ବିଜ୍ଞାନର ବଳିଷ୍ଠ ଉପକରଣ ସାହାଯ୍ୟରେ କୁସଂସ୍କାର ଓ ଅବୈଜ୍ଞାନିକ ଭାବନାର ପ୍ରସାର ଆମ ଜୀବନର ବଡ଼ ବିଡମ୍ବନା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆମେ ଆଜି ଇତିହାସର ଯେଉଁ କାଳଖଣ୍ଡରେ ରହିଛେ ଓ ଯେଉଁ ସୁବିଧା ସୁଯୋଗ ଉପଭୋଗ କରୁଛେ ତାହା ଦୁଇ ତିନି ପିଢି ପୂର୍ବରୁ ସମ୍ଭବ ନଥିଲା । ବହୁ କ୍ଷେତ୍ରରେ ଜ୍ଞାନବିଜ୍ଞାନର ଯଥେଷ୍ଟ ବିକାଶ ଘଟିଛି, ସମଗ୍ର ପୃଥିବୀରେ ଏକ ଆନ୍ତର୍ଜାତିକ ମନୋଭାବର ପ୍ରସାର ହୋଇଛି, କୌଣସି ଗୁରୁତର ମାନବିକ ସମସ୍ୟା ବିଶ୍ୱ ସ୍ତରରେ ଆଲୋଚିତ ହୋଇ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରୁଛି ଓ କେଉଁଠି କିଛି ପ୍ରାକୃତିକ ବିପର୍ଯ୍ୟୟ ଘଟିଲେ ସାରା ପୃଥିବୀରୁ ସମ୍ବେଦନଶୀଳ ମନୋଭାବ ପ୍ରକାଶ ପାଉଛି । ଶିକ୍ଷା ସାର୍ବଜନୀନ ହୋଇଛି ଓ ପ୍ରତ୍ୟେକ ବ୍ୟକ୍ତି ଶିକ୍ଷା ପାଇବାର ସୁଯୋଗ ପାଇପାରୁଛି । ବହୁ କ୍ଷେତ୍ରରେ ସାମାଜିକ ଗତିଶୀଳତା ବୃଦ୍ଧି ପାଇବାରେ ଲାଗିଛି ଓ ଆଧୁନିକ ପ୍ରଯୁକ୍ତି ସମଗ୍ର ବିଶ୍ୱକୁ ଏକ କ୍ଷୁଦ୍ର ଗ୍ରାମରେ ରୂପାନ୍ତରିତ କରିଛି । ଏକବିଂଶ ଶତାବ୍ଦୀ ସମଗ୍ର ମାନବ ସମାଜ ପାଇଁ କେତେ କେତେ ସମ୍ଭାବନାର କ୍ଷେତ୍ର ସୃଷ୍ଟି କରିପାରିଛି । ତେବେ ବିଡମ୍ବନାର ବିଷୟ, ଆମେ ଏକବିଂଶ ଶତାବ୍ଦୀର ପ୍ରଯୁକ୍ତି ବ୍ୟବହାର କରୁଥିବା ବେଳେ କେତେକ ବ୍ୟକ୍ତିଙ୍କର ମାନସିକତା ମଧ୍ୟଯୁଗୀୟ ଭାବଧାରାରେ ରହିଛି । ୟୁରୋପରେ ନବଜାଗରଣ ଯୁଗର ଆବିର୍ଭାବ ପୂର୍ବରୁ ମଧ୍ୟଯୁଗ ରହିଥିଲା । ମଧ୍ୟଯୁଗରେ ଧର୍ମର ଅଖଣ୍ଡ ପ୍ରଭାବ ସମାଜକୁ ନିୟନ୍ତ୍ରଣ କରି ରଖିଥିଲା । ଧର୍ମଶାସ୍ତ୍ରର ବାଣୀକୁ ଅଲଙ୍ଘ୍ୟ ଓ ଅକାଟ୍ୟ ବୋଲି ଗ୍ରହଣ କରାଯାଉଥିଲା । ଧାର୍ମିକ ବିଶ୍ୱାସକୁ ନେଇ ବିଭିନ୍ନ ସମାଜରେ କେତେ କେତେ ପ୍ରଥା, ପରମ୍ପରାର ଉଦ୍ଭବ ହୋଇଥିଲା । ଜୀବନର ସବୁ କିଛି ବିଷୟ ଓ ସାମାଜିକ ବ୍ୟବସ୍ଥା ଈଶ୍ୱର-ନିୟନ୍ତ୍ରିତ ବୋଲି ବିଶ୍ୱାସ ସାର୍ବଜନୀନ ଭାବେ ରହିଥିଲା । ସ୍ୱର୍ଗ, ମୁକ୍ତି, ମୋକ୍ଷ, ଆତ୍ମା, ନରକ, ଦେବତା, ଦୈବୀକୃପା ଇତ୍ୟାଦି ଭାବନାମାନ

ବୌଦ୍ଧିକ ଚିନ୍ତାମାନଙ୍କୁ କବଳିତ କରି ରଖିଥିଲା । ବିଜ୍ଞାନର ବିକାଶ ପରେ ଧର୍ମଭିତ୍ତିକ ବିଶ୍ୱାସମାନ ଯେ ମନଗଢା କାହାଣୀ ଓ କେବଳ କାଳ୍ପନିକ ତାହା ଜଣାପଡ଼ିଲା । ଯେଉଁ ଯୁଗରେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଧର୍ମମାନଙ୍କର ଉତ୍ପତ୍ତି ହୋଇଥିଲା ତାହା ଥିଲା ସଭ୍ୟତାର ଆଦିକାଳ । ସେହି ଯୁଗରେ ସ୍ୱର୍ଗ, ନରକ, ପରୀରାଇଜ, ମୁକ୍ତି, ମୋକ୍ଷର କେତେ କେତେ ଛବିଳ କଳ୍ପନା ମଣିଷର ମନକୁ ସ୍ପର୍ଶ କରିଥିଲା । ସେହି ସମୟରୁ ବିଭିନ୍ନ ସମାଜରେ ଯେଉଁ ସବୁ ଧାର୍ମିକ ଔପଚାରିକତା, କର୍ମକାଣ୍ଡ ସୃଷ୍ଟି ହୋଇଥିଲା ତାହା କାଳକ୍ରମେ ସାଂସ୍କୃତିକ ପରମ୍ପରାର ରୂପ ନେଲା ଓ ତାର ଗଭୀର ମନସ୍ତାତ୍ତ୍ୱିକ ପ୍ରଭାବ ରହିଲା । ସଭ୍ୟତାର ଏତେ ବିକାଶ ପରେ ମଧ୍ୟ ସେହି ଯୁଗର ବିଶ୍ୱାସମାନ ଆଜିର ଏକବିଂଶ ଶତାବ୍ଦୀରେ କେତେକ ସମାଜରେ ବଳବତ୍ତର ରହିଛି । ଗୁଣିଗାରେଡିରେ ଥିବା ବିଶ୍ୱାସ ଏବେ ବି କେତେକ ସମାଜରେ ରହିଛି । କାଳ୍ପନିକ ଦିଅଁ ଦେବତାର କଣ୍ଢେଇମାନଙ୍କୁ ନେଇ କେତେ କେତେ ଧାର୍ମିକ ଆବେଗ ପ୍ରକାଶ ପାଉଛି । ଭାଗ୍ୟ, ଭବିଷ୍ୟତ, ବାସ୍ତୁ ଇତ୍ୟାଦି ଅବୈଜ୍ଞାନିକ ଭାବନାମାନଙ୍କୁ ଆଧାର କରି କିଛି ବ୍ୟକ୍ତି ସାଧାରଣ ଜନଗଣଙ୍କୁ ଅନ୍ଧକାର ଭିତରେ ରଖୁଛନ୍ତି । ଆହୁରି ବିଡମ୍ବନାର ବିଷୟ ବୈଜ୍ଞାନିକ ସାଧନମାନଙ୍କୁ କୁସଂସ୍କାର ପ୍ରସାର ପାଇଁ ବିନିଯୋଗ କରାଯାଉଛି । ଯେଉଁ ସମାଜରେ ଦାରିଦ୍ର୍ୟ ଓ ଅବୈଜ୍ଞାନିକ ଭାବନାର ପ୍ରାବଲ୍ୟ ରହିଛି ସେଠିକାର ଜନଗଣ ବୃହତ୍ତର ସାମାଜିକ ବ୍ୟବସ୍ଥା ଉପରେ ନିର୍ଭର ନକରି ଚମତ୍କାରିତା, ଭାଗ୍ୟ, ବାବା ସଂସ୍କୃତି, କଳ୍ପିତ ଦିଅଁ ଦେବତାଙ୍କର ଆଶୀର୍ବାଦ ଉପରେ ନିର୍ଭର କରୁଛନ୍ତି । ଏକବିଂଶ ଶତାବ୍ଦୀର କାରିଗରୀ ଉପକରଣ ବ୍ୟବହାର କରୁଥିବା କିଛି ଲୋକ ମଧ୍ୟଯୁଗୀୟ ବିଶ୍ୱାସର ଊର୍ଦ୍ଧ୍ୱକୁ ଯାଇପାରୁ ନାହାନ୍ତି ।

ସାମାଜିକ ପରିବେଶ ଓ ଆର୍ଥିକ ଢାଞ୍ଚାରେ ଏତେ ସବୁ ପରିବର୍ତ୍ତନ ଆସିଲେ ମଧ୍ୟ ସାମଗ୍ରିକ ଭାବରେ ମାନସିକତାରେ ପରିବର୍ତ୍ତନ ଆସିପାରୁ ନାହିଁ । ଏବେ ବି କୁସଂସ୍କାର ବିଭିନ୍ନ ସମାଜରେ କାୟା ବିସ୍ତାର କରି ରହିଛି । ଏହା ସହିତ ସାମାଜିକ ଭେଦଭାବ ଓ ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ ଜୀବନପ୍ରବାହରୁ ଲୋପ ହେଉନାହିଁ । ଏପରିକି ନୂଆ ନୂଆ କୁସଂସ୍କାର, ଅସହିଷ୍ଣୁ ମନୋଭାବ ଓ ଆତଙ୍କବାଦ ବୃଦ୍ଧି ପାଇବାରେ ଲାଗିଛି । ଏହି ସ୍ଥିତିର ପରିବର୍ତ୍ତନ ପାଇଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଓ ବିଶ୍ୱଭ୍ରାତୃତ୍ୱର ଭାବନାକୁ ସାର୍ବଜନୀନ ଭାବେ ପ୍ରସାର କରିବା ପାଇଁ ଗମ୍ଭୀର ପ୍ରୟାସର ଆବଶ୍ୟକତା ରହିଥିବା ମନେହୁଏ ।

(ପ୍ରଗତିବାଦୀ, ୦୬.୦୭.୨୦୧୬)

# ସମାଜବାଦୀ ବିପ୍ଳବର ଶହେବର୍ଷ ପରେ...

ମାନବଜାତିର ଇତିହାସରେ ଗୋଟିଏ ଗୋଟିଏ ଘଟଣା ସଭ୍ୟତାକୁ ନୂଆ ମୋଡ଼ ଦେଇଛି। ନୂଆ ବିଚାର ସୃଷ୍ଟି ହୋଇଛି। ସମାଜର ଚିରାଚରିତ ଧାରାରେ ପରିବର୍ତ୍ତନ ଆସିଛି ଓ ଇତିହାସର ମୋଡ଼ ବଦଳିଛି। ଆଜକୁ ଠିକ୍ ଶହେବର୍ଷ ତଳେ ରୁଷରେ ଆସିଥିଲା ଏକ ସମାଜବାଦୀ ବିପ୍ଳବ। ରାଜନୈତିକ ସ୍ତରରେ ଏହା ରାଜତନ୍ତ୍ର ଓ ସାମ୍ରାଜ୍ୟବାଦକୁ ବଡ଼ ଆହ୍ୱାନ ଦେଇଥିଲା। ଅର୍ଥନୈତିକ ସ୍ତରରେ ପୁଞ୍ଜିବାଦ ବିରୁଦ୍ଧରେ ଏହା ଥିଲା ଏକ ବିପ୍ଳବ। ସମାଜରୁ ସାମନ୍ତବାଦ, ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦର ବିଲୋପ ପାଇଁ ରୁଷ୍ ବିପ୍ଳବ ଇତିହାସର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା ଥିଲା।

ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ, ସପ୍ତଦଶ ଶତାବ୍ଦୀରୁ ୟୁରୋପରେ ବିଜ୍ଞାନର ଯୁଗ ଆରମ୍ଭ ହୋଇଥିଲା। ତାର ଦୁଇଶହ ବର୍ଷ ପରେ ବିଜ୍ଞାନର ପ୍ରୟୋଗରେ ପ୍ରଯୁକ୍ତିର ଯୁଗ ଆରମ୍ଭ ହେଲା। ଆଧୁନିକ ପ୍ରଯୁକ୍ତି ଓ ବୈଷୟିକ ଜ୍ଞାନରୁ ୟୁରୋପରେ ଶିଳ୍ପ ବିପ୍ଳବ ଆସିବା ପରେ ପ୍ରଚୁର ଉତ୍ପାଦନ ସମ୍ଭବ ହେଲା ଓ ବିଭିନ୍ନ କଳକାରଖାନାମାନ ଗଢି ଉଠିଲା। ପରିଣାମତଃ ଏକ ପୁଞ୍ଜିପତି ଶ୍ରେଣୀ ମୁଣ୍ଡ ଟେକିଲା ଓ ଶ୍ରମିକ ଶ୍ରେଣୀ ସୃଷ୍ଟି ହେଲା। ସମାଜର ମୁଷ୍ଟିମେୟ ଲୋକ ବିଶାଳ ପୁଞ୍ଜିର ଅଧିକାରୀ ହେଲେ ଓ ଅର୍ଥନୈତିକ ବୈଷମ୍ୟ ବୃଦ୍ଧି ପାଇବାକୁ ଲାଗିଲା। ଯେଉଁ ଦେଶମାନେ ଅନ୍ୟ ଭୂଖଣ୍ଡରେ ସାମ୍ରାଜ୍ୟବାଦ ବିସ୍ତାର କଲେ ସେମାନେ ସମୃଦ୍ଧ ହେବାକୁ ଲାଗିଲେ ଓ ପରାଧୀନ ହୋଇ ରହିଥିବା ଦେଶମାନଙ୍କରେ ଉତ୍କଟ ଦାରିଦ୍ର୍ୟ ଦେଖାଦେଲା। ଅର୍ଥନୈତିକ ମାନଦଣ୍ଡରୁ ସମାଜ ଦୁଇ ଶ୍ରେଣୀରେ ବିଭକ୍ତ ହୋଇଗଲା, ଯଥା ଏକ ବୁର୍ଜୁଆ ଶ୍ରେଣୀ ଓ ଏକ ସର୍ବହରା ଶ୍ରେଣୀ। ଅଧିକାଂଶ ଦେଶରେ ଜମି, ଶିଳ୍ପ ଓ ସମ୍ପତ୍ତି ମୁଷ୍ଟିମେୟ ଲୋକଙ୍କ ନିୟନ୍ତ୍ରଣରେ ରହିଲା ଓ ସମାଜର ବହୁ ଲୋକ ଦାରିଦ୍ର୍ୟ ଭିତରେ ପେଷି ହୋଇ ରହିଲେ। ସମାଜର ରାଜନୈତିକ ବ୍ୟବସ୍ଥା ଅର୍ଥନୈତିକ ଶୋଷଣ ଓ ବୈଷମ୍ୟ ପାଇଁ ଅନୁକୂଳ ହୋଇରହିଲା।

ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ପୃଥିବୀର ସମୃଦ୍ଧ ଦେଶମାନଙ୍କ ମଧ୍ୟରେ ସାମ୍ରାଜ୍ୟବାଦର ବିସ୍ତାର ନେଇ ତୀବ୍ର ପ୍ରତିଯୋଗିତାର ବାତାବରଣ ରହିଥିଲା। ଏହା ସହ

ଅନ୍ୟାନ୍ୟ କାରଣରୁ ଏକ ବିଶ୍ୱଯୁଦ୍ଧର ପରିବେଶ ସୃଷ୍ଟି ହେଲା। ଏହି ସ୍ଥିତିରେ କେତେକ ଦେଶରେ ଭୟଙ୍କର ଆର୍ଥିକ ଦୁର୍ଗତିର ପରିବେଶ ଆସିଲା। ରୁଷ୍‌ରେ ବିଭିନ୍ନ କଳକାରଖାନା ବନ୍ଦ ହେବାକୁ ବସିଲା। ଚାଷୀକୂଳ ଓ କଳକାରଖାନା ଶ୍ରମିକ ଗୋଷ୍ଠୀ ଭିତରେ ତୀବ୍ର ଅସନ୍ତୋଷ ମୁଣ୍ଡ ଟେକିଲା। ଏହି ସ୍ଥିତିରେ ଜଣେ ବିଶିଷ୍ଟ ବିପ୍ଲବୀ ଭ୍ଲାଡିମିର ଲେନିନ୍ (୧୮୭୦-୧୯୨୪) ରୁଷ୍‌ରେ ଏକ ସମାଜବାଦୀ ଗଣବିପ୍ଳବର ନେତୃତ୍ୱ ନେଲେ। ସେ ଥିଲେ ରୁଷ୍‌ରେ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ଓ ସମାଜବାଦୀ ବିପ୍ଲବର ପଥଦ୍ରଷ୍ଟା। ରୁଷ୍‌ରେ ଚାଲିଥିବା ଜାର ଶାସନ ବିରୁଦ୍ଧରେ ସେ ଜନଗଣଙ୍କୁ ସଙ୍ଗଠିତ କରି କୃଷକ, ଶ୍ରମିକ ଓ ମେହନତୀ ମଣିଷମାନଙ୍କର ସହଯୋଗରେ ବିପ୍ଲବରେ ସଫଳ ହେଲେ। ପୃଥିବୀ ଇତିହାସରେ ପ୍ରଥମ କରି ଏକ ସମାଜବାଦୀ ରାଷ୍ଟ୍ର ବାସ୍ତବ ରୂପରେଖ ନେଲା।

ପ୍ରତ୍ୟେକଟି ରାଜନୈତିକ ବା ସାମାଜିକ କ୍ରାନ୍ତି ପଶ୍ଚାତରେ ଏକ ଦର୍ଶନ ବା ସୈଦ୍ଧାନ୍ତିକ ବିଚାର ରହିଥାଏ। ରୁଷରେ ଯେଉଁ ସମାଜବାଦୀ ବିପ୍ଲବର ସୂତ୍ରପାତ ହେଲା ତାହା ପଶ୍ଚାତରେ ଥିଲା କାର୍ଲ ମାର୍କସଙ୍କ ଦର୍ଶନ। କାର୍ଲ ମାର୍କସ୍ (୧୮୧୮-୧୮୮୩) ଥିଲେ ଜଣେ ଅର୍ଥନୀତିଜ୍ଞ, ଦାର୍ଶନିକ ଓ ଅନନ୍ୟ ଚିନ୍ତାନାୟକ। ମାନବ ସଭ୍ୟତାର କ୍ରମବିକାଶର ଇତିହାସକୁ କିପରି ଅର୍ଥନୈତିକ ବ୍ୟବସ୍ଥା ଓ ଶ୍ରେଣୀ ସଂଘର୍ଷ ପ୍ରଭାବିତ କରିଛି ତାହାର ବୈଜ୍ଞାନିକ ବିଶ୍ଳେଷଣ କରିବାରେ ସେ ଗଭୀର ବିଦ୍ୱତା ପ୍ରଦର୍ଶନ କରିଛନ୍ତି। ସମାଜର ଅର୍ଥନୀତି ଓ ଉତ୍ପାଦକ ଶକ୍ତି ସକଳ ସାମାଜିକ ବ୍ୟବସ୍ଥାକୁ କିପରି ନିର୍ଣ୍ଣାୟକ ଭାବେ ପ୍ରଭାବିତ କରିଛି ତାହାର ନିଖୁଣ ଚିତ୍ର ମାର୍କସ୍ ପ୍ରଦାନ କଲେ। ସମାଜ ଓ ଏହାର ସକଳ ବ୍ୟବସ୍ଥା ତଥା ପରିବର୍ତ୍ତନ କିପରି ଅର୍ଥନୈତିକ ଢାଞ୍ଚା ଦ୍ୱାରା ନିୟନ୍ତ୍ରିତ ହେଉଛି ତାହା ମାର୍କସଙ୍କ ଲେଖାରେ ପ୍ରକାଶ ପାଇଲା। ସମାଜରେ କିପରି ଶ୍ରେଣୀସଂଘର୍ଷ ଲାଗିରହିଛି ଓ ଶ୍ରେଣୀସଂଘର୍ଷ ମଧ୍ୟ ଦେଇ ଏକ ଶ୍ରେଣୀହୀନ ସମାଜର ବିକାଶ ହେବ ଏକ ଐତିହାସିକ ସତ୍ୟ। ବିଶେଷତଃ ଏକ ପୁଞ୍ଜିବାଦୀ ବ୍ୟବସ୍ଥା ସମାଜକୁ ଶ୍ରମବିହୀନ ମାଲିକ ଶ୍ରେଣୀ ଓ ସର୍ବହରା ଶ୍ରମିକ ଶ୍ରେଣୀରେ ବିଭାଜିତ କରିଦେଇଛି। ଏକ ସାମାଜିକ ବିପ୍ଲବ ଜରିଆରେ ସର୍ବହରା ଶ୍ରେଣୀ ଯେତେବେଳେ ରାଜନୈତିକ କ୍ଷମତା ହାସଲ କରିବେ ସେତେବେଳେ ଏକ ଶୋଷଣମୁକ୍ତ ସାମ୍ୟ ସମାଜ ପ୍ରତିଷ୍ଠା ହୋଇପାରିବ। ଏକ ଶ୍ରେଣୀବିହୀନ ଶୋଷଣମୁକ୍ତ ସାମ୍ୟ ସମାଜର ପ୍ରତିଷ୍ଠାକୁ ମାର୍କସ୍ ସାମାଜିକ ବିକାଶଧାରାର ଲକ୍ଷ୍ୟ ଭାବେ ଗ୍ରହଣ କରିଥିଲେ। ସାମାଜିକ ଉତ୍କର୍ଷର ଏହା ହେଉଛି ଅବଶ୍ୟମ୍ଭାବୀ ପରିଣତି।

ତେବେ ମାର୍କସ୍ ଭାବିଥିଲେ ଯେ, ୟୁରୋପରେ ସମୃଦ୍ଧି ପଛରେ ରହିଛି ସେଠିକାର ବୈଜ୍ଞାନିକ ଚିନ୍ତନ ଓ ବୈଷୟିକ ଜ୍ଞାନ-କୌଶଳ। ସେ ତାଙ୍କର ଅପୂର୍ବ ଶୈଳୀରେ ଏକ ସିଦ୍ଧାନ୍ତର

ଅବତାରଣା କଲେ ଯେ, ଶିଳ୍ପ ସଭ୍ୟତାର ପରିଣତି ହେଉଛି ପୁଞ୍ଜିବାଦ ଓ ପୁଞ୍ଜିବାଦରୁ ଦ୍ୱନ୍ଦ୍ୱାତ୍ମକ ଧାରାରେ ସମାଜବାଦର ଉଦ୍ଭବ ହେବ। ସମାଜବାଦର ମୂଳ ସିଦ୍ଧାନ୍ତ ହେବ ସାମ୍ୟବାଦୀ ଅର୍ଥ ବ୍ୟବସ୍ଥା। ପୁଞ୍ଜିବାଦର ଅନ୍ତିମ ପର୍ଯ୍ୟାୟ ହେବ ଏକ ସାମ୍ୟବାଦୀ ବ୍ୟବସ୍ଥା। ମାର୍କସ୍‌ଙ୍କର ଏହି ବିଚାର ଆଧାରରେ ଲେନିନ୍ ପ୍ରଥମ କରି ରୁଷରେ ଏକ ସମାଜବାଦୀ ବିପ୍ଳବ ଆଣିବାରେ ସଫଳ ହେଲେ। ସମାଜର ଶ୍ରମିକ, କୃଷକ ଓ ମେହନତୀ ମଣିଷମାନଙ୍କର ସହଯୋଗରେ ବିନା ହିଂସାରେ ବା ସର୍ବନିମ୍ନ ହିଂସାରେ ଏକ ବୁର୍ଜୁଆବାଦୀ ବ୍ୟବସ୍ଥାର ଅବସାନ ଘଟିଲା। ସାମ୍ରାଜ୍ୟବାଦ, ସାମନ୍ତବାଦ ଓ ପୁଞ୍ଜିବାଦ ଯାହା ମଣିଷ ସମାଜକୁ ନାନା ଭାବରେ ବିଭାଜିତ କରି ରଖିଛି, ତାହା ବିରୁଦ୍ଧରେ ସମାଜବାଦୀ ବିପ୍ଳବ ଥିଲା ଏକ କ୍ରାନ୍ତିକାରୀ ଆହ୍ୱାନ। ସମାଜରୁ ସକଳ ଶୋଷଣ, ଲୁଣ୍ଠନ ଓ ମୁଷ୍ଟିମେୟ ଲୋକଙ୍କର ଉପଭୋକ୍ତାବାଦୀ ଜୀବନଧାରାକୁ ଆହ୍ୱାନ ଦେଇ ଏକ ସମତାଭିତ୍ତିକ ସମାଜ ନିର୍ମାଣରେ ସମାଜବାଦ ଶହେ ବର୍ଷ ତଳେ କେତେ ସ୍ୱପ୍ନ ସୃଷ୍ଟି କରିଥିଲା।

ତେବେ କାର୍ଲ ମାର୍କସ୍ ବିଚାର ଦେଇଥିଲେ ଯେ, ଶିଳ୍ପ ସଭ୍ୟତା ଯେଉଁ ପୁଞ୍ଜିବାଦର ବିକାଶ ଘଟାଇଛି ତାହାର ଅବଶ୍ୟମ୍ଭାବୀ ପରିଣତି ହେବ ସମାଜବାଦ। ବିଜ୍ଞାନ ଓ ଆଧୁନିକ ପ୍ରଗତି ଭିତରୁ ସମାଜବାଦର ସ୍ୱତଃ ଅଭ୍ୟୁଦୟ ହେବ। ସମାଜବାଦର ଅନ୍ତିମ ରୂପରେଖ ହେବ ସାମ୍ୟବାଦ। ଏହା ହେବ ଇତିହାସରେ ମାନବ ସଭ୍ୟତାର ବିକାଶର କାହାଣୀ। ତେବେ ଏହି ଐତିହାସିକ ପରିଣତିକୁ ତ୍ୱରାନ୍ୱିତ କରିବା ପାଇଁ ରାଷ୍ଟ୍ରୀୟ ବିପ୍ଳବର ଆବଶ୍ୟକତା ରହିଛି। ଏକ ବିପ୍ଳବ ଜରିଆରେ ସମାଜବାଦ ଓ ସାମ୍ୟବାଦକୁ ବାସ୍ତବତାରେ ରୂପ ଦେଇ ହେବ। କିନ୍ତୁ ମାର୍କସ୍‌ଙ୍କର ଏହି ଭାବନା ଗୋଟିଏ ଶତାବ୍ଦୀ ଭିତରେ ଭୁଲ୍ ପ୍ରମାଣିତ ହେବା ମନେ ହୁଏ। ପୁଞ୍ଜିବାଦୀ ସମୃଦ୍ଧ ରାଷ୍ଟ୍ରମାନେ ସମାଜବାଦ ଆଡକୁ ଅଗ୍ରସର ହୋଇ ନାହାନ୍ତି ବରଂ ଯେଉଁ ରାଷ୍ଟ୍ରମାନଙ୍କରେ ସମାଜବାଦର ଧାରା ସୃଷ୍ଟି ହୋଇଛି ସେଠାରେ ବିପ୍ଳବ ଯୋଗୁ ଏହା ସମ୍ଭବ ହୋଇଛି। ଯେଉଁ ରାଷ୍ଟ୍ରମାନଙ୍କରେ ସମାଜବାଦୀ ବିପ୍ଳବ ଆସି କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠା ହୋଇଥିଲା, ସେ ସବୁ ସମୃଦ୍ଧ ରାଷ୍ଟ୍ର ନଥିଲେ ବା ସେଠାରେ ଆଖିଦୃଶିଆ ସମୃଦ୍ଧି ଆସି ନଥିଲା।

କେଉଁ ରାଜନୈତିକ ବ୍ୟବସ୍ଥା ସମାଜବାଦର ବିକାଶ ପାଇଁ ଅଧିକ ଅନୁକୂଳ ତାହା ଏକ ମୁକ୍ତ ପ୍ରଶ୍ନ। ଏହି ପୃଷ୍ଠଭୂମିରେ ସମାଜବାଦକୁ ଏକ ଅର୍ଥନୈତିକ ବିଚାର ଭାବେ ପ୍ରାୟତଃ ବିଚାର କରାଯାଏ। ସମାଜବାଦୀ ଆର୍ଥିକ ବ୍ୟବସ୍ଥାରେ ବ୍ୟକ୍ତି ସମ୍ପତ୍ତିର ମାଲିକ ହେବ ନାହିଁ, ରାଷ୍ଟ୍ର ମାଲିକ ହେବ। ପ୍ରତ୍ୟେକ ବ୍ୟକ୍ତି ନିଜ ସାମର୍ଥ୍ୟ ଅନୁଯାୟୀ ସାମାଜିକ ଜୀବନ ପ୍ରବାହକୁ ନିଜର ସୃଜନଶୀଳ ଅବଦାନ ଦେବ ଓ ନିଜର ଆବଶ୍ୟକତା ଅନୁଯାୟୀ ଏକ ସୁସ୍ଥ ଜୀବନ ନିର୍ବାହ କରିବ। ସମାଜରେ କୌଣସି ଅର୍ଥନୈତିକ ଶୋଷଣ ବା ଉତ୍କଟ

ବୈଷମ୍ୟ ରହିବ ନାହିଁ। ସମାଜର ସକଳ ସମ୍ପତ୍ତିର ଉପଭୋଗ କ୍ଷେତ୍ରରେ ଅନେକାଂଶରେ ସମତା ରହିବ। ସମାଜରେ ଯାହା କିଛି ଆର୍ଥିକ ବୈଷମ୍ୟ ରହିବ ତାହା ଅତି ନଗଣ୍ୟ ହେବ। ପ୍ରତ୍ୟେକ ବ୍ୟକ୍ତି ନିଜ ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ ପାଇଁ ଉପଯୁକ୍ତ ପରିବେଶ ପାଇବ ଓ ପ୍ରତ୍ୟେକ ବ୍ୟକ୍ତିର ସକଳ ଭୌତିକ ଆବଶ୍ୟକତା, ସ୍ୱାସ୍ଥ୍ୟ ସେବା, ଶିକ୍ଷା ଇତ୍ୟାଦି ରାଷ୍ଟ୍ର ଯୋଗାଇବ। ସମାଜରୁ ସକଳ ଆର୍ଥିକ ବୈଷମ୍ୟର ବିଲୋପ ହେଲେ, ସାମାଜିକ ଭେଦଭାବ ହିଁ ଅଚିରେ ଦୂର ହୋଇଯିବ। ଏକ ଶୋଷଣମୁକ୍ତ, ଭେଦଭାବରହିତ ଓ ସମତାଭିତ୍ତିକ ସମାଜ ଗଠନ ହିଁ ସମାଜବାଦର ମୂଳ ଲକ୍ଷ୍ୟ ରହିଥିଲା। ଏହିପରି ଏକ ଅର୍ଥନୈତିକ ବ୍ୟବସ୍ଥା ଦୃଢ ଭିତ୍ତି ନେଇପାରିଲେ ସମାଜର ସାଂସ୍କୃତିକ ଦୃଶ୍ୟପଟରେ ବି କ୍ରାନ୍ତିକାରୀ ପରିବର୍ତ୍ତନ ଘଟିବ।

ମାର୍କସ୍‌ବାଦ ଭିତରେ ଯାହା କିଛି ଦୁର୍ବଳତା ଥାଉ ନା କାହିଁକି ଏକ ସାମ୍ୟବାଦୀ ଅର୍ଥ ବ୍ୟବସ୍ଥାର ତାତ୍ତ୍ୱିକ ବିଚାର ଦେବାରେ କାର୍ଲ ମାର୍କସ୍ ଇତିହାସର ଏକ ଅନନ୍ୟ ଚିନ୍ତାନାୟକ। ମାର୍କସ୍‌ଙ୍କ ବିଚାରକୁ ଆଧାର କରି ସାମ୍ୟବାଦର ଯେଉଁ ଭାବନା ଆସିଥିଲା ତାହା ବିଭିନ୍ନ ଦିଗରେ ବିକଶିତ ହେଲା। ସାମ୍ୟବାଦ ଗଣତାନ୍ତ୍ରିକ ବ୍ୟବସ୍ଥା ଓ ବ୍ୟକ୍ତି ସ୍ୱାଧୀନତାର ପରିପନ୍ଥୀ ବୋଲି କେତେକ ବିଚାର କରିଥାନ୍ତି। କିନ୍ତୁ ଉତ୍କଟ ବୈଷମ୍ୟମୂଳକ ଏକ ବ୍ୟବସ୍ଥାରେ ବ୍ୟକ୍ତି ସ୍ୱାଧୀନତା କେତେ ସୁରକ୍ଷିତ ତାହା ବି ଏକ ପ୍ରଶ୍ନବାଚୀ। ତେବେ ଗଣତାନ୍ତ୍ରିକ ସମାଜବାଦ ପୃଥିବୀର ବିଭିନ୍ନ ରାଷ୍ଟ୍ରର ଆଦର୍ଶ ହୋଇ ରହିବା ବି ଏକ ଐତିହାସିକ ଉପଲବ୍ଧି। ସାମ୍ୟବାଦ,ସମାଜବାଦ ଓ ଗଣତାନ୍ତ୍ରିକ ସମାଜବାଦ ଏସବୁ ବିଚାରଧାରାର ମୂଳ ଉତ୍ସ ହେଉଛି ମାର୍କସ୍‌ବାଦ। ଏପରିକି ଯେଉଁ ରାଷ୍ଟ୍ର ସମୂହ ସମାଜବାଦ ବା ସାମ୍ୟବାଦକୁ ଗ୍ରହଣ କରିନାହାନ୍ତି ସେମାନେ ମଧ୍ୟ ଜନମଙ୍ଗଳକାରୀ ଆଭିମୁଖ୍ୟକୁ ପ୍ରତ୍ୟାଖ୍ୟାନ କରିନାହାନ୍ତି ବା କରିପାରିବେ ନାହିଁ।

ଶହେ ବର୍ଷ ତଳେ ସୋଭିଏତ୍ ରୁଷ୍‌ରେ ଯେଉଁ ସମାଜବାଦୀ ବିପ୍ଳବ ଆସିଥିଲା ତାହା ବି ଆଜି ସେହି ସ୍ଥିତିରେ ନାହିଁ। ବିଭିନ୍ନ ସାମ୍ୟବାଦୀ ରାଷ୍ଟ୍ରମାନଙ୍କରେ ବିଦ୍ରୋହ ସଙ୍ଘଟିତ ହୋଇ ରାଜନୈତିକ ସ୍ଥିତିରେ ପରିବର୍ତ୍ତନ ଘଟିଛି। ତେବେ ଆର୍ଥିକ ବିଷମତା, ଶୋଷଣ ଓ ପୁଞ୍ଜିବାଦୀ ବ୍ୟବସ୍ଥାର ଉପଭୋକ୍ତାବାଦ ବିରୁଦ୍ଧରେ ମାନବିକ ଚେତନାକୁ ପ୍ରଭାବିତ କରିବାରେ ମାର୍କସ୍‌ବାଦ ବହୁ ପ୍ରେରଣା ସୃଷ୍ଟି କରିଛି। ଏକ ନ୍ୟାୟପୂର୍ଣ୍ଣ ଓ ସମତାଭିତ୍ତିକ ସମାଜ ନିର୍ମାଣ ପରିପ୍ରେକ୍ଷୀରେ ମଣିଷର ପ୍ରୟାସ ପାଇଁ ମାର୍କସବାଦ ଯେ ଅନେକ ପ୍ରେରଣାର ଉତ୍ସ ହୋଇରହିବ ଏହା ଅସ୍ୱୀକାର କରିହେବ ନାହିଁ।

(ପ୍ରଗତିବାଦୀ, ୨୫.୦୧.୨୦୧୭)

# ମାନବିକ ବିକାଶ : ଆମର ସ୍ଥିତି

ରାଷ୍ଟ୍ରୀୟ ଭାବନାର ବିକାଶ ସହ ଜନମଙ୍ଗଳକାରୀ ରାଷ୍ଟ୍ରର ପରିକଳ୍ପନା ବିଂଶଶତାବ୍ଦୀ ଆରମ୍ଭରୁ ଧୀରେ ଧୀରେ ବିକଶିତ ହୋଇଛି । ସଭ୍ୟତାର କ୍ରମବିକାଶ ଧାରାରେ ଗଣତନ୍ତ୍ର, ସମାଜବାଦ, ଧର୍ମନିରପେକ୍ଷତା, ମାନବିକ ଅଧିକାର, ସାମାଜିକ ନ୍ୟାୟ, ବ୍ୟକ୍ତିମର୍ଯ୍ୟାଦାବୋଧ ଇତ୍ୟାଦି ସାମାଜିକ ମୂଲ୍ୟବୋଧଗୁଡ଼ିକ ସାର୍ବଜନୀନ ଭାବେ ସ୍ୱୀକୃତ ହେବାରେ ଲାଗିଛି । ଏସବୁ ବିଚାରବୋଧ ମାନବବାଦର ବିସ୍ତାରିତ ଆଦର୍ଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ସଂପ୍ରତି ପ୍ରତ୍ୟେକ ରାଷ୍ଟ୍ର ଜନମଙ୍ଗଳକାରୀ ଆଭିମୁଖ୍ୟ ପୋଷଣ କରି ଏହାର ନାଗରିକମାନଙ୍କର ସାମାଜିକ ବିକାଶକୁ ପ୍ରାଧାନ୍ୟ ଦେଉଛି । ପ୍ରତ୍ୟେକ ରାଷ୍ଟ୍ର ନିଜ ଦେଶରୁ ଦାରିଦ୍ର୍ୟ, ନିରକ୍ଷରତା, ସାମାଜିକ ଭେଦଭାବ, ମହିଳାମାନଙ୍କ ପ୍ରତି ରହିଥିବା କଟକଣା ଇତ୍ୟାଦିକୁ ଦୂର କରି ଏକ ସୁସ୍ଥ ଓ ସମତାପୂର୍ଣ୍ଣ ପରିବେଶର ବିକାଶ ପାଇଁ ପ୍ରୟାସ କରୁଛି । ସାରା ପୃଥିବୀରୁ ବିଂଶଶତାବ୍ଦୀ ଦ୍ୱିତୀୟାର୍ଦ୍ଧରୁ ସାମ୍ରାଜ୍ୟବାଦ ଓ ଉପନିବେଶବାଦର ବିଲୋପ ସାଧନ ହୋଇଛି । ଜାତିସଂଘର ପ୍ରତିଷ୍ଠା ପରଠାରୁ ବିଭିନ୍ନ ଆନ୍ତର୍ଜାତିକ ଓ ମାନବିକ ସମସ୍ୟାମାନ ବିଶ୍ୱସ୍ତରରେ ଆଲୋଚନାର ପ୍ରସଙ୍ଗ ହୋଇ ସମାଧାନ ବିଷୟରେ ସଚେତନତା ପ୍ରକାଶ ପାଉଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଶ୍ୱକୁ କ୍ଷୁଦ୍ର ଗ୍ରାମରେ ପରିଣତ କରିବାର ପରିବେଶ ଆଣିପାରିଛି । ଏହି ଗୋଟିଏ ଶତାବ୍ଦୀ ଭିତରେ ବହୁ ଆଶାତୀତ ପରିବର୍ତ୍ତନମାନ ସମଗ୍ର ବିଶ୍ୱରେ ଆସିପାରିଛି । ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ନାନା ଗବେଷଣା ଯୋଗୁ ବହୁ ମହାମାରୀ ଓ ଦୁରାରୋଗ୍ୟ ରୋଗମାନଙ୍କୁ ନିୟନ୍ତ୍ରଣ କରାଯାଇ ପାରିଛି । ଗମନାଗମନ କ୍ଷେତ୍ରରେ ବହୁ ସଫଳତା ମିଳିପାରିଛି ଓ ସାରା ପୃଥିବୀ ଏକ ଗ୍ରାମରେ ପରିଣତ ହେବାରେ ଲାଗିଛି । ଏପରିକି ମହାକାଶ ଯାତ୍ରା ସମ୍ଭବ ହୋଇପାରିଛି । ପୃଥିବୀର କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ଦୂରୀକରଣ ପାଇଁ କୃଷିକ୍ଷେତ୍ରରେ ବହୁ ସଫଳତା ମିଳିପାରିଛି ଓ ଉତ୍ପାଦନ ଆଧୁନିକ ବିଜ୍ଞାନ ଯୋଗୁ ବହୁଗୁଣିତ ହେବାରେ ଲାଗିଛି । ପୃଥିବୀକୁ କ୍ଷୁଧାମୁକ୍ତ, ରୋଗମୁକ୍ତ କରିବାକୁ ଆନ୍ତର୍ଜାତିକ ସ୍ତରରେ ବହୁ ଉଦ୍ୟମ ଆରମ୍ଭ କରାଯାଇଛି । ମାନବବାଦୀ ଜୀବନବୋଧର ଯେଉଁ ଭାବନା ଧୀରେ ଧୀରେ ବିକଶିତ ହେବାରେ ଲାଗିଛି ତାହାର ପରିଣାମରୁ ସମଗ୍ର ବିଶ୍ୱରେ ଏକ ଆନ୍ତର୍ଜାତିକ ମନୋଭାବ ବିକଶିତ ହେବାରେ ଲାଗିଛି । ଏହିପରି କହିବାକୁ ଗଲେ ବହୁ ସକାରାତ୍ମକ ଆଦର୍ଶମାନ ବିଶ୍ୱସ୍ତରରେ ବିକଶିତ ହେବାରେ ଲାଗିଛି ।

ବିଭିନ୍ନ ରାଷ୍ଟ୍ରର ଜନସାଧାରଣଙ୍କର ଜୀବନ ଧାରଣର ମାନ ସଂପର୍କରେ ଅନୁଶୀଳନ

# ସମାଜବାଦୀ ବିପ୍ଳବର ଶହେବର୍ଷ ପରେ...

ମାନବଜାତିର ଇତିହାସରେ ଗୋଟିଏ ଗୋଟିଏ ଘଟଣା ସଭ୍ୟତାକୁ ନୂଆ ମୋଡ଼ ଦେଇଛି । ନୂଆ ବିଚାର ସୃଷ୍ଟି ହୋଇଛି । ସମାଜର ଚିରାଚରିତ ଧାରାରେ ପରିବର୍ତ୍ତନ ଆସିଛି ଓ ଇତିହାସର ମୋଡ଼ ବଦଳିଛି । ଆଜକୁ ଠିକ୍ ଶହେବର୍ଷ ତଳେ ରୁଷରେ ଆସିଥିଲା ଏକ ସମାଜବାଦୀ ବିପ୍ଳବ । ରାଜନୈତିକ ସ୍ତରରେ ଏହା ରାଜତନ୍ତ୍ର ଓ ସାମ୍ରାଜ୍ୟବାଦକୁ ବଡ଼ ଆହ୍ୱାନ ଦେଇଥିଲା । ଅର୍ଥନୈତିକ ସ୍ତରରେ ପୁଞ୍ଜିବାଦ ବିରୁଦ୍ଧରେ ଏହା ଥିଲା ଏକ ବିପ୍ଳବ । ସମାଜରୁ ସାମନ୍ତବାଦ, ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦର ବିଲୋପ ପାଇଁ ରୁଷ୍ ବିପ୍ଳବ ଇତିହାସର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା ଥିଲା ।

ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ, ସପ୍ତଦଶ ଶତାବ୍ଦୀରୁ ୟୁରୋପରେ ବିଜ୍ଞାନର ଯୁଗ ଆରମ୍ଭ ହୋଇଥିଲା । ତାର ଦୁଇଶହ ବର୍ଷ ପରେ ବିଜ୍ଞାନର ପ୍ରୟୋଗରେ ପ୍ରଯୁକ୍ତିର ଯୁଗ ଆରମ୍ଭ ହେଲା । ଆଧୁନିକ ପ୍ରଯୁକ୍ତି ଓ ବୈଷୟିକ ଜ୍ଞାନରୁ ୟୁରୋପରେ ଶିଳ୍ପ ବିପ୍ଳବ ଆସିବା ପରେ ପ୍ରଚୁର ଉତ୍ପାଦନ ସମ୍ଭବ ହେଲା ଓ ବିଭିନ୍ନ କଳକାରଖାନାମାନ ଗଢି ଉଠିଲା । ପରିଣାମତଃ ଏକ ପୁଞ୍ଜିପତି ଶ୍ରେଣୀ ମୁଣ୍ଡ ଟେକିଲା ଓ ଶ୍ରମିକ ଶ୍ରେଣୀ ସୃଷ୍ଟି ହେଲା । ସମାଜର ମୁଷ୍ଟିମେୟ ଲୋକ ବିଶାଳ ପୁଞ୍ଜିର ଅଧିକାରୀ ହେଲେ ଓ ଅର୍ଥନୈତିକ ବୈଷମ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଯେଉଁ ଦେଶମାନେ ଅନ୍ୟ ଭୂଖଣ୍ଡରେ ସାମ୍ରାଜ୍ୟବାଦ ବିସ୍ତାର କଲେ ସେମାନେ ସମୃଦ୍ଧ ହେବାକୁ ଲାଗିଲେ ଓ ପରାଧୀନ ହୋଇ ରହିଥିବା ଦେଶମାନଙ୍କରେ ଉତ୍କଟ ଦାରିଦ୍ର୍ୟ ଦେଖାଦେଲା । ଅର୍ଥନୈତିକ ମାନଦଣ୍ଡରୁ ସମାଜ ଦୁଇ ଶ୍ରେଣୀରେ ବିଭକ୍ତ ହୋଇଗଲା, ଯଥା ଏକ ବୁର୍ଜୁଆ ଶ୍ରେଣୀ ଓ ଏକ ସର୍ବହରା ଶ୍ରେଣୀ । ଅଧିକାଂଶ ଦେଶରେ ଜମି, ଶିଳ୍ପ ଓ ସମ୍ପତ୍ତି ମୁଷ୍ଟିମେୟ ଲୋକଙ୍କ ନିୟନ୍ତ୍ରଣରେ ରହିଲା ଓ ସମାଜର ବହୁ ଲୋକ ଦାରିଦ୍ର୍ୟ ଭିତରେ ପେଷି ହୋଇରହିଲେ । ସମାଜର ରାଜନୈତିକ ବ୍ୟବସ୍ଥା ଅର୍ଥନୈତିକ ଶୋଷଣ ଓ ବୈଷମ୍ୟ ପାଇଁ ଅନୁକୂଳ ହୋଇରହିଲା ।

ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ପୃଥିବୀର ସମୃଦ୍ଧ ଦେଶମାନଙ୍କ ମଧ୍ୟରେ ସାମ୍ରାଜ୍ୟବାଦର ବିସ୍ତାର ନେଇ ତୀବ୍ର ପ୍ରତିଯୋଗିତାର ବାତାବରଣ ରହିଥିଲା । ଏହା ସହ

ବିକାଶକୁ ଉଭୟ ଅର୍ଥନୈତିକ ବିକାଶ ଓ ସାମାଜିକ ବିକାଶର ଏକ ସମନ୍ୱିତ ଭାବନା ଭାବେ ଗ୍ରହଣ କରାଯାଉଛି। ଦେଶର ଜାତୀୟ ଉତ୍ପାଦନ ବୃଦ୍ଧି ପାଇବା ଏକ ଅର୍ଥନୈତିକ ଅବଧାରଣା। ରାଷ୍ଟ୍ରର ଜିଡିପି କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇବା ବିକାଶର ଲକ୍ଷଣ। ତେବେ ସେହି ବିକାଶ ରାଷ୍ଟ୍ରର ସବୁ ସ୍ତରର ଲୋକମାନଙ୍କ ପାଇଁ ଉପଲବ୍ଧ ହୋଇପାରୁଛି କି ନାହିଁ ତାହା ବି ଏକ ପ୍ରଶ୍ନ। ରାଷ୍ଟ୍ରର ଅର୍ଥନୈତିକ ବିକାଶ ବୃଦ୍ଧିପାଇବା କିନ୍ତୁ ତାହାର ସୁଫଳ ମୁଷ୍ଟିମେୟ ଲୋକ ଉପଭୋଗ କରିବା ଓ ସମାଜରେ ଅର୍ଥନୈତିକ ବୈଷମ୍ୟ ବଢି ବଢି ଚାଲିବା ରାଷ୍ଟ୍ର ପାଇଁ ମଙ୍ଗଳକର ନୁହେଁ। ଏକ ସୁସ୍ଥ ଜୀବନ ନିର୍ବାହ ପାଇଁ ଆବଶ୍ୟକ ହେଉଥିବା ସର୍ବନିମ୍ନ ମୌଳିକ ଆବଶ୍ୟକତା ଦେଶର ଜନଗଣଙ୍କ ପାଇଁ ଉପଲବ୍ଧ ହେବା ଦରକାର। ସର୍ବନିମ୍ନ ଆବଶ୍ୟକତା ଭିତରେ ଅନେକ ବିଷୟ ଆସିପାରେ ଯେପରିକି ସ୍ୱଚ୍ଛ ପାନୀୟ ଜଳ, ସର୍ବନିମ୍ନ ସ୍ୱାସ୍ଥ୍ୟସେବା ଓ ପରିମଳ ବ୍ୟବସ୍ଥା, ବିଜୁଳିବତିର ବ୍ୟବହାର, ବିଦ୍ୟାଳୟ ଶିକ୍ଷା, କର୍ମସଂସ୍ଥାନ ଇତ୍ୟାଦି। ତେବେ ଆମ ଦେଶର ଗ୍ରାମମାନଙ୍କରେ ଏ ସମସ୍ତ ସୁବିଧା ଏପର୍ଯ୍ୟନ୍ତ ଉପଲବ୍ଧ ହୋଇପାରି ନାହିଁ, ଅଧିକନ୍ତୁ ସବୁ ଗ୍ରାମକୁ ସବୁଦିନିଆଁ ରାସ୍ତାଘାଟ ମଧ ନାହିଁ। ଏବେ ବି ବିଭିନ୍ନ ଗ୍ରାମର ଜନଗଣଙ୍କ ପାଖରେ ଏସବୁ ସୁଯୋଗ ମିଳିପାରି ନାହିଁ। ଏସବୁ ଅଭାବରେ ବିକାଶର ଚିତ୍ର କିପରି ଅର୍ଥପୂର୍ଣ୍ଣ ହୋଇପାରିବ। ଦେଶର ଜିଡିପି ସହ ତାହାର ସଫଳ ସଂପ୍ରସାରଣ ସବୁ ସ୍ତରକୁ ନ ହେଲେ ସମାଜର ଯଥାର୍ଥ ବିକାଶ ହୋଇପାରିବ ନାହିଁ। ଦେଶର ଜନଗଣ କେଉଁ ସ୍ତରରେ ଜୀବନ ନିର୍ବାହ କରୁଛନ୍ତି, ସର୍ବନିମ୍ନ ମୌଳିକ ସୁବିଧା ସୁଯୋଗ ସେମାନେ ଲାଭକରି ପାରୁଛନ୍ତି କି ନାହିଁ ତାହା ବିକାଶର ଚିତ୍ର ଦେଇଥାଏ। ଏବେ ବି ଆମ ଦେଶର ଗ୍ରାମୀଣ ପରିବେଶରେ ବହୁ ଦାରିଦ୍ର୍ୟ, ନିରକ୍ଷରତା, ଅସ୍ୱାସ୍ଥ୍ୟକର ସ୍ଥିତି ରହିଛି। ସମାଜର ଦଳିତବର୍ଗର ଓ ମାର୍ଜିନାଲାଇଜଡ ଶ୍ରେଣୀର ଲୋକମାନେ ମନ୍ଦ ସ୍ଥିତି ଭିତରେ ରହିଛନ୍ତି। ସୁତରାଂ ଅର୍ଥନୈତିକ ବିକାଶ ପୃଷ୍ଠଭୂମିରେ ଯାହା ଉନ୍ନତି ସାଧିତ ହୋଇଛି ତାହାର ସୁଫଳ ସମାଜର ସବୁ ଶ୍ରେଣୀର ଲୋକଙ୍କ ପାଖରେ ଉପଲବ୍ଧ ହୋଇପାରୁ ନାହିଁ। ଏହି ଦୃଷ୍ଟିରୁ ବିକାଶ ଭାବନା ସହ ସବୁ ସ୍ତରର ଲୋକଙ୍କର ଜୀବନର ମାନ ସଂପୃକ୍ତ ହେବା ଆବଶ୍ୟକ। ଅର୍ଥନୈତିକ ବିକାଶର ଏକ ମାନବିକ ଓ ନୈତିକ ଦିଗନ୍ତ ରହିବା ଯଥାର୍ଥ ମନେହୁଏ।

ସାମାଜିକ ବିକାଶ ଅର୍ଥନୈତିକ ବିକାଶ ତୁଳନାରେ ଅଧିକ ଜଟିଳ ମନେହୁଏ। ଏକ ପାରମ୍ପାରିକ ଓ ଭେଦଭାବମୂଳକ ସମାଜରେ ସାମାଜିକ ସମତା ଓ ନ୍ୟାୟ ସବୁଠାରୁ ଏକ ମହତ୍ତର ବିକାଶର ଚିତ୍ର ଦେଇଥାଏ। ସାଧାରଣ ଜୀବନପ୍ରବାହରେ ସାମାଜିକ ସମତା ଓ ବ୍ୟକ୍ତିର ଜୀବନ-ମୂଲ୍ୟ ଯେତେ ଅଧିକ ପ୍ରତିଫଳିତ ହୁଏ ସମାଜର ବିକାଶ ସେତେ

ଉନ୍ନତ ହୁଏ ବୋଲି ଏକ ମତ ରହିଛି । ସମାଜର ସାଧାରଣ ଦୃଷ୍ଟିଭଙ୍ଗୀ ଓ ଜୀବନବୋଧରେ ସମତା ଓ ମାନବିକ ମର୍ଯ୍ୟାଦାର ମହତ୍ତ୍ୱ କେତେ ପ୍ରତିଫଳିତ ହେଉଛି ତାହାରି ମାନଦଣ୍ଡରେ ଜୀବନର ଗୁଣାତ୍ମକ ମୂଲ୍ୟାୟନ କରାଯାଇପାରେ । ଅତୀତରେ ବିଭିନ୍ନ ସମାଜରେ ଲିଙ୍ଗଗତ ଭେଦଭାବ ରହିଥିଲା ଓ ମହିଳାମାନେ କେତେକ ଅଧିକାରରୁ ବଞ୍ଚିତ ହୋଇ ରହିଥିଲେ । ତେବେ ମହିଳା ସଶକ୍ତୀକରଣ, ନାରୀମୁକ୍ତି ଆନ୍ଦୋଳନ ଇତ୍ୟାଦି ଭାବନାର ବିକାଶରୁ ଲିଙ୍ଗଗତ ଭେଦଭାବରୁ ସମାଜ ଧୀରେ ଧୀରେ ମୁକ୍ତ ହେବାକୁ ଲାଗିଲା । କିନ୍ତୁ କେତେକ ରକ୍ଷଣଶୀଳ ପାରମ୍ପରିକ ସମାଜରେ ମହିଳାମାନେ ନାନା ଶୋଷଣ ଓ ଭେଦଭାବର ଶିକାର ହେଉଛନ୍ତି । ଏତଦ୍‌ବ୍ୟତୀତ ଭାରତୀୟ ସମାଜରେ ଜାତିବାଦ ଜନିତ ଭେଦଭାବ ଏକ ଗଭୀର ସାମାଜିକ ବୈଷମ୍ୟର ଚିତ୍ର ପ୍ରଦାନ କରିଥାଏ । ସାମାଜିକ ବିଭାଜନ ସାମାଜିକ ବିକାଶର ପରିପନ୍ଥୀ । ପୁନଶ୍ଚ ଭାରତୀୟ ସମାଜରେ ସାମ୍ପ୍ରଦାୟିକ ଭେଦଭାବ ବୃଦ୍ଧି ପାଇବା ଏକ ସାଧାରଣ ଅନୁଭବ । ଧର୍ମ ନାମରେ ସମାଜ ବିଭାଜିତ ହେବା, ଧାର୍ମିକ ଆବେଗ ସମାଜରେ ଘୃଣା ଓ ବିଦ୍ୱେଷର ପରିବେଶ ଆଣିବା ଓ ଧାର୍ମିକ ଉତ୍ତେଜନାକୁ ନେଇ ସାମ୍ପ୍ରଦାୟିକ ଦଙ୍ଗା ସୃଷ୍ଟି ହେବା ସକଳ ମାନବିକ ମୂଲ୍ୟବୋଧର ବିରୁଦ୍ଧାଚରଣ କରିଥାଏ । ସାମାଜିକ ବିକାଶ ଏକ ସୁସଂହତ ଓ ଭ୍ରାତୃତ୍ୱପୂର୍ଣ୍ଣ ସମାଜର ଚିତ୍ର ପ୍ରଦାନ କରିଥାଏ । ଅପରପକ୍ଷରେ ଜାତିଗତ, ଲିଙ୍ଗଗତ ଓ ସାମ୍ପ୍ରଦାୟିକ ଭେଦଭାବ ସାମାଜିକ ବିକାଶର ଏକ ନକାରାତ୍ମକ ସ୍ଥିତିର ସୂଚନା ଦିଏ ।

ମାନବିକ ବିକାଶର ଅନ୍ୟ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ବିଚାରଶୀଳତା ଓ ନାଗରିକ କର୍ତ୍ତବ୍ୟବୋଧର ବିକାଶ । ବିଚାରଶୀଳତା ବୈଜ୍ଞାନିକ ମନୋଭାବ ଓ ମୁକ୍ତ ମନୋଭାବର ସୂଚନା ଦେଇଥାଏ । ଏହାର ଅଭିବ୍ୟକ୍ତି ଯେତେ ଅଧିକରୁ ଅଧିକ ସାମାଜିକ ଜୀବନଧାରାରେ ବ୍ୟକ୍ତ ହୁଏ ସମାଜର ଗୁଣାତ୍ମକ ମାନ ସେତେ ବୃଦ୍ଧିପାଏ । ସେହିପରି ନାଗରିକ କର୍ତ୍ତବ୍ୟବୋଧ ଓ ସମାଜ ପ୍ରତି ଉତ୍ତରଦାୟୀ ଦୃଷ୍ଟିଭଙ୍ଗୀ ସାମାଜିକ ଜୀବନଧାରାକୁ ଉନ୍ନତ କରିଥାଏ । ବିଚାରଶୀଳତା ଓ ନାଗରିକ କର୍ତ୍ତବ୍ୟବୋଧ ପ୍ରତି ସ୍ପର୍ଶକାତରଶୂନ୍ୟ ମନୋଭାବ ଜୀବନବୋଧକୁ ନ୍ୟୂନ କରି ରଖିଥାଏ । ସୁତରାଂ ସାମାଜିକ ବିକାଶ ସହ ଜନଗଣଙ୍କର ଜୀବନବୋଧରେ ପ୍ରତିଫଳିତ ହେଉଥିବା ବିଚାରଶୀଳତା ଓ ନାଗରିକ ଶୃଙ୍ଖଳାବୋଧ ଘନିଷ୍ଠ ଭାବେ ସମ୍ବନ୍ଧିତ ହେବା ମନେହୁଏ । ଏହି ଦୃଷ୍ଟିରୁ ବିଚାର କଲେ ଆମ ଦେଶ ଅନଗ୍ରସର ସ୍ଥିତିରେ ଥିବା କୁହାଯାଇପାରେ ।

(ପ୍ରଗତିବାଦୀ, ୧୦.୦୫.୨୦୧୭)

# ସାମାଜିକ ସୁରକ୍ଷା

ମଣିଷ ଶିଶୁଟିଏ ଜନ୍ମ ହେବାପରେ ସେ ଏକ ପରିବାରର ସଦସ୍ୟ ହେବା ସହ ମଣିଷ ସମୁଦାୟର ଅଂଶବିଶେଷ ହୋଇଥାଏ। ବିଡମ୍ବନାର ବିଷୟ ପ୍ରକୃତି ମଣିଷ ଶିଶୁଟିକୁ ଅସହାୟ କରିଛି। ଇତର ଜୀବମାନେ ଜନ୍ମ ହେବାର କେତେ ଘଣ୍ଟା ବା ଦିନ ଭିତରେ ମା' ଜୀବର ସାହାଯ୍ୟରେ ନିଜ ଦାୟିତ୍ୱ ନିଜେ ବହନ କରନ୍ତି। କିନ୍ତୁ ମଣିଷ ଶିଶୁ ବହୁବର୍ଷ ପର୍ଯ୍ୟନ୍ତ ଅସହାୟ ହୋଇ ରହିଥାଏ। ଏହି ଆବଶ୍ୟକତାରୁ ମଣିଷ ସାମାଜିକ ହୋଇଥାଏ। ଏକ ପରିବାର, ନିଜ ଗୋଷ୍ଠୀ ଓ ଏକ ବୃହତ୍ତର ସମାଜ ଉପରେ ନିର୍ଭର କରି ସେ ବିକଶିତ ହୋଇଥାଏ। ପୁନଶ୍ଚ ଯେତେ ବୁଦ୍ଧିମାନ କିମ୍ବା ଶକ୍ତିଶାଳୀ ହେଲେ ମଧ୍ୟ ସେ ନିଜ ଜୀବନର ଆବଶ୍ୟକତା ନିଜେ ପୂରଣ କରିବା ସମ୍ଭବ ନୁହେଁ। ଜୀବନର ଆବଶ୍ୟକତା, ନିରାପତ୍ତା ଓ ସାମର୍ଥ୍ୟର ବିକାଶ ପାଇଁ ମଣିଷକୁ ଅନ୍ୟ ଉପରେ ନିର୍ଭର କରିବାକୁ ହୋଇଥାଏ। ଏହି ଆବଶ୍ୟକତା ଓ ପ୍ରକ୍ରିୟା ମଧ୍ୟ ଦେଇ କ୍ଷୁଦ୍ର ଗ୍ରାମୀଣ ଗୋଷ୍ଠୀ ଜୀବନରୁ ବୃହତ୍ତର ମାନବସମାଜ, ରାଷ୍ଟ୍ର, ଆନ୍ତର୍ଜାତିକ ସଙ୍ଗଠନ, ସାର୍ବଜନୀନ ଜୀବନଦୃଷ୍ଟିର ଭାବନାମାନ ସୃଷ୍ଟି ହେବା ଦେଖାଯାଏ।

ଆଜିର ପରିସ୍ଥିତି ପରି ଅତୀତରେ ସାମାଜିକ ବ୍ୟବସ୍ଥା ଏତେ ସୁଦୃଢ ହୋଇନଥିଲା। ସଭ୍ୟତାମାନଙ୍କର ବିକାଶର ବହୁ ଶତାବ୍ଦୀ ପରେ ରାଷ୍ଟ୍ରୀୟ ଭାବନାର ବିକାଶ ହେଲା। ରାଜତନ୍ତ୍ର ଯୁଗରୁ ଜନମଙ୍ଗଳକାରୀ ରାଷ୍ଟ୍ରର ଅଭ୍ୟୁଦୟ ରାଜନୈତିକ ପ୍ରେକ୍ଷାପଟରେ ଥିଲା ଏକ ବଡ ଉତ୍ତରଣ। ଅତୀତରେ ଗ୍ରାମୀଣ ଜୀବନଧାରାରେ କିଛି ପାରସ୍ପରିକତା ରହିଥିଲେ ବି ତାହା ମୁଖ୍ୟତଃ ପରିବାରକୈନ୍ଦ୍ରିକ ଥିଲା। ବ୍ୟକ୍ତିର ଅସୁସ୍ଥତା, ଅକ୍ଷମତା ଓ ବାର୍ଦ୍ଧକ୍ୟ ପାଇଁ ପରିବାର ହିଁ ସହଯୋଗ ଦେଉଥିଲା। ସବୁ ସଭ୍ୟତାରେ ପାରିବାରିକ ଜୀବନ ଏକ ସୁଦୃଢ ସାମାଜିକ ଅନୁଷ୍ଠାନ ଭାବେ ଗଢି ଉଠିଥିଲା। ଏବେ ବି ଏହି ପାରିବାରିକ ବନ୍ଧନ ପାରମ୍ପରିକ ସମାଜରେ କିଛିଟା ଦୃଢ ହୋଇରହିଛି। ଅତୀତରେ ଯେଉଁ ଯୌଥ ପରିବାରମାନ ରହିଥିଲା, ସେସବୁ ଏବେ ପ୍ରାକୃତିକ ପ୍ରକ୍ରିୟାରେ ବିଲୟ ହୋଇଚାଲିଛି। ପରିବର୍ତ୍ତିତ ସାମାଜିକ ଓ ଅର୍ଥନୈତିକ ସ୍ଥିତିରେ ଏବେ ପ୍ରାୟତଃ ଅଣୁ-ପରିବାରମାନ ଆଜିର ବାସ୍ତବତା ହୋଇଛି। ଆଗେ

ଲୋକମାନେ ନିଜର ଭିଟାମାଟିରେ ହିଁ ଗ୍ରାମୀଣ ଜୀବନ ଅତିବାହିତ କରୁଥିଲେ ଓ ଅନେକାଂଶରେ ପାରିବାରିକ ବୃତ୍ତି ଭିତରେ ସ୍ୱାବଲମ୍ବୀ ହେଉଥିଲେ । କୃଷି, କ୍ଷୁଦ୍ର କୁଟୀର ଶିଳ୍ପ ଓ ବୃତ୍ତିଗତ କାରିଗରୀ ବିଦ୍ୟା ଭିତରେ ଲୋକମାନଙ୍କୁ ଜୀବନ ନିର୍ବାହ କରିବାକୁ ହେଉଥିଲା ।

ସଭ୍ୟତାର ଇତିହାସରେ ଶିଳ୍ପବିପ୍ଳବ ଥିଲା ଏକ ଯୁଗାନ୍ତକାରୀ ଘଟଣା । ଅଷ୍ଟାଦଶ ଶତାବ୍ଦୀରେ ପ୍ରଥମେ ଇଂଲଣ୍ଡରେ ଓ ପରେ ପରେ ୟୁରୋପର ଅନ୍ୟାନ୍ୟ ଦେଶମାନଙ୍କରେ ନୂଆ ନୂଆ ପ୍ରଯୁକ୍ତିକୁ ଆଧାର କରି ବଡ ବଡ କଳକାରଖାନାମାନ ସ୍ଥାପିତ ହେବାକୁ ଲାଗିଲା । ବିଭିନ୍ନ ଦେଶକୁ ଜଳପଥର ଆବିଷ୍କାର ହୋଇଥିବାରୁ ଶିଳ୍ପୋନ୍ନତ ଦେଶମାନେ ସାମ୍ରାଜ୍ୟବାଦର ବିସ୍ତାର କଲେ । ଧୀରେ ଧୀରେ ଗ୍ରାମୀଣ କୃଷିଭିତ୍ତିକ ସଭ୍ୟତା ରୂପାନ୍ତରିତ ହେବାକୁ ଲାଗିଲା । ଶିଳ୍ପବିପ୍ଳବ ଜନିତ କାରଣରୁ ସମାଜର ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ଘଟିଲା । ବଡ ବଡ କଳକାରଖାନାମାନ ପ୍ରାଯୁକ୍ତିକ ଜ୍ଞାନ ଆଧାରରେ ଗଢିଉଠିବା ସହ ବ୍ୟବସାୟ ବାଣିଜ୍ୟର ପ୍ରସାର ଘଟିବା ସହ ବଡ ବଡ ସହରମାନ ଗଢିଉଠିଲା । ଏହି ପ୍ରକ୍ରିୟାରେ ଶିକ୍ଷାର ପ୍ରସାର ଘଟିଲା । ପରିଣାମତଃ ପିତୃପୁରୁଷଙ୍କ କୌଳିକ ବୃତ୍ତି ଭିତରେ ରହି ସ୍ୱଚ୍ଛନ୍ଦ ଜୀବନ ଅତିବାହିତ କରିବା ଆଉ ସମ୍ଭବ ହେଲା ନାହିଁ । ନିଜର ଭିଟାମାଟି ପରିତ୍ୟାଗ କରି ନୂଆ ନୂଆ କର୍ମସଂସ୍ଥାନ ଭିତରେ ଲୋକମାନେ ବିଭିନ୍ନ ପ୍ରକାରର ବୃତ୍ତିକୁ ଆଦରି ନେଲେ । ଗମନାଗମନର ଉନ୍ନତି ଏହି ସୁଯୋଗକୁ ତ୍ୱରାନ୍ୱିତ କରିଦେଲା ।

ଶିଳ୍ପବିପ୍ଳବ ଯୁଗରେ ଅର୍ଥନୈତିକ ଢାଞ୍ଚାରେ ଯେପରି ପରିବର୍ତ୍ତନ ଆସିଲା, ସେହିପରି ଅଷ୍ଟାଦଶ ଶତାବ୍ଦୀରେ ରାଜନୈତିକ ବିଚାର ସ୍ତରରେ ମଧ୍ୟ କେତେକ କ୍ରାନ୍ତିକାରୀ ବିଚାର ସୃଷ୍ଟି ହେଲା । ସାମନ୍ତବାଦ, ରାଜତନ୍ତ୍ର ବିରୁଦ୍ଧରେ କେତେକ ଦେଶରେ ଲୋକମାନେ ବିପ୍ଳବମାନ ସୃଷ୍ଟି କରି ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରଚଳନ କଲେ । ପରେ ଗଣତନ୍ତ୍ର ଏକ ରାଜନୈତିକ ବ୍ୟବସ୍ଥାରୁ ଏକ ସାମାଜିକ ଆଦର୍ଶ ଭାବେ ଗୃହୀତ ହେବାକୁ ଲାଗିଲା । ପୁନଶ୍ଚ ସାମ୍ରାଜ୍ୟବାଦ, ପୁଞ୍ଜିବାଦ ଯେଉଁ ଶୋଷଣ ଉପରେ ଆଧାରିତ ଥିଲା ତାହା ବିରୁଦ୍ଧରେ ସମାଜବାଦ ଓ ସାମ୍ୟବାଦ କ୍ରାନ୍ତିକାରୀ ବିଚାର ଭାବେ ଏକ ବୈଚାରିକ ଆଲୋଡନ ସୃଷ୍ଟି କରିଥିଲା । ସ୍ୱାଧୀନତା, ସ୍ୱତନ୍ତ୍ରତା, ସମାନତା ସାର୍ବଜନୀନ ଆଦର୍ଶ ଭାବେ ରାଷ୍ଟ୍ରୀୟ ସ୍ତରରେ ଓ ସାମାଜିକ ସ୍ତରରେ ଧୀରେ ଧୀରେ ସ୍ୱୀକୃତ ହେବାକୁ ଲାଗିଲା ।

ୟୁରୋପରେ ବିଜ୍ଞାନର ଯୁଗ ଆସିବା ସହିତ ମାନବବାଦୀ ବିଚାରବୋଧର ଯେଉଁ ବୈଚାରିକ ଭାବନାର ସୂତ୍ରପାତ ହୋଇଥିଲା ତାହାର ପରିଣାମରୁ ସାମାଜିକ ଭେଦଭାବ, ବର୍ଣ୍ଣବୈଷମ୍ୟ, ଦାସତ୍ୱ ବ୍ୟବସ୍ଥା ବିରୁଦ୍ଧରେ ମଧ ବିପ୍ଳବ ହେଲା। ସବୁ ସଂସ୍କୃତିରେ ମହିଳାମାନେ ଯୁଗ ଯୁଗ ଧରି ଯେଉଁପରି ଅସମ୍ମାନର ଶିକାର ହେଉଥିଲେ ତାହା ଦୂର କରିବାକୁ ଜାଗରଣ ଆସିଲା। ମହିଳାମାନେ ରାଜନୈତିକ ଅଧିକାର ପାଇଲେ ଓ ଶିକ୍ଷା, କର୍ମସଂସ୍ଥାନ ଓ ସାମାଜିକ ସ୍ତରରେ ପୁରୁଷମାନଙ୍କ ସହ ସମାନ ବିବେଚିତ ହେଲେ। ମହିଳା ସଶକ୍ତୀକରଣ ନେଇ ବିଭିନ୍ନ ଦେଶରେ ସାମାଜିକ ପରିବର୍ତ୍ତନର ସୂତ୍ରପାତ ହେଲା। ବିଭିନ୍ନ ବଡ ବଡ ଶିଳ୍ପ ଓ କଳକାରଖାନାମାନଙ୍କରେ ଶ୍ରମିକମାନେ ଯେଉଁପରି ଶୋଷିତ ହେଉଥିଲେ ତାହା ବିରୁଦ୍ଧରେ ସେମାନେ ସଙ୍ଗଠିତ ହୋଇ ସେମାନଙ୍କ କାର୍ଯ୍ୟନିର୍ଘଣ୍ଟ, ନିରାପତ୍ତା, ଅବସରକାଳୀନ ପେନସନ୍ ଇତ୍ୟାଦି ପାଇଁ ଦାବି ଉଠାଇଲେ। ବିଭିନ୍ନ ଦେଶରେ ଶ୍ରମିକ ସଙ୍ଗଠନ ବା ଟ୍ରେଡ୍ ୟୁନିୟନ୍‌ମାନେ ଗଠିତ ହୋଇ ଶ୍ରମିକମାନଙ୍କର ମୌଳିକ ଅଧିକାର ନେଇ ସାମାଜିକ ସଚେତନତା ପ୍ରକାଶ ପାଇଲା।

ବିଂଶଶତାବ୍ଦୀ ମଧ୍ୟଭାଗରେ ଯେଉଁ ଦୁଇଟି ବିଶ୍ୱଯୁଦ୍ଧ ଘଟିଗଲା ଓ ସେଥିରେ ଯେଉଁ ହିଂସା, ବର୍ବରତା ପ୍ରକାଶ ପାଇଥିଲା ତାହା ମାନବଜାତିର ବିବେକକୁ ବହୁଭାବରେ ଦଂଶନ କରିଥିଲା। ଏହା ସହିତ ଲକ୍ଷ ଲକ୍ଷ ଜୀଉମାନଙ୍କ ଉପରେ ନାଜିମାନେ ଯେପରି ଅମାନବୀୟ ଅତ୍ୟାଚାର କରିଥିଲେ ତାହା ବି ଥିଲା ଇତିହାସରେ ଏକ କଳଙ୍କିତ ଅଧ୍ୟାୟ। ଅବଶ୍ୟ ମାନବ ସଭ୍ୟତାର ଇତିହାସରେ ମଣିଷ ପ୍ରତି ମଣିଷର ଅଶୋଭନୀୟତା ଓ ଅତ୍ୟାଚାରର କାହାଣୀ ବଡ ମର୍ମାନ୍ତିକ। ଆମେରିକରେ ନିଗ୍ରୋମାନଙ୍କ ପ୍ରତି ହୋଇଥିବା ଅତ୍ୟାଚାର, ଆଫ୍ରିକାରେ ରହିଥିବା ବର୍ଣ୍ଣବୈଷମ୍ୟ ଓ ଭାରତବର୍ଷରେ ଦଳିତ ଓ ଶୂଦ୍ରମାନଙ୍କ ପ୍ରତି ହୋଇଥିବା ଶୋଷଣ ମାନବିକତାର ପରିପନ୍ଥୀ। ଏହା ସହିତ ଅତୀତରେ ଘଟି ଯାଇଥିବା ବହୁ ଯୁଦ୍ଧ, ବିଭୀଷିକା ବହୁ ଅମାନବିକତାର ଚିତ୍ର ଦେଇଥିଲା। ମାନବବାଦର ଯେଉଁ ବୈଚାରିକ ଆଲୋଡନଟି ସୃଷ୍ଟି ହୋଇଥିଲା ତାହାର ଏକ ରୂପରେଖ ଜାତିସଂଘ ପ୍ରତିଷ୍ଠା ଭିତରେ ପ୍ରତିଫଳିତ ହେଲା। ଦ୍ୱିତୀୟ ବିଶ୍ୱଯୁଦ୍ଧର ଧ୍ୱଂସଦହନ ପରେ ସକଳ ମାନବିକ ସମସ୍ୟାର ଏକ ଶାନ୍ତିପୂର୍ଣ୍ଣ ସମାଧାନ କରିବାକୁ ତଥା ସମଗ୍ର ପୃଥିବୀରେ ଭ୍ରାତୃତ୍ୱଭାବର ଆଦର୍ଶକୁ ପ୍ରସାର କରିବା ପାଇଁ ଜାତିସଂଘର ପ୍ରତିଷ୍ଠା ଥିଲା ଏକ ଯୁଗାନ୍ତକାରୀ ଘଟଣା। ଏହା ସହିତ ମାନବିକ ଅଧିକାର ନେଇ ଯେଉଁ ଆନ୍ତର୍ଜାତିକ ଘୋଷଣାନାମାଟି ଜାତିସଂଘରେ ଗୃହୀତ ହୋଇଛି ତାହା ବି ମାନବଜାତିର ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ବିଷୟ। ସବୁ ମଣିଷ ଜନ୍ମରୁ ସମାନ ଓ ସମସ୍ତଙ୍କର ସମାନ

ମର୍ଯ୍ୟାଦା ରହିଛି । ଜାତି, ବର୍ଣ୍ଣ, ଲିଙ୍ଗ, ଭାଷା, ଧର୍ମ, ରାଜନୈତିକ ବିଚାର, ଜାତୀୟତା, ସାମାଜିକ ବଂଶପରିଚୟ ଆଧାରରେ ମଣିଷ ମଣିଷ ଭିତରେ ଭେଦଭାବ ସୃଷ୍ଟି କରାଯାଇପାରିବ ନାହିଁ । ଆମେ ମଣିଷ ଭାବେ ଆମର ବିଚାର ଓ ବିବେକ ଦ୍ୱାରା ପରିଚାଳିତ ହୋଇ ଅନ୍ୟମାନଙ୍କ ପ୍ରତି ଭ୍ରାତୃତ୍ୱପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରିବା ଆମର ଏକ ନୈତିକ କର୍ତ୍ତବ୍ୟ । ଏହି ଭାବନାକୁ ଜାତିସଂଘରେ ସ୍ୱୀକୃତି କରାଯିବା ସଭ୍ୟତାର ଇତିହାସରେ ଏକ ନୈତିକ ଉତ୍ତରଣ କୁହାଯାଇପାରେ । ଏବେ ବି ଆମ ସଂସାରରେ ହିଂସା, ସନ୍ତ୍ରାସବାଦ, ସାମ୍ପ୍ରଦାୟିକତାବାଦ ଓ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ତିକ୍ତତା ରହିଥିଲେ ସୁଦ୍ଧା ବୈଚାରିକ ସ୍ତରରେ ଯେଉଁ ମାନବିକ ଜୀବନଦୃଷ୍ଟି ଓ ଆନ୍ତର୍ଜାତିକ ଚେତନାର ବିକାଶ ହୋଇଛି ତାହା ଯେ ଏକ ସାଂସ୍କୃତିକ ଉତ୍ତରଣ ଏହା କୁହାଯାଇପାରେ ।

ଗଣତାନ୍ତ୍ରିକ ଆଦର୍ଶ, ସମାଜବାଦ, ହେତୁବାଦୀ ବିଚାରବୋଧ ଓ ମାନବବାଦର ସମନ୍ୱିତ ବିକାଶରୁ ଜନମଙ୍ଗଳକାରୀରାଷ୍ଟ୍ର ଭାବନା ଧୀରେ ଧୀରେ ଦୃଢ ଭିତ୍ତି ନେବାରେ ଲାଗିଛି । ପରିଣାମତଃ "ସାମାଜିକ ସୁରକ୍ଷା" ଏକ ରାଷ୍ଟ୍ରୀୟ କର୍ତ୍ତବ୍ୟ ଭାବେ ବିଚାର ପ୍ରକାଶ ପାଉଛି । ପ୍ରତ୍ୟେକ ରାଷ୍ଟ୍ର ଏହାର ନାଗରିକମାନଙ୍କୁ ସୁରକ୍ଷା ଦେବା ସହ ଏକ ସ୍ୱଚ୍ଛନ୍ଦ ଜୀବନନିର୍ବାହ ପାଇଁ ପରିବେଶ ଯୋଗାଇବା ରାଷ୍ଟ୍ରର ଲକ୍ଷ୍ୟ ଭାବେ ନିଆଯାଉଛି । ଯେଉଁ ଦେଶମାନଙ୍କରେ ଦାରିଦ୍ର୍ୟ, ଶିଶୁ ଶ୍ରମିକ ପ୍ରଥା, ନିରକ୍ଷରତା ପରି ସମସ୍ୟାମାନ ରହିଛି ତାହାର ବିଲୋପ ପାଇଁ ଆନ୍ତର୍ଜାତିକ ସହଯୋଗ ପ୍ରକାଶ ପାଉଛି । ସମାଜର ବରିଷ୍ଠ ନାଗରିକମାନେ ମଧ୍ୟ ଯେପରି ଅସହାୟ ନହୋଇ ସମ୍ମାନଜନକ ଭାବେ ବଞ୍ଚିପାରିବେ ଏଥିପାଇଁ ପ୍ରୟାସ ଆରମ୍ଭ ହୋଇଛି । ପରିବର୍ତ୍ତିତ ପରିସ୍ଥିତିରେ ପାରିବାରିକ ସଂପର୍କ ଶିଥିଳ ହୋଇ ଆସୁଥିଲେ ମଧ୍ୟ ସାମାଜିକ ଚେତନାର ସ୍ତର ଓ ରାଷ୍ଟ୍ରୀୟ ଲକ୍ଷ୍ୟ ମାନବିକତାର ବିକାଶ ଦିଗରେ ପ୍ରସାରିତ ହୋଇଚାଲିଛି । ମାନବ ସମାଜରୁ ବିଭେଦକାରୀ ଭାବନା ସବୁର ବିଲୋପ ହୋଇପାରିଲେ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ଯେ ସମ୍ଭବ ହୋଇପାରିବ ଏହା ଏକ ବଡ ଉପଲବ୍ଧି ।

(ପ୍ରଗତିବାଦୀ, ୧୪.୦୬.୨୦୧୭)

# ସଫଳତା ବିଫଳତାର କାହାଣୀ

ଏହି ଶହେବର୍ଷ ଭିତରେ ପୃଥିବୀରେ ଅନେକ କିଛି ପରିବର୍ତ୍ତନ ଘଟିଯାଇଛି । ମଣିଷ ସଭ୍ୟତାର ଇତିହାସରେ ଯାହା ସବୁ ପରିବର୍ତ୍ତନ ସଂଘଟିତ ହୋଇଛି, ସମ୍ଭବତଃ ତାପେକ୍ଷା ଅଧିକ ପରିବର୍ତ୍ତନ ଏହି ଶହେବର୍ଷ ଭିତରେ ହୋଇପାରିଛି । ଜ୍ଞାନବିଜ୍ଞାନ କ୍ଷେତ୍ରରେ ବହୁ ବୈପ୍ଳବିକ ପରିବର୍ତ୍ତନମାନ ସଂଘଟିତ ହୋଇଛି ଏବଂ ଆଧୁନିକ ପ୍ରଯୁକ୍ତି ମଣିଷର ସାମର୍ଥ୍ୟକୁ ନାନାଭାବରେ ବୃଦ୍ଧି କରିପାରିଛି । କୃଷି ଉତ୍ପାଦନ ବହୁ ବୃଦ୍ଧିପାଇଛି, ଫଳରେ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ଅନାୟାସରେ ପୂରଣ ହୋଇପାରୁଛି । ଗମନାଗମନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନମାନ ଆସିପାରିଛି । ଏକଦା ଅଚିନ୍ତନୀୟ ଥିବା ମହାକାଶ ଯାତ୍ରା ଜନିତ ଜ୍ଞାନ ଓ ପ୍ରଯୁକ୍ତି ମଣିଷ ହାସଲ କରିପାରିଛି । ଚିକିତ୍ସାବିଜ୍ଞାନ ବହୁ କ୍ଷେତ୍ରରେ ଆଶାତୀତ ସଫଳତା ଲାଭ କରିପାରିଛି । ଅଙ୍ଗ ପ୍ରତିରୋପଣ ଏବେ ସମ୍ଭବ ହୋଇପାରୁଛି । ପୃଥିବୀରେ କେଉଁଠି କିଛି ଘଟିଲେ ତାହାର ସମ୍ବାଦ କେତୋଟି ମିନିଟ୍ ଭିତରେ ସମଗ୍ର ମାନବ ସମାଜ ଅବଗତ ହୋଇପାରୁଛି । ଜ୍ଞାନର ପ୍ରସାର ଉପଗ୍ରହ ମାଧ୍ୟମରେ ସାର୍ବଜନୀନ ହେବା ସମ୍ଭବ ହେଉଛି । ବହୁ କ୍ଷେତ୍ରରେ ଅନେକ ସଫଳତା ଏହି ଗୋଟିଏ ଶତାବ୍ଦୀ ଭିତରେ ମଣିଷ ହାସଲ କରିପାରିଛି । ଏସବୁ ବୈଜ୍ଞାନିକ କ୍ରିୟାଶୀଳତା ଓ ମାନବିକ ପ୍ରୟାସ ମଧ୍ୟ ଦେଇ ସମ୍ଭବ ହୋଇଛି । ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିବା ବୈଜ୍ଞାନିକ ଅନୁସନ୍ଧିତ୍ସା ଚାରି ଶତାବ୍ଦୀ ଭିତରେ ସଭ୍ୟତାର ବିକାଶକୁ ତ୍ୱରାନ୍ୱିତ କରିପାରିଛି । ସଭ୍ୟତାର କ୍ରମବିକାଶ ଧାରାରେ ହଜାର ହଜାର ବର୍ଷ ଧରି ମଣିଷ ଯାହା ହାସଲ କରିପାରିନଥିଲା ଏହି ତିନି ଚାରି ଶତାବ୍ଦୀ ଭିତରେ ମଣିଷ ତାଠାରୁ ଅଧିକ ହାସଲ କରିପାରିଛି । ଏସବୁ ବୈଜ୍ଞାନିକ କ୍ରିୟାଶୀଳତା ଓ ମାନବିକ ପ୍ରୟାସ ମଧ୍ୟ ଦେଇ ସମ୍ଭବ ହୋଇଛି । ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିବା ବୈଜ୍ଞାନିକ ଅନୁସନ୍ଧିତ୍ସା ଚାରି ଶତାବ୍ଦୀ ଭିତରେ ସଭ୍ୟତାର ବିକାଶକୁ ତ୍ୱରାନ୍ୱିତ କରିପାରିଛି । ସଭ୍ୟତାର କ୍ରମବିକାଶ ଧାରାରେ ହଜାର ହଜାର ବର୍ଷ ଧରି ମଣିଷ ଯାହା ହାସଲ କରିପାରିନଥିଲା ଏହି ତିନି ଚାରି ଶତାବ୍ଦୀ ଭିତରେ ମଣିଷ ତାଠାରୁ ଅଧିକ ହାସଲ କରିପାରିଛି । ମଣିଷର ବୌଦ୍ଧିକ ଅନୁସନ୍ଧିତ୍ସା, ବୈଜ୍ଞାନିକ ଗବେଷଣା, ରାଷ୍ଟ୍ରୀୟ ପ୍ରୋତ୍ସାହନ ଓ ସ୍ଥଳବିଶେଷରେ ବହୁରାଷ୍ଟ୍ରୀୟ ସହଯୋଗ ମଣିଷର ଏହି ସଫଳତା ପାଇଁ ନିର୍ଣ୍ଣାୟକ ହୋଇପାରିଛି ।

ଆମର ସଫଳତାର କାହାଣୀ ଆମ ପାଇଁ ବହୁ ପ୍ରେରଣାର ଉତ୍ସ। ତେବେ ଏହି ଶହେ ବର୍ଷ ଭିତରେ ମଣିଷ ସମାଜ ବହୁ ଆହ୍ୱାନର ମଧ୍ୟ ସମ୍ମୁଖୀନ ହୋଇଛି। ଦୁଇ ଦୁଇଟି ବିଶ୍ୱଯୁଦ୍ଧ ମାନବିକ ଅବିବେକିତାର ନଗ୍ନ ଚିତ୍ର ଆମକୁ ଦେଖାଏ। ସେହିପରି କେତେ କେତେ ହିଂସା, ସନ୍ତ୍ରାସବାଦ, ସାମ୍ପ୍ରଦାୟିକ ବିଦ୍ୱେଷ, ଜାତିଗତ ବା ଧର୍ମଗତ ଦଙ୍ଗା ଦ୍ୱାରା କେତେ କେତେ ସାଧାରଣ ମଣିଷ ନାନା ଭାବରେ ଆକ୍ରାନ୍ତ ହୋଇଛନ୍ତି। ଅନେକଙ୍କର ସଂସାର ଉଜୁଡ଼ି ଯାଇଛି। ପରିସ୍ଥିତି କ୍ରମେ ନିଜ ମାଟିରୁ ବିତାଡିତ ହୋଇ ସେମାନେ ଶରଣାର୍ଥୀ ହୋଇ ଅସମ୍ମାନର ଜୀବନ ବିତାଇଛନ୍ତି, କେତେ ମଣିଷ ନାନା ଅସହାୟତାର ଶିକାର ହୋଇଛନ୍ତି। ଏବେ ବି କେତେକ ବିକାଶଶୀଳ ଦେଶମାନଙ୍କରେ ବହୁ ଦାରିଦ୍ର୍ୟ ରହିଛି। ଏକବିଂଶ ଶତାବ୍ଦୀରେ ବି ଅନେକ ବ୍ୟକ୍ତି ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ସ୍ଲମମାନଙ୍କରେ ଜୀବନ ନିର୍ବାହ କରିବାକୁ ବାଧ୍ୟ ହେଉଛନ୍ତି। କେତେ କେତେ ଶିଶୁ ଅପପୁଷ୍ଟିରେ ଶିକାର ହୋଇ କଷ୍ଟକର ଜୀବନ ବଞ୍ଚୁଛନ୍ତି। ନିରକ୍ଷରତା ଏବେ ବି କେତେକ ଦେଶରେ ଏକ ସମସ୍ୟା ହୋଇରହିଛି। ସବୁ ମଣିଷଙ୍କ ପାଇଁ ଏକ ସମ୍ମାନଜନକ ଜୀବନ ସମ୍ଭବ ହୋଇପାରି ନାହିଁ। କେତେକ ଦେଶରେ ସାମାଜିକ ଭେଦଭାବ ଏବେ ବି ତୀବ୍ର ଭାବରେ ରହିଛି। ଜାତି, ଧର୍ମ, ସମ୍ପ୍ରଦାୟ ଇତ୍ୟାଦି ଭାବନାକୁ ନେଇ ମଣିଷ ମଣିଷ ଭିତରେ ପ୍ରାଚୀର ଛିଡାହୋଇଛି। ସେହିପରି କେତେକ ସ୍ଥଳରେ ପଡୋଶୀ ରାଷ୍ଟ୍ରମାନଙ୍କ ଭିତରେ ସୀମା ବିବାଦକୁ ନେଇ କିମ୍ବା ଅନ୍ୟ କାରଣକୁ ନେଇ ତିକ୍ତ ମନୋଭାବ ରହିଛି ବା ସୃଷ୍ଟି କରାଯାଉଛି। ଗୋଟିଏ ପଟରେ ଦେଶମାନଙ୍କରେ ଉତ୍କଟ ଦାରିଦ୍ର୍ୟ ରହିଥିବା ବେଳେ ଦେଶର ଅନେକ ସମ୍ବଳକୁ ଅସ୍ତ୍ରଶସ୍ତ୍ର ନିର୍ମାଣ ପାଇଁ ବା ସାମରିକ ଶକ୍ତିକୁ ଦୃଢ଼ କରିବାରେ ବ୍ୟୟ କରାଯାଉଛି। ହିଂସା, ଘୃଣା, ଶତ୍ରୁ ମନୋଭାବ, ଅସହିଷ୍ଣୁତା ପରି ନାନା ନକାରାତ୍ମକ ଭାବନାରୁ ସମାଜ, ରାଷ୍ଟ୍ର ମୁକ୍ତ ହୋଇପାରୁ ନାହିଁ। ସଭ୍ୟତା, ବୌଦ୍ଧିକତା ଓ ଶିକ୍ଷାର ଯେତେ ପ୍ରସାର ହେଲେ ମଧ୍ୟ ମାନବିକ ମୂଲ୍ୟବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ସାର୍ବଜନୀନ ଭାବେ ଆମ ଜୀବନବୋଧରେ ପ୍ରତିଫଳିତ ହେଉ ନାହିଁ।

ଅତୀତରୁ ଆଜି ପର୍ଯ୍ୟନ୍ତ ବିଭିନ୍ନ ଦେଶରେ ଓ ସମାଜରେ ନାନା କାରଣ ନେଇ ଭେଦଭାବ ବ୍ୟାପକ ହୋଇ ରହିଆସିଛି। ଆମ ଦେଶର ଅନୁଭୂତିରେ ପ୍ରାୟ ସବୁ ଗ୍ରାମରେ ସାଆନ୍ତ ସାହି ଓ ଦଳିତ ସାହି ଭିତରେ ଉତ୍କଟ ଭେଦଭାବ ରହିଆସିଛି। ଜାତିଗତ ଭେଦଭାବ ଆମର ମର୍ମକୁ ଏପରି ଭେଦିକରି ରହିଛି ଯେ ସବୁ ମଣିଷ ସମାନ ଅଧିକାର ବା ମର୍ଯ୍ୟାଦାର ଅଧିକାରୀ ହୋଇପାରୁ ନାହାନ୍ତି। ମାନବିକ ଅଧିକାର ନେଇ ଆନ୍ତର୍ଜାତିକ ଘୋଷଣାନାମା ଓ

ସାମ୍ବିଧାନିକ ସ୍ୱୀକୃତି ସତ୍ତ୍ୱେ ମାନବିକ ଅଧିକାରର ଉଲଙ୍ଘନ ସାଧାରଣ ହେଲେ ମଧ୍ୟ ସେସବୁ ବାସ୍ତବ କ୍ଷେତ୍ରରେ ପ୍ରତିଫଳିତ ହୋଇପାରୁ ନାହିଁ । ସେହିପରି ଆଧୁନିକ ବିଜ୍ଞାନର ଯୁଗାନ୍ତକାରୀ ସଫଳତା ସତ୍ତ୍ୱେ ସମାଜରୁ କୁସଂସ୍କାର ଦୂର ହୋଇପାରୁ ନାହିଁ । କୁସଂସ୍କାର, ଅପବିଶ୍ୱାସ, ନାନା ଅହେତୁକ ପରମ୍ପରା ସମାଜରେ ବ୍ୟାପିକ ହୋଇରହିଛି । ଏପରିକି ଆଧୁନିକ ଗଣମାଧ୍ୟମ କୁସଂସ୍କାରର ପ୍ରସାର ପାଇଁ ବିନିଯୋଗ ହେଉଛି । ଅନେକ ଅହେତୁକ, ଅବୈଜ୍ଞାନିକ ଓ ପାରଲୌକିକ ଭାବନାମାନଙ୍କୁ ସମାଜରେ ଗଣମାଧ୍ୟମ ଯୋଗେ ବ୍ୟାପକ କରାଯାଉଛି । ଏସବୁ ସଭ୍ୟତାର ବଡ ବିଡମ୍ବନା କହିବାକୁ ହେବ ।

ଗୋଟିଏ ଶତାବ୍ଦୀ ତଳେ ରୁଷ୍‌ରେ ଯେଉଁ ସମାଜବାଦୀ ବିପ୍ଳବ ଆସିଥିଲା ତାହା ଇତିହାସରେ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଶିଳ୍ପବିପ୍ଳବ ପରେ ତାର ପରିଣାମରୁ ସାମ୍ରାଜ୍ୟବାଦର ବିସ୍ତାର ଘଟିଥିଲା । ଏହା ସହିତ ଏକ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା ମଧ୍ୟ ମୁଣ୍ଡ ଟେକିଲା । କଳକାରଖାନା ସହ ଯନ୍ତ୍ରଶିଳ୍ପର ପ୍ରୟୋଗରୁ ଗୋଟିଏ କ୍ଷୁଦ୍ର ଶ୍ରେଣୀ ସମସ୍ତ ପୁଞ୍ଜିର ଅଧିକାରୀ ହେଲେ ଓ ସମାଜର ଏକ ବିରାଟ ଶ୍ରେଣୀ ସର୍ବହରା ଓ ଶୋଷିତ ଶ୍ରେଣୀ ପାଲଟିଗଲେ । ରାଜତନ୍ତ୍ର ଓ ସାମନ୍ତବାଦ ପରିବର୍ତ୍ତେ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ ଅନ୍ୟପ୍ରକାର ମାନବିକ ସମସ୍ୟାକୁ ସୃଷ୍ଟି କଲା । ମୁଷ୍ଟିମେୟ ଲୋକ ସର୍ବଦା ସମସ୍ତ ସୁବିଧା ସୁଯୋଗର ଅଧିକାରୀ ହେବା ଓ ଅଗଣିତ ମଣିଷ ଶୋଷିତ ଓ ଅତ୍ୟାଚାରିତ ହେବା ହେଉଛି ଏକ ଐତିହାସିକ ଉପଲବ୍ଧି । ଅତୀତରେ ରାଜତନ୍ତ୍ର ଓ ସାମନ୍ତବାଦ ସମାଜରେ ଅତ୍ୟାଚାର ଓ ଶୋଷଣର ଯେଉଁ ପରିବେଶ ସୃଷ୍ଟି କରିଥିଲା ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ ସେହି ଅତ୍ୟାଚାର ଓ ବୈଷମ୍ୟକୁ ଆହୁରି ବ୍ୟାପକ କରିଥିଲା । ଗୋଟିଏ ସମୟରେ ସାମନ୍ତବାଦ ଓ ରାଜତନ୍ତ୍ର ବିରୁଦ୍ଧରେ ସ୍ୱର ଉଠିଥିଲା ଓ ଗଣତନ୍ତ୍ରେ ଏକ ଉନ୍ନତ ରାଜନୈତିକ ବ୍ୟବସ୍ଥା ଭାବେ କେତେକ ଦେଶରେ ଗୃହୀତ ହୋଇଥିଲା । ଗଣତାନ୍ତ୍ରିକ ବିଚାରବୋଧ ଦେଇ ବ୍ୟକ୍ତିସ୍ୱାଧୀନତା ଓ ସମତାର ଯେଉଁ ଭାବନା ସୃଷ୍ଟି ହୋଇଥିଲା ତାହାର ଏକ ସୁଦୂରପ୍ରସାରୀ ପ୍ରଭାବ ରହିଲା । ସବୁ ମଣିଷଙ୍କର ଜୀବନର ମୂଲ୍ୟ ରହିଛି ଓ ଯେକୌଣସି ପ୍ରକାର ଶୋଷଣ ଓ ଭେଦଭାବ ଯେ ଅନ୍ୟାୟ ଓ ଅନୈତିକ ଏହି ଭାବନା ଚିନ୍ତାରାଜ୍ୟରେ ଯୁଗାନ୍ତକାରୀ ଥିଲା । ୟୁରୋପରେ ରାଜନୈତିକ ଗଣତନ୍ତ୍ର ପ୍ରତିଷ୍ଠା ପୃଷ୍ଠଭୂମିରେ କେତେକ ଦାର୍ଶନିକଙ୍କର ମାନବବାଦୀ ବିଚାର ଓ ରାଜନୈତିକ ଦର୍ଶନର ଗଭୀର ପ୍ରଭାବ ରହିଥିଲା । ଯେ କୌଣସି ଏକ ରାଜନୈତିକ ପରିବର୍ତ୍ତନ ପଶ୍ଚାତରେ କିଛି ବୌଦ୍ଧିକ ବିଚାର ବା ଚିନ୍ତନର ଭୂମିକା ରହିଥାଏ । ଚିନ୍ତାରାଜ୍ୟରେ ଆସିଥିବା ପରିବର୍ତ୍ତନ ଅନୁକୂଳ ପରିବେଶ ପାଇଲେ ବାସ୍ତବତାରେ ରୂପାନ୍ତରିତ ହୋଇଥାଏ । ରୁଷ୍‌ରେ ଯେଉଁ

କମ୍ୟୁନିଷ୍ଟ ବିପ୍ଳବ ଆସିଥିଲା ତାହା ପଶ୍ଚାତରେ ରହିଥିଲା କାର୍ଲ ମାର୍କସ୍ ଓ ଏଙ୍ଗେଲସଙ୍କ ଲିଖିତ କମ୍ୟୁନିଷ୍ଟ ଇସ୍ତାହାର ବା କମ୍ୟୁନିଷ୍ଟ ମାନିଫେଷ୍ଟୋ। ଏହାପରେ କାର୍ଲ ମାର୍କସ୍‌ଙ୍କର ଲିଖିତ ଗ୍ରନ୍ଥ "ଦେସ କ୍ୟାପିଟାଲ"(ପୁଞ୍ଜିବାଦର ବିଶ୍ଳେଷଣାତ୍ମକ ଅନୁଶୀଳନ)ଥିଲା ସମାଜବାଦୀ ବିଚାର ସ୍ତରରେ ଯୁଗାନ୍ତକାରୀ ଗ୍ରନ୍ଥ। ପୁଞ୍ଜିବାଦୀ ଦାସତ୍ୱରୁ ସମାଜର ଶ୍ରମିକ, କୃଷକ ଓ ମେହନତୀ ମଣିଷମାନଙ୍କର ମୁକ୍ତି ପାଇଁ ସେଥିରେ ଏକ ବଳିଷ୍ଠ ବିଚାର ରହିଥିଲା। ସମାଜର ଅର୍ଥନୈତିକ ବ୍ୟବସ୍ଥା କିପରି ରାଜନୈତିକ, ସାଂସ୍କୃତିକ ବ୍ୟବସ୍ଥା ସକଳକୁ ପ୍ରଭାବିତ କରିଥାଏ ତାହାର ଏକ ବସ୍ତୁନିଷ୍ଠ ଚିତ୍ର ମାର୍କସ ଦେଇଥିଲେ। ସମାଜରୁ ସକଳ ପ୍ରକାର ଅନ୍ୟାୟ, ଶୋଷଣ, ଭେଦଭାବ ଦୂର କରିବାକୁ ହେଲେ ପୁଞ୍ଜିବାଦ ଓ ତାହାର ସହୋଦର ଭାଇ ସାମନ୍ତବାଦ, ସାମ୍ରାଜ୍ୟବାଦ ଓ ରାଜତନ୍ତ୍ରକୁ ଦୂର କରିବାକୁ ହେବ। ଦୁନିଆର ମଜଦୂର ଓ ମେହନତୀ ମଣିଷମାନେ ଏକାଠି ହୋଇ ରାଜନୈତିକ ଶକ୍ତିର ଅଧିକାରୀ ହେଲେ ଏକ ସମତାଭିତ୍ତିକ ସମାଜର ଯେ ପ୍ରତିଷ୍ଠା ହେବ ଏହି ଆଶା ଓ ସ୍ୱପ୍ନ ଗୋଟିଏ ସମୟରେ ଏକ ବୈପ୍ଳବିକ ବିଚାର ଥିଲା। ସଫଳତା ବିଫଳତା ନିର୍ବିଶେଷରେ ସାମନ୍ତବାଦ, ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ ବିରୁଦ୍ଧରେ ଯେଉଁ ସାମାଜିକ ବିଦ୍ରୋହର ସ୍ୱର ବିଭିନ୍ନ ଦେଶରେ ସୃଷ୍ଟି ହୋଇଛି ତାହା ପଶ୍ଚାତରେ ମାର୍କସଙ୍କ ସମାଜବାଦୀ ଚିନ୍ତନର ଯେ ଗଭୀର ପ୍ରଭାବ ରହିଛି ଏହା ନିଃସନ୍ଦେହ ମନେହୁଏ।

ସଭ୍ୟତାର ଇତିହାସରେ କେତେ କେତେ ସାମାଜିକ, ରାଜନୈତିକ, ସାଂସ୍କୃତିକ ପରିବର୍ତ୍ତନମାନ ଘଟିଚାଲିଛି। ତେବେ ଏହି କ୍ଷେତ୍ରରେ ଏକ ମହତ୍ତ୍ୱପୂର୍ଣ୍ଣ ଉପଲବ୍ଧି ହେଉଛି ଯେ ଏହି ଗୋଟିଏ ଶତାବ୍ଦୀ ଭିତରେ ସାଧାରଣ ମଣିଷର ଉନ୍ନତି ପାଇଁ ଯେତେ ଆନ୍ତରିକତା ପ୍ରକାଶ ପାଇଛି ତାହା ଇତିହାସରେ କେବେ ଦୃଷ୍ଟିଗୋଚର ହୁଏ ନାହିଁ। ମଣିଷର ସ୍ଥିତି ଓ ମୂଲ୍ୟ ନେଇ ଚିନ୍ତାଧାରାରେ ଓ ଦୃଷ୍ଟିଭଙ୍ଗୀରେ କିଛି ଗୁଣାତ୍ମକ ପରିବର୍ତ୍ତନ ପ୍ରାୟତଃ ବୃଦ୍ଧି ପାଇବାରେ ଲାଗିଛି। ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ସମ୍ମାନର ସହ ବଞ୍ଚିବା ନେଇ ସାମାଜିକ ସଚେତନତା ବୃଦ୍ଧି ପାଇବାରେ ଲାଗିଛି। ଜଣେ ସକ୍ଷମ ହୁଅନ୍ତୁ ବା ଦିବ୍ୟାଙ୍ଗ ହୁଅନ୍ତୁ ସେ ତାଙ୍କର ଶାରୀରିକ କ୍ଷମତା ନିର୍ବିଶେଷରେ ଯେପରି ସୁସ୍ଥ ଭାବରେ ବଞ୍ଚିବେ ସେଥିପାଇଁ ଆନ୍ତରିକତା ପ୍ରକାଶ ପାଉଛି। ଜନମଙ୍ଗଳକାରୀ ଆଭିମୁଖ୍ୟ ପ୍ରତ୍ୟେକ ରାଷ୍ଟ୍ରର ଆଦର୍ଶ ହେବାରେ ଲାଗିଛି। ଏକଦା ସାରା ପୃଥିବୀରେ ଯୌଥ ପରିବାର ବ୍ୟବସ୍ଥା ରହିଥିଲା। ସାମ୍ପ୍ରତିକ ଯୁଗରେ ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ସହ ଯୌଥ ପରିବାର ବ୍ୟବସ୍ଥାର ପ୍ରାକୃତିକ ବିଲୟ ଆରମ୍ଭ ହୋଇଛି। ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କରେ ଯୌଥ ପରିବାର

ବ୍ୟବସ୍ଥା ନାହିଁ। କେବଳ ବିକାଶଶୀଳ ଓ ଗରିବ ଦେଶମାନଙ୍କରେ ଯୌଥ ପରିବାରର ଅବଶେଷ ରହିଛି। ଏବେ ଆଧୁନିକ ଚିକିତ୍ସା ବିଜ୍ଞାନରେ ପ୍ରଭୂତ ଉନ୍ନତି ଯୋଗୁ ମଣିଷ ଅଧିକ ବର୍ଷ ବଞ୍ଚିପାରୁଛି। ସବୁ ଦେଶରେ ବରିଷ୍ଠ ଲୋକମାନଙ୍କର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି। ବରିଷ୍ଠ ନାଗରିକମାନେ ସେମାନଙ୍କର ଶେଷ ଜୀବନ କିପରି ଭଲରେ ଅତିବାହିତ କରିପାରିବେ ସେଥିପାଇଁ ସରକାରୀ ସ୍ତରରେ ତତ୍ପରତା ପ୍ରକାଶ ପାଉଛି। ଏହିପରି ଦେଖିଲେ ବହୁ କ୍ଷେତ୍ରରେ ମଣିଷର ସୁଖମୟ ଜୀବନ ପାଇଁ ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ରରେ ଧ୍ୟାନ ଦିଆଯାଉଛି। ସଭ୍ୟତାର ବିକାଶ କ୍ଷେତ୍ରରେ ମାନବିକ ଅଧିକାର, ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ସେଥିପାଇଁ ରାଷ୍ଟ୍ରୀୟ ସଂପୃକ୍ତି ବ୍ୟକ୍ତ ହେବା ମାନବ ସମାଜର ଏକ ନୈତିକ ଉତ୍ତରଣ କୁହାଯାଇପାରେ।

ଏହି ସବୁ ଭାବଧାରାର ବିକାଶ ମାନବବାଦର ଏକ ପ୍ରୟୋଗାତ୍ମକ ଦିଗ। ମାନବବାଦ ଚିନ୍ତାରାଜ୍ୟରେ ଏକ ମହତ୍ତର ଜୀବନବୋଧ। ଆମ ସଂସାରରେ ଅତୀତରେ କେତେ କେତେ ଶୋଷଣ, ଅତ୍ୟାଚାର, ମାନବିକ କ୍ରୂରତା ଓ ଭେଦଭାବ ପ୍ରକାଶ ପାଇଛି। ସେହି ସ୍ଥିତିଠାରୁ ଆଜିର ସ୍ଥିତି ଅନେକଟା ଉନ୍ନତ ମନେହୁଏ। ଅବଶ୍ୟ ମନୁଷ୍ୟ-ପ୍ରକୃତି ଭିତରେ ମାନବିକତା ଯେପରି ରହିଛି, ପାଶବିକତା ମଧ୍ୟ ସେପରି ରହିଛି। ସାମାଜିକ ପରିବେଶ ଓ ଶିକ୍ଷାର ସ୍ତର ଯେତେ ଉନ୍ନତ ହେବ, ବ୍ୟକ୍ତି ସ୍ୱଭାବ ସେତିକି ଉନ୍ନତ ହୋଇପାରିବ। ନାଗରିକ ସଚେତନତାର ସ୍ତର ଯେତେ ଉନ୍ନତ ହେବ ଓ ସାଧାରଣ ଜୀବନ ପ୍ରବାହରେ ପ୍ରତ୍ୟେକ ବ୍ୟକ୍ତି ପ୍ରତି ସମ୍ମାନବୋଧ ପ୍ରକାଶ ପାଇବ ତାହା ସମାଜର ସାଂସ୍କୃତିକ ଉତ୍ତରଣର ଚିତ୍ର ଦେବ। ନାଗରିକ ଶୃଙ୍ଖଳା ଓ କର୍ତ୍ତବ୍ୟବୋଧ ତଥା ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି ଯେତେ ଅଧିକ ବିକଶିତ ହେବ, ଜୀବନର ଗୁଣାତ୍ମକ ମୂଲ୍ୟ ଯେ ସେତେ ବୃଦ୍ଧିପାଇବ ଏହା ନିଃସନ୍ଦେହ ମନେହୁଏ। ଜ୍ଞାନବିଜ୍ଞାନର ବିକାଶ ସହ ଏହି ସାଂସ୍କୃତିକ ବିକାଶ ତ୍ୱରାନ୍ୱିତ ହେବା ସାଂପ୍ରତିକ ସମୟର ବଡ ଆବଶ୍ୟକତା।

(ପ୍ରଗତିବାଦୀ, ୧୫.୧୧.୨୦୧୭)

# ବୌଦ୍ଧିକ ବିକାଶର ତିନି ଦିଗନ୍ତ

ମାନବ ସଭ୍ୟତା ଆଜି ଯେଉଁ ସ୍ଥିତିରେ ପହଞ୍ଚିଛି ତାହା ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି। ସେହି ଇତିହାସ ଯେତିକି ଲୋମହର୍ଷକ ସେତିକି ରୋମାଞ୍ଚକର। ଏକ ଆଦିମ ସ୍ଥିତିରୁ ଧୀର ମନ୍ଥର ଗତିରେ ସଭ୍ୟତାର ବିକାଶ ହୋଇଛି। ପୃଥିବୀର ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ବିଭିନ୍ନ ସଭ୍ୟତାମାନ ଗଢି ଉଠିଛି, କେତେକ ସଭ୍ୟତା ବିପର୍ଯ୍ୟୟର ସମ୍ମୁଖୀନ ହୋଇ ଧ୍ୱଂସ ପାଇଛି। ଗୋଟିଏ ଗୋଟିଏ ଉଦ୍‌ଭାବନ ସଭ୍ୟତାର ମୋଡ ବଦଳାଇଛି ବା ସଭ୍ୟତାକୁ ନୂତନ ଲମ୍ଫ ଦେଇଛି। ପ୍ରତ୍ୟେକ ସଭ୍ୟତାର ଜନଗଣଙ୍କୁ ନେଇ ସଂସ୍କୃତିମାନ ଗଢି ଉଠିଛି। ସାହିତ୍ୟ, ଦର୍ଶନ, କଳା, ଜୀବନବୋଧ, ଧର୍ମ, ନୀତିବୋଧ ଇତ୍ୟାଦି ସଂସ୍କୃତିକୁ ସମୃଦ୍ଧ କରିଛି। ଯେକୌଣସି ଦୁଇଟି ସଭ୍ୟତା ବା ସାଂସ୍କୃତିକ ଧାରାର ତୁଳନାତ୍ମକ ଅନୁଶୀଳନ ଭିତରେ କେତେକ କ୍ଷେତ୍ରରେ ସାମଞ୍ଜସ୍ୟ ଓ କେତେକ କ୍ଷେତ୍ରରେ ପାର୍ଥକ୍ୟ ପରିଲକ୍ଷିତ ହୁଏ। ଯେକୌଣସି ଦୁଇଟି 'ଖେଳ' ଭିତରେ ତୁଳନା କଲେ ଯେପରି କିଛି ସାମଞ୍ଜସ୍ୟ ଓ କିଛି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ ସେହିପରି ସଭ୍ୟତାମାନଙ୍କ ଭିତରେ ବା ସଂସ୍କୃତିମାନଙ୍କ ଭିତରେ ତୁଳନାତ୍ମକ ଅନୁଶୀଳନ କଲେ କିଛି ପାର୍ଥକ୍ୟ ଓ କିଛି ସାମଞ୍ଜସ୍ୟ ଦୃଷ୍ଟିଗୋଚର ହୋଇଥାଏ।

ସଭ୍ୟତାର ଉତ୍ତରଣ କ୍ଷେତ୍ରରେ ଯେଉଁ ବୌଦ୍ଧିକ ଧାରାମାନ କିଛି ନିର୍ଣ୍ଣାୟକ ପ୍ରଭାବ ସୃଷ୍ଟି କରିଛନ୍ତି ସେ କ୍ଷେତ୍ରରେ ଧର୍ମ, ଦର୍ଶନ ଓ ବିଜ୍ଞାନର ପ୍ରମୁଖ ଭୂମିକା ଥିବା ମନେହୁଏ। ସାମାଜିକ ବିକାଶ କ୍ଷେତ୍ରକୁ ରାଜନୀତି, ଅର୍ଥନୀତି, ସାଂସ୍କୃତିକ ବିଚାରବୋଧ ବି ବହୁ ଭାବରେ ପ୍ରଭାବିତ କରିଥିବା ଜଣାଯାଏ। ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ପୂର୍ବରୁ ପ୍ରତ୍ୟେକ ସଭ୍ୟତା ଭିତରେ ବହୁ ଈଶ୍ୱରବାଦ, ପୂଜା, ଆରାଧନାର ଭାବନା ସୃଷ୍ଟି ହୋଇଥିଲା। ବଣ ଜଙ୍ଗଲଭରା ପରିବେଶ, ହିଂସ୍ର ଜୀବଜନ୍ତୁଙ୍କ ଆକ୍ରମଣ, ବିଭିନ୍ନ ରୋଗବୈରାଗ ଜନିତ ଗଣମୃତ୍ୟୁ ଯୋଗୁ ଜୀବନ ଅତ୍ୟନ୍ତ ବିପଦସଙ୍କୁଳ ଥିଲା। ପ୍ରାକୃତିକ ଘଟଣାମାନଙ୍କର କାରଣ ବୁଝିବା ମଣିଷ ସାମର୍ଥ୍ୟର ବହିର୍ଭୂତ ଥିଲା। ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଜଳ, ବାୟୁ, ଅଗ୍ନି ସବୁକିଛି ଯେ ଦୈବୀଶକ୍ତି ଏହି ଭାବନା ଥିଲା ପ୍ରାଗ୍‌ଧର୍ମୀୟ ଯୁଗର ସାଧାରଣ ଲୋକ-ବିଶ୍ୱାସ। ଏପରିକି

ଗଛ, ପାହାଡ, ଝରଣା, ନଦୀ ଇତ୍ୟାଦି ପ୍ରାକୃତିକ ବସ୍ତୁମାନେ ଦେବତାର ସ୍ଥାନ ବି ନେଇଥିଲେ ଓ ମଣିଷ ସେମାନଙ୍କୁ ପୂଜା କରୁଥିଲା। ପ୍ରାକୃତିକ ଦେବତା ପରି ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ନିୟନ୍ତ୍ରଣ କରୁଥିବା ବିଭିନ୍ନ ଦେବ-ଦେବୀର ଭାବନା ସୃଷ୍ଟି ହେଲା। ଦେବ-ଦେବୀ ସନ୍ତୁଷ୍ଟି ପାଇଁ ବିଭିନ୍ନ ପୂଜା, କର୍ମକାଣ୍ଡ, କିମ୍ବଦନ୍ତୀ ସମାଜର କିଛି ବୁଦ୍ଧିମାନ ଲୋକ ନିଜର ସ୍ୱାର୍ଥ ପାଇଁ ସୃଷ୍ଟି କଲେ। କାଳକ୍ରମେ ଦେବୀ-ଦେବତାମାନେ ମଣିଷ ପରି ବ୍ୟକ୍ତି ସତ୍ତାର ରୂପ ନେଲେ। ଧୀରେ ଧୀରେ ଦେବୀ-ଦେବତାଙ୍କର ରୂପ କଳ୍ପନା କରାଯାଇ ସେମାନଙ୍କୁ ପୌତ୍ତଳିକ ରୂପ ଦିଆଗଲା। ଗୋଟିଏ ଶିଶୁ ତାର କଣ୍ଢେଇଟିକୁ ଯେପରି ଏକ ଜୀବନ୍ତ ପ୍ରାଣୀ ଭାବେ ଶ୍ରଦ୍ଧା କରିଥାଏ, ସେହିପରି ବିଶ୍ୱାସୀ ମଣିଷମାନେ ପୌତ୍ତଳିକ ମୂର୍ତ୍ତିକୁ ଜୀବନ୍ତ ଦେବତା ଭଳି ପୂଜା କରିବାକୁ ଲାଗିଲେ। ମଣିଷ ହାତରେ ନିର୍ମିତ ପିତୁଳାଟି ଦେବତା ପାଲଟିଗଲା ପରେ କେତେ କେତେ ପୂଜା, ଆରାଧନା, ପ୍ରାର୍ଥନା, ଆଳତିର ବ୍ୟବସ୍ଥା ହେଲା ଓ ଏସବୁ ଧୀରେ ଧୀରେ ପରମ୍ପରାର ରୂପ ନେଲା। ଗ୍ରାମୀଣ ସଭ୍ୟତା ଓ କୃଷିଭିତ୍ତିକ ସମାଜ ଭିତରେ ମଣିଷର ସାଂସ୍କୃତିକ ଜୀବନଧାରା ଏହିପରି ବିକଶିତ ହୋଇଥିଲା।

ଖ୍ରୀ.ପୂ. ଆଠଶହ ଠାରୁ ସପ୍ତମ ଶତାବ୍ଦୀ ଏହି ଦେଢ ହଜାର ବର୍ଷ ଭିତରେ ବିଭିନ୍ନ ଧର୍ମମାନଙ୍କର ଉଦ୍ଭବ ହୋଇଥିଲା। କେତେକ ସଭ୍ୟତାରେ କିଛି ଜ୍ଞାନଦୀପ୍ତ ବ୍ୟକ୍ତିଙ୍କର ଆବିର୍ଭାବ ଜନଜୀବନକୁ ଏକ ଅର୍ଥପୂର୍ଣ୍ଣ ମୋଡ ଦେବାରେ ସହାୟକ ହୋଇଥିଲା। ଭାରତବର୍ଷରେ ଉପନିଷଦ୍‌ମାନଙ୍କର ରଚନା, ଗୌତମ ବୁଦ୍ଧ ଓ ମହାବୀରଙ୍କର ଆବିର୍ଭାବ ଗୋଟିଏ ଗୋଟିଏ ବଡ ସାଂସ୍କୃତିକ ଆଲୋଡନ ଥିଲା। ସେହିପରି ମଧ୍ୟ ପ୍ରାଚ୍ୟରେ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଜୋରାଷ୍ଟରଙ୍କ ଆବିର୍ଭାବରୁ ପାର୍ଶୀଧର୍ମ ବିକଶିତ ହୋଇଥିଲା। ଏହି ଧର୍ମର ଏକେଶ୍ୱରବାଦର ଭାବନା ଏକ ମୌଳିକ ନିଷ୍କର୍ଷ ଥିଲା। ହିବ୍ରୁ ସଭ୍ୟତାରେ ମୋଜେସ୍ ପୈଗମ୍ବର ଭାବେ ଯେଉଁ ସାଂସ୍କୃତିକ ଆଲୋଡନଟି ସୃଷ୍ଟି କରିଥିଲେ ତାହା ଇହୁଦୀମାନଙ୍କର ଧର୍ମ ହେଲା। ଚୀନରେ କନ୍‌ଫୁସିଅସ୍‌ଙ୍କର ଆବିର୍ଭାବ ଓ ତାଙ୍କର ମାନବବାଦୀ ଦର୍ଶନ ସେ ଭୂଖଣ୍ଡରେ ଏକ ବଡ ସାଂସ୍କୃତିକ ଆଲୋଡନ ଥିଲା। ଖ୍ରୀଷ୍ଟାବ୍ଦ ଆରମ୍ଭ ବେଳକୁ ଯୀଶୁଖ୍ରୀଷ୍ଟଙ୍କର ଆବିର୍ଭାବ ଓ ଈଶ୍ୱରକୈନ୍ଦ୍ରିକ ଜୀବନବୋଧର ବିଚାରକୁ ନେଇ ଯେଉଁ ସାଂସ୍କୃତିକ ଆଲୋଡନଟି ସୃଷ୍ଟି ହୋଇଥିଲା ତାହା ଖ୍ରୀଷ୍ଟଧର୍ମ ଭାବରେ ଏକ ବିଶାଳ ଭୂଖଣ୍ଡରେ ପରିବ୍ୟାପ୍ତ ହେଲା। ଷଷ୍ଠ ଶତାବ୍ଦୀରେ ଆରବ ଭୂଖଣ୍ଡରେ ପ୍ରଫେଟ୍ ମହମ୍ମଦଙ୍କୁ ନେଇ ଯେଉଁ ସାଂସ୍କୃତିକ ପ୍ରବାହ ଆସିଥିଲା ତାହା ଇସଲାମ ଧର୍ମ ଭାବେ ପ୍ରସାରିତ ହେଲା। ପ୍ରତ୍ୟେକ ଧର୍ମ ନିଜର ସମସାମୟିକ ସମାଜରେ ଏକ ସାଂସ୍କୃତିକ ଜାଗରଣ ଓ ମହତ୍ତର ଜୀବନବୋଧର ପ୍ରତୀକ ଭାବେ

ଗୃହୀତ ହେବାକୁ ଲାଗିଲା। କାଳକ୍ରମେ ରାଜତନ୍ତ୍ରର ପୃଷ୍ଠପୋଷକତାରେ ଏହା ବିଶାଳ ଭୂଖଣ୍ଡରେ ପ୍ରସାରିତ ହୋଇ ଧର୍ମ ଏକ ଆନୁଷ୍ଠାନିକ ରୂପରେଖ ନେଲା। ପ୍ରକୃତିର ରହସ୍ୟ ଓ ଜୀବନର ଘଟଣାକୁ ଏକ ଈଶ୍ୱରୀୟ ବିଧାନ ଭାବେ ଧର୍ମମାନ ନିଜସ୍ୱ ଶୈଳୀରେ ବ୍ୟାଖ୍ୟା କରିବାକୁ ଲାଗିଲେ। ପ୍ରତ୍ୟେକ ଧର୍ମକୁ ଆଧାର କରି ନାନା ତାତ୍ତ୍ୱିକ ବିଚାରର କଳ୍ପନା ସୃଷ୍ଟି ହେଲା। ଧର୍ମ ଏକ ଅସ୍ମିତାର ପ୍ରସଙ୍ଗ ହେଲା ଓ ଧର୍ମକୁ ଆଧାର କରି କିଛି ନୀତିବୋଧ, ଜୀବନର ଅନ୍ତିମ ଲକ୍ଷ୍ୟ, ନାନା କାଳ୍ପନିକ କାହାଣୀ ଯଥା ଆତ୍ମା, ପୁନର୍ଜନ୍ମ, ବିଚାର ଦିବସ, ସ୍ୱର୍ଗ, ନରକ, ମୋକ୍ଷ, ନିର୍ବାଣ ଇତ୍ୟାଦି ଭାବନା ସୃଷ୍ଟି ହେଲା। ଧର୍ମ ହିଁ ସାହିତ୍ୟ, ଶିକ୍ଷା, ରାଜନୀତିର ଆଦର୍ଶ ହେଲା ଓ ସକଳ ସଂସ୍କୃତି ଧର୍ମକୈନ୍ଦ୍ରିକ ରୂପ ନେଲା। ପ୍ରତ୍ୟେକ ଧର୍ମ ସହ କୌଣସି ପ୍ରବର୍ତ୍ତକ, ଧର୍ମଗ୍ରନ୍ଥ ବା ଉଭୟ, କେତେକ ତାତ୍ତ୍ୱିକ ଭାବନା, ନାନା କର୍ମକାଣ୍ଡ, ବହୁ କାହାଣୀ, କିମ୍ବଦନ୍ତୀ, କେତେକ ନୀତିବୋଧ ସଂଶ୍ଳିଷ୍ଟ ହେଲା। ପ୍ରତ୍ୟେକ ଧର୍ମର ଐତିହାସିକ ଭିତ୍ତି, ଉତ୍ପତ୍ତି କାଳ, ମୁଖ୍ୟ ମୁଖ୍ୟ ସମ୍ପ୍ରଦାୟ, ବିଚାରବୋଧ ଇତ୍ୟାଦିରୁ ଧର୍ମର ପ୍ରତ୍ୟୟଗତ ପରିସରଟି ସ୍ପଷ୍ଟ ହେଲା। ବିଶେଷକରି ପ୍ରତ୍ୟେକ ଧର୍ମ ଏକ ସାମାଜିକ ଅନୁଷ୍ଠାନ ଓ ସାଂସ୍କୃତିକ ଭାବଧାରା ହୋଇଥିବାରୁ ବିଶ୍ୱବିଦ୍ୟାଳୟମାନଙ୍କରେ ଧର୍ମମାନଙ୍କର ଯେଉଁ ଅଧ୍ୟୟନ ଓ ତୁଳନାତ୍ମକ ଅନୁଶୀଳନ ହେଲା ସେଥିରୁ ପ୍ରତ୍ୟେକ ଧର୍ମର ବୈଚାରିକ ଓ ସୈଦ୍ଧାନ୍ତିକ ଭିତ୍ତି ସ୍ପଷ୍ଟ ହେବାକୁ ଲାଗିଲା।

ଦାର୍ଶନିକ ଅନୁଶୀଳନ ଗୋଟିଏ ସଭ୍ୟତାର ବୌଦ୍ଧିକ ଅବବୋଧର ସ୍ୱାକ୍ଷର ବହନ କରେ। ପ୍ରତ୍ୟେକ ସଭ୍ୟତାରେ କିଛି ଚିନ୍ତାଶୀଳ ଲୋକ ଜୀବନ, ଜଗତ, ସତ୍ୟ, ନ୍ୟାୟ ଜ୍ଞାନ ଇତ୍ୟାଦି ଉପରେ କିଛି ଗମ୍ଭୀର ଚିନ୍ତା ପ୍ରକଟ କରିବା ଦେଖାଯାଏ। ସମାଜରେ ଯେଉଁ ବୌଦ୍ଧିକ ଜୀବନଦୃଷ୍ଟିର ପ୍ରାବଲ୍ୟ ଥାଏ ଦାର୍ଶନିକମାନେ ତାହାର ସୂକ୍ଷ୍ମ ବିଶ୍ଳେଷଣ କରି ତାହାକୁ ଏକ ସୈଦ୍ଧାନ୍ତିକ ଭିତ୍ତି ଦେବାକୁ ପ୍ରୟାସ କରିଥାନ୍ତି। ଯେଉଁ ଯୁଗରେ ଧର୍ମର ବଳିଷ୍ଠ ପ୍ରଭାବ ସମସ୍ତ ଚିନ୍ତା ଚେତନାକୁ ପ୍ରଭାବିତ କରି ରଖିଥିଲା ସେହି ସମୟରେ ଦର୍ଶନ ଆମର ଧାର୍ମିକ ବିଶ୍ୱାସ ସକଳକୁ ଯୁକ୍ତିଶୀଳ ଆଧାର ଦେବାକୁ ପ୍ରୟତ୍ନ କରିଥିଲା। ପ୍ରତ୍ୟେକ ଧର୍ମଗୋଷ୍ଠୀରେ କେତେକ ଦାର୍ଶନିକ ଧର୍ମର ମୌଳିକ ଚିନ୍ତନମାନଙ୍କୁ ତର୍କ ଆଧାରରେ ପ୍ରତିଷ୍ଠା କରିବାକୁ ପ୍ରୟାସ କରିଥିଲେ। ତେବେ ଦର୍ଶନ ପରିସରରେ କେତେକ ବ୍ୟତିକ୍ରମ ମଧ୍ୟ ଥିଲା। ଦର୍ଶନ ଏକ ବୌଦ୍ଧିକ ଜିଜ୍ଞାସା ଭାବେ ବୈଚାରିକ ଆଲୋଡନ ସୃଷ୍ଟି କରିବାରେ ପ୍ରମୁଖ ଭୂମିକା ନେଇଥିବା ମନେହୁଏ। ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ ଦର୍ଶନର ବିଷୟବସ୍ତୁ, ସଂଜ୍ଞା ଓ ସ୍ୱରୂପ ସମୟକୁ ସମୟ ପରିବର୍ତ୍ତିତ ହୋଇଚାଲିଛି। ଆଧୁନିକ ଯୁଗରେ ତତ୍ତ୍ୱମୀମାଂସା ନିରର୍ଥକ

ବୋଲି ଦର୍ଶନରେ ଗୃହୀତ ହୋଇଛି ଯାହା ଏକଦା ଦର୍ଶନର ମୌଳିକ ବିଭବ ହୋଇ ରହିଥିଲା। ବୌଦ୍ଧିକ ସ୍ୱଚ୍ଛତା, ବିଶ୍ଳେଷଣାତ୍ମକ ଅନୁଶୀଳନ ଓ ତର୍କଶୀଳତା ସଂପ୍ରତି ଦର୍ଶନର ପରିସରରେ ମୁଖ୍ୟ ସ୍ଥାନ ନେଇଛି।

ସଭ୍ୟତାର ବିକାଶଧାରାରେ ବିଜ୍ଞାନର ଅଗ୍ରଗତି ସଭ୍ୟତାକୁ ଏକ ନିର୍ଣ୍ଣାୟକ ମୋଡ ଦେଇଥିବା ମନେହୁଏ। ତେବେ ଧର୍ମ, ଦର୍ଶନର ଇତିହାସ ଯେତେ ପ୍ରାଚୀନ, ବିଜ୍ଞାନର ଇତିହାସ ସେତେ ପ୍ରାଚୀନ ନୁହେଁ। ସପ୍ତଦଶ ଶତାବ୍ଦୀରୁ ହିଁ ବିଜ୍ଞାନର ବିକାଶ ଯାତ୍ରା ଆରମ୍ଭ ହୁଏ। ବିଜ୍ଞାନ କେତେକ ମୌଳିକ ବିଚାରକୁ ନେଇ ତାର ବିଜୟ ଯାତ୍ରା ଆରମ୍ଭ କରେ। ପ୍ରକୃତିରେ ଯାହା ଅଛି ଓ ଯେଉଁ ଘଟଣାମାନ ଘଟେ ଏସବୁର କେବଳ ପ୍ରାକୃତିକ କାରଣ ରହିଛି। କୌଣସି ଘଟଣାର ଐଶ୍ୱରୀୟ ବା କୌଣସି ଦୈବୀ କାରଣ ନାହିଁ। ବୈଜ୍ଞାନିକ ଜ୍ଞାନ ସର୍ବଦା ତଥ୍ୟ ଆଧାରିତ। ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ସତ୍ୟାପନ ହିଁ ବୈଜ୍ଞାନିକ ପ୍ରଣାଳୀ ଭାବେ ଗୃହୀତ। ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ, ତଥ୍ୟାଧାରିତ, ସାର୍ବଜନୀନ ଓ ସ୍ୱସଂଶୋଧନାତ୍ମକ। ବିଜ୍ଞାନର ବିକାଶର ଦୁଇ ଶହ ବର୍ଷ ପରେ ଆରମ୍ଭ ହୁଏ ଆଧୁନିକ ପ୍ରଯୁକ୍ତି। ବୈଜ୍ଞାନିକ ଜ୍ଞାନର ପ୍ରୟୋଗାତ୍ମକ ଦିଗଟି ହେଉଛି ପ୍ରାଯୁକ୍ତିକ ଜ୍ଞାନ। ସଭ୍ୟତାର ଆଧୁନିକ ବିକାଶ ଓ ପ୍ରଗତିର ମୂଳଭିତ୍ତି ହେଉଛି ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତି। ବିଜ୍ଞାନର ବିକାଶ ପରଠାରୁ ନାନା ଭାବରେ ଯେଉଁ ସାଂସ୍କୃତିକ ଆଲୋଡନମାନ ସୃଷ୍ଟି ହୋଇଛି ତାହା ସଭ୍ୟତାର ଭୌତିକ, ନୈତିକ ଓ ମାନବିକ ଦିଗନ୍ତକୁ ବି ସ୍ପର୍ଶ କରିଛି। ଜୀବନର ଗୁଣାତ୍ମକ ବିକାଶ ଓ ଏକ ସୁଖପ୍ରଦ ଜୀବନ ଯାତ୍ରା ପାଇଁ ବିଜ୍ଞାନର ଅବଦାନ ଅତୁଳନୀୟ ମନେ ହୁଏ।

କଳା, ସାହିତ୍ୟକୁ ବାଦ୍ ଦେବା ପରେ ସଭ୍ୟତାର ବିକାଶ ଧାରାରେ ଧର୍ମ, ଦର୍ଶନ ଓ ବିଜ୍ଞାନ ଯେଉଁ ବୌଦ୍ଧିକ ଆଲୋଡନ ସୃଷ୍ଟି କରିଛନ୍ତି ସେ ସବୁର ସୁଦୂରପ୍ରସାରୀ ପ୍ରଭାବ ଜନଜୀବନକୁ ନାନା ଭାବରେ ପ୍ରଭାବିତ କରିଛି। ତେବେ ଧର୍ମାନ୍ଧତା ବହୁ ବିଦ୍ୱେଷ, ଅସହିଷ୍ଣୁତା ଓ ସାମ୍ପ୍ରଦାୟିକତା ସୃଷ୍ଟିକରିଛି ଓ ଧାର୍ମିକ କୁସଂସ୍କାର ବିଜ୍ଞାନ ଓ ସଭ୍ୟ ଜୀବନବୋଧର ବିକାଶ ପାଇଁ ବଡ ପ୍ରତିବନ୍ଧକ ହୋଇଆସିଛି। ଦର୍ଶନ ଆଧୁନିକ କାଳରେ ତର୍କଶୀଳତାର ବିକାଶରେ ଓ ବିଜ୍ଞାନ ଅନୁସନ୍ଧିତ୍ସୁ ମାନସିକତା ସୃଷ୍ଟି ଦିଗରେ ସଭ୍ୟତାକୁ ବହୁ ଅମୂଲ୍ୟ ଅବଦାନ ଦେଇଛନ୍ତି।

(ପ୍ରଗତିବାଦୀ, ୧୮.୧୧.୨୦୧୫)

# ସମନ୍ୱିତ ଦୃଷ୍ଟି

ସଭ୍ୟତାର ଏକ ବଡ ବିଡମ୍ବନା ଯେ ମାନବ-ସମାଜ ବହୁ ନୃବଂଶୀୟ ପ୍ରଜାତି, ଦେଶ, ଧର୍ମ, ଭାଷା ଓ ଆଞ୍ଚଳିକତା ଆଧାରରେ ସର୍ବଦା ବିଭାଜିତ ହୋଇରହିଛି । ଶରୀରର ରଙ୍ଗ ଓ ଗଠନକୁ ନେଇ ମଣିଷ ଜାତିକୁ କେତେକ ନୃବଂଶୀୟ ଶ୍ରେଣୀରେ ବିଭକ୍ତ କରାଯାଏ । ନୃବିଜ୍ଞାନୀମାନେ ଶାରୀରିକ ଗଠନ ଓ ବିବର୍ତ୍ତନକୁ ବ୍ୟାଖ୍ୟା କରିବାକୁ ମଣିଷମାନଙ୍କୁ କେତୋଟି ଶ୍ରେଣୀରେ ବିଭାଜନ କରିଥାନ୍ତି । ସେହିପରି ଭାଷାବିଜ୍ଞାନୀମାନେ ପୃଥିବୀପୃଷ୍ଠରେ ଉଦ୍ଭବ ହୋଇଥିବା ହଜାର ହଜାର ଭାଷାମାନଙ୍କୁ ଅନୁଶୀଳନ କରି ମୌଳିକ ସାମଞ୍ଜସ୍ୟକୁ ନେଇ ଭାଷାମାନଙ୍କୁ ବି ଶ୍ରେଣୀକରଣ କରିଥାନ୍ତି । ଗୋଟିଏ ଭାଷା-ପରିବାର ଭିତରେ କିପରି କାଳକ୍ରମେ ପୃଥକ୍ ପୃଥକ୍ ଉପଭାଷାମାନ ସୃଷ୍ଟି ହୋଇଛି ତାହାର ଅଧ୍ୟୟନ ଭାଷାବିଜ୍ଞାନୀମାନେ ଦେଖାଇଥାନ୍ତି । ସମ-ଜାତୀୟ ଦୁଇଟି ଭାଷାଗୋଷ୍ଠୀ ଭିତରେ ଭାବପ୍ରବଣ ଜନିତ ବିଭେଦତା ରହିଥିଲେ ବି ସେମାନେ ଯେ ଗୋଟିଏ ମୂଳସୂତ୍ରରୁ କାଳକ୍ରମେ ବିକଶିତ ହୋଇଛନ୍ତି ଏହାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଏହି ଦୃଷ୍ଟିରୁ ଦେଖିଲେ ଶବ୍ଦମାନଙ୍କର କୌଣସି ଜାତୀୟତା ନାହିଁ । ପୁନଶ୍ଚ ରାଜନୈତିକ ଦୃଶ୍ୟପଟରେ ଜାତୀୟତାର ଭାବନା ମଣିଷ ସମାଜକୁ ଭାଗ ଭାଗ କରି ରଖିଛି । ଦେଶ, ରାଷ୍ଟ୍ରକୁ ନେଇ ଜାତୀୟ-ଚେତନା ବିକଶିତ ହୋଇଛି । ନିଜ ରାଷ୍ଟ୍ରର ଅଖଣ୍ଡତା, ସାର୍ବଭୌମତ୍ୱକୁ ରକ୍ଷା କରିବା ସରକାର ଓ ଜନଗଣଙ୍କ ପାଇଁ କର୍ତ୍ତବ୍ୟ ହୋଇରହିଛି । ନିଜ ଦେଶର ସୁରକ୍ଷା ଓ ସ୍ୱାଧୀନତା ପାଇଁ ପ୍ରାଣବଳି ଦେବାକୁ ଗୌରବାବହ ମନେକରାଯାଉଛି । ରାଷ୍ଟ୍ରୀୟତା ଆଧାରରେ ଦେଶାତ୍ମବୋଧ ଏକ ମହାନ୍ ମୂଲ୍ୟବୋଧ ଭାବେ ସବୁ ରାଷ୍ଟ୍ରରେ ଗୃହୀତ ହୋଇଆସିଛି । ସେହିପରି ଧର୍ମକୁ ନେଇ ମାନବ ସମାଜରେ ଅନେକ ଭାବାବେଗ ରହିଛି । ଧର୍ମ ଯେବେଠାରୁ ଅନୁଷ୍ଠାନରେ ରୂପାନ୍ତରିତ ହୋଇଛି ଧର୍ମଗ୍ରନ୍ଥ, ଧର୍ମପୀଠ, ଧାର୍ମିକ ପରମ୍ପରା ପ୍ରତ୍ୟେକ ଧର୍ମଗୋଷ୍ଠୀ ପାଇଁ ପବିତ୍ର ମନେ ହୋଇଛି । ଧାର୍ମିକ ବିଶ୍ୱାସ, ଭାବନା, ଧର୍ମଗ୍ରନ୍ଥର ବାଣୀ ପ୍ରତି କୌଣସି ଅଙ୍ଗୁଳି ନିର୍ଦ୍ଦେଶକୁ ଧର୍ମଗୋଷ୍ଠୀର ଲୋକମାନେ ଅସହ୍ୟ ମନେକରି ପ୍ରତିକ୍ରିୟାଶୀଳ ହୋଇ ଆସିଛନ୍ତି । ଧର୍ମ ଏକ ଜନଗୋଷ୍ଠୀର ଏକ ସାଂସ୍କୃତିକ ଧାରା, ଜୀବନବୋଧ ଓ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣାର ଉତ୍ସ ଏହି ଭାବନା ପରିବର୍ତ୍ତେ ଧର୍ମ ଏକ ଆବେଗପୂର୍ଣ୍ଣ ଅସ୍ମିତାରେ ରୂପାନ୍ତରିତ ହୋଇଛି । ଆହୁରି ବିଡମ୍ବନାର ବିଷୟ ଗୋଟିଏ ଧର୍ମଗୋଷ୍ଠୀ ଭିତରେ କେତେକ ତାତ୍ତ୍ୱିକ ବା ଆଦର୍ଶଗତ ବିଶ୍ୱାସକୁ ଆଧାର କରି ପରସ୍ପରବିରୋଧୀ ଗୋଷ୍ଠୀମାନ ସୃଷ୍ଟି ହୋଇଛି ।

ନୃବଂଶୀୟ ସାମଞ୍ଜସ୍ୟ, ଭାଷା, ଜାତୀୟତା ଓ ଧର୍ମ ଏକ କ୍ଷୁଦ୍ର ପରିସରରେ କିଛି ଭାବଗତ ଐକ୍ୟ ସୃଷ୍ଟି କରିଥିଲେ ବି ସମଗ୍ର ମଣିଷ ସମାଜ ପୃଷ୍ଠଭୂମିରେ ବିଭାଜିତ ଶକ୍ତି ଭାବେ ଉଭବ ହୋଇଛନ୍ତି। ପୁନଶ୍ଚ ଏକ ନୃବଂଶୀୟ ଜନଗୋଷ୍ଠୀ ଭିତରେ ଭାଷା, ଧର୍ମ ବା ଜାତୀୟତାକୁ ନେଇ ବିଭାଜନ ସୃଷ୍ଟି ହୋଇଛି। ସେହିପରି ଏକ ରାଷ୍ଟ୍ରର ଜନଗଣ ଭାଷା ବା ଧର୍ମକୁ ନେଇ ପରସ୍ପର ପ୍ରତି ଅସହିଷ୍ଣୁ ମନୋଭାବ ପୋଷଣ କରିବାର ଦୃଷ୍ଟାନ୍ତ ବି ଇତିହାସରେ କିଛି କମ୍ ନୁହେଁ। ପ୍ରତ୍ୟେକ ଦେଶରେ, ଧର୍ମଗୋଷ୍ଠୀରେ ଓ ସମାଜରେ କାଳକ୍ରମେ ବହୁ ପରମ୍ପରା ସୃଷ୍ଟି ହୋଇଛି। କେତେକ ଆଦର୍ଶ, ଜୀବନଦୃଷ୍ଟି, ରୀତି, ପ୍ରଥା, ଚଳଣି ଓ ନୀତିବୋଧ ସାମାଜିକ ଜୀବନଧାରାରେ ଉଭବ ହେବା ଏକ ସ୍ୱାଭାବିକ ପ୍ରକ୍ରିୟା। ଯାହା କାଳକ୍ରମେ ପିଢ଼ି ପିଢ଼ି ଦେଇ ଏକ ଜନଗୋଷ୍ଠୀର ଜୀବନବୋଧକୁ ପ୍ରଭାବିତ କରେ ତାହା ପରମ୍ପରାର ରୂପ ନିଏ। ନିଜର ପରମ୍ପରା ପ୍ରତି ଜନଗୋଷ୍ଠୀ ଭିତରେ ଏକ ଆବେଗିକ ଭାବବୋଧ ଆସିଥାଏ। ସାମାଜିକ ବିକାଶ ପ୍ରକ୍ରିୟାରେ ପରମ୍ପରାର ପରିବର୍ତ୍ତନ ବି ହେଉଥାଏ। ତେବେ କୌଣସି ବିଶ୍ୱାସ, ରୀତି, ପ୍ରଥା ପ୍ରତି ଅହେତୁକ ଶ୍ରଦ୍ଧା ରଖିବା ଯଥାର୍ଥ ନୁହେଁ। ସମୟର ପରିବର୍ତ୍ତନ ସହ ଏକ ପ୍ରଥା ବା ବିଶ୍ୱାସ ଜୀବନ ପ୍ରତି କେତେ ଦରକାରୀ, ସମାଜ ପ୍ରତି କେତେ ଉପଯୋଗୀ ଏହା ବିଚାର ସ୍ତରକୁ ଆସିଥାଏ। ଏକ ବ୍ୟବସ୍ଥାକୁ ବିଚାରହୀନ ଭାବେ ପରମ୍ପରା କହି ଅନୁକରଣ କରିବା ସମ୍ଭବତଃ ଏକ ସୁସ୍ଥ ମାନସିକତାର ପରିଚୟ ଦିଏ ନାହିଁ।

ଏହି ପୃଷ୍ଠଭୂମିରେ ଏହି ପ୍ରଶ୍ନ ଉଠିଥାଏ-ସମାଜର ଏକ ଚଳଣି, ପ୍ରଥା ଓ ପରମ୍ପରା କେଉଁ ଆଦର୍ଶର ବାର୍ତ୍ତା ଦେଉଛି ? ଏହା ଭିତରେ ଭେଦଭାବର ବାର୍ତ୍ତା ରହିଛି ନା ମାନବିକତାର ବାର୍ତ୍ତା ନିହିତ ରହିଛି ? ଏହା ସମାଜର ପ୍ରଗତିଶୀଳ ବିକାଶରେ ସହାୟକ ନା ଏହା କ୍ଷୟଶୀଳତା ପାଇଁ ଅଭିପ୍ରେତ ? ଜନଗଣଙ୍କର ଜୀବନଧାରାକୁ ଏହା ସକାରାତ୍ମକ ଭାବେ ଅନୁପ୍ରାଣିତ କରୁଛି ନା ପ୍ରତିକୂଳ ପ୍ରଭାବ ସୃଷ୍ଟି କରୁଛି ? କେତେକ ସମୟରେ ଏହି ପ୍ରକାର ଏକ ଆବେଗ ଜନମାନସରେ ସୃଷ୍ଟି ହୋଇଥାଏ ଯେ ଯାହା ପ୍ରାଚୀନ ତାହା ସ୍ୱର୍ଣ୍ଣାଭ। ଏହା ସମ୍ଭବତଃ ଏକ ଯଥାର୍ଥ ଭାବନା ନୁହେଁ। କୌଣସି ପ୍ରାଚୀନ କୀର୍ତ୍ତି ବା ଐତିହାସିକ ଗୁରୁତ୍ୱ ବହନ କରୁଥିବା ସୌଧର କଥା ଏଠାରେ କୁହାଯାଉ ନାହିଁ। ଏକ ପ୍ରାଚୀନ କୀର୍ତ୍ତିରାଜି ବା ସ୍ମାରକକୁ ରକ୍ଷା କରିବା ଯଥାର୍ଥ ଓ ଏହା ସହିତ ଆବେଗ ସଂଶ୍ଳିଷ୍ଟ ହେବା ଅହେତୁକ ନୁହେଁ। ତେବେ ସମାଜରେ ଏପରି କେତେକ ଚଳଣି ଓ ପରମ୍ପରା କାଳକ୍ରମେ ସୃଷ୍ଟି ହୋଇଥାଏ ଯାହା ସାମାଜିକ ବିକାଶ ପ୍ରକ୍ରିୟାରେ ପ୍ରତିବନ୍ଧକ ସୃଷ୍ଟି କରୁଥାଏ। ସୁତରାଂ ଏକ ଚଳଣି, ପରମ୍ପରା ଆମର ଜୀବନବୋଧକୁ ଉନ୍ନତ, ପରିମାର୍ଜିତ ଓ ମାନବିକ କରୁଥିଲେ ତାହା ସ୍ୱାଗତଯୋଗ୍ୟ।

ପରନ୍ତୁ ଯାହା ଏହାର ବିପରୀତ ପ୍ରଭାବ ସୃଷ୍ଟି କରୁଥାଏ ତାହାର ପରିବର୍ତ୍ତନ ଅବଶ୍ୟମ୍ଭାବୀ ମନେହୁଏ । ଏହି ପରିପ୍ରେକ୍ଷୀରେ ଏକ ବିଚାରଶୀଳ ଦୃଷ୍ଟି ଓ ମାନବିକ ଶ୍ରେୟକୁ ମାନଦଣ୍ଡ ଭାବେ ଗ୍ରହଣକରି ସକଳ ଭାବାବେଗ, ଚଳଣି ଓ ପରମ୍ପରାକୁ ମୂଲ୍ୟାୟନ କରାଯିବା ଦରକାର ।

ଯେଉଁ ସମୟରେ ଗମନାଗମନ ବା ଜ୍ଞାନବିଜ୍ଞାନର ବିକାଶ ହୋଇନଥିଲା ସେ ସମୟରେ ଏକ କ୍ଷୁଦ୍ର ପରିସରରେ ମଣିଷର ଗୋଷ୍ଠୀ ଜୀବନ ସୀମାବଦ୍ଧ ରହିଥିଲା । ନିଜ ଗୋଷ୍ଠୀର ବିଶ୍ୱାସ, ଚଳଣି, ପରମ୍ପରା, ଭାଷା, ଧର୍ମ ଇତ୍ୟାଦି ତା ପାଇଁ ପବିତ୍ରତାର ସ୍ୱାକ୍ଷର ବହନ କରୁଥିଲା । ଗୋଷ୍ଠୀ ଜୀବନର ନୀତି, ଆଦର୍ଶ ତା ପାଇଁ ଅଲଘନୀୟ ଥିଲା । ଏକ ସୀମିତ ପରିବେଷ୍ଟନୀ ଭିତରେ ଜୀବନ ସଙ୍କୁଚିତ ହୋଇ ରହିଥିଲା । କିନ୍ତୁ କାଳକ୍ରମେ ଜ୍ଞାନବିଜ୍ଞାନର ବିକାଶ ହେଲା, ଗତିଶୀଳତା ବୃଦ୍ଧି ପାଇଲା, ସଂସ୍କୃତି ସଂସ୍କୃତି ଭିତରେ ଆଦାନ-ପ୍ରଦାନର ପରିବେଶ ଆସିଲା, ବ୍ୟବସାୟ ବାଣିଜ୍ୟ ପ୍ରସାରିତ ହେଲା, ଶିକ୍ଷା ସାର୍ବଜନୀନ ହେବାକୁ ଲାଗିଲା ଓ ଏପରିକି ଆନ୍ତର୍ଜାତିକ ମାନସିକତାର ବିକାଶ ହେଲା । ସାମ୍ରାଜ୍ୟବାଦ ବିକାଶର ପରିଣାମରୁ ସମାଜ, ସଂସ୍କୃତି, ଧର୍ମ, ଭାଷା ଇତ୍ୟାଦିର ଭିନ୍ନତା ବିଷୟ ବିଶ୍ୱ ଚିନ୍ତାମାନସକୁ ଆସିଲା । ସମାଜବିଜ୍ଞାନୀ, ଐତିହାସିକ, ନୃବିଜ୍ଞାନୀ ଓ ଜ୍ଞାନପିପାସୁ ପଣ୍ଡିତମାନେ ପୃଥିବୀର ବିଭିନ୍ନ ଅଞ୍ଚଳର ବହୁ ଲୁକ୍କାୟିତ ତଥ୍ୟକୁ ସାର୍ବଜନୀନ କରିବାକୁ ଲାଗିଲେ । ଶିକ୍ଷା, ଗବେଷଣା ଓ ଅନୁସନ୍ଧିତ୍ସା କ୍ଷେତ୍ରରେ ଯେଉଁ କ୍ରିୟାଶୀଳତା ସୃଷ୍ଟି ହେଲା ତାହା ନାନା କ୍ଷେତ୍ରରେ ଜ୍ଞାନର ଦିଗନ୍ତକୁ ବିସ୍ତାର କରିପାରିଲା । ସାମାଜିକ ଚେତନାର ସ୍ତର ଉନ୍ନତ ହେବାକୁ ଲାଗିଲା । ସାମନ୍ତବାଦ, ସାମ୍ରାଜ୍ୟବାଦ, ସାମାଜିକ ଭେଦଭାବ, ପୁରୁଷ-ପ୍ରାଧାନ୍ୟ ସମାଜ ବ୍ୟବସ୍ଥା ଓ ସକଳ ଏକଛତ୍ରବାଦ ବିରୁଦ୍ଧରେ ସମଗ୍ର ବିଶ୍ୱରେ ସଚେତନତା ପ୍ରକାଶ ପାଇଲା । ଏହି ପ୍ରକ୍ରିୟାରେ ପୃଥିବୀକୁ ଯୁଦ୍ଧମୁକ୍ତ କରି ଶାନ୍ତିପୂର୍ଣ୍ଣ ସହାବସ୍ଥାନର ମନୋଭାବ ଦୃଢ ଭିତ୍ତି ନେବାକୁ ଲାଗିଲା । ବିଂଶ ଶତାବ୍ଦୀର ଦୁଇ ଦୁଇଟି ବିଶ୍ୱଯୁଦ୍ଧର ବିଭୀଷିକା ବିଶ୍ୱ ବିବେକକୁ ଯେଉଁ ଦଂଶନ କଲା ତାର ପରିଣାମ ସ୍ୱରୂପ ଜାତିସଂଘ ଓ ବହୁ ଆନ୍ତର୍ଜାତିକ ସଙ୍ଗଠନମାନ ସୃଷ୍ଟି ହେଲା । ଅହିଂସା, ମାନବିକତା, ବିଶ୍ୱଭ୍ରାତୃତ୍ୱ, ମାନବିକ ଅଧିକାରର ପ୍ରବକ୍ତାଗଣଙ୍କୁ ବିଶ୍ୱ ସ୍ତରରେ ସ୍ୱୀକୃତି ଦିଆଗଲା ଓ ଏହି ମୂଲ୍ୟବୋଧର ପଥପ୍ରଦର୍ଶକଙ୍କୁ ଅନେକ ଆନ୍ତର୍ଜାତିକ ସମ୍ମାନରେ ଭୂଷିତ କରାଗଲା । ଏସବୁ ମାନବଜାତିର ଇତିହାସରେ ଗୌରବାବହ ଘଟଣା ।

ଏସବୁ ସକାରାତ୍ମକ ଅଭିବ୍ୟକ୍ତି ସତ୍ତ୍ୱେ ଏବେ ବି ମାନବ ସମାଜରେ ନାନା ବିଦ୍ୱେଷ, ବିଭେଦ, ଭେଦଭାବ ଓ ଅସହିଷ୍ଣୁ ମନୋଭାବ ରହିଛି । ଜାତିଗତ ହିଂସା, ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ

ଅବିଶ୍ୱାସର ମନୋଭାବ, ଧାର୍ମିକ ଆବେଗ ଜନିତ ଆତଙ୍କବାଦ,ସୀମାପାର ସନ୍ତ୍ରାସବାଦ, ଗଣବିଧ୍ୱଂସୀ ମାରାଣାସ୍ତ୍ର ନିର୍ମାଣ ନେଇ ଗୁପ୍ତ ପ୍ରତିଯୋଗିତା ଓ ମାନବିକ ଅଧିକାରର ଉଲ୍ଲଙ୍ଘନ ବିଭିନ୍ନ ଦେଶରେ ସୃଷ୍ଟି ହେଉଛି। ଜାତି, ବର୍ଣ୍ଣ, ଲିଙ୍ଗଜନିତ ଭେଦଭାବ ସହ ଭାଷା, ଧର୍ମ, ଜାତୀୟତା ଇତ୍ୟାଦି ମଣିଷ ସମାଜକୁ ଭାଗ ଭାଗ କରି ରଖିଛି। ସମସ୍ତ ଭେଦଭାବକୁ ପରିହାର କରି ଏକ ବିଶ୍ୱଦୃଷ୍ଟି ଓ ଆନ୍ତର୍ଜାତିକ ସହଯୋଗୀ ମନୋଭାବ କିପରି ବିଶ୍ୱ ସ୍ତରରେ ସୃଷ୍ଟି ହେବ ସେଥିପାଇଁ ବିଭିନ୍ନ ସ୍ତରରେ ପ୍ରୟାସ ମଧ୍ୟ ହେଉଛି। ପ୍ରତ୍ୟେକ ସଂସ୍କୃତିରେ ମହତ୍ତର ଜୀବନବୋଧର ଯେଉଁ ବାର୍ତ୍ତା ରହିଛି ତାହାକୁ ବିଶ୍ୱ ସ୍ତରରେ ସାର୍ବଜନୀନ କରିବାକୁ ମଧ୍ୟ ପ୍ରୟାସ ହେଉଛି। ସମଗ୍ର ପୃଥିବୀରୁ ଦୁଃଖ, ଦାରିଦ୍ର୍ୟ, ରୋଗ ଦୂର କରିବାକୁ କେତେକ ଆନ୍ତର୍ଜାତିକ ସଙ୍ଗଠନ ଗଭୀର ସଂପୃକ୍ତି ବ୍ୟକ୍ତ କରୁଛନ୍ତି। କେଉଁଠି କିଛି ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଲେ ସମଗ୍ର ପୃଥିବୀରୁ ସହାନୁଭୂତିର ହାତ ପ୍ରସାରିତ ହେଉଛି। ପୃଥିବୀରେ ଯେଉଁଠି ଯାହା ଉଦ୍‌ଭାବନ, ଆବିଷ୍କାର ହେଉଛି ତାହାର ସୁଫଳ ସମସ୍ତ ମଣିଷ ସମାଜ ପାଇଁ ଉପଲବ୍ଧ ହୋଇପାରୁଛି। ପୃଥିବୀ ପୃଷ୍ଠର ପ୍ରାକୃତିକ ପରିବେଶକୁ ସୁରକ୍ଷିତ ରଖିବାକୁ 'ଗ୍ରହମଣ୍ଡଳୀୟ ମାନବବାଦ' ପରି ବିଚାରମାନ ବିକଶିତ ହୋଇଛି। ସକଳ ସଂକୀର୍ଣ୍ଣତା ଓ ଭେଦଭାବର ଊର୍ଦ୍ଧ୍ୱକୁ ଯାଇ ଏକ ଆନ୍ତର୍ଜାତିକ ଚେତନା ଓ ବିଶ୍ୱଦୃଷ୍ଟିର ବିକାଶ କିପରି ସାର୍ବଜନୀନ ହୋଇପାରିବ ତାହା ଆମ ସମୟର ବଡ ଆହ୍ୱାନ ମନେହୁଏ।

(ପ୍ରଗତିବାଦୀ, ୨୦.୦୭.୨୦୧୬)

# ମାନବବାଦ ବନାମ ଭାବବାଦ

ମଣିଷ କିପରି ଏକ ସୁନ୍ଦର ଜୀବନ ବଞ୍ଚିବ ? ଜୀବନର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିବା ସହ ନିଜ ସାମର୍ଥ୍ୟର ଉପଯୁକ୍ତ ବିକାଶ କରାଇବ ? ଶିକ୍ଷା ପାଇବାର ଅବକାଶ ପାଇବା ସହ ଆବଶ୍ୟକ ସମୟରେ ଚିକିତ୍ସାର ସୁଯୋଗ ପାଇବ ? କୌଣସି ଶୋଷଣ ଓ ଭେଦଭାବର ଶିକାର ହେବ ନାହିଁ ? ଜୀବନରେ ଯାହା କିଛି ମନ୍ଦ, କୁତ୍ସିତ ଓ ଅସୁନ୍ଦର ତାର ବିଲୋପ ଘଟାଇ ପାରିବ ? ଜୀବନ ମର୍ଯ୍ୟାଦାପୂର୍ଣ୍ଣ ହେବା ସହ ସମସ୍ତ ସାମାଜିକ ସମ୍ପର୍କ ପ୍ରୀତିଭରା ହେବ ? ଏହି ସବୁ ପ୍ରଶ୍ନ ଭିତରେ ମଣିଷର ମୁକ୍ତିଚେତନାର ବାର୍ତ୍ତା ନିହିତ ଥିବା ମନେହୁଏ ।

ଗୋଟିଏ ଯୁଗରେ ଧର୍ମଚେତନାର ପ୍ରାବଲ୍ୟ ରହିଥିଲା । ଧର୍ମଚେତନାରେ ଭାବବାଦୀ ଜୀବନଦୃଷ୍ଟିର ଗଭୀର ପ୍ରଭାବ ଜନମାନସକୁ ନିୟନ୍ତ୍ରଣ କରିଥିଲା । ଭାବବାଦୀ ବିଚାର ଅନୁଯାୟୀ ସବୁ କିଛି ଈଶ୍ୱର-ସୃଷ୍ଟ ଓ ଈଶ୍ୱର-ନିୟନ୍ତ୍ରିତ । ଜୀବନ ଦୁଇଦିନର ଖେଳ । ସବୁ ସମ୍ବନ୍ଧ, ସମ୍ପର୍କ ଓ ସଂପୃକ୍ତି କେବଳ ମାୟା । ମାୟା ବନ୍ଧନରୁ ମୁକ୍ତ ହେଲେ ଯାଇ ଜୀବନର ପାରଲୌକିକ ପ୍ରାପ୍ତି ସମ୍ଭବ । ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ଜୀବନର ଅନ୍ତିମ ଲକ୍ଷ୍ୟ । ଭାବବାଦ ପାରଲୌକିକତାକୁ ଅଧିକ ପ୍ରାଧାନ୍ୟ ଦେଇଥାଏ । ମାନବିକ ଦୁଃଖଦୁର୍ଦ୍ଦଶା ପ୍ରତି ବିଶେଷ ପ୍ରାଧାନ୍ୟ ଦିଏ ନାହିଁ । ଏପରିକି କେତେକ ଭାବବାଦୀ କୃଚ୍ଛ୍ର ସାଧନାଦ୍ୱାରା ଈଶ୍ୱରପ୍ରାପ୍ତି ସମ୍ଭବ ବୋଲି ନାନା ତାତ୍ତ୍ୱିକ ଭାବନା ବ୍ୟକ୍ତ କରିଥାନ୍ତି । ଅନ୍ୟ ଏକ ସାଂସ୍କୃତିକ ଦୃଶ୍ୟପଟରେ କେତେକ ଧର୍ମପ୍ରାଣ ବ୍ୟକ୍ତି ଧର୍ମଚେତନାରୁ ମହତ୍ତର ପ୍ରେରଣା ପାଇ ମାନବସମାଜର ସେବା ପାଇଁ ଜୀବନ ଉତ୍ସର୍ଗ କରିବାର କାହାଣୀ ମଧ୍ୟ ସୁବିଦିତ । ମଣିଷର ସେବା ହିଁ ଈଶ୍ୱରଙ୍କର ସେବା ବୋଲି ଏକ ଜୀବନଦର୍ଶନ ସେମାନଙ୍କୁ ପ୍ରେରଣା ଯୋଗାଇଥାଏ । ଇହଲୋକରେ ଦୁଃସ୍ଥ ମଣିଷର ସେବା କରିଥିଲେ ପରଲୋକରେ ସେମାନେ ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭକରିପାରିବେ ଓ ସ୍ୱର୍ଗବାସୀ ହେବେ ବୋଲି ବିଶ୍ୱାସ ପୋଷଣ କରନ୍ତି ।

ଭାବବାଦ ଏକ ପାରଲୌକିକ ଜୀବନବୋଧର ବାର୍ତ୍ତା ଦେଉଥିଲେ ବି ଏଥିରେ ବିଭିନ୍ନ ଧାରା ରହିବା ସମ୍ଭବ । ବୌଦ୍ଧିକ ଓ ବ୍ୟାବହାରିକ ଦୃଷ୍ଟିକୋଣରୁ ବିଚାର କଲେ

ବୈରାଗ୍ୟବାଦ ଓ ମାନବିକତାବାଦ ଭାବବାଦୀ ଚେତନାର ଦୁଇଟି ପୃଥକ୍ ଦିଗନ୍ତ। ବୈରାଗ୍ୟବାଦ ଜୀବନରେ ସୌନ୍ଦର୍ଯ୍ୟବାଦ, ବୌଦ୍ଧିକ ଉତ୍କର୍ଷ, ମାନବିକ ସଂପ୍ରୀତି ଇତ୍ୟାଦିକୁ ପ୍ରାଧାନ୍ୟ ଦିଏ ନାହିଁ। କଠୋର ଧାର୍ମିକ ଶୃଙ୍ଖଳା ମାଧ୍ୟମରେ ଏକ ପାରଲୌକିକ ପ୍ରାପ୍ତିକୁ ଜୀବନରେ ଶ୍ରେୟ ସ୍ଥାନ ଦିଏ। ମାନବ ସମାଜର ଦୁଃଖ-ଦୁର୍ଦ୍ଦଶା ପ୍ରତି ଏହା ସର୍ଶକାତରଶୂନ୍ୟ ମନୋଭାବ ପୋଷଣ କରେ। ନିଜ ଧାର୍ମିକ କଳ୍ପନା ଭିତରେ ସ୍ୱର୍ଗପ୍ରାପ୍ତି, ଈଶ୍ୱର ଉପଲବ୍ଧି, ମୋକ୍ଷ ପରି ଭାବନା ବୈରାଗ୍ୟବାଦୀ ମାନସିକତାରେ ପ୍ରାଧାନ୍ୟ ପାଇଥାଏ। ମାନବିକତାବାଦ ଧାର୍ମିକ ଭାବଧାରାର ଅନ୍ୟ ଏକ ଅଭିବ୍ୟକ୍ତି। ତେବେ ମାନବବାଦ ଓ ମାନବିକତାବାଦ ଦୁଇଟି ପୃଥକ୍ ଭାବନା। ମାନବବାଦ ମାନବକୈନ୍ଦ୍ରିକ ଓ ଇହଲୌକିକ ଜୀବନଦୃଷ୍ଟିକୁ ମହତ୍ତ୍ୱ ଦିଏ। ହେତୁବାଦ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସାମାଜିକ ନ୍ୟାୟ, ବ୍ୟକ୍ତିମର୍ଯ୍ୟାଦାବୋଧ, ଗଣତାନ୍ତ୍ରିକ ଜୀବନଧାରା ଓ ସର୍ବୋପରି ଇହଲୌକିକ ଜୀବନଦୃଷ୍ଟିକୁ ମାନବବାଦ ପ୍ରାଧାନ୍ୟ ଦେଇଥାଏ। ବ୍ୟକ୍ତିଠାରୁ ଗୋଷ୍ଠୀ, ସମାଜ, ରାଷ୍ଟ୍ର, ଅନ୍ତରାଷ୍ଟ୍ରୀୟତା ସବୁରି ସ୍ତରରେ ସୁଖ, ଶାନ୍ତି, ସୌହାର୍ଦ୍ଦ୍ୟର ଭାବନା ମାନବବାଦ ବ୍ୟକ୍ତ କରିଥାଏ। ମାନବବାଦ ଏହି ଜୀବନକୁ କେତେ ଅଧିକ ସୁଖମୟ, ଶାନ୍ତିମୟ ଓ ପ୍ରୀତିମୟ କରିହେବ ଓ ସାମାଜିକ ସମ୍ବନ୍ଧକୁ କିପରି ନ୍ୟାୟଯୁକ୍ତ ଓ ମାନବିକ କରିହେବ ତାହା ପ୍ରତି ଗଭୀର ସଂପୃକ୍ତି ପ୍ରକାଶ କରେ। ଅପରପକ୍ଷରେ ମାନବିକତାବାଦ(ହ୍ୟୁମାନିଟେରିଆନିଜିମ୍) ଏକ ଈଶ୍ୱରକୈନ୍ଦ୍ରିକ ଜୀବନଦୃଷ୍ଟି ଭିତରେ ମାନବସେବାକୁ ଗୁରୁତ୍ୱ ଦେଇଥାଏ। ଦୁଃସ୍ଥ ମଣିଷର ସେବା ଏହି ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ଯେ ଏହାଦ୍ୱାରା ଈଶ୍ୱରୀୟ କାର୍ଯ୍ୟ କରିହେବ ଓ ନିଃସ୍ୱାର୍ଥପର ଭାବେ ଈଶ୍ୱରୀୟ କାର୍ଯ୍ୟ କରିବା ଦ୍ୱାରା ବ୍ୟକ୍ତି ଈଶ୍ୱରଙ୍କ ସ୍ୱର୍ଗରାଜ୍ୟରେ ପ୍ରବେଶ କରିପାରିବ। ଧାର୍ମିକ ଅବବୋଧରେ ଯେଉଁ ସ୍ୱର୍ଗ, ଈଶ୍ୱରପ୍ରାପ୍ତି, ମୋକ୍ଷର ଭାବନା ରହିଛି ସେହି ଲକ୍ଷ୍ୟ ହାସଲ ପାଇଁ ମାନବ-ସେବାକୁ ପନ୍ଥା ଭାବେ ଗ୍ରହଣ କରିବା ଏହାର ଉଦ୍ଦେଶ୍ୟ।

ବୈରାଗ୍ୟବାଦ ଓ ମାନବିକତାବାଦ ଭିତରେ କିଛି ମୌଳିକ ପାର୍ଥକ୍ୟ ସତ୍ତ୍ୱେ ସେମାନେ ପାରଲୌକିକ ଜୀବନବୋଧରେ ଆସ୍ଥା ସ୍ଥାପନ କରନ୍ତି। ବୈରାଗ୍ୟବାଦ ମାନବିକ ଦୁଃଖଦୁର୍ଦ୍ଦଶା ପ୍ରତି ଉଦାସୀନତା ପ୍ରକାଶ କରିଥାଏ। ମାନବିକ ଦୁଃଖଦୁର୍ଦ୍ଦଶାକୁ ଅଳୀକ, ଈଶ୍ୱରୀୟ ପରୀକ୍ଷା, କର୍ମଫଳ ଇତ୍ୟାଦି କହି ଏହାକୁ ଏଡାଇ ଯାଇଥାଏ। ଅପରପକ୍ଷରେ ମାନବିକତାବାଦ ମାନବିକ ଦୁଃଖଦୁର୍ଦ୍ଦଶାକୁ ଦୂର କରିବା ପାଇଁ ଗଭୀର ସଂପୃକ୍ତି ବ୍ୟକ୍ତ କରିଥିଲେ ମଧ୍ୟ ଏହାକୁ ଈଶ୍ୱରୀୟ କାର୍ଯ୍ୟ ଭାବେ ଗ୍ରହଣ କରିଥାଏ। ଈଶ୍ୱରଙ୍କ ପ୍ରତି ଅନୁରକ୍ତ ରହିବାର ମାଧ୍ୟମ ହେଉଛି ନିଃସ୍ୱାର୍ଥପର ଭାବରେ ଅନ୍ୟକୁ ସେବା ପ୍ରଦାନ କରିବା। ଅନ୍ୟକୁ ସେବା ଦେବା,

ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି ପୋଷଣ କରିବା ଓ ଅନ୍ୟର ଦୁଃଖଦୁର୍ଦ୍ଦଶାକୁ ଅନୁଭବ କରିବା ଏକ ମହତ୍ତର ଜୀବନବୋଧର ପରିଚୟ ଦେଇଥାଏ । ତେବେ ଈଶ୍ୱରୀୟ ବ୍ୟବସ୍ଥାରେ କେତେକ ଜଟିଳ ପ୍ରଶ୍ନ ଆସିଥାଏ ଯାହାର ଏକ ବିଚାରସମ୍ମତ ସମାଧାନ ମାନବିକତାବାଦ ମଧ୍ୟରେ ମିଳିନଥାଏ । ଯଦି ଦୁଃସ୍ଥ ମଣିଷର ସେବା ଈଶ୍ୱରୀୟ ସେବା ହୁଏ, ତେବେ ଈଶ୍ୱର-ନିୟନ୍ତ୍ରିତ ବ୍ୟବସ୍ଥା ଭିତରେ ମଣିଷକୁ ଈଶ୍ୱର କାହିଁକି ଏତେ ଦୁଃଖ, ଦୁଃସ୍ଥିତି ଦିଅନ୍ତି ? ହେତୁବାଦୀ ଦାର୍ଶନିକମାନେ ସର୍ବଦା ଏହି ପ୍ରଶ୍ନ ପଚାରି ଆସିଛନ୍ତି-ଯଦି ଈଶ୍ୱର କରୁଣାମୟ ତେବେ ସେ ମଣିଷକୁ ଏତେ ଦୁଃଖ, ଯନ୍ତ୍ରଣା ଦେଇ ନଥାନ୍ତେ । ଯଦି ଈଶ୍ୱର ସର୍ବଶକ୍ତିମାନ ତେବେ ସେ ତାଙ୍କର ଶକ୍ତି ପ୍ରୟୋଗକରି ମାନବିକ କ୍ରୂରତା, ପ୍ରାକୃତିକ ବିପର୍ଯ୍ୟୟକୁ ଦୂର କରିଦେଇ ପାରନ୍ତେ । କିନ୍ତୁ ବାସ୍ତବ ଅନୁଭୂତିରେ ଏହା ହୁଏ ନାହିଁ । ନାନା ପ୍ରାକୃତିକ ଦୁର୍ବିପାକ ଓ ମାନବକୃତ କ୍ରୂରତାର ପରିଣାମରୁ ମାନବ ସମାଜରେ ଅପରିମିତ ଦୁଃଖଦୁର୍ଦ୍ଦଶା ସର୍ବଦା ରହିଆସିଛି । ଏଣୁ ଈଶ୍ୱରଙ୍କ ଅସ୍ତିତ୍ୱକୁ ଯଦିବି ସ୍ୱୀକାର କରାଯାଏ, ତେବେ ନିଷ୍କର୍ଷ ବାହାରିବ ଯେ ହୁଏତ ଈଶ୍ୱର କରୁଣାମୟ ନୁହନ୍ତି କିମ୍ବା ସର୍ବଶକ୍ତିମାନ ନୁହନ୍ତି । ମାନବସେବା ଏକ ମହତ୍ତର ଜୀବନବୋଧ ହେଲେ ବି ଯଦି ଏହାର ଭିତ୍ତିକୁ ଭାବବାଦ, ପାରଲୌକିକ ଜୀବନଦୃଷ୍ଟି ଓ ଈଶ୍ୱରୀୟ ନିୟମ ଆଧାରରେ ବ୍ୟାଖ୍ୟା କରିବାକୁ ପ୍ରୟାସ ହୁଏ, ତେବେ ଏଥିରୁ କେତେକ ବିରୋଧାଭାସର ଉତ୍ପନ୍ନ ହେବ ।

ବସ୍ତୁତଃ ମାନବବାଦ ଏକ ଭିନ୍ନ ଜୀବନଦର୍ଶନର ଅବତାରଣା କରିଥାଏ । ଏହାନୁଯାୟୀ ସମାଜରେ ଯାହା କିଛି ଦୁଃଖ ଦୁର୍ଦ୍ଦଶା, ଭେଦଭାବ, ଶୋଷଣ, ଅନ୍ୟାୟ, ଅତ୍ୟାଚାର, ପ୍ରାକୃତିକ ଦୁର୍ବିପାକ ରହିଛି ସେସବୁ ମଣିଷର ପ୍ରୟାସରେ ଦୂର ହୋଇପାରିବ । ପ୍ରାକୃତିକ ଦୁର୍ବିପାକକୁ ଦୂର କରିବାକୁ ବା ସେସବୁକୁ ସମ୍ମୁଖୀନ ତଥା ଉପଯୁକ୍ତ ପରିଚାଳନା କରିବାକୁ ଜ୍ଞାନ ଓ କୌଶଳକୁ ବୃଦ୍ଧି କରାଯାଇ ପାରିବ । ଗୋଟିଏ ସମୟରେ ପ୍ରାକୃତିକ ଦୁର୍ବିପାକ ଘଟିଲେ, ମହାମାରୀ ରୋଗ ଆସିଲେ ମଣିଷ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା । ବନ୍ୟା, ବାତ୍ୟା, ଭୂକମ୍ପ, ସୁନାମି ଇତ୍ୟାଦି ପ୍ରାକୃତିକ ଦୁର୍ବିପାକରେ ମଣିଷ ଅସହାୟ ହେଉଥିଲା କିମ୍ବା ହଇଜା, ବସନ୍ତ, ପ୍ଲେଗ୍, ଯକ୍ଷ୍ମା ଇତ୍ୟାଦି ରୋଗ ସୃଷ୍ଟି ହେଲେ ସେ ନିରୁପାୟ ହୋଇ ଉପରକୁ ହାତ ଟେକୁଥିଲା । କିନ୍ତୁ ଆସ୍ତେ ଆସ୍ତେ ଜ୍ଞାନର ବିକାଶ ଦ୍ୱାରା ସେ ଏସବୁକୁ ନିୟନ୍ତ୍ରଣ କରିବାକୁ ସାମର୍ଥ୍ୟ ହାସଲ କରିପାରିଛି । ସେ ଅସହାୟ ହୋଇପଡୁ ନାହିଁ, ବରଂ ଜ୍ଞାନ, କୌଶଳକୁ ବିନିଯୋଗ କରି ପ୍ରାକୃତିକ ପ୍ରତିକୂଳତାକୁ ମୁକାବିଲା କରୁଛି । ମାନବବାଦର ଆଧାର ହେଉଛି ଇହଲୌକିକ ଜୀବନଦୃଷ୍ଟି । ପରଲୋକ, ସ୍ୱର୍ଗ, ଆତ୍ମା, ମୋକ୍ଷ ଏସବୁ

ଭାବବାଦୀ ଧାର୍ମିକ କଳ୍ପନା ମାତ୍ର। ଯେଉଁ ଭାବନାମାନଙ୍କର ତଥ୍ୟଗତ ବା ଯୁକ୍ତିସଙ୍ଗତ ଆଧାର ନାହିଁ, ସେସବୁ ମାନବିକ କଳ୍ପନାରୁ ଉଦ୍ଭବ। ଭାବବାଦୀ କଳ୍ପନା ଆଧାରରେ ଏକ ସୁନ୍ଦର ଜୀବନର କଳ୍ପନା କରାଯାଇପାରେ କିନ୍ତୁ ତାହା ବାସ୍ତବ ହେବ ନାହିଁ। ବାସ୍ତବତା ଓ ମାନବିକ ପ୍ରୟାସକୁ ସ୍ୱୀକାର କଲେ ହିଁ ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇପାରିବ। ଏହା ସହିତ ଜ୍ଞାନକୁ ମାନବିକ ହିତ ଦିଗରେ ପ୍ରୟୋଗ କରିବା ପାଇଁ ଏକ ସମ୍ବେଦନଶୀଳ ଜୀବନଦୃଷ୍ଟିର ପ୍ରସାର ଅବଶ୍ୟମ୍ଭାବୀ ମନେହୁଏ। ଜ୍ଞାନ, କୌଶଳ, ବିଜ୍ଞାନ, ବୌଦ୍ଧିକ ଅନୁସନ୍ଧିତ୍ସା ଇତ୍ୟାଦି ନୀତିନିରପେକ୍ଷ। ଜ୍ଞାନକୁ ମାନବିକ ହିତ ପାଇଁ ବିନିଯୋଗ କରାଯାଇପାରେ କିମ୍ବା ସଭ୍ୟତାକୁ ଧ୍ୱଂସ ଆଡକୁ ନେବା ପାଇଁ ପ୍ରୟାସ କରାଯାଇପାରେ। ଆଣବିକ ଶକ୍ତିକୁ ମାନବଜାତିର କଲ୍ୟାଣ ପାଇଁ ବିନିଯୋଗ କଲେ ତାହାର ବହୁ ସୁଫଳ ମିଳିପାରିବ। ପରନ୍ତୁ ଆଣବିକ ଜ୍ଞାନକୌଶଳକୁ ସଭ୍ୟତା ଧ୍ୱଂସକାରୀ ମାରଣାସ୍ତ୍ର ନିର୍ମାଣ ପାଇଁ ପ୍ରୟୋଗ କଲେ ମାନବଜାତିର ବିଲୟ ଘଟିବ। ସୁତରାଂ ଏଠାରେ ଏକ ନୈତିକ ପ୍ରଶ୍ନ ଆସିଥାଏ। ମାନବବାଦ ଏକ ପ୍ରୀତିପୂର୍ଣ୍ଣ ପୃଥିବୀ ଓ ସୁନ୍ଦର ଜୀବନର ବାର୍ତ୍ତା ଦେଇଥାଏ। ମାନବ ସଭ୍ୟତାର ଇତିହାସରେ ଯେତେ ସବୁ ଅନ୍ୟାୟ, ଅତ୍ୟାଚାର, କ୍ରୂରତା, ଯୁଦ୍ଧ, ଭେଦଭାବ ଓ ସଂକୀର୍ଣ୍ଣତା ସୃଷ୍ଟି ହୋଇଛି ସେସବୁକୁ ଦୂର କରି ଏକ ଭ୍ରାତୃତ୍ୱପୂର୍ଣ୍ଣ ଓ ନ୍ୟାୟପୂର୍ଣ୍ଣ ପୃଥିବୀ କିପରି ସମ୍ଭବ ହେବ ସେଥିପାଇଁ ନିରପେକ୍ଷ ମାନବବାଦୀମାନେ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଗମ୍ଭୀର ଚିନ୍ତା ପ୍ରକଟ କରି ଆସୁଛନ୍ତି। ବିଶେଷକରି ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା, ଧ୍ୱଂସଦହନ, ଘୃଣା ଭିତରୁ ଏକ ବିଶ୍ୱଦୃଷ୍ଟି ଓ ମାନବବାଦୀ ଆବେଦନର ବାର୍ତ୍ତା ସାରା ପୃଥିବୀରେ ପରିବ୍ୟାପ୍ତ ହେବାରେ ଲାଗିଛି। ଏହି ଆବେଦନର ଆଧାର ହେଉଛି ମାନବବାଦ, ଅର୍ଥାତ୍ ସବୁ ମଣିଷଙ୍କର ମହତ୍ତ୍ୱକୁ ସ୍ୱୀକାର କରିବା। ସବୁ ମଣିଷ ସମାନ ପ୍ରକ୍ରିୟାରେ ଜନ୍ମ ହୋଇଛନ୍ତି ଓ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଅତିବାହିତ କରିବା ପ୍ରତ୍ୟେକ ବ୍ୟକ୍ତିର ଏକ ପ୍ରାକୃତିକ ଅଧିକାର। ଯେକୌଣସି ଭେଦଭାବ, କ୍ରୂରତା ଓ ଅନ୍ୟାୟ ମାନବବାଦର ପରିପନ୍ଥୀ। ମାନବବାଦର ଏହି ବିଚାରବୋଧ ଏକ ସୁନ୍ଦର ପୃଥିବୀର ସ୍ୱପ୍ନ ଦେଇଥାଏ। ମାନବବାଦ ହେତୁବାଦର ଏକ ସୈଦ୍ଧାନ୍ତିକ ଅଭିବ୍ୟକ୍ତି ଓ ହେତୁବାଦ ଭାବବାଦର ପରିପନ୍ଥୀ।

(ପ୍ରଗତିବାଦୀ, ୨୮.୦୯.୨୦୧୬)

# ଦାର୍ଶନିକ ଦୃଷ୍ଟି

୨୦୦୨ ମସିହାରୁ ନଭେମ୍ବର ମାସର ତୃତୀୟ ଗୁରୁବାରକୁ ଦର୍ଶନ ଦିବସ ଭାବେ ୟୁଏନସ୍କୋ ଘୋଷଣା କରିଛି। ବିଭିନ୍ନ ଦେଶର କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଦର୍ଶନ ଦିବସ ଉପଲକ୍ଷେ ଆଲୋଚନା ଚକ୍ର ଓ ସେମିନାରମାନ ଆୟୋଜନ କରାଯାଉଛି। ସଭ୍ୟତାର ଅଗ୍ରଗତି ଓ ମନୁଷ୍ୟର ବୌଦ୍ଧିକ ବିକାଶ କ୍ଷେତ୍ରରେ ଦାର୍ଶନିକମାନଙ୍କର ଅତୁଳନୀୟ ଅବଦାନ ପୃଷ୍ଠଭୂମିରେ ଆନ୍ତର୍ଜାତିକ ସ୍ତରରେ ଦର୍ଶନ ଦିବସ ପାଳିତ ହେବା ଏକ ଗୌରବାବହ ଘଟଣା। ଏହା ନିର୍ବିବାଦୀୟ ଯେ ସବୁ ସଭ୍ୟତାରେ ଦାର୍ଶନିକମାନେ ବୁଦ୍ଧିଦୀପ୍ତ ବ୍ୟକ୍ତି। ଜ୍ଞାନବିଜ୍ଞାନର ବିକାଶରେ ଦାର୍ଶନିକମାନେ ପ୍ରାୟତଃ ମୌଳିକ ଅବଦାନ ଦେଇଛନ୍ତି। ସେମାନେ ଚିନ୍ତାରାଜ୍ୟର ବିପ୍ଳବୀ। ସୃଜନଶୀଳ ଚିନ୍ତା ଚେତନାର ବିକାଶରେ ସେମାନେ ଗୁରୁତ୍ୱପୂର୍ଣ୍ଣ ଅବଦାନ ଦେଇ ଆସିଛନ୍ତି। ଜ୍ଞାନର ବିକାଶ ସହ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ପାଇଁ ଦାର୍ଶନିକମାନେ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି।

ଏକ ଆଦିମ ସ୍ଥିତିରୁ ନାନା ସ୍ତର ଦେଇ ମାନବ ସଭ୍ୟତାର ଯେପରି କ୍ରମବିକାଶ ଘଟିଛି ସେହିପରି ନାନା ସୋପାନ ଦେଇ ମଣିଷର ବୌଦ୍ଧିକ ଦିଗନ୍ତ ବିସ୍ତାରିତ ହୋଇଚାଲିଛି। ଆଜି ମଣିଷର ଚିନ୍ତା, ଚେତନା, ଜ୍ଞାନ, ଜୀବନର ଅବବୋଧ ଇତ୍ୟାଦି ଯେଉଁ ସ୍ତରକୁ ଆସିଛି ତାହା ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି। ଚିନ୍ତାରାଜ୍ୟରେ କେତେ କେତେ ବୌଦ୍ଧିକ ଆଲୋଡନମାନ ଆସିଛି। ପ୍ରତ୍ୟେକଟି ବୌଦ୍ଧିକ କ୍ରାନ୍ତି ପଶ୍ଚାତରେ କିଛି ଦାର୍ଶନିକ ବିଚାର ରହିଛି। ଏହି ଦୃଷ୍ଟିରୁ ବିଚାର କଲେ ଦର୍ଶନର ବିଷୟ, ସଂଜ୍ଞା ଓ ପରିଭାଷା ସମୟକୁ ସମୟ ବଦଳିବାରେ ଲାଗିଛି। ଜୀବନ ଓ ଜଗତ ନେଇ ମଣିଷର ଅବବୋଧ ବହୁ ସୋପାନ ମଧ୍ୟ ଦେଇ ପରିବର୍ତ୍ତନ ହେବାରେ ଲାଗିଛି।

ସୃଜନଶୀଳତାର ଯେତେ ଯେତେ ଦିଗନ୍ତ ରହିଛି ସେ ମଧ୍ୟରେ ସାହିତ୍ୟ, ଦର୍ଶନ ଓ ବୈଜ୍ଞାନିକ ଅନୁଶୀଳନ ସଭ୍ୟତାର ବିକାଶରେ ଅଧିକ ନିର୍ଣ୍ଣାୟକ ଭୂମିକା ନେଇଛନ୍ତି। ସାହିତ୍ୟ ଓ ଦର୍ଶନ ତୁଳନାରେ ବିଜ୍ଞାନର ବିକାଶ ବହୁ ପରେ ହୋଇଛି। ଆଧୁନିକ ବିଜ୍ଞାନର ଯୁଗ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହେଲା ବୋଲି ଧରାଯାଉଛି। ତେବେ ତାର ବହୁ ପୂର୍ବରୁ

ବିଭିନ୍ନ ସଭ୍ୟତାରେ ସାହିତ୍ୟ ଓ ଦର୍ଶନର ବିକାଶର ପରମ୍ପରା ସୃଷ୍ଟି ହୋଇଛି । ଚିନ୍ତା ଚେତନା ବିକାଶ ପରଠାରୁ ପ୍ରକୃତିର ବିଶାଳତା ଓ ଜୀବନର ଜଟିଳତା ନେଇ କେତେକ ବ୍ୟକ୍ତି ଅନୁସନ୍ଧିତ୍ସୁ ହୋଇଛନ୍ତି । ପୃଥିବୀର କିପରି ଉତ୍ପତ୍ତି ହୋଇଛି କିଏ ଏହାର ସ୍ରଷ୍ଟା; ଆମ ଚତୁଃପାର୍ଶ୍ୱରେ ରହିଥିବା ପ୍ରକୃତି, ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ପ୍ରାକୃତିକ ଘଟଣାମାନ କାହା ନିୟନ୍ତ୍ରଣରେ ରହିଛି, ପ୍ରାଣୀମାନେ ମରୁଛନ୍ତି କାହିଁକି, ମୃତ୍ୟୁପରେ ସେମାନଙ୍କର କିଛି ଚେତନ ସତ୍ତା ରହୁଛି କି ନାହିଁ । ଏହିପରି ଅସଂଖ୍ୟ ପ୍ରଶ୍ନ କେତେକ ବୁଦ୍ଧିଦୀପ୍ତ ବ୍ୟକ୍ତିଙ୍କୁ ବିଭିନ୍ନ ସଭ୍ୟତାରେ ଆଲୋଡିତ କରିଛି । ସେମାନେ ନିଜର କଳ୍ପନା ଓ ଚିନ୍ତନ ଆଧାରରେ ସେସବୁର କିଛି ସମ୍ଭାବ୍ୟ ବ୍ୟାଖ୍ୟା ପ୍ରଦାନ କରିବାକୁ ପ୍ରୟାସ କରିଛନ୍ତି । ଏହି ବୌଦ୍ଧିକ କୌତୂହଳତା ମଧ୍ୟ ଦେଇ ଯେଉଁ ଜିଜ୍ଞାସା ପ୍ରକାଶ ପାଇଛି ତାହା ସାଧାରଣତଃ ପ୍ରାଚୀନ ଯୁଗର ଦର୍ଶନ ଭାବେ ଗ୍ରହଣ କରାଯାଉଛି । ସଭ୍ୟତାର ଅଗ୍ରଗତି ସହ ସାମାଜିକ ବ୍ୟବସ୍ଥା କିଛିଟା ଦୃଢ ହେବାପରେ କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବରୁ ବିଭିନ୍ନ ଭୂଖଣ୍ଡରେ ଗୋଟିଏ ଗୋଟିଏ ବଡ ସାଂସ୍କୃତିକ ଆଲୋଡନ ସୃଷ୍ଟି ହୋଇଛି । ଜୀବନକୁ ଅଧିକ ଅର୍ଥପୂର୍ଣ୍ଣ ଓ ସାମାଜିକ ବ୍ୟବସ୍ଥାକୁ ଦୃଢ ଓ ନୀତିପୂର୍ଣ୍ଣ କରିବାକୁ କେତେକ ମୌଳିକ ଭାବନା ବିକଶିତ ହୋଇଛି । ଯେଉଁ ସମୟରେ ଭାରତ ଭୂଖଣ୍ଡରେ ବୁଦ୍ଧ, ମହାବୀରଙ୍କର ଆବିର୍ଭାବ ହୋଇଛି, ଉପନିଷଦ ଓ ବିଭିନ୍ନ ପୁରାଣମାନଙ୍କର ରଚନା ହୋଇଛି ସେହି ସମସାମୟିକ ଯୁଗରେ ଅନ୍ୟ ଭୂଖଣ୍ଡରେ ମଧ୍ୟ ସାଂସ୍କୃତିକ ଆଲୋଡନମାନ ସୃଷ୍ଟି ହୋଇଛି । ଇସ୍ରାଏଲ୍‌ରେ ହିବ୍ରୁ ସନ୍ଥମାନେ ମଣିଷର ଜୀବନବୋଧ ଓ ଚିନ୍ତନ କ୍ଷେତ୍ରରେ ନୂତନ ଭାବନାର ସୂତ୍ରପାତ କରିଛନ୍ତି । ପର୍ସିଆରେ ଜୋରାଷ୍ଟର ସଂସାର ଓ ଜୀବନର ନୂତନ ଅର୍ଥ ଦେଇଛନ୍ତି, ଚୀନରେ କନଫୁସିଅସ କେତେକ ବୈଚାରିକ ଆଲୋଡନ ସୃଷ୍ଟି କରିଛନ୍ତି ଓ ଗ୍ରୀସ୍‌ରେ ପିଥାଗୋରାସ୍, ସକ୍ରେଟିସ୍, ପ୍ଲେଟୋ ଇତ୍ୟାଦି ବହୁ ପ୍ରବୀଣ ଚିନ୍ତାନାୟକ ଜୀବନବୋଧର ମୌଳିକ ବ୍ୟାଖ୍ୟା ବ୍ୟକ୍ତ କରିଛନ୍ତି । କେତେକ ବୈଚାରିକ ଆଲୋଡନରୁ ଧାର୍ମିକ ଧାରାମାନ ଗୋଟିଏ ଗୋଟିଏ ସାଂସ୍କୃତିକ ପ୍ରବାହ ଭାବେ ବିଭିନ୍ନ ସଭ୍ୟତାରେ ସୃଷ୍ଟି ହୋଇଛି । ସଂସାରର ଉତ୍ପତ୍ତି, ଜୀବନର ଅନ୍ତିମ ଲକ୍ଷ୍ୟ, ନୀତି-ନୈତିକତାର ସ୍ୱରୂପ, ଜ୍ଞାନର ଆଧାର ଓ ସଂଜ୍ଞା, ସ୍ୱର୍ଗ, ନରକ, ଈଶ୍ୱରୀୟ ବିଧାନ ଇତ୍ୟାଦି ବହୁ ମୂର୍ତ୍ତ ଓ ଅମୂର୍ତ୍ତ ଭାବନାମାନଙ୍କୁ ନେଇ ନାନା ବୌଦ୍ଧିକ ବିଚାରମାନ ଚିନ୍ତାରାଜ୍ୟକୁ ଆସିଛି । ରାଜନୈତିକ ସ୍ତରରେ ରାଜତନ୍ତ୍ର ବି ବିଭିନ୍ନ ଅଞ୍ଚଳରେ ଦୃଢ ଭିତ୍ତି ନେଇଛି । ସମାଜ ଧୀରେ ଧୀରେ ଯେତିକି ଦୃଢ ଓ ବିସ୍ତାରିତ ହୋଇଛି କଳା, ସାହିତ୍ୟ, ସଙ୍ଗୀତ ଇତ୍ୟାଦିର ବିକାଶ ସହ ଦାର୍ଶନିକ ଚିନ୍ତନ ମଧ୍ୟ ଗମ୍ଭୀର ହୋଇଛି । ମାନବୀୟ ଜ୍ଞାନର ସ୍ଥିତି, ସୀମା ଓ ସଂଜ୍ଞା ନେଇ ବିଚାର ପ୍ରକାଶ ପାଇଛି; ଜୀବନର ଲକ୍ଷ୍ୟ, ଅନ୍ତିମ

ପରିଣତି, ସଫଳ ଜୀବନର ସ୍ୱରୂପ ନେଇ ଭାବନା ଉଦ୍ରେକ ହୋଇଛି ଓ ସୃଷ୍ଟିର ଉତ୍ସ, ଆଦିକାରଣ ନେଇ କେତେ କେତେ କଳ୍ପନା ପ୍ରକାଶ ପାଇଛି। ଦର୍ଶନର ବିକାଶଧାରାରେ ଏହି ସବୁ ବିଚାର, କଳ୍ପନା ଓ ଚିନ୍ତନ ମଣିଷର ବୌଦ୍ଧିକ ଦିଗନ୍ତକୁ ବିସ୍ତାରିତ କରିଛି।

ଯେଉଁ ସମୟରେ ଧର୍ମମାନ ଆନୁଷ୍ଠାନିକ ରୂପ ନେଇ ସମାଜର ସକଳ କ୍ଷେତ୍ରକୁ ପ୍ରଭାବିତ କଲା, ସେହି ସମୟରେ ଦର୍ଶନ ଧର୍ମର ତାତ୍ତ୍ୱିକ ପ୍ରସଙ୍ଗମାନଙ୍କୁ ଯୁକ୍ତିଶୀଳ ଭିତ୍ତି ଦେବାକୁ ପ୍ରୟାସ କରିଥିଲା। ମଧ୍ୟଯୁଗୀୟ ବୌଦ୍ଧିକ ବିଚାରବୋଧ ଧର୍ମକୈନ୍ଦ୍ରିକ ହୋଇଥିଲା। ସେହି ସମୟର ଦର୍ଶନ ଚର୍ଚ୍ଚା ପାରଲୌକିକ ପ୍ରସଙ୍ଗଗୁଡ଼ିକର ବିଶ୍ଳେଷଣକୁ ପ୍ରାଧାନ୍ୟ ଦେଇଥିଲା। ଧର୍ମଗ୍ରନ୍ଥମାନଙ୍କରେ ରହିଥିବା ଈଶ୍ୱର, ଆତ୍ମା, ସୃଷ୍ଟିସିଦ୍ଧାନ୍ତ, ଜୀବନର ଅନ୍ତିମ ଲକ୍ଷ୍ୟ, ନୈତିକ ଜୀବନର ସ୍ୱରୂପ ଇତ୍ୟାଦି ଭାବନାମାନଙ୍କୁ ତର୍କସଙ୍ଗତ ବ୍ୟାଖ୍ୟା କରିବା ମଧ୍ୟଯୁଗୀୟ ଦର୍ଶନର ଆଭିମୁଖ୍ୟ ହେଲା। ତେବେ ୟୁରୋପରେ ଯେଉଁ ନବଜାଗରଣର ଯୁଗ ଆସିଲା ତାର ପରିଣାମରୁ ସପ୍ତଦଶ ଶତାବ୍ଦୀରୁ ଆଧୁନିକ ବିଜ୍ଞାନର ଯୁଗ ଆରମ୍ଭ ହେଲା। ବିଜ୍ଞାନ ଧର୍ମଗ୍ରନ୍ଥର ବହୁ ସିଦ୍ଧାନ୍ତକୁ ଅମୂଳକ, ଅସତ୍ୟ ଓ ନିରାଧାର ବୋଲି ତଥ୍ୟଗତ ପ୍ରମାଣ ସାହାଯ୍ୟରେ ପ୍ରକାଶ କଲା। ପରିଣାମତଃ ଧାର୍ମିକ ବିଶ୍ୱାସ ଓ ବୈଜ୍ଞାନିକ ସିଦ୍ଧାନ୍ତ ଭିତରେ ଏକ ସଂଘର୍ଷମୟ ପରିସ୍ଥିତି ଆସିଲା। ତେବେ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପ୍ରମାଣଯୋଗ୍ୟ ଓ ସାର୍ବଜନୀନ ହୋଇଥିବାରୁ ଧାର୍ମିକ ଭାବନାମାନ ଯେ ବିଶ୍ୱାସ ଓ କଳ୍ପନା ଏହା ଧୀରେ ଧୀରେ ବୌଦ୍ଧିକ ସ୍ତରରେ ଗୃହୀତ ହେବାକୁ ଲାଗିଲା। ଏହା ସହିତ ବିଜ୍ଞାନର ଯୁଗ ପରେ ଦର୍ଶନର ଆଭିମୁଖ୍ୟରେ ମଧ୍ୟ ପରିବର୍ତ୍ତନର ସୂତ୍ରପାତ ହେଲା। ତର୍କଶୀଳତା, ବୌଦ୍ଧିକ ସ୍ପଷ୍ଟତା ଓ ପ୍ରତ୍ୟୟଗତ ବିଶ୍ଳେଷଣ ଦାର୍ଶନିକ ବିଚାରବୋଧ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ମନେ ହେଲା। ତତ୍ତ୍ୱମୀମାଂସା କ୍ଷେତ୍ରରେ ରହିଥିବା ବହୁ ପରସ୍ପରବିରୋଧୀ ସିଦ୍ଧାନ୍ତମାନଙ୍କର ବିଶ୍ଳେଷଣ କରାଯାଇ ସେଗୁଡିକ କିପରି ଛବିଳ ଚିନ୍ତନ, ବୌଦ୍ଧିକ ଅସ୍ପଷ୍ଟତା ଓ ତାର୍କିକ ଜଟିଳତାରୁ ଉଦ୍ଭବ ହୋଇଛି ତାହା ଜଣାପଡିଲା। ଦର୍ଶନର ଆଭିମୁଖ୍ୟରେ ମଧ୍ୟ ତୁମୁଳ ପରିବର୍ତ୍ତନର ସୂତ୍ରପାତ ହେଲା। ବିଂଶଶତାବ୍ଦୀ ଆରମ୍ଭରୁ ଦର୍ଶନ ଇତିହାସରେ ଏପରି କେତେକ କ୍ରାନ୍ତିକାରୀ ଭାବନାର ଉଦ୍ଭବ ହେଲା ଯାହା ଦର୍ଶନର ସଂଜ୍ଞା, ସ୍ୱରୂପ ଓ ସିଦ୍ଧାନ୍ତକୁ ଏକ ନୂଆ ମୋଡ ଦେଲା। ତତ୍ତ୍ୱମୀମାଂସା ବା ମେଟାଫିଜିକ୍‌ସ ଓ ବିଭିନ୍ନ କାଳ୍ପନିକ ସିଦ୍ଧାନ୍ତମାନଙ୍କର ବୌଦ୍ଧିକ ଅସଙ୍ଗତି, ତାର୍କିକ ତ୍ରୁଟି ଓ ବୈଚାରିକ ଅବୈଧତାକୁ ପ୍ରକାଶ କରିବା ଦ୍ୱାରା ତତ୍ତ୍ୱମୀମାଂସାର ପ୍ରତ୍ୟାଖ୍ୟାନ ଦର୍ଶନ ଚର୍ଚ୍ଚାର ଗମ୍ଭୀର ପ୍ରସଙ୍ଗ ହେଲା। ଏହି ପରିପ୍ରେକ୍ଷୀରେ ଜ୍ଞାନମୀମାଂସା, ତର୍କମୀମାଂସା ଓ ବିଶ୍ଳେଷଣାତ୍ମକ ଅନୁଶୀଳନ ଦର୍ଶନର ମୁଖ୍ୟ ପ୍ରସଙ୍ଗ ହେଲା।

ଦର୍ଶନ ପରିସରରୁ କାଳ୍ପନିକ ତତ୍ତ୍ୱମୀମାଂସାର ଅପସାରଣ ଦ୍ୱାରା ଦର୍ଶନର ପରିସର ସଙ୍କୁଚିତ ହେଲା ନାହିଁ, ବରଂ ଦର୍ଶନର ଏକ ନୂଆ ଦିଗନ୍ତ ଉନ୍ମୋଚିତ ହେଲା । ଜ୍ଞାନବିଜ୍ଞାନ କ୍ଷେତ୍ରରେ ଯେତେ ଯେତେ ବୌଦ୍ଧିକ ଦିଗନ୍ତ ଉନ୍ମୋଚିତ ହେଲା, ସେସବୁର ମୌଳିକ ଭାବନା, ତାର୍କିକ ପ୍ରସଙ୍ଗ, ପ୍ରଣାଳୀ ବିଷୟମାନ ଦର୍ଶନ ପରିସରରେ ଗମ୍ଭୀରତାର ସହ ଚର୍ଚ୍ଚା ହେଲା । ସୁତରାଂ ପ୍ରତ୍ୟେକ ବୌଦ୍ଧିକ ଚିନ୍ତନର ଏକ ଦାର୍ଶନିକ ଭିତ୍ତିର ଅବତାରଣା କରାଗଲା । ଗଣିତ, ଇତିହାସ, ସମାଜ-ବିଜ୍ଞାନ, ପ୍ରାକୃତିକ ବିଜ୍ଞାନ, ଆଇନ୍ କାନୁନ୍, ନୀତିଶାସ୍ତ୍ର ଇତ୍ୟାଦି ବିଷୟମାନଙ୍କର ଏକ ଦାର୍ଶନିକ ଭିତ୍ତି ରହିଲା ଓ ସେହି ସ୍ତରରେ ଆସୁଥିବା ମୌଳିକ ପ୍ରସଙ୍ଗଗୁଡ଼ିକର ତର୍କସଙ୍ଗତ ବ୍ୟାଖ୍ୟା ଦର୍ଶନ ପରିସରରେ ଆଲୋଚନାର ବିଷୟ ହେଲା ।

ତର୍କସଙ୍ଗତ ବିଚାର ବା କ୍ରିଟିକାଲ ଥିଙ୍କିଙ୍ଗ ଆଧାରରେ ବୌଦ୍ଧିକ ସ୍ୱଚ୍ଛତା ଲାଭକରିବା ଦର୍ଶନର ମୁଖ୍ୟ ଆଭିମୁଖ୍ୟ ହେଲା । ପ୍ରତ୍ୟେକ ଯୁଗରେ କେତେକ ସାର୍ବଜନୀନ ବିଚାର ଓ ମୂଲ୍ୟବୋଧ ଚିନ୍ତା ରାଜ୍ୟରେ ଗୃହୀତ ହେବା ଇତିହାସରୁ ଏକ ଉପଲବ୍ଧି । ଏକବିଂଶ ଶତାବ୍ଦୀରେ ଆନ୍ତର୍ଜାତିକ ସ୍ତରରେ ଯେଉଁ ଆଦର୍ଶ, ବିଚାର ଓ ଭାବନାମାନ ବହୁ ଗୁରୁତ୍ୱପୂର୍ଣ୍ଣ ମନେହେଉଛି ସେସବୁକୁ ଏକ ତାର୍କିକ ଓ ନୈତିକ ଭିତ୍ତି ଉପରେ ପ୍ରତିଷ୍ଠା କରିବା ଦର୍ଶନର ପରିସରରେ ଏବେ ପ୍ରାଧାନ୍ୟ ନେବା ମନେହେଉଛି । ଗଣତନ୍ତ୍ର, ମାନବିକ ଅଧିକାର, ସାମାଜିକ ନ୍ୟାୟ ସମତା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ମାନବବାଦ ଏ ଯୁଗର କେତେକ ସାର୍ବଜନୀନ ମୂଲ୍ୟବୋଧ । ଏହି ମୂଲ୍ୟବୋଧମାନଙ୍କର ଯଥାର୍ଥ ବିଶ୍ଳେଷଣ ଓ ଉପଯୋଗିତାକୁ ଏକ ଦାର୍ଶନିକ ଭିତ୍ତି ଦେବାକୁ ପ୍ରୟାସ କରାଯାଉଛି । ବୌଦ୍ଧିକ ଅସ୍ୱଚ୍ଛତା ଓ କେତେକ ଭ୍ରମାତ୍ମକ ବିଚାରରୁ ଅତୀତରେ ବହୁ ଆହ୍ୱାନ ସୃଷ୍ଟି ହୋଇଛି । ପ୍ରତ୍ୟେକ ସଂସ୍କୃତିରେ ରହିଥିବା ମହତ୍ତର ଜୀବନବୋଧ ଓ ଏକ ସହନଶୀଳ ଦୃଷ୍ଟିକୁ ସାର୍ବଜନୀନ କରିବାର ନୈତିକ ଦାୟିତ୍ୱ ପ୍ରାୟତଃ ଦାର୍ଶନିକମାନେ ନିର୍ବାହ କରିପାରିବେ । ନାନା କାରଣରୁ ମାନବ ସଭ୍ୟତାରେ ବହୁ ସାଂସ୍କୃତିକ ବିବିଧତା ରହିଛି । ଏହି ବିବିଧତାକୁ ସ୍ୱୀକାର କରି ଏକ ମାନବିକ ଓ ସହିଷ୍ଣୁତାର ସଂସ୍କୃତି ବିକାଶ କରାଇବା ଆଜିର ବଡ ଆହ୍ୱାନ । ବିଶ୍ୱଶାନ୍ତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଏକ ସହିଷ୍ଣୁତାର ସଂସ୍କୃତି କିପରି ସାର୍ବଜନୀନ କରାଯାଇ ପାରିବ ତାହାର ବିକାଶ କ୍ଷେତ୍ରରେ ଦାର୍ଶନିକମାନେ ପଥପ୍ରଦର୍ଶକ ହୋଇପାରିବେ ।

(ପ୍ରଗତିବାଦୀ, ୩୦.୧୧.୨୦୧୬)

# ସୃଜନଶୀଳ ଦୃଷ୍ଟି

ମଣିଷ ସ୍ୱଭାବର ଏକ ଗୁରୁତ୍ୱପୂର୍ଣ୍ଣ ବିଭବ ହେଉଛି ତା ଭିତରର ସୃଜନଶୀଳତା। ମଣିଷର ବୁଦ୍ଧି ଓ ସୃଜନଶୀଳତା ତା ଚରିତ୍ରର ବୈଶିଷ୍ଟ୍ୟ। ଏହି କାରଣରୁ ମଣିଷ ଆଦିମ ଅବସ୍ଥାରୁ ପ୍ରଗତିର ଶିଡ଼ିରେ ଆଗକୁ ଆଗକୁ ଯାଇପାରିଛି। ଏକଦା ବଣ ଜଙ୍ଗଲରେ ପଶୁ ଭଳି ଜୀବନ ନିର୍ବାହ କରୁଥିବା ଆମ ପୂର୍ବପୁରୁଷମାନେ ନିଜର ବୁଦ୍ଧି ଓ ସୃଜନଶୀଳ ସାମର୍ଥ୍ୟ ଯୋଗୁ ସଭ୍ୟତା, ସଂସ୍କୃତି ନିର୍ମାଣ କରିଛନ୍ତି ଓ କେତେ କେତେ ଭାଷାର ସର୍ଜନା କରିଛନ୍ତି। ସାହିତ୍ୟ, ଦର୍ଶନ, ଧର୍ମ, ବିଜ୍ଞାନ ଓ ବହୁ କ୍ଷେତ୍ରରେ ଜ୍ଞାନରାଜି ସୃଷ୍ଟି କରିଛନ୍ତି। ଏସବୁ ସମ୍ଭବପର ହୋଇଛି ମଣିଷର ସୃଜନଶୀଳ ସାମର୍ଥ୍ୟରୁ। ପ୍ରକୃତିରେ ଉପଲବ୍ଧ ପଦାର୍ଥମାନଙ୍କୁ ବ୍ୟବହାର କରି ମଣିଷ ଘରଦ୍ୱାର, ଗାଡିମଟର, ନାନା ଉପକରଣ ନିର୍ମାଣ କରିଛି। ଏହା ସମ୍ଭବ ହୋଇଛି ମଣିଷ ଭିତରର ସୃଜନଶୀଳତାରୁ।

ମଣିଷ ଭିତରର ସୃଜନଶୀଳତାର ଉତ୍ସ ହେଉଛି ତାର ବିଚାରଶୀଳ ବା ଚିନ୍ତାକରିବାର ସାମର୍ଥ୍ୟରୁ। ଯେହେତୁ ମଣିଷ ପାଖରେ ଏକ ବିକଶିତ ମସ୍ତିଷ୍କ ରହିଛି ସେହେତୁ ସେ ଚିନ୍ତା କରିପାରୁଛି ଓ ନିଜର ବୁଦ୍ଧି, ବିବେକ ଖଟାଇପାରୁଛି। ବୁଦ୍ଧି, ବିବେକର ପ୍ରୟୋଗ କରିବା ମଣିଷ ପ୍ରକୃତିର ଏକ ସହଜାତ ସାମର୍ଥ୍ୟ। ତେବେ ଆଧୁନିକ ଯୁଗରେ ମନୋବିଜ୍ଞାନ ସ୍ତରରେ ମଣିଷର ବୁଦ୍ଧିକୁ ଏକ ପ୍ରକ୍ରିୟା ଦେଇ ମପା ଯାଇପାରୁଛି। ବ୍ୟକ୍ତିର ଆଇକ୍ୟୁ ବା ବୁଦ୍ଧ୍ୟାଙ୍କ ସାଧାରଣ କି ଅଧିକ ବା କମ୍ ତାହା ମନୋବିଜ୍ଞାନୀମାନେ ନିରୂପଣ କରିପାରୁଛନ୍ତି। ମୋଟ ଉପରେ କହିଲେ ମଣିଷ ପାଖରେ ବୁଦ୍ଧି ଓ ବିଚାରଶୀଳ ସାମର୍ଥ୍ୟର କ୍ରମ ବିବର୍ତ୍ତନ ମସ୍ତିଷ୍କ ଯୋଗୁ ସମ୍ଭବ ହୋଇଛି, ଯାହା ଇତର ପ୍ରାଣୀଙ୍କ ପାଖରେ ସମ୍ଭବ ହୋଇ ନାହିଁ। ସେଥିପାଇଁ ଇତର ପ୍ରାଣୀମାନେ ଲକ୍ଷ ଲକ୍ଷ ବର୍ଷ ତଳେ ଯେଉଁ ସ୍ଥିତିରେ ଥିଲେ ଆଜି ମଧ୍ୟ ସେହି ସ୍ଥିତିରେ ରହିଛନ୍ତି। କିନ୍ତୁ ମଣିଷ ନିଜର ବିଚାରଶୀଳତା ଓ ସୃଜନଶୀଳତା ଯୋଗୁ ବିକାଶର ଶିଡ଼ିରେ ସର୍ବଦା ଆଗକୁ ଯାଇଛି ଓ ଜୀବନର ମାନରେ ପରିବର୍ତ୍ତନ ଆଣିବାକୁ ସମର୍ଥ ହୋଇଛି।

ମଣିଷର ସୃଜନଶୀଳତାର ଏକ ଦିଗନ୍ତ ହେଉଛି ତାର କଳ୍ପନା। ମଣିଷ ବହୁ ବିଷୟରେ କଳ୍ପନା କରିପାରେ ଓ କଳ୍ପନା ଏକ ସୀମାହୀନ ଦିଗନ୍ତ। ତେବେ ସମସ୍ତ କଳ୍ପନା

ସୃଜନଶୀଳ ନୁହେଁ ଓ ଏପରିକି ବାସ୍ତବ ମଧ୍ୟ ନୁହେଁ। ଅନେକ ନକାରାତ୍ମକ, ଅସାମାଜିକ ଓ ଧ୍ୱଂସାତ୍ମକ କଳ୍ପନା ବି ବେଳକେ ମଣିଷ ମନକୁ ଆହ୍ଲାଦିତ କରିପାରେ। ମଣିଷ ଭିତରର ପ୍ରବୃତ୍ତି ଯେପରି ଭଲ ବା ମନ୍ଦ ହୋଇପାରେ, ସେହିପରି ମଣିଷର କଳ୍ପନା ଗୁଣାତ୍ମକ ବା ନକାରାତ୍ମକ ହୋଇପାରେ। ତେବେ କଳ୍ପନା ମାଧ୍ୟମରେ ବ୍ୟକ୍ତି ନିଜର ସୃଜନଶୀଳତାକୁ ରୂପ ଦେଇଥାଏ। ବ୍ୟକ୍ତିର ସୃଜନଶୀଳତାରେ ଯେତେବେଳେ ନୂତନତ୍ୱ ଓ ମୌଳିକତା ପ୍ରକାଶ ପାଏ ତାହା ବ୍ୟଷ୍ଟି ଓ ସମଷ୍ଟି ପାଇଁ ମଙ୍ଗଳକର ହୋଇଥାଏ।

ସୃଜନଶୀଳତା ଚିନ୍ତା ସ୍ତରରେ, କାର୍ଯ୍ୟରେ ବା ଅଭିବ୍ୟକ୍ତିରେ ପ୍ରକାଶିତ ହୋଇଥାଏ। ଚିନ୍ତା ଚେତନାରେ ବହୁ ସମୟରେ ସୃଜନଶୀଳ ଭାବନାର ଅଭିବ୍ୟକ୍ତି ଦେଖିବାକୁ ମିଳେ। ଜ୍ଞାନର ଯେତେ ଯେତେ ଦିଗନ୍ତ ରହିଛି ସେସବୁ କିଛି ଚିନ୍ତାଶୀଳ ବ୍ୟକ୍ତିଙ୍କର ସୃଜନଶୀଳ ସାମର୍ଥ୍ୟରୁ ବିକଶିତ ହୋଇଛି। କିଛି ଚିନ୍ତାଶୀଳ ବ୍ୟକ୍ତି ବିଭିନ୍ନ ବିଷୟରେ ମୌଳିକ ବିଚାରମାନ ବ୍ୟକ୍ତ କରିଛନ୍ତି। ଗଣିତ, ଭୂଗୋଳ, ମନୋବିଜ୍ଞାନ ଇତ୍ୟାଦି ଯେତେ ଯେତେ ବିଷୟ ରହିଛି ସେ କ୍ଷେତ୍ରର ଭାବନାମାନ ଆମେ ଏବେ ସହଜରେ ଜାଣିବାର ଅବକାଶ ପାଉଛେ। ତେବେ ସେହି କ୍ଷେତ୍ରର ଭାବନା ସକଳକୁ ଯେଉଁମାନେ ବିକଶିତ କରାଇଛନ୍ତି ସେମାନେ ସୃଜନଶୀଳ ଭାବନାର ଅଧିକାରୀ। ସେହିପରି ଗୋଟିଏ ବ୍ୟବସ୍ଥାର ପରିବର୍ତ୍ତନ କରି ଏକ ପ୍ରଗତିଶୀଳ ବ୍ୟବସ୍ଥାର ରୂପାୟନ ନେଇ ଯେଉଁମାନେ ନୂତନ ଭାବନାର ସୂତ୍ରପାତ କରାଇଛନ୍ତି ସେମାନେ ନିଜ ସୃଜନଶୀଳ ସାମର୍ଥ୍ୟର ପରିଚୟ ଦେଇଛନ୍ତି। ରାଜତନ୍ତ୍ର ବ୍ୟବସ୍ଥାକୁ ପରିବର୍ତ୍ତନ କରି ଗଣତାନ୍ତ୍ରିକ ବିକଳ୍ପର ଭାବନା ପ୍ରଥମକରି ଦେଇଥିବା ଚିନ୍ତାଶୀଳ ବ୍ୟକ୍ତିମାନେ ସୃଜନଶୀଳତାର ସ୍ୱାକ୍ଷର ରଖିଯାଇଛନ୍ତି। ପ୍ରାଚୀନ ଯୁଗରେ ସର୍ବତ୍ର ବିଶ୍ୱାସ ଥିଲା ଯେ ସୃଷ୍ଟିକୁ ଓ ସକଳ ପ୍ରାଣୀଜଗତକୁ ଏକ ସର୍ବଶକ୍ତିମାନ ଈଶ୍ୱର ସୃଷ୍ଟି କରିଛନ୍ତି। ତେବେ ଯେହେତୁ ଏହି ବିଶ୍ୱାସ ପଶ୍ଚାତରେ କୌଣସି ତଥ୍ୟଗତ ଆଧାର ନାହିଁ, କେହି କେହି ଦାର୍ଶନିକ ଚିନ୍ତା ବ୍ୟକ୍ତ କରିଛନ୍ତି ଯେ ମନୁଷ୍ୟ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ ନୁହେଁ, ବରଂ ଈଶ୍ୱର ହିଁ ମଣିଷର କଳ୍ପନାରୁ ସୃଷ୍ଟି ହୋଇଛନ୍ତି। ଈଶ୍ୱରଙ୍କର ରୂପ, ବାସସ୍ଥାନ, ସ୍ୱରୂପ ଓ କାର୍ଯ୍ୟ ବିଷୟରେ ବିଭିନ୍ନ ସଭ୍ୟତାର କିଛି ଚିନ୍ତାଶୀଳ ବ୍ୟକ୍ତି କଳ୍ପନା କରିଛନ୍ତି। ଏହି ବିଶ୍ୱାସମାନ କିପରି ତଥ୍ୟାଧାରିତ ନୁହେଁ ବରଂ କେବଳ କଳ୍ପନା ତାହା ଜ୍ଞାନବିଜ୍ଞାନର ବିକାଶରୁ ସ୍ପଷ୍ଟ ହୋଇଛି।

ସୃଜନଶୀଳତା ମାଧ୍ୟମରେ କିଛି ନୂତନତ୍ୱର ପ୍ରକାଶ ପାଇଥାଏ। ଏହି ନୂତନତ୍ୱ ଯେତେବେଳେ ଚିନ୍ତାଧାରାରେ ଅଭିବ୍ୟକ୍ତ ହୁଏ, ସେତେବେଳେ ଜ୍ଞାନର ଉତ୍ତରଣ ଘଟେ।

ଜଣେ ଦାର୍ଶନିକ ଜୀବନର ଏକ ନୂତନ ଅର୍ଥ ଦେଇ ଏକ ସୁନ୍ଦର ଜୀବନ ପାଇଁ କିଛି ବିଚାର ସୃଷ୍ଟି କରନ୍ତି। ତାହା ସ୍ଥଳବିଶେଷରେ ଏକ ସାମାଜିକ ଆଦର୍ଶ ହୁଏ ବା ସମାଜକୁ ନୈତିକ ପ୍ରେରଣା ଯୋଗାଏ। ଜଣେ ଅନୁସନ୍ଧିତ୍ସୁ ବୈଜ୍ଞାନିକ ପ୍ରକୃତିରେ ରହିଥିବା କିଛି ଶୃଙ୍ଖଳା ବା ନିୟମକୁ ନିଜର ଅନୁଶୀଳନ ଦ୍ୱାରା ଆବିଷ୍କାର କରନ୍ତି ବା ଘଟଣାର କାରଣକୁ ବସ୍ତୁନିଷ୍ଠ ଭାବରେ ବ୍ୟାଖ୍ୟା କରିପାରନ୍ତି। ଏହାଦ୍ୱାରା ଜ୍ଞାନର ବିକାଶ ହୋଇଥାଏ। ମଣିଷର ଏହି ସୃଜନଶୀଳତା ସାହିତ୍ୟିକ ସୃଷ୍ଟି ଭିତରେ ଅଧିକ କଳାତ୍ମକ ଭାବେ ଅଭିବ୍ୟକ୍ତ ହୁଏ। ପ୍ରତ୍ୟେକ ଭାଷାରେ କାବ୍ୟ-କବିତା, କାହାଣୀ, ନାଟକ, ଉପନ୍ୟାସ, ପ୍ରବନ୍ଧ ଓ ସମାଲୋଚନା ଇତ୍ୟାଦି କ୍ଷେତ୍ରରେ ଯେଉଁ ବର୍ଣ୍ଣନା ଦେଖିବାକୁ ମିଳେ ତାହା ମାନବୀୟ ସୃଜନଶୀଳତାର ଏକ କଳାତ୍ମକ ସ୍ୱାକ୍ଷର ବହନ କରେ। ଜଣେ ସ୍ରଷ୍ଟା ନିଜର ସୃଜନ ଭିତରେ ପ୍ରକୃତିର, ଜନଜୀବନର ଓ ମାନବିକ ମୂଲ୍ୟବୋଧର ଯେଉଁ ଭାବଧାରା ବ୍ୟକ୍ତ କରନ୍ତି ତାହା ସମାଜକୁ ଦିଗ୍‌ଦର୍ଶନ ଦେବା ସହ ସଭ୍ୟତାର ବୌଦ୍ଧିକ ଓ ସାଂସ୍କୃତିକ ଉତ୍ତରଣରେ ସହାୟକ ହୋଇଥାଏ। ସାଧାରଣ ଜୀବନର ଘଟଣା ପ୍ରବାହ ଓ ଆମ ଚତୁଃପାର୍ଶ୍ୱର ଚରିତ୍ରମାନଙ୍କୁ ନେଇ ଜଣେ ସ୍ରଷ୍ଟା ଉଚ୍ଚକୋଟିର ସାହିତ୍ୟ ସୃଷ୍ଟି କରିପାରନ୍ତି। ମାନବିକ ସୃଜନଶୀଳତାର ସୁନ୍ଦରତର ପରିପ୍ରକାଶ ସାହିତ୍ୟ ମଧ୍ୟରେ ବହୁ ଅତୀତରୁ ହେବା ଏକ ସାଧାରଣ ଉପଲବ୍ଧି।

ଦର୍ଶନ, ବିଜ୍ଞାନ ଓ ସାହିତ୍ୟ ପରି ବୌଦ୍ଧିକ ବିଷୟ ବାହାରେ ମାନବିକ ସୃଜନଶୀଳତା ସାଧାରଣ ବ୍ୟକ୍ତିର କାର୍ଯ୍ୟରେ ମଧ୍ୟ ପ୍ରତିଫଳିତ ହୋଇପାରେ। ନିତିଦିନିଆ ଜୀବନାନୁଭୂତିରେ ଆମେ ବହୁ ସାଧାରଣ ମଣିଷଙ୍କୁ ଦେଖେ ଯେଉଁମାନେ ବୃତ୍ତିଗତ ସୃଜନଶୀଳତାର ପରିଚୟ ଦେଇପାରନ୍ତି। ଜଣେ କାଠଶିଳ୍ପୀ ନିଜ ନିହାଣ ଓ କରତ ସାହାଯ୍ୟରେ ଏକ ଆକର୍ଷଣୀୟ କବାଟ ବା ସୁନ୍ଦର ଚଉକିଟିଏ ନିର୍ମାଣ କରିପାରନ୍ତି। ଜଣେ ସ୍ୱର୍ଣ୍ଣକାର ନିଜର କ୍ଷୁଦ୍ର ଯନ୍ତ୍ର ସାହାଯ୍ୟରେ ଏକ ଚମତ୍କାର ଗହଣା ପ୍ରସ୍ତୁତ କରିପାରନ୍ତି। ଜଣେ ବୟନଶିଳ୍ପୀ ତାଙ୍କ ତନ୍ତ ସାହାଯ୍ୟରେ ଏକ ଆକର୍ଷଣୀୟ ଶାଢୀ ବୁଣିପାରନ୍ତି ବା ଜଣେ ଦର୍ଜୀ ଏକ ସିଲେଇ ମେସିନ୍‌ର ସାହାଯ୍ୟରେ ସୁନ୍ଦର ପୋଷାକ ସିଲେଇ କରିଦିଅନ୍ତି। ଏହିପରି ଦେଖିଲେ ସାଧାରଣ ଜୀବନରେ ସୃଜନଶୀଳତାର କେତେ କେତେ ପରିପ୍ରକାଶ ଦେଖିବାକୁ ମିଳିଥାଏ। ଜଣେ ମାଳୀ ତାର ହାତର ସ୍ପର୍ଶରେ ଓ ଯତ୍ନରେ ଏକ ଅତି ଆକର୍ଷଣୀୟ ଉଦ୍ୟାନ ଟାଙ୍ଗରା ଭୂମିରେ ସୃଷ୍ଟି କରିପାରେ। ଯେଉଁ ଯେଉଁ କ୍ଷେତ୍ରରେ ନୂତନତ୍ୱର ପ୍ରକାଶ ପାଏ ଯାହା ମାନବୀୟ ଚେତନା, ଅନୁଭବ ଓ ସୌନ୍ଦର୍ଯ୍ୟବୋଧକୁ ସ୍ପର୍ଶ କରିଥାଏ ସେଠାରେ ଯେ ସୃଜନଶୀଳତାର ପରିପ୍ରକାଶ ହୋଇଛି ଏହା କୁହାଯାଇପାରେ।

ବୌଦ୍ଧିକ, କଳାତ୍ମକ ବା ବ୍ୟାବହାରିକ ସ୍ତରରେ ଯେଉଁଠି କିଛି ନବ ପ୍ରବର୍ତ୍ତନର ଅଭିବ୍ୟକ୍ତି ଦେଖିବାକୁ ମିଳେ ତାହା ଏକ ସୃଜନଶୀଳ ସୃଷ୍ଟି । ଜଣେ ସୃଜନଶୀଳ ସ୍ରଷ୍ଟାର ଆବଶ୍ୟକ ହୁଏ ତାହାର ସ୍ୱାଧୀନତା । ଜଣେ ସ୍ରଷ୍ଟା ତାର ସୃଜନଶୀଳ ପରିପ୍ରକାଶ ପାଇଁ ବୌଦ୍ଧିକ ସ୍ୱାଧୀନତା ପାଇବା ଆବଶ୍ୟକ । ଏହି ସ୍ୱାଧୀନତାର ପରିସର ଯେତେ ବ୍ୟାପ୍ତ ଓ ବ୍ୟାପକ, ସ୍ରଷ୍ଟାର ସର୍ଜନା ସେତେ ସମ୍ଭବନାମୟ । ଜଣେ ସ୍ରଷ୍ଟାର ସୃଜନ ହୁଏତ ତାଙ୍କ ପାଇଁ ବଞ୍ଚିବାର ପାଥେୟ ହୋଇପାରେ, କିନ୍ତୁ ତାହା ଅନ୍ୟମାନଙ୍କ ପାଇଁ ଆନନ୍ଦ, ସୌନ୍ଦର୍ଯ୍ୟର ଅନୁଭବ ଓ ଜୀବନକୁ ସରସ ସୁନ୍ଦର କରିବା ପାଇଁ ସାଧନ ହୋଇଥାଏ । ଜଣେ ସ୍ରଷ୍ଟା ଏକ କ୍ଷୁଦ୍ର ପରିସରରେ କାର୍ଯ୍ୟ କରୁଥିଲେ ବି ତାହାର ମୂଲ୍ୟ ସାର୍ବଜନୀନ ହୋଇଥାଏ । ଯେଉଁ ଶିଳ୍ପୀମାନଙ୍କର କଳ୍ପନା, ଶ୍ରମ ଓ ହାତର କରାମତିରେ ଗୋଟିଏ କୋଣାର୍କ, ଏକ ତାଜମହଲ ବା ଏକ ମୀନାକ୍ଷୀ ମନ୍ଦିରର ଭାସ୍କର୍ଯ୍ୟ ନିର୍ମିତ ହୋଇଛି ତାହାର କଳାତ୍ମକ ମୂଲ୍ୟ ଓ ମହତ୍ତ୍ୱ ଯେ ସାର୍ବଜନୀନ ଏହା ନିଃସନ୍ଦେହ ମନେହୁଏ । ଶିଳ୍ପୀ ବା କଳାକାର ଇତିହାସର ଗର୍ଭରେ ବିସ୍ମୃତ ହୋଇଯାଇ ପାରନ୍ତି କିନ୍ତୁ ତାଙ୍କ କଳାରେ ସୃଜନଶୀଳତାର ଯେଉଁ ପରିପ୍ରକାଶ ହୋଇଥାଏ ତାହା ସାର୍ବଜନୀନ ହୋଇଥାଏ । ଶିଳ୍ପୀ ମରଣଶୀଳ କିନ୍ତୁ ତାଙ୍କ କଳା ଓ ସୃଜନଶୀଳ ନୈପୁଣ୍ୟ ଅମର ହୋଇଥାଏ ।

ସୃଜନଶୀଳତା ଯେପରି ବୌଦ୍ଧିକ, ବ୍ୟାବହାରିକ ଓ କଳାତ୍ମକ ସ୍ତରରେ ପ୍ରତିଫଳିତ ହୁଏ, ସେହିପରି ଏହା ମାନବିକ ଜୀବନବୋଧରେ ଅଭିବ୍ୟକ୍ତ ହେଲେ ଜୀବନ ନୈତିକ ଉତ୍କର୍ଷ ସାଧନ କରିପାରେ । ଏହା ବ୍ୟକ୍ତି ଜୀବନରେ ଓ ସାମୂହିକ ଜୀବନରେ ପ୍ରକାଶ ପାଇପାରେ । ସାଧାରଣତଃ ବ୍ୟକ୍ତି ନିଜର ସଫଳତାରେ ଆନନ୍ଦ ଅନୁଭବ କରିଥାଏ, ତେବେ ଅନ୍ୟର ଆନନ୍ଦରେ ଆନନ୍ଦିତ ହେବାର ଅନୁଭବ ଜୀବନରେ ନୈତିକ ଉତ୍କର୍ଷ ଆଣିଥାଏ । ସେହିପରି ଜାତି, ଧର୍ମ, ଜାତୀୟତା ଆଧାରରେ ଅନ୍ୟ ପ୍ରତି ବିଦ୍ୱେଷ ରଖିବା ଯେଉଁ ନୀତିବୋଧର ଭାବନା ଦିଏ, ସବୁ ମଣିଷଙ୍କୁ ସମାନ ଦୃଷ୍ଟିରେ ଦେଖିବା ଓ ସମସ୍ତଙ୍କ ପ୍ରତି ପ୍ରୀତିଭାବ ପୋଷଣ କରିବା ଏକ ମହତ୍ତର ଜୀବନବୋଧର ପରିଚୟ ଦେଇଥାଏ । ମହତ୍ତର ଜୀବନଦୃଷ୍ଟିରେ ନୈତିକ ଉତ୍କର୍ଷର ସ୍ୱାକ୍ଷର ରହିଥାଏ । ଏକ ଗୁଣାତ୍ମକ ଜୀବନର ମୂଲ୍ୟ ନୈତିକ ସୃଜନଶୀଳତା ଉପରେ ଅନେକାଂଶରେ ନିର୍ଭର କରିଥାଏ । ନୈତିକ ସୃଜନଶୀଳତା ବ୍ୟକ୍ତିର ଦୃଷ୍ଟିଭଙ୍ଗୀରେ ବା ବୃହତ୍ତର ସାମାଜିକ ଜୀବନଧାରାରେ ଯେତେ ଅଧିକ ପ୍ରତିଫଳିତ ହୁଏ ତାହା ଏକ ମହତ୍ତର ସ୍ଥିତିର ପରିଚୟ ଦେଇଥାଏ ।

(ପ୍ରଗତିବାଦୀ, ୧୧.୦୧.୨୦୧୭)

# ସମତାର ସ୍ୱର

ସଭ୍ୟତାର ଅଗ୍ରଗତି ସହ ସଭ୍ୟ ମୂଲ୍ୟବୋଧମାନ ସମାଜରେ ବିକଶିତ ହୋଇଛି । ଗୋଟିଏ ସମାଜ ସେତିକି ସଭ୍ୟ ଯେଉଁ ସମାଜରେ ସଭ୍ୟ ମୂଲ୍ୟବୋଧମାନ ଯେତେ ଅଧିକ ବିକଶିତ ହୋଇଛି । ସଭ୍ୟ ମୂଲ୍ୟବୋଧ ପ୍ରତି ସ୍ୱୀକୃତି ଓ ବାସ୍ତବ ଜୀବନରେ ତାର ପ୍ରତିଫଳନ ମାନଦଣ୍ଡରେ ସମାଜର ସାଂସ୍କୃତିକ ବିକାଶକୁ ମୂଲ୍ୟାୟନ କରାଯାଇପାରେ । ସାମାଜିକ ବିକାଶକୁ ନାନା ଦିଗରୁ ମୂଲ୍ୟାୟନ କରାଯିବା ସମ୍ଭବ, ତେବେ ଗୋଟିଏ ମାନଦଣ୍ଡ ହେଉଛି ସାମାଜିକ ଜୀବନ ପ୍ରବାହରେ ସଭ୍ୟ ମୂଲ୍ୟବୋଧମାନ କେତେ ସ୍ୱୀକୃତ ବା ସେ ପ୍ରତି କେତେ ଗ୍ରହଣଶୀଳତା ରହିଛି ।

ସମାନତା ବା ସମତାର ଭାବ ଏକ ମାନବିକ ମୂଲ୍ୟବୋଧ । ଏହି ମୂଲ୍ୟବୋଧ ମାନବ ସଭ୍ୟତାର ବିକାଶଧାରାରେ ବହୁ ପରେ ଚିନ୍ତା ସ୍ତରକୁ ଆସିଛି । ସବୁ ସଭ୍ୟତାରେ ବୈଷମ୍ୟ ଓ ଅସମତାକୁ ଦୀର୍ଘ ଦିନ ଧରି ଗ୍ରହଣ କରା ଯାଉଥିଲା । ସାମାଜିକ ନ୍ୟାୟ, ସମତା, ବ୍ୟକ୍ତି ମର୍ଯ୍ୟାଦାବୋଧ ଭାବନାମାନ ବହୁ ପରେ ସାମାଜିକ ଚେତନା ସ୍ତରକୁ ଆସିଲା । ସମାଜର ବିଭିନ୍ନ ସ୍ତରରେ ରହିଥିବା ନାନା ଭେଦଭାବ, ବୈଷମ୍ୟକୁ ମଣିଷ ଏକ ଈଶ୍ୱରୀୟ ବିଧାନ ଭାବେ ଗ୍ରହଣ କରି ନେଉଥିଲା । ବିଭିନ୍ନ ସମାଜରେ ପ୍ରଭୁ-ଭୃତ୍ୟର ଭାବନା ରହିଥିଲା । ଜମିଦାର, ସାମନ୍ତ ଓ ରାଜାମାନେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସମ୍ପତ୍ତି, ସମ୍ପନ୍ନତା ଓ ଶାସନ ବ୍ୟବସ୍ଥାର ଯଥାକ୍ରମେ ଅଧିକାରୀ ଥିଲେ । ଈଶ୍ୱର ହିଁ ରାଜାଙ୍କୁ ରାଜ୍ୟ ଶାସନ କରିବା ପାଇଁ ଅଧିକାର ଦେଇଛନ୍ତି ଓ ପ୍ରଜାମାନେ ରାଜାଙ୍କର ନିର୍ଦ୍ଦେଶକୁ ମୁଣ୍ଡପାତି ମାନିବା ସେମାନଙ୍କର କର୍ତ୍ତବ୍ୟ ବୋଲି ଭାବନା ସମାଜରେ ରାଜତନ୍ତ୍ର ଯୁଗରେ ରହିଥିଲା । ଯେତେବେଳେ ଧର୍ମମାନଙ୍କର ଗଭୀର ପ୍ରଭାବ ସମାଜରେ ରହିଥିଲା ଓ ସକଳ ସାମାଜିକ ବ୍ୟବସ୍ଥା ଧର୍ମକୈନ୍ଦ୍ରିକ ଥିଲା ସେତେବେଳେ ସମସ୍ତ ବିଷମତାକୁ ଏକ ଦୈବୀବିଧାନ ବୋଲି ସମାଜ ଗ୍ରହଣ କରୁଥିଲା । ଲିଙ୍ଗଗତ ଭେଦଭାବ ସବୁ ସଂସ୍କୃତିରେ ରହିଥିଲା ଓ ମହିଳାମାନଙ୍କର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବା ଅଧିକାର ଚିନ୍ତା ସ୍ତରକୁ ବି ଆସିନଥିଲା । ସେହିପରି ରଙ୍ଗଭେଦ ଜନିତ ବୈଷମ୍ୟକୁ ସ୍ୱୀକାର

କରିନିଆ ଯାଉଥିଲା । ଈଶ୍ୱର ଗୋରା ଲୋକମାନଙ୍କୁ ଉଚ୍ଚ କରିଛନ୍ତି ଓ କଳା ଲୋକମାନେ ଗୋରା ଲୋକଙ୍କର ଦାସ ହୋଇ ରହିବା ଏକ ଈଶ୍ୱରୀୟ ବିଧାନ ବୋଲି ତତ୍ତ୍ୱ ପ୍ରଚାର କରା ଯାଉଥିଲା । ଭାରତୀୟ ସମାଜରେ ଜନ୍ମଗତ ଜାତିବ୍ୟବସ୍ଥା କେଉଁ ଯୁଗରୁ ଚଳି ଆସୁଥିଲା । ଜାତିବ୍ୟବସ୍ଥା ଓ ଜାତିଗତ ଉଚ୍ଚ-ନୀଚ ଭେଦଭାବ ଏକ ଈଶ୍ୱରୀୟ ବିଧାନ ବୋଲି ବହୁ ଶାସ୍ତ୍ରରେ ସ୍ୱୀକୃତି ଦିଆ ଯାଇଥିଲା । ମୋଟ ଉପରେ ସମାଜରେ ରହିଥିବା ସକଳ ଭେଦଭାବ, ଅସମତା ଓ ବୈଷମ୍ୟକୁ ଗ୍ରହଣ କରି ନିଆ ଯାଉଥିଲା ଓ ଏସବୁ ଯେ ଈଶ୍ୱରୀୟ ବିଧାନ ଓ ଅଲଂଘ୍ୟ ଏହି ଭାବନା ଭିନ୍ନ ଭିନ୍ନ ଭାବରେ ବିଭିନ୍ନ ସମାଜରେ ରହିଥିଲା ।

ଗଣତାନ୍ତ୍ରିକ ବିଚାରବୋଧ ଆସିବା ପୂର୍ବରୁ କେତେକ ମାନବ-ଦରଦୀ ବା ସନ୍ଥ ଲୋକମାନଙ୍କ ମଧ୍ୟରେ କେତେକ ମହତ୍ତର ଭାବନା ସୃଷ୍ଟି କରିଥିଲେ । ଭାରତବର୍ଷରେ ଦଳିତ ଓ ଶୂଦ୍ରମାନେ ବି ଈଶ୍ୱରଙ୍କ ସନ୍ତାନ ଓ ସେମାନଙ୍କ ପ୍ରତି କରୁଣାର ଭାବ ରଖିବା ଉଚିତ୍ ବୋଲି କିଛି ବିଚାର ପ୍ରଚାର କରିଥିଲେ । ଯେଉଁମାନେ ନ୍ୟୂନ ହୋଇ ଜନ୍ମ ହୋଇଛନ୍ତି ଈଶ୍ୱର ସେମାନଙ୍କୁ ଦଣ୍ଡ ଦେଇ ସାରିଛନ୍ତି, ଏବେ ସେମାନେ ଦୟାର ପାତ୍ର । ସାମନ୍ତ ଓ ଜମିଦାରମାନେ ଅତ୍ୟାଚାରୀ ନ ହୋଇ ଶ୍ରମଜୀବୀ ମଣିଷମାନଙ୍କ ପ୍ରତି ଦୟା ପରବଶ ହେବାକୁ କୁହାଯାଇଛି । ରାଜାମାନେ ପ୍ରଜାମାନଙ୍କୁ ସନ୍ତାନ ଦୃଷ୍ଟିରେ ଦେଖିବାକୁ ନୀତିବାଣୀ ଦିଆଯାଇଛି । ସମାଜରେ ଭେଦଭାବ ରହିବ ଓ ଉଚ୍ଚ-ନୀଚ ଜନିତ ବୈଷମ୍ୟ କେବେ ଦୂର ହୋଇପାରିବ ନାହିଁ ବୋଲି ସର୍ବଦା ଅତୀତରେ ବିଚାର କରାଯାଇଛି । ଈଶ୍ୱର-କୈନ୍ଦ୍ରିକ ଜୀବନଦୃଷ୍ଟିରେ ସକଳ ସାମାଜିକ ଭେଦଭାବ ଯେ ଦୈବବିଧାନ ଏହି ଭାବନା ଯୁଗ ଯୁଗ ଧରି ସାମାଜିକ ମନସ୍ତତ୍ତ୍ୱରେ ରହିଆସିଛି ।

ତେବେ ଚିନ୍ତା ଚେତନାର ବିକାଶ ଧାରାରେ ଏହି ଉପଲବ୍ଧି ଆସିଛି ଯେ ସମାଜରେ ଯାହା ସବୁ ବୈଷମ୍ୟ ଓ ଭେଦଭାବ ରହିଛି ତାହା ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥା ମଧ୍ୟ ଦେଇ ଉଦ୍ଭବ ହୋଇଛି । ଏସବୁ ଭେଦଭାବ କେଉଁ ଈଶ୍ୱର ସୃଷ୍ଟି କରିନାହାନ୍ତି, ଏହା ମନୁଷ୍ୟକୃତ । ମନୁଷ୍ୟର ପ୍ରୟାସରେ ବ୍ୟବସ୍ଥାର ପରିବର୍ତ୍ତନ ହେଲେ ସମାଜରୁ ସକଳ ଭେଦଭାବ ଅଚିରେ ଦୂର ହୋଇପାରିବ । ରାଜତନ୍ତ୍ର ଓ ସାମନ୍ତବାଦ ବିରୋଧରେ କେତେକ ରାଷ୍ଟ୍ରରେ ଯେଉଁ ବିପ୍ଳବ ସୃଷ୍ଟି ହୋଇଛି ସେଥିରେ ଗଣତାନ୍ତ୍ରିକ ବ୍ୟବସ୍ଥାର ଭିତ୍ତି ପଡିଛି । କେତେକ ଦାର୍ଶନିକ ସ୍ୱାଧୀନତା, ସମତା ଓ ଭ୍ରାତୃତ୍ୱଭାବ ମୂଲ୍ୟବୋଧର ଯେଉଁ ସୈଦ୍ଧାନ୍ତିକ ଓ ମାନବିକ ବ୍ୟାଖ୍ୟା ଦେଲେ ତାହା ଜନମାନସକୁ ଗଭୀର ଭାବେ ପ୍ରଭାବିତ କଲା । ଅନ୍ୟାନ୍ୟ

କାରଣ ସହ ଜୀବନବୋଧର ଏହି ନୂଆ ବିଚାର ଆଧାରରେ ଫ୍ରାନ୍ସରେ ଯେଉଁ ବିପ୍ଳବ ସଂଘଟିତ ହେଲା ତାହା ମାନବ ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ଥିଲା। ଧୀରେ ଧୀରେ ରାଜନୈତିକ ସମତାର ଭାବନା ଏକ ସାର୍ବଜନୀନ ମୂଲ୍ୟବୋଧ ଭାବେ ଚିନ୍ତାଧାରାରେ ଆଲୋଡନ ଆଣିଲା। ସେହିପରି କାର୍ଲ ମାର୍କସ(୧୮୧୮-୧୮୮୩) ଶ୍ରେଣୀହୀନ ସମାଜର ଯେଉଁ ପରିକଳ୍ପନା ଦେଲେ ତାହା ମଧ୍ୟ ଦେଇ ଚିନ୍ତା ସ୍ତରରେ ଏକ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହେଲା। "ସମତା" ଯେ ସଭ୍ୟ ଜୀବନବୋଧର ଏକ ସାର୍ବଜନୀନ ମୂଲ୍ୟବୋଧ ଏହା କାଳକ୍ରମେ ଚିନ୍ତାଧାରାରେ ଗୃହୀତ ହେବାକୁ ଲାଗିଲା।

ମାନବବାଦୀ ଦାର୍ଶନିକମାନେ ସମତାକୁ ଏକ ସାର୍ବଜନୀନ ମୂଲ୍ୟବୋଧ ଭାବେ ଗ୍ରହଣ କଲାବେଳେ ଏ ସଂପର୍କୀୟ କେତେକ ଭ୍ରମକୁ ଦୂର କରିବାକୁ ପ୍ରୟାସ କରିଥାନ୍ତି। ଦୁଇ ଜଣ ବ୍ୟକ୍ତି ଭିତରେ କେତେକ ଭିନ୍ନତା ରହିବ ଓ କୌଣସି ଦୁଇ ଜଣ ବ୍ୟକ୍ତି ଏକାପରି ବା ସର୍ବସମ ହୋଇପାରିବେ ନାହିଁ। ବ୍ୟକ୍ତି ବ୍ୟକ୍ତି ଭିତରେ ବଂଶାନୁଗତ ଓ ପାରିବେଶିକ ପାର୍ଥକ୍ୟ ରହିବ, ଏହାକୁ କେହି ଅସ୍ୱୀକାର କରିବେ ନାହିଁ। ଦୁଇ ଜଣ ବ୍ୟକ୍ତିଙ୍କର ଚେହେରା, ରୁଚି, ଆବେଗିକ ସ୍ତର ଓ ସାମର୍ଥ୍ୟ କେବେ ସମାନ ହେବ ନାହିଁ। ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱ ତାର ବାପା ମା'ଙ୍କର ଗୁଣ, ସାମାଜିକ ପରିବେଶର ପ୍ରଭାବ, ଶିକ୍ଷା ଓ ବୃତ୍ତିଗତ ସ୍ଥିତି ଇତ୍ୟାଦି ଆଧାରରେ ଗଢି ଉଠିଥାଏ। ସବୁ ମଣିଷଙ୍କର ଦକ୍ଷତା ବି ସମାନ ନୁହେଁ। ଉଦ୍ୟାନରେ ବହୁ ରଙ୍ଗ, ବେରଙ୍ଗର ଫୁଲ ଯେପରି ଉଦ୍ୟାନର ସୌନ୍ଦର୍ଯ୍ୟକୁ ବୃଦ୍ଧି କରିଥାଏ ସେହିପରି ମଣିଷ ସମାଜରେ ଓ ସାମର୍ଥ୍ୟରେ ରହିଥିବା ବିବିଧତା ସାମାଜିକ ଜୀବନକୁ ସୁନ୍ଦର କରିଥାଏ। କବି, କୃଷକ, କଳାକାର, ସମାଜକର୍ମୀ, ଶିକ୍ଷକ ଇତ୍ୟାଦି ନାନା ବୃତ୍ତି ଓ ନାନା ରୁଚିର ମଣିଷ ସାମାଜିକ ଜୀବନଧାରାକୁ ସୁଗମ ଓ ପ୍ରୀତିମୟ କରିଥାନ୍ତି।

ଏହି ପୃଷ୍ଠଭୂମିରେ ସମାନତା ମଣିଷ ସୃଷ୍ଟ ସାମାଜିକ ବୈଷମ୍ୟ ଓ ଭେଦଭାବର ପରିପନ୍ଥୀ। ଯେଉଁ ସବୁ ବ୍ୟବସ୍ଥା ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି କରିଛି, ଉଚ୍ଚ-ନୀଚର ବାତାବରଣ ଆଣିଛି ଓ ବୈଷମ୍ୟକୁ ଦୃଢ କରିବା ପାଇଁ ସାମାଜିକ ବ୍ୟବସ୍ଥାକୁ ନିର୍ମାଣ କରିଛି ସେସବୁକୁ ଦୂର କରାଯିବା ଆବଶ୍ୟକ। ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ନିଜ ଜାତି, ରଙ୍ଗ ବା ଲିଙ୍ଗ ଆଧାରରେ ସମାଜରେ ଅନ୍ୟମାନଙ୍କ ଠାରୁ ଉତ୍କୃଷ୍ଟ ବିବେଚିତ

ହେବେ ଏକ ଅନ୍ୟାୟଯୁକ୍ତ ବ୍ୟବସ୍ଥା । ଭାରତୀୟ ସମାଜରେ ଦଳିତ ବା ଶୂଦ୍ରମାନେ ବିଦ୍ୟା ଅଧ୍ୟୟନ କରିପାରିବେ ନାହିଁ, ସେମାନେ ସମ୍ପତ୍ତି ସଞ୍ଚୟ କରିପାରିବେ ନାହିଁ ବା ଅସ୍ତ୍ର ଧାରଣ କରିପାରିବେ ନାହିଁ ବୋଲି କଟକଣାମାନ ଅନେକ ଦିନ ପର୍ଯ୍ୟନ୍ତ ରହିଥିଲା । କଳା ଲୋକମାନେ ଗୋରା ଲୋକଙ୍କ ସହ ଏକାଠି ଯାତ୍ରା କରିପାରିବେ ନାହିଁ, ଏକା ହୋଟେଲ୍‌ରେ ବସି ଖାଦ୍ୟ ଖାଇପାରିବେ ନାହିଁ, ରାଜନୀତିରେ ଅଂଶ ଗ୍ରହଣ କରିପାରିବେ ନାହିଁ ଇତ୍ୟାଦି କଟକଣା କେତେକ ଦେଶରେ ରହିଥିଲା । କେତେକ ସମାଜରେ ମହିଳାମାନେ ରାସ୍ତାରେ ଯିବା ବେଳେ ନିଜର ମୁହଁ ସାଧାରଣରେ ଦେଖାଇ ପାରିବେ ନାହିଁ, ସ୍ୱାମୀଙ୍କର ମୃତ୍ୟୁ ହେଲେ ସେ ରଙ୍ଗୀନ ପୋଷାକ ବା ଗହଣା ପରିଧାନ କରିପାରିବେ ନାହିଁ ଇତ୍ୟାଦି ନାନା କଟକଣା ବିଭିନ୍ନ ସମାଜରେ ରହି ଆସିଥିଲା । ଏସବୁ ବ୍ୟବସ୍ଥା ଥିଲା ମଣିଷକୃତ ।

ସମତାର ଭାବନା ଏକ ମାନବବାଦୀ ଜୀବନବୋଧର ଏକ ସୈଦ୍ଧାନ୍ତିକ ପରିଣାମ । ସମତାର ମୁଖ୍ୟ ବିଚାର ହେଉଛି ବ୍ୟକ୍ତି ତାର ସାମାଜିକ ପରିଚୟରେ କୌଣସି ଭେଦଭାବ ବା ହୀନମନ୍ୟତାର ସମ୍ମୁଖୀନ ହେବ ନାହିଁ । ତା ସାମର୍ଥ୍ୟର ଉପଯୁକ୍ତ ବିକାଶ ପାଇଁ ସାମାଜିକ ପରିବେଶ ପାଇବ । ସେହିପରି କୌଣସି ଗୋଷ୍ଠୀ ଜାତି, ଧର୍ମ, ଭାଷା, ବର୍ଣ୍ଣ ଇତ୍ୟାଦିକୁ ଆଧାର କରି ସମାଜରେ ନ୍ୟୂନ ବୋଲି ବିବେଚିତ ହେବ ନାହିଁ । ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ବଞ୍ଚିବାର ଅଧିକାର ପାଇବ ଓ ତାର ସାମର୍ଥ୍ୟ ଅନୁଯାୟୀ ସ୍ୱାବଲମ୍ବୀ ହୋଇ ଜୀବନ ନିର୍ବାହ କରିବ ।

ରାଜନୈତିକ ସ୍ତରରେ ସମତାର ଭାବନା ମଧ୍ୟ ସମାଜରେ ଦୃଢ ହୋଇଛି । ବିଭିନ୍ନ ଦେଶର ସମ୍ବିଧାନରେ ସମତାକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଛି । ପ୍ରତ୍ୟେକ ନାଗରିକ ଦେଶର ରାଜନୈତିକ ବ୍ୟବସ୍ଥାରେ ଅଂଶଗ୍ରହଣ କରିପାରିବ । ରାଜନୈତିକ କ୍ଷମତା କୌଣସି ବ୍ୟକ୍ତି ବା ଗୋଷ୍ଠୀର ନିୟନ୍ତ୍ରଣରେ ରହିବ ନାହିଁ । ସମାଜର ସାଧାରଣ ମଣିଷ ବି ରାଷ୍ଟ୍ରର ରାଜନୈତିକ ପ୍ରକ୍ରିୟାରେ ନିଜର ମତ ରଖିବାର ଅବକାଶ ପାଇବ । ସମାଜର ସବୁ ନାଗରିକ କର୍ମସଂସ୍ଥାନ ଓ ସ୍ୱାବଲମ୍ବୀ ହେବାର ସୁଯୋଗ ପାଇବେ ଓ ଆର୍ଥିକ ନିରାପତ୍ତା ଉପଭୋଗ କରିବେ । ସମ୍ପତ୍ତି ମୁଷ୍ଟିମେୟ ବ୍ୟକ୍ତିଙ୍କ ହାତରେ ଠୁଳ ହୋଇରହିବ ନାହିଁ । ପ୍ରତ୍ୟେକ ବ୍ୟକ୍ତି ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା ତଥା ସ୍ୱାସ୍ଥ୍ୟସେବା ପାଇବାର ଅଧିକାର ପାଇବ । ସମସ୍ତ ପିଲା ଶିକ୍ଷା ଲାଭ କରିବାର

ସୁଯୋଗ ପାଇବେ ଓ ନିରକ୍ଷରତା ଦୂରୀକରଣ ପାଇଁ ରାଷ୍ଟ୍ରୀୟ ସ୍ତରରେ ଯୋଜନା କରାଯିବ। ଆଇନ୍ ଦୃଷ୍ଟିରେ ସମସ୍ତ ନାଗରିକ ସମାନ ବିବେଚିତ ହେବେ ଓ କେହି ଅନ୍ୟାୟର ଶିକାର ହେବେ ନାହିଁ। ସାମାଜିକ ନ୍ୟାୟ ଓ ସମତାକୁ ଜାତୀୟ ଜୀବନର ଲକ୍ଷ୍ୟ ଭାବରେ ବିଭିନ୍ନ ଦେଶରେ ସ୍ୱୀକୃତି ଦିଆଯାଇଛି। ପ୍ରତ୍ୟେକ ଦେଶର ସମ୍ବିଧାନରେ ସମତା ଓ ନାଗରିକ ଅଧିକାରକୁ ପ୍ରାୟତଃ ଉଚ୍ଚ ମୂଲ୍ୟ ଦିଆଯାଇଛି। ଆଇନ ଦୃଷ୍ଟିରେ ସବୁ ବ୍ୟକ୍ତି ସମାନ, ସବୁ ବ୍ୟକ୍ତି ଶିକ୍ଷା ଓ ସ୍ୱାସ୍ଥ୍ୟସେବା ପାଇବାକୁ ହକ୍‌ଦାର ତଥା ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବା ବ୍ୟକ୍ତିର ପ୍ରାକୃତିକ ଅଧିକାର ଏହି ମୂଲ୍ୟବୋଧଗୁଡ଼ିକ ଅନ୍ତତଃ ବିଭିନ୍ନ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କରେ ସ୍ୱୀକୃତ ହୋଇପାରିଛି। ଏପରିକି ଆନ୍ତର୍ଜାତିକ ସ୍ତରରେ ମାନବିକ ଅଧିକାରର ଯେଉଁ ଘୋଷଣାନାମା ରହିଛି ସେଥିରେ 'ସମତା'କୁ ଏକ ମୌଳିକ ମୂଲ୍ୟବୋଧ ଭାବେ ଗ୍ରହଣ କରାଯାଇଛି। ହୁଏତ ପାରମ୍ପରିକ ତଥା ରକ୍ଷଣଶୀଳ ସମାଜରେ ସାମାଜିକ ବିଷମତା ଏବେ ବି ରହିଛି, ତେବେ ସମତାର ଭାବନା ଯେ ଏକ ସଭ୍ୟ ମୂଲ୍ୟବୋଧ ଏହା ସାର୍ବଜନୀନ ଭାବେ ଗୃହୀତ ହୋଇଛି। ସାମ୍ପ୍ରତିକ ମାନଦଣ୍ଡରେ ସାମାଜିକ ଜୀବନଧାରାରେ ସମତା ଯେତେ ଅଧିକ ପ୍ରତିଫଳିତ, ସମାଜ ସେତିକି ବିକଶିତ ଓ ସଭ୍ୟ ବୋଲି ଗୃହୀତ ହେଉଛି।

(ପ୍ରଗତିବାଦୀ, ୦୧.୦୨.୨୦୧୭)

# ପନ୍ଥା ଓ ଲକ୍ଷ୍ୟ

**ନୀ**ତିଦର୍ଶନ ପରିସରରେ ଲକ୍ଷ୍ୟ ଓ ପନ୍ଥାର ସମ୍ବନ୍ଧ ନେଇ ବ୍ୟାପକ ଚର୍ଚ୍ଚା ହେବା ଦେଖାଯାଏ। ବ୍ୟକ୍ତି ଜୀବନରେ ହେଉ କିମ୍ବା ଏକ ବୃହତ୍ତର ଜନଗୋଷ୍ଠୀ କ୍ଷେତ୍ରରେ ହେଉ ପନ୍ଥା ଓ ଲକ୍ଷ୍ୟ ଭିତରେ କ'ଣ ସମ୍ବନ୍ଧ ରହିଛି ? ଯେକୌଣସି ପନ୍ଥାରେ ଏକ ଲକ୍ଷ୍ୟ ସାଧନ କରାଯାଇପାରେ କି ? ଲକ୍ଷ୍ୟ ଉତ୍ତମ ହେଲେ ବି ଏହାର ସଫଳତା କ'ଣ ଉତ୍ତମ ପନ୍ଥା ଉପରେ ନିର୍ଭରକରେ ? ସେହିପରି ପ୍ରତ୍ୟେକ ସ୍ଥିତିରେ ଏକ ଉତ୍ତମ ପନ୍ଥା କ'ଣ ଉତ୍ତମ ପରିଣାମ ଦେଇଥାଏ ? ପନ୍ଥାର ଗୁଣାତ୍ମକ ଓ ନୈତିକ ମୂଲ୍ୟ ଉପରେ ଲକ୍ଷ୍ୟର ନୈତିକ ମୂଲ୍ୟ ନିର୍ଭର କରେ କି ? ନା ଏକ ମହତ୍ତର ଲକ୍ଷ୍ୟ ହାସଲ ପାଇଁ ଯେକୌଣସି ପନ୍ଥାର ଆଶ୍ରୟ ନିଆଯାଇପାରେ ? କେତେକ ମତପୋଷଣ କରିଥାନ୍ତି ଯେ ଏକ ନୀତିପୂର୍ଣ୍ଣ ପନ୍ଥାରେ ଅଗ୍ରସର ହୋଇ ଯଦି ଏକ ଅସ୍ୱାଭାବିକ ଲକ୍ଷ୍ୟହାସଲ ହୁଏ ତାହା ଗ୍ରହଣଯୋଗ୍ୟ କିନ୍ତୁ ଅନୈତିକ ପନ୍ଥାରେ ଯାଇ ଏକ ଇପ୍ସିତ ଲକ୍ଷ୍ୟ ହାସଲ କରିବା ଯଥାର୍ଥ ନୁହେଁ। ଏହି ସ୍ଥିତିରେ ଲକ୍ଷ୍ୟ ଓ ପନ୍ଥା ଭିତରେ କ'ଣ ସମ୍ବନ୍ଧ ରହିଛି ?

କେତେକ ମନେକରନ୍ତି ଯେ କାରଣ ଓ କାର୍ଯ୍ୟ ଭିତରେ ଯେପରି ଅନିବାର୍ଯ୍ୟ ସମ୍ବନ୍ଧ ରହିଛି ଠିକ୍ ସେହିପରି ପନ୍ଥା ଓ ଲକ୍ଷ୍ୟ ଭିତରେ ସମ୍ବନ୍ଧ ରହିଛି। ତେବେ କାର୍ଯ୍ୟ-କାରଣ ଭିତରର ସମ୍ବନ୍ଧ ଏକ ପ୍ରାକୃତିକ ସମ୍ବନ୍ଧ। ପ୍ରତ୍ୟେକ କାର୍ଯ୍ୟର କାରଣ ରହିଥାଏ ଓ ଯେଉଁ କାରଣରୁ ଯେଉଁ କାର୍ଯ୍ୟ ନିଷ୍ପନ୍ନ ହୁଏ ପ୍ରାୟତଃ ସର୍ବଦା ସେହି କାରଣରୁ ସେହି କାର୍ଯ୍ୟ ଆସିଥାଏ। ବିଜ୍ଞାନର ପ୍ରତ୍ୟେକ ବିଭାଗରେ ପ୍ରତ୍ୟେକଟି କାର୍ଯ୍ୟ ବା ଘଟଣାର କାରଣ ନିର୍ଣ୍ଣୟ କରିବାକୁ ପ୍ରୟାସ କରାଯାଏ। କାରଣକୁ ସର୍ବଦା କାର୍ଯ୍ୟର ପୂର୍ବବର୍ତ୍ତୀ ଘଟଣା ଭାବରେ ନିଆଯାଏ ଓ ସେମାନଙ୍କ ଭିତରେ ଏକ ଅବ୍ୟବହିତ ସମ୍ପର୍କ ରହିଥାଏ। ପ୍ରକୃତିରେ ଏକ ନିୟମ ରହିଛି ଯେ ଯେଉଁ କାରଣରୁ ଯେଉଁ କାର୍ଯ୍ୟ ନିର୍ଗତ ହୁଏ, ସେହି କାରଣରୁ ସର୍ବଦା ସେହି କାର୍ଯ୍ୟ ନିଷ୍ପନ୍ନ ହେବ। କିନ୍ତୁ ପନ୍ଥା ଓ ଲକ୍ଷ୍ୟ ସହିତ ନୈତିକତାର ପ୍ରସଙ୍ଗ ଆସେ। ଏକ ପନ୍ଥା ନୈତିକ ମାନଦଣ୍ଡରୁ ଯଥାର୍ଥ ହୋଇପାରେ କିମ୍ବା ଗ୍ରହଣଯୋଗ୍ୟ ହୋଇନପାରେ। ସେହିପରି ଏକ ଲକ୍ଷ୍ୟ ନୈତିକ ମୂଲ୍ୟାୟନରେ ଗ୍ରହଣଯୋଗ୍ୟ ହୋଇପାରେ କିମ୍ବା ଗ୍ରହଣଯୋଗ୍ୟ ହୋଇନପାରେ।

ବ୍ୟକ୍ତିଗତ ସ୍ତରରେ ଜଣେ ବ୍ୟକ୍ତି ନାନାବିଧ ଲକ୍ଷ୍ୟ ପୋଷଣ କରିଥାଏ ଓ ଲକ୍ଷ୍ୟ ପୂରଣ ପାଇଁ ନାନା ପନ୍ଥାର ଆଶ୍ରୟ ନିଏ। ସୁତରାଂ ଏକ ଲକ୍ଷ୍ୟ କ୍ଷେତ୍ରରେ ବ୍ୟକ୍ତିର ଇଚ୍ଛା, କାମନା ବା ଉଦ୍ଦେଶ୍ୟର ପ୍ରଶ୍ନ ଆସିଥାଏ। କେଉଁ ଲକ୍ଷ୍ୟ ବା ଉଦ୍ଦେଶ୍ୟରେ ଏକ କାର୍ଯ୍ୟ କରାଯାଏ, ତାହାର ନୈତିକ ମୂଲ୍ୟ ଉପରେ ବ୍ୟକ୍ତିର କାର୍ଯ୍ୟର ନୈତିକ ମାନ ନିର୍ଭର କରିଥାଏ। ଏହି ଲକ୍ଷ୍ୟ ପୋଷଣ କରିବା ଓ ଏକ ବାସ୍ତବ ପରିଣତି ଆସିବା ଭିତରେ ଯେ ସର୍ବଦା ସଙ୍ଗତି ରହିବ ତାହା କୁହାଯାଇ ନପାରେ। ଜଣେ ଡାକ୍ତର ରୋଗୀର ଯନ୍ତ୍ରଣାକୁ ଉପସମ କରିବା ପାଇଁ ରୋଗୀର ଏକ ଅସ୍ତ୍ରୋପଚାର କଲେ। କିନ୍ତୁ ରୋଗୀର ଯନ୍ତ୍ରଣାର ଉପସମ ପରିବର୍ତ୍ତେ ରୋଗୀ ମୃତ୍ୟୁମୁଖରେ ପଡିଲେ। ଏକ ଲକ୍ଷ୍ୟ ପୋଷଣ କରି ଏକ କାର୍ଯ୍ୟ କରିବାଦ୍ୱାରା ଯେ ସେହି ଲକ୍ଷ୍ୟସାଧିତ ହେବ ତାହା ସମ୍ଭବ ହୋଇପାରେ କିମ୍ବା ସମ୍ଭବ ହୋଇନପାରେ। ସୁତରାଂ ଲକ୍ଷ୍ୟ ସହିତ ଏକ ବ୍ୟକ୍ତିନିଷ୍ଠ ଉଦ୍ଦେଶ୍ୟ ରହିପାରେ ଓ ଏକ ବାସ୍ତବ ପରିଣତି ଆସିପାରେ।

ଏହି ପୃଷ୍ଠଭୂମିରେ ଏକ ମତ ରହିଛି ଯେ ପନ୍ଥା ଉପରେ କର୍ତ୍ତାର ନିୟନ୍ତ୍ରଣ ରହିଛି। ଜଣେ କେଉଁ ପନ୍ଥା ପ୍ରୟୋଗ କରିବେ ସେ ବିଷୟରେ ସେ ନିଷ୍ପତ୍ତି ନେଇଥାନ୍ତି। କିନ୍ତୁ ସେଥିରୁ କ'ଣ ପରିଣତି ଆସିବ ତାହା ତାଙ୍କ ନିୟନ୍ତ୍ରଣ ଭିତରେ ନଥାଏ। ସୁତରାଂ ଜଣେ ତାଙ୍କର ପନ୍ଥା ପାଇଁ ଉତ୍ତରଦାୟୀ, ପରିଣତି ପାଇଁ ନୁହେଁ। ନୈତିକ ମାନଦଣ୍ଡରୁ ପନ୍ଥା ଯଥାର୍ଥ ହେଲେ ଜଣଙ୍କର କାର୍ଯ୍ୟ ଗ୍ରହଣଯୋଗ୍ୟ। ଏକ ଅନୈତିକ ପନ୍ଥା ପ୍ରୟୋଗକରି ଏକ ଉତ୍ତମ ଲକ୍ଷ୍ୟ ହାସଲ କରାଯାଇନପାରେ। ଏହି ମତାନୁଯାୟୀ ପନ୍ଥାର ନୈତିକତା ଲକ୍ଷ୍ୟର ନୈତିକତା ନିର୍ଦ୍ଧାରଣ କରିଥାଏ।

ଏହାର ଏକ ବିପରୀତ ମତ ମଧ୍ୟ ରହିଛି। ଏହି ମତାନୁଯାୟୀ ଏକ ମହତ ଉଦ୍ଦେଶ୍ୟ ରଖି ଏକ କାର୍ଯ୍ୟ କରାଗଲେ ତାହା ଯଥାର୍ଥ ହୋଇଥାଏ। ଯଦି ଲକ୍ଷ୍ୟ ନୈତିକ ମାନଦଣ୍ଡରୁ ଗ୍ରହଣଯୋଗ୍ୟ, ତେବେ ଯେକୌଣସି ପନ୍ଥାକୁ ପ୍ରୟୋଗ କରାଯାଇପାରେ। ଅର୍ଥାତ୍ ଲକ୍ଷ୍ୟର ନୈତିକ ମାନ୍ ଉପରେ କାର୍ଯ୍ୟକୁ ସ୍ୱୀକୃତି ଦିଆଯାଇପାରେ। ଲକ୍ଷ୍ୟ ହେଉଛି ଦେଶର ସ୍ୱାଧୀନତା ହାସଲ କରିବା ବା ଏକ ଶୋଷଣମୁକ୍ତ ଭେଦଭାବରହିତ ସମାଜ ନିର୍ମାଣ କରିବା। ଏହି ଲକ୍ଷ୍ୟ ପୂରଣ କରିବା ପାଇଁ ଜନଗଣଙ୍କ ଭିତରେ ଏକ ବୈପ୍ଳବିକ ମନୋଭାବ ସୃଷ୍ଟି କରାଯାଇପାରେ, ହିଂସାର ଆଶ୍ରୟ ନିଆଯାଇପାରେ ବା କୂଟନୀତି ପ୍ରୟୋଗ କରାଯାଇପାରେ। ଏହି ମତାନୁଯାୟୀ ଉଦ୍ଦେଶ୍ୟ ମହତ ହେଲେ କାର୍ଯ୍ୟର ନୈତିକ ମୂଲ୍ୟକୁ ପ୍ରଶ୍ନ କରାଯାଇ ପାରିବ ନାହିଁ।

ଏକ ତୃତୀୟ ମତ ହେଉଛି ଯେ ଲକ୍ଷ୍ୟ ମହତ ହେବା ସହ ପ୍ରୟୋଗ ହେଉଥିବା ପନ୍ଥା ବି ନୀତିପୂର୍ଣ୍ଣ ହେବା ଆବଶ୍ୟକ। ପନ୍ଥା ନୀତିପୂର୍ଣ୍ଣ ହେବା ସହ ଲକ୍ଷ୍ୟ ବି ନୀତିପୂର୍ଣ୍ଣ ହେବା ଦରକାର। ଉଭୟ ନୈତିକ ମାନଦଣ୍ଡରୁ ଯଥାର୍ଥ ହେଲେ ଯାଇଁ ଏକ କାର୍ଯ୍ୟକୁ ଯଥାର୍ଥ କୁହାଯାଇପାରିବ। ଏକ ମହତ୍ ଉଦ୍ଦେଶ୍ୟ ରଖି ଏକ ମନ୍ଦ ପନ୍ଥାର ଆଶ୍ରୟ କରାଯିବା ସମ୍ପୂର୍ଣ୍ଣ ଅନୈତିକ। ସେହିପରି ଏକ ଚତୁର୍ଥ ମତର ବି ଅବତାରଣା କରାଯାଏ। ଏହି ମତ ଅନୁଯାୟୀ ଲକ୍ଷ୍ୟ ମହତ୍। ତେବେ ଏକ ମହତ୍ ଲକ୍ଷ୍ୟ ହାସଲ କରିବାକୁ ଉତ୍ତମ ପନ୍ଥାର ଆଶ୍ରୟ ନେବାକୁ ପ୍ରଯତ୍ନ କରାଯାଏ। ସମସ୍ତ ଆନ୍ତରିକ ଉଦ୍ୟମ ସତ୍ତ୍ୱେ ସମୟରେ ତାହା ସମ୍ଭବ ହୋଇପାରେ ନାହିଁ। ସେପରି କ୍ଷେତ୍ରରେ ଏକ ଉତ୍ତମ ଲକ୍ଷ୍ୟ ହାସଲ ପାଇଁ ସାମୟିକ ଭାବେ ହିଂସାତ୍ମକ ବା ସେପରି କିଛି ପନ୍ଥାର ଆଶ୍ରୟ ନେବା ଅବଶ୍ୟମ୍ଭାବୀ ହୋଇପଡେ। କୁହାଯାଏ ଯେ ଦୁଇଟି ମନ୍ଦ ଭିତରୁ ଯଦି ଗୋଟିକୁ ବାଛିବାକୁ ପଡେ, ତେବେ କମ୍ ମନ୍ଦଥିବା ପରିସ୍ଥିତିକୁ ସ୍ଥିର କରାଯାଏ। ଏଠାରେ ଏକ ପୌରାଣିକ କାହାଣୀର ଅବତାରଣା କରାଯାଇପାରେ। ମହାଭାରତ ଯୁଦ୍ଧ ପୂର୍ବରୁ ପାଣ୍ଡବ ଓ କୌରବଙ୍କ ମଧ୍ୟରେ ଏକ ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଶ୍ରୀକୃଷ୍ଣ ଉଦ୍ୟମ କଲେ। ତାଙ୍କର ସମସ୍ତ ସୁଉଦ୍ଦେଶ୍ୟ ସତ୍ତ୍ୱେ ଏକ ସମାଧାନର ପନ୍ଥା ବାହାରି ପାରିଲା ନାହିଁ। ସେହି ସ୍ଥିତିରେ ଏକ ଯୁଦ୍ଧର ପରିସ୍ଥିତି ଆସିଲା।

ଏହି ଭାବନାମାନଙ୍କୁ ନେଇ ଅର୍ଥାତ୍ ପନ୍ଥା ଓ ଲକ୍ଷ୍ୟର ସମ୍ବନ୍ଧ ପ୍ରସଙ୍ଗ ଉପରେ ନୀତିଦର୍ଶନରେ ବହୁ ଆଲୋଚନା ହେବା ଦେଖାଯାଏ। ବିଶେଷକରି ସାମାଜିକ ଲକ୍ଷ୍ୟ ହାସଲ କ୍ଷେତ୍ରରେ ଏହା ଅନେକ ଜଟିଳ ମନେହୁଏ। ଅନ୍ୟାୟ, ଶୋଷଣ ଓ ବୈଷମ୍ୟ ଉପରେ ଆଧାରିତ ଏକ ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବା ପାଇଁ ବହୁ ସମୟରେ ହିଂସାତ୍ମକ ଗଣବିପ୍ଲବକୁ ସ୍ୱୀକୃତି ଦିଆଯାଏ। ସାଧାରଣ ପରିବେଶରେ ହିଂସାତ୍ମକ ପନ୍ଥା ଓ ଯୁଦ୍ଧ ଜନିତ ପରିସ୍ଥିତିକୁ ସ୍ୱୀକୃତି ଦିଆଯାଏ ନାହିଁ। କିନ୍ତୁ ନ୍ୟାୟ ଓ ସମତାର ପ୍ରତିଷ୍ଠା ପାଇଁ ସର୍ବନିମ୍ନ ହିଂସାକୁ ଗ୍ରହଣ କରାଯାଇପାରେ। ଯଦି ଲକ୍ଷ୍ୟ ରହେ ଯେ ଶୋଷଣମୁକ୍ତ ଓ ସାମ୍ୟସମାଜ ପ୍ରତିଷ୍ଠା ହେବା ଦରକାର ଓ ଏହା ଏକ ଅହିଂସ ପଦ୍ଧତିରେ ହାସଲ କରିବା ସମ୍ଭବ ନୁହେଁ, ସେହି ସ୍ଥିତିରେ ସାମୟିକ କାଳ ପାଇଁ କୌଶଳପୂର୍ଣ୍ଣ ଭାବେ ହିଂସାତ୍ମକ ପନ୍ଥାର ଆଶ୍ରୟ ନିଆଯାଇପାରେ। ସାମାଜିକ ବା ରାଜନୈତିକ ପରିବର୍ତ୍ତନ ପ୍ରେକ୍ଷାପଟରେ ଏହି ଭାବଧାରାକୁ ହୁଏତ ଅନେକ ଗ୍ରହଣ କରିବେ। ଏକ ରାଷ୍ଟ୍ରୀୟ ଲକ୍ଷ୍ୟ ହାସଲ ଏତେ ଜଟିଳ ଓ ଏତେ ସବୁ ଆନୁଷଙ୍ଗିକ ସମସ୍ୟା ଓ ପରିସ୍ଥିତିଦ୍ୱାରା ପ୍ରଭାବିତ ଯେ ସେ କ୍ଷେତ୍ରରେ ଏକ ନୀତିପୂର୍ଣ୍ଣ ନିର୍ଦ୍ଦିଷ୍ଟ ପନ୍ଥାକୁ ସାର୍ବଜନୀନ ଭାବେ ଗ୍ରହଣ କରାଯାଇପାରିବ ନାହିଁ। ଏହି ପୃଷ୍ଠଭୂମିରେ ଗାନ୍ଧିଜୀ

ଏକ ଭିନ୍ନ ଭାବଧାରାର ଅବତାରଣା କରିବା ଦେଖାଯାଏ। ତାଙ୍କ ବିଚାରରେ ପନ୍ଥା ସର୍ବଦା ନୀତିପୂର୍ଣ୍ଣ ହେବା ଦରକାର। ପନ୍ଥାର ପବିତ୍ରତା ଉପରେ ଲକ୍ଷ୍ୟର ମୂଲ୍ୟ ନିର୍ଭର କରେ। ବ୍ୟକ୍ତିଗତ ସ୍ତରରେ ହେଉ ବା ସାମାଜିକ ଅଥବା ରାଷ୍ଟ୍ରୀୟ ସ୍ତରରେ ହେଉ ଏକ ନୀତିପୂର୍ଣ୍ଣ ଅହିଂସାତ୍ମକ ପନ୍ଥା ସର୍ବଦା ଅନୁକରଣୀୟ ବୋଲି ଗାନ୍ଧିଜୀ ବିଶ୍ୱାସ କରୁଥିଲେ। ତାଙ୍କ ମତରେ ସାମାଜିକ ପରିବର୍ତ୍ତନ ବା ନିୟନ୍ତ୍ରଣ ପାଇଁ ଅହିଂସାତ୍ମକ ପନ୍ଥା, ଯାହାକୁ ସେ ସତ୍ୟାଗ୍ରହ ବୋଲି ନାମିତ କରିଥିଲେ, ଏକ ମାତ୍ର ନୀତିପୂର୍ଣ୍ଣ ପଦ୍ଧତି। ଗାନ୍ଧିଜୀଙ୍କ ଏହି ବିଚାର ପଶ୍ଚାତରେ ଏକ ବିଶ୍ୱାସ ରହିଥିଲା ଯେ ପ୍ରତ୍ୟେକଟି ସମସ୍ୟା ମୌଳିକତଃ ଏକ ମାନବିକ ସମସ୍ୟା। ମାନବିକ ବିଚାରବୋଧରେ ପରିବର୍ତ୍ତନ ଆସିଲେ ସମସ୍ୟାର ସମାଧାନ ହୋଇପାରିବ। ପ୍ରତ୍ୟେକ ମଣିଷ ଭିତରେ ରହିଥିବା ବିବେକକୁ ଆବେଦନଦ୍ୱାରା ତାଙ୍କ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଅଣାଯାଇପାରିବ। ଗାନ୍ଧିଜୀ ଏହିପରି କେତେକ ଧାରଣାର ଆଧାର ଉପରେ ପନ୍ଥାର ନୈତିକ ମୂଲ୍ୟକୁ ସର୍ବାଧିକ ମହତ୍ତ୍ୱ ଦେଇଥିଲେ।

ପନ୍ଥା ଓ ଲକ୍ଷ୍ୟ ମଧ୍ୟରେ ରହିଥିବା ସମ୍ବନ୍ଧ ପ୍ରସଙ୍ଗକୁ ନୀତିଦର୍ଶନ କ୍ଷେତ୍ରରେ ନାନା ଦିଗନ୍ତରୁ ଆଲୋଚନା କରାଯାଇଛି। ଜୀବନର ବାସ୍ତବ ଅନୁଭୂତିରେ କେଉଁ ପନ୍ଥା କେଉଁ ପରିପ୍ରେକ୍ଷୀରେ ଅଧିକ ଉପଯୋଗୀ ସେ ବିଷୟରେ ଏକ ସାର୍ବଜନୀନ ସିଦ୍ଧାନ୍ତର ଅବତାରଣା କରାଯିବା ହୁଏତ ସମ୍ଭବ ନୁହେଁ। ତେବେ ବ୍ୟକ୍ତି ଜୀବନରେ କେତେକ ଲକ୍ଷ୍ୟ ରହିବା ଆବଶ୍ୟକ। ଆମର ଲକ୍ଷ୍ୟ ଯେତିକି ମହତ୍ ଓ ସାର୍ବଜନୀନ ହେବ ସମ୍ଭବତଃ ଜୀବନର ମୂଲ୍ୟ ସେତେ ଗୁଣାତ୍ମକ ହେବ ବୋଲି ଏକ ଦାର୍ଶନିକ ମତ ରହିଛି। ଏହା ସହିତ ପନ୍ଥାର ଗୁଣାତ୍ମକ ମାନ ଯେତେ ନୀତିପୂର୍ଣ୍ଣ ହେବ ତାହା ସାମାଜିକ ଉତ୍କର୍ଷର ପରିଚୟ ବହନ କରିବ। ତେବେ ମାନବିକ ସମସ୍ୟାର ବ୍ୟାପକତା ଓ ଜଟିଳତା ପରିପ୍ରେକ୍ଷୀରେ ଏହା ଏକ ମୁକ୍ତ ପ୍ରସଙ୍ଗ ମନେହୁଏ।

(ପ୍ରଗତିବାଦୀ, ୦୭.୦୬.୨୦୧୭)

# ବୈଚାରିକ କ୍ରାନ୍ତି

ଏକ ଆଦିମ ସ୍ଥିତିରୁ କେତେ କେତେ ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ସାମାଜିକ ବିକାଶର ଧାରା ଅଗ୍ରଗତି କରିଛି। ଏକ ପାରମ୍ପରିକ ସମାଜରେ ଲୋକମାନେ ଗତାନୁଗତିକ ଧାରାରେ ଜୀବନ ନିର୍ବାହ କରିଥାନ୍ତି। ତେବେ କିଛି ନୂଆ ବିଚାର, ନୂତନ ଜ୍ଞାନକୌଶଳ, ପ୍ରଯୁକ୍ତିର ଉଦ୍ଭାବନ ଇତ୍ୟାଦି କାରଣରୁ ସାମାଜିକ ପରିବର୍ତ୍ତନର ସୂତ୍ରପାତ ହୋଇଥାଏ। ଆଦିମ ସମାଜ, ଗ୍ରାମୀଣ କୃଷିସଭ୍ୟତା, ଶିଳ୍ପବିକାଶ ଜନିତ ସହରୀ ଜୀବନ ଓ ସାମ୍ପ୍ରତିକ ଜୀବନଧାରା ଭିତରେ ବହୁ ପାର୍ଥକ୍ୟ ପରିଲକ୍ଷିତ ହୁଏ। ପ୍ରତ୍ୟେକ ଅବସ୍ଥାରେ କିନ୍ତୁ ମଣିଷ ସାମାଜିକ ଗୋଷ୍ଠୀ ଭିତରେ ଜୀବନ ନିର୍ବାହ କରିଛି। ସାମାଜିକ ଗୋଷ୍ଠୀମାନ ଧୀରେ ଧୀରେ ନାନା ଦିଗରେ ବିସ୍ତାରିତ ହୋଇଛି। ଏହି ବିସ୍ତାର ପ୍ରକ୍ରିୟାରେ ମଣିଷର ବିଭିନ୍ନ ପରିଚୟ ବା ଅସ୍ମିତା ସୃଷ୍ଟି ହୋଇଛି। ଏକ ପରିଚୟ ଗୋଟିଏ ଗୋଷ୍ଠୀ ଭିତରେ କିଛି ସଂହତି ସୃଷ୍ଟିକରିବା ସହ ଅନ୍ୟ ଗୋଷ୍ଠୀ ସହ ବିଭେଦ ସୃଷ୍ଟିକରିଛି। ଭାଷା, ଜାତି, ଧର୍ମ, ଜାତୀୟତା, ବୃତ୍ତି ଇତ୍ୟାଦିକୁ ନେଇ ବିଭିନ୍ନ ଗୋଷ୍ଠୀମାନ ସୃଷ୍ଟି ହୋଇଛି ଓ ନାନା ଆବେଗିକ ଓ ଅନ୍ୟାନ୍ୟ କାରଣରୁ ଗୋଷ୍ଠୀ ଗୋଷ୍ଠୀ ଭିତରେ ବିଦ୍ୱେଷ ଓ ସଂଘର୍ଷ ବି ସୃଷ୍ଟି ହୋଇଛି। ମାନବ ସଭ୍ୟତାର ଇତିହାସ ହେଉଛି ନାନା ସଂଘର୍ଷଭରା ଜୀବନଗାଥାର କାହାଣୀ। ପୁନଶ୍ଚ ପ୍ରତ୍ୟେକ ସମାଜରେ ଓ ପ୍ରତି କାଳଖଣ୍ଡରେ କେତେକ ମଣିଷ ବେସାହାରା ଜୀବନ ବଞ୍ଚିବାକୁ ବାଧ୍ୟ ହୋଇଛନ୍ତି। ନାନା ପ୍ରାକୃତିକ ଦୁର୍ବିପାକ, ରୋଗ, ମାନବକୃତ ଯୁଦ୍ଧ, ହିଂସା ଭିତରେ ଅନେକ ମଣିଷ ଶୋଷିତ, ଅତ୍ୟାଚାରିତ ହୋଇଛନ୍ତି। ନାନା ଭୟ ଓ ଉଦ୍‌ବେଗ ଭିତରେ ଜୀବନ ବଞ୍ଚିବାକୁ ବାଧ୍ୟ ହେବା ପରିପ୍ରେକ୍ଷୀରେ କେତେ କେତେ ପାରଲୌକିକ ବିଶ୍ୱାସ ସୃଷ୍ଟି ହୋଇଛି। ଅଧିକାଂଶ ଧାର୍ମିକ ଭାବନାର ଅଭ୍ୟୁଦୟ ପରେ ଜୀବନର ଅନ୍ତିମ ଲକ୍ଷ୍ୟ, ଜନ୍ମ-ମୃତ୍ୟୁର ରହସ୍ୟ, ଦୁଃଖର କାରଣ ନେଇ କେତେ କେତେ ତାତ୍ତ୍ୱିକ ବିଚାରମାନ ବିଭିନ୍ନ ଜନଗୋଷ୍ଠୀରେ ଉଦ୍‌ଭବ ହୋଇଛି। ପ୍ରତ୍ୟେକ ଆନୁଷ୍ଠାନିକ ଧର୍ମ ଏକ ସାଂସ୍କୃତିକ ଆଲୋଡନ ଭାବେ ଜନଗୋଷ୍ଠୀରେ ନୂତନ ଜାଗରଣ ସୃଷ୍ଟି କରିଛି। କାଳକ୍ରମେ ପ୍ରତ୍ୟେକ ଧର୍ମ ଆନୁଷ୍ଠାନିକ ରୂପ ନେଇ ଏକ ବୃହତ୍ତର ଜନଗୋଷ୍ଠୀ ଭିତରେ କିଛି ସାଂସ୍କୃତିକ ସଂହତି ସୃଷ୍ଟି କରିଛି। ଧାର୍ମିକ ଭାବନାକୁ ଆଧାର କରି କେତେକ ତାତ୍ତ୍ୱିକ ଭାବନା, କର୍ମକାଣ୍ଡ, ନୀତିବୋଧ, ଜୀବନର ଅନ୍ତିମ ଲକ୍ଷ୍ୟର

ଭାବନା ବିକାଶଲାଭ କରିଛି । ଏହି ପ୍ରକ୍ରିୟାରେ ନୀତି, ନୈତିକତା ଓ ସାମାଜିକ ମୂଲ୍ୟବୋଧର ଭାବନା ସୃଷ୍ଟି ହୋଇଛି । ଗୋଟିଏ ସମୟର ସାମାଜିକ ଆଦର୍ଶ ଓ ମୂଲ୍ୟବୋଧ ଧାର୍ମିକ ବିଶ୍ୱାସ, ରାଜନୈତିକ ପରିସ୍ଥିତି, ଅର୍ଥନୈତିକ ବ୍ୟବସ୍ଥାଦ୍ୱାରା ପ୍ରଭାବିତ ହୋଇଛି ।

ବିଜ୍ଞାନର ବିକାଶ ଓ ଶିଳ୍ପ ବିପ୍ଳବ ଆସିବା ପର୍ଯ୍ୟନ୍ତ ସାରା ପୃଥିବୀରେ କୃଷିଭିତ୍ତିକ ଗ୍ରାମୀଣ ସଭ୍ୟତା ରହିଥିଲା । ସେହି ଯୁଗରେ ଜଣେ ମଣିଷ ନିଜର ସକଳ ଶ୍ରମ ଖଟାଇ ନିଜ ଜୀବନର ଆବଶ୍ୟକତା ପୂରଣ କରୁଥିଲା । ହୁଏତ ମୁଷ୍ଟିମେୟ ଲୋକ ବିଳାସବ୍ୟସନରେ ଥିଲେ । ସେତେବେଳେ ବିଳାସର ଅର୍ଥ ଥିଲା ଶ୍ରମବିହୀନ ଉପାର୍ଜନ । ବିଭିନ୍ନ ଭୂଖଣ୍ଡରେ ଶାସକଗୋଷ୍ଠୀ ଓ ପୂଜକଗୋଷ୍ଠୀ ସାମନ୍ତ ବର୍ଗ ଭାବେ ବିବେଚିତ ହେଉଥିଲେ । ସକଳ ନୀତି, ନୈତିକତା ସାମନ୍ତବାଦୀ ସମାଜ ବ୍ୟବସ୍ଥାର ଅନୁକୂଳ ଥିଲା । ଅତୀତରେ ସକଳ ଦୁର୍ଦ୍ଦିନ ଓ ଦୁର୍ଭାଗ୍ୟରୁ ରକ୍ଷାପାଇବା ପାଇଁ ନିଜ ଧର୍ମର ଈଶ୍ୱର ଓ ଦେବତାର ଉପାସନା କରାଯାଉଥିଲା । ଏହି ପ୍ରକ୍ରିୟାରେ ବିଭିନ୍ନ ସମାଜରେ ଏକ ପୂଜକ ବା ପୁରୋହିତ ଗୋଷ୍ଠୀ ସୃଷ୍ଟି ହୋଇଥିଲେ । ସେମାନେ ସାଧାରଣ ମଣିଷ ଓ ଈଶ୍ୱରଙ୍କ ମଧ୍ୟରେ ମଧ୍ୟସ୍ଥି ହେଲେ । ଏହା ସହ ସାରା ପୃଥିବୀରେ ରାଜତନ୍ତ୍ର ରହିଥିଲା । ରାଜାମାନେ ଓ ପୂଜକଗୋଷ୍ଠୀ ପରସ୍ପରର ସ୍ୱାର୍ଥକୁ ନିରାପତ୍ତା ଦେଉଥିଲେ । ରାଜାମାନେ ଈଶ୍ୱରଙ୍କର ପ୍ରତିନିଧି ବୋଲି ବିଶ୍ୱାସକୁ ପୂଜକ ଗୋଷ୍ଠୀ ସମର୍ଥନ କରୁଥିଲେ ଓ ଈଶ୍ୱରଙ୍କ ଆଶୀର୍ବାଦ ଲାଭକରିବା ପାଇଁ ପୂଜକ ଗୋଷ୍ଠୀର ସହାୟତା ଆବଶ୍ୟକ ବୋଲି ବିଶ୍ୱାସକୁ ଶାସକଗୋଷ୍ଠୀ ବି ଗ୍ରହଣ କରୁଥିଲେ । ଶାସକଗୋଷ୍ଠୀ ଓ ପୂଜକଗୋଷ୍ଠୀ ସମାଜର ସାମନ୍ତବର୍ଗ ଭାବେ ପ୍ରଭାବଶାଳୀ ହୋଇ ରହିଥିଲେ । ପୁନଶ୍ଚ ପ୍ରତ୍ୟେକ ଧର୍ମଧାରଣା ଭିତରେ ନାନା ପାରଲୌକିକ ବିଶ୍ୱାସ ରହିଥିଲା ଓ ସେସବୁ ଯେ ଚରମ ସତ୍ୟ ଏହାକୁ ପ୍ରତ୍ୟେକ ଧର୍ମଗୋଷ୍ଠୀ ବିଶ୍ୱାସ କରୁଥିଲେ । ଏହି ପ୍ରକ୍ରିୟାରେ ସ୍ୱର୍ଗ, ନରକ, ମୁକ୍ତି, ମୋକ୍ଷ, ନିର୍ବାଣ, ଜନ୍ମାନ୍ତରବାଦ ଭାବନାମାନ ସୃଷ୍ଟି ହୋଇଥିଲା । ଜୀବନ ଦୁଃଖପୂର୍ଣ୍ଣ, ଦୁଃଖ ହିଁ ଜୀବନ ସହ ଅଙ୍ଗାଙ୍ଗୀ ଭାବେ ଜଡିତ । ଜୀବନ ଦୁଇଦିନର ଖେଳ, ଈଶ୍ୱର ବା ସ୍ୱର୍ଗପ୍ରାପ୍ତି ହିଁ ଆମ ଜୀବନର ଅନ୍ତିମ ଲକ୍ଷ୍ୟ । ଏହି ସବୁ ବିଶ୍ୱାସମାନ ଭିନ୍ନ ଭିନ୍ନ ଭାବରେ ବିଭିନ୍ନ ଧର୍ମମାନଙ୍କରେ ପ୍ରସାରିତ ହୋଇଥିଲା । ସକଳ ନୈତିକତାକୁ ଧାର୍ମିକ ପରିସରରେ ଈଶ୍ୱର-କୈନ୍ଦ୍ରିକ ବୋଲି ବିଚାର କରାଯାଉଥିଲା । ଏପରିକି ସକଳ ପ୍ରାକୃତିକ ଦୁର୍ବିପାକ ବା ରୋଗବାଧକକୁ ଈଶ୍ୱରୀୟ ଦଣ୍ଡ ବୋଲି ବିଶ୍ୱାସ କରାଯାଉଥିଲା । ସୁତରାଂ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିବା ପାଇଁ ବିଭିନ୍ନ ପ୍ରକାରର ପୂଜା, ଆରାଧନାର ପରମ୍ପରା ବିଭିନ୍ନ ଧର୍ମଗୋଷ୍ଠୀରେ ସୃଷ୍ଟି ହେଲା । ସେସବୁ କାଳକ୍ରମେ ସାମାଜିକ ଜୀବନ ପ୍ରବାହର ଅବିଚ୍ଛେଦ୍ୟ ଅଙ୍ଗ ହେବା ସହ ଜନଗୋଷ୍ଠୀର ସାଂସ୍କୃତିକ ବିଭବ ହେବାକୁ ଲାଗିଲା ।

ଆଧୁନିକ ବିଜ୍ଞାନର ବିକାଶ ପରଠାରୁ ସାରା ପୃଥିବୀର ସାମାଜିକ ପରିବେଶରେ ନାନା ପରିବର୍ତ୍ତନର ସୂତ୍ରପାତ ହେଲା। ସପ୍ତଦଶ ଶତାବ୍ଦୀର ଆରମ୍ଭରୁ ଆଧୁନିକ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା। ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ସକଳ ବସ୍ତୁନିଷ୍ଠ ଜ୍ଞାନର ମୂଳସୂତ୍ର ହେବାକୁ ଲାଗିଲା। ବିଜ୍ଞାନ ଏକ ସାର୍ବଜନୀନ ପ୍ରଣାଳୀ ଆଧାରରେ ପ୍ରାକୃତିକ ଘଟଣା ଓ ସାମାଜିକ ବ୍ୟବସ୍ଥାର ବିଶ୍ଳେଷଣ କରିବା ପକ୍ଷରେ ଜ୍ଞାନର ଦିଗନ୍ତ ନାନା ଭାବରେ ବିସ୍ତାରିତ ହେବାକୁ ଲାଗିଲା। ପରିଣାମ ସ୍ୱରୂପ ପ୍ରାକୃତିକ ବିଜ୍ଞାନ କେତେ ଦିଗନ୍ତକୁ ସ୍ପର୍ଶ କଲା ଓ ପ୍ରକୃତିର ବହୁ ରହସ୍ୟ ଉନ୍ମୋଚିତ ହେବାକୁ ଲାଗିଲା। ଜ୍ଞାନର ଦିଗନ୍ତ ଯେତେ ବିସ୍ତାରିତ ହେବାକୁ ଲାଗିଲା ଅତୀତର ବହୁ ବିଶ୍ୱାସ ଓ ଅପବିଶ୍ୱାସର ଅପସାରଣ ସମ୍ଭବ ହେଲା। ବିଜ୍ଞାନର ବିକାଶର ଦୁଇ ଶତାବ୍ଦୀ ପରେ ପ୍ରଯୁକ୍ତିର ବିକାଶ ଧୀରେ ଧୀରେ ସୃଷ୍ଟି ହୋଇ ଏହି ଶହେ ବର୍ଷ ଭିତରେ ତ୍ୱରାନ୍ୱିତ ହୋଇଚାଲିଲା।

ପ୍ରଯୁକ୍ତିର ବିକାଶପର୍ବରୁ ସଭ୍ୟତାରେ ନୂଆ ନୂଆ ସଙ୍କଟ ମୁଣ୍ଡଟେକିଲା। ପ୍ରଯୁକ୍ତିର ବିକାଶରୁ ୟୁରୋପରେ ଏକ ଶିଳ୍ପବିପ୍ଳବର ଯୁଗ ଆସିଲା। ଶିଳ୍ପବିପ୍ଳବରୁ ସହରୀ ସଭ୍ୟତାର ବିକାଶ ହେଲା ଓ କୃଷିଭିତ୍ତିକ ଗ୍ରାମୀଣ ଜୀବନ ପରିବର୍ତ୍ତିତ ଓ ରୂପାନ୍ତରିତ ହୋଇଚାଲିଲା। ଏହାର ପରିଣାମରୁ ପୁଞ୍ଜିବାଦର ଯୁଗ ଆସିଲା ଓ ସମାଜ ଅର୍ଥନୈତିକ ମାନଦଣ୍ଡରୁ ମୁଖ୍ୟତଃ ଦୁଇଶ୍ରେଣୀରେ ବିଭାଜିତ ହୋଇଗଲା। ମୁଷ୍ଟିମେୟ ଲୋକ ବହୁ ସମ୍ପତ୍ତିର ଅଧିକାରୀ ହେଲେ ଓ ସମାଜର ଏକ ବଡ ଗୋଷ୍ଠୀ ନିଃସ୍ୱ ଓ ସର୍ବହରା ଶ୍ରେଣୀ ପାଲଟିଗଲେ। ସମାଜର ମେହନତୀ ଓ ଶ୍ରମିକ ଶ୍ରେଣୀ ପରିସ୍ଥିତି କ୍ରମେ ସର୍ବହରା ପାଲଟି ଗଲେ ଓ ଏକ କ୍ଷୁଦ୍ରଗୋଷ୍ଠୀ ହାତରେ ସକଳ ପୁଞ୍ଜି ଠୁଳ ହୋଇ ରହିଲା। ପୁନଶ୍ଚ ଶିଳ୍ପବିପ୍ଳବର ପରିଣାମରୁ ସାମ୍ରାଜ୍ୟବାଦର ଯୁଗ ଆରମ୍ଭ ହେଲା। ଶିଳ୍ପୋନ୍ନତ ରାଷ୍ଟ୍ରମାନେ ଅନ୍ୟ ଭୂଖଣ୍ଡକୁ ଯାଇ ସେଠିକାର ଶାସନ ବ୍ୟବସ୍ଥାକୁ କଳ କୌଶଳ ପ୍ରୟୋଗ କରି କରାୟତ୍ତ କରିବାକୁ ଲାଗିଲେ। ଏପରିକି ଆଫ୍ରିକାରେ ସାମ୍ରାଜ୍ୟବାଦର ବିସ୍ତାରରୁ ଲକ୍ଷ ଲକ୍ଷ ନିଗ୍ରୋମାନଙ୍କୁ କ୍ରୀତଦାସ କରି ଆମେରିକାକୁ ନେଲେ। ଆମେରିକାର ମୂଳ ଅଧିବାସୀମାନେ ଧ୍ୱଂସର ସମ୍ମୁଖୀନ ହେଲେ ଓ ୟୁରୋପର ବିଭିନ୍ନ ଭୂଖଣ୍ଡରୁ ଲୋକମାନେ ଆମେରିକା ଯାଇ ସେଠାରେ ବସତି ସ୍ଥାପନ କଲେ। ପୃଥିବୀରେ ସାମ୍ରାଜ୍ୟବାଦର ବିସ୍ତାର ଯୁଗରେ ଯେଉଁ ଅନ୍ୟାୟ, ଅତ୍ୟାଚାର ଓ ହିଂସାର ପରିବେଶ ସୃଷ୍ଟି ହୋଇଥିଲା ତାହାର କାହାଣୀ ଥିଲା ଅତ୍ୟନ୍ତ ମର୍ମାନ୍ତିକ ଓ ବେଦନାଦାୟକ।

ତେବେ ବିଜ୍ଞାନର ଯୁଗ ଆସିବା ସହିତ ଗଣତନ୍ତ୍ରର ବିଚାର ରାଜନୈତିକ ସ୍ତରରେ ଏକ କ୍ରାନ୍ତିକାରୀ ଭାବନା ଥିଲା। ରାଜତନ୍ତ୍ର, ସାମନ୍ତବାଦ ଓ ଏକଛତ୍ରବାଦ ବିରୁଦ୍ଧରେ ଗଣତନ୍ତ୍ର ଥିଲା ଏକ ସାଂସ୍କୃତିକ ବିପ୍ଳବ। ସେହିପରି ଅର୍ଥନୈତିକ ସ୍ତରରେ ସମାଜବାଦ ଥିଲା ଅନ୍ୟ ଏକ କ୍ରାନ୍ତିକାରୀ ମୂଲ୍ୟବୋଧ। ଏକ ଶୋଷଣରହିତ, ଶ୍ରେଣୀହୀନ ଓ ସମତାଭିତ୍ତିକ ମାନବ ସମାଜର ଭାବନା କ୍ଷେତ୍ରରେ ସମାଜବାଦ ଥିଲା ଏକ ଯୁଗାନ୍ତକାରୀ ବିଚାର। ଗଣତନ୍ତ୍ର ଓ ସମାଜବାଦ ବିଚାର ପୃଷ୍ଠଭୂମିରେ ଜନକଲ୍ୟାଣକାରୀ ରାଷ୍ଟ୍ରର ଭାବନା ସମଗ୍ର ମାନବ ସମାଜରେ ପରିବ୍ୟାପ୍ତ ହୋଇଥିଲା। ପୁନଶ୍ଚ ଧାର୍ମିକ ମୌଳବାଦ, ସାମ୍ପ୍ରଦାୟିକତାବାଦ ଓ ସାଂସ୍କୃତିକ ବିଚ୍ଛିନ୍ନତାବାଦ ବିରୋଧରେ ଧର୍ମନିରପେକ୍ଷ ମାନବବାଦ ଅନ୍ୟ ଏକ କ୍ରାନ୍ତିକାରୀ ଆଲୋଡନ ଥିଲା। ସଭ୍ୟତାର ଆରମ୍ଭ ପୂର୍ବରୁ ମାନବ ସମାଜରେ ରହି ଆସିଥିବା ହିଂସା, ଅସହିଷ୍ଣୁତା, କେତେ କେତେ ଭେଦଭାବ, ବୈଷମ୍ୟ ଓ ଶୋଷଣ ବିରୁଦ୍ଧରେ ଯେଉଁ ସବୁ ବୌଦ୍ଧିକ ଆଲୋଡନମାନ ସୃଷ୍ଟି ହୋଇଛି ତାହା ଗୋଟିଏ ବଡ ସାଂସ୍କୃତିକ ଉତ୍ତରଣର ଚିତ୍ର ଦେଇଥାଏ। ଆଧୁନିକ ପ୍ରଯୁକ୍ତି ଓ ବିଜ୍ଞାନ ମାନବ ସମାଜକୁ ଏକତ୍ର ଡୋରିରେ ବାନ୍ଧିବାର ପରିବେଶ ସୃଷ୍ଟି କରିପାରିଛି। ସମଗ୍ର ବିଶ୍ୱର ଜନଗଣ ଶାନ୍ତିପୂର୍ଣ୍ଣ ଭାବରେ ଏକାଠି ମିଶି ରହିବାର ମନୋଭାବ ହେଉଛି ଏ ଯୁଗର ଆଦର୍ଶ ଓ ଏହା ହିଁ ସଭ୍ୟ ଦୃଷ୍ଟିଭଙ୍ଗୀ। ଏହାର ବିପରୀତ ଯେ ବର୍ବରତା ଏହା ଆମ ସମୟର ବଡ ଉପଲବ୍ଧି। ଏବେ ବି ଆମ ସଂସାରରେ ନାନା ବର୍ବରତା ରହିଥିଲେ ମଧ୍ୟ ବୈଚାରିକ ସ୍ତରରେ ମାନବବାଦର ଯେଉଁ ଆଲୋଡନଟି ଚିନ୍ତାଧାରାରେ ଦୃଢ ହେବାରେ ଲାଗିଛି, ତାହାର ପରିଣାମ ମାନବ ସମାଜ ପାଇଁ ଅନେକ ଆଶା ଯେ ସଞ୍ଚାର କରୁଛି, ଏହା ନିଃସନ୍ଦେହ ମନେହୁଏ।

(ପ୍ରଗତିବାଦୀ, ୨୦.୧୨.୨୦୧୭)

# ମାନବୀୟ ଚେତନାରେ "ଈଶ୍ୱର"

ଆଧୁନିକ ବିଜ୍ଞାନ ସିଦ୍ଧାନ୍ତ ଅନୁଯାୟୀ କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ପ୍ରକ୍ରିୟାରେ ଜୀବଜଗତର ଉତ୍ପତ୍ତି ହୋଇଛି । ସେହି ପ୍ରକ୍ରିୟାରେ ପ୍ରକୃତିରେ ମନୁଷ୍ୟ ସୃଷ୍ଟି ହୋଇଛି । ମଣିଷ ପାଖରେ ମସ୍ତିଷ୍କର ବିକାଶ ପରଠାରୁ ମଣିଷ ଚିନ୍ତା କରିବାର ସାମର୍ଥ୍ୟ ଲାଭକରିଛି । ଭାଷା କହିବାର ଯୋଗ୍ୟତା ଓ ଚିନ୍ତା କରିବାର ଦକ୍ଷତା ଯୋଗୁ ସଭ୍ୟତାର କ୍ରମବିକାଶ ସମ୍ଭବ ହୋଇଛି । ଆଦିମ ମଣିଷଠାରୁ ଆଜିର ସଭ୍ୟ ମଣିଷ ଭିତରେ ବିରାଟ ସମୟ ବ୍ୟବଧାନ ରହିଛି । ତେବେ ଆଦିମ ମଣିଷର ସଂସାରଟି ଅତ୍ୟନ୍ତ ସଙ୍କୁଚିତ ହୋଇ ରହିଥିଲା । ସେ ବଣ ଜଙ୍ଗଲରେ ବୁଲି ଖାଦ୍ୟ ସଂଗ୍ରହ କରୁଥିଲା । ନିଜକୁ ହିଂସ୍ର ପ୍ରାଣୀଙ୍କ ଆକ୍ରମଣରୁ ରକ୍ଷା କରିବା ପାଇଁ ଦଳବଦ୍ଧ ଜୀବନଯାପନ କରୁଥିଲା । ଏହି ଧାରାରେ ଗୋଟିଏ ଗୋଟିଏ ଉଦ୍ଭାବନ ବା ଆବିଷ୍କାର ତା ଜୀବନଧାରାରେ ଗୁଣାତ୍ମକ ପରିବର୍ତ୍ତନର ସୂତ୍ରପାତ କରାଇଲା । ହୁଏତ କେତେ ଅତୀତରେ ନିଆଁର ବ୍ୟବହାର ମଣିଷର ଜୀବନଯାତ୍ରାକୁ କିଛିଟା ସୁରକ୍ଷା ଦେଇଥିବ । ବିଭିନ୍ନ ପ୍ରାଚୀନ ସଭ୍ୟତାରେ ଅଗ୍ନିକୁ ନେଇ କେତେ କେତେ ବର୍ଣ୍ଣନା ଓ ମିଥ୍‌ମାନ ଦେଖିବାକୁ ମିଳେ । ଋଗବେଦର ପ୍ରଥମ ମଣ୍ଡଳର ପ୍ରଥମ ନ'ଟି ମନ୍ତ୍ରରେ ଅଗ୍ନିର ବର୍ଣ୍ଣନାର ସୁନ୍ଦର ଚିତ୍ର ରହିଛି । ସେହି ମନ୍ତ୍ରମାନଙ୍କରେ କୁହାଯାଇଛି ଯେ, ଆମେ ଅଗ୍ନିଦେବତାଙ୍କୁ ସ୍ତୁତି କରୁଛୁ । ଅଗ୍ନିଦେବ ସମସ୍ତଙ୍କୁ ରକ୍ଷା କରିବାରେ ସମର୍ଥ ଅଟନ୍ତି । ଆମେ ଅଗ୍ନିଦେବଙ୍କର ପ୍ରକୃତ ଉପାସକ । ଆମର ବୁଦ୍ଧିଦ୍ୱାରା "ଆମେ ଅଗ୍ନିଦେବଙ୍କୁ ସ୍ତୁତି କରୁଛୁ ଓ ଦିନ ରାତି ତାଙ୍କର ଗୁଣଗାନ କରୁଛୁ । ତାଙ୍କର ସାନ୍ନିଧ ଆମମାନଙ୍କୁ ପ୍ରାପ୍ତ ହେଉ । ପୁତ୍ରକୁ ଯେପରି ପିତା ସହଜରେ ସାନ୍ନିଧ ଦେଇଥାଏ ସେହିପରି ଅଗ୍ନିଦେବ ଆମକୁ ସୁଖପୂର୍ବକ ପ୍ରାପ୍ତ ହୁଅନ୍ତୁ । ଆମମାନଙ୍କର ମଙ୍ଗଳ ନିମିତ୍ତ ଅଗ୍ନିଦେବ ଆମମାନଙ୍କର ନିକଟରେ ରୁହନ୍ତୁ ।" ପ୍ରାଚୀନ ସମୟରେ ଅଗ୍ନିକୁ ଦେବତା ମନେକରି ତାଙ୍କୁ ଏହିପରି ସ୍ତୁତି କରାଯାଇଛି । ଗ୍ରୀକ୍ ସଭ୍ୟତାରେ ଏକ ମିଥ୍ ରହିଛି ଯେ ପୃଥିବୀରେ ଅଗ୍ନି ନଥିଲା, ଏହା ସ୍ୱର୍ଗରେ ରହିଥିଲା । ସ୍ୱର୍ଗରାଜ୍ୟରୁ ପ୍ରମିଥିଅସ୍ ଅଗ୍ନିକୁ ଚୋରୀ କରି ପୃଥିବୀକୁ ପ୍ରଥମେ ଆଣିଥିଲେ । ପୃଥିବୀକୁ ଅଗ୍ନିକୁ ଲୁଚାଇକରି ଆଣିଥିବା ଯୋଗୁ ସ୍ୱର୍ଗରାଜ୍ୟର ଦେବତା ଇନ୍ଦ୍ର ପ୍ରମିଥିଅସ୍‌ଙ୍କୁ ଅଲିଂପସ ପାହାଡ ଉପରେ ବାନ୍ଧି ତାଙ୍କୁ ଅନନ୍ତକାଳ ପାଇଁ ଯନ୍ତ୍ରଣା ଜର୍ଜରିତ କରିଛନ୍ତି ।

ଅଗ୍ନିର ବ୍ୟବହାରର ବହୁ ଶତାବ୍ଦୀ ପରେ ମଣିଷ କୃଷିର ଜ୍ଞାନହାସଲ କରିବା ଥିଲା ସଭ୍ୟତାର ଇତିହାସରେ ଅନ୍ୟ ଏକ ମାଇଲଖୁଣ୍ଟ। ଲିପିର ଉଦ୍‌ଭାବନ, ଧାତୁର ବ୍ୟବହାର ଓ କୃଷିର ସାଧାରଣ ଜ୍ଞାନଠାରୁ ମଣିଷର ଯାଯାବର ଜୀବନର ପରିସମାପ୍ତି ଘଟି ସ୍ଥାୟୀ ଗ୍ରାମୀଣ ଜୀବନ ନଦୀକୂଳମାନଙ୍କରେ ପ୍ରାୟ ଛ' ସାତ ହଜାର ବର୍ଷ ତଳେ ଆରମ୍ଭ ହୋଇଥିଲା ବୋଲି ନୃବିଜ୍ଞାନୀମାନେ ମତପୋଷଣ କରିଥାନ୍ତି। ସେହି ସମୟରୁ ଧାରାବାହିକ ଭାବେ ସଭ୍ୟତାର କ୍ରମବିକାଶ ପ୍ରକ୍ରିୟା ଆରମ୍ଭ ହୋଇଥିବା ଅନୁମାନ କରାଯାଏ।

ସଭ୍ୟତାର ଆରମ୍ଭ ପର୍ବରେ ଜୀବନ ଅତ୍ୟନ୍ତ ବିପଦସଂକୁଳ ରହିଥିଲା। ମଣିଷର ଜ୍ଞାନ ଅତ୍ୟନ୍ତ ସୀମିତ ରହିଥିଲା ଓ ଏକ ଭୟର ବାତାବରଣ ଭିତରେ ଜୀବନ ଅତ୍ୟନ୍ତ ବିପଦସଂକୁଳ ଥିଲା। ଅଜ୍ଞତା, ଭୟ ଓ ଅସହାୟବୋଧରୁ ମଣିଷ ମନକୁ କିଛି ଅତିପ୍ରାକୃତିକ ଶକ୍ତିର ପରିକଳ୍ପନା ଆସିଥିଲା। ଦିନ-ରାତି ହେବା, ପବନ ବହିବା, ବର୍ଷା ଆସିବା ପରି ନାନା ପ୍ରାକୃତିକ ଘଟଣାର କାରଣ ମଣିଷକୁ ସେହି ସମୟରେ ବେଶ୍ ଚମତ୍କାର ମନେ ହୋଇଥିବ। ସେହି ସମୟର ବିଶ୍ୱାସ ଅନୁଯାୟୀ ପ୍ରତ୍ୟେକ ପ୍ରାକୃତିକ ବସ୍ତୁ ଭିତରେ ଯେ କିଛି ଜୀବସତ୍ତା ରହିଛି ଏହା ସେ ସମୟରେ କଳ୍ପନା ଥିଲା। ପାହାଡ, ପର୍ବତ, ନଦୀ, ଝରଣା, ସୂର୍ଯ୍ୟ, ଚନ୍ଦ୍ର, ଆକାଶ ସବୁ କିଛି ଭିତରେ ଯେ ଆତ୍ମସତ୍ତା ରହିଛି ଏହା ମଣିଷ କଳ୍ପନା କରିଥିଲା। ପ୍ରତ୍ୟେକ ପ୍ରାକୃତିକ ପଦାର୍ଥ ଓ ଦୃଶ୍ୟମାନ ବସ୍ତୁ ଭିତରେ ଯେ ଆତ୍ମା ରହିଛି ଏହା ଥିଲା ସେହି ସମୟର ବିଶ୍ୱାସ। ଏହି ବିଶ୍ୱାସକୁ ଦାର୍ଶନିକ ପରିଭାଷାରେ ଜଡ-ପ୍ରାଣବାଦ ବା ଆନିମିଜିମ୍ କୁହାଯାଏ। ଏହାପରେ ଚିନ୍ତାଚେତନାର ବିକାଶଧାରାରେ ଏକୈକାଧିଦେବବାଦ ବା ହିନୋଥେଇଜିମ୍ ଭାବନା ସୃଷ୍ଟି ହେଲା। ଏହି ବିଶ୍ୱାସାନୁଯାୟୀ ଏକ ଏକ ଦେବତା ବା ଆଦିଦେବଙ୍କଠାରୁ ଗୋଟିଏ ଗୋଟିଏ ଗୋଷ୍ଠୀର ଉଦ୍‌ଭବ ହୋଇଛି। ପ୍ରତ୍ୟେକ ଜନଗୋଷ୍ଠୀର ସ୍ୱତନ୍ତ୍ର ଇଷ୍ଟଦେବ ରହିଛନ୍ତି। ଜଣେ ବ୍ୟକ୍ତି କେବଳ ନିଜଗୋଷ୍ଠୀର ଦେବତାଙ୍କୁ ପ୍ରାର୍ଥନା କରିବା ଆବଶ୍ୟକ। ଯେତେ ଜନଗୋଷ୍ଠୀ, ସେତେ ଦେବ ରହିଛନ୍ତି। ପ୍ରତ୍ୟେକ ଗୋଷ୍ଠୀ କେବଳ ନିଜ ଇଷ୍ଟଦେବଙ୍କୁ ପ୍ରାର୍ଥନା କଲେ ସେ କେବଳ ସୁରକ୍ଷା ଦେବେ, ଅନ୍ୟ ଦେବ ଦେବେ ନାହିଁ। ଅର୍ଥାତ୍ ବହୁ ଇଷ୍ଟଦେବଙ୍କ ଭିତରୁ ସମସ୍ତେ କେବଳ ନିଜ ନିଜ ଗୋଷ୍ଠୀର ଦେବତାଙ୍କୁ ଆରାଧନା କରିବା ଆବଶ୍ୟକ। ଏହାପରେ ବହୁଦେବବାଦ ବା ପଲିଥେଇଜିମ୍‌ର ଭାବନା ସୃଷ୍ଟି ହେଲା। ଏହି ବିଶ୍ୱାସ ଅନୁଯାୟୀ ଜୀବନର ବା ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର ଏକ ନିର୍ଦ୍ଦିଷ୍ଟ ଦେବତା ବା ଦେବୀଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଛି। ଜୀବନର ଯେତେ ଯେତେ କ୍ଷେତ୍ର ରହିଛି ପ୍ରତ୍ୟେକ ବିଭାଗକୁ ପୃଥକ ଦେବତାମାନେ ନିୟନ୍ତ୍ରଣ କରୁଛନ୍ତି।

କିଏ ଜ୍ଞାନର ଦେବତା, କିଏ ସମ୍ପତ୍ତିର ଦେବତା, କିଏ ନିର୍ମାଣକଳାର ଦେବତା, କିଏ ସୁଖମୟ ବୈବାହିକ ଜୀବନର ଦେବତା ଓ କିଏ ମୃତ୍ୟୁ ବା ଜନ୍ମର ଦେବତା। ଜ୍ଞାନ ପାଇଁ ଏକ ନିର୍ଦ୍ଦିଷ୍ଟ ଦେବତାଙ୍କୁ ପ୍ରାର୍ଥନା କରାଯିବ, ସମ୍ପତ୍ତି ପାଇଁ ଏକ ଭିନ୍ନ ଦେବତାଙ୍କୁ ଆବାହନ କରାଯିବ, ବିପଦରୁ ଉଦ୍ଧାର ପାଇବା ପାଇଁ ଅନ୍ୟ ଏକ ଦେବତାଙ୍କୁ ଆରାଧନା କରିବାକୁ ହେବ ଇତ୍ୟାଦି ଇତ୍ୟାଦି। ଏହିପରି ବିଭିନ୍ନ ସଭ୍ୟତାରେ ବହୁଇଶ୍ୱରବାଦର ଭାବନା ଗୋଟିଏ ସମୟରେ ପ୍ରାଧାନ୍ୟ ବିସ୍ତାର କରିଥିଲା। ପୁରୁଷକୈନ୍ଦ୍ରିକ ସମାଜରେ ଦେବତାମାନଙ୍କୁ ପୁରୁଷ ଭାବରେ ପରିକଳ୍ପନା କରାଯାଇଥିଲା। ନାରୀକୈନ୍ଦ୍ରିକ ସମାଜରେ କେତେ କେତେ ଦେବୀମାନଙ୍କର ଭାବନା ସୃଷ୍ଟି ହୋଇଥିଲା। ବହୁ ଦେବଦେବୀର ଭାବନା ପ୍ରତ୍ୟେକ ପ୍ରାଚୀନ ସଭ୍ୟତାମାନଙ୍କରେ ରହିଥିବା ଏକ ଐତିହାସିକ ସତ୍ୟ ବୋଲି ନାନା ନୃତାତ୍ତ୍ୱିକ ଓ ପ୍ରତ୍ନତାତ୍ତ୍ୱିକ ଅନୁଶୀଳନରୁ ଜଣାଯାଏ।

ଖ୍ରୀ.ପୂ. ଆଠଶହ ବେଳକୁ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସଭ୍ୟତାମାନ ଦୃଢ ଭିତ୍ତି ନେଇ ସାରିଥିଲା। ଧୀରେ ଧୀରେ ବିଭିନ୍ନ ସଭ୍ୟତାରେ କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ହୋଇ ସାଂସ୍କୃତିକ ଜାଗରଣ ସୃଷ୍ଟି ହୋଇଥିଲା। ଭାରତ ଭୂଖଣ୍ଡରେ ଉପନିଷଦ୍, ବ୍ରହ୍ମସୂତ୍ର ପରି ଗ୍ରନ୍ଥମାନ ଲେଖା ଯାଇ ବୈଦିକ ଧର୍ମଧାରାର ଭିତ୍ତି ପଡିଥିଲା। ପର୍ସିଆରେ ଜୋରାଷ୍ଟରଙ୍କର ଆବିର୍ଭାବ ଘଟି ପାର୍ଶୀଧର୍ମର ମୂଳଭିତ୍ତି ପଡିଥିଲା। ଅନ୍ୟ ଏକ ଭୂଖଣ୍ଡରେ ମୋଜେସ୍‌ଙ୍କର ବିଚାରଧାରାକୁ କେନ୍ଦ୍ର କରି ଇହୁଦୀ ଧର୍ମ ରୂପରେଖ ନେଇଥିଲା। ଏହି ସମୟରେ ଚୀନରେ କନଫୁସିଅସଙ୍କ ଆବିର୍ଭାବକୁ ଆଧାରକରି ଏକ ନୂତନ ସାଂସ୍କୃତିକ ଆଲୋଡନ ସୃଷ୍ଟି ହୋଇଥିଲା। ସେହି ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଭାରତରେ ଗୌତମ ବୁଦ୍ଧ ଓ ମହାବୀରଙ୍କ ବିଚାରଧାରା ମହତ୍ତର ଜୀବନର ବାର୍ତ୍ତା ଭିନ୍ନ ଭିନ୍ନ ଭାବରେ ବ୍ୟକ୍ତ କରିଥିଲେ। ଖ୍ରୀଷ୍ଟାବ୍ଦ ଆରମ୍ଭ ବେଳକୁ ଯୀଶୁଖ୍ରୀଷ୍ଟଙ୍କ ବାଣୀ ଓ ବିଚାରକୁ କେନ୍ଦ୍ର କରି ଖ୍ରୀଷ୍ଟଧର୍ମ ଏକ ବଡ ସାଂସ୍କୃତିକ ଆଲୋଡନ ଥିଲା। ଷଷ୍ଠ ଶତାବ୍ଦୀ ବେଳକୁ ଆରବ ଭୂଖଣ୍ଡରେ ମହମ୍ମଦଙ୍କର ଆବିର୍ଭାବ ପରେ ଇସଲାମ ଧର୍ମ ଅନ୍ୟ ଏକ ବଡ ସାଂସ୍କୃତିକ ଜାଗରଣ ଥିଲା। ବୈଦିକ ଧର୍ମ, ପାର୍ଶୀଧର୍ମ, ଇହୁଦୀଧର୍ମ, ଖ୍ରୀଷ୍ଟଧର୍ମ, ଇସଲାମ ଧର୍ମମାନ ଏକେଶ୍ୱରବାଦର ବାର୍ତ୍ତା ପ୍ରଚାର କରିଥିଲେ। ବହୁ ଦେବଦେବୀ ବା ବହୁଇଶ୍ୱରବାଦ ପରିବର୍ତ୍ତେ ଏକେଶ୍ୱରବାଦର ପରିକଳ୍ପନା ଚିନ୍ତାରାଜ୍ୟରେ ଏକ କ୍ରାନ୍ତିକାରୀ ଆଲୋଡନ ଥିଲା। ସାଂପ୍ରତିକ ପରିଭାଷାରେ ଯାହାକୁ ଧର୍ମ କୁହାଯାଉଛି ଯେପରି ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ, ଇହୁଦୀଧର୍ମ, ଖ୍ରୀଷ୍ଟଧର୍ମ ଇତ୍ୟାଦି ସେସବୁ ବହୁ ଅତୀତରେ ବିଭିନ୍ନ ଭୂଖଣ୍ଡର ଗୋଟିଏ ଗୋଟିଏ ବଡ ବୌଦ୍ଧିକ ଓ

ସାଂସ୍କୃତିକ ଜାଗରଣ ଥିଲା । ବହୁଦେବବାଦରୁ ଏକେଶ୍ୱରବାଦର ପରିକଳ୍ପନା ଥିଲା ଏକ ବୌଦ୍ଧିକ ଉତ୍ତରଣ । ସେହିପରି ନୀତିପୂର୍ଣ୍ଣ ଜୀବନ, ଜୀବନର ଅନ୍ତିମ ଲକ୍ଷ୍ୟ, ସେହି ଲକ୍ଷ୍ୟ ପ୍ରାପ୍ତି ପାଇଁ ସାଧନ ଓ ପନ୍ଥାର ବାର୍ତ୍ତାମାନ ଏହି କ୍ରାନ୍ତିକାରୀ ଚିନ୍ତାନାୟକମାନଙ୍କ ବିଚାରଦେଇ ପ୍ରକାଶ ପାଇଥିଲା । ଯେଉଁ ସମୟରେ ଚିନ୍ତାଚେତନା, ବିଜ୍ଞାନ ଓ ଦାର୍ଶନିକ ବିଶ୍ଳେଷଣର ପରିବେଶ ଆସିନଥିଲା ସେହି ଯୁଗରେ ଏହି ସବୁ ବିଶ୍ୱାସ ଓ ଆଧ୍ୟାତ୍ମିକ ପନ୍ଥା ଅତ୍ୟନ୍ତ ବୈପ୍ଳବିକ ବିଚାର ଥିଲା । ବସ୍ତୁତଃ ଇହୁଦୀଧର୍ମ, ପାର୍ଶୀଧର୍ମ, ଖ୍ରୀଷ୍ଟଧର୍ମ, ଇସଲାମଧର୍ମମାନ ଏକେଶ୍ୱରବାଦର ବିଚାର ମଧ୍ୟ ଦେଇ କେତେକ ସଭ୍ୟତାରେ ବୌଦ୍ଧିକ ଜାଗରଣ ସୃଷ୍ଟି କରିଥିଲେ । ତେବେ କନଫୁସିଅସ, ମହାବୀର ଓ ଗୌତମ ବୁଦ୍ଧ ନୀତିପୂର୍ଣ୍ଣ ଜୀବନ, ପବିତ୍ରତା ଓ ଅହିଂସା ଉପରେ ଗୁରୁତ୍ୱ ଦେଇଥିଲେ ଓ କୌଣସି ପ୍ରକାରର ଈଶ୍ୱରୀୟ ବିଶ୍ୱାସ ବା ଉପାସନା ନେଇ ମତବ୍ୟକ୍ତ କରିନଥିଲେ । ଏହି ଦୃଷ୍ଟିରୁ ଦେଖିଲେ ଏହି ତିନୋଟି ଧର୍ମ ଈଶ୍ୱରବାଦୀ ଧର୍ମ ନଥିଲେ । ତେବେ ଯେଉଁ ଧର୍ମମାନେ ଈଶ୍ୱରବାଦୀ ଧର୍ମ, ସେମାନେ ଏକେଶ୍ୱରବାଦର ଭାବନା ଦେଇଥିଲେ । ଈଶ୍ୱର ଏକ ଓ ତାଙ୍କର ବ୍ୟକ୍ତିସତ୍ତା ରହିଛି । ଈଶ୍ୱରଙ୍କୁ ଜଗତର ସ୍ରଷ୍ଟା ଭାବରେ କଳ୍ପନା କରାଯାଇଥିଲା । ଈଶ୍ୱର ଏ ବିଶ୍ୱକୁ ସୃଷ୍ଟି କରିବା ସହ ସମଗ୍ର ଜୀବଜଗତ ଓ ମନୁଷ୍ୟକୁ ତାଙ୍କରି ସ୍ୱରୂପରେ ସୃଷ୍ଟି କରିଛନ୍ତି । ସେହି ଈଶ୍ୱର ଜଗତର ସ୍ରଷ୍ଟା, ପାଳନ କର୍ତ୍ତା ଓ ସଂହର୍ତ୍ତା । ଈଶ୍ୱର ସର୍ବଜ୍ଞ, ସ୍ୱସୃଷ୍ଟ, ସବୁର ଆଦିକାରଣ, ସର୍ବଶକ୍ତିମାନ, ଦୟାଳୁ ଓ ପବିତ୍ର । ବସ୍ତୁତଃ ଈଶ୍ୱରବାଦୀ ଧର୍ମମାନେ ମାନବଦ୍ୱାରୋପ ଈଶ୍ୱରରେ ବିଶ୍ୱାସ କଲେ । ଜଡଦେବବାଦ, ଏକୈକାଧିଦେବବାଦ, ବହୁଦେବବାଦ ଓ ଶେଷରେ ଏକେଶ୍ୱରବାଦ ବିଚାରମାନ ସଭ୍ୟତାର ବିଭିନ୍ନ ସୋପାନରେ ବିକଶିତ ହୋଇଥିବା ଦେଖାଯାଏ । ଦୃଷ୍ଟିର ଅନ୍ତରାଳରେ ଯେ କିଛି ଦୈବୀସତ୍ତା ରହିଛି ଏହି ଆଦିମ ବିଶ୍ୱାସ ନାନା ପରିବର୍ତ୍ତନ ମଧ୍ୟ ଦେଇ ଆଜିର ଯୁଗକୁ ପ୍ରସାରିତ ହୋଇରହିଛି । ବୈଚାରିକ ପରିବର୍ତ୍ତନ କ୍ଷେତ୍ରରେ ଯେଉଁମାନେ ନୂତନ ଭାବନାର ସୂତ୍ରପାତ କରିଛନ୍ତି ସେମାନେ ନିଜ ଯୁଗର ଯେ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ ଏହା ମନେହୁଏ ।

(ପ୍ରଗତିବାଦୀ, ୧୦.୦୧.୨୦୧୮)

# ଦାର୍ଶନିକ ବିଚାରରେ ଈଶ୍ୱର

**ଗୋଟିଏ** ଭୂଖଣ୍ଡର ସଭ୍ୟତା, ସଂସ୍କୃତି, ସାହିତ୍ୟ, କଳା, ସଙ୍ଗୀତ ଇତ୍ୟାଦିକୁ ସେହି ଭୂଖଣ୍ଡର ଧର୍ମଭାବନା ଗଭୀର ଭାବେ ପ୍ରଭାବିତ କରିବା ଏକ ଐତିହାସିକ ଉପଲବ୍ଧି । ପ୍ରତ୍ୟେକ ଧର୍ମ ମଧ୍ୟ ସେହି ସମୟର ଏକ ବଡ ସାଂସ୍କୃତିକ ଆଲୋଡନ । ସଂପ୍ରତି ଯାହାସବୁକୁ ଆନୁଷ୍ଠାନିକ ଧର୍ମ କୁହାଯାଉଛି ଯେପରି ହିନ୍ଦୁଧର୍ମ, ବୌଦ୍ଧଧର୍ମ, ପାର୍ଶୀଧର୍ମ, ଖ୍ରୀଷ୍ଟଧର୍ମ, ଇସଲାମଧର୍ମ ଇତ୍ୟାଦି ସେସବୁ ଏକ ଏକ ଭୂଖଣ୍ଡର ଗୋଟିଏ ଗୋଟିଏ ସାଂସ୍କୃତିକ ଓ ସାମାଜିକ କ୍ରାନ୍ତି । ଗୋଟିଏ ଜନଗୋଷ୍ଠୀ ଭିତରେ ଏକ ସାଂସ୍କୃତିକ ସଂହତି ସୃଷ୍ଟିକରିବା, ନୀତି ନୈତିକତାର ଭାବନାକୁ ଦୃଢ ଭିତ୍ତି ଦେବା, ଜୀବନର କେତେକ ଲକ୍ଷ୍ୟକୁ ନିରୂପଣ କରିବା ଓ ନାନା ସାହିତ୍ୟ ସୃଜନ ମଧ୍ୟ ଦେଇ ମହତ୍ତର ଜୀବନବୋଧର ବାର୍ତ୍ତା ପ୍ରସାର କରିବାରେ ଧର୍ମର କିଛି ବଳିଷ୍ଠ ପ୍ରଭାବ ଥିବା ଦେଖାଯାଏ । ଏହି ପ୍ରକ୍ରିୟାରେ ପ୍ରତ୍ୟେକ ଧର୍ମ ଏକ ଆନୁଷ୍ଠାନିକ ରୂପରେଖ ନେବା ମଧ୍ୟ ଜଣାଯାଏ । ତେବେ କାଳକ୍ରମେ ପ୍ରତ୍ୟେକ ଧର୍ମ ଭିତରେ ନାନା ସାମ୍ପ୍ରଦାୟିକ ଗୋଷ୍ଠୀ ସୃଷ୍ଟି ହେବା, ନାନା ପ୍ରକାରର କୁସଂସ୍କାର ଓ ରୂଢ଼ିବାଦ ପ୍ରବେଶ କରିବା, ଧାର୍ମିକ ଭାବପ୍ରବଣତା ସାମ୍ପ୍ରଦାୟିକ ମନୋଭାବ ସୃଷ୍ଟି କରିବା ଓ ଜ୍ଞାନବିଜ୍ଞାନ ତଥା ପ୍ରଗତିଶୀଳ ଚେତନାର ବିକାଶରେ ପ୍ରତିବନ୍ଧକ ହେବା ବିଡମ୍ବନା ଅଟେ । "ଈଶ୍ୱର" ବିଶ୍ୱାସ ଆଧାରରେ ଧର୍ମମାନଙ୍କୁ ଏକେଶ୍ୱରବାଦୀ, ବହୁଈଶ୍ୱରବାଦୀ ବା ନିରୀଶ୍ୱରବାଦୀ ଭାବରେ ବିବେଚନା କରାଯାଏ । ଧର୍ମମାନଙ୍କର ପ୍ରତ୍ୟୟଗତ ଅନୁଶୀଳନ ଓ ତୁଳନାତ୍ମକ ଅଧ୍ୟୟନରୁ ପ୍ରତ୍ୟେକର ଐତିହାସିକ ଭିତ୍ତି, ପ୍ରବର୍ତ୍ତକ, ଧର୍ମଗ୍ରନ୍ଥ, ସମ୍ପ୍ରଦାୟ, ତାତ୍ତ୍ୱିକ ସିଦ୍ଧାନ୍ତ, କର୍ମକାଣ୍ଡ, ନୈତିକ ବିଚାର, ବିଭିନ୍ନ କାହାଣୀ, କିମ୍ବଦନ୍ତୀ ଇତ୍ୟାଦିର ଏକ ସ୍ପଷ୍ଟ ଚିତ୍ର ମିଳିଥାଏ । ଧର୍ମମାନଙ୍କର ତୁଳନାତ୍ମକ ବ୍ୟାଖ୍ୟାନରୁ ସେମାନଙ୍କର ସୈଦ୍ଧାନ୍ତିକ ବିଚାର ଓ ବିଶ୍ୱାସ ଭିତରେ ରହିଥିବା ପାର୍ଥକ୍ୟର ଭାବନା ଆସିଥାଏ ।

ବୌଦ୍ଧଧର୍ମ, ଜୈନଧର୍ମ ଓ ଟାଓଧର୍ମ କ୍ଷେତ୍ରରେ ନୈତିକ ଶୃଙ୍ଖଳା, ସତ୍ୟ, ଅହିଂସା ଓ ସାମାଜିକ କର୍ତ୍ତବ୍ୟବୋଧ ଉପରେ ବହୁ ପ୍ରାଧାନ୍ୟ ଦିଆ ଯାଇଥିଲେ ମଧ୍ୟ ଏହି ଧର୍ମମାନଙ୍କରେ ଈଶ୍ୱର ବିଶ୍ୱାସ ନେଇ କୌଣସି ଭାବନା ଥିବା ଦେଖାଯାଏ ନାହିଁ । ଅନ୍ୟାନ୍ୟ ଧର୍ମମାନଙ୍କ କ୍ଷେତ୍ରରେ ଈଶ୍ୱର ଭାବନା ଏକ ମୌଳିକ ପ୍ରତ୍ୟୟ ଅଟେ । ପ୍ରତ୍ୟେକ ଏକେଶ୍ୱରବାଦୀ ଧର୍ମମାନଙ୍କ କ୍ଷେତ୍ରରେ ଈଶ୍ୱର ଏକ ବ୍ୟକ୍ତିସତ୍ତା ବୋଲି ବିଶ୍ୱାସ କରାଯାଏ । ସେହିପରି

ଈଶ୍ୱର ଏହି ବିଶ୍ୱର ସ୍ରଷ୍ଟା, ପାଳନକର୍ତ୍ତା ଓ ସଂହର୍ତ୍ତା ବୋଲି ସାଧାରଣରେ ବିଶ୍ୱାସ ଥିବା ମଧ୍ୟ ଦେଖାଯାଏ। ପୁନଶ୍ଚ ଧର୍ମୀୟ ପରିଭାଷାରେ ଈଶ୍ୱରଙ୍କୁ ସର୍ବଜ୍ଞ, ସର୍ବଶକ୍ତିମାନ, ବିଶ୍ୱର ଆଦିକାରଣ, ସ୍ୱୟମ୍ଭୁ, କରୁଣାମୟ ଓ ପବିତ୍ର ବୋଲି ବର୍ଣ୍ଣନାର ଚିତ୍ର ମିଳିଥାଏ। ଈଶ୍ୱର ଭାବନାକୁ ଆଧାର କରି ଅସଂଖ୍ୟ କାହାଣୀ, କିମ୍ବଦନ୍ତୀ, ସାହିତ୍ୟ ଓ ଭାକ୍ତିକ ଅଭିବ୍ୟକ୍ତିର ଚିତ୍ର ପ୍ରତ୍ୟେକ ଈଶ୍ୱରବାଦୀ ଧର୍ମରେ ଦେଖିବାକୁ ମିଳେ। ଈଶ୍ୱରୀୟ କରୁଣା ଲାଭ ପାଇଁ କେତେ କେତେ ପୂଜାବିଧି, ପ୍ରାର୍ଥନା ଓ ଆରାଧନାର ଭାବନା ପ୍ରତ୍ୟେକ ଧର୍ମର ମୁଖ୍ୟ ପ୍ରସଙ୍ଗ ଅଟେ। ଈଶ୍ୱରଙ୍କ ପ୍ରତି ଭକ୍ତି, ଆରାଧନା, ସମର୍ପଣ, ପ୍ରାର୍ଥନା ଇତ୍ୟାଦି ଧାର୍ମିକ ଜୀବନବୋଧର ଆଦର୍ଶ ଭାବେ ଗ୍ରହଣ କରାଯାଏ। ଏପରିକି ଏହି ଧର୍ମମାନଙ୍କରେ ବିଶ୍ୱାସ କରାଯାଏ ଯେ ପ୍ରତ୍ୟେକ ଧର୍ମର ଧର୍ମଗ୍ରନ୍ଥ ପବିତ୍ର ଓ ତାହାର ବାର୍ତ୍ତା ସନାତନ। ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥର ବାଣୀକୁ ଶାଶ୍ୱତ ବୋଲି ଗ୍ରହଣ କରନ୍ତି କାରଣ ଏହା ଈଶ୍ୱରଦତ୍ତ ଜ୍ଞାନ। ଈଶ୍ୱର ଯେଉଁ ଜ୍ଞାନ ମଣିଷ ସମାଜକୁ ଦେବାକୁ ଚାହିଁଛନ୍ତି ତାହା ଋଷି, ପୈଗମ୍ବର, ନିଜର ପୁତ୍ର, ଦୂତ ବା ନିଜେ ଜନ୍ମଗ୍ରହଣକରି ଦେଇଛନ୍ତି। ତେଣୁ ନିଜ ଧର୍ମଗ୍ରନ୍ଥର ବାଣୀ ପ୍ରତ୍ୟେକ ଧର୍ମଗୋଷ୍ଠୀ ପାଇଁ ପବିତ୍ର, ଶାଶ୍ୱତ ଓ ଚିରନ୍ତନ କାରଣ ସେହି ଧର୍ମର ତ୍ରାଣକର୍ତ୍ତା ତାହା ପ୍ରଦାନ କରିଛନ୍ତି ବୋଲି ଧର୍ମଗୋଷ୍ଠୀର ବିଶ୍ୱାସ।

ଯେହେତୁ ଈଶ୍ୱରବାଦୀ ଧର୍ମମାନଙ୍କରେ ଈଶ୍ୱର ଭାବନା ଧାର୍ମିକ ଭାବନାର ମୌଳିକ ତତ୍ତ୍ୱ, ତାହାକୁ ଆଧାରକରି ପରବର୍ତ୍ତୀ ସମୟର ଦାର୍ଶନିକମାନେ ନାନା ଗମ୍ଭୀର ଚିନ୍ତା ପ୍ରକଟ କରିବା ଦେଖାଯାଏ। ଦାର୍ଶନିକମାନେ ପ୍ରାୟତଃ ମୌଳିକ ଚିନ୍ତକ ଓ ସେମାନେ ଚିନ୍ତାରାଜ୍ୟର ବିପ୍ଲବୀ। ସମାଜର ପ୍ରଚଳିତ ବିଶ୍ୱାସ, ଭାବନା ଓ ନୀତିବୋଧ ଉପରେ ସେମାନେ ଗମ୍ଭୀର ଚିନ୍ତା ବ୍ୟକ୍ତ କରିବାକୁ ପ୍ରୟାସ କରିଛନ୍ତି। ଏହି ପରିପ୍ରେକ୍ଷୀରେ ସେମାନେ ଈଶ୍ୱର ଭାବନା ଉପରେ ନାନା ଯୁକ୍ତିଶୀଳ ସିଦ୍ଧାନ୍ତର ଅବତାରଣା କରିବା ଜଣାଯାଏ। ବିଶେଷକରି ମଧ୍ୟଯୁଗରେ ଯେତେବେଳେ ଧର୍ମର ଗଭୀର ପ୍ରଭାବ ସମାଜରେ ରହିଥିଲା, ଦାର୍ଶନିକମାନେ ଧାର୍ମିକ ତତ୍ତ୍ୱମାନଙ୍କୁ ଯୁକ୍ତିଶୀଳ ଆଧାର ଦେବାକୁ ପ୍ରୟାସ କରିଥିଲେ। ଏହି ପୃଷ୍ଠଭୂମିରେ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ କେତେ କେତେ ଯୁକ୍ତିର ଅବତାରଣା ହୋଇଥିଲା। ଈଶ୍ୱର କେବଳ ବିଶ୍ୱାସର ପାତ୍ର ନୁହନ୍ତି ତାଙ୍କର ଅସ୍ତିତ୍ୱ ଯୁକ୍ତିସଙ୍ଗତ ଓ ସ୍ୱତଃସିଦ୍ଧ। ଏହି କ୍ଷେତ୍ରରେ ବିଭିନ୍ନ ଯୁକ୍ତିମାନ ଦର୍ଶନ ପରିସରରେ ରହିଥିଲେ ମଧ୍ୟ ତିନୋଟି ଯୁକ୍ତି ଅତ୍ୟନ୍ତ ମୌଳିକ ମନେହୁଏ। ସେହି ଯୁକ୍ତିମାନ ହେଲା ପ୍ରତ୍ୟୟ ସତ୍ତାଭିତ୍ତିକ ଯୁକ୍ତି, ଆଦ୍ୟକାରଣଜନିତ ଯୁକ୍ତି ଓ ଉଦ୍ଦେଶ୍ୟବିଷୟକ ଯୁକ୍ତି। ପ୍ରତ୍ୟୟସତ୍ତାଭିତ୍ତିକ ଯୁକ୍ତିରେ କୁହାଯାଏ ଯେ ଈଶ୍ୱର ଭାବନାରୁ ଈଶ୍ୱରଙ୍କ ଅସ୍ତିତ୍ୱ ନିଃସୃତ ହେଉଛି। ଈଶ୍ୱର ଭାବନାର ତାତ୍ପର୍ଯ୍ୟ ହେଉଛି ଯେ ଈଶ୍ୱର ଏକ ପୂର୍ଣ୍ଣତମ ସତ୍ତା। ପୂର୍ଣ୍ଣତମ ସତ୍ତାର ଯଦି ଅସ୍ତିତ୍ୱ ନଥାଏ ତେବେ ତାହା ପୂର୍ଣ୍ଣତମ ସତ୍ତା ହୋଇପାରିବ ନାହିଁ।

ଯାହାର ଅସ୍ତିତ୍ୱ ନାହିଁ ସେ କେବେହେଲେ ପୂର୍ଣ୍ଣତମ ସତ୍ତା ହେବା ସମ୍ଭବ ନୁହେଁ। ଈଶ୍ୱର ଯେ ପୂର୍ଣ୍ଣତମ ସତ୍ତା ଏହି ସଂଜ୍ଞାରୁ ଈଶ୍ୱରଙ୍କର ଅସ୍ତିତ୍ୱ ଥିବା ପ୍ରମାଣିତ ହେଉଛି। ଆଦ୍ୟକାରଣ ଯୁକ୍ତିରେ କୁହାଯାଏ ଯେ ଜଗତରେ ପ୍ରତ୍ୟେକ ଘଟଣା ପଶ୍ଚାତରେ କିଛି କାରଣ ରହିଛି। ପ୍ରତ୍ୟେକ ବସ୍ତୁ ବା ଘଟଣାର ଅନ୍ୟ କିଛି ବସ୍ତୁ ବା ଘଟଣା କାରଣ ହୋଇଥାଏ। ଏହି କ୍ରମରେ ଗଲେ ଏହି ବ୍ୟାଖ୍ୟାର ଅବସାନ ଘଟିନଥାଏ। ତେଣୁ ଦାର୍ଶନିକମାନେ କଳ୍ପନା କରିଥାନ୍ତି ଯେ ଏହି ଧାରାରେ ଆମକୁ ଏକ ଆଦିକାରଣକୁ ସ୍ୱୀକାର କରିବାକୁ ହେବ। ସବୁ ଘଟଣାର ମୂଳକାରଣ ବା ଆଦ୍ୟକାରଣ ହେଉଛନ୍ତି ଈଶ୍ୱର। ଈଶ୍ୱର ସବୁର ମୂଳକାରଣ, ତେବେ ଈଶ୍ୱର କୌଣସି କାରଣର କାର୍ଯ୍ୟ ନୁହନ୍ତି। ସେହିପରି ଉଦ୍ଦେଶ୍ୟବିଷୟକ ଯୁକ୍ତିରେ କୁହାଯାଏ ଯେ ବିଶାଳ ପ୍ରକୃତିରେ ଆମେ କେତେକ ଶୃଙ୍ଖଳା, ଏକରୂପତା ଓ ନିୟମ ରହିଥିବା ଦେଖିଥାଏ। ଏହି ଶୃଙ୍ଖଳା ଓ ନିୟମ କେହି ଉଦ୍ଦେଶ୍ୟାତ୍ମକ ଭାବରେ ବ୍ୟକ୍ତ କରିଛନ୍ତି। ବିଶ୍ୱ ପ୍ରକୃତିରେ ଯେଉଁ ବୈଚିତ୍ର୍ୟ ଓ ସଂହତି ପରିଦୃଶ୍ୟ ହୁଏ ତାହାକୁ କେହି ଉଦ୍ଦେଶ୍ୟମୂଳକ ଭାବେ ସ୍ଥାପନ କରିଛନ୍ତି। ବିଶାଳ ବିଶ୍ୱକୁ ଯେ ଏପରି ସଂହତିପୂର୍ଣ୍ଣ ଓ ସୁବ୍ୟାବସ୍ଥିତ ଭାବରେ ସର୍ଜନା କରିଛନ୍ତି ସେ ନିଶ୍ଚୟ ଏକ ଅସାମାନ୍ୟ ଓ ସର୍ବଜ୍ଞ ରୂପକାର। ସେହି ସର୍ବଜ୍ଞ ରୂପକାର ହେଉଛନ୍ତି ଈଶ୍ୱର।

ଏକ ସମୟରେ ଏହି ଯୁକ୍ତିମାନ ଦର୍ଶନଶାସ୍ତ୍ରରେ ବେଶ୍ ପ୍ରଭାବଶାଳୀ ରହିଥିଲା ଓ ଈଶ୍ୱରଙ୍କ ଅସ୍ତିତ୍ୱ ଯେ ସ୍ୱତଃସିଦ୍ଧ ଏହାକୁ ବିଶ୍ୱାସ କରାଯାଉଥିଲା। ପରବର୍ତ୍ତୀ ସମୟରେ ଏହି ଯୁକ୍ତିମାନଙ୍କ ଉପରେ ଦର୍ଶନ ପରିସରରେ ଗମ୍ଭୀର ଚର୍ଚ୍ଚା କରାଯାଇ ଏହି ପ୍ରତ୍ୟେକ ଯୁକ୍ତି କିପରି ତ୍ରୁଟିପୂର୍ଣ୍ଣ ଓ ଅବୈଧ ତାହା ଜଣାପଡିଲା। ଦାର୍ଶନିକମାନେ ପ୍ରତ୍ୟେକ ଯୁକ୍ତି ଉପରେ ଏପରି ମୌଳିକ ଭାବନା ବ୍ୟକ୍ତକରି ଯୁକ୍ତିମାନଙ୍କର ଅସଙ୍ଗତି ଓ ତ୍ରୁଟିକୁ ଦର୍ଶାଇବାଦ୍ୱାରା ଦର୍ଶନରେ ଏହି ସ୍ୱର ଉଠିଲା ଯେ ଈଶ୍ୱରଙ୍କ ଅସ୍ତିତ୍ୱ ତର୍କ ବା ବୁଦ୍ଧିର ବିଷୟ ନୁହେଁ। ବୁଦ୍ଧି ବା ତର୍କ ଯୋଗେ ଈଶ୍ୱରଙ୍କୁ ଜାଣିହେବ ନାହିଁ, ବରଂ ହୃଦୟର ଆବେଗରେ ଓ ବିଶ୍ୱାସ ମାଧ୍ୟମରେ ହିଁ ଈଶ୍ୱରଙ୍କୁ ଜାଣିହେବ। ଯେଉଁ ପର୍ଯ୍ୟନ୍ତ ବୁଦ୍ଧି ଓ ତର୍କର ଆଶ୍ରୟ ନେଇ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରିହେବ ବୋଲି ଭାବନା ଥିଲା, ସେପର୍ଯ୍ୟନ୍ତ ଈଶ୍ୱର ପ୍ରସଙ୍ଗରେ ବୁଦ୍ଧିର ସାହାଯ୍ୟ ନେବାକୁ କେହି ସନ୍ଦେହ କରୁନଥିଲେ। ପରନ୍ତୁ ବୁଦ୍ଧି ଓ ଯୁକ୍ତି ଈଶ୍ୱରଙ୍କ ବିପକ୍ଷରେ ଯିବାରୁ ଈଶ୍ୱରଙ୍କୁ ବୁଦ୍ଧି ବା ଯୁକ୍ତିର ଊର୍ଦ୍ଧ୍ୱରେ ରଖାଯିବାକୁ ପ୍ରୟାସ ହେଲା।

ଦର୍ଶନ ପରିସରରେ ଜ୍ଞାନମୀମାଂସା ଏକ ପ୍ରମୁଖ ଆଲୋଚ୍ୟ ପ୍ରସଙ୍ଗ। ଜ୍ଞାନର ସ୍ୱରୂପ, ବୈଧ ଜ୍ଞାନର ଆଧାର, ଜ୍ଞାନର ସୀମା ଇତ୍ୟାଦି ପ୍ରସଙ୍ଗ ଉପରେ ଦାର୍ଶନିକମାନେ ସର୍ବଦା ବହୁ ମୌଳିକ ଆଲୋଚନା କରିଥିବା ଦେଖାଯାଏ। ଜ୍ଞାନର ସଂଜ୍ଞା, ସ୍ୱରୂପ,

ପ୍ରକାରଭେଦ, ଆଧାର ବା ଉତ୍ସ, ସୀମା, ବୈଧ ଯୁକ୍ତିର ଲକ୍ଷଣ ବା ନିୟମ ଓ ନାନା ଅବୈଧ ଯୁକ୍ତି ବିଷୟରେ ଦର୍ଶନଶାସ୍ତ୍ରରେ ଗମ୍ଭୀର ଚର୍ଚ୍ଚା ହେବା ଦେଖାଯାଏ। ଏହି ପରିପ୍ରେକ୍ଷୀରେ ଧାର୍ମିକ ଭାବନା ଓ ସମାଜର ସାଧାରଣ ଜନବିଶ୍ୱାସଗୁଡ଼ିକ ପ୍ରସଙ୍ଗର ବୌଦ୍ଧିକ ଆଧାର ନେଇ ଦର୍ଶନରେ ଚର୍ଚ୍ଚା ହୁଏ। ଈଶ୍ୱର ଭାବନା ଧାର୍ମିକ ଚେତନାର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହୋଇଥିବାରୁ ଦାର୍ଶନିକମାନେ ସେହି ପ୍ରସଙ୍ଗ ଉପରେ ଆଲୋଚନା କରିଥାନ୍ତି। ଏହି କ୍ଷେତ୍ରରେ ଦର୍ଶନ ପରିସରରେ ତିନୋଟି ମୌଳିକ ପ୍ରଶ୍ନର ଅବତାରଣା କରାଯାଏ। ପ୍ରଥମତଃ, ଆମର ଜ୍ଞାନ ଉପାର୍ଜନ କ୍ଷେତ୍ରରେ ଏପରି କିଛି ବୈଧପ୍ରଣାଳୀ ରହିଛି କି ଯାହା ସାହାଯ୍ୟରେ ଈଶ୍ୱରଙ୍କ ଅସ୍ତିତ୍ୱ ଜାଣିହେବ ? ଦ୍ୱିତୀୟରେ ଜଗତକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ଈଶ୍ୱରଙ୍କର ଆବଶ୍ୟକତା ରହିଛି କି ? ଅର୍ଥାତ୍ ଈଶ୍ୱରଙ୍କୁ ଏକ ଚେତନଶୀଳ ଆଦିସତ୍ତା ଭାବରେ ଗ୍ରହଣ କରିବା ନେଇ ସେପରି କୌଣସି ଯୁକ୍ତିସଙ୍ଗତ ଆଧାର ରହିଛି କି ? ତୃତୀୟରେ ଈଶ୍ୱରଙ୍କୁ ନ୍ୟାୟ-ସଂସ୍ଥାପକ ବା ଧର୍ମ ପ୍ରତିଷ୍ଠାର ଆଧାର ଭାବେ ଗ୍ରହଣ କରିବା ଯଥାର୍ଥ କି ? ଈଶ୍ୱର ଭାବନା ବ୍ୟତୀତ ନୈତିକ ଚେତନା ଅସମ୍ଭବ କି ? ଗମ୍ଭୀର ଦାର୍ଶନିକ ବିଶ୍ଳେଷଣ ମାଧ୍ୟମରେ ଏହି ପ୍ରତ୍ୟେକ ପ୍ରଶ୍ନର ଏକ ନାସ୍ତିସୂଚକ ଉତ୍ତର ଦର୍ଶନର ପ୍ରତିପାଦ୍ୟ ସିଦ୍ଧାନ୍ତ ହେବା ଦେଖାଯାଏ।

ବରଂ ଆମର ବାସ୍ତବ ଅନୁଭବରେ ଏପରି କେତେକ ପ୍ରସଙ୍ଗ ଆସେ ଯାହା ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ବିରାଟ ପ୍ରଶ୍ନବାଚୀ ସୃଷ୍ଟି କରିଥାଏ। ଆମ ସଂସାରରେ କେତେ ଦୁଃଖ, ମନ୍ଦ, ଅମାନବିକତା, ନିଷ୍ଠୁରତା, ଅନ୍ୟାୟ ଓ ଇଭିଲ ରହିବା ଦେଖାଯାଏ। ସେହିପରି ନାନା ପ୍ରାକୃତିକ ଦୁର୍ବିପାକ ଓ ବିପର୍ଯ୍ୟୟ ମଣିଷର ସଂସାରକୁ ଉଚ୍ଛନ୍ନ କରିଦିଏ। ପ୍ରଶ୍ନ ହୁଏ ଈଶ୍ୱର ଯଦି ସର୍ବଶକ୍ତିମାନ ତେବେ ସେ ସକଳ ମନ୍ଦ ଓ ଦୁଃସ୍ଥିତିକୁ ଅକ୍ଲେଶରେ ଦୂର କରିପାରନ୍ତେ। ସେହିପରି ଈଶ୍ୱର ଯଦି କରୁଣାମୟ ତେବେ ସେ ସଂସାରରୁ ସମସ୍ତ ଅନ୍ୟାୟ ଓ ଅମାନବିକତାକୁ ଲୋପ କରିପାରନ୍ତେ। କିନ୍ତୁ ବାସ୍ତବ ଅନୁଭୂତିରେ ଦେଖାଯାଏ ଯେ ସଂସାରରେ ସକଳ ଦୁଃଖ, ଅନ୍ୟାୟ ଓ ମନ୍ଦ ସର୍ବଦା ରହିଆସିଛି। ସୁତରାଂ ଯଦି ବି ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରାଯାଏ ତେବେ କୁହାଯିବ ଯେ ଈଶ୍ୱର ନା ସର୍ବଶକ୍ତିମାନ ନା କରୁଣାମୟ। ଯଦି ଈଶ୍ୱର ସର୍ବଶକ୍ତିମାନ ନୁହନ୍ତି ବା କରୁଣାମୟ ନୁହନ୍ତି ତେବେ ସେହି ଈଶ୍ୱରଙ୍କର କ'ଣ ଆବଶ୍ୟକତା ରହିଛି ? କେତେକ କହିବେ ଯେ ଈଶ୍ୱର ସର୍ବଦା ଅଜ୍ଞେୟ, ଯାହା ମାନବୀୟ ଜ୍ଞାନର ବହିର୍ଭୂତ ତାହା ହିଁ ଈଶ୍ୱର କିମ୍ବା ଈଶ୍ୱର ମଣିଷ ମନର ଏକ କଳ୍ପନା ମାତ୍ର।

(ପ୍ରଗତିବାଦୀ, ୧୭.୦୧.୨୦୧୮)

# ମାନବୀୟ ସଙ୍କଟ ଓ ବିଚାରଶୀଳତା

ପ୍ରତ୍ୟେକ ସଭ୍ୟତାରେ ଓ ପ୍ରତି ଯୁଗରେ କେତେକ ମହାକାଂକ୍ଷୀ ବ୍ୟକ୍ତି ଏକ ଉନ୍ନତ ସମାଜର ପରିକଳ୍ପନା କରିଛନ୍ତି । ଗୋଟିଏ ସମୟରେ ଯେଉଁ ସବୁ କାରଣ ନେଇ ସମାଜରେ ହିଂସା, ବିଭେଦତା, ବିଭୀଷିକା ଓ ଅଶାନ୍ତି ଘଟୁଥିବା ସେମାନେ ଅନୁଭବ କରନ୍ତି ସେ ସବୁର ପରିବର୍ତ୍ତନ କରିବାକୁ ସେମାନେ କିଛି ପନ୍ଥା ବାହାର କରନ୍ତି । ସମାଜରେ କିପରି ସୁଖ, ଶାନ୍ତି, ନ୍ୟାୟ, ସମତା ଓ ମାନବିକତାର ପରିବେଶ ସୃଷ୍ଟି ହେବ ସେଥିପାଇଁ ଚିନ୍ତାଶୀଳ ବ୍ୟକ୍ତିମାନେ ଗମ୍ଭୀର ଭାବନା ବ୍ୟକ୍ତ କରନ୍ତି । ଏହା ସତ୍ୟ ଯେ ସବୁ ସମୟରେ ଓ ପ୍ରାୟତଃ ସବୁ ସମାଜରେ କେତେକ ସମସ୍ୟା ଅତି ଜଟିଳ ହୋଇଥାଏ । ଏହି ସମସ୍ୟାମାନ ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ, ସାମାଜିକ ବା ଯାହା କିଛି ହୋଇପାରେ । ମାନବ ସମାଜ ସାମଗ୍ରିକ ଭାବରେ ସମସ୍ୟାରହିତ ହେବା ଦେଖାଯାଏ ନାହିଁ । ହୁଏତ କେତେକ ସମସ୍ୟାର ସମାଧାନ ହେବା ବେଳକୁ ଅନ୍ୟ ସମସ୍ୟା ମୁଣ୍ଡ ଟେକିଥାଏ । ରାଜତନ୍ତ୍ର ଯୁଗରେ ଏକଛତ୍ରବାଦ ରହିଥିଲା, ସେ ସମୟରେ ଭାବନା ଆସିଲା ଯେ ରାଜତନ୍ତ୍ରଜନିତ ଏକଛତ୍ରବାଦର ବିଲୋପ ହୋଇ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରଚଳନ ହେଲେ ଲୋକମାନଙ୍କ ହାତକୁ କ୍ଷମତା ଆସିବ । ସାଧାରଣ ଜନତାର ସାର୍ବଭୌମତ୍ୱ ପ୍ରତିଷ୍ଠା ହେଲେ ସମାଜର ଏକ ମହତ୍ତର ଉତ୍ତରଣ ଘଟିବ । ଏଥିପାଇଁ କେତେକ ରାଷ୍ଟ୍ରରେ ବିପ୍ଳବ ହେଲା, ଜନଗଣ ବିପ୍ଳବରେ ଝାସ ଦେଲେ । ଜୀବନ ପ୍ରତିଦାନରେ ସମାଜକୁ ଉନ୍ନତ କରିବା ପାଇଁ ଓ ଆଗାମୀ ପିଢି ପାଇଁ ଏକ ସୁନ୍ଦର ପରିବେଶ ସୃଷ୍ଟି କରିବାକୁ କେତେ ସ୍ୱପ୍ନ ପ୍ରକାଶ ପାଇଥିଲା । ଶିଳ୍ପବିପ୍ଳବ ପରବର୍ତ୍ତୀ ଯୁଗରେ ପୁଞ୍ଜିପତି ଓ ଶ୍ରମିକ ଶ୍ରେଣୀ ଭିତରେ ଯେଉଁ ଅର୍ଥନୈତିକ ବୈଷମ୍ୟ ସୃଷ୍ଟି ହୋଇଥିଲା ତାହାର ଦୂରୀକରଣ ପାଇଁ ସମାଜବାଦର ଭାବନା ବେଶ୍ ଆକର୍ଷଣୀୟ ଥିଲା । ସମାଜରେ ଅର୍ଥନୈତିକ ସମତା ଆସିଗଲେ ମାନବିକ ସମସ୍ୟାର ଯେ ଅନ୍ତ ଘଟିବ ଗୋଟିଏ ସମୟରେ ଏହି ପ୍ରକାର ଆବେଗ ସୃଷ୍ଟି ହୋଇଥିଲା । ଜନମଙ୍ଗଳକାରୀ ରାଷ୍ଟ୍ର, ପୁଞ୍ଜିର ରାଷ୍ଟ୍ରାୟତ୍ତକରଣ ଓ ଆର୍ଥିକ ସମତା ଗୋଟିଏ ସମୟରେ ବେଶ୍ କ୍ରାନ୍ତିକାରୀ ଭାବନା ଥିଲା । ଯେଉଁ ଦେଶମାନଙ୍କରେ ସାମ୍ରାଜ୍ୟବାଦ ଥିଲା ସେ ଦେଶମାନ ସାମ୍ରାଜ୍ୟବାଦୀ ଶକ୍ତିର କବଳରୁ ମୁକ୍ତ ହେଲେ ସେଠି ବିକାଶର ପର୍ବ ଆରମ୍ଭ ହେବ ତଥା ସକଳ ଦାରିଦ୍ର୍ୟର ବିଲୋପ ହେବ ଏହିପରି ଅନେକ ସ୍ୱପ୍ନ ପରାଧୀନ ଦେଶମାନଙ୍କରେ ସୃଷ୍ଟି

ହୋଇଥିଲା । ପରିଣାମତଃ ନିଜ ଦେଶକୁ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତିଙ୍କ କବଳରୁ ମୁକ୍ତ କରିବାକୁ କେତେ ଲୋକ ସହିଦ ହେଲେ, ଫାଶୀଖୁଣ୍ଟରେ ଜୀବନ ଦେଲେ ଓ ନିଜର ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ସଂଗ୍ରାମୀ ପାଲଟିଲେ । ପୃଥିବୀପୃଷ୍ଠରେ ଗୋଟିଏ ସମୟରେ ମହାମାରୀମାନଙ୍କର ପ୍ରକୋପ ରହିଥିଲା । ହଇଜା, ବସନ୍ତ, ପ୍ଲେଗ୍, ଯକ୍ଷ୍ମା ଇତ୍ୟାଦି ରୋଗମାନ ମହାମାରୀର ରୂପ ନେଇ ସମାଜରେ ଗଣମୃତ୍ୟୁର ପରିବେଶ ସୃଷ୍ଟି କରୁଥିଲା । ବହୁ ପରିବାର ଉଜୁଡି ଯାଉଥିଲା ଓ ମହାମାରୀ ବିଷୟରେ କୋକୁଆ ଭୟ ସମାଜରେ ସୃଷ୍ଟି ହେଉଥିଲା । ଏହି ପରିସ୍ଥିତିରୁ ମାନବ ସମାଜକୁ ସୁରକ୍ଷା ଦେବାକୁ ରୋଗମାନଙ୍କର ପ୍ରତିଷେଧକ ନେଇ ବିଶ୍ୱସ୍ତରରେ ଗବେଷଣା ହେଲା । ବିଂଶଶତାବ୍ଦୀ ଆରମ୍ଭ ବେଳକୁ ଅନେକ ରେଗର କାରଣ ଜଣାପଡିଲା । ବିଶ୍ୱକୁ ମହାମାରୀମୁକ୍ତ କରିବା ପାଇଁ ଆନ୍ତର୍ଜାତିକ ସ୍ତରରେ ସଂପୃକ୍ତି ପ୍ରକାଶ ପାଇଲା । ୧୮୦୦ ମସିହାରେ ସାରା ପୃଥିବୀର ଜନସଂଖ୍ୟା ଥିଲା ମାତ୍ର ଶହେକୋଟି ଓ ସେ ପର୍ଯ୍ୟନ୍ତ ଜନ୍ମ-ମୃତ୍ୟୁ ହାରରେ ବିଶେଷ ବଡ ତଫାତ୍ ନଥିଲା । ୧୯୦୦ ମସିହା ବେଳକୁ ପୃଥିବୀର ଜନସଂଖ୍ୟା ହେଲା ୧୬୦ କୋଟି । ପାରିବାରିକ ନିୟୋଜନ ଜନିତ ଜ୍ଞାନର ବିକାଶ ଓ କ୍ଷୁଦ୍ର ପରିବାର ନେଇ ସାରା ବିଶ୍ୱରେ ସାମାଜିକ ସଚେତନତା ସତ୍ତ୍ୱେ ୨୦୦୦ ବେଳକୁ ପୃଥିବୀର ଲୋକସଂଖ୍ୟା ୬୦୦ କୋଟି ଓ ୨୦୧୬ ବେଳକୁ ପୃଥିବୀର ଜନସଂଖ୍ୟା ୭୧୦ କୋଟିରୁ ଅଧିକ ବୋଲି ଜଣାଯାଏ । ସେହିପରି ବ୍ୟକ୍ତିମାନଙ୍କର ହାରାହାରି ଆୟୁ ସବୁ ଦେଶରେ ବୃଦ୍ଧି ପାଇବାରେ ଲାଗିଛି ଓ ଏହା ସମ୍ଭବ ହୋଇଛି ଚିକିତ୍ସା ବିଜ୍ଞାନଜନିତ ଜ୍ଞାନର ବିକାଶ ଯୋଗୁ ।

ଯେଉଁ ସମୟରେ ଯେଉଁ ସମସ୍ୟାମାନ ସାରା ପୃଥିବୀରେ ମୁଣ୍ଡ ଟେକିଛି ତାହାର ସମାଧାନ ପାଇଁ ଆନ୍ତର୍ଜାତିକ ସ୍ତରରେ ପୃଥିବୀର ମହାକାଂକ୍ଷୀ ମନୀଷୀମାନେ ସେ ସବୁର ସମାଧାନ ପାଇଁ ନିଜର ସଂପୃକ୍ତି ବ୍ୟକ୍ତ କରିଛନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ଆଣବିକ ଅସ୍ତ୍ର ପ୍ରୟୋଗଦ୍ୱାରା ସେତେବେଳେ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଥିଲା ସେଥିରୁ ଆଶଙ୍କା ପ୍ରକାଶ ପାଇଲା ଯେ ଯଦି କୌଣସି କାରଣରୁ ପୃଥିବୀରେ ତୃତୀୟ ବିଶ୍ୱଯୁଦ୍ଧ ହୁଏ ତେବେ ପୃଥିବୀ ପୃଷ୍ଠରୁ ହୁଏତ ମାନବ ସଭ୍ୟତା ଧ୍ୱଂସ ପାଇଯିବ । ଏହି ସ୍ଥିତିରେ ପୃଥିବୀରୁ କିପରି ଯୁଦ୍ଧର ଅବସାନ ହେବ ଓ ସକଳ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ବିଶ୍ୱ ସ୍ତରରେ ହେବ ସେଥିପାଇଁ ମିଳିତ ଜାତିସଂଘର ପ୍ରତିଷ୍ଠା ହୋଇଥିଲା । ମିଳିତ ଜାତିସଂଘର ପ୍ରତିଷ୍ଠା ଯୋଗୁଁ ସମ୍ଭବତଃ ପୃଥିବୀରେ ତୃତୀୟ ବିଶ୍ୱଯୁଦ୍ଧ ହୋଇ ନାହିଁ ଯଦିବା ମଝିରେ ମଝିରେ ଦୁଇ ଦେଶ ମଧ୍ୟରେ ଯୁଦ୍ଧ ସୃଷ୍ଟି ହେଉଛି । ବର୍ଣ୍ଣବୈଷମ୍ୟ ପରି ଯେଉଁ ଭେଦଭାବର ମାନସିକତା କେତେକ ଦେଶରେ

ତୀବ୍ର ହୋଇ ରହିଥିଲା ଓ ବିଭିନ୍ନ ସଭ୍ୟତାରେ ଯେପରି ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ ପରି ବୈଷମ୍ୟମୂଳକ ପରିବେଶ ରହିଥିଲା ତାହା ବିରୁଦ୍ଧରେ ଆନ୍ତର୍ଜାତିକ ଚେତନା ବିକଶିତ ହେଲା। ଆନ୍ତର୍ଜାତିକ ସ୍ତରରେ "ମାନବିକ ଅଧିକାରର ବିଶ୍ୱଘୋଷଣା" ଜରିଆରେ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ପାଇଁ ଯେଉଁ ଘୋଷଣାମାନ ପ୍ରକାଶ ପାଇଲା ତାହା ପ୍ରତ୍ୟେକ ରାଷ୍ଟ୍ର ପାଇଁ ଏକ ନୈତିକ ନିବେଦନ ଥିଲା। ମାନବିକ ଅଧିକାରର ଉଲଘଂନ ନେଇ ସାରା ବିଶ୍ୱରେ ଏବେ ସଚେତନତା ପ୍ରକାଶ ପାଉଛି। ଯେଉଁଠି କୌଣସି କାରଣରୁ ଗଣହତ୍ୟା ସଘଟିତ ହେଉଛି ତାହାକୁ ମାନବିକତା ବିରୁଦ୍ଧରେ ଅପରାଧ ବା 'କ୍ରାଇମ ଏଗେନ୍‌ଷ୍ଟ ହ୍ୟୁମାନିଟି' ବୋଲି ଚିତ୍ରଣ କରାଯାଉଛି। କୌଣସି ଦେଶରେ ସାମ୍ପ୍ରଦାୟିକ ଦଙ୍ଗା ହେବା, ସନ୍ତ୍ରାସବାଦୀ ଆକ୍ରମଣ ହେବା ବିଶ୍ୱ ଦରବାରରେ ଆଲୋଚିତ ହେଉଛି। ସେହିପରି ଶରଣାର୍ଥୀ ସମସ୍ୟା, ବାଳଶ୍ରମିକ ସମସ୍ୟା, ନିରକ୍ଷର ସମସ୍ୟା ଇତ୍ୟାଦିର ସମାଧାନ ପାଇଁ ଆନ୍ତର୍ଜାତିକ ସ୍ତରରେ ପ୍ରୟାସ ଅବ୍ୟାହତ ରହିଛି। ବିଶେଷକରି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ସାରା ବିଶ୍ୱରେ ନାନା ଆନ୍ତର୍ଜାତିକ ସଙ୍ଗଠନମାନ ମୁଣ୍ଡ ଟେକିଛି।

ସଂପ୍ରତି ଏପରି ଏକ ସମସ୍ୟା ଉଦ୍ଭବ ହୋଇଛି ଯାହା ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରୁଛି। ବିଶେଷକରି ପରିବେଶ ପ୍ରଦୂଷଣ ସମଗ୍ର ବିଶ୍ୱ ପ୍ରତି ଏକ ବିପଦପୂର୍ଣ୍ଣ ଆହ୍ୱାନ ଭାବେ ମୁଣ୍ଡ ଟେକିଛି। ଏହି ଶହେ ବର୍ଷ ଭିତରେ ଯେପରି ଯାନବାହାନ ବୃଦ୍ଧିପାଇଛି, କଳକାରଖାନାମାନ ଗଢ଼ିଉଠିଛି, ଜୈବିକ ଇନ୍ଧନର ଦହନ ହେଉଛି, ଜଙ୍ଗଲର ଅବକ୍ଷୟ ଘଟିଛି ଓ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ଜନିତ ସମସ୍ୟାର ଦୂରୀକରଣ ପାଇଁ ଉତ୍ପାଦନ ବୃଦ୍ଧି କରିବାକୁ କୀଟନାଶକ ଓ ରାସାୟନିକ ବସ୍ତୁ ପ୍ରୟୋଗ କରାଯାଉଛି ଏସବୁର ସମ୍ମିଳିତ ପ୍ରଭାବରୁ ପୃଥିବୀର ବାୟୁମଣ୍ଡଳ ଓ ଜଳଉତ୍ସଗୁଡ଼ିକ ପ୍ରଦୂଷିତ ହୋଇଚାଲିଛି। ଏହି ସ୍ଥିତିରେ ସଭ୍ୟତାର ଭବିଷ୍ୟତ ନେଇ ଆଶଙ୍କା ବ୍ୟକ୍ତ ହେଉଛି। ଏହି ସମସ୍ୟାର ସମାଧାନ ବିଶ୍ୱ ସ୍ତରରେ କରାଯାଇ ପାରିବ, କିନ୍ତୁ କୌଣସି ଏକକ ରାଷ୍ଟ୍ର ଏହା କରିପାରିବ ନାହିଁ। ଫଳତଃ ଏ କ୍ଷେତ୍ରରେ ବିଶ୍ୱର ପରିବେଶବିଜ୍ଞାନୀ ଓ ବିଭିନ୍ନ ଦେଶର ରାଷ୍ଟ୍ରମୁଖ୍ୟମାନେ ନାନା ବିଚାର ବିମର୍ଶ ମାଧ୍ୟମରେ ସବୁ ଦେଶରେ କେତେକ ପଦକ୍ଷେପ ନେବାକୁ ଆନ୍ତର୍ଜାତିକ ସ୍ତରରେ ଘୋଷଣାନାମା ବ୍ୟକ୍ତ କରିଛନ୍ତି।

ସଂପ୍ରତି ଆଧୁନିକ ଜ୍ଞାନକୌଶଳ ସାହାଯ୍ୟରେ କେତେକ ପ୍ରାକୃତିକ ଦୁର୍ବିପାକର ପୂର୍ବସୂଚନା ମିଳିପାରୁଛି। ତଥାପି ଯେତେବେଳେ ଯେଉଁଠି ପ୍ରାକୃତିକ ଦୁର୍ବିପାକ ସୃଷ୍ଟି ହେଉଛି

ସେହି ପରିସ୍ଥିତିରେ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ସାରା ପୃଥିବୀରୁ ସହାନୁଭୂତିର ହାତ ପ୍ରସାରିତ ହେଉଛି। ବହୁ ସଙ୍ଗଠନ ବିଶ୍ୱଦୃଷ୍ଟି ନେଇ ଅନଗ୍ରସର ରାଷ୍ଟ୍ରମାନଙ୍କର ବିକାଶ ପାଇଁ ସହଯୋଗ ଦେଉଛନ୍ତି। ଆନ୍ତର୍ଜାତିକ ସଙ୍ଗଠନମାନ ପୃଥିବୀରୁ ନିରକ୍ଷରତା, ଦାରିଦ୍ର୍ୟ ଇତ୍ୟାଦି ଦୂର କରିବାକୁ ସଂପୃକ୍ତି ବ୍ୟକ୍ତ କରୁଛନ୍ତି। ଏସବୁ ମଧ୍ୟ ଦେଇ ଅଲକ୍ଷ୍ୟରେ ଏକ ବିଶ୍ୱଦୃଷ୍ଟି ଓ ଆନ୍ତର୍ଜାତିକ ଚେତନାର ବିକାଶ ହୋଇଚାଲିଛି।

ଯେଉଁମାନେ ମଣିଷ ସମାଜ ପାଇଁ ନୂତନ ଜ୍ଞାନ ଦେଉଛନ୍ତି ଓ ଯେଉଁ ଜ୍ଞାନ ଯୋଗୁ ବିକାଶର ଧାରା ଅଗ୍ରସର ହେଉଛି ସେମାନଙ୍କୁ ଆନ୍ତର୍ଜାତିକ ସ୍ତରରେ ପୁରସ୍କୃତ କରାଯାଇ ସେମାନଙ୍କ ପ୍ରତିଭାକୁ ସ୍ୱୀକୃତି ଦିଆଯାଉଛି। ନୋବେଲ୍ ପୁରସ୍କାର ପାଉଥିବା ପ୍ରତିଭାଧର ବ୍ୟକ୍ତିମାନେ ଆନ୍ତର୍ଜାତିକ ବ୍ୟକ୍ତିତ୍ୱରେ ପରିଣତ ହେଉଛନ୍ତି। ଜ୍ଞାନବିଜ୍ଞାନର ସ୍ତର ସହ ମହତ୍ତର ଜୀବନର ବାର୍ତ୍ତା ଦେଉଥିବା ସାହିତ୍ୟକୃତି ଓ ମାନବ ସମାଜର ମଙ୍ଗଳ ପାଇଁ ଅବଦାନ ଦେଉଥିବା ବ୍ୟକ୍ତିମାନଙ୍କୁ ଶାନ୍ତିର ବାର୍ତ୍ତାବହ ଭାବେ ଏହି ପୁରସ୍କାର ବି ପ୍ରଦାନ କରାଯାଉଛି। ମୋଟ ଉପରେ ସାରା ବିଶ୍ୱରେ ଜ୍ଞାନବିଜ୍ଞାନର ବିକାଶ, ସୁଖଶାନ୍ତିମୟ ଜୀବନ ଓ ମହତ୍ତର ବାର୍ତ୍ତା ଦେଉଥିବା ବ୍ୟକ୍ତିମାନଙ୍କର ପ୍ରତିଭାକୁ ଆନ୍ତର୍ଜାତିକ ସ୍ୱୀକୃତି ଦେବା ମାନବିକ ମହତ୍ତ୍ୱର ସୂଚନା ଦେଇଥାଏ।

ଗୋଟିଏ ସମୟରେ ପୃଥିବୀ ଭାଗ ଭାଗ ହୋଇ ରହିଥିଲା। ନଦୀ, ପାହାଡ, ପର୍ବତ, ସମୁଦ୍ର ଇତ୍ୟାଦି ଯୋଗୁ ଗୋଟିଏ ଅଞ୍ଚଳର ଲୋକମାନେ ଅନ୍ୟ ଭୂଖଣ୍ଡର ଲୋକମାନଙ୍କୁ ଜାଣିବାର ସୁଯୋଗ ନ ଥିଲା। ଏହି ଧାରାରେ ପୃଥିବୀରେ ହଜାର ହଜାର ଭାଷା ସୃଷ୍ଟି ହେଲା। ବିଭିନ୍ନ ଅଞ୍ଚଳରେ ସ୍ୱତନ୍ତ୍ର ସଂସ୍କୃତିମାନ ଗଢି ଉଠିଲା। ବିଭିନ୍ନ ଭୂଖଣ୍ଡରେ ଆସିଥିବା ଗୋଟିଏ ଗୋଟିଏ ବଳିଷ୍ଠ ସାଂସ୍କୃତିକ ଆଲୋଡନ ପରବର୍ତ୍ତୀ ସମୟରେ "ଧର୍ମ"ର ଆନୁଷ୍ଠାନିକ ରୂପ ନେଲା। କାଳକ୍ରମେ ରାଷ୍ଟ୍ରର ଭାବନା ଆସିଲା ଓ ପ୍ରତ୍ୟେକ ରାଷ୍ଟ୍ର ଏକ ସାର୍ବଭୌମିକ ଅନୁଷ୍ଠାନରେ ପରିଣତ ହେଲା। ପ୍ରତ୍ୟେକ ନାଗରିକର ଏକ ରାଷ୍ଟ୍ରୀୟ ପରିଚୟ ରହିଲା। ସେହିପରି ଧର୍ମୀୟ ଅସ୍ମିତା ବ୍ୟକ୍ତି ଚେତନାକୁ ଗଭୀର ଭାବେ ପ୍ରଭାବିତ କଲା। ବିଡମ୍ବନାର ବିଷୟ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବିଦ୍ୱେଷର ଭାବନା ସୃଷ୍ଟି ହେଲା ଓ ଧର୍ମକୁ ଆଧାର କରି ସାମ୍ପ୍ରଦାୟିକ ଭେଦଭାବ ଗମ୍ଭୀର ରୂପ ନେଲା। ଏକ ରାଷ୍ଟ୍ର ଅନ୍ୟ ରାଷ୍ଟ୍ରକୁ ସନ୍ଦେହ ଦୃଷ୍ଟିରେ ଦେଖିଲା ଓ ଗୋଟିଏ ଧର୍ମର କିଛି ବ୍ୟକ୍ତି ଅନ୍ୟ ଧର୍ମାବଲମ୍ବୀମାନଙ୍କ ପ୍ରତି ସାମ୍ପ୍ରଦାୟିକ ଅସୂୟାର ମନୋଭାବ ସୃଷ୍ଟି କଲେ। ମାନବଜାତି ରାଷ୍ଟ୍ରୀୟତା, ଧର୍ମ ଆଧାରରେ କୃତ୍ରିମ

ବିଭାଜନର ଶିକାର ହେଲା। ଏହା ସହିତ ବିଭିନ୍ନ ଭେଦଭାବ ଜନମାନସରେ ଅନ୍ୟ ପ୍ରତି ଅସହିଷ୍ଣୁତାର ମନୋଭାବ ସୃଷ୍ଟି କଲା। ତେବେ ଏସବୁ ବିଭେଦକାରୀ ଭାବନାକୁ ଅତିକ୍ରମ କରି ସବୁ ସଭ୍ୟତାର ମାନବହିତୈଷୀ ପ୍ରତିଭାଧର ବ୍ୟକ୍ତିମାନେ ବିଶ୍ୱକୁ ଏକ ଦୃଷ୍ଟିରେ ଦେଖିବାକୁ ପ୍ରୟାସ କରିଛନ୍ତି।

ସୁଖର କଥା ଆଧୁନିକ ଜ୍ଞାନବିଜ୍ଞାନ ସାରା ବିଶ୍ୱକୁ ଏକ ଗ୍ରାମରେ ରୂପାନ୍ତରିତ କରିବାର ସାଧନ ସୃଷ୍ଟିକରିଛି। ସାଂସ୍କୃତିକ ଜଗତୀକରଣ ଆଧାରରେ ବିଶ୍ୱର ଜନଗଣ ନିକଟତର ହେବାରେ ଲାଗିଛନ୍ତି। ଏବେ ଗ୍ଲୋବାଲ ଭିଲେଜ, ଗ୍ଲୋବାଲ ମିଡିଆ, ଗ୍ଲୋବାଲ ମାର୍କେଟ, ଗ୍ଲୋବାଲ କମ୍ୟୁନିକେସନ ଇତ୍ୟାଦି କଥା କୁହାଯାଉଛି। ଏସବୁ କ୍ଷେତ୍ରରୁ ସକଳ ଆଞ୍ଚଳିକତା ଦୂର ହେବାରେ ଲାଗିଛି। ମଣିଷ ମଣିଷ ଭିତରର ବୈଷମ୍ୟ, ଭେଦଭାବ ଦୂର ହେବାର ପରିବେଶ ଆସିଛି। ସେହି ପୃଷ୍ଠଭୂମିରେ ଗ୍ଲୋବାଲ ଅହିଂସାର ପରିବେଶ ସୃଷ୍ଟି ହେବା ଆଜିର ଆବଶ୍ୟକତା ହେବାରେ ଲାଗିଛି। ବିଶେଷକରି ସନ୍ତ୍ରାସବାଦ, ହିଂସା, ଅସହିଷ୍ଣୁତା ପରି ନକାରାତ୍ମକ ଦୃଷ୍ଟିଭଙ୍ଗୀକୁ ପରିହାର କରି ବିଶ୍ୱଶାନ୍ତି, ଭ୍ରାତୃତ୍ୱପୂର୍ଣ୍ଣ ପରିବେଶ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଅହିଂସାଦ୍ୱାରା ଯେ ଆସିପାରିବ ଏହା ମନେ କରାଯାଏ। ବିଂଶ ଶତାବ୍ଦୀର ଜଣେ ମହାନ ଭାରତୀୟଙ୍କ ଜନ୍ମଦିବସକୁ ବିଶ୍ୱ ଅହିଂସା ଦିବସ ଭାବେ ପାଳନ କରିବା ଏକ ଗୌରବାବହ ଘଟଣା। ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ମଣିଷ ସମାଜକୁ ବାହ୍ୟ ସ୍ତରରେ ଯୋଡିପାରିଛି, ଅହିଂସା ମଣିଷ ସମାଜକୁ ମାନସିକ ସ୍ତରରେ ଯୋଡିପାରିବ।

(ପ୍ରଗତିବାଦୀ, ୨୦.୦୧. ୨୦୧୬)

# ବ୍ୟକ୍ତିଚେତନାର ରୂପାନ୍ତର

ପ୍ରତ୍ୟେକ ମଣିଷ ଏକ ବ୍ୟକ୍ତି ଓ ତାହାର ଏକ ବ୍ୟକ୍ତି-ସତ୍ତା ରହିଛି। ବ୍ୟକ୍ତି ସତ୍ତାଟି ପ୍ରସାରିତ ହୋଇଛି ପରିବାରକୁ, ଗୋଷ୍ଠୀ ଜୀବନକୁ, ସମାଜକୁ, ରାଷ୍ଟ୍ରକୁ ଓ ମାନବ-ସମୁଦାୟକୁ। ବ୍ୟକ୍ତିକୁ ଛାଡ଼ି ଗୋଷ୍ଠୀ, ସମୁଦାୟ ବା ସମାଜର ସ୍ୱତନ୍ତ୍ର ସତ୍ତା ନାହିଁ। ତେବେ ପ୍ରତ୍ୟେକ ବ୍ୟକ୍ତିର ଏକ ସାମାଜିକ ପରିଚୟ ବା ସଂପୃକ୍ତି ରହିଛି। ବ୍ୟକ୍ତିର ଜୈବିକ ସତ୍ତାଟି ବାପା, ମା'ଙ୍କର ଶାରୀରିକ ସଂପର୍କରୁ ଉଦ୍ଭବ ହୋଇଥାଏ, ଯାହା ଉପରେ ବ୍ୟକ୍ତିର କୌଣସି ନିୟନ୍ତ୍ରଣ ନଥାଏ। ତେବେ ପ୍ରକୃତି ମଣିଷ ଭିତରେ ସାମାଜିକ ପ୍ରବୃତ୍ତି ସୃଷ୍ଟି କରିଛି। ମଣିଷ ଶିଶୁଟି ପ୍ରକୃତିରେ ସବୁଠାରୁ ଅସହାୟ। ଶିଶୁଟିର ଜନ୍ମ ପରଠାରୁ ସେ ତାର ମା', ବାପା, ପରିବାର, ସମାଜ ମାଧ୍ୟମରେ ଗଢ଼ି ଉଠିଥାଏ। ଏହି ପ୍ରକ୍ରିୟାରେ ତାର ସାମାଜିକ ପରିଚୟ ସୃଷ୍ଟି ହୁଏ। ସେ ଭାଷା, ଜାତି, ଧର୍ମ ଜନିତ ପରିଚୟ ବାପା-ମାଙ୍କର ପରିଚୟରୁ ପାଇଥାଏ। ପରବର୍ତ୍ତୀ ପର୍ଯ୍ୟାୟରେ ତାର ବୃତ୍ତିଗତ, ଆଦର୍ଶଗତ ବା ଅନ୍ୟାନ୍ୟ ପରିଚୟ ମଧ୍ୟ ଆସିଥାଏ। ବ୍ୟକ୍ତି ଯେଉଁ କର୍ମପନ୍ଥାକୁ ନେଇ ସ୍ୱାବଲମ୍ବୀ ହୁଏ ତାହା ତାର ବୃତ୍ତିଗତ ପରିଚୟ ହୋଇଥାଏ। ସେହିପରି ତାହାର କିଛି ଆଦର୍ଶଗତ ପରିଚୟ ମଧ୍ୟ ଆସିଥାଏ। ସେ ଜଣେ ସାଇଭକ୍ତ, ବାମପନ୍ଥୀ ବା ହେତୁବାଦୀ ଇତ୍ୟାଦି ପରିଚୟ ମଧ୍ୟ ସୃଷ୍ଟି କରିଥାଏ। ପୁନଶ୍ଚ ଜଣଙ୍କର ବ୍ୟକ୍ତିଗତ ରୁଚିକୁ ଆଧାର କରି ତାର ଅନ୍ୟାନ୍ୟ ପରିଚୟ ସୃଷ୍ଟି ହୋଇଥାଏ। ସେ ଜଣେ ଖେଳାଳି, କଳାକାର, ଲେଖକ ବା ସମାଜସେବୀ ଇତ୍ୟାଦି ପରିଚୟ ମଧ୍ୟ ପାଇଥାଏ। ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶ ସହ ତାର ବୃତ୍ତିଗତ, ଲିଙ୍ଗଗତ, ସାମାଜିକ ଓ ସାଂସ୍କୃତିକ ପରିଚୟ ବି ଆସିଥାଏ।

ଜଣେ ବ୍ୟକ୍ତିର ଜୀବନ-ଅବଧି ତାର ଜନ୍ମଠାରୁ ଆରମ୍ଭ ହୁଏ ଓ ତାର ଦେହାନ୍ତରେ ସମାପ୍ତ ହୁଏ। ପ୍ରତ୍ୟେକ ବ୍ୟକ୍ତିର କେତେକ ସ୍ୱଭାବ ପ୍ରବୃତ୍ତିଗତ ଓ ଅନ୍ୟ କେତେକ ସ୍ୱଭାବ ସାମାଜିକ ପ୍ରଭାବ ଆଧାରରେ ସୃଷ୍ଟ। ବ୍ୟକ୍ତିର ସହଜାତ ପ୍ରବୃତ୍ତି ବା ପ୍ରକୃତିକୁ ସାଧାରଣତଃ ବ୍ୟକ୍ତିର ସଂସ୍କାର ବୋଲି ନିଆଯାଏ। ବ୍ୟକ୍ତିର ସଂସ୍କାର ରୁଚିଶୀଳ, ସୁନ୍ଦର, ମାନବିକ ହୋଇପାରେ ବା ଏହାର ବିପରୀତ ବି ହୋଇପାରେ। ସମାଜରେ କେତେକ ବ୍ୟକ୍ତି ଅତ୍ୟନ୍ତ

ଦରଦୀ, ପରୋପକାରୀ ଓ ହୃଦୟବାନ ହେବା ଯେପରି ଦେଖାଯାଏ, ସେହିପରି ଅନ୍ୟ କେତେକ ବ୍ୟକ୍ତି ସ୍ୱାର୍ଥପର, ନିଷ୍ଠୁର ଓ ସମ୍ବେଦନହୀନ ହେବା ମଧ୍ୟ ଦେଖାଯାଏ। ବ୍ୟକ୍ତି ସ୍ୱଭାବରେ ଏହି ଭିନ୍ନତା ପଶ୍ଚାତରେ ନାନା ସାମାଜିକ, ପ୍ରାକୃତିକ, ସାଂସ୍କୃତିକ ଓ ମନସ୍ତାତ୍ତ୍ୱିକ କାରଣ ରହିପାରେ।

ସମାଜ ଓ ରାଷ୍ଟ୍ର ଯେତେ ସୁବ୍ୟବସ୍ଥିତ ହୋଇଛି ବ୍ୟକ୍ତିର ସାମାଜିକ ଦାୟିତ୍ୱର ପ୍ରସଙ୍ଗ ଆସିଛି। ଆମର ଜୀବନଧାରଣ ପାଇଁ ଆମେ ଏକ ସାମାଜିକ ଜନଗୋଷ୍ଠୀ ଉପରେ ନିର୍ଭର କରିଆସିଛେ। ଜଣେ ବ୍ୟକ୍ତି ଜୀବନର ଆବଶ୍ୟକତା ପୂରଣ ପାଇଁ ସମାଜ ଉପରେ ନିର୍ଭର କରେ। ପାରସ୍ପରିକ ନିର୍ଭରଶୀଳତା ଆଧାରରେ ସାମାଜିକ ଚେତନାର ବିକାଶ ହେବା ସମାଜରେ ଦେଖାଯାଏ। ସୀମିତ ଆବଶ୍ୟକତା ଭିତରେ ଓ ଏକ ରୁଦ୍ଧ ଗୋଷ୍ଠୀରେ ବାସ କରୁଥିବା ବେଳେ ବ୍ୟକ୍ତିର ସାମାଜିକ କର୍ତ୍ତବ୍ୟ ବେଶ୍ ସଙ୍କୁଚିତ ହୋଇ ରହିଥିଲା। ଆସ୍ତେ ଆସ୍ତେ ସମାଜ ସୁବ୍ୟବସ୍ଥିତ ହେଲା ଓ ରାଷ୍ଟ୍ରୀୟ ଭାବନାର ବିକାଶ ହେଲା। ସାମାଜିକ ଓ ରାଜନୈତିକ ସଙ୍ଗଠନମାନ ଯେତିକି ଦୃଢ଼ ଭିତ୍ତି ନେଲା, ବ୍ୟକ୍ତିର ସାମାଜିକ ସମ୍ବନ୍ଧ ସେତେ ଅଧିକ ଜଟିଳ ହେଲା। ପୁନଶ୍ଚ ସଭ୍ୟତା ଯେତେ ଆଗକୁ ଗଲା ବ୍ୟକ୍ତିର ଆବଶ୍ୟକତା ସେତେ ବୃଦ୍ଧି ପାଇବାକୁ ଲାଗିଲା। ଏକଦା ଖାଦ୍ୟ, ବସ୍ତ୍ର, ବାସଗୃହ ମଣିଷର ସର୍ବନିମ୍ନ ଆବଶ୍ୟକତା ହୋଇ ରହିଥିଲା। ସେହି ସ୍ଥିତିଠାରୁ ଏବେକାର ସମାଜ ବହୁ ଆଗକୁ ଅଗ୍ରସର କରିଗଲାଣି। ବର୍ତ୍ତମାନର ସ୍ଥିତିରେ ଜୀବନର ଆବଶ୍ୟକତା ଆଶାତୀତ ଭାବେ ବୃଦ୍ଧି ପାଇଲାଣି। ସାମ୍ପ୍ରତିକ ସ୍ଥିତିରେ ଭୌତିକ ଆବଶ୍ୟକତା ବ୍ୟତୀତ ଶିକ୍ଷାପାଇବା, ଚିକିତ୍ସାର ସୁଯୋଗ ପାଇବା, ମନୋରଞ୍ଜନ ପାଇଁ ପରିବେଶ ପାଇବା, ସୁସ୍ଥ ପାରିବାରିକ ଜୀବନ ପାଇଁ ଏକ ଅନୁକୂଳ ବାତାବରଣ ପାଇବା ମଧ୍ୟ ବ୍ୟକ୍ତିର ଏକ ଅବଶ୍ୟକତା। ଏତଦ୍‌ବ୍ୟତୀତ ରାଜନୈତିକ ଅଧିକାର, ଆର୍ଥିକ ନିରାପତ୍ତା ଓ ମର୍ଯ୍ୟାଦାର ସହ ଜୀବନ ବ୍ୟକ୍ତିର ଆବଶ୍ୟକ। ଏକ ସୁବ୍ୟବସ୍ଥିତ ରାଷ୍ଟ୍ରରେ ନାଗରିକ ଅଧିକାର, ସ୍ୱାଭିମାନ, ସାମାଜିକ ନ୍ୟାୟ ଓ ସମତା ପ୍ରତ୍ୟେକ ବ୍ୟକ୍ତିକୁ ଯୋଗାଇବା ରାଷ୍ଟ୍ରର କର୍ତ୍ତବ୍ୟ। ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ରରେ ନାଗରିକମାନଙ୍କୁ କର୍ମସଂସ୍ଥାନ, ନିରାପତ୍ତା, ସ୍ୱାବଲମ୍ବନଶୀଳତା, ମାନବିକ ଅଧିକାର, ସାମାଜିକ ସମ୍ମାନ ଓ ଭେଦଭାବବିହୀନ ପରିବେଶ ଯୋଗାଇବାକୁ ପ୍ରାଧାନ୍ୟ ଦିଆଯାଉଛି। ସେହି ପ୍ରକ୍ରିୟାରେ ବ୍ୟକ୍ତିର ସାମାଜିକ ସମ୍ବନ୍ଧ ଅଧିକ ଜଟିଳ ହୋଇ ଉଠୁଛି ଓ ବ୍ୟକ୍ତିର ନାଗରିକ କର୍ତ୍ତବ୍ୟବୋଧର ପ୍ରଶ୍ନ ଆସୁଛି।

ଧୀରେ ଧୀରେ ଏହି ଚେତନା ସମାଜରେ ପରିବ୍ୟାପ୍ତ ହେବାରେ ଲାଗିଛି ଯେ ବ୍ୟକ୍ତିର ସାମାଜିକ ଦୃଷ୍ଟିଭଙ୍ଗୀ ଓ ନୈତିକ ଚେତନାର ବିକାଶରେ ସାମାଜିକ ପରିବେଶର

ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଛି । ସାମାଜିକ ପରିବେଶ ଉନ୍ନତ, ଶୃଙ୍ଖଳିତ ଓ ଅଧିକ ଉତ୍ତରଦାୟୀ ହେଲେ ତାର ପ୍ରଭାବରେ ବ୍ୟକ୍ତିମାନେ ଶୃଙ୍ଖଳିତ ହୁଅନ୍ତି । ସମାଜରେ ନାଗରିକ ସଚେତନତାର ସ୍ତର ଉନ୍ନତ ହେଲେ ଓ ଉଚ୍ଚ କର୍ମସଂସ୍କୃତିର ବାତାବରଣ ରହିଲେ ତାର ପ୍ରଭାବରେ ବ୍ୟକ୍ତିଗତ ଜୀବନ ଶୃଙ୍ଖଳିତ ହୋଇଥାଏ । ବ୍ୟକ୍ତି-ଚେତନା ଯେତେ ଅଧିକ ସାମାଜିକ ଚେତନାରେ ରୂପାନ୍ତରିତ ହୁଏ ଅର୍ଥାତ୍ ବୃହତ୍ତର ସମାଜ ପ୍ରତି ଏକ ନୈତିକ ସଂପୃକ୍ତି ଆସେ, ଜୀବନର ମାନ ସେତେ ଉନ୍ନତ ହୋଇଥାଏ । ବ୍ୟକ୍ତି ଯଦି ଏହି ଭାବନାର ଅଧିକାରୀ ହୁଏ ଯେ ତାର ସୁଖ, ଶାନ୍ତି ବୃହତ୍ତର ସମାଜର ସୁଖ, ଶାନ୍ତିର ପରିଣତି ତେବେ ତାର ଚେତନା ଉନ୍ନତ ହୋଇଥାଏ । ସୁତରାଂ ନିଜର କର୍ତ୍ତବ୍ୟ ପ୍ରତି ତା ଭିତରେ ଅଙ୍ଗୀକାରବଦ୍ଧତା ଆସିଥାଏ ।

ଗୋଟିଏ ସମୟରେ ସମାଜରେ ବହୁ ଅଜ୍ଞତା ଭରି ରହିଥିଲା । ଜ୍ଞାନ, ବିଜ୍ଞାନର ବିକାଶ ଅଭାବରେ ଜୀବନ ଅତ୍ୟନ୍ତ ବିପଦଶଙ୍କୁଳ ଥିଲା । ରାଜ୍ୟ ରାଜ୍ୟ ମଧ୍ୟରେ ତିକ୍ତତା ଓ ଯୁଦ୍ଧ ଏକ ସାଧାରଣ ଘଟଣା ଥିଲା । ସମାଜରେ ସାମନ୍ତବାଦୀ ମାନସିକତା, ଉଚ୍ଚ-ନୀଚ ଭେଦଭାବ ଓ ମାନବିକ ଅଧିକାରର ଉଲଙ୍ଘନ ବ୍ୟାପକ ଭାବେ ରହିଥିଲା । ସେହି ସମୟରେ ପାରଲୌକିକ ଜୀବନଦୃଷ୍ଟି, ପୂଜାପାର୍ବଣ ଜନିତ କର୍ମକାଣ୍ଡ ଓ କୁସଂସ୍କାର ଜୀବନ ପ୍ରବାହର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ଯାଇଥିଲା । ଭୟ, ନିରାପଦବିହୀନ ଜୀବନଧାରାରେ ଅସହାୟ ମନେ କରୁଥିବା ଲୋକମାନେ ଦିଅଁ-ଦେବତାଙ୍କୁ କଳ୍ପନା କରିବା ଓ ଆପଦ ବିପଦରେ ଦିଅଁ-ଦେବତାଙ୍କ ପାଖରେ ଶରଣ ପସିବାର ମନୋଭାବ ସାଧାରଣ ଘଟଣା ଥିଲା । ଭୟ, ବିଶ୍ୱାସ ଓ ଭାଗ୍ୟବାଦ ସାମାଜିକ ମନସ୍ତତ୍ତ୍ୱରେ ଗଭୀର ପ୍ରଭାବ ବିସ୍ତାରକରି ରହିଥିଲା । କର୍ମ ହିଁ ପୂଜା ପରିବର୍ତ୍ତେ ପୂଜା-ଆରାଧନା ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଥିଲା । ଐହିକ ଜୀବନକୁ ସୁଖ, ଶାନ୍ତିମୟ କରିବା ପାଇଁ ପ୍ରଚେଷ୍ଟା ପରିବର୍ତ୍ତେ ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତି ଜୀବନର ପରମ ଲକ୍ଷ୍ୟ ହୋଇ ରହିଥିଲା । ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ପରିବର୍ତ୍ତେ ତାର ପାରଲୌକିକ ସ୍ଥିତି ପାଇଁ ବିଭିନ୍ନ ଧାର୍ମିକ କର୍ମକାଣ୍ଡ ସମାଜରେ ବିସ୍ତାରଲାଭ କରିଥିଲା । ଏବେ ବି ଧର୍ମର ଗଭୀର ପ୍ରଭାବ ଥିବା ସମାଜରେ ନାଗରିକ କର୍ତ୍ତବ୍ୟବୋଧ ଅପେକ୍ଷା ପାରଲୌକିକ ଜୀବନଦୃଷ୍ଟି, ଅହେତୁକ ବିଶ୍ୱାସ ଓ ନାନା କର୍ମକାଣ୍ଡ ଜନିତ କୁସଂସ୍କାର ବ୍ୟାପକ ଥିବା ଦେଖାଯାଏ ।

ସାମାଜିକ ବିକାଶ ପ୍ରକ୍ରିୟାରେ କେହି କେହି ସଂସ୍କାରକ ଓ ଚିନ୍ତାଶୀଳ ବ୍ୟକ୍ତି ସାମାଜିକ କ୍ଷୟଶୀଳତା, କୁସଂସ୍କାର ଓ ମାନବିକ ଅଜ୍ଞତାକୁ ଅନୁଭବ କରିଛନ୍ତି । ଜୀବନର

ଗୁଣାତ୍ମକ ମାନରେ ପରିବର୍ତ୍ତନ ଆଣିବା ପାଇଁ ସେମାନେ ନୂତନ ଚିନ୍ତାର ସୂତ୍ରପାତ କରିବାକୁ କିଛି ପ୍ରୟାସ କରିଛନ୍ତି। ସମାଜର ମନ୍ଦବ୍ୟବସ୍ଥା, ମାନବିକ ଅଜ୍ଞତା, ପ୍ରଚଳିତ ଅହେତୁକ ପରମ୍ପରା ଓ ଭେଦଭାବଜନିତ ପରିବେଶ ବିରୁଦ୍ଧରେ ନିଜର ସ୍ୱର ଉଠାଇଛନ୍ତି। ହୁଏତ ସେମାନେ ନିଜ ସମ ସାମୟିକ ସମାଜରେ ବହୁ ବିରୋଧର ସମ୍ମୁଖୀନ ହୋଇଛନ୍ତି, ନିନ୍ଦା ପାଇଛନ୍ତି ବା ଜୀବନ ଦେଇଛନ୍ତି। ତଥାପି ସେହିମାନେ ହିଁ ସମାଜକୁ ବାଟ ଦେଖାଇଛନ୍ତି, ବିଚାରଶୀଳ ଦୃଷ୍ଟିର ବିକାଶ ପାଇଁ ଅବଦାନ ଦେଇଛନ୍ତି ଓ ସଭ୍ୟତାର ଅଗ୍ରଗତିରେ ନିଜର ସ୍ୱାକ୍ଷର ରଖିଛନ୍ତି। ସମାଜରୁ ଅଜ୍ଞତା, ଅନ୍ୟାୟ, ନିରକ୍ଷରତା, ଅମାନବିକତା ଓ ଭେଦଭାବ ଜନିତ ମାନସିକତା ଦୂର କରିବାରେ ଯେଉଁମାନେ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି ସେମାନେ ହିଁ ସମାଜର ପଥପ୍ରଦର୍ଶକ ହୋଇଛନ୍ତି। କିଛି ବ୍ୟକ୍ତିଙ୍କର ଜୀବନବ୍ୟାପୀ ଗବେଷଣା, ସମାଜରୁ ଦୁଃଖଦୁର୍ଦ୍ଦଶା ଦୂର କରିବାରେ ସଂପୃକ୍ତି ଓ ମାନବିକ ମୂଲ୍ୟବୋଧର ପ୍ରସାର ଦିଗରେ ପ୍ରୟାସ ଯୋଗୁଁ ସମାଜର ବିକାଶ ହୋଇଛି। ଜ୍ଞାନବିଜ୍ଞାନର ନୂଆ ନୂଆ ଭାବନା ଆସିଛି, ମାନବିକ ସମତା ଓ ସଂପ୍ରୀତିର ବାର୍ତ୍ତା ଭିତ୍ତି ନେଇଛି, ରାଜନୈତିକ ଚେତନାର ବିକାଶ ହୋଇଛି ଓ ବ୍ୟକ୍ତିର ନୈତିକ କର୍ତ୍ତବ୍ୟବୋଧ ବୃହତ୍ତର ପରିବେଶକୁ ପ୍ରସାରିତ ହୋଇଛି। ସାମାଜିକ କ୍ରମବିକାଶର ଏକ ସୁଦୀର୍ଘ ଇତିହାସ ରହିଛି। ଆଜି ସଭ୍ୟତା ଯେଉଁ ସ୍ଥିତିରେ ରହିଛି ତାହା ପଶ୍ଚାତରେ ଆମ ପିତା, ପିତାମହ, ପ୍ରପିତାମହମାନଙ୍କର ଯଥେଷ୍ଟ ଅବଦାନ ରହିଛି। ଏକ ଆଦିମ ସ୍ଥିତିରୁ ନାନା କ୍ରମବିବର୍ତ୍ତନ ମଧ୍ୟ ଦେଇ ସମାଜର ରାଜନୈତିକ, ସାଂସ୍କୃତିକ, ଅର୍ଥନୈତିକ ଓ ଶୈକ୍ଷିକ ପରିବେଶ ଉନ୍ନତ ହୋଇଛି। ଏହି ଉନ୍ନତିର ଧାରା ଯେ ଏକ ନିରନ୍ତର ପ୍ରକ୍ରିୟା ଏହା ଅନସ୍ୱୀକାର୍ଯ୍ୟ।

ତେବେ ସଭ୍ୟତାର ଏହା ଏକ ବିଡମ୍ବନା ଯେ ମଣିଷ ସମାଜ ସର୍ବଦା କିଛି ନା କିଛି ସଙ୍କଟର ସମ୍ମୁଖୀନ ହୋଇଛି। ସୁଖଶାନ୍ତି ଭରା ଜୀବନ ଓ ଏକ ପ୍ରୀତିଭରା ବିଶ୍ୱ ସମଗ୍ର ମନୁଷ୍ୟ ସମାଜ ପାଇଁ କେବେ ଉପଲବ୍ଧ ହୋଇ ନାହିଁ। ରାଜତନ୍ତ୍ର ଓ ସାମନ୍ତବାଦରୁ ମୁକ୍ତ ହୋଇ ଗଣତନ୍ତ୍ର ଆସିଲେ ମଣିଷ ଜାତିର ନବଜନ୍ମ ହେବ ବୋଲି ଏକ ସମୟରେ ବିଶ୍ୱାସ କରାଯାଉଥିଲା। ପୁଞ୍ଜିବାଦ ଯାଇ ସମାଜବାଦ ଆସିଲେ ସମାଜରୁ ସକଳ ଆର୍ଥିକ ବିଷମତା ଓ ଦାରିଦ୍ର୍ୟ ଦୂର ହେବ ବୋଲି ଏକ ବିଚାର ଗୋଟିଏ ସମୟରେ ବେଶ୍ କ୍ରାନ୍ତିକାରୀ ଥିଲା। ଆମ ଦେଶରେ ସାମ୍ରାଜ୍ୟବାଦ ଲୋପ ପାଇ ସ୍ୱାଧୀନତା ଆସିଲେ ଦେଶର ସବୁ ସଙ୍କଟ ଚାଲିଯିବ ବୋଲି ଏକ ବିଶ୍ୱାସ ଏକ ସମୟରେ ସୃଷ୍ଟି ହୋଇଥିଲା। ଜାତିସଂଘର ପ୍ରତିଷ୍ଠା ହେଲେ ପୃଥିବୀରୁ ଯୁଦ୍ଧର ଭୟ ଚାଲିଯିବ ବୋଲି ବିଶ୍ୱାସ ସାରା ପୃଥିବୀରେ ଏକ ଆଲୋଡନ

ଆଣିଥିଲା। ମାନବିକ ଅଧିକାରର ବିଶ୍ୱଘୋଷଣାଦ୍ୱାରା ପୃଥିବୀରୁ ସକଳ ଭେଦଭାବ ଦୂର ହୋଇଯିବ ବୋଲି ବିଶ୍ୱାସ କରାଯାଉଥିଲା। ଅନେକ ସ୍ୱପ୍ନ ତ ପୂରଣ ହୋଇଛି, ତଥାପି ମାନବୀୟ ସଙ୍କଟ ଦୂର ହୋଇ ନାହିଁ। ବରଂ ସଭ୍ୟତାର ଅଗ୍ରଗତି ସହ କେତେକ ସଙ୍କଟ ଅଧିକ ତୀବ୍ର ହେବାରେ ଲାଗିଛି। ଜନସଂଖ୍ୟାର ଚାପ, ପରିବେଶ ପ୍ରଦୂଷଣ, ସନ୍ତ୍ରାସବାଦ, ସାମ୍ପ୍ରଦାୟିକତା, ତୃତୀୟ ବିଶ୍ୱର ଦାରିଦ୍ର୍ୟ ଓ ଅପରାଧ ପ୍ରବଣତା ସମାଜରେ ଅଧିକ ଉତ୍କଟ ହେବାରେ ଲାଗିଛି। ମଣିଷ ନିଜର ବିଚାର ବୁଦ୍ଧି ପ୍ରୟୋଗ କରି ଯେକୌଣସି ସମସ୍ୟାର ସମାଧାନ ବାହାର କରିବାକୁ ଆଦିମ କାଳରୁ ପ୍ରୟାସ କରିଆସିଛି। ସେହି ପ୍ରୟାସରୁ ହିଁ ସଭ୍ୟତାର ଏତିକି ବିକାଶ ଘଟିଛି। ଯେକୌଣସି ସଙ୍କଟରେ ସମାଧାନ ପାଇଁ ତଥା ଏକ ପ୍ରୀତିଭରା ବିଶ୍ୱଦୃଷ୍ଟିର ବିକାଶ ପାଇଁ ବିଚାରଶୀଳ ଦୃଷ୍ଟି ଓ ସମ୍ବେଦନଶୀଳ ମନୋଭାବର ମହତ୍ତ୍ୱପୂର୍ଣ୍ଣ ଗୁରୁତ୍ୱ ରହିଛି। ସମାଜରେ ଏହି ମୂଲ୍ୟବୋଧ ଯେତେ ଦୃଢ ଭିତ୍ତି ନେବ ଜୀବନର ଗୁଣାତ୍ମକ ମାନ ସେତେ ଉନ୍ନତ ହେବ ବୋଲି ଆଶା କରାଯାଏ।

ସୁଖର କଥା ବିଭିନ୍ନ ସଭ୍ୟତାରେ କିଛି ମହାକାଂକ୍ଷୀ ବ୍ୟକ୍ତି ଜନଜୀବନକୁ ଉନ୍ନତ କରିବା ପାଇଁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି। ସେହିମାନଙ୍କର ସୃଜନଶୀଳତା, ବିଚାରଶୀଳ ମନୋଭାବ ଓ ସମ୍ବେଦନଶୀଳ ଜୀବନବୋଧ ସଭ୍ୟତାର ଅଗ୍ରଗତିରେ ଯେ ବଡ ପ୍ରେରଣାର ଉତ୍ସ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହା ଏକ ଆନୁଭବିକ ସତ୍ୟ ଯେ ବିକାଶ, ପ୍ରୀତିଭରା ପରିବେଶ ଓ ଏକ ନ୍ୟାୟପୂର୍ଣ୍ଣ ବିଶ୍ୱ ମଣିଷର ପ୍ରୟାସରେ ସମ୍ଭବ ହେବ, ଏହା ଆକାଶରୁ ଖସିବ ନାହିଁ ବା କେଉଁ କଳ୍ପିତ ଦେବତାର ଆଶୀର୍ବାଦରୁ ଆସିବ ନାହିଁ। ବ୍ୟକ୍ତି ଓ ଗୋଷ୍ଠୀର ଜୀବନ-ଦୃଷ୍ଟି ଓ ନୈତିକ କର୍ତ୍ତବ୍ୟବୋଧ ଯେତେ ଅଧିକ ପ୍ରସାରିତ ହେବ ତାହା ଏକ ଉନ୍ନତ ସାମାଜିକ ଚେତନାର ବିକାଶରେ ସହାୟକ ହେବ। ଏକ ପ୍ରୀତିପୂର୍ଣ୍ଣ ମାନବ ସମାଜର ଅଭ୍ୟୁଦୟ ପାଇଁ ଚେତନାର ଏହି ରୂପାନ୍ତର ଅବଶ୍ୟମ୍ଭାବୀ ମନେହୁଏ।

(ପ୍ରଗତିବାଦୀ, ୨୦.୦୪.୨୦୧୬)

# ବୈଚାରିକ କ୍ରାନ୍ତି

**ବୈଜ୍ଞାନିକ** କ୍ରିୟାଶୀଳତାର ବିକାଶ ପୂର୍ବରୁ ଧାର୍ମିକ ବିଶ୍ୱାସ ସାମାଜିକ ଜୀବନ ପ୍ରବାହରେ ଗଭୀର ଭିତ୍ତି ନେଇଥିଲା । ଯେଉଁ ଯୁଗରେ ଧର୍ମମାନଙ୍କର ବିକାଶ ହୋଇଥିଲା ସେହି ସମୟରେ ବହୁ ଅଜ୍ଞତା ଓ ପାରଲୌକିକ ବିଶ୍ୱାସ ପ୍ରତ୍ୟେକ ସମାଜରେ ପରିବ୍ୟାପ୍ତ ଥିଲା । ପ୍ରତ୍ୟେକ ଧର୍ମ ନିଜସ୍ୱ ଧାରାରେ ପ୍ରାକୃତିକ ଘଟଣା-ପ୍ରବାହ, ଜଗତର ଉତ୍ପତ୍ତି ଓ ଜୀବନର ଘନଘଟା ଇତ୍ୟାଦିକୁ ପରିକଳ୍ପନା କରିଥିଲା । ଅଧିକାଂଶ ଧର୍ମରେ ଏହି ଭାବନା ରହିଥିଲା ଯେ ବିଶ୍ୱବ୍ରହ୍ମାଣ୍ଡ ଓ ଆମ ପୃଥିବୀକୁ ଏକ ସର୍ବଶକ୍ତିମାନ ଈଶ୍ୱର ସୃଷ୍ଟି କରିଛନ୍ତି । ପୃଥିବୀ ପୃଷ୍ଠରେ ମଣିଷର ସୁଖ ଶାନ୍ତି ପାଇଁ ପ୍ରାଣୀଜଗତକୁ ବି ଈଶ୍ୱର ସର୍ଜନା କରିଛନ୍ତି । ଈଶ୍ୱର ନିଜସ୍ୱ ସ୍ୱରୂପରେ ମଣିଷକୁ ରୂପ ଦେଇଛନ୍ତି । ପ୍ରକୃତିର ସକଳ ଘଟଣା ଈଶ୍ୱର ନିୟନ୍ତ୍ରିତ । ସ୍ୱର୍ଗ ନରକ ରହିଛି । ବ୍ୟକ୍ତିର ମୃତ୍ୟୁପରେ ବ୍ୟକ୍ତି ପୁନର୍ଜନ୍ମ ପାଏ ବା ମୁକ୍ତି ପାଏ । କେତେକ ଧର୍ମରେ ପୁନର୍ଜନ୍ମ ଭାବନା ରହିଥିବା ବେଳେ ଅନ୍ୟ କେତେକ ଧର୍ମରେ ପୁନର୍ଜନ୍ମ ପରିବର୍ତ୍ତେ ସ୍ୱର୍ଗ-ନରକର ଭାବନା ରହିଛି । କେତେକ ଧର୍ମର ବିଶ୍ୱାସ ଅନୁଯାୟୀ ମଣିଷର ଆତ୍ମା ରହିଛି, ଇତର ପ୍ରାଣୀଙ୍କର ଆତ୍ମା ନାହିଁ । ଅନ୍ୟ କେତେକ ଧର୍ମର ବିଶ୍ୱାସାନୁଯାୟୀ ପ୍ରତ୍ୟେକ ପ୍ରାଣୀ, ମନୁଷ୍ୟ ହେଉ ବା ମନୁଷ୍ୟେତର ପ୍ରାଣୀ ହେଉ, ସମସ୍ତଙ୍କର ଏକ ଅବିନାଶୀ ଆତ୍ମା ରହିଛି । ସ୍ୱର୍ଗ-ନରକରେ ବିଶ୍ୱାସ ପୋଷଣ କରୁଥିବା ଧର୍ମମାନେ କଳ୍ପନା କରିଛନ୍ତି ଯେ ମୃତ୍ୟୁ ପରେ ପ୍ରତ୍ୟେକ ମଣିଷର ଆତ୍ମା ଏକ ଭିନ୍ନ ସ୍ଥିତିରେ ରହେ । ବିଚାର ଦିବସ ଆସିବ, ଯେଉଁଦିନ ଈଶ୍ୱର ପ୍ରତ୍ୟେକ ବ୍ୟକ୍ତିର କାର୍ଯ୍ୟର ମୂଲ୍ୟାୟନ କରି ତାର ଆତ୍ମାକୁ ଅନନ୍ତ କାଳ ପାଇଁ ସ୍ୱର୍ଗକୁ ବା ନରକକୁ ପଠାଇବେ । ସେହିପରି ଜୀବନର ଦୁଃଖ, ଘନଘଟା ଓ ପ୍ରାକୃତିକ ବିପଦମାନଙ୍କୁ ପ୍ରତ୍ୟେକ ଧର୍ମ ନିଜସ୍ୱ ଧାରାରେ ବ୍ୟାଖ୍ୟା କରିବାକୁ ଉଦ୍ୟମ କରିଛି । ବୈଜ୍ଞାନିକ ମନୋଭାବର ବିକାଶ ପୂର୍ବରୁ ସମସ୍ତ ଘଟଣା ପ୍ରବାହକୁ ଓ ପ୍ରାକୃତିକ ଅବସ୍ଥିତିକୁ ଧର୍ମମାନ ନିଜସ୍ୱ ପରିକଳ୍ପନା ଭିତରେ ଅବବୋଧ କରିଛନ୍ତି । ଏକ ସର୍ବଶକ୍ତିମାନ ଓ ସର୍ବଜ୍ଞ ଈଶ୍ୱରଙ୍କୁ ପରିକଳ୍ପନା କଲା ପରେ ସମସ୍ତ ଅବସ୍ଥିତି ଓ ଘଟଣା ପ୍ରବାହକୁ ଈଶ୍ୱର-ନିୟନ୍ତ୍ରିତ ବ୍ୟବସ୍ଥାରେ ବ୍ୟାଖ୍ୟା କରିବାର ପ୍ରୟାସ ହୋଇଛି । ଧର୍ମମାନଙ୍କର ଆନୁଷ୍ଠାନିକ ରୂପରେଖ ପରେ ଦାର୍ଶନିକ ବିଚାର ମାଧ୍ୟମରେ ଯେତେବେଳେ ଚିନ୍ତାରାଜ୍ୟରେ ଆଲୋଡନ ଆସିଛି, ଧର୍ମର ବିଶ୍ୱାସ ସକଳକୁ କିଛି ଯୁକ୍ତିଶୀଳ

ଆଧାର ଦେବାକୁ ଦର୍ଶନ ଚେଷ୍ଟା କରିଛି । ମଧ୍ୟଯୁଗୀୟ ଚିନ୍ତା ଚେତନାରେ ଧର୍ମ ଓ ଦର୍ଶନ ପରସ୍ପରର ପରିପୂରକ ଭାବେ ବୌଦ୍ଧିକ ଚିନ୍ତାରାଜ୍ୟକୁ ନିୟନ୍ତ୍ରଣ କରିଛନ୍ତି । ସେତେବେଳର ବୌଦ୍ଧିକ ପରିବେଶ ଧାର୍ମିକ ଚିନ୍ତା ଚେତନାଦ୍ୱାରା ନିୟନ୍ତ୍ରିତ ହୋଇଛି । ସକଳ ଜ୍ଞାନ ଧର୍ମଗ୍ରନ୍ଥରେ ରହିଛି ବୋଲି ପ୍ରତ୍ୟେକ ଧର୍ମଗୋଷ୍ଠୀ ଭିତରେ ବିଶ୍ୱାସ ଦୃଢ ହୋଇଛି । ନିଜ ଧର୍ମଗ୍ରନ୍ଥର ଭାବନା ସକଳକୁ ଅଭ୍ରାନ୍ତ, ଶାଶ୍ୱତ ଓ ଧ୍ରୁବ ସତ୍ୟ ବୋଲି ପ୍ରତ୍ୟେକ ଧର୍ମ ପରମ୍ପରାରେ ବିଶ୍ୱାସ କରାଯାଇଛି । ପ୍ରତ୍ୟେକ ଧର୍ମ ପରମ୍ପରାରେ ଏହି ଭାବନା ଦୃଢ ହୋଇଛି ଯେ ଧର୍ମଗ୍ରନ୍ଥର ଭାବନାମାନ ଈଶ୍ୱର ଦେଇଛନ୍ତି ବା ଈଶ୍ୱର-ପ୍ରେରିତ ବ୍ୟକ୍ତିଙ୍କ ପାଖରୁ ଏହା ଉଦ୍ଭବ ହୋଇଛି; ଈଶ୍ୱରୀୟ ଜ୍ଞାନ ହୋଇଥିବାରୁ ଏହା ସତ୍ୟ ଓ ଶାଶ୍ୱତ । ଧର୍ମଗ୍ରନ୍ଥର ଭାବନାକୁ ସନ୍ଦେହ କରିବା ବା ସମାଲୋଚନା କରିବା ଏକ ଗର୍ହିତ ଓ ପାପ କାର୍ଯ୍ୟ । ବିଜ୍ଞାନର ଯୁଗ ଆସିବା ପର୍ଯ୍ୟନ୍ତ ଏହି ଭାବଧାରା ଓ ଜୀବନଦୃଷ୍ଟି ସବୁ ସଂସ୍କୃତିରେ ଦୃଢ ଭିତ୍ତି ନେଇଥିଲା । ଧର୍ମକୁ ଆଧାର କରି ସାମନ୍ତବାଦ, ରାଜତନ୍ତ୍ର ସେ ଯୁଗର ସାମାଜିକ ଓ ରାଜନୈତିକ ଆଦର୍ଶ ହୋଇ ରହିଥିଲା ।

ତେବେ ଏହି ପୃଷ୍ଠଭୂମିରେ ୟୁରୋପରେ ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି ହେଲା । ୟୁରୋପୀୟ ନବଜାଗରଣ ବା ରିନାଁସା ଏକ ବୈପ୍ଲବିକ ବୌଦ୍ଧିକ ଦିଗନ୍ତ ସୃଷ୍ଟି କଲା । ନବଜାଗରଣ ଓ ଜ୍ଞାନଦୀପ୍ତିର ଯୁଗ ଚିନ୍ତା ଜଗତରେ ତୁମୁଳ ଆଲୋଡନର ସୂତ୍ରପାତ କଲା । ସବୁ କ୍ଷେତ୍ରରେ ଧର୍ମଗ୍ରନ୍ଥର ବାଣୀକୁ ବିଶ୍ୱାସ କରିବା ପରିବର୍ତ୍ତେ ବିଶାଳ ପ୍ରକୃତିକୁ ପର୍ଯ୍ୟବେକ୍ଷଣ କରିବାକୁ ମାନସିକତା ଆସିଲା । ଧୀରେ ଧୀରେ କେତେକ ବୈଜ୍ଞାନିକ ଉପକରଣ ମାଧ୍ୟମରେ ପ୍ରକୃତିର ବିଶାଳତାକୁ ମନୁଷ୍ୟ ବୁଝିବାକୁ ପ୍ରୟାସ କଲା । ମନୁଷ୍ୟ ଜାଣିବାକୁ ପାଇଲା ଯେ ଏ ବିଶାଳ ବିଶ୍ୱରେ କୋଟି କୋଟି ଗ୍ରହମଣ୍ଡଳ ରହିଛି । ଆମ ସୌରମଣ୍ଡଳର କେନ୍ଦ୍ରରେ ସୂର୍ଯ୍ୟ ରହିଛି ଓ ପୃଥିବୀ ଏକ ଗ୍ରହ ଭାବେ ସୂର୍ଯ୍ୟ ଚତୁଃପାର୍ଶ୍ୱରେ ଘୂର୍ଣ୍ଣାୟମାନ । ପୃଥିବୀ ଓ ଗ୍ରହମଣ୍ଡଳ କେତେ ହଜାର ବର୍ଷ ତଳେ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇ ନାହିଁ, ବରଂ କୋଟି କୋଟି ବର୍ଷ ଧରି ନାନା ପରିବର୍ତ୍ତନ ଧାରାରେ ଆଜିର ସ୍ଥିତିକୁ ଆସିଛି । ସେହିପରି ଆମ ପରିବେଶର ଜୀବଜଗତ କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ପ୍ରକ୍ରିୟାରେ ରୂପ ନେଇଛି । ପାହାଡ, ପର୍ବତ, ନଦୀ, ସମୁଦ୍ର କୋଟି କୋଟି ବର୍ଷର ପରିବର୍ତ୍ତନ ଧାରାରେ ଉଦ୍ଭବ ହୋଇଛି । ସ୍ୱର୍ଗ, ନରକର ଅବସ୍ଥିତି ହିଁ ନାହିଁ । ଏସବୁ କେବଳ କପୋଳକଳ୍ପିତ କାହାଣୀ ମାତ୍ର । ବିଜ୍ଞାନର ବିକାଶ ଦେଇ ଯେତେବେଳେ ଏସବୁ ତଥ୍ୟ ପ୍ରକାଶ ପାଇଲା ସେତେବେଳେ ଧର୍ମ ପ୍ରତି ଥିବା ଦୃଷ୍ଟିଭଙ୍ଗୀରେ ନାନା ପରିବର୍ତ୍ତନର ସୂତ୍ରପାତ ହେଲା । ଧର୍ମଗ୍ରନ୍ଥର ବାଣୀ ଯେ ଅଭ୍ରାନ୍ତ

ନୁହଁ ବା ଈଶ୍ୱର-ପ୍ରେରିତ ଦିବ୍ୟଜ୍ଞାନ ନୁହଁ ଏହି ଭାବନା ଧୀରେ ଧୀରେ ଦୃଢ ଭିତ୍ତି ନେବାକୁ ଲାଗିଲା। ଜୀବନର ଅନ୍ତିମ ଲକ୍ଷ୍ୟ ନେଇ ଧର୍ମମାନଙ୍କରେ ଯେଉଁ ସବୁ କଳ୍ପନା ବ୍ୟକ୍ତ ହୋଇଥିଲା ତାହା ମଧ୍ୟ ବାସ୍ତବ ଅନୁଭୂତି ଆଧାରରେ ଅସତ୍ୟ ପ୍ରମାଣିତ ହେବାକୁ ଲାଗିଲା। ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ସହ ବିଭିନ୍ନ ଧର୍ମ, ସଂସ୍କୃତିର ପ୍ରାଚୀନ ଗ୍ରନ୍ଥମାନ ବିଭିନ୍ନ ଭାଷାରେ ଅନୁବାଦିତ ହେବା ପରେ ସେସବୁ ଉପରେ ତୁଳନାତ୍ମକ ଅନୁଶୀଳନ ହେଲା। ଧର୍ମମାନଙ୍କର ତୁଳନାତ୍ମକ ବିଶ୍ଳେଷଣରୁ ଏହା ସ୍ପଷ୍ଟ ହେବାକୁ ଲାଗିଲା ଯେ ଈଶ୍ୱର, ଆତ୍ମା, ଜୀବନର ଅନ୍ତିମ ଲକ୍ଷ୍ୟ, ଦୁଃଖ-ଦୁର୍ଦ୍ଦଶାର କାରଣ, ବିଶ୍ୱର ଉତ୍ପତ୍ତି ଇତ୍ୟାଦି ପ୍ରସଙ୍ଗମାନଙ୍କ ଉପରେ ଧର୍ମମାନଙ୍କର ସିଦ୍ଧାନ୍ତମାନ ପରସ୍ପରବିରୋଧୀ। ସେଗୁଡିକ ଯେହେତୁ ଅତୀତର କଳ୍ପନା ଓ ବିଭିନ୍ନ ଭୌଗୋଳିକ ଭୂଖଣ୍ଡର ସାଂସ୍କୃତିକ ଜୀବନପ୍ରବାହ ମଧ୍ୟରେ ରୂପ ନେଇଥିଲା, ସେସବୁ ସତ୍ୟ ଆଧାରିତ ବା ଯୁକ୍ତିସଙ୍ଗତ ସିଦ୍ଧାନ୍ତ ନୁହେଁ। ମଣିଷର ଜ୍ଞାନବିଜ୍ଞାନର କ୍ଷେତ୍ର ଅତି ସୀମିତ ଥିବା ବେଳେ ସେ ଯୁଗର କିଛି ଚିନ୍ତାଶୀଳ ବ୍ୟକ୍ତି ଜୀବନର କିଛି ଗୂଢ ରହସ୍ୟକୁ ବ୍ୟାଖ୍ୟା କରିବାକୁ ଏହିପରି କଳ୍ପନାମାନ ବ୍ୟକ୍ତ କରିଛନ୍ତି। ସେହିପରି ବିଶ୍ୱ ସମ୍ପର୍କରେ କେତେ କେତେ କାଳ୍ପନିକ କାହାଣୀ ରୋଚକ ଧାରାରେ ପରିକଳ୍ପନା କରାଯାଇଛି। ଯେଉଁ ଯୁଗରେ ଧର୍ମର ବଳିଷ୍ଠ ପ୍ରଭାବ ସମାଜରେ ରହିଥିଲା, ସେହି ସମୟରେ ସମଗ୍ର ପୃଥିବୀରେ ରାଜତନ୍ତ୍ର ରହିଥିଲା। ରାଜନୈତିକ ଚେତନାରେ ରାଜାମାନେ ଥିଲେ ଈଶ୍ୱରଙ୍କର ପ୍ରତିନିଧି ବା ଚଳନ୍ତି ବିଷ୍ଣୁ। ରାଜାଙ୍କ ବିରୁଦ୍ଧରେ ସ୍ୱର ଉଠାଇବା ଅର୍ଥ ଈଶ୍ୱରଙ୍କ ବିରୋଧରେ ଯିବା। ସେହିପରି ସାମାଜିକ ଜୀବନଧାରାରେ ସାମନ୍ତବାଦ ପ୍ରାଧାନ୍ୟ ବିସ୍ତାର କରି ରହିଥିଲା। ଶିକ୍ଷା ସାମନ୍ତଶ୍ରେଣୀର ନିୟନ୍ତ୍ରଣରେ ରହିଥିଲା। ସମାଜର ଶାସକ ଶ୍ରେଣୀ ଓ ପୂଜକ ଶ୍ରେଣୀ ଥିଲେ ସାମନ୍ତବର୍ଗ। ସେହିମାନେ ସମାଜକୁ ସବୁ କ୍ଷେତ୍ରରେ ନିୟନ୍ତ୍ରଣରେ ରଖିଥିଲେ। ସବୁ କିଛିକୁ ଈଶ୍ୱରୀୟ ବିଧିବିଧାନ ଭାବେ ସେମାନେ ଭାବନା ସୃଷ୍ଟି କରିଥିଲେ।

ତେବେ ନବଜାଗରଣ ଓ ଜ୍ଞାନଦୀପ୍ତିର ଯୁଗ ଆସିବା ପରେ ବିଜ୍ଞାନର ଯେଉଁ ବିକାଶ ହେଲା ତାହା ଧାର୍ମିକ ବିଶ୍ୱାସ ସକଳକୁ ଅସତ୍ୟ ବୋଲି ଦର୍ଶାଇବା ସହ ସାମାଜିକ ଜୀବନଧାରାରେ ଏକ ଭିନ୍ନ ସାଂସ୍କୃତିକ ଭାବଧାରାକୁ ସୃଷ୍ଟି କଲା। ରାଜତନ୍ତ୍ର ବିରୁଦ୍ଧରେ କେତେକ ରାଷ୍ଟ୍ରରେ ବିପ୍ଳବ ସଂଘଟିତ ହେଲା। ମାନବବାଦ ଏକ ନୂତନ ଜୀବନଦର୍ଶନ ଭାବେ ଚିନ୍ତାରାଜ୍ୟରେ ଆଲୋଡନ ସୃଷ୍ଟି କଲା। ଶିକ୍ଷା ସାମନ୍ତବାଦୀଙ୍କ ନିୟନ୍ତ୍ରଣରୁ ଯାଇ କାଳକ୍ରମେ ସାର୍ବଜନୀନ ହେବାକୁ ଲାଗିଲା। ବିଶେଷକରି ମୁଦ୍ରଣ ଯନ୍ତ୍ରର ଉଦ୍ଭାବନ ଓ ପୁସ୍ତକମାନ ପ୍ରକାଶ ପାଇବାଦ୍ୱାରା ସମାଜର ସବୁ ଲୋକ ପାଠ ପଢିବାର ଅବକାଶ ପାଇଲେ।

ଧୀରେ ଧୀରେ ଗଣତନ୍ତ୍ରର ପରିକଳ୍ପନା ଆସିଲା । ରାଜନୈତିକ ଦୃଶ୍ୟପଟରେ ଗଣତାନ୍ତ୍ରିକ ବ୍ୟବସ୍ଥା ଗୃହୀତ ହେଲା ଓ ରାଜତନ୍ତ୍ରର ବିଲୋପ ହେବାକୁ ଲାଗିଲା । ଗଣତନ୍ତ୍ର କେବଳ ରାଜନୈତିକ ବ୍ୟବସ୍ଥା ଭିତରେ ସୀମିତ ହେଲା ନାହିଁ, ବରଂ ଏହା ସାମାଜିକ ଜୀବନ ସ୍ତରକୁ ପ୍ରସାରିତ ହେଲା । ବ୍ୟକ୍ତି ସ୍ୱାଧୀନତା, ସମତା ଓ ଭ୍ରାତୃତ୍ୱଭାବ ସାମାଜିକ ଜୀବନର ମୂଲ୍ୟବୋଧ ହେଲା । ସବୁ ସମାଜରେ ନାରୀମାନଙ୍କ ପ୍ରତି ଯେଉଁ ନ୍ୟୁନ ମନୋଭାବ ରହିଥିଲା, ତାହା ମଧ୍ୟ ବଦଳିବାକୁ ଲାଗିଲା । ନାରୀ ପୁରୁଷ ନିର୍ବିଶେଷରେ ସମସ୍ତ ନାଗରିକ ମର୍ଯ୍ୟାଦାର ସହ ଜୀବନ ଅତିବାହିତ କରିବା, ଆଇନ ଦୃଷ୍ଟିରେ ସମାନ ବିବେଚିତ ହେବା ଓ ନିଜ ସାମର୍ଥ୍ୟର ବିକାଶ ଘଟାଇବା ସଭ୍ୟ ଜୀବନଦୃଷ୍ଟି ଭାବେ ଉନ୍ନତ ଦେଶମାନଙ୍କରେ ଗୃହୀତ ହେଲା । ବୈଜ୍ଞାନିକ କ୍ରିୟାଶୀଳତା ଓ ମାନବବାଦ ସମାଜର ପ୍ରତ୍ୟେକ ସ୍ତରରେ ଯେଉଁ ବୈଚାରିକ ଆଲୋଡନ ସୃଷ୍ଟି କଲେ ତାହାର ପ୍ରଭାବରୁ ସଭ୍ୟତାର ଏକ ସାଂସ୍କୃତିକ ଉତ୍ତରଣ ଘଟିଲା ।

ମାନବ ସଭ୍ୟତାର ଇତିହାସ ସୁଦୀର୍ଘ ହେଲେ ବି ଏହି ଦୁଇ ତିନି ଶତାବ୍ଦୀ ଭିତରେ ଜୀବନଧାରାରେ ଓ ବୌଦ୍ଧିକ ଦୃଶ୍ୟପଟରେ ଯେଉଁ ପରିବର୍ତ୍ତନମାନ ଆସିଛି ତାହା ଏକ ନୂତନ ବିଶ୍ୱ ସୃଷ୍ଟିକରିଛି । ମାନବିକ ସୃଜନଶୀଳତା ଓ ବୌଦ୍ଧିକ ଅନୁସନ୍ଧିତ୍ସା ଏକ ଆଦିମ ସ୍ଥିତିରୁ ସଭ୍ୟତାକୁ ଆଜିର ସ୍ଥିତିକୁ ଆଣିପାରିଛି । ବିଚାରଶୀଳତା, ସୃଜନଶୀଳତା ସହ ମାନବିକତାର ସମନ୍ୱୟ ହେଲେ ଏକ ସୁନ୍ଦରତର ବିଶ୍ୱ ଯେ ରୂପରେଖ ନେବ ଏହା ନିଃସନ୍ଦେହ ମନେହୁଏ ।

(ପ୍ରଗତିବାଦୀ, ୨୭.୦୭.୨୦୧୬)

# ଏକ ନୂତନ ବାର୍ତ୍ତା

ମାନବ ସଭ୍ୟତା ବହୁ ସ୍ତର ଦେଇ ଅଗ୍ରଗତି କରିଛି। ଆଜି ସଭ୍ୟତା ଯେଉଁ ସ୍ତରରେ ପହଞ୍ଚିଛି ତାହା ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି। କେତେ ଆହ୍ୱାନ ଓ ଉତ୍‌ଥାନ ପତନ ଦେଇ ଜୀବନର ମାନରେ ନାନା ଉତ୍ତରଣ ଘଟିଛି। ଏକ ଅସୁରକ୍ଷିତ ଓ ବିପଦଗ୍ରସ୍ତ ସ୍ଥିତିରୁ ଏକ ସୁରକ୍ଷିତ ଓ ସମ୍ମାନଜନକ ସ୍ଥିତିକୁ ଆସି ଜୀବନ ଅତିବାହିତ କରିବା ଆଜି ସମ୍ଭବ ହୋଇପାରିଛି। ଏହା ସମ୍ଭବ ହୋଇଛି ମାନବିକ ପ୍ରୟାସ ଓ ନିରନ୍ତର ଅନୁସନ୍ଧିତ୍ସା ଯୋଗୁ। ରୋଗ ଓ ମହାମାରୀର ଭୟ ଆଜିର ପୃଥିବୀରେ ପ୍ରାୟତଃ ନାହିଁ ଯାହା ମାତ୍ର ଗୋଟିଏ ଶତାବ୍ଦୀ ତଳେ ଗଣମୃତ୍ୟୁର କାରଣ ହେଉଥିଲା। ସେହିପରି ଆନ୍ତର୍ଜାତିକ ସ୍ତରରେ ଏହି ସଚେତନତା ବୃଦ୍ଧି ପାଇବାରେ ଲାଗିଛି ଯେ ଆଣବିକ ଯୁଦ୍ଧର ପରିଣତି ସଭ୍ୟତା ପାଇଁ ଆତ୍ମହତ୍ୟା ହେବ। ସୁତରାଂ କୌଣସି ରାଷ୍ଟ୍ର ଆଣବିକ ଯୁଦ୍ଧରେ ସଂପୃକ୍ତ ହେବା ଆଜିର ପୃଥିବୀରେ ସମ୍ଭବ ନୁହେଁ। ସାରା ପୃଥିବୀରେ ଏକ ଆନ୍ତର୍ଜାତିକ ଚେତନା ଓ ବିଶ୍ୱଦୃଷ୍ଟି କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇବାରେ ଲାଗିଛି। ଜାତିସଂଘ, ବହୁ ଆନ୍ତର୍ଜାତିକ ସଂସ୍ଥା ଓ ସଙ୍ଗଠନ, ନାନା ବହୁଦେଶୀୟ ସଂଘ, ରେଡକ୍ରସ ପରି ନାନା ମାନବହିତୈଷୀ ଅନୁଷ୍ଠାନ ସାରା ପୃଥିବୀରେ ମାନବ ସମାଜର ହିତ ପାଇଁ କାର୍ଯ୍ୟ କରୁଛନ୍ତି। କେତେକ କ୍ଷେତ୍ରରେ ବହୁରାଷ୍ଟ୍ରୀୟ ଗବେଷଣା ହୋଇ ନାନା ନୂଆ ନୂଆ ତଥ୍ୟ ପ୍ରକାଶ ପାଇବାରେ ଲାଗିଛି। କୌଣସି ସ୍ଥାନରେ କିଛି ପ୍ରାକୃତିକ ଦୁର୍ବିପାକ ହେଲେ ସମଗ୍ର ପୃଥିବୀରୁ ସହାନୁଭୂତିର ହାତ ପ୍ରସାରିତ ହୋଇପାରୁଛି। ଦେଶ ଦେଶ ଭିତରେ ସାଂସ୍କୃତିକ ଆଦାନପ୍ରଦାନ ବୃଦ୍ଧି ପାଇବାରେ ଲାଗିଛି। ଆଧୁନିକ ପ୍ରଯୁକ୍ତି ସମଗ୍ର ମଣିଷ ସମାଜକୁ ଏକତ୍ର କରିବାରେ ସହାୟକ ହେଉଛି। ପୃଥିବୀରୁ ସକଳ ଭେଦଭାବ ଦୂର କରିବାକୁ ନାନା ସଂପୃକ୍ତି ବ୍ୟକ୍ତ ହେବାରେ ଲାଗିଛି। ମାନବିକ ଅଧିକାରର ବିଶ୍ୱଘୋଷଣା ସାମାଜିକ ଭେଦଭାବର ବିଭିନ୍ନ କ୍ଷେତ୍ରକୁ ଲୋକଲୋଚନକୁ ଆଣିବା ସହ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଓ ସମ୍ମାନଜନକ ଜୀବନ ପାଇଁ ପ୍ରତ୍ୟେକ ରାଷ୍ଟ୍ରକୁ ବାଧ୍ୟ କରିଛି। ଏକ ଭ୍ରାତୃତ୍ୱପୂର୍ଣ୍ଣ ପରିବେଶ ଓ ସବୁମଣିଷଙ୍କ ପାଇଁ ସମାନତାର ବାତାବରଣ ପାଇଁ କେତେ କେତେ ଆନ୍ତର୍ଜାତିକ ଚୁକ୍ତି ଓ ସହମତି ପ୍ରକାଶ ପାଇଛି। ସଭ୍ୟତାର ଇତିହାସରେ ଏହି ନୈତିକ ଉତ୍ତରଣ ଏକ ବଡ ମାନବିକ ଉପଲବ୍ଧି କହିଲେ ଅତ୍ୟୁକ୍ତି ହେବ ନାହିଁ।

ମଣିଷ ଭିତରେ ସ୍ୱାର୍ଥପରତା ରହିଛି, ତା ସତ୍ତ୍ୱେ ମଣିଷ କେବଳ ନିଜ ସୁଖ ପାଇଁ ବଞ୍ଚେ ନାହିଁ। ପରିବାର ଓ ସମାଜର ସୁଖ ମଧ୍ୟ ତାର କାମ୍ୟ ହେବା ଉଚିତ। ନିଜ ସ୍ୱାର୍ଥଠାରୁ ଏକ ବୃହତ୍ତର ସ୍ୱାର୍ଥ ପାଇଁ କାର୍ଯ୍ୟ କରିବା ଏକ ମହତ୍ତର ଜୀବନବୋଧର ବାର୍ତ୍ତା ଦେଇଥାଏ। ଆମ ପୃଥିବୀରେ ବହୁ ଦୁଃଖ, ଯନ୍ତ୍ରଣା, ଦାରିଦ୍ର୍ୟ, ଦୁର୍ଗତି, ଭେଦଭାବ ଇତ୍ୟାଦି ରହିଛି। ପ୍ରକୃତି ମଧ୍ୟ ବେଳକେ ମଣିଷକୁ ବହୁ ଯନ୍ତ୍ରଣା ଦେଇଥାଏ। ପ୍ରାକୃତିକ ଦୁର୍ବିପାକ ମଣିଷର ସୁନାର ସଂସାରକୁ ବେଳେ ବେଳେ ଧ୍ୱଂସ କରିଦିଏ। ତେବେ ମଣିଷ ସକଳ ପ୍ରାକୃତିକ ପ୍ରତିକୂଳତାକୁ ସମ୍ମୁଖୀନ ହୋଇ ପୁଣି ଛିଡା ହୁଏ, ସୁଖର ନୀଡ ରଚନା କରିବାକୁ ପ୍ରୟାସକରେ। କିନ୍ତୁ ବିଡମ୍ବନାର ବିଷୟ ଆମ ସଂସାରରେ କିଛି ମଣିଷ ଅନ୍ୟ ମଣିଷଙ୍କର ଦୁଃଖ, ଦୁର୍ଗତି ଓ ଯାତନା ପାଇଁ ଦାୟୀ ହୋଇ ଆସିଛନ୍ତି। ଅନ୍ୟର ଅସହାୟତାର ସୁଯୋଗ ନେଇଛନ୍ତି, ଅନ୍ୟକୁ ଦାସତ୍ୱର ବେଡି ପିନ୍ଧାଇଛନ୍ତି ଓ ଅନ୍ୟକୁ ଶୋଷଣ କରିବାକୁ କେତେ କେତେ ଭେଦଭାବର ପରମ୍ପରା ସୃଷ୍ଟି କରିଛନ୍ତି। ତେବେ ସାଂପ୍ରତିକ ବିଶ୍ୱରେ ମାନବବାଦୀ ଜୀବନବୋଧର ଯେଉଁ ବୈଚାରିକ ଧାରାଟି ଦୃଢ ହେବାରେ ଲାଗିଛି ତାହା ସବୁ ମଣିଷଙ୍କୁ ସମାନ ଅଧିକାର ଓ ମର୍ଯ୍ୟାଦା ଦେବାକୁ ପ୍ରଯତ୍ନ କରୁଛି। ସକଳ ପ୍ରକାରର ଭେଦଭାବ ଓ ଉଚ୍ଚ-ନୀଚ ମନୋଭାବକୁ ଉଭୟ ଆଇନ ଓ ନୈତିକତା ଅନ୍ୟାୟ ଓ ମନ୍ଦ ବୋଲି ଆନ୍ତର୍ଜାତିକ ଚେତନା ସୃଷ୍ଟି କରିବାରେ ଲାଗିଛି। ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ପ୍ରତ୍ୟେକ ମଣିଷ ନିଜ ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ କରାଇ ଏକ ସମ୍ମାନଜନକ ଜୀବନ ବଞ୍ଚିବା ଯେ ତାର ଏକ ପ୍ରାକୃତିକ ଅଧିକାର ଏହା ଚିନ୍ତାଧାରାରେ ଧୀରେ ଧୀରେ ଗୃହୀତ ହେବାରେ ଲାଗିଛି। ସମାନତା, ସ୍ୱାଧୀନତା, ମର୍ଯ୍ୟାଦାପୂର୍ଣ୍ଣ ଜୀବନ ପ୍ରତ୍ୟେକ ବ୍ୟକ୍ତିକୁ ଯୋଗାଇବା ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ରର ଆଦର୍ଶ ବୋଲି ବିଭିନ୍ନ ଦେଶ ସେମାନଙ୍କର ସମ୍ବିଧାନରେ ଘୋଷଣା କରିଛନ୍ତି। ହୁଏତ ତାହା ବାସ୍ତବ ହୋଇପାରି ନାହିଁ, ତେବେ ସେଥିପାଇଁ ଯେ ସାମାଜିକ ଚେତନା ସୃଷ୍ଟି ହୋଇଛି ଏହା ସଭ୍ୟତାର ଏକ ବଡ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହି ପ୍ରକାରର ଏକ ମାନବବାଦୀ ଜୀବନଦୃଷ୍ଟି ବିଶ୍ୱ ଦୃଶ୍ୟପଟରେ ଯେ ଗୃହୀତ ହେବାରେ ଲାଗିଛି ତାହା ଏକ ବଡ ସଫଳତା।

କେତେକ ଧର୍ମରେ ସ୍ୱର୍ଗରାଜ୍ୟର ପରିକଳ୍ପନା ରହିଛି। ଈଶ୍ୱରଙ୍କ ସ୍ୱର୍ଗରାଜ୍ୟରେ ଦୁଃଖ, ଯନ୍ତ୍ରଣା ନଥାଏ, ଥାଏ ନୈସର୍ଗିକ ସୁଖର ଅନୁଭବ। ପ୍ରକୃତରେ ସ୍ୱର୍ଗ କେଉଁଠି ହେଲେ ନାହିଁ, ତେବେ ମଣିଷର ପ୍ରୟାସରେ ଆମ ପୃଥିବୀ ଏକ ସ୍ୱର୍ଗରାଜ୍ୟରେ ରୂପାନ୍ତରିତ ହୋଇପାରିବ। ଯଦି ପୃଥିବୀ ପୃଷ୍ଠରୁ ମଣିଷ-ସୃଷ୍ଟ ଶୋଷଣ, ଅତ୍ୟାଚାର ଓ ଭେଦଭାବ ଦୂର

ହୋଇପାରିବ ତେବେ ପୃଥିବୀ ସ୍ୱର୍ଗରାଜ୍ୟରେ ପରିଣତ ହୋଇପାରିବ। ଯଦି ଭ୍ରାତୃତ୍ୱର ଅନୁଭବ, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ନ୍ୟାୟଭାବ ଏକ ସାର୍ବଜନୀନ ଆଦର୍ଶ ଭାବେ ମାନବଜାତିର ଆଦର୍ଶ ହେବ ତେବେ ପୃଥିବୀରେ ସ୍ୱର୍ଗରାଜ୍ୟ ପ୍ରତିଷ୍ଠା ହୋଇପାରିବ। ଏହି ସବୁ ମୂଲ୍ୟଚୟକୁ ଯଦି ବିଶ୍ୱ ସ୍ତରରେ ଶିକ୍ଷା ଦିଆଯାଏ ଓ ମାନବ ସମାଜ ପ୍ରତି ଏହି ହୃଦୟବତ୍ତା ପ୍ରକାଶ ପାଏ ତେବେ ଏହି ପୃଥିବୀକୁ ସ୍ୱର୍ଗ ଅବତରଣ କରିବ।

ବିଭିନ୍ନ ଦେଶର ମାନବହିତୈଷୀ ଦାର୍ଶନିକ ଓ ହେତୁବାଦୀମାନେ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ଓ ଭେଦଭାବରହିତ ମାନବସମାଜର ପରିକଳ୍ପନା କରିଛନ୍ତି। ଏପରି ଗୋଟିଏ ପୃଥିବୀ ହୁଅନ୍ତା ଯେଉଁଠି ଶୋଷଣ, ଭେଦଭାବ, ରାଷ୍ଟ୍ର-ରାଷ୍ଟ୍ର ସ୍ତରରେ ଅବିଶ୍ୱାସ, ଧାର୍ମିକ ଅସହିଷ୍ଣୁତା ରୁହନ୍ତା ନାହିଁ। ଏକ ଭ୍ରାତୃତ୍ୱପୂର୍ଣ୍ଣ ବାୟୁମଣ୍ଡଳ ସାରା ପୃଥିବୀରେ ପ୍ରସାରିତ ହୁଅନ୍ତା। ପୃଥିବୀର ଯେଉଁ ଭୂଖଣ୍ଡରେ ଦାରିଦ୍ର୍ୟ, ଅପପୁଷ୍ଟି ରହିଛି ତାହାକୁ ଆଧୁନିକ ଜ୍ଞାନ ଓ ପ୍ରଯୁକ୍ତି ସାହାଯ୍ୟରେ ଦୂର କରାଯାଇ ପାରନ୍ତା। ଆମ ପ୍ରାକୃତିକ ପରିବେଶରେ ଯେଉଁ ସମ୍ବଳ ରହିଛି ତାହାର ସୁବିନିଯୋଗ ହେଲେ ଓ ପୃଥିବୀରୁ ପ୍ରତିରକ୍ଷା ଖର୍ଚ୍ଚ ବନ୍ଦ ହୋଇଗଲେ ସାରା ପୃଥିବୀରୁ ଦାରିଦ୍ର୍ୟ, ନିରକ୍ଷରତା, ଅପମୃତ୍ୟୁ ଇତ୍ୟାଦି ବ୍ୟାଧିଗୁଡିକୁ ଦୂର କରିବା କଷ୍ଟକର ହୁଅନ୍ତା ନାହିଁ। ଆମ ଦେଶର ଜଣେ ମନୀଷୀ ସର୍ବୋଦୟ ସମାଜର ଯେଉଁ ପରିକଳ୍ପନା କରିଥିଲେ କିମ୍ବା କେତେକ ବିଶିଷ୍ଟ ମାନବବାଦୀ ଦାର୍ଶନିକ ଯେଉଁ 'ସର୍ବଜନ ହିତାୟ' ପୃଥିବୀର ପରିକଳ୍ପନା କରିଛନ୍ତି ତାହା କେବଳ କଳ୍ପନା ବା ୟୁଟୋପିଆ ହୋଇ ରହନ୍ତା ନାହିଁ, ତାହାର ସଫଳ ଓ ବାସ୍ତବ ରୂପାୟନ କ୍ଷେତ୍ରରେ ଆମେ ଅଗ୍ରସର କରିପାରନ୍ତେ।

ଏହା ଆମକୁ ସ୍ୱୀକାର କରିବାକୁ ହେବ ଯେ ମାନବ ସମାଜରେ ଯେଉଁ ଅଗ୍ରଗତି ହୋଇଛି ତାହା ମଣିଷର ବିଚାରଶୀଳତା, ନିଷ୍ଠାପର ପ୍ରୟାସ ଓ ପ୍ରକୃତିର ଅନୁଶୀଳନ ଯୋଗୁ ସମ୍ଭବ ହୋଇଛି। ସଭ୍ୟତା ଗୋଟିଏ ସମୟରେ ଆଦିମ ସ୍ତରରେ ଥିଲା। ସେହି ଆଦିମ ସ୍ତରରୁ ବହୁ ପ୍ରୟାସ, ପ୍ରଚେଷ୍ଟା ଓ ପ୍ରଜ୍ଞା ଯୋଗୁଁ ଆଜି ମାନବ ସଭ୍ୟତା ବିକାଶର ଏକ ଉତ୍ତୁଙ୍ଗ ଶିଖରକୁ ଆସିପାରିଛି। ଆଧୁନିକ ପ୍ରଯୁକ୍ତି ବହୁ ଅସମ୍ଭବକୁ ସମ୍ଭବ କରିବାରେ ସମର୍ଥ ହୋଇପାରିଛି, ଯାହା ଏକ ଶତାବ୍ଦୀ ତଳେ ଚିନ୍ତା ସ୍ତରକୁ ମଧ୍ୟ ଆସିପାରି ନଥିଲା। ଯେଉଁ ପ୍ରୟାସ ଯୋଗୁ ପୃଥିବୀରେ ଏତେ ଭୌତିକ ପରିବର୍ତ୍ତନମାନ ସମ୍ଭବ ହୋଇପାରିଛି, ସେହିପରି ନିଷ୍ଠାପର ପ୍ରୟାସ ହେଲେ ଆମ ସଂସାରରୁ ସକଳ ମନ୍ଦ ଓ ମାନବକୃତ ଦୁଃଖଯନ୍ତ୍ରଣା ଦୂର ହୋଇପାରନ୍ତା। ବିଶ୍ୱ ସ୍ତରରେ ଏଥି ପାଇଁ ଯାହା କିଛି ଉଦ୍ୟମ ହୋଇଛି ତାହାକୁ ଯଦି ସବୁ

ସ୍ତରରେ ପ୍ରସାର କରାଯାଇ ପାରନ୍ତା ସମ୍ଭବତଃ ଆମର କଳ୍ପିତ ସ୍ୱର୍ଗରାଜ୍ୟ ଆଡକୁ ସଭ୍ୟତା ଅଗ୍ରସର ହୋଇପାରନ୍ତା ।

ଏହା ଏକ୍ ଧ୍ରୁବ ସତ୍ୟ ଯେ ବ୍ୟକ୍ତି ମରଣଶୀଳ, ହେଲେ ମଣିଷ ସମାଜ ଚିରନ୍ତନ । ଆମେ ଆଜି ସଭ୍ୟତାର ଯେଉଁ କାଳଖଣ୍ଡରେ ବଞ୍ଚୁଛେ ତାହା ପଶ୍ଚାତରେ ରହିଛି ପୃଥିବୀର ବହୁ ମନୀଷୀ, ଦାର୍ଶନିକ, ବୈଜ୍ଞାନିକ, ରାଷ୍ଟ୍ରନୀତିଜ୍ଞ ଓ ଜ୍ଞାନଦୀପ୍ତ ମଣିଷଙ୍କର ଅତୁଳନୀୟ ଅବଦାନ । କେତେ ଗବେଷଣା, ସାଧନା ଓ ତ୍ୟାଗର ପରିଣାମରୁ ଆମ ଜୀବନ ନିରାପଦ ଓ ସୁଖପ୍ରଦ ହୋଇପାରିଛି । ସେହିପରି ଆମର ଉଦ୍ୟମରେ ଆଗାମୀ ପିଢିର ମଣିଷମାନେ ଏକ ଦୁଃଖରହିତ ପ୍ରୀତିଭରା ପୃଥିବୀରେ ବାସ କରିପାରନ୍ତେ । ଏକ ଭେଦଭାବରହିତ ଓ ସୁନ୍ଦର ପୃଥିବୀରେ ସଂରଚନା ପାଇଁ ଆମର ବି କର୍ତ୍ତବ୍ୟ ରହିଛି । କୁହାଯାଉଛି ଯେ ଆମ ସୌରମଣ୍ଡଳରେ କେବଳ ପୃଥିବୀପୃଷ୍ଠରେ ମାନବ ସଭ୍ୟତା ବିକଶିତ ହୋଇଛି, ଅନ୍ୟ କୌଣସି ଗ୍ରହରେ ଏହା ହୋଇ ନାହିଁ । ଯେଉଁ ସଭ୍ୟତା ହଜାର ହଜାର ବର୍ଷର ପ୍ରୟାସର ପରିଣାମ ତାହା କିପରି ଧରାପୃଷ୍ଠରେ ଚିରସ୍ଥାୟୀ ହୋଇ ରହିବ ଓ ସମଗ୍ର ମଣିଷ ସମାଜ ଅଧିକରୁ ଅଧିକ ସୁଖ ସମୃଦ୍ଧିର ଶିଡିରେ ଅଗ୍ରସର ହେବ ତାହା ଆମର ନୈତିକ କର୍ତ୍ତବ୍ୟ । ଏହାକୁ ଆଧୁନିକ ପରିଭାଷାରେ 'ଗ୍ରହମଣ୍ଡଳୀୟ ମାନବବାଦ' କୁହାଯାଉଛି । ପାରିବେଶିକ ପ୍ରଦୂଷଣ ପରି ଯେଉଁ ସମସ୍ୟାମାନ ସମଗ୍ର ମଣିଷ ଜାତି ପାଇଁ ଆହ୍ୱାନ ସୃଷ୍ଟି କରୁଛି ତାହାର ଯଥାର୍ଥ ମୁକାବିଲା ପାଇଁ ଆନ୍ତର୍ଜାତିକ ସହଯୋଗର ଆବଶ୍ୟକତା ରହିଛି । ଯାହା ମାନବସମାଜକୁ ବିଭାଜିତ କରିଆସିଛି ସେହି ସବୁ ଭାବଧାରାକୁ ପରିହାର କରିପାରିଲେ ଏକ ସୁସଂହତ ବିଶ୍ୱଦୃଷ୍ଟିର ବିକାଶ ହୋଇପାରିବ । ଗ୍ରହମଣ୍ଡଳୀୟ ମାନବବାଦ ଏହି ପ୍ରକାରର ଏକ ବିଶ୍ୱର ବାର୍ତ୍ତା ଦେବାକୁ ପ୍ରୟାସ କରୁଛି ।

(ପ୍ରଗତିବାଦୀ, ୦୭.୦୯.୨୦୧୬)

# ବୈଜ୍ଞାନିକ ଦୃଷ୍ଟି

ମାନବ ସଭ୍ୟତାର କାହାଣୀ ସୁଦୀର୍ଘ । କେତେ କେତେ ସ୍ତର ଦେଇ ଏକ ଆଦିମ ଅବସ୍ଥାରୁ ମଣିଷ ଆଜିର ସ୍ଥିତିକୁ ଆସିଛି । ଏହି ସୁଦୀର୍ଘ ଯାତ୍ରା ପଶ୍ଚାତରେ ରହିଛି ନାନା ସୁଖପ୍ରଦ ଓ ବେଦନାଦାୟକ ଘଟଣା । ଅତୀତରେ କେତେ କେତେ ସଭ୍ୟତା ଲୋପ ପାଇଛି । କେଉଁ କେଉଁ ଭୂଖଣ୍ଡର ଜନଗଣ ବହୁ ଦୁଃଖ ଯନ୍ତ୍ରଣାର ସାମ୍ନା କରିଛନ୍ତି, କେଉଁଠି ଶକ୍ତିଶାଳୀ ଗୋଷ୍ଠୀମାନେ ଅନ୍ୟ ଉପରେ ଅମାନବିକ ଅତ୍ୟାଚାର କରିଛନ୍ତି ଓ ନାନା ପ୍ରତିକୂଳ ସ୍ଥିତି ଭିତରେ କିଛି ମହାକାଂକ୍ଷୀ ବ୍ୟକ୍ତି ମାନବୀୟ ସଙ୍କଟର ନିରାକରଣ ପାଇଁ ନିଷ୍ଠାପର ପ୍ରୟାସ କରିଛନ୍ତି । ନିଜ ଚତୁଃପାର୍ଶ୍ୱର ପ୍ରକୃତି ଓ ପରିବେଶକୁ ବୁଝିବାକୁ କିଛି ବ୍ୟକ୍ତି ସର୍ବଦା ଉଦ୍ୟମ କରିଛନ୍ତି ଓ ସେହି ଉଦ୍ୟମର ପରିଣାମରୁ ଜ୍ଞାନ, ବିଜ୍ଞାନର ବିକାଶ ସମ୍ଭବ ହୋଇଛି । ସଭ୍ୟତାର ଇତିହାସ ପ୍ରାଚୀନ ହେଲେ ବି ଆଧୁନିକ ବିଜ୍ଞାନର ଇତିହାସ ମାତ୍ର ତିନି, ଚାରି ଶତାବ୍ଦୀ ତଳେ ଆରମ୍ଭ ହୋଇଥିବା ଏକ ଐତିହାସିକ ଘଟଣା । ଧୀରେ ଧୀରେ ବିଜ୍ଞାନର ଅଗ୍ରଗତି ଘଟିଛି ଓ ପ୍ରକୃତିର ବହୁ ରହସ୍ୟକୁ ମଣିଷ ବୁଝିବାକୁ ସମର୍ଥ ହୋଇଛି । ବୈଜ୍ଞାନିକ ଜ୍ଞାନ ମଣିଷର ଚିନ୍ତାରାଜ୍ୟରେ ଚ୍ଚମୂଳ ପରିବର୍ତ୍ତନର ସୂତ୍ରପାତ କରିଛି । ପ୍ରକୃତିରେ ଘଟୁଥିବା ଘଟଣା ବା ପରିବର୍ତ୍ତନକୁ ମଣିଷ ନିଜର ବିଚାର ବୁଦ୍ଧି ପ୍ରୟୋଗ କରି ବୁଝିବାକୁ କିମ୍ବା ଅବବୋଧ କରିବାକୁ ପ୍ରୟାସ କରିଛି । ତେବେ ବୈଜ୍ଞାନିକ ଧାରାରେ ବୁଝିବା ଓ କଳ୍ପନାକରି କିଛି ବୁଝିବାକୁ ପ୍ରୟାସ କରିବା ଭିତରେ ବହୁ ପାର୍ଥକ୍ୟ ରହିଛି । କୌଣସି ପ୍ରାକୃତିକ ଘଟଣାର କାରଣକୁ ନାନା ଭାବରେ ଅବବୋଧ କରାଯାଇପାରେ, ତେବେ କେଉଁ ବ୍ୟାଖ୍ୟା ବୈଜ୍ଞାନିକ ଓ କେଉଁ ବ୍ୟାଖ୍ୟା କପୋଳକଳ୍ପିତ ତାହା ମଧ୍ୟରେ ମୌଳିକ ପାର୍ଥକ୍ୟ ରହିଛି । ବର୍ଷା ହେବା ଏକ ପ୍ରାକୃତିକ ଘଟଣା । ସଂପ୍ରତି ଏହି ଘଟଣାର ବ୍ୟାଖ୍ୟା ଜଣେ ସ୍କୁଲ ଛାତ୍ର କରିପାରୁଛି । ବାଷ୍ପୀକରଣ, ଜଳୀୟ ବାଷ୍ପରୁ ମେଘ ସୃଷ୍ଟି, ବାଦଲ ଥଣ୍ଡା ହେବାରୁ ବର୍ଷା ହେବା ଇତ୍ୟାଦି ଜଳଚକ୍ର ପ୍ରକ୍ରିୟା ମାଧ୍ୟମରେ ବର୍ଷାର କାରଣକୁ ବିଜ୍ଞାନସମ୍ମତ ଧାରାରେ ସହଜରେ ବ୍ୟାଖ୍ୟା କରାଯାଇପାରୁଛି । ମାତ୍ର ତିନି, ଚାରି ଶତାବ୍ଦୀ ତଳେ ବର୍ଷାର କାରଣ ଜ୍ଞାତ ନ ଥିଲା । ମଣିଷ କଳ୍ପନା କରୁଥିଲା ଯେ ବର୍ଷାର ଏକ ଦେବତା ଆକାଶରେ ରହିଛନ୍ତି, ତାଙ୍କ ପାଖରେ ବିଶାଳ ଜଳାଶୟ ରହିଛି ଓ ସେ ଯେତେବେଳେ ଚାହୁଁଛନ୍ତି ପୃଥିବୀର କୌଣସି ଅଞ୍ଚଳରେ ଜଳସିଞ୍ଚନ କରୁଛନ୍ତି । ସେହି ଜଳସିଞ୍ଚନ ହେଉଛି ବର୍ଷା । ନାନା ପ୍ରାକୃତିକ ଘଟଣା ଯଥା ଭୂମିକମ୍ପ,

ସୂର୍ଯ୍ୟପରାଗ, ପାଗ ପରିବର୍ତ୍ତନ, ମୃତ୍ୟୁ ଇତ୍ୟାଦି ଘଟଣାର ବହୁ କାଳ୍ପନିକ ବ୍ୟାଖ୍ୟା ଅତୀତରେ ଦିଆଯାଉଥିଲା। ପୃଥିବୀ ଏକ ବିଶାଳକାୟ ସର୍ପର ଫଣା ଉପରେ ରହିଛି ଓ ସର୍ପ ମୁଣ୍ଡ ହଲାଇବାର ପରିଣାମ ହେଉଛି ଭୂମିକମ୍ପ, ରାହୁ ନାମକ ରାକ୍ଷସ ସୂର୍ଯ୍ୟକୁ ଗିଳିବାରୁ ସୂର୍ଯ୍ୟପରାଗ ହେଉଛି। ଏହି ଭଳି ନାନା କଳ୍ପନା ବିଜ୍ଞାନର ଭାବନା ସୃଷ୍ଟି ହେବା ପୂର୍ବରୁ ସମାଜରେ ବ୍ୟାପକ ଭାବେ ରହିଥିଲା। ସେହିପରି ସମାଜରେ ବିଶ୍ୱାସ ଥିଲା ଯେ ଶରୀରରୁ ଆତ୍ମା ନାମକ ଏକ ସତ୍ତା ଅନ୍ତର୍ହିତ ହେବାଦ୍ୱାରା ବ୍ୟକ୍ତି ମୃତ୍ୟୁମୁଖରେ ପଡିଥାଏ। ପ୍ରତ୍ୟେକ ପ୍ରାଣୀ ଏକ ଯୌଗିକ ସତ୍ତା ଯାହା ଶରୀର ଓ ଆତ୍ମାର ସଂଯୋଗ ଯୋଗୁ ଜୀବନଧାରଣ କରିଛି। ଯେତେବେଳେ ଶରୀରରୁ ଆତ୍ମା ବାହାରି ଯାଉଛି ସେତେବେଳେ ମୃତ୍ୟୁ ଘଟୁଛି। ତେବେ ଚିକିତ୍ସା ବିଜ୍ଞାନ କୌଣସି ଆତ୍ମାର ଅସ୍ତିତ୍ୱକୁ ସ୍ୱୀକାର କରେ ନାହିଁ। ଶରୀରରେ ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହେଲେ ବ୍ୟକ୍ତି ମୃତ୍ୟୁମୁଖରେ ପଡିଥାଏ। ଜୀବନ ଶରୀର ମଧ୍ୟରେ ଏକ ଜୈବିକ ଓ ରାସାୟନିକ ପ୍ରକ୍ରିୟାର ପରିଣାମ ମାତ୍ର। ମସ୍ତିଷ୍କର କାର୍ଯ୍ୟ ବନ୍ଦ ହେଲେ ବ୍ୟକ୍ତି ମୃତ୍ୟୁବରଣ କରେ, ମଣିଷ ଦେହରେ ଆଉ କୌଣସି କୋଷ ସୃଷ୍ଟି ହୋଇପାରେ ନାହିଁ। ତେବେ ଏକ ମୃତ ଶରୀରରୁ କେତେକ ଅଙ୍ଗ ଅନ୍ୟ ଦେହରେ ପ୍ରତିରୋପଣ କରାଗଲେ ତାହା ସେଠାରେ ନୂତନ କୋଷ ସଂସର୍ଗରେ ଆସି କାର୍ଯ୍ୟକ୍ଷମ ହୋଇଥାଏ। ତେଣୁ ମୃତ୍ୟୁର ଅର୍ଥ ଶରୀର ଓ ଆତ୍ମାର ପୃଥକୀକରଣ ନୁହେଁ, ବରଂ ଶରୀର ମଧ୍ୟରେ ଏକ ଜୈବିକ ପ୍ରକ୍ରିୟାର ପରିସମାପ୍ତି। ବୈଜ୍ଞାନିକ ଜ୍ଞାନର ଅଭାବରେ କେତେ କେତେ ବିଶ୍ୱାସ ନାନା ରୂପ ରଙ୍ଗ ନେଇ ପ୍ରାକୃତିକ ଘଟଣାମାନଙ୍କୁ ବୁଝାଇବାକୁ ମଣିଷ ଅତୀତରେ କଳ୍ପନା କରିଥିଲା।

ବିଜ୍ଞାନର ଯୁଗ ଆସିବାପରେ ଚିନ୍ତାଧାରାରେ ଏକ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହେଲା। ବୈଜ୍ଞାନିକ ଜ୍ଞାନର ମୂଳ ଆଧାର ହେଲା ପ୍ରାକୃତିକ ତଥ୍ୟ। ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, କଳ୍ପନାପ୍ରସୂତ ନୁହେଁ। ତଥ୍ୟ ଜାଣିବାର ଆଧାର ହେଉଛି ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ପ୍ରତ୍ୟକ୍ଷ ଓ ଆମର ଅନୁଭୂତି। ସକଳ ବୈଜ୍ଞାନିକ ଜ୍ଞାନ ବସ୍ତୁନିଷ୍ଠ ଓ ବସ୍ତୁନିଷ୍ଠ ଜ୍ଞାନ ଲାଭ କରିବାର ମୂଳ ସୂତ୍ର ହେଲା ଆମର ପ୍ରତ୍ୟକ୍ଷ ଓ ଅନୁଭୂତି। ନିୟନ୍ତ୍ରିତ ପ୍ରତ୍ୟକ୍ଷାନୁଭୂତିକୁ ପର୍ଯ୍ୟବେକ୍ଷଣ କୁହାଯାଏ। ପ୍ରାକୃତିକ ପରିବେଶରେ ଥିବା ବା ଘଟୁଥିବା ବସ୍ତୁ, ଗୁଣ, କ୍ରିୟା, ଘଟଣା ଇତ୍ୟାଦିକୁ ପର୍ଯ୍ୟବେକ୍ଷଣ କରାଯାଏ। ପର୍ଯ୍ୟବେକ୍ଷଣ ପାଇଁ ପ୍ରକୃତି ଉପରେ ନିର୍ଭର କରିବାକୁ ହୁଏ। ନିୟନ୍ତ୍ରିତ ପରିବେଶ ଭିତରେ କୌଣସି ଘଟଣାକୁ ପର୍ଯ୍ୟବେକ୍ଷଣ କରିବା ପାଇଁ କୃତ୍ରିମ ଉପାୟରେ ତାହାର ସୃଜନ କରାଇଲେ ତାହାକୁ ସାଧାରଣତଃ ପରୀକ୍ଷଣ କୁହାଯାଏ। ଅର୍ଥାତ୍ କୃତ୍ରିମ ଉପାୟରେ ଘଟଣାର ସଂଘଟନକୁ ପରୀକ୍ଷଣ ବୋଲି ଗ୍ରହଣ କରାଯାଏ। ପର୍ଯ୍ୟବେକ୍ଷଣ ପ୍ରାୟତଃ ଏକ ପ୍ରାକୃତିକ ପ୍ରକ୍ରିୟା ଓ ପରୀକ୍ଷଣ ତୁଳନାରେ ପ୍ରାକୃତିକ;

କିନ୍ତୁ ପରୀକ୍ଷଣ ପର୍ଯ୍ୟବେକ୍ଷଣ ଅପେକ୍ଷା ଅଧିକ କୃତ୍ରିମ। ତେବେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ସକଳ ବୈଜ୍ଞାନିକ ଜ୍ଞାନର ଆଧାର। ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ପ୍ରତ୍ୟକ୍ଷ ଜ୍ଞାନର ମୂଳ ଭିତ୍ତି। ପ୍ରତ୍ୟକ୍ଷକୁ ଛାଡି ବୈଜ୍ଞାନିକ ଜ୍ଞାନର ଅନ୍ୟ କିଛି ମୌଳିକ ଆଧାର ନାହିଁ। ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ ଓ ମୌଳିକତଃ ପ୍ରତ୍ୟକ୍ଷ-ଆଧାରିତ।

ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ସତ୍ୟ। ତେବେ ଆମର ଅନୁଭୂତିର ପରିସର ଭିତରେ ନୂତନ ତଥ୍ୟର ସନ୍ଧାନ ପାଇଲେ ବୈଜ୍ଞାନିକ ସିଦ୍ଧାନ୍ତରେ ପରିବର୍ତ୍ତନ କରାଯାଇପାରେ। କୌଣସି ବୈଜ୍ଞାନିକ ନିଜ ଆବିଷ୍କୃତ ଜ୍ଞାନକୁ ଚିରନ୍ତନ ବା ଶାଶ୍ୱତ ବୋଲି ଗ୍ରହଣ କରିବେ ନାହିଁ। ଏହା ସର୍ବଦା ପ୍ରଗତିଶୀଳ ଓ ନୂତନ ତଥ୍ୟ ଆଧାରରେ ସଂଶୋଧନାତ୍ମକ। ସେ ଦୃଷ୍ଟିରୁ ଏହି ଜ୍ଞାନ ପ୍ରଣାଳୀବଦ୍ଧ ଓ ସ୍ୱସଂଶୋଧନାତ୍ମକ। ଯେହେତୁ ବୈଜ୍ଞାନିକ ସିଦ୍ଧାନ୍ତ ତଥ୍ୟମୂଳକ ସେ ଦୃଷ୍ଟିରୁ ଏହା ସତ୍ୟ ଓ ସାର୍ବଜନୀନ। ମୋଟ୍‌ଉପରେ କହିଲେ ବୈଜ୍ଞାନିକ ଜ୍ଞାନ, ପ୍ରଣାଳୀବଦ୍ଧ ଅନୁଭୂତି-ଆଧାରିତ, ତଥ୍ୟମୂଳକ, ପ୍ରଗତିଶୀଳ, ସ୍ୱସଂଶୋଧନାତ୍ମକ ଓ ସାର୍ବଜନୀନ। ଲୋକବିଶ୍ୱାସ, ଧାର୍ମିକ ଅଭିବ୍ୟକ୍ତି, ପାରଲୌକିକ ବିଶ୍ୱାସ ଠାରୁ ବୈଜ୍ଞାନିକ ଜ୍ଞାନ ପୃଥକ୍। ଯେଉଁ ଜ୍ଞାନ ତଥ୍ୟଭିତ୍ତିକ ନୁହେଁ ବା ପରୀକ୍ଷଣଦ୍ୱାରା ସାବ୍ୟସ୍ତ ନୁହେଁ ତାହା ବୈଜ୍ଞାନିକ ଜ୍ଞାନ ପଦବାଚ୍ୟ ନୁହେଁ। ଏକ ପୂର୍ବପରିକଳ୍ପିତ ଭାବନା ବା କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ମନ୍ତବ୍ୟ ବା କେହି ଧର୍ମପ୍ରାଣ ବ୍ୟକ୍ତିଙ୍କର ଅନୁଭବକୁ ସତ୍ୟ କୁହାଯାଇପାରିବ ନାହିଁ ଯଦି ତାହା ତଥ୍ୟ ଆଧାରିତ ହୋଇନଥାଏ।

ଏହି ପୃଷ୍ଠଭୂମିରେ ଏହା କୁହାଯାଏ ଯେ କୌଣସି ଘଟଣାର ବ୍ୟାଖ୍ୟା ପ୍ରାକୃତିକ ନିୟମ, ଏକରୂପତା ଓ ଶୃଙ୍ଖଳା ଆଧାରରେ ବିଜ୍ଞାନରେ କରାଯାଏ। ବିଜ୍ଞାନର ମୂଳ ସିଦ୍ଧାନ୍ତ ହେଉଛି ପ୍ରକୃତିରେ ବା ଜୀବନରେ ଘଟୁଥିବା ସମସ୍ତ ଘଟଣା ପଛାତରେ କେବଳ ପ୍ରାକୃତିକ କାରଣ ରହିଛି, ତାହା ମଣିଷ ଜାଣିଥାଉ ବା ତାହା ଜାଣିନଥାଉ। ପ୍ରକୃତିର ଜଟିଳତା ଓ ବିଶାଳତା ପରିପ୍ରେକ୍ଷୀରେ ଆମ ଚତୁଃପାର୍ଶ୍ୱରେ ବହୁ ରହସ୍ୟ ରହିଛି, ଯାହାର କାରଣ ଆମେ ଜାଣି ନାହୁଁ। ତେବେ ସଭ୍ୟତାର ଅଗ୍ରଗତି ସହ ଆମେ କେତେ କେତେ ବିଷୟ ଏହି ଦୁଇ ଶହ ତିନି ଶହ ବର୍ଷ ଭିତରେ ଜାଣିବାକୁ ସମର୍ଥ ହେଲେଣି, ସେହିପରି ସଭ୍ୟତା ଯେତେ ଅଗ୍ରସର ହେଉଥିବ ପ୍ରକୃତିର ରହସ୍ୟକୁ ଜାଣିବାର ସାମର୍ଥ୍ୟ ବୃଦ୍ଧି ପାଉଥିବ। କୃତ୍ରିମ ପ୍ରଜନନ, ସରୋଗେଟ ମାତୃତ୍ୱ, ଉପଗ୍ରହ ମାଧ୍ୟମରେ ସମ୍ବାଦ ପ୍ରେରଣ, ଅଙ୍ଗ ପ୍ରତିରୋପଣ, ଇମେଲ୍, ମହାକାଶ ଯାତ୍ରା ପରି ଅସଂଖ୍ୟ ଘଟଣା ମଣିଷର ଚିନ୍ତା ଚେତନାକୁ ଦୁଇ ଶହ ବର୍ଷ ତଳେ ସ୍ପର୍ଶ ବି କରି ନ ଥିଲା, ଯାହା ଆଜି ବାସ୍ତବତାରେ ପରିଣତ ହୋଇଛି। ସେହିପରି ସଭ୍ୟତାର ବିକାଶ ସହ ବହୁ ସାମର୍ଥ୍ୟ ହୁଏତ ଭବିଷ୍ୟତରେ ମଣିଷ ହାସଲ କରିବାକୁ ସକ୍ଷମ ହେବ।

ଏସବୁର ମୂଳ ହେଉଛି ବୈଜ୍ଞାନିକ କ୍ରିୟାଶୀଳତା ଓ ବିଜ୍ଞାନକୁ ପ୍ରୟୋଗକରି ଗଢି ଉଠୁଥିବା ପ୍ରଯୁକ୍ତି ବା ଟେକ୍‌ନୋଲୋଜି।

ତେବେ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ରହିଥିଲେ ବି ବ୍ୟାବହାରିକ ସ୍ତରରେ କେତେକ ପାର୍ଥକ୍ୟ ରହିଛି। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ଜୀବନଦୃଷ୍ଟି ଓ ଏକ ମୂଲ୍ୟବୋଧଭିତ୍ତିକ ଭାବଧାରା। ମୁକ୍ତ ମନ ପୋଷଣ କରିବା, କୌଣସି ପ୍ରାକ୍-ବିଶ୍ୱାସକୁ ଗ୍ରହଣ ନ କରିବା ଓ ବୈଜ୍ଞାନିକ ପ୍ରଣାଳୀକୁ ଜ୍ଞାନର ଆଧାର ଭାବେ ସ୍ୱୀକାର କରିବା ବୈଜ୍ଞାନିକ ବିଚାରବୋଧର ମୂଳ ନିର୍ଯ୍ୟାସ। ତେବେ ବିଜ୍ଞାନ ବିଷୟରେ ଅଧ୍ୟୟନ କରିଥିବା ପ୍ରତ୍ୟେକ ବ୍ୟକ୍ତି ଯେ ବୈଜ୍ଞାନିକ ମନୋଭାବ ପୋଷଣ କରନ୍ତି ଏହା କୁହାଯାଇ ପାରିବ ନାହିଁ। ଶ୍ରେଣୀ ଗୃହରେ ବିଜ୍ଞାନ ପଢିବା ବା ପଢାଇବା ଓ ଏଥିରେ ଡିଗ୍ରୀ ହାସଲ କରିବାଦ୍ୱାରା ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଜଣେ ସମର୍ଥକ ଏହା କୁହାଯାଇ ପାରିବ ନାହିଁ। ଏହାର କାରଣ ହେଉଛି ଜଣେ ବିଜ୍ଞାନର କୌଣସି ବିଭାଗରେ ଶିକ୍ଷା କରିଥାଇ ପାରନ୍ତି କିନ୍ତୁ ସେ ବିଷୟରେ ଏକ ସମୀକ୍ଷାମୂଳକ ଦୃଷ୍ଟିଭଙ୍ଗୀର ପୃଷ୍ଠପୋଷକ କରନ୍ତି ନାହିଁ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ରଖିବାର ତାତ୍ପର୍ଯ୍ୟ ହେଉଛି ବୈଜ୍ଞାନିକ ମାନସିକତାକୁ ଜୀବନର ପ୍ରତ୍ୟେକ ସ୍ତରରେ ପ୍ରୟୋଗ କରିବା ଓ ସକଳ ପ୍ରକାରର କୁସଂସ୍କାରରୁ ମୁକ୍ତ ରହିବା। ଏପରିକି ଜଣେ ସାଧାରଣ ବ୍ୟକ୍ତି ପାଖରେ ଯେଉଁ ପ୍ରକାରର ଅପବିଶ୍ୱାସ ଓ କୁସଂସ୍କାର ରହିପାରେ ଜଣେ ଶିକ୍ଷିତ ବ୍ୟକ୍ତି ପାଖରେ ମଧ୍ୟ ଅନୁରୂପ କୁସଂସ୍କାର ରହିବା ସମ୍ଭବ। ଆମର ଦୈନନ୍ଦିନର ଜୀବନ ଯାତ୍ରା, ସାମାଜିକ ଚଳଣିର ଅନୁକରଣ ଭିତରେ ବହୁ ଅହେତୁକ, ଅବୈଜ୍ଞାନିକ ଓ ଆଧାରହୀନ ବିଶ୍ୱାସ ପ୍ରତିଫଳିତ ହୋଇପାରେ। ଏହା ଛଡା ଅଧ୍ୟୟନ ଓ ବାସ୍ତବ ଜୀବନ ମଧ୍ୟରେ ବହୁ ପ୍ରଭେଦ ରହିପାରେ। ମନସ୍ତାତ୍ତ୍ୱିକ ସ୍ତରରେ ବ୍ୟକ୍ତି ଯେତେବେଳେ ଅସହାୟ ବୋଧ କରେ ଓ ନାନା ଭୟ ଓ ଉତ୍କଣ୍ଠା ଭିତରେ ରହେ ଦୃଢ ମନ ବଳ ଅଭାବରେ ସେ ଅଲୌକିକ ଶକ୍ତିର କରୁଣା ପାଇବା ପାଇଁ ପ୍ରାର୍ଥନା କରେ। ବିଶେଷତଃ ସାମାଜିକ ମନସ୍ତତ୍ତ୍ୱ ଭିତରେ ଯଦି ଦୈବୀ କରୁଣା ଲାଭକରିବା ପାଇଁ ଭାବଧାରା ବ୍ୟାପକ ଭାବେ ରହିଥାଏ, ତେବେ ତାହାର ପ୍ରଭାବ ବ୍ୟକ୍ତି ଚେତନାକୁ କବଳିତ କରିଥାଏ। ପିଲାଟି ବେଳୁ ବହୁ ପ୍ରକାର ବିଶ୍ୱାସ ଜଣଙ୍କର ମାନସିକତାକୁ ପ୍ରଭାବିତ କରିଥାଏ। ସାମାଜିକ ପରିବେଶରେ ମୁକ୍ତ-ଚିନ୍ତା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ସଂସ୍କାରିତ ଚେତନାର ପ୍ରଭାବ ଦୃଢ ନ ଥିଲେ ବ୍ୟକ୍ତି ନିଜର ଅଧ୍ୟୟନ ନିର୍ବିଶେଷରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରିପାରେ ନାହିଁ।

(ପ୍ରଗତିବାଦୀ, ୨୮.୧୨.୨୦୧୬)

# ବିଜ୍ଞାନର ବାର୍ତ୍ତା

ମାନବ ସଭ୍ୟତାର ଇତିହାସ ହେଉଛି ନାନା ଉତ୍ଥାନ ପତନର କାହାଣୀ । ସାମଗ୍ରିକ ଭାବେ ମଣିଷ ସମାଜ କେତେ କେତେ ଅନ୍ଧକାରକୁ ସାମନା କରିଛି । କେତେ ଯୁଦ୍ଧ, ବିଭୀଷିକା, କ୍ରୂରତା ଭିତରେ କେତେ କେତେ ମଣିଷ ନାନା ବିପର୍ଯ୍ୟୟର ସମ୍ମୁଖୀନ ହୋଇଛନ୍ତି । ସେହିପରି କେତେ କେତେ ପ୍ରାକୃତିକ ବିପର୍ଯ୍ୟୟ ଭିତରେ କେଉଁ କେଉଁ ଭୂଖଣ୍ଡରେ ସଭ୍ୟତାର ମଧ୍ୟ ବିଲୋପ ହୋଇଛି । ତେବେ ସମସ୍ତ ଝଡଝଞ୍ଜା, ଆପଦ ବିପଦ ମଧ୍ୟରେ ସଭ୍ୟତା ଆଗକୁ ଯାଇଛି । ଆଦିମ ଅବସ୍ଥାରୁ ଆରମ୍ଭ ହୋଇଥିବା ଏହି ଯାତ୍ରା କେତେ ସନ୍ଧିକ୍ଷଣ ଦେଇ ଅଗ୍ରସର ହୋଇଛି । ଇତିହାସର ବେଳାଭୂମିରେ କେତେ କେତେ ପରିବର୍ତ୍ତନର ନିର୍ଣ୍ଣାୟକ ମୁହୂର୍ତ୍ତ ମଧ୍ୟ ଆସିଛି । ଏସବୁ ପରିସ୍ଥିତି ଭିତରେ ସଭ୍ୟତାର ଅଗ୍ରଗତି ଘଟିଛି । ପୃଥିବୀର ଯେଉଁ ଭୂଖଣ୍ଡରେ ଯାହା କିଛି ନୂତନ ଜ୍ଞାନ ଓ ପ୍ରଯୁକ୍ତିର ଉଦ୍ଭାବନ ହୋଇଛି ତାହା ଧୀରେ ଧୀରେ ବିଭିନ୍ନ ଭୂଖଣ୍ଡକୁ ପ୍ରସାର ଲାଭ କରିଛି । ଜ୍ଞାନ, ବିଜ୍ଞାନର ଜଗତୀକରଣ କାହିଁ କେଉଁ ଅତୀତରୁ ସମ୍ଭବ ହୋଇଛି । ଅତୀତରେ ନାନା ପ୍ରାକୃତିକ ପ୍ରତିବନ୍ଧକ ଯୋଗୁ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସଭ୍ୟତାମାନ ନିଜସ୍ୱ ଧାରାରେ ବିକଶିତ ହୋଇଥିଲା । ସେହି ପ୍ରକ୍ରିୟାରେ ପ୍ରତ୍ୟେକ ସଭ୍ୟତାର କିଛି ସ୍ୱାତନ୍ତ୍ର୍ୟ ହୁଏତ ରହିଛି । ତେବେ ସାଧାରଣ ଭାବରେ ମାନବିକ ସ୍ୱଭାବ, ଚରିତ୍ର, ଜୀବନବୋଧ, ପରିବେଶର ପ୍ରଭାବ ପ୍ରସଙ୍ଗକୁ ନେଇ ମଣିଷର ସ୍ଥିତି ସମାନ ରହିଆସିଛି । କଳା, ସଙ୍ଗୀତ, ସାହିତ୍ୟ ଇତ୍ୟାଦି ସୃଜନଶୀଳତା ସବୁ ସଭ୍ୟତାରେ ଓ ଜନଗୋଷ୍ଠୀରେ ପ୍ରକାଶ ପାଇଛି । ପ୍ରତ୍ୟେକ ଜନଗୋଷ୍ଠୀ ନିଜସ୍ୱ ଧାରାରେ ଜୀବନକୁ ସୁନ୍ଦର, ଉପଭୋଗ୍ୟ କରିବାକୁ ପନ୍ଥା ବାହାର କରିଛି । ଜୀବନ ବଞ୍ଚିବାର କଳା ଭିତରେ କିଛି କିଛି ଭିନ୍ନତା ଜନଗୋଷ୍ଠୀମାନଙ୍କ ମଧ୍ୟରେ ହୁଏତ ପରିଲକ୍ଷିତ ହୋଇପାରେ, ତେବେ ସାମଗ୍ରିକ ଭାବରେ ଜୀବନର ମୂଲ୍ୟ ଓ ମହତ୍ତ୍ୱ ନେଇ ମାନବିକ ପ୍ରତିକ୍ରିୟା ଭିତରେ ବିଶେଷ ପାର୍ଥକ୍ୟ ନାହିଁ ।

କୌଣସି କୌଣସି କାଳଖଣ୍ଡରେ କେଉଁ କେଉଁ ଭୂଖଣ୍ଡରେ କେତେକ ସାଂସ୍କୃତିକ ଜାଗରଣ ସାମାଜିକ ବିକାଶକୁ ତ୍ୱରାନ୍ୱିତ କରିଛି । କେତେକ ସ୍ୱତନ୍ତ୍ର ପରିସ୍ଥିତି ଯୋଗୁ

କେତେକ ଭୂଖଣ୍ଡ ବିକାଶର ଧାରାରେ ଯଥେଷ୍ଟ ଅଗ୍ରଗତି କରିଥିବା ବେଳେ ଅନ୍ୟ ଭୂଖଣ୍ଡର ଜନଗଣ ବିକାଶ କରିପାରି ନାହାନ୍ତି । ବିଶେଷକରି ଯେଉଁ ଭୂଖଣ୍ଡରେ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ଅଧିକ ହୋଇଛି ସେଠାରେ ଜୀବନର ସାଧାରଣ ମାନରେ ଉନ୍ନତି ଅଧିକ ହୋଇଛି । କେତେକ ସଭ୍ୟତା ଯେତେ ପ୍ରାଚୀନ ହେଲେ ମଧ ବିଜ୍ଞାନ ଓ ପ୍ରଯୁକ୍ତିର ଉପଯୁକ୍ତ ବିକାଶ ଅଭାବରେ ସେଠିକାର ଜନଗଣ ବିକାଶର ଶିଡିରେ ଉପରକୁ ଯାଇପାରି ନାହାନ୍ତି । ସମଗ୍ର ପୃଥିବୀରେ ସପ୍ତଦଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ କୃଷିଭିତ୍ତିକ ସମାଜ ଓ ଗ୍ରାମୀଣ ପରିବେଶ ସର୍ବତ୍ର ରହିଥିଲା । ସେହି ଭୂଖଣ୍ଡର ଧାର୍ମିକ ବିଶ୍ୱାସ, ପରମ୍ପରା ଜୀବନବୋଧର ମୁଖ୍ୟ ଆୟୁଧ ଓ ଭିତ୍ତି ପାଲଟିଥିଲା । ପାରଲୌକିକ ବିଶ୍ୱାସ, ରାଜତନ୍ତ୍ର, ସାମନ୍ତବାଦୀ ପରିବେଶ ସାର୍ବଜନୀନ ଭାବେ ସମଗ୍ର ପୃଥିବୀରେ ପରିବ୍ୟାପ୍ତ ଥିଲା । ତେବେ ଏହି ପରିସ୍ଥିତିରେ ୟୁରୋପରେ ଏକ ସାଂସ୍କୃତିକ ଜାଗରଣର ପରିବେଶ ଆସିଲା । ସେହି ସାଂସ୍କୃତିକ ଜାଗରଣର ଗଭୀର ପ୍ରଭାବରୁ ଜ୍ଞାନ ବିଜ୍ଞାନ ନେଇ ନୂଆ ନୂଆ ଦିଗନ୍ତ ସୃଷ୍ଟି ହେବାକୁ ଲାଗିଲା । ବିଶେଷକରି ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ଯୁଗ ଆରମ୍ଭ ହେଲା । ଯୁଗ ଯୁଗର ବିଶ୍ୱାସ, ଭାବନା, ଜଗଦ୍‌ଦୃଷ୍ଟିକୁ ଆହ୍ୱାନ ଦେଇ ବିଜ୍ଞାନ ନୂତନ ଜ୍ଞାନର ପରିବେଶ ଆଣିଲା । ବୈଜ୍ଞାନିକ ଜ୍ଞାନ ଥିଲା ତଥ୍ୟଭିତ୍ତିକ ଓ ବସ୍ତୁନିଷ୍ଠ । ପର୍ଯ୍ୟବେକ୍ଷଣ, ପରୀକ୍ଷଣକୁ ଆଧାରକରି ବୈଜ୍ଞାନିକ ଜ୍ଞାନର ସୌଧ ଗଢିଉଠିଲା । ପ୍ରକୃତିର ବହୁ ରହସ୍ୟ ଧୀରେ ଧୀରେ ଉନ୍ମୋଚିତ ହେବାକୁ ଲାଗିଲା । ଜଗତର ଉତ୍ପତ୍ତି, ମଣିଷର ବିବର୍ତ୍ତନ ନେଇ ରହି ଆସିଥିବା ଯୁଗ ଯୁଗର ବିଶ୍ୱାସ ବଦଳିଲା । ତେବେ ବିଜ୍ଞାନର ଯୁଗ ଆରମ୍ଭ ହେବାର ଦୁଇ ଶହ ବର୍ଷ ପରେ ପ୍ରଯୁକ୍ତିର ଯୁଗ ଆସିଲା । ବିଜ୍ଞାନକୁ ପ୍ରୟୋଗକରି ଯେଉଁ ନୂଆ ନୂଆ ପ୍ରଯୁକ୍ତି ସୃଷ୍ଟି ହେଲା ତାହା ଜୀବନଯାତ୍ରାକୁ ସୁଖମୟ କରିବାର କେତେ କେତେ ପରିବେଶ ଆଣିଲା । ଜ୍ଞାନ, ବିଜ୍ଞାନର ଦିଗନ୍ତ ସଂପ୍ରତି ଯେତେ ଅଧିକ ପ୍ରସାରଲାଭ କରୁଛି, ନୂଆ ନୂଆ ପ୍ରାଯୁକ୍ତିକ କୌଶଳର ଉଦ୍ଭାବନ ହେଉଛି । ଶହେବର୍ଷ ତଳର ପୃଥିବୀ ଓ ଆଜିର ପୃଥିବୀ ଭିତରେ ରହିଛି ଅନେକ ପାର୍ଥକ୍ୟ । ଆଧୁନିକ ଗମନାଗମନ, ଯୋଗାଯୋଗ, ମୋବାଇଲ, ଇଣ୍ଟରନେଟ୍ ଓ ବହୁ ଉପକରଣ ବ୍ୟତୀତ ସାଂପ୍ରତିକ ଜୀବନ କିପରି ଅସହାୟ ହେବ ତାହା ସହଜରେ ଅନୁମେୟ । ଏତଦ୍‌ବ୍ୟତୀତ ବହୁ କ୍ଷେତ୍ରରେ ନୂଆ ନୂଆ ଗବେଷଣା ଜୀବନଧାରାକୁ ବହୁ ସୁଗମ କରିବାର ପରିବେଶ ଆଣିପାରିଛି । ଅନେକ ମହାମାରୀ ରୋଗମାନଙ୍କୁ ନିୟନ୍ତ୍ରଣ କରିବା ସମ୍ଭବ ହୋଇଛି । ବହୁ ମାରାତ୍ମକ ରୋଗମାନଙ୍କର ଚିକିତ୍ସା ବାହାରିବା ଯୋଗୁ ମଣିଷ ସମାଜ ବହୁ ସଫଳତା ହାସଲ କରିପାରୁଛି । ମଣିଷର ଆୟୁ ବଢିବା ସହ ପୃଥିବୀର

ଲୋକସଂଖ୍ୟା ଅସମ୍ଭବ ଭାବରେ ବୃଦ୍ଧି ପାଇବାରେ ଲାଗିଛି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ଖାଦ୍ୟଶସ୍ୟର ଉତ୍ପାଦନ ମଧ୍ୟ ସେହିପରି ବୃଦ୍ଧି ପାଉଛି । ବୈଜ୍ଞାନିକ ପଦ୍ଧତିରେ ଖାଦ୍ୟଶସ୍ୟର ଉତ୍ପାଦନକୁ ବୃଦ୍ଧିକରିବା ସମ୍ଭବପର ହୋଇପାରିଛି । ଏହିପରି ଦେଖିଲେ ଏହି ଦୁଇ ଶହ ବର୍ଷ ଭିତରେ ପୃଥିବୀର ରୂପରେଖ ଅନେକଟା ପରିବର୍ତ୍ତନ ହେବାରେ ଲାଗିଛି ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ପଶ୍ଚାତ୍‌ରେ କେତେକ ତାତ୍ତ୍ୱିକ ସିଦ୍ଧାନ୍ତ ରହିଛି । ଯେଉଁ ବିଚାରବୋଧ ଓ ସିଦ୍ଧାନ୍ତକୁ ଆଧାରକରି ବିଜ୍ଞାନର ବିଜୟଯାତ୍ରା ଅଗ୍ରସର ହୋଇଛି ତାହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ବୈଜ୍ଞାନିକ ଗବେଷଣା ଓ ଜ୍ଞାନର ମୂଳଭିତ୍ତି ହେଉଛି ପ୍ରକୃତିବାଦ । ଆମ ଚତୁଃପାର୍ଶ୍ୱରେ ଯାହା ସବୁ ଅଛି ବା ଯାହା ସବୁ ଘଟଣା ଘଟେ ତାହା ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ବା କାରଣ ରହିଛି । କୌଣସି ପ୍ରାକୃତିକ ଘଟଣାର ପଶ୍ଚାତରେ କିଛି ଅତିପ୍ରାକୃତିକ ବା ଦୈବୀ କାରଣ ନାହିଁ । ପ୍ରକୃତିରେ ବହୁ ରହସ୍ୟ ରହିଛି । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ଏହି ରହସ୍ୟ ସ୍ୱାଭାବିକ ମନେହୁଏ । ତେବେ ମଣିଷ ନିଜର ପ୍ରୟାସ ଓ ଗବେଷଣାଦ୍ୱାରା ବହୁ ଘଟଣାର ରହସ୍ୟକୁ ଜାଣିପାରିବ । ଅତୀତରେ ଅନେକ ରହସ୍ୟ ଆଜି ବ୍ୟାଖ୍ୟା କରିବାକୁ ମଣିଷ ସମର୍ଥ ହୋଇପାରିଛି । ସେହିପରି ଆଜି ଆମ ପାଇଁ ଯାହା ରହସ୍ୟଜନକ ମନେହେଉଛି ମାନବିକ ପ୍ରୟାସ ଓ ଅନୁସନ୍ଧିତ୍ସାଦ୍ୱାରା ତାହା ଆଗାମୀ ଦିନରେ ବୋଧଗମ୍ୟ ହୋଇପାରିବ । ପ୍ରକୃତିର ରହସ୍ୟକୁ ମାନବିକ ପ୍ରୟାସରେ ଉନ୍ମୋଚିତ କରିବା ସମ୍ଭବ । ପ୍ରକୃତିରେ ଯେଉଁ ଶୃଙ୍ଖଳା ଓ ଏକରୂପତା ବିଦ୍ୟମାନ ରହିଛି ତାହାର ଆବିଷ୍କାରଦ୍ୱାରା ପ୍ରକୃତି ସମ୍ପର୍କରେ ଆମର ଜ୍ଞାନ ବୃଦ୍ଧି ପାଇପାରିବ । ପ୍ରତ୍ୟେକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ଓ ନିୟମ ରହିଛି, କୌଣସି ଅତିପ୍ରାକୃତିକ ବା ଈଶ୍ୱରୀୟ କାରଣ ନାହିଁ । ପ୍ରକୃତିରେ ରହିଥିବା ଶୃଙ୍ଖଳା, କାର୍ଯ୍ୟ-କାରଣ ନିୟମ ଓ ଏକରୂପତା ବିଷୟରେ ଆମର ଜ୍ଞାନ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇବା ବୈଜ୍ଞାନିକ କ୍ରିୟାଶୀଳତାର ପରିଣାମ । ଏହାରି ଆଧାରରେ ପ୍ରକୃତି ଉପରେ ଆମର କେତେକ ନିୟନ୍ତ୍ରଣ ଆସିପାରିଛି । ପ୍ରାକୃତିକ ପ୍ରତିକୂଳ ସ୍ଥିତିକୁ ସମ୍ମୁଖୀନ ହେବାକୁ ମଣିଷ ଧୀରେ ଧୀରେ ନିଜର ସାମର୍ଥ୍ୟ ବୃଦ୍ଧି କରିପାରୁଛି ।

ବୈଜ୍ଞାନିକ ଜ୍ଞାନ ଏକ ବ୍ୟବସ୍ଥିତ ପ୍ରଣାଳୀ ମଧ୍ୟ ଦେଇ ସମ୍ଭବ ହୋଇଥାଏ । ସେହି ପ୍ରଣାଳୀ ମୁକ୍ତ ଓ ନିରପେକ୍ଷ । ତାହାର ଆଧାର ହେଉଛି ପ୍ରତ୍ୟକ୍ଷ, ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ସ୍ଥଳ ବିଶେଷରେ ସମ୍ଭାବନା ବା ପ୍ରକଳ୍ପ ସଂରଚନାର ଆଶ୍ରୟ ନିଆଯାଏ ।

ସମ୍ଭାବ୍ୟ ପ୍ରକଳ୍ପକୁ ବିଭିନ୍ନ ସ୍ଥିତିରେ ପରୀକ୍ଷା କରାଯାଏ । ବାରମ୍ବାର ପରୀକ୍ଷିତ ହେବାପରେ ଏହା ସ୍ୱୀକୃତ ହୁଏ ବା ବ୍ୟତିକ୍ରମ ଦେଖାଦେଲେ ଏହାକୁ ପରିହାର କରି ନୂତନ ପ୍ରକଳ୍ପର ଅନୁମାନ କରାଯାଏ । ଏହିପରି ପରୀକ୍ଷାଦ୍ୱାରା ସିଦ୍ଧାନ୍ତ ନିର୍ମାଣ କରାଯାଏ । ଏକ ସିଦ୍ଧାନ୍ତ ବା ସାମାନ୍ୟୀକରଣ କେବଳ ଏକକ ଘଟଣାକୁ ବ୍ୟାଖ୍ୟା କରେ ନାହିଁ ବରଂ ସେହି ସମ୍ବନ୍ଧୀୟ ସକଳ ଘଟଣାକୁ ବ୍ୟାଖ୍ୟା କରିବାକୁ ସମର୍ଥ ହୋଇଥାଏ । ବିଜ୍ଞାନ ଯେଉଁ ପଦ୍ଧତି ପ୍ରୟୋଗ କରେ ତାହା ସକଳ ବସ୍ତୁନିଷ୍ଠ ଜ୍ଞାନର ମୂଳଭିତ୍ତି ଓ ସାର୍ବଜନୀନ । ଏକ ସାର୍ବଜନୀନ ପ୍ରଣାଳୀର ପ୍ରୟୋଗ ମାଧ୍ୟମରେ ବିଜ୍ଞାନ ତାର ଜ୍ଞାନର ପରିସରକୁ ବ୍ୟାପକ କରିପାରିଛି । ଏହିଦୃଷ୍ଟିରୁ ଦେଖିଲେ ବୈଜ୍ଞାନିକ ଜ୍ଞାନ ସର୍ବଦା ତଥ୍ୟଆଧାରିତ ଓ ବସ୍ତୁନିଷ୍ଠ । ତେବେ ବିଜ୍ଞାନ ସର୍ବଦା ପ୍ରଗତିଶୀଳ ଜ୍ଞାନ ଦେଇଥାଏ । ନୂତନ ତଥ୍ୟ ବା ଅନୁଭୂତି ଆଧାରରେ କୌଣସି ବୈଜ୍ଞାନିକ ସିଦ୍ଧାନ୍ତକୁ ପରିବର୍ତ୍ତନ କରାଯାଏ । କୌଣସି ବୈଜ୍ଞାନିକ ନିଜର ବ୍ୟାଖ୍ୟାନ ବା ସିଦ୍ଧାନ୍ତକୁ ଶାଶ୍ୱତ ବା ଚିରନ୍ତନ ବୋଲି ଗ୍ରହଣ କରନ୍ତି ନାହିଁ । ଏହା ପ୍ରଗତିଶୀଳ ଓ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ । ବୈଜ୍ଞାନିକ ପ୍ରଣାଳୀ ସ୍ୱସଂଶୋଧନାତ୍ମକ ଓ ପରିବର୍ତ୍ତନର ସମ୍ଭାବନାକୁ ଉନ୍ମୁକ୍ତ ରଖିଥାଏ । ଏହି ଦୃଷ୍ଟିରୁ ବିଚାରକଲେ ବୈଜ୍ଞାନିକ ବିଚାର କ୍ଷେତ୍ରରେ ପରସ୍ପରବିରୋଧୀ ସିଦ୍ଧାନ୍ତ ରହିବା ସମ୍ଭବ ନୁହେଁ । ସୁତରାଂ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ, ତଥ୍ୟଭିତ୍ତିକ, ପ୍ରଣାଳୀବଦ୍ଧ, ସାର୍ବଜନୀନ ଓ ଆବଶ୍ୟକ ବେଳେ ସ୍ୱସଂଶୋଧନାତ୍ମକ ।

ପୁନଶ୍ଚ ପ୍ରକୃତିର ବିଭିନ୍ନ କ୍ଷେତ୍ରରେ ରହିଥିବା ନିୟମ ଓ ସିଦ୍ଧାନ୍ତମାନ ପରସ୍ପର ସହ ସଂଯୋଜିତ ଓ ପରସ୍ପରର ପରିପୂରକ । ପଦାର୍ଥବିଜ୍ଞାନ, ରସାୟନବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ଭୂତତ୍ତ୍ୱବିଜ୍ଞାନ ଇତ୍ୟାଦି ବିଜ୍ଞାନର ଯେତେ ଯେତେ କ୍ଷେତ୍ର ରହିଛି ସେହି ପ୍ରତ୍ୟେକ କ୍ଷେତ୍ରରେ ବହୁବିଧ ନିୟମ, ସିଦ୍ଧାନ୍ତମାନ ରହିଛି । ସମସ୍ତ ନିମୟ ଓ ସିଦ୍ଧାନ୍ତମାନ ପରସ୍ପର ସହ ସମତାଳ ଓ ସଂଯୁକ୍ତ । ସକଳ ନିୟମ, ସିଦ୍ଧାନ୍ତ, ପ୍ରକଳ୍ପମାନ ଏକ ପରସ୍ପର-ସଂଯୋଜିତ କ୍ରମ ସୃଷ୍ଟି କରିଥାନ୍ତି । ଏହି ପୃଷ୍ଠଭୂମିରେ ଯାହା ବୈଜ୍ଞାନିକ ପ୍ରକ୍ରିୟାରେ ବ୍ୟାଖ୍ୟା କରିବା ସମ୍ଭବ ହୁଏ ନାହିଁ, ତାହା ବିଜ୍ଞାନ ସ୍ୱୀକାର କରିଥାଏ । ପ୍ରାକୃତିକ ଜଟିଳତା ଜନିତ କାରଣରୁ ଯାହା ଏକ ନିର୍ଦ୍ଧାରିତ ପଦ୍ଧତିରେ ବ୍ୟାଖ୍ୟାକରିବା ସମ୍ଭବ ନୁହେଁ ତାହାକୁ ଗ୍ରହଣକରି ବିଜ୍ଞାନ ମାନବିକ ଅନୁସନ୍ଧିତ୍ସାର ଦ୍ୱାରକୁ ସର୍ବଦା ଉନ୍ମୁକ୍ତ ରଖିଥାଏ ।

ମାନବିକ ପ୍ରୟାସ, ଅନୁସନ୍ଧିତ୍ସା ଓ ଗବେଷଣାର ପରିଣାମ ସ୍ୱରୂପ ବିଜ୍ଞାନର

ବିକାଶ ଏକ ଉତ୍ତୁଙ୍ଗ ଶିଖରକୁ ସ୍ପର୍ଶ କରିପାରିଛି ଓ ଏହି ଧାରା ଏବେ ବି ଉନ୍ମୁକ୍ତ ରହିଛି। ସଭ୍ୟତା ଯେତେ ଅଗ୍ରସର ହେଉଥିବ, ଜ୍ଞାନର ଦିଗନ୍ତ ସେତେ ବିସ୍ତାରିତ ହେଉଥିବ। ତେବେ ଏ କ୍ଷେତ୍ରରେ ଏକ ବଡ ଉପଲବ୍ଧି ହେଉଛି ଯେ ସଭ୍ୟତାରେ ଯାହା ସବୁ ବିକଶିତ ହୋଇଛି ସେସବୁ ମାନବୀୟ ପ୍ରୟାସ ଓ ପ୍ରଚେଷ୍ଟା ମଧ୍ୟ ଦେଇ ସମ୍ଭବ ହୋଇଛି। କୌଣସି ବିକାଶ ଆକାଶରୁ ଖସି ନାହିଁ ବା କେଉଁ କଳ୍ପିତ ଦିଅଁ ଦେବତାଙ୍କ ଆଶୀର୍ବାଦରୁ ମିଳି ନାହିଁ। ସେହିପରି ସେଥିରୁ ମଧ୍ୟ ଏହି ସିଦ୍ଧାନ୍ତ ଆସୁଛି ଯେ ସାମାଜିକ ବିକାଶ ପ୍ରକ୍ରିୟା ନାନା ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ କାରଣ ଦେଇ ସମ୍ଭବ ହୋଇଛି। ସକଳ ନୀତି, ନୈତିକତା, ମୂଲ୍ୟବୋଧ ମାନବିକ ଅନୁଭୂତି ଓ ଉନ୍ନତ ସାମାଜିକ ଜୀବନ ନେଇ ଚିନ୍ତନରୁ ଉଦ୍ଭବ ହୋଇଛି। ଏହା ପଶ୍ଚାତରେ ସୁଦୀର୍ଘ ଇତିହାସ ରହିଛି। ଆଦିମ ଗୋଷ୍ଠୀ ଜୀବନରୁ ଆରମ୍ଭ ହୋଇଥିବା ଯାତ୍ରା ଆନ୍ତର୍ଜାତିକ ପରିବେଶ ନେଇ ଚେତନା ସୃଷ୍ଟି କରିପାରିଛି। ଆଜି ବିଶ୍ୱ ସରକାର, ସାର୍ବଜନୀନ ଜୀବନବୋଧ, ଆନ୍ତର୍ଜାତିକ ସଂପୃକ୍ତି ପରି କେତେ କେତେ ବିଚାର ବ୍ୟକ୍ତହେବାରେ ଲାଗିଛି। ବିଜ୍ଞାନ ବିଶ୍ୱଦୃଷ୍ଟି ଓ ମାନବବାଦୀ ଚେତନାର ବିକାଶ ଦିଗରେ ମଧ୍ୟ ନିର୍ଣ୍ଣାୟକ ଭୂମିକା ନେଇପାରିବ। ତେବେ ବିଜ୍ଞାନର ଅପପ୍ରୟୋଗ ସଭ୍ୟତାର ମୃତ୍ୟୁଘଣ୍ଟି ମଧ୍ୟ ବଜାଇବାର ସମ୍ଭାବନାକୁ ଅସ୍ୱୀକାର କରି ହେବ ନାହିଁ।

(ପ୍ରଗତିବାଦୀ, ୨୨.୧୧.୨୦୧୭)

# ବିଜ୍ଞାନ ବନାମ ବିଶ୍ୱାସ

ଗତ କିଛି ବର୍ଷ ତଳେ ଦେଶର କେତେକ ବରିଷ୍ଠ ନାଗରିକ ଓ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ "ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ" ସଂପର୍କରେ ଏକ ଘୋଷଣାନାମା ପ୍ରକାଶ କରିଥିଲେ। ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ଅର୍ଜନ କରିଥିବା ଭାରତର ସତେଇଶ ଜଣ ବୈଜ୍ଞାନିକ ଏହି ଘୋଷଣାନାମାରେ ସ୍ୱାକ୍ଷର କରି ମତପୋଷଣ କରିଥିଲେ ଯେ ବିଜ୍ଞାନର ବିକାଶ ସହ ବୈଜ୍ଞାନିକ ମନୋଭାବର ପ୍ରସାର ସମାଜ ପାଇଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ। ଭାରତୀୟ ସମାଜରେ ବୃଦ୍ଧି ପାଉଥିବା କୁସଂସ୍କାର, ଅବୈଜ୍ଞାନିକ ବିଚାର, ଚମତ୍କାରିତାରେ ବିଶ୍ୱାସ, ସାମାଜିକ ଭେଦଭାବ ଇତ୍ୟାଦି ନେଇ ଏହି ବୈଜ୍ଞାନିକ ବୁଦ୍ଧିଜୀବୀମାନେ ଗଭୀର ଉତ୍କଣ୍ଠା ପ୍ରକାଶ କରିଥିଲେ। ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ଯେତେ ବିକାଶ ଓ ପ୍ରସାର ହେଲେ ମଧ୍ୟ ବୈଜ୍ଞାନିକ ମାନସିକତାର ପ୍ରସାର ନହେଲେ ସମାଜରୁ କୁସଂସ୍କାର ଓ ଅହେତୁକ ଭାବନାର ବିଲୋପ ହେବ ନାହିଁ। ଏପରିକି ଆଧୁନିକ ପ୍ରଯୁକ୍ତି ଓ ଗଣମାଧ୍ୟମକୁ କୁସଂସ୍କାର ଓ ନାନା ଅପବିଶ୍ୱାସର ପ୍ରସାର ପାଇଁ ବିନିଯୋଗ କରାଯିବ। ଆମ ସାମାଜିକ ପରିବେଶରେ ତାହା ହିଁ ଏକ ସାଧାରଣ ଉପଲବ୍ଧି। ଆମେ ଏକବିଂଶ ଶତାବ୍ଦୀର ପ୍ରଯୁକ୍ତି ବ୍ୟବହାର କରୁଛେ। ଅତ୍ୟାଧୁନିକ ଯୋଗାଯୋଗ ବ୍ୟବସ୍ଥା, କମ୍ପ୍ୟୁଟର, ମୋବାଇଲ ଫୋନ, ଉଚ୍ଚମାନର ଇଲେକ୍‌ଟ୍ରୋନିକ ଯନ୍ତ୍ରପାତି, କୃତ୍ରିମ ଉପଗ୍ରହ ମାଧ୍ୟମରେ ସଂଯୋଗ ଯାହା ଗୋଟିଏ ଶତାବ୍ଦୀ ତଳେ ଚିନ୍ତା ସ୍ତରକୁ ଆସିନଥିଲା ତାହା ଏବେ ସାଧାରଣ ମଣିଷର ହାତ ପାହାନ୍ତରେ ମିଳିପାରୁଛି। ଆଧୁନିକ ଚିକିତ୍ସା ବିଜ୍ଞାନ ଅନେକ ସଫଳତା ହାସଲ କଲାଣି, ତଥାପି ଏହା ଆହୁରି ଅନେକ ସଫଳତା ଭବିଷ୍ୟତରେ ହାସଲ କରିବା ପାଇଁ ଅଗ୍ରସର ହେଉଛି। ମୃତବ୍ୟକ୍ତିର ଅଙ୍ଗ ନେଇ ଜୀବିତ ଲୋକପାଖରେ ରୋପଣ ନାନା ଜଟିଳ ଅସ୍ତ୍ରୋପଚାର, କୃତ୍ରିମ ପ୍ରଜନନ ଇତ୍ୟାଦି କେତେ କେତେ ସଫଳତା ଚିକିତ୍ସା ବିଜ୍ଞାନ ହାସଲ କରିବାକୁ ସମର୍ଥ ହେଲାଣି। ଗମନାଗମନ କ୍ଷେତ୍ରରେ ବହୁ ସଫଳତା ମିଳିପାରିଲାଣି ଓ ପୃଥିବୀରୁ ଦୂରତା ଧୀରେ ଧୀରେ ଦୂର ହୋଇଚାଲିଛି। ସେହିପରି କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ସବୁଜ ବିପ୍ଳବ ମାଧ୍ୟମରେ କୃଷି ଉତ୍ପାଦନ ଅନେକ ବୃଦ୍ଧି ପାଇଲାଣି। ଶହେ ବର୍ଷ ତଳେ ସାଧାରଣ ଆୟୁ ଯେତେ ଥିଲା, ଏବେ ତାଠାରୁ ବହୁ ଅଧିକ ବର୍ଷ ମଣିଷ ଆଧୁନିକ ଚିକିତ୍ସାବିଜ୍ଞାନ ଯୋଗୁ ବଞ୍ଚିବାକୁ ସମର୍ଥ ହେଉଛି। ଏକ ବିବରଣୀରୁ ଜଣାଯାଏ ଯେ ପ୍ରତି ଦଶବର୍ଷରେ ହାରାହାରି ଆୟୁ ଅଢେଇ ବର୍ଷ ବୃଦ୍ଧି ପାଇବାରେ ଲାଗିଛି। ଅର୍ଥାତ୍ ଶହେ ବର୍ଷ ତଳେ ମଣିଷ ଯେତେ ବର୍ଷ

ବଞ୍ଚୁଥିଲା ଏବେ ତାଠାରୁ ଅଧିକ ପଚିଶ ବର୍ଷ ବଞ୍ଚିବାକୁ ସମର୍ଥ ହେଲାଣି। ପରିବେଶ ଏବେ ପ୍ରଦୂଷିତ ହୋଇ ଚାଲିଥିଲେ ମଧ୍ୟ ମଣିଷ ଅଧିକ ବର୍ଷ ବଞ୍ଚିବାକୁ ସମର୍ଥ ହେଉଛି। ମୋଟ ଉପରେ କହିଲେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବହୁ କ୍ଷେତ୍ରରେ ଜୀବନର ଭୌତିକ ମାନ ବୃଦ୍ଧି କରିବାରେ ସାହାଯ୍ୟ କରିପାରୁଛି। ତେବେ ବିଡମ୍ବନାର ବିଷୟ ଆମେ ଏକବିଂଶ ଶତାବ୍ଦୀର ପ୍ରଯୁକ୍ତି ବ୍ୟବହାର କରୁଥିଲେ ମଧ୍ୟ ବହୁ ମଧ୍ୟଯୁଗୀୟ କୁସଂସ୍କାର ଓ ବର୍ବରତା ଆମ ସମାଜରେ ଭରପୁର ହୋଇରହିଛି। ତନ୍ତ୍ର, ମନ୍ତ୍ର, କଳାଯାଦୁ, ଗୁଣି, ଗାରେଡ଼ି ଇତ୍ୟାଦିରେ ଏବେ ବି କେତେ ଲୋକ ବିଶ୍ୱାସ କରନ୍ତି। ଅନେକ ତନ୍ତ୍ରପୀଠ ବା ଦେବୀ ମନ୍ଦିରରେ ବିଭିନ୍ନ ପଶୁବଳି ପରମ୍ପରା ନାମରେ ଦିଆଯାଉଛି। ଅତୀତରେ ହୁଏତ ସେଠାରେ ନରବଳି ଦିଆଯାଉଥିବାର ଜନଶ୍ରୁତି ରହିଛି। ତେବେ ପରିବର୍ତ୍ତିତ ପରିସ୍ଥିତିରେ ନରବଳି ପରିବର୍ତ୍ତେ ପଶୁବଳି ଅବ୍ୟାହତ ରହିଛି। କେତେକ ଗୋଷ୍ଠୀ ଭିତରେ ରୋଗ ଓ ଅସୁସ୍ଥତାରୁ ମୁକ୍ତି ପାଇଁ ପିଲାଙ୍କୁ ଚେଙ୍କ ଦିଆଯାଉଛି। ବିଭିନ୍ନ ଗାଁ ଗହଳରେ କୁଲା ବୁଲା, ଖଟ ବୁଲା ପରି ମଧ୍ୟଯୁଗୀୟ ପନ୍ଥାର ଆଶ୍ରୟ ନିଆଯାଉଛି। ଡାହାଣୀ ଜନିତ ହତ୍ୟାକାଣ୍ଡ ପ୍ରତିବର୍ଷ ଘଟୁଛି। ମନ୍ତ୍ର ତନ୍ତ୍ରର ବିଶ୍ୱାସ ନେଇ ଗାଁ ଗହଳରେ ବେଳେବେଳେ ଆଇନଶୃଙ୍ଖଳା ପରିସ୍ଥିତି ବି ସୃଷ୍ଟି ହେଉଛି। ସମାଜରେ ଏତେ ପ୍ରକାରର କୁସଂସ୍କାର, ଅପବିଶ୍ୱାସ, ଅବୈଜ୍ଞାନିକ ଓ ଅହେତୁକ ମନୋଭାବ ରହିଛି ତାହାର କାହାଣୀ ବେଶ୍ ସୁଦୀର୍ଘ ମନେହୁଏ।

ତେବେ କେବଳ ଯେ ଗାଁ ଗହଳର ସାଧାରଣ ଓ ଉଚ୍ଚଶିକ୍ଷାର ସୁଯୋଗ ପାଇନଥିବା ଲୋକମାନଙ୍କ ଭିତରେ କୁସଂସ୍କାର ରହିଛି ତାହା ନୁହେଁ, ସମାଜର ବହୁ ଉଚ୍ଚଶିକ୍ଷିତ ଓ ସାମାଜିକ ପ୍ରଭାବ ରହିଥିବା ଲୋକମାନେ ମଧ୍ୟ କୁସଂସ୍କାରରୁ ମୁକ୍ତ ହୋଇପାରୁ ନାହାନ୍ତି। ବହୁ ଶିକ୍ଷିତ ବ୍ୟକ୍ତି ମଧ୍ୟ ନାନା କୁସଂସ୍କାରରେ ବିଶ୍ୱାସ କରିବା ବଡ ବିଡମ୍ବନା। ଶୂନ୍ୟରୁ ବସ୍ତୁ ସୃଷ୍ଟି କରାଯିବା ସମ୍ଭବ ବୋଲି କେତେକ ବାବା ଓ ତଥାକଥିତ ଦେବପୁରୁଷ ଯେଉଁ ଚମତ୍କାରିତା ଦେଖାନ୍ତି ତାକୁ ବହୁ ଶିକ୍ଷିତ ଲୋକ ବି ବିଶ୍ୱାସ କରନ୍ତି। କେତେକ ତଥାକଥିତ ବାବା, ସାଧୁ ଓ ଦେବପୁରୁଷ କିଛି କୌଶଳ ପ୍ରୟୋଗକରି କିଛି ଚମତ୍କାରିତା ସୃଷ୍ଟି କରନ୍ତି। ଏହି ହାତସଫେଇ କଳା ଦେଖାଇବା ମାଧ୍ୟମରେ ସାଧାରଣ ଲୋକମାନଙ୍କୁ ଯେ ସହଜରେ ପ୍ରଭାବିତ କରିହେବ ତାହା ସେମାନେ ଭଲଭାବେ ଜାଣନ୍ତି। ଲୋକମାନେ ଅନୁଭବ କରନ୍ତି ଯେ ଯିଏ ଏପରି ଚମତ୍କାରିତା ଦେଖାଇ ପାରୁଛନ୍ତି ସେ ନିଶ୍ଚୟ ଅଲୌକିକ ଶକ୍ତିର ଅଧିକାରୀ। ତେଣୁ ତାଙ୍କର ଅନୁଗତ ବା ଭକ୍ତ ହେଲେ ସେମାନଙ୍କ ଜୀବନର ସମସ୍ୟା ଅକ୍ଳେଶରେ ଦୂର ହୋଇପାରିବ। ସାଧାରଣ ଲୋକମାନେ ଏହିପରି ମନସ୍ତାତ୍ତ୍ୱିକ କାରଣରୁ ବାବାମାନଙ୍କର ଭକ୍ତ ହେବା

ଦେଖାଯାଏ। ବାବାମାନେ ମଧ୍ୟ ଲୋକମାନଙ୍କର ଏହି ଦୁର୍ବଳତା ଜାଣି କିଛି ନା କିଛି ଚମତ୍କାରିତା କୌଶଳକ୍ରମେ ଦେଖାଇ ସେମାନଙ୍କର ସାମ୍ରାଜ୍ୟ ବିସ୍ତାର କରିଥାନ୍ତି। ସେହିପରି କେତେକ ବ୍ୟକ୍ତି କେତେକ ପ୍ରାଚୀନ ଯୁଗର ବିଶ୍ୱାସକୁ ପରମ୍ପରା ଓ ଐତିହ୍ୟର ରୂପ ଦେଇ ତାକୁ ନିଷ୍ଠାର ସହ ବିଶ୍ୱାସ କରିଥାନ୍ତି। ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ନାନା ପ୍ରକାରର ପୂଜା, ପାର୍ବଣ ଆମର ବର୍ଷସାରା ପାଳିତ ହୁଏ। ବିଭିନ୍ନ ଦେବତାଙ୍କୁ ପୂଜା ଆରାଧନା କରି ସେମାନଙ୍କ ପାଖରେ ମଣିଷ ତାର ମନର ଭାବ ବ୍ୟକ୍ତ କରିଥାଏ। ତାର ବିଶ୍ୱାସ ଯେ ବିଭିନ୍ନ ଦେବତାଙ୍କ ଆଶୀର୍ବାଦରୁ ସେ ସକଳ ପ୍ରତିକୂଳ ଅବସ୍ଥାକୁ ଅତିକ୍ରମି ପାରିବ। ଜୀବନର ବିଭିନ୍ନ କ୍ଷେତ୍ର ପାଇଁ ଆମ ସଂସ୍କୃତିରେ ବିଭିନ୍ନ ଦେବା-ଦେବୀଙ୍କୁ କଳ୍ପନା କରାଯାଇଛି। କିଏ ଧନ, ପ୍ରାଚୁର୍ଯ୍ୟର ଦେବୀ ତ ଆଉ କେହି ବିଦ୍ୟାର ଦେବୀ। କିଏ ମୃତ୍ୟୁର ଦେବତା ତ ଆଉ କିଏ ଜନ୍ମର ଦେବତା। କିଏ ନିର୍ମାଣର ଦେବତା ତ କିଏ ବର୍ଷାର ଦେବତା। ଆଗକାଳରେ ଏହି ବିଶ୍ୱାସ ସମାଜରେ ପରିବ୍ୟାପ୍ତ ଥିଲା ଯେ ପ୍ରକୃତିର ଓ ଜୀବନଧାରାର ଯେତେ ଯେତେ କ୍ଷେତ୍ର ରହିଛି ପ୍ରତ୍ୟେକ କ୍ଷେତ୍ର ବା ବିଭାଗକୁ କେହି ଦେବ ବା ଦେବୀ ନିୟନ୍ତ୍ରଣ କରୁଛନ୍ତି। ତେଣୁ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଉଦ୍ଦେଶ୍ୟରେ ସଂପୃକ୍ତ ଦେବତାଙ୍କୁ ଆରାଧନା କରିବାକୁ ହେବ। ଜୀବନର ସବୁ କିଛି ଦୈବୀ ନିୟନ୍ତ୍ରଣ ମାଧ୍ୟମରେ ପରିଚାଳିତ ହୁଏ ଏହା ଥିଲା ସାଧାରଣ ବିଶ୍ୱାସ। ଯେତେବେଳେ ବିଭିନ୍ନ ପ୍ରକାରର ମହାମାରୀ ଯୋଗୁ ଗଣମୃତ୍ୟୁର ପରିବେଶ ଆସୁଥିଲା, ସେତେବେଳେ ଲୋକମାନେ ସେଥିରୁ ମୁକ୍ତି ପାଇବାକୁ କେତେ କେତେ ଦେବତାଙ୍କୁ ଆରାଧନା କରୁଥିଲେ। ବିଭିନ୍ନ ପ୍ରକାରର ନାମ ଯଜ୍ଞ, ଅଷ୍ଟପ୍ରହରୀ ଇତ୍ୟାଦି ଗ୍ରାମମାନଙ୍କରେ କରାଯାଉଥିଲା। ଲୋକବିଶ୍ୱାସ ଥିଲା ଯେ ଏହାଦ୍ୱାରା ଦେବତାଙ୍କ ଆଶୀର୍ବାଦରୁ ମହାମାରୀ ସୃଷ୍ଟି ହେବ ନାହିଁ। ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀ ରହିଥିଲେ। ତାଙ୍କ ପାଖରେ କେତେ କେତେ ପୂଜା, ଆରାଧନା କରାଯାଉଥିଲା ଓ ବିଶ୍ୱାସ ରହିଥିଲା ଯେ ଗ୍ରାମର ମଙ୍ଗଳ ଗ୍ରାମଦେବୀଙ୍କ କରୁଣା ଉପରେ ନିର୍ଭର କରେ। ପ୍ରତ୍ୟେକ ଦେବ ବା ଦେବୀଙ୍କ ପୂଜା ପାଇଁ ସ୍ୱତନ୍ତ୍ର ଉପଚାର ପଦ୍ଧତି ଓ ମନ୍ତ୍ର ସୃଷ୍ଟି କରାଯାଇଥିଲା। ପ୍ରତ୍ୟେକ ଦେବ ବା ଦେବୀଙ୍କୁ କେନ୍ଦ୍ର କରି ବିଭିନ୍ନ ପ୍ରକାରର କାହାଣୀ, ରଚନା କରାଯାଇଥିଲା। ପ୍ରତ୍ୟେକ ଦେବ ବା ଦେବୀଙ୍କ ମାହାତ୍ମ୍ୟର ପ୍ରସାର ପାଇଁ ତାଙ୍କ ନାମରେ କେତେ କେତେ ଅଲୌକିକ କାହାଣୀ ଓ କିମ୍ବଦନ୍ତୀ ସୃଷ୍ଟି ହୋଇଥିଲା। ଏହି ସବୁ କାହାଣୀ ଓ କିମ୍ବଦନ୍ତୀମାନଙ୍କର ଗଭୀର ପ୍ରଭାବ ଜନମାନସକୁ ପ୍ରଭାବିତ କରୁଥିଲା। ସେହି କାଳ୍ପନିକ କାହାଣୀ ଓ କିମ୍ବଦନ୍ତୀ ଯେ ସତ୍ୟ ଏହି ବିଶ୍ୱାସ ଜନମାନସରେ ବ୍ୟାପକ ଭାବେ ରହିଥିଲା। ସେହି ଦେବାଦେବୀମାନେ ଅଲୌକିକ ଶକ୍ତିର ଅଧିକାରୀ ଥିଲେ। ସେମାନେ ସନ୍ତୁଷ୍ଟ

ହେଲେ ବିଭିନ୍ନ ବରଦାନ କରୁଥିଲେ । ତାଙ୍କଠାରୁ ବରପ୍ରାପ୍ତ ହେଲେ ମଣିଷ ଅସାଧ୍ୟ ସାଧନ କରିପାରୁଥିଲା । କିଏ ମୂର୍ଖରୁ ମହାକବି ହେଉଥିଲା, କିଏ ନିଜର ମୃତ ସ୍ୱାମୀଙ୍କ ଜୀବନ ଫେରାଇ ଆଣିପାରୁଥିଲା, କିଏ ପଥରରୁ ନାରୀ ପାଲଟୁଥିଲା, କିଏ ପର୍ବତକୁ ଉଡାଇ ନେଇପାରୁଥିଲା ଇତ୍ୟାଦି କାହାଣୀମାନ ଆମ ଲୋକବିଶ୍ୱାସରେ ବ୍ୟାପକ ଥିବା ମନେହୁଏ । ଏଗୁଡ଼ିକ କେବଳ ପ୍ରାଚୀନ ଯୁଗର ଲୋକବିଶ୍ୱାସ ବା କାହାଣୀ ବୋଲି ନେବା ପରିବର୍ତ୍ତେ ଏଗୁଡ଼ିକ ଯେ ବାସ୍ତବ ଘଟଣା ଏହି ପ୍ରକାରର ବିଶ୍ୱାସ ଆମ ଜନମାନସରେ ପ୍ରସାରିତ ହୋଇଥିଲା ।

ସେହିପରି ଭୂତ, ପ୍ରେତ, ଆତ୍ମା, ଅଶରୀର ସତ୍ତା, ସ୍ୱର୍ଗ, ନରକ, ପୂର୍ବଜନ୍ମ, ପରଜନ୍ମ ପରି ନାନା ବିଶ୍ୱାସ ଆମ ଜନଜୀବନରେ ବ୍ୟାପକ ଭାବେ ରହିଥିବା ଦେଖାଯାଏ । ମନସ୍ତାତ୍ତ୍ୱିକ ସମସ୍ୟା ଜନିତ କାରଣରୁ ଅସ୍ୱାଭାବିକ ବ୍ୟବହାରକୁ ଭୂତ ଲାଗିବା ବୋଲି ବିଶ୍ୱାସ କରାଯାଉଥିଲା । ଯଦି କେହି କିଛି ଅପ୍ରାକୃତିକ ବ୍ୟବହାର ପ୍ରଦର୍ଶନ କରେ ଆମର ଧାରଣା ହୁଏ ଯେ ତାଠାରେ କିଛି ଅଶରୀରୀ ସତ୍ତା ପ୍ରବେଶ କରିଛି । କୌଣସି ଘଟଣାର କାରଣ ଜଣାନଥିବା ବେଳେ ବୈଜ୍ଞାନିକ ମନୋଭାବ ଅଭାବରେ ତାହାକୁ ଏକ ଅଲୌକିକ କାଣ୍ଡ ବା କୌଣସି ଅଦୃଶ୍ୟ ଶକ୍ତିର କାର୍ଯ୍ୟ ବୋଲି ବିଶ୍ୱାସ କରିବା ସାଧାରଣ ମନସ୍ତତ୍ତ୍ୱ ଥିଲା । ଆଜି ଯାହା ଏକ ସ୍କୁଲ ଛାତ୍ର ବ୍ୟାଖ୍ୟା କରିବାକୁ ସମର୍ଥ, ଦୁଇ ତିନି ଶତାବ୍ଦୀ ତଳେ ସମାଜର ପ୍ରତିଭାଶାଳୀ ବୈଜ୍ଞାନିକମାନେ ବୁଝାଇବା ସମ୍ଭବ ନଥିଲା । ସେହି ସ୍ଥିତିରେ ସମସ୍ତ ଘଟଣାକୁ ଦୈବୀ ନିୟନ୍ତ୍ରଣ ଆଧାରରେ ବୁଝିବା ସାଧାରଣ ମଣିଷ ପାଇଁ ବେଶ୍ ସ୍ୱାଭାବିକ ଥିଲା । ତା ଚାରିପାଖରେ ଘଟୁଥିବା ଘଟଣା ଓ ଜୀବନରେ ଆସୁଥିବା ପ୍ରତ୍ୟେକ ପରିସ୍ଥିତି ପାଇଁ ସେ କୌଣସି ଅତୀନ୍ଦ୍ରିୟ ଶକ୍ତିକୁ ଦାୟୀ କରୁଥିଲା । ଏହିପରି ବିଶ୍ୱାସ ଆଧାରରେ ଜୀବନଯାତ୍ରାରେ ଧାର୍ମିକ ଆବେଗ, ଆରାଧନା ଓ ଭକ୍ତିଭାବ ପ୍ରମୁଖ ଭୂମିକ ନେଇଥାଏ । ବିଶ୍ୱାସ ହିଁ ଜୀବନବୋଧର ପ୍ରଧାନ ଆଧାର ଥିଲା । ଏହା ସହିତ ସମାଜର ପ୍ରଭାବଶାଳୀ ପୂଜକ ଗୋଷ୍ଠୀ ଏହି ସବୁ ବିଶ୍ୱାସକୁ ଲୋକମାନଙ୍କ ମଧ୍ୟରେ ପ୍ରସାର କରୁଥିଲେ, କାରଣ ଏହା ଦ୍ୱାରା ସେମାନେ ଉପକୃତ ହେଉଥିଲେ । ଏହା ବ୍ୟତୀତ ଏସବୁ ଭାବନାକୁ ନେଇ ବିଭିନ୍ନ ପୁରାଣ ଶାସ୍ତ୍ର ରଚନା ହେଉଥିଲା ଓ ଯାହା ପୁରାଣରେ ବର୍ଣ୍ଣିତ ହୋଇଛି ତାହା ସତ୍ୟ ବୋଲି ସାଧାରଣ ବିଶ୍ୱାସ କରାଯାଉଥିଲା । ଅତୀତରେ ଲୋକବିଶ୍ୱାସ ଓ କଳ୍ପନା ପରେ ପରମ୍ପରାର ରୂପ ନେଲା ଓ ପରମ୍ପରା ଏବେ ସାଂସ୍କୃତିକ ବିଭବର ମୂଲ୍ୟ ନେଇଥିବା ମନେହୁଏ ।

(ପ୍ରଗତିବାଦୀ, ୨୯.୧୧.୨୦୧୭)

# କୁସଂସ୍କାର ଓ ସାମାଜିକ ଚେତନା

ଆମ ସାମାଜିକ ଚେତନାର ସ୍ତର କେଉଁଠି ରହିଛି ? ଏକବିଂଶ ଶତାବ୍ଦୀରେ ଆମ ସମାଜରେ ଏତେ କୁସଂସ୍କାର ରହିବା ବିଡମ୍ବନା ନିଶ୍ଚୟ । ନିକଟରେ ଘଟି ଯାଇଥିବା ଦୁଇଟି ଘଟଣା ଉଲ୍ଲେଖ କରୁଛି । ପ୍ରଥମ ଘଟଣାଟି ହେଲା କେନ୍ଦୁଝର ଜିଲ୍ଲାର ଲାହଣ୍ଡା ଗ୍ରାମରେ ଗୁଣିଗାରେଡି ସନ୍ଦେହରେ ଛ' ଜଣ ଲୋକଙ୍କୁ ହତ୍ୟା ଓ ଦ୍ୱିତୀୟ ଘଟଣାଟି ହେଲା ଗୋଦାବରୀ ନଦୀର ପୁଷ୍କର ଘାଟରେ ବୁଡ ପକାଇବା ଅବସରରେ ଦଳାଚକଟାରେ ପ୍ରାୟ ତିରିଶ ଜଣ ଲୋକଙ୍କର ମୃତ୍ୟୁ ।

ସମ୍ବାଦ ଅନୁଯାୟୀ ଗୁଣିଗାରେଡି ସନ୍ଦେହରେ ଲାହଣ୍ଡା ଗ୍ରାମରେ କେତେକ ଲୋକ ସଂଘବଦ୍ଧ ଭାବେ ଆକ୍ରମଣ କରି ଗୋଟିଏ ପରିବାରର ଛ'ଜଣଙ୍କୁ ଅମାନୁଷିକ ଭାବେ ହତ୍ୟା କରିଛନ୍ତି । ପରିବାରର ଆଉ ଦୁଇ ଜଣ ବ୍ୟକ୍ତି ମୁମୂର୍ଷ ଅବସ୍ଥାରେ ଚିକିତ୍ସିତ ହେଉଛନ୍ତି । ଗୁଣିଗାରେଡି ଜନିତ ହତ୍ୟାକାଣ୍ଡ, କାହାକୁ ଡାହାଣୀ କହି ତାଙ୍କ ଉପରେ ଅମାନବୀୟ ଅତ୍ୟାଚାର ଓ ମନ୍ତ୍ରତନ୍ତ୍ର ଜନିତ କଳାଯାଦୁର ପ୍ରୟୋଗ ଓଡିଶାର ଜନଜୀବନରେ ଏବେ ବି ଘଟିଚାଲିଛି । ମଧ୍ୟଯୁଗୀୟ ବର୍ବରତା ଏବେ ବି ଆମ ସାମାଜିକ ଜୀବନରେ ନିଛକ ବାସ୍ତବତା ଭାବେ ରହିଛି । ଦ୍ୱିତୀୟ ଘଟଣାଟି ହେଉଛି ନଦୀରେ ବୁଡ ପକାଇବା ସମୟରେ । ସମ୍ବାଦ ଅନୁଯାୟୀ ଗୋଦାବରୀ ନଦୀର ପୁଷ୍କର ଘାଟରେ "ମହା ପବିତ୍ର ପୁଷ୍କର ବୁଡ" ପକାଇବାକୁ ଯାଇ ପ୍ରାୟ ତିରିଶ ଜଣ ବ୍ୟକ୍ତି ସେଠାରେ ଦଳାଚକଟାରେ ପ୍ରାଣ ହରାଇଛନ୍ତି ଓ ଶତାଧିକ ଆହତ ହୋଇଛନ୍ତି । ରାଜମୁନ୍ଦ୍ରିଠାରେ ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ ଓ ତାଙ୍କ ପରିବାରର ଅନ୍ୟ ସଦସ୍ୟମାନେ ବୁଡ ପକାଇ ସାରିବା ପରେ ସେହି ଘାଟରେ ବୁଡ ପକାଇବାକୁ ଶ୍ରଦ୍ଧାଳୁ ଭକ୍ତମାନଙ୍କ ମଧ୍ୟରେ ପ୍ରବଳ ଉତ୍କଣ୍ଠା ସୃଷ୍ଟି ହୋଇଥିଲା । ଘାଟକୁ ଯିବା ପାଇଁ ଏକ ଫାଟକ ପାରହେବା ବେଳେ ଠେଲାପେଲା ହୋଇ କିଛି ବୟସ୍କ ବ୍ୟକ୍ତି ଓ ମହିଳା ସେଠାରେ ପଡି ଯାଇଥିଲେ । ସେମାନଙ୍କୁ ଉଦ୍ଧାର କରିବା ପରିବର୍ତ୍ତେ ଅନ୍ୟ ଶ୍ରଦ୍ଧାଳୁମାନେ ବୁଡ ପକାଇବା ପାଇଁ ସେମାନଙ୍କୁ ଦଳିଚକଟି ଆଗକୁ ଯାଇଥିଲେ । ପରିଣାମତଃ ବୟସ୍କ, ମହିଳା ଓ ଶିଶୁମାନଙ୍କର ମୃତ୍ୟୁ ଘଟିଥିଲା । ଜ୍ୟୋତିଷମାନେ ଗଣନାକରି କହିଥିଲେ ଯେ ୧୪୪ ବର୍ଷ ପରେ ଏହି ପବିତ୍ର ପର୍ବ ପଡିଥିବାରୁ ଏହି ସମୟରେ ସେଠାରେ ବୁଡ ପକାଇଲେ ବହୁ ପୁଣ୍ୟ ଲାଭ ହେବ, ଫଳରେ ଲକ୍ଷ ଲକ୍ଷ ଲୋକ ବୁଡ ପକାଇବାକୁ ସେଠାରେ ସମବେତ ହୋଇଥିଲେ ।

ଏହି ଦୁଇଟି ଘଟଣା ଉଦାହରଣ ମାତ୍ର, ଏହିପରି ଶତାଧିକ ଘଟଣା ଆମ ସାମାଜିକ ଜୀବନରେ ଘଟିବା ଆମେ ଦେଖୁ। ଗୁଣିଗାରେଡି ଜନିତ ଘଟଣାମାନଙ୍କୁ ସାଂପ୍ରତିକ ପରିଭାଷାରେ 'କଳାଯାଦୁ' କୁହାଯାଉଛି। କଳାଯାଦୁର ପରିସର ବହୁ ବ୍ୟାପକ ଥିବା ମନେହୁଏ। ଭୂତ, ପ୍ରେତ, ତନ୍ତ୍ର, ଡାହାଣୀ ଲାଗିବା, ଖଟବୁଲା, କୁଲାବୁଲା, ନଖଦର୍ପଣ, ପାତଚଳନ ପରି ଘଟଣାମାନ ହେଉଛି କଳାଯାଦୁ। ମନୋବିଜ୍ଞାନ, ଚିକିତ୍ସାବିଜ୍ଞାନ ଓ ଅନ୍ୟାନ୍ୟ ଜ୍ଞାନବିଜ୍ଞାନର ବିକାଶ ପୂର୍ବରୁ ନିଜ ପରିବେଶରେ ଘଟୁଥିବା ଘଟଣାମାନଙ୍କୁ ମଣିଷ ନିଜ କଳ୍ପନା ଆଧାରରେ ବ୍ୟାଖ୍ୟା କରୁଥିଲା। ଯେତେବେଳେ ହଇଜା, ବସନ୍ତ, ପ୍ଲେଗ୍ ମହାମାରୀମାନ ସୃଷ୍ଟି ହେଉଥିଲା ସେଗୁଡିକ ଯେ ଦୈବୀଦଣ୍ଡ ଏହି ବିଶ୍ୱାସ ସର୍ବତ୍ର ରହିଥିଲା। କଳ୍ପିତ ଦିଅଁ ଦେବତାଙ୍କୁ ଆରାଧନା କଲେ ରୋଗରୁ ମୁକ୍ତି ମିଳିବ ବୋଲି ଲୋକମାନେ ବିଶ୍ୱାସ କରୁଥିଲେ। ସେହିପରି କୌଣସି ବ୍ୟକ୍ତି କୌଣସି କାରଣରୁ ଅସ୍ୱାଭାବିକ ବ୍ୟବହାର ଦେଖାଉଥିଲେ ତାକୁ ଭୂତ ଲାଗିଛି ବୋଲି ଭାବୁଥିଲେ। ଦୁଷ୍ଟ ଆତ୍ମାର ପ୍ରଭାବରୁ ମୁକ୍ତ ରହିବା ପାଇଁ ତାବିଜ, ତେଉଁରିଆ ପିନ୍ଧୁଥିଲେ ଓ ଅନ୍ୟ କିଛିର ଆଶ୍ରୟ ନେଉଥିଲେ। ନିଜ ଜୀବନକୁ ବିପଦମୁକ୍ତ ରଖିବା ପାଇଁ ନିଜର କଳ୍ପିତ ଦିଅଁ ଦେବତା ପାଖରେ ପଶୁବଳି ପକାଉଥିଲେ। ସେହିପରି ଚୋର ଇତ୍ୟାଦି ଧରିବା ପାଇଁ ତାନ୍ତ୍ରିକମାନଙ୍କର ପରାମର୍ଶ ଅନୁଯାୟୀ କେତେକ ଅହେତୁକ ପଦ୍ଧତିର ଆଶ୍ରୟ ନେଉଥିଲେ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ବିଚାରଶୀଳ ମନୋଭାବଠାରୁ ଦୂରରେ ଥିବା ଲୋକମାନେ ସାମାଜିକ ପରିବେଶରୁ ଯେଉଁ ବିଶ୍ୱାସ ପିଲାଟି ବେଳୁ ପାଉଥିଲେ ସେହି ଆଧାରରେ ନିଜ ଭାବନାକୁ ଦୃଢ କରୁଥିଲେ। ନିଜ ପରିବାରରେ କିଛି ସ୍ୱାସ୍ଥ୍ୟ ସମସ୍ୟା, ଅଘଟଣ ଘଟିଲେ ପରିବାର ସହ କିଛି ମନାନ୍ତର ଥିବା ବ୍ୟକ୍ତିମାନଙ୍କୁ ଏଥି ପାଇଁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ। ଲୋକମାନଙ୍କର ବିଶ୍ୱାସର ସୁଯୋଗ ନେଇ କିଛି କୁଟିଳ ବ୍ୟକ୍ତି ମିଥ୍ୟା ତନ୍ତ୍ରମନ୍ତ୍ର ବାହାନାରେ ଲୋକମାନଙ୍କୁ ଶୋଷଣ କରୁଥିଲେ। ବିଶେଷକରି ଆଧୁନିକ ଶିକ୍ଷା ସଭ୍ୟତାଠାରୁ ଦୂରରେ ଥିବା, ଆଧୁନିକ ଚିକିତ୍ସାର ସୁଯୋଗ ନଥିବା, ଦାରିଦ୍ର୍ୟ ଭିତରେ ଜୀବନ ବଞ୍ଚୁଥିବା ଓ ନାନା କୁସଂସ୍କାର ଜନିତ ବିଶ୍ୱାସରେ ପ୍ରଭାବିତ ଥିବା ଲୋକମାନେ ସାଧାରଣତଃ ଏହି ସବୁ ବିଶ୍ୱାସରେ ଜୀବନ ବଞ୍ଚିବା ଦେଖାଯାଏ। ଏହିସବୁ ବିଶ୍ୱାସରୁ କାହା ପ୍ରତି ସନ୍ଦେହ ସୃଷ୍ଟି ହେଲେ(ସେ ଯେତେ ନିରୀହ ହେଲେ ମଧ୍ୟ) ତାଙ୍କୁ ବା ତାଙ୍କ ପରିବାରକୁ ଅସମ୍ମାନିତ କରିବା, ତାଙ୍କ ପ୍ରତି ଅମାନବିକ ବ୍ୟବହାର ଦେଖାଇବା ବା ହତ୍ୟା କରିବାର ଘଟଣାମାନ ଘଟିଥାଏ। ଯେ ପର୍ଯ୍ୟନ୍ତ ଆଇନଶୃଙ୍ଖଳାର ପରିସ୍ଥିତି ସୃଷ୍ଟି ହୋଇ ନାହିଁ ସେପର୍ଯ୍ୟନ୍ତ ପୋଲିସ, ପ୍ରଶାସନ ବା ଗଣମାଧ୍ୟମ ଲୋକଙ୍କ ବିଶ୍ୱାସ, ତାହା ଯେତେ ଆଧାରହୀନ ଓ ଅହେତୁକ ହେଲେ ବି, ଉପରେ କୌଣସି ସଂପୃକ୍ତି ବ୍ୟକ୍ତ କରନ୍ତି ନାହିଁ। ସମାଜର ମୁଷ୍ଟିମେୟ ବିଚାରଶୀଳ ହେତୁବାଦୀ ସାମାଜିକ ସଂସ୍କାର କ୍ଷେତ୍ରରେ ନିଜର ଗଭୀର ସଂପୃକ୍ତି ଯାହା ବ୍ୟକ୍ତ

କରିଆସୁଛନ୍ତି । ତେବେ ସେମାନଙ୍କ ସଂଖ୍ୟା ଓ ସ୍ୱର ବୃହତ୍ତର ସମାଜରେ କୁସଂସ୍କାର ଦୂର କରିବାରେ ସେପରି ଫଳପ୍ରଦ ହେଉ ନାହିଁ । ଏପରିକି ପରିତାପର ବିଷୟ ଗଣମାଧ୍ୟମ ଲୋକମାନଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରସାର ପରିବର୍ତ୍ତେ ଅହେତୁକ, ଆଧାରହୀନ ଓ ଅବୈଜ୍ଞାନିକ ବିଶ୍ୱାସ ସ୍ଥଳ ବିଶେଷରେ ପ୍ରସାର କରୁଥିବା ଦେଖାଯାଏ । ସେହିପରି ଆମ ଶିକ୍ଷା ବ୍ୟବସ୍ଥାରେ ସ୍ୱାଧୀନ ଚିନ୍ତା, ମାନବିକ ମର୍ଯ୍ୟାଦା, ବୈଜ୍ଞାନିକ ମନୋଭାବ ଓ ବିଚାରଶୀଳ ଦୃଷ୍ଟିଭଙ୍ଗୀର ବିକାଶ କ୍ଷେତ୍ରରେ ସେପରି ପ୍ରାଧାନ୍ୟ ଦିଆଯାଇ ନାହିଁ । ଓଡିଶାରେ ଗୁଣିଗାରେଡି ପ୍ରତିକାର ଓ ସୁରକ୍ଷା ଆଇନ ପାଇଁ "ଓଡିଶା ହେତୁବାଦୀ ସମାଜ" ନାନା ଭାବରେ ପ୍ରୟାସ କରିଛି । ଏତେ ବଡ ଏକ ସାମାଜିକ ସମସ୍ୟା ଥିବା ଏକ ରାଜ୍ୟରେ ସରକାର ଆଇନ ପ୍ରଣୟନ କରିବାକୁ ହେତୁବାଦୀ ସଂଗଠନ ଓଡିଶା ହାଇକୋର୍ଟରେ ପ୍ରଥମେ ଜନସ୍ୱାର୍ଥ ମାମଲା ଦାଏର କରିଥିଲା । ଏହାରି ଆଧାରରେ ହାଇକୋର୍ଟ କଳାଯାଦୁର ପ୍ରୟୋଗକୁ ଦଣ୍ଡନୀୟ ଅପରାଧ କରିବା ପାଇଁ ସରକାରଙ୍କୁ ନିର୍ଦ୍ଦେଶ ଦେବାପରେ ସରକାର ଏ କ୍ଷେତ୍ରରେ କିଛି ଆଇନ କରିଛନ୍ତି । ତେବେ ଜନସଚେତନତା ଅଭାବରେ କେବଳ ଆଇନ ଯେ ବିଶେଷ ଫଳପ୍ରଦ ହେବ ନାହିଁ, ଏହା ଏକ ସାଧାରଣ ଅନୁଭବ । ଏହି ଦୃଷ୍ଟିରୁ ସାମାଜିକ ଚେତନାର ସ୍ତରକୁ ଉନ୍ନତ କରିବାକୁ ହେଲେ ଶିକ୍ଷା ବ୍ୟବସ୍ଥା, ଗଣମାଧ୍ୟମ ଓ ସମାଜସେବୀ ସଂଗଠନମାନ ଏଥିରେ ସଂପୃକ୍ତି ବ୍ୟକ୍ତ କରିବା ଆବଶ୍ୟକ ।

ସାମାଜିକ ମନସ୍ତତ୍ତ୍ୱ ଭିତରେ କେତେକ କୁସଂସ୍କାର ସୂକ୍ଷ୍ମସ୍ତରରେ କାର୍ଯ୍ୟ କରୁଥିବା ଦେଖାଯାଏ । କେତେକ ମୁହୂର୍ତ୍ତ ଶୁଭ, କେତେକ ଅଶୁଭ, କେଉଁ ଶୁଭ ମୁହୂର୍ତ୍ତରେ କେଉଁଠି ବୁଡ ପକାଇଲେ ପୁଣ୍ୟ ଅର୍ଜନ ହେବ ଏକ ଆଧାରହୀନ ବିଶ୍ୱାସ । ସେହିପରି କେଉଁଠି ନଡିଆ ବାଡେଇଲେ, କାହା ପାଦଦର୍ଶନ କଲେ, କାହା ଦଉଡିକୁ ଛୁଇଁଲେ, କେଉଁ ଦିଅଁ ପାଖରେ ଅଧିଆ ପଡିଲେ, ମନ୍ତ୍ରକରା ତେଉଁରିଆ ବାନ୍ଧିଲେ ଜୀବନର ପ୍ରତିକୂଳ ପରିବେଶ ଦୂର ହୋଇଯିବ- ଗୁଡିଏ ଆଧାରହୀନ ବିଶ୍ୱାସ । ଯେଉଁଠି ବ୍ୟକ୍ତିମାନେ ନାନା ପ୍ରତିକୂଳ ସ୍ଥିତିରେ ଜୀବନ ନିର୍ବାହ କରନ୍ତି ଓ ବୃହତ୍ତର ସାମାଜିକ ପରିବେଶ ଉପରେ ଆସ୍ଥା ସ୍ଥାପନ କରିପାରନ୍ତି ନାହିଁ, ଏକ ବିଚାରଶୀଳ ଦୃଷ୍ଟି ଅଭାବରେ ସେମାନେ ଏହିପରି ନାନା ଅହେତୁକ ଭାବନାରେ ଆସ୍ଥା ସ୍ଥାପନ କରନ୍ତି । ଆମ ସାମାଜିକ ଅନଗ୍ରସରତାର ଏହା ଏକ ମୁଖ୍ୟ କାରଣ । ଅନଗ୍ରସରତା ଓ କୁସଂସ୍କାର ଜନିତ ମାନସିକତା ପରସ୍ପରର ସହୋଦର ଭାଇ । ପରିତାପର ବିଷୟ ସମାଜର ଶିକ୍ଷିତ ଓ ପ୍ରଭାବଶାଳୀ ବ୍ୟକ୍ତିବିଶେଷ ମଧ୍ୟ କୁସଂସ୍କାରରୁ ମୁକ୍ତ ହୋଇପାରୁ ନାହାନ୍ତି । ସକଳ ଦିଅଁଦେବତା ମଣିଷ ମନର କଳ୍ପନା, କେଉଁ ଦିଅଁ ଦେବତା ଏକ ଜାତିର ବିକାଶରେ କୌଣସି ଭୂମିକା

ନେଇନାହାନ୍ତି । ପୃଥିବୀର ଯେଉଁ ରାଷ୍ଟ୍ରମାନେ ବିକଶିତ, ସେମାନଙ୍କୁ ଦିଅଁଦେବତାର ଆଶୀର୍ବାଦ ମିଳି ନାହିଁ । ବିକାଶ, ଗୁଣାତ୍ମକ ଜୀବନ ଆକାଶରୁ ଖସେ ନାହିଁ ବା କଳ୍ପିତ ଦିଅଁଦେବତା ଦିଅନ୍ତି ନାହିଁ । ଉଚ୍ଚ କର୍ମସଂସ୍କୃତି, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦୀ ଜୀବନଦୃଷ୍ଟି ଓ ସାଧୁତା ହିଁ ଏକ ଜାତିର ବିକାଶର ମନ୍ତ୍ର । ଏହି ଜୀବନ ଦୃଷ୍ଟିଠାରୁ ଦୂରେଇ ରହିଥିବା ଓ ପାରଲୌକିକ ଲକ୍ଷ୍ୟ ଦିଗରେ ମତୁଆଲା ହେବା ଏକ ସମାଜ ଅନଗ୍ରସର ରହିବା ସୁନିର୍ଦ୍ଦିଷ୍ଟ ମନେହୁଏ । ଯେତେ ପ୍ରାକୃତିକ ସଂପଦ ଥାଉ, ଶ୍ରମବିହୀନ ଉପାର୍ଜନ ଓ ପାରଲୌକିକ ଜୀବନଦୃଷ୍ଟିରେ ଜର୍ଜରିତ ଏକ ଜନଗୋଷ୍ଠୀ ଅନଗ୍ରସର ରହିବା ଏକ ବାସ୍ତବ ଅନୁଭବ । ଧାର୍ମିକ ଆବେଗ ପରିବର୍ତ୍ତେ ନୀତିନିଷ୍ଠ ଜୀବନ, କଳ୍ପିତ ଦିଅଁ ଦେବତାଙ୍କ ପାଖରେ ସମର୍ପଣ ପରିବର୍ତ୍ତେ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ, ନାନା କର୍ମକାଣ୍ଡ ପ୍ରତି ଅହେତୁକ ଶ୍ରଦ୍ଧା ବଦଳରେ ନିଜ ସାମାଜିକ କର୍ତ୍ତବ୍ୟ ପାଳନ ଓ ପ୍ରତ୍ୟେକ କ୍ଷେତ୍ରରେ ସାଧୁତାର ଭାବନା ହିଁ ମହତ୍ତର ଜୀବନବୋଧର ବାର୍ତ୍ତା ଦେଇଥାଏ । ହେତୁବାଦୀମାନେ ହିଁ ଏହି ବାର୍ତ୍ତାର ସମର୍ଥକ ଓ ପ୍ରସାରକ ।

(ପ୍ରଗତିବାଦୀ, ୧୧.୦୮.୨୦୧୫)

# ଆତ୍ମଘୋଷିତ ଦେବପୁରୁଷ ଓ ପ୍ରତାରିତ ଭକ୍ତ

ଆମ ସମାଜରେ କେତେକ ବ୍ୟକ୍ତି ନିଜକୁ ଦେବପୁରୁଷ (ଗଡମେନ୍) ଘୋଷଣା କରୁଥିବା ଦେଖାଯାଏ । ଏହି ସ୍ୱଘୋଷିତ ଦେବପୁରୁଷମାନଙ୍କର ଅନେକ ଭକ୍ତ ପାଳଚ୍ଛୁଥିବା ଆମେ ଦେଖୁ । ନିକଟରେ ଜଣେ ଆତ୍ମଘୋଷିତ ଦେବପୁରୁଷଙ୍କୁ ନେଇ ଗଣମାଧ୍ୟମରେ ନାନା ବିଷୟ ଚର୍ଚ୍ଚା ହେଉଛି । ସମ୍ବାଦପତ୍ର ଓ ଟେଲିଭିଜନ୍‌ରେ ତାଙ୍କ ଦୁଷ୍କର୍ମ ଓ ଅର୍ଥନୈତିକ ସାମ୍ରାଜ୍ୟର ବହୁ ବିଷୟ ଲୋକଲୋଚନକୁ ଆସୁଛି । ଏହା ସହିତ ଏହି ଦୁଇ ତିନି ବର୍ଷ ମଧ୍ୟରେ ଅନ୍ୟ ଯେଉଁ ତଥାକଥିତ ଦେବପୁରୁଷମାନେ ଏହିଭଳି ବା ଆହୁରି ଗୁରୁତର ଅଭିଯୋଗରେ ଗିରଫ ହୋଇ ବନ୍ଦୀ ଜୀବନ ବିତାଉଛନ୍ତି ସେମାନଙ୍କ ବିଷୟ ପ୍ରତ୍ୟକ୍ଷ ବା ପରୋକ୍ଷରେ ଆଲୋଚନାର ପରିସର ଭିତରକୁ ଆସୁଛି । ଏହି ସବୁ ଆଲୋଚନାଦ୍ୱାରା ଯଦି ଜନମାନସରେ ବିଚାରଶୀଳତା ଓ ବୈଜ୍ଞାନିକ ମନୋଭାବର ବିକାଶ ହୋଇପାରନ୍ତା ତେବେ ହୁଏତ ଆମ ଜନଜୀବନରୁ ଅନେକ କୁସଂସ୍କାର ଦୂର ହୋଇପାରନ୍ତା । ସୁଖର କଥା ମୁଷ୍ଟିମେୟ ସଂସ୍କାର ପ୍ରୟାସୀ ସମ୍ବେଦନଶୀଳ ହେତୁବାଦୀ ସମାଜରୁ କୁସଂସ୍କାର ଦୂର କରି ଜୀବନର ଗୁଣାତ୍ମକ ମାନରେ ଉନ୍ନତି ଆଣିବାକୁ ଯେଉଁ ପ୍ରୟାସ କରି ଆସୁଛନ୍ତି ବହୁ ବିଳମ୍ବରେ ହେଲେ ମଧ୍ୟ ଗଣମାଧ୍ୟମ ଯୋଗୁ ଏହା ଜନଜୀବନକୁ କେତେକାଂଶରେ ପ୍ରଭାବିତ କରିଛି ।

ଯେଉଁ ତଥାକଥିତ ଦେବପୁରୁଷମାନେ ବର୍ତ୍ତମାନ ବନ୍ଦୀ ଜୀବନ ବିତାଉଛନ୍ତି ଓ ଯେଉଁମାନେ ଆଉ ସଂସାରରେ ନାହାନ୍ତି ଅଥଚ ତାଙ୍କ ସାମ୍ରାଜ୍ୟର ବହୁ ଅବଶେଷ ବିଭିନ୍ନ ସ୍ଥାନରେ ରହିଛି ଏ ସମସ୍ତଙ୍କ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ସାଧାରଣ ଜନତାଙ୍କୁ କିପରି ସହଜରେ ପ୍ରଭାବିତ କରିହେବ ତାହାର ସୁନ୍ଦର କଳା ସେମାନଙ୍କୁ ଜଣା । ଜଣେ ଦୁର୍ବଳ ବ୍ୟକ୍ତିର ମାନସିକତାରେ ରହିଛି ଯେ ଯେଉଁ ବ୍ୟକ୍ତି କିଛି ଚମତ୍କାରିତା ଦେଖାଇ ପାରୁଛନ୍ତି ସେ ନିଶ୍ଚୟ ଐଶ୍ୱରିକ ଶକ୍ତିସଂପନ୍ନ ବ୍ୟକ୍ତି । ତାଙ୍କର ଭକ୍ତ ହେଲେ ସେ ତାଙ୍କ ଆଧ୍ୟାତ୍ମିକ ଦୈବୀଶକ୍ତି ବଳରେ ବ୍ୟକ୍ତିଟିର ଜୀବନର ବାସ୍ତବ ସମସ୍ୟାକୁ ଦୂର କରିପାରିବେ । ଦେବପୁରୁଷ ମାନେ ସାଧାରଣ ମଣିଷର ଏହି ମନସ୍ତତ୍ତ୍ୱକୁ ଭଲଭାବେ ଅନୁଭବ କରିଛନ୍ତି । ସୁତରାଂ ସେମାନେ ସାଧାରଣ ଲୋକଙ୍କ ଭିତରେ ଭକ୍ତି, ଶ୍ରଦ୍ଧା ଓ ବିଶ୍ୱାସ ସୃଷ୍ଟି କରିବା

ପାଇଁ କିଛି ଚମତ୍କାରିତା ଦେଖାଇଥାନ୍ତି । ସାଧାରଣ କିଛି ଯାଦୁ ପ୍ରଦର୍ଶନ କରି ଲୋକମାନଙ୍କୁ ଧାରଣା ଦିଅନ୍ତି ଯେ ଏହା ତାଙ୍କର ହାତ ସଫେଇ କାର୍ଯ୍ୟ ନୁହେଁ ଏହା ତାଙ୍କର ଐଶ୍ୱରିକ ସାମର୍ଥ୍ୟର ପରିଣାମ । କିଏ ହାତରୁ ବିଭୂତି ବାହାର କରନ୍ତି, କିଏ ସୁନା ଚେନ ବାଣ୍ଟନ୍ତି, କାହା ଫଟୋରୁ ମହୁ ବା ବିଭୂତି ଝରେ, କାହା ପାଟିରୁ ଶିବଲିଙ୍ଗ ବାହାରେ ଇତ୍ୟାଦି ଇତ୍ୟାଦି । ଏହି ଐନ୍ଦ୍ରଜାଲିକ କାର୍ଯ୍ୟକୁ କିଛି ବ୍ୟକ୍ତିଙ୍କ ସାହାଯ୍ୟରେ ପ୍ରଚାର କରାଯାଏ ଓ ସାଧାରଣ ଲୋକମାନଙ୍କୁ ଆକର୍ଷିତ କରିବାର କେତେକ କୌଶଳ ପ୍ରୟୋଗ କରାଯାଏ । ଜୀବନର ବାସ୍ତବତା ଓ ଜଞ୍ଜାଳ ଭିତରେ ମ୍ରିୟମାଣ ମଣିଷମାନେ ବିଚାରଶୀଳ ଦୃଷ୍ଟି ଅଭାବରେ ଦେବପୁରୁଷମାନଙ୍କର ଆଶ୍ରିତ ହୁଅନ୍ତି । ଧୀରେ ଧୀରେ ଦେବପୁରୁଷ ମାନଙ୍କର ସାମ୍ରାଜ୍ୟ ବିସ୍ତାର ଲାଭ କରେ ଓ ସେମାନଙ୍କର ଭକ୍ତମଣ୍ଡଳୀ ଦେଶ ବିଦେଶକୁ ବ୍ୟାପେ । ଏହା ସହିତ ସାଧାରଣ ମଣିଷକୁ ବିମୋହିତ କରିବାରେ କିଛି ଭଜନ ଓ ପ୍ରବଚନ ମଧ୍ୟ ସୁନ୍ଦର ମନସ୍ତାତ୍ତ୍ୱିକ ପ୍ରଭାବ ସୃଷ୍ଟି କରିଥାଏ । ସେହି ପ୍ରବଚନ ଭିତରେ ଥାଏ ଏକ ପାରଲୌକିକ ଜୀବନର ସନ୍ଦେଶ । ଏ ସଂସାର ଅସାର, ଜୀବନ ଦୁଇଦିନର ଖେଳ ମାତ୍ର, ସବୁ ସ୍ନେହ ବନ୍ଧନ କେବଳ ମାୟା, ଜୀବନର ଅସଲ ଲକ୍ଷ୍ୟ ଈଶ୍ୱର ପ୍ରାପ୍ତି ଓ ଈଶ୍ୱର ପ୍ରାପ୍ତିର ପନ୍ଥା ହେଉଛି ବାବାଙ୍କର ଶରଣାପନ୍ନ ହେବା । ଏହି ସବୁ କଥାକୁ କେତେ ଉପମା, ମନଛୁଆଁ ଶୈଳୀରେ ଦେବପୁରୁଷମାନେ ପ୍ରବଚନ ଜରିଆରେ ଭକ୍ତମଣ୍ଡଳୀକୁ ଶୁଣାଇଥାନ୍ତି । କାଳକ୍ରମେ ଦେବପୁରୁଷ ମାନଙ୍କର ବିରାଟ ଭକ୍ତମଣ୍ଡଳୀ ସୃଷ୍ଟି ହୁଅନ୍ତି, କିଛି ସାହିତ୍ୟ ସୃଷ୍ଟି ହୁଏ, ଦେବପୁରୁଷଙ୍କ ଚମତ୍କାରିତାକୁ ନେଇ ବହି ଲେଖାଯାଏ ଓ ସମାଜର ପ୍ରଭାବଶାଳୀ ଲୋକମାନେ ବି ସେମାନଙ୍କ ପ୍ରଭାବ ଯୋଗୁ ସେମାନଙ୍କ ପ୍ରତି ଆକର୍ଷିତ ହୁଅନ୍ତି । ବିଶେଷକରି ଅସାଧୁ ବ୍ୟବସାୟୀ, ଦୁର୍ନୀତିଗ୍ରସ୍ତ କର୍ମଚାରୀ ଓ କଳାଧନ ପାଉଥିବା ଲୋକମାନେ ନିଜର ଧାର୍ମିକ ପରିଚୟଦ୍ୱାରା ଅସାଧୁ କାର୍ଯ୍ୟକୁ ଲୁଚାଇବା ପାଇଁ ଅଧିକ ଆଗ୍ରହରେ ଭକ୍ତ ପାଲଟନ୍ତି । ଏହି ପ୍ରକ୍ରିୟାରେ ଦେବପୁରୁଷମାନେ ଅମାପ ଧନର ଅଧିକାରୀ ହୁଅନ୍ତି, ତାଙ୍କ ଆଶ୍ରମସ୍ଥଳ ତୀର୍ଥସ୍ଥଳ ପାଲଟେ ଓ ଦେଶ ବିଦେଶରେ ଦେବପୁରୁଷଙ୍କର ପ୍ରଚାର ହୁଏ । କେତେକ ଦେବପୁରୁଷ ନିଜର ପିଲାଦିନର ନାମକୁ ମଧ୍ୟ ବଦଳାଇ ଦେଇ ଅନ୍ୟ ନାମରେ ପରିଚୟ ସୃଷ୍ଟି କରନ୍ତି । ଅମାପ ଅର୍ଥର ଅଧିକାରୀ ହେବା ପରେ ସେମାନେ ଶିକ୍ଷାନୁଷ୍ଠାନ ସ୍ଥାପନ କରନ୍ତି ଓ ତାଙ୍କର ପ୍ରବଚନ, ଚମତ୍କାରିତାର ପ୍ରସାର ପାଇଁ ଏହା କ୍ଷେତ୍ର ହୋଇ ଉଠେ । ଅନୁଗାମୀମାନେ ତାଙ୍କ ଚମତ୍କାରିତାକୁ ନେଇ କେତେ କେତେ କାଳ୍ପନିକ କାହାଣୀ ସୃଷ୍ଟି କରନ୍ତି । ଦେବପୁରୁଷଙ୍କର ଫଟୋ, ଲକେଟ, ବିଭୂତି, ପୁସ୍ତକ ଇତ୍ୟାଦିର ସୁନ୍ଦର ବ୍ୟବସାୟ ବି ଆରମ୍ଭ ହୁଏ । ତେବେ କେତେକ ଦେବପୁରୁଷ କେତେକ ବଡ ଚିକିତ୍ସାଳୟ ମଧ୍ୟ

ସ୍ଥାପନ କରନ୍ତି, କାରଣ ତାହାଦ୍ୱାରା ନିଜର ଚିକିତ୍ସା ମଧ୍ୟ ସେଠାରେ ସହଜରେ କରି ହେବ। ନିଜର ଚିକିତ୍ସା ପାଇଁ ବାହାର ଚିକିତ୍ସାଳୟ ଉପରେ ନିର୍ଭର କଲେ ତାଙ୍କ ଦୈବୀ ଶକ୍ତି ଉପରେ କାଳେ ପ୍ରଶ୍ନ ଉଠିବ, ସେଥିପାଇଁ ନିଜ ଆଶ୍ରମ ପରିସରରେ ଉଚ୍ଚମାନର ଆଧୁନିକ ଚିକିତ୍ସାଳୟମାନ କରାଯାଏ। ଅସତ ଉପାୟରେ ଆସୁଥିବା ବିପୁଳ ଅର୍ଥରାଶିକୁ 'ସେବା' ଦିଗରେ ବିନିଯୋଗ କରିବାଦ୍ୱାରା ଦେବପୁରୁଷମାନଙ୍କର ମହାନୁଭବତା ମଧ୍ୟ ଜନମାନସରେ ପ୍ରଚାରିତ ହୁଏ। କିନ୍ତୁ କୌଣସି ଦେବପୁରୁଷ ନିଜର ଅଲୌକିକ ଶକ୍ତି ପ୍ରୟୋଗ କରି ରୋଗ ଭଲ କରିବା ଦେଖାଯାଏ ନାହିଁ, ଯଦିବା କେତେକ ଅଜ୍ଞ ଶ୍ରଦ୍ଧାଳୁ ଗୁରୁଙ୍କ ଚମତ୍କାରିତା ବିଷୟରେ ମନଗଢା କାହାଣୀମାନ ପ୍ରଚାର କରିଥାନ୍ତି।

ଆମ ସାମାଜିକ ଜୀବନକୁ ବହୁ ବାବା, ମାତା, ତଥାକଥିତ ଅବତାର ପୁରୁଷ, ଯୋଗୀମାନେ ଏତେ ସହଜରେ କିପରି ପ୍ରଭାବିତ କରୁଛନ୍ତି ? ଏହି ପ୍ରଶ୍ନର ନାନା ଅନୁଶୀଳନ ଆବଶ୍ୟକ। ବିଶେଷକରି ଯେଉଁ ସାମାଜିକ ଦୃଶ୍ୟପଟରେ ଦାରିଦ୍ର୍ୟ, ନୈରାଶ୍ୟ, ନିରକ୍ଷରତା, ହତାଶାଭାବ ଓ ନିଜର ଅସୁରକ୍ଷାର ଭାବ ବ୍ୟାପକ ଭାବେ ରହିଥାଏ ତାହା ବାବାବାଦର ପ୍ରଚାର ଓ ପ୍ରସାର ପାଇଁ ଏକ ଅନୁକୂଳ ଭିତ୍ତି ଯୋଗାଇଥାଏ। ଯେଉଁଠି ଲୋକମାନେ ବୃହତ୍ତର ସାମାଜିକ ପରିବେଶ ଉପରେ ଆସ୍ଥା ସ୍ଥାପନ କରିପାରନ୍ତି ନାହିଁ ସେଠାରେ ଲୋକମାନେ ଅକ୍ଳେଶରେ ଦୈବୀ-କୃପା ଉପରେ ଭରସା କରିଥାନ୍ତି। ଯେଉଁଠି ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା ପୂରଣ ହୋଇପାରୁ ନାହିଁ, ଜୀବନରେ ସ୍ୱାବଲମ୍ବୀ ହେବା ସମ୍ଭବ ହେଉ ନାହିଁ, ପାରିବାରିକ ଜୀବନରେ ଶାନ୍ତି, ସ୍ଥିରତା ରହିପାରୁ ନାହିଁ, ରୋଗର ଚିକିତ୍ସା ପାଇଁ ସମ୍ବଳ ନାହିଁ ବା ଏହିପରି ପ୍ରତିକୂଳ ସ୍ଥିତି ଭିତରେ ଜୀବନ ନିର୍ବାହ କରିବାକୁ ହେଉଛି ସେ କ୍ଷେତ୍ରରେ ସାଧାରଣ ଲୋକମାନେ କାହାର ଆଶ୍ରିତ ହେବା ଏକ ସାଧାରଣ ମନସ୍ତତ୍ତ୍ୱ ହୋଇଥାଏ। ଯେତେବେଳେ ସମାଜର ପ୍ରଭାବଶାଳୀ ବ୍ୟକ୍ତି ଓ କ୍ଷମତାଶାଳୀ ଲୋକମାନେ ଦେବପୁରୁଷମାନଙ୍କର ଆଶ୍ରିତ ହେଉଛନ୍ତି, ଯେଉଁ ଉଦ୍ଦେଶ୍ୟରେ ହେଉନା କାହିଁକି, ତାର ମନୋବୈଜ୍ଞାନିକ ପ୍ରଭାବ ସାଧାରଣ ଜନଗଣଙ୍କ ଉପରେ ପଡିବା ସ୍ୱାଭାବିକ ହୋଇଥାଏ। କେତେକଙ୍କର ସ୍ୱାର୍ଥପରତା ଓ ସାଧାରଣ ଜନତାଙ୍କର ଅଜ୍ଞତାର ଆଧାର ଉପରେ ବାବାମାନଙ୍କର ସାମ୍ରାଜ୍ୟ ଗଢି ଉଠିବା ପରିଲକ୍ଷିତ ହୁଏ।

ବିଡମ୍ବନାର ବିଷୟ ଯେଉଁ ଦେଶର ସାମାଜିକ ପରିବେଶରେ ଏତେ ପୂଜାସ୍ଥଳ, ଦେଉଳ, ମନ୍ଦିର, ଦେବପୁରୁଷମାନଙ୍କର-ପ୍ରାବଲ୍ୟ ରହିଛି ସେ ଦେଶର ସାଧାରଣ ଜୀବନ

ପ୍ରବାହରେ ବହୁ ଦୁର୍ନୀତି, ନାଗରିକ ବିଶୃଙ୍ଖଳା, ଦାରିଦ୍ର୍ୟ ଓ ସାମାଜିକ ଭେଦଭାବ ଭରପୁର ହୋଇ ରହିଛି । ସକଳ ଦିଅଁ ଦେବତା ମଣିଷ ମନର କଳ୍ପନା ମାତ୍ର । ମଣିଷ ହାତର ଗଢା ପିତୁଳା ପାଖରେ ଯେତେ ଭକ୍ତି ଅର୍ଘ୍ୟ ନିବେଦନ କଲେ ତାହା ଆମ ଜୀବନର ସମସ୍ୟାକୁ ସମାଧାନ କରିବ ନାହିଁ । କୌଣସି ପ୍ରାକୃତିକ ବିପର୍ଯ୍ୟୟରୁ ଆମକୁ ରକ୍ଷା କରିବ ନାହିଁ, ଆମର ଦାରିଦ୍ର୍ୟ ଦୂର ହେବ ନାହିଁ ଓ ଜୀବନର ଗୁଣାତ୍ମକ ମାନରେ ଉନ୍ନତି ଆସିବ ନାହିଁ । ପାରଲୌକିକ ଜୀବନଦୃଷ୍ଟିରୁ ମୁକ୍ତ ହୋଇ ଏକ ବାସ୍ତବବାଦୀ ଆଭିମୁଖ୍ୟ ନ ନେଲେ ଜାତିର ବିକାଶ ସମ୍ଭବ ହେବ ନାହିଁ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସାମାଜିକ ଉତ୍ତରଦାୟିତ୍ୱବୋଧ, ଉଚ୍ଚ କର୍ମସଂସ୍କୃତି, ମାନବବାଦୀ ଜୀବନଧାରା ଓ ସାଧୁତା ଭାବ ବ୍ୟଷ୍ଟି ଓ ଗୋଷ୍ଠୀର ବିକାଶ ପାଇଁ ନିର୍ଣ୍ଣାୟକ ମନେହୁଏ । ଅନ୍ଧଶ୍ରଦ୍ଧାରୁ ମୁକ୍ତ ନ ହେଲେ ଓ ମଣିଷର ସାମର୍ଥ୍ୟ ଉପରେ ଆସ୍ଥା ସ୍ଥାପନ ନ କଲେ ଆମର ଅନଗ୍ରସରତା ଦୂର ହୋଇପାରିବ ନାହିଁ ।

(ପ୍ରଗତିବାଦୀ, ୦୫.୦୯.୨୦୧୫)

# ପ୍ରଗତିର ପ୍ରତିବନ୍ଧକ : ଅଜ୍ଞତା ଓ କ୍ରୂରତା

ସଭ୍ୟତା ଯେତେ ଅଗ୍ରସର ହେଲେ ମଧ୍ୟ ସମାଜରୁ ଦୁଃଖ, ଦୁର୍ଦ୍ଦଶା ଓ ସଙ୍କଟ ଦୂର ହେଉ ନାହିଁ। ଯେତେବେଳେ ଜ୍ଞାନ, ବିଜ୍ଞାନର ବିକାଶ ହୋଇ ନ ଥିଲା ଓ ମଣିଷମାନେ ଆଦିମ ସ୍ତରରେ ରହିଥିଲେ ସେତେବେଳେ ନାନା କାରଣ ନେଇ ଜୀବନ ଅତ୍ୟନ୍ତ ବିପଦସଂକୁଳ ରହିଥିଲା। ପ୍ରାକୃତିକ ଦୁର୍ବିପାକ ଘଟିଲେ ମଣିଷ ଅତ୍ୟନ୍ତ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା। ଚିକିତ୍ସା ବିଜ୍ଞାନ ଯେଉଁ ସମୟରେ ବିକଶିତ ହୋଇ ନ ଥିଲା, ରୋଗ ବାଧକରେ ଆକ୍ରାନ୍ତ ହେଲେ ମୃତ୍ୟୁର କବଳରୁ ମୁକ୍ତ ହେବା ସମ୍ଭବ ନ ଥିଲା। ମହାମାରୀରେ ଗାଁକୁ ଗାଁ ଜନଶୂନ୍ୟ ହୋଇ ଯାଉଥିଲା। ରାଜତନ୍ତ୍ର ଯୁଗରେ ରାଜ୍ୟ ଜୟ ଓ ରାଜ୍ୟ ବିସ୍ତାରର ଭାବନାରୁ ଯୁଦ୍ଧର ବିଭୀଷିକା ଲାଗି ରହିଥିଲା। ଏହା ସହିତ ସମାଜରେ ନାନା ଭେଦଭାବ ରହିଥିଲା। ସମାଜର ପ୍ରଭାବଶାଳୀ କ୍ଷୁଦ୍ର ସାମନ୍ତ ବର୍ଗ ସାଧାରଣ ମଣିଷକୁ ନାନା ଭାବରେ ଶୋଷଣ କରୁଥିଲେ। ସାମାଜିକ ଅନ୍ୟାୟ, ଶୋଷଣ ଓ ଭେଦଭାବ ବିରୁଦ୍ଧରେ ପ୍ରତିବାଦ କରିବାର ସମ୍ଭାବନା ନ ଥିଲା। ସବୁ ସ୍ତରରେ ଜୀବନ ବିପଦସଂକୁଳ ଥିଲା ଓ ନାନା ପ୍ରକାରର କୁସଂସ୍କାର ଓ ଅହେତୁକ ବିଶ୍ୱାସ ସମାଜରେ ପରିବ୍ୟାପ୍ତ ହୋଇ ରହିଥିଲା। ଅବଶ୍ୟ ମଣିଷର ଆବଶ୍ୟକତା ଅତି ସୀମିତ ଥିଲା। ସାମାଜିକ ସମ୍ବନ୍ଧ ବିଶେଷ ଜଟିଳ ନ ଥିଲା ଓ ଏକ କ୍ଷୁଦ୍ର ଆୟତନ ଭିତରେ ଜୀବନ ଅତିବାହିତ ହେଉଥିଲା। ଜନସଂଖ୍ୟା ବି ଖୁବ୍ କମ୍ ଥିଲା ଓ ବିସ୍ତୃତ ଅଞ୍ଚଳ ଘନ ଅରଣ୍ୟବେଷ୍ଟିତ ହୋଇ ରହିଥିଲା। ଖ୍ରୀଷ୍ଟାବ୍ଦ ଆରମ୍ଭ ସମୟକୁ ପୃଥିବୀର ଲୋକସଂଖ୍ୟା ଥିଲା ମାତ୍ର କୋଡିଏ କୋଟି। ଏପରିକି ଅଠର ଶହ ମସିହାରେ ପୃଥିବୀରେ ମାତ୍ର ଶହେ କୋଟି ଲୋକ ରହିଥିଲେ। ମୃତ୍ୟୁହାର ବହୁ ଅଧିକ ଥିଲା ଓ ସମାଜରେ ନିରକ୍ଷରତା, କୁସଂସ୍କାର ବ୍ୟାପକ ଭାବେ ରହିଥିଲା। ସାମାଜିକ ନିରାପତ୍ତା, ମାନବିକ ଅଧିକାର, ଗଣଶିକ୍ଷାର ଭାବନା ଅଚିନ୍ତନୀୟ ଥିଲା। ଜୀବନ ଅତ୍ୟନ୍ତ ବିପଦସଂକୁଳ ଥିଲା। ଗମନାଗମନ, ମନୋରଞ୍ଜନ, ସ୍ୱାସ୍ଥ୍ୟସେବା ଅତ୍ୟନ୍ତ ସୀମିତ ଥିଲା ଓ ସାଧାରଣ ଜୀବନ ପ୍ରବାହ କ୍ଷୁଦ୍ର ଗ୍ରାମୀଣ ପରିବେଶରେ ସଙ୍କୁଚିତ ହୋଇ ରହିଥିଲା।

ତେବେ ଏହି ଦୁଇ ଶତାବ୍ଦୀ ଭିତରେ ସମଗ୍ର ପୃଥିବୀରେ ଦ୍ରୁତ ପରିବର୍ତ୍ତନ ହୋଇଥିବା ପରିଲକ୍ଷିତ ହୁଏ। ସାରା ବିଶ୍ୱରୁ ରାଜତନ୍ତ୍ର ଓ ସାମ୍ରାଜ୍ୟବାଦ ଲୋପ ପାଇଥିବା ମନେହୁଏ।

ଗମନାଗମନରେ ଯଥେଷ୍ଟ ବିକାଶ ସାରା ପୃଥିବୀକୁ ଏକ କ୍ଷୁଦ୍ରଗ୍ରାମରେ ରୂପାନ୍ତରିତ କରିବା ଦେଖାଯାଏ । ଜନମଙ୍ଗଳକାରୀ ରାଷ୍ଟ୍ର ଭାବନା, ଗଣତାନ୍ତ୍ରିକ ଭାବଧାରା, ଗଣଶିକ୍ଷାର ପରିବେଶ, ସାଂସ୍କୃତିକ ସମନ୍ୱୟ, ସମତାର ଭାବନା, ମାନବିକ ଅଧିକାରର ବିଶ୍ୱ ଘୋଷଣା ଇତ୍ୟାଦି ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ଗୋଟିଏ ଗୋଟିଏ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏସବୁ ସହ ବିଚାରଶୀଳ ଦୃଷ୍ଟି, ଉନ୍ନତ ଜ୍ଞାନକୌଶଳ ଆଧାରିତ ସ୍ୱାସ୍ଥ୍ୟସେବା, ଜ୍ଞାନର ସାମାଜିକୀକରଣ ଓ ଆନ୍ତର୍ଜାତିକ ମନୋଭାବ ଅନେକ ସକାରାତ୍ମକ ଜୀବନବୋଧର ପରିଚୟ ଦିଏ । ନାନା ଜନମଙ୍ଗଳକାରୀ ଆଭିମୁଖ୍ୟ ନେଇ ଆନ୍ତର୍ଜାତିକ ସ୍ତରରେ ବହୁ ସଙ୍ଗଠନ କାର୍ଯ୍ୟକରିବା ଦେଖାଯାଏ । ପ୍ରାକୃତିକ ଦୁର୍ବିପାକ ବା ସେପରି କିଛି ବିପର୍ଯ୍ୟୟ ସମୟରେ ଆହତ ଜନଗଣଙ୍କୁ ସାହାଯ୍ୟ କରିବା ପାଇଁ ରେଡକ୍ରସ ଏକ ମାନବହିତୈଷୀ ସଙ୍ଗଠନ ଭାବେ ସାରା ପୃଥିବୀରେ କାର୍ଯ୍ୟ କରୁଛି । ମାନବିକ ଅଧିକାରରେ ସୁରକ୍ଷା ପାଇଁ ଆମ୍ନେଷ୍ଟି ଇଣ୍ଟରନେସନାଲ ଆନ୍ତର୍ଜାତିକ ସ୍ତରରେ ଜନ ସଚେତନତା ସୃଷ୍ଟି କରିବାରେ ପ୍ରମୁଖ ଭୂମିକା ନେଇଛି । ଯୁବଗୋଷ୍ଠୀ ଭିତରେ ସେବା ଓ ମାନବ ସମୁଦାୟ ପ୍ରତି ଦାୟିତ୍ୱବୋଧର ପ୍ରସାର ପାଇଁ ସ୍କାଉଟ୍ ଏଣ୍ଡ ଗାଇଡ୍ ଏକ ବଳିଷ୍ଠ ସଙ୍ଗଠନ ଭାବେ କାର୍ଯ୍ୟ କରିଆସୁଛି । ସାରା ପୃଥିବୀରୁ ମାରାତ୍ମକ ରୋଗମାନଙ୍କର ନିର୍ମୂଳନ କରି ଲୋକମାନଙ୍କୁ ସୁସ୍ଥ ଜୀବନର ପରିବେଶ ଦେବା ପାଇଁ ବିଶ୍ୱ ସ୍ୱାସ୍ଥ୍ୟ ସଂଘ କାର୍ଯ୍ୟ କରୁଛି । ମିଳିତ ଜାତିସଂଘ ପରିସରରେ ସାରା ପୃଥିବୀରେ ଏକ ସୁନ୍ଦର ଓ ଭ୍ରାତୃତ୍ୱପୂର୍ଣ୍ଣ ପରିବେଶ ସୃଷ୍ଟି କରିବାକୁ ପ୍ରୟାସ କରାଯାଉଛି । ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ସମ୍ବନ୍ଧୀୟ ପରିଷଦ (ଇଉଏନସ୍କୋ) ଆନ୍ତର୍ଜାତିକ ସ୍ତରରେ ସାଂସ୍କୃତିକ ଓ ଶିକ୍ଷାର ବିକାଶ ଦିଗରେ କାର୍ଯ୍ୟ କରୁଛି । ପୃଥିବୀରେ ଯାହା ସବୁ ସମସ୍ୟା ଓ ସଙ୍କଟ ରହିଛି ତାହା ଆନ୍ତର୍ଜାତିକ ସ୍ତରରେ ଆଲୋଚିତ ହୋଇ ତାହାର ସମାଧାନ ପାଇଁ ବିଚାର-ବିମର୍ଶ କରାଯାଉଛି । ପରିବେଶ ପ୍ରଦୂଷଣ, ଗ୍ଲୋବାଲ ୱାର୍ମିଂ ପରି ବିଶ୍ୱ ସମସ୍ୟାମାନଙ୍କ ଉପରେ ଆନ୍ତର୍ଜାତିକ ସଂପୃକ୍ତି ପ୍ରକାଶ ପାଉଛି ଓ ଏହି ସମସ୍ୟାର ମୁକାବିଲା ପାଇଁ ବିଶ୍ୱ ସ୍ତରରେ ଗବେଷଣା କରାଯାଉଛି । ମୋଟ ଉପରେ କହିଲେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ସାରା ପୃଥିବୀରେ ଭିତ୍ତି ନେବାରେ ଲାଗିଛି । ରାଜନୈତିକ ସ୍ତରରେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଓ ବିଭିନ୍ନ ଅନ୍ତରାଷ୍ଟ୍ରୀୟ ସଙ୍ଗଠନ ପୃଥିବୀରୁ ହିଂସା, ଯୁଦ୍ଧ, ସନ୍ତ୍ରାସବାଦ, ଆଣବିକ ଅସ୍ତ୍ର ପ୍ରୟୋଗକୁ ନିୟନ୍ତ୍ରଣ କରିବାକୁ ପ୍ରୟାସ କରୁଛି । ମାନବ ଜାତିର ଇତିହାସରେ ଏସବୁ ସଭ୍ୟତା-ମଙ୍ଗଳକାରୀ କାର୍ଯ୍ୟସୂଚୀ ଏକ ସୁନ୍ଦର ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ଯେ ସ୍ୱାଗତଯୋଗ୍ୟ ଏହା ନିଃସନ୍ଦେହ ମନେହୁଏ ।

ଏସବୁ ସକାରାତ୍ମକ ପଦକ୍ଷେପ ସତ୍ତ୍ୱେ ତଥାପି ଆମ ସଂସାରରେ ବହୁ ଦୁଃଖ, ଅମାନବିକତା, ବିଦ୍ୱେଷ, ଭେଦଭାବ, ଶୋଷଣ, ନିଷ୍ଠୁରତା ରହିଛି । ଯେଉଁ ଯୁଗରେ ବିଜ୍ଞାନର ବିକାଶ ହୋଇ ନ ଥିଲା ସେ ଯୁଗରେ ନାନା ଦୁଃଖ-ଦୁର୍ଦ୍ଦଶା ମଣିଷ ଜାତିକୁ ସାମ୍ନା କରିବାକୁ ପଡୁଥିଲା । ସେହି ସ୍ଥିତିଠାରୁ ସଭ୍ୟତା ଏବେ ବହୁ ଆଗକୁ ଯିବାରେ ସମର୍ଥ ହୋଇ ପାରିଲାଣି । ତଥାପି ପୃଥିବୀରେ ବହୁ ଦୁଃଖ ଦୁର୍ଦ୍ଦଶା ରହିଛି । ସକଳ ଦୁଃଖ ଦୁର୍ଦ୍ଦଶାର କାରଣ ଅନୁଶୀଳନ କଲେ ବଡ ବଡ ଗ୍ରନ୍ଥ ଲେଖାଯାଇ ପାରିବ । ତେବେ ସକଳ କାରଣକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ ଯଥା ମାନବିକ ଅଜ୍ଞତା ଓ ମାନବିକ କ୍ରୂରତା । ଏହା ସତ୍ୟ ଯେ ଏହି ଦୁଇ ଶହ ବର୍ଷ ଭିତରେ ଜ୍ଞାନ, ବିଜ୍ଞାନର ପ୍ରଭୂତ ବିକାଶ ହୋଇଛି । ଆଧୁନିକ ପ୍ରଯୁକ୍ତି ବହୁ ସୁଖକର ଉପାଦାନ ହାତ ପାହାନ୍ତାରେ ଯୋଗାଇ ପାରିଛି । ମୋବାଇଲ ଫୋନ୍, ଇଣ୍ଟରନେଟ୍, କମ୍ପ୍ୟୁଟର ଇତ୍ୟାଦି ଜୀବନଧାରାକୁ ସରଳ, ସାବଲୀଳ କରିବାରେ ସମର୍ଥ ହୋଇପାରିଛି । ସାରା ପୃଥିବୀର ଜନଗଣ ଆଧୁନିକ ପ୍ରଯୁକ୍ତି ଯୋଗୁ ନିକଟତର ହେବାର ସୁଯୋଗ ପାଉଛନ୍ତି । ପୃଥିବୀରୁ ଦୂରତ୍ୱ କମିଯିବାରେ ଲାଗିଛି । ତେବେ ପରିତାପର ବିଷୟ ବିଜ୍ଞାନର ଉତ୍ତୁଙ୍ଗ ବିକାଶ ଆମ ସଂସାରରୁ ଅଜ୍ଞତା ବା ଅହେତୁକ ବିଶ୍ୱାସ ସକଳକୁ ଦୂର କରିପାରୁ ନାହିଁ । ଆମ ଦେଶ ପରି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ବହୁ କୁସଂସ୍କାର, ଧର୍ମାନ୍ଧତା, ଅସହିଷ୍ଣୁତାର ପ୍ରାବଲ୍ୟ ରହିଛି । ପାରଲୌକିକ ଜୀବନଦୃଷ୍ଟି ଓ ନାନା ଅହେତୁକ ଆବେଗ ଜୀବନଧାରାକୁ କବଳିତ କରି ରଖିଛି । ନାଗରିକ ଶୃଙ୍ଖଳାବୋଧ ଉଚ୍ଚ କର୍ମସଂସ୍କୃତି ଓ ସାଧୁତା ଭାବ ଏକ ଜାତିର ବିକାଶ କ୍ଷେତ୍ରରେ ନିର୍ଣ୍ଣାୟକ ମନେହୁଏ । ଯେଉଁ ସାମାଜିକ ଜୀବନ ପ୍ରବାହରେ ଏ ସବୁ ମୂଲ୍ୟବୋଧ ପ୍ରତି ସମ୍ମାନ ନଥାଏ ପରନ୍ତୁ ଧାର୍ମିକ ଆବେଗ, ପାରଲୌକିକ କର୍ମକାଣ୍ଡ, ପୂଜା ପାର୍ବଣର ପ୍ରାବଲ୍ୟ ଜୀବନବୋଧକୁ କବଳିତ କରି ରଖିଥାଏ ସେହି ସମାଜ ଅନଗ୍ରସର ରହିବାକୁ ବାଧ୍ୟ ହୋଇଥାଏ । ବହୁ ଅପସଂସ୍କୃତି, ଅର୍ଥହୀନ କର୍ମକାଣ୍ଡ ଓ ମୂଲ୍ୟହୀନ ବିଶ୍ୱାସକୁ ଯେଉଁଠି ପରମ୍ପରାର ରୂପ ଦିଆଯାଏ ଓ ତାହା ପାଇଁ ସରକାର, ପ୍ରଶାସନ ଓ ସାଧାରଣ ଜନଗଣ ନିଜର ସମସ୍ତ ଶକ୍ତି, ସମୟ ଓ ସମ୍ପଦ ବିନିଯୋଗ କରନ୍ତି, ସେହି ପରିବେଶ ବିକାଶ କ୍ଷେତ୍ରରେ ଅନଗ୍ରସର ହୋଇ ରହେ । ଜନଗଣଙ୍କ ମାନସିକତାରେ ଯଦି ପାରଲୌକିକ ଭାବନା, ଦୈବୀ କରୁଣା ଓ ଈଶ୍ୱରୀୟ ଆଶୀର୍ବାଦ ପ୍ରାଧାନ୍ୟ ପାଏ ଓ ମାନବିକ ପ୍ରୟାସ ନ୍ୟୂନ ହୋଇଯାଏ ତେବେ ସମାଜର ବିକାଶ ଓ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ବାଧା ପ୍ରାପ୍ତ ହୁଏ । ସଭ୍ୟତାରେ ଯାହା କିଛି ବିକାଶ ହୋଇଛି, ଏକ ଆଦିମ ସ୍ଥିତିରୁ ନାନା କ୍ରମବିକାଶ ମଧ୍ୟ ଦେଇ ଆଜିର ସ୍ଥିତିରେ ମଣିଷ ପହଞ୍ଚିଛି ଏ ସବୁ ପଶ୍ଚାତରେ ରହିଛି ମାନବିକ ପ୍ରୟାସ, ବୌଦ୍ଧିକ ଅନୁସନ୍ଧିତ୍ସା ଓ ବୈଜ୍ଞାନିକ ଅନୁଶୀଳନ । ଏହି ଜୀବନଦୃଷ୍ଟି ଯଦି ସମାଜରେ ପ୍ରସାରିତ ନ ହୁଏ ଓ ଜନଗଣ ପାରଲୌକିକ ଭାବନା,

ଚମତ୍କାରିତା ଓ ଦୈବୀ ଆଶୀର୍ବାଦକୁ ପାଥେୟ କରି ଜୀବନ ନିର୍ବାହ କରନ୍ତି ତେବେ ସମାଜର ବିକାଶର ଧାରା ଆଶାନୁରୂପ ଅଗ୍ରଗତି କରିପାରେ ନାହିଁ।

ସମାଜର ବହୁ ଦୁଃଖ ଦୁର୍ଦ୍ଦଶା ପଶ୍ଚାତରେ ଅନ୍ୟ ଯେଉଁ ଭାବନାଟି ପ୍ରାଧାନ୍ୟ ନେଇଥାଏ ତାହା ହେଲା ମାନବିକ କ୍ରୂରତା। ଯେଉଁ ସାମାଜିକ ଦୃଶ୍ୟପଟରେ ଭେଦଭାବ ଜନିତ ମାନସିକତାର ପ୍ରାବଲ୍ୟ ରହେ, ସେଠାରେ ଏକ ସମନ୍ୱିତ ଓ ମାନବିକ ସଂହତିର ବିକାଶ ବାଧାପ୍ରାପ୍ତ ହୋଇଥାଏ। ଅନ୍ୟର ଦୁଃଖ ଯନ୍ତ୍ରଣାକୁ ଅନୁଭବ କରିବା ପରିବର୍ତ୍ତେ ଯଦି ସାମାଜିକ ଜୀବନରେ ଅନ୍ୟକୁ ନ୍ୟୂନ କରିରଖିବାର ଭାବଧାରାକୁ ଧାର୍ମିକ ସ୍ୱୀକୃତି ଦିଆଯାଏ ସେଠାରେ ସମାଜ କଳୁଷିତ ହୋଇଯାଏ। ପୃଥିବୀରେ ବହୁ ଦୁଃଖ ଯନ୍ତ୍ରଣାର କାରଣ ମାନବିକ କ୍ରୂରତାର ଯେ ପରିଣାମ ଏହା ଏକ ଆନୁଭବିକ ସତ୍ୟ ଅଟେ। ସାମାଜିକ ଭେଦଭାବ, ସାଂପ୍ରଦାୟିକ ମନୋଭାବ ଓ ଯୁଦ୍ଧର ବିଭୀଷିକା ମାନବିକ କ୍ରୂରତାର ନିଚ୍ଛକ ଅଭିବ୍ୟକ୍ତି ଅଟେ। ଯେଉଁଠି ଏସବୁ ଧାର୍ମିକ ଆବେଗଦ୍ୱାରା ନିୟନ୍ତ୍ରିତ ହୁଏ ତାହା ସମାଜ ପାଇଁ ଅତ୍ୟନ୍ତ ଦୁଃଖ ଯନ୍ତ୍ରଣାର ପରିବେଶ ଆଣେ। ବିଚାରଶୂନ୍ୟତା ଓ ମାନବିକ କ୍ରୂରତା ମାନବବାଦ, ଭ୍ରାତୃତ୍ୱଭାବ ଓ ବିଶ୍ୱଦୃଷ୍ଟିର ଯେ ପ୍ରତିକୂଳ ଏହା ନିଃସନ୍ଦେହ ମନେହୁଏ।

(ପ୍ରଗତିବାଦୀ, ୧୧.୧୧.୨୦୧୫)

# କୁସଂସ୍କାର : କିଛି ଦିଗନ୍ତ

ବିଭିନ୍ନ ସମାଜରେ ନାନା ପ୍ରକାରର କୁସଂସ୍କାର ରହିବା ଦେଖାଯାଏ । ଯେଉଁ ବିଶ୍ୱାସମାନ ଅଯୌକ୍ତିକ, ଆଧାରହୀନ ଓ ବିଜ୍ଞାନ-ବିରୋଧୀ ସେହି ବିଶ୍ୱାସମାନଙ୍କୁ କୁସଂସ୍କାର କୁହାଯାଏ । ସମାଜରେ କେତେ କେତେ ପ୍ରକାରର ବିଶ୍ୱାସ ପ୍ରଚଳିତ ଥିବା ଦେଖାଯାଏ ଯାହା ଅହେତୁକ ଓ ଅବୈଜ୍ଞାନିକ । ବିନା ଯୁକ୍ତି, ବିନା ତଥ୍ୟ ଓ କୌଣସି କାରଣ ନ ଥାଇ ଯେଉଁ ବିଶ୍ୱାସ କରାଯାଏ ତାହାକୁ କୁସଂସ୍କାର ବା ଅନ୍ଧବିଶ୍ୱାସ କୁହାଯାଏ । କୁସଂସ୍କାର ଜ୍ଞାନ-ବିଜ୍ଞାନର ପରିପନ୍ଥୀ ଓ ସମାଜ ପାଇଁ କ୍ଷତିକାରକ । ଯେଉଁ ସମାଜରେ କୁସଂସ୍କାର ଯେତେ ବ୍ୟାପକ, ସେହି ସମାଜ ସେତିକି ପଛୁଆ ବା ଅନଗ୍ରସର ରହିବା ଦେଖାଯାଏ ।

କୁସଂସ୍କାରର କାରଣ ହେଉଛି ଭୟ, ଅଜ୍ଞତା, ଅଶିକ୍ଷା ଓ ସମାଜର ପ୍ରଚଳିତ ଅହେତୁକ ପରମ୍ପରା । ଜ୍ଞାନ-ବିଜ୍ଞାନର ବିକାଶ ହେବା ପୂର୍ବରୁ ଜୀବନ ଅତ୍ୟନ୍ତ ବିପଦସଙ୍କୁଳ ଥିଲା । ନାନା ପ୍ରାକୃତିକ ଦୁର୍ବିପାକ, ରୋଗ ମହାମାରୀ ଓ କେତେକ ସାମାଜିକ କାରଣ ଯୋଗୁ ଗୋଟିଏ ସମୟରେ ମଣିଷ ନିଜକୁ ଅସହାୟ ମନେ କରୁଥିଲା । ଜଣେ ଯେତେବେଳେ ନିଜକୁ ଅସହାୟ ମନେ କରେ ଓ ବିପଦର ସମ୍ମୁଖୀନ ହୁଏ ସେତେବେଳେ ସେ କଳ୍ପିତ ଦିଅଁ ଦେବତାଙ୍କୁ ପ୍ରାର୍ଥନାକରି ସେମାନଙ୍କ ଆଶ୍ରୟ ଲୋଡେ । ସେହିପରି ଅଜ୍ଞତା ବି ସମାଜରେ କୁସଂସ୍କାର ପ୍ରସାର ଦିଗରେ ସହାୟକ ହୋଇଥାଏ । ଶିକ୍ଷା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବରେ ସମାଜରେ କୁସଂସ୍କାର ବ୍ୟାପକ ହେବା ଦେଖାଯାଏ । ଉପଯୁକ୍ତ ଶିକ୍ଷାର ପ୍ରସାରଦ୍ୱାରା ଚିନ୍ତା, ଚେତନାର ସ୍ତର ବୃଦ୍ଧି ପାଇଥାଏ ଓ ଲୋକମାନଙ୍କ ମଧ୍ୟରେ ବିଚାରଶୀଳତାର ପ୍ରସାର ଘଟିଥାଏ । ଶିକ୍ଷାର ଅଭାବରେ କୁସଂସ୍କାର ସହଜରେ ବୃଦ୍ଧି ପାଇବା ବା ବ୍ୟାପକ ହେବା ଏକ ସାଧାରଣ ଅନୁଭବ ଅଟେ । ତେବେ ଶିକ୍ଷା ଗୁଣାତ୍ମକ ଓ ବିଜ୍ଞାନଭିତ୍ତିକ ନ ହେଲେ ଲୋକମାନଙ୍କ ମାନସିକତାରୁ କୁସଂସ୍କାର ଦୂର ହୋଇପାରେ ନାହିଁ । ଫଳରେ ସମାଜରେ କେତେକ ପରମ୍ପରାଗତ ଚଳଣି କୁସଂସ୍କାରର ପ୍ରସାର ଦିଗରେ ସହାୟକ ହୋଇଥାଏ । ସମାଜରେ ପ୍ରଚଳିତ ଥିବା ବିଭିନ୍ନ ପରମ୍ପରା, ଲୋକବିଶ୍ୱାସ, ଚଳଣି ଅହେତୁକ ହେଲେ ମଧ୍ୟ ସେ ପ୍ରତି ଏକ ଅନ୍ଧ-ଆବେଗ ରହିଥାଏ । ସେହି ଆବେଗକୁ

ସମାଜରେ କେତେକ କୁସଂସ୍କାର ପିଢି ପିଢି ଦେଇ ଜନମାନସରେ ପ୍ରଚଳିତ ରହିଥାଏ।

କୁସଂସ୍କାରର ବ୍ୟାପକତା ପରିପ୍ରେକ୍ଷୀରେ କୁସଂସ୍କାରମାନଙ୍କୁ କେତେକ ଶ୍ରେଣୀରେ ବିଭକ୍ତ କରାଯାଇପାରେ। କୁସଂସ୍କାରମାନଙ୍କୁ ଧର୍ମଗତ, ପରମ୍ପରାଗତ, ଗୋଷ୍ଠୀଗତ ଓ ବ୍ୟକ୍ତିଗତ ଭାବରେ ବିଭାଜନ କରିବା ସମ୍ଭବ ମନେହୁଏ। ପ୍ରତ୍ୟେକ ଧର୍ମ ଭିତରେ ନାନା କୁସଂସ୍କାର ରହିବା ଏକ ସାଧାରଣ ଘଟଣା। ଯେଉଁ ଯୁଗରେ ଧର୍ମମାନଙ୍କର ଉଦ୍ଭବ ହୋଇଥିଲା ସେ ସମୟରେ ଜ୍ଞାନ-ବିଜ୍ଞାନର ବିକାଶ ହୋଇନଥିଲା। ଧର୍ମ ଯେହେତୁ ଏକ ସାଂସ୍କୃତିକ ଆଲୋଡନ ଭାବେ ସାମାଜିକ ସଂହତି ସୃଷ୍ଟି କରିଥିଲା ଧର୍ମର ଏକ ବଳିଷ୍ଠ ପ୍ରଭାବ ଜନଜୀବନ ଉପରେ ରହିଲା ଓ ତାହା ଏପର୍ଯ୍ୟନ୍ତ ବି ରହିଛି। ଦିଅଁ, ଦେବତା, ସ୍ୱର୍ଗ, ନରକ, ପରଲୋକ, ମୁକ୍ତି ଓ ନାନା କର୍ମକାଣ୍ଡ ଧର୍ମ ସହ ସଂଶ୍ଳିଷ୍ଟ ଓ ଏସବୁ ଲୋକବିଶ୍ୱାସର ଅଙ୍ଗ ହୋଇ ରହିବା ଦେଖାଯାଏ। ପ୍ରତ୍ୟେକ ଧର୍ମ ସହ କିଛି ଧର୍ମଗ୍ରନ୍ଥ ସଂଶ୍ଳିଷ୍ଟ। ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥର ବାଣୀକୁ ଚିରନ୍ତନ ଓ ଶାଶ୍ୱତ ମନେ କରିଥାନ୍ତି। ବୈଜ୍ଞାନିକ ମାନଦଣ୍ଡରୁ ଅନେକ ଧାର୍ମିକ ବିଶ୍ୱାସ ସଂପୂର୍ଣ୍ଣ ଆଧାରହୀନ ହେଲେ ବି ସେସବୁ ବିଶ୍ୱାସ ଲୋକମାନଙ୍କୁ ଗଭୀର ପ୍ରଭାବିତ କରିରଖିବା ଦେଖାଯାଏ। ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଚଳଣି, ପରମ୍ପରା ରହିବା ଅତ୍ୟନ୍ତ ସ୍ୱାଭାବିକ। ତେବେ କେତେକ ପରମ୍ପରା ଅତ୍ୟନ୍ତ ଅମାନବିକ ଓ ବିଜ୍ଞାନ ବିରୋଧୀ। ଏହା ସତ୍ତ୍ୱେ ନାନା ମନସ୍ତାତ୍ତ୍ୱିକ କାରଣରୁ ଲୋକମାନେ ନିଜ ଅଞ୍ଚଳର ବିଶ୍ୱାସ ଓ ଚଳଣିକୁ ଛାଡିପାରନ୍ତି ନାହିଁ। ତାହା ଯେତେ ଅର୍ଥହୀନ, ଅଶୋଭନୀୟ ଓ ଅବୈଜ୍ଞାନିକ ହେଲେ ମଧ୍ୟ ସେ ପ୍ରତି ଅହେତୁକ ଆବେଗ ରହିବା ଦେଖାଯାଏ। ସେହିପରି ପ୍ରତ୍ୟେକ ସାମାଜିକ ଗୋଷ୍ଠୀର କେତେକ ନିଜସ୍ୱ ବିଶ୍ୱାସ ରହିବା ଦେଖାଯାଏ। ନିଜ ଗୋଷ୍ଠୀର ବିଶ୍ୱାସ ଯେତେ ଅସଙ୍ଗତ ଓ ଅମାନବିକ ହେଲେ ମଧ୍ୟ ତାହାକୁ ଅସ୍ମିତା, ସଂସ୍କୃତି ଇତ୍ୟାଦିର ରୂପ ଦେଇ ତାହା ପ୍ରତି ଭାବଗତ ସଂପୃକ୍ତି ବ୍ୟକ୍ତ କରିବା ଦେଖାଯାଏ। ବ୍ୟକ୍ତିଗତ କୁସଂସ୍କାରର ପରିସର ବହୁ ବ୍ୟାପକ। କୁସଂସ୍କାର ଆମର ଖାଦ୍ୟ, ପୋଷାକ, ବ୍ୟବସାୟ, ବୃତ୍ତି, ବିବାହ, ଜନ୍ମ, ମୃତ୍ୟୁ, ଯାତ୍ରା ଇତ୍ୟାଦି ବହୁ ସ୍ତରରେ ପ୍ରତିଫଳିତ ହୋଇଥାଏ।

ସାଧାରଣ ଭାବେ ଦେଖିଲେ ବହୁ ବିଜ୍ଞାନ-ବିରୋଧୀ ଭାବନା ସମାଜରେ ପ୍ରଚଳିତ ରହିବା ଆଜିର ଯୁଗରେ ବି ଦେଖାଯାଏ। ଏବେ ବି ଆମ ସମାଜରେ କେତେକ ଲୋକ

ଚମତ୍କାରିତାରେ ବିଶ୍ୱାସ କରିଥାନ୍ତି । ତଥାକଥିତ କେତେକ ବାବା, ମାତା, ଦେବପୁରୁଷ ଓ ସାଧୁମାନଙ୍କର ଯାଦୁକୁ ଚମତ୍କାରିତାର ରୂପ ଦିଆଯାଏ । କାହା ହାତରୁ ବିଭୂତି ବାହାରିବା, କେଉଁ ଫଟୋରୁ ମହୁ ଝରିବା, କିଏ ଶୂନ୍ୟରେ ଚାଲିବା, ସିମେଣ୍ଟ ଗାଈରୁ କ୍ଷୀର ବାହାରିବା ଇତ୍ୟାଦି ଅହେତୁକ ବିଶ୍ୱାସକୁ ଲୋକମାନେ "ସତ" ବୋଲି ଗ୍ରହଣ କରନ୍ତି । ତଥାକଥିତ ବାବାମାନେ ଲୋକମାନଙ୍କୁ କିଛି ଚମତ୍କାରିତା ଦେଖାଇ ଆସ୍ଥା ସୃଷ୍ଟି କରି ନିଜର ବିଶାଳ ଭକ୍ତମଣ୍ଡଳୀ ସୃଷ୍ଟି କରିବା ଆମ ସମାଜରେ ଦେଖାଯାଏ । ଲୋକମାନଙ୍କର ସରଳ ବିଶ୍ୱାସର ସୁଯୋଗ ନେଇ କୁସଂସ୍କାରର ପ୍ରସାର କରିବା ଆମ ଜନଜୀବନରେ ସାଧାରଣ ଘଟଣା ଅଟେ ।

ସେହିପରି କେତେକ ମୁହୂର୍ତ୍ତ ଶୁଭ, କେତେକ ମୁହୂର୍ତ୍ତ ଅଶୁଭ, କେଉଁ ଦିଗକୁ କେଉଁ ବାରରେ ଯାତ୍ରା ଭଲ ବା ମନ୍ଦ, କେଉଁ ଦିନ ପାଇଁ କେଉଁ ଖାଦ୍ୟ ଆବଶ୍ୟକ ପରି ବହୁ ବିଶ୍ୱାସ ସମ୍ପୂର୍ଣ୍ଣ ଅହେତୁକ । ଫଳିତ ଜ୍ୟୋତିଷ, ହସ୍ତରେଖା, ନାନା ମୁଦି, ପଥର, ତାବିଜ, ଡେଉଁରିଆ ଇତ୍ୟାଦିର ଜୀବନ ଉପରେ ପ୍ରଭାବ ସଂପୂର୍ଣ୍ଣ ଭାବରେ ଆଧାରହୀନ । ଗୁଣିଗାରେଡି, ମନ୍ତ୍ର ତନ୍ତ୍ର, କଳାଯାଦୁ ପରି ବିଶ୍ୱାସମାନ ଅହେତୁକ ଓ ଅବୈଜ୍ଞାନିକ । ପ୍ରତିକୂଳ ପରିସ୍ଥିତିରେ ଥିବା ଲୋକମାନେ ନାନା ସାମାଜିକ, ଅର୍ଥନୈତିକ ଓ ମନସ୍ତାତ୍ତ୍ୱିକ କାରଣରୁ ଏସବୁରେ ବିଶ୍ୱାସ ସ୍ଥାପନ କରନ୍ତି ଓ ସ୍ଥଳ ବିଶେଷରେ ସେ ପାଇଁ ଶୋଷିତ ହୋଇଥାନ୍ତି ।

ଏପରି କେତେକ କୁସଂସ୍କାର ସମାଜରେ ଦେଖାଯାଏ ଯାହା ସାମାଜିକ ଜୀବନ ପାଇଁ ବିପଜ୍ଜନକ ମନେହୁଏ । କେଉଁ ଦେବୀଙ୍କ ପାଖରେ ବଳି ପକାଇଲେ ଦେବୀଙ୍କ ଆଶୀର୍ବାଦରୁ ରୋଗ ଭଲ ହୋଇଯିବ, ପୋତାଧନ ମିଳିଯିବ, କେସ୍‌ରେ ବିଜୟ ହେବ ଇତ୍ୟାଦି ଭାବନା ସମାଜ ପାଇଁ ଅତ୍ୟନ୍ତ କ୍ଷତିକାରକ ମନେହୁଏ । କେଉଁ ଦିଅଁ ପାଖରେ ବଳି ପକାଇବା, କେଉଁଠି ଅଧିଆ ପଡିବା, କଠୋର ବ୍ରତ ପାଳନ କରିବା ଇତ୍ୟାଦି ଘଟଣାମାନ ସମାଜରେ ଦେଖାଯାଏ । ସେହିପରି ଭୂତ, ପ୍ରେତ, ଡାହାଣି, ଚିରକୁଣି ଇତ୍ୟାଦିରେ ଆସ୍ଥାସ୍ଥାପନ ସମ୍ପୂର୍ଣ୍ଣ ଆଧାରହୀନ -ବିଶ୍ୱାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅସହାୟବୋଧ, ଭୟ, ସାମାଜିକ ବ୍ୟବସ୍ଥା ଉପରେ ଆସ୍ଥାର ଅଭାବ ଓ ଦାରିଦ୍ର୍ୟ ଇତ୍ୟାଦି କାରଣେ ଯୋଗୁ ଏହି ସବୁ ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଥିବା ଦେଖାଯାଏ । କେତେକ ସାଂସ୍କୃତିକ ପରମ୍ପରାର ପ୍ରଭାବରୁ ଲୋକମାନେ ନିଜର ଅସହାୟ ସ୍ଥିତି ଦୂର କରିବାକୁ

ଭାବନା ଆଣିଥାନ୍ତି । କେଉଁ ଶୁଭବେଳାରେ କେଉଁଠି ବୁଡ ପକାଇଲେ, କେଉଁ ଦିଅଁଙ୍କ ପାଖରେ ନଡିଆ ବାଡେଇଲେ, କାହାର ପାଦଦର୍ଶନ କଲେ, କାହା ଦଉଡିକୁ ଛୁଇଁଲେ, କେଉଁ ଦିଅଁଙ୍କ ପାଖରେ ପାଣି ଢାଳିଲେ ସମସ୍ତ ମନସ୍କାମନା ପୂରଣ ହେବ, ଅଭାବ ଦୂର ହୋଇଯିବ, ସକଳ ପାପ-ତାପ ପୁଣ୍ୟରେ ପରିଣତ ହୋଇଯିବ ଇତ୍ୟାଦି ଅହେତୁକ ଭାବନା ଆମ ବୌଦ୍ଧିକ ଅନଗ୍ରସରତାର ପ୍ରମାଣ ଦିଏ ।

ପ୍ରତ୍ୟେକ ବ୍ୟକ୍ତି ଏକ ସାମାଜିକ ପ୍ରାଣୀ ଭାବରେ ସମାଜର ପ୍ରଚଳିତ ବିଶ୍ୱାସ, ପରମ୍ପରା, ଚଳଣି, ଧାର୍ମିକ ଆବେଗଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ସମାଜର ବୃହତ୍ତର ପରିବେଶରେ ଯଦି କୁସଂସ୍କାର, ଧାର୍ମିକ ଆବେଗ, ଅବୈଜ୍ଞାନିକ ଚିନ୍ତାଧାରା ବ୍ୟାପକ ଭାବେ ରହେ, ତାହା ବ୍ୟକ୍ତି-ମାନସିକତାକୁ ସହଜରେ ପ୍ରଭାବିତ କରିଥାଏ । ଏପରିକି ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ବି ବୈଜ୍ଞାନିକ ମନୋଭାବ ଅଭାବରେ କୁସଂସ୍କାରରୁ ମୁକ୍ତ ହୋଇପାରନ୍ତି ନାହିଁ ।

ଚିକିତ୍ସା ବିଜ୍ଞାନର ବିକାଶ ପୂର୍ବରୁ ରୋଗମାନଙ୍କୁ ନେଇ ନାନା କୁସଂସ୍କାର ସମାଜରେ ଥିଲା । ହଇଜା, ବସନ୍ତ, କୁଷ୍ଠ, ହାଡଫୁଟି ଇତ୍ୟାଦି ରୋଗମାନଙ୍କୁ ଦେବ-ଦେବୀଙ୍କ ଅଭିଶାପ ମନେ କରାଯାଉଥିଲା । ଚିକିତ୍ସା ବିଜ୍ଞାନ ଏହି ରୋଗମାନଙ୍କର କାରଣ ଓ ଚିକିତ୍ସା ପ୍ରତିଷେଧକ ବାହାର କରିବାପରେ ଲୋକମାନେ ଅନେକାଂଶରେ ଏହି ସବୁ କୁସଂସ୍କାରରୁ ମୁକ୍ତ ହେଲେଣି । ତେବେ ବିଡମ୍ବନାର ବିଷୟ କେତେକ ପ୍ରାଚୀନ କୁସଂସ୍କାର ସମାଜରୁ ବିଲୋପ ହେବା ବେଳେ ନୂଆ ନୂଆ କୁସଂସ୍କାରର ଉଦ୍ଭବ ହେଉଛି । କେତେକ ଗୁଣିଆ, ତାନ୍ତ୍ରିକ ନିଜର ସ୍ୱାର୍ଥ ପାଇଁ ଲୋକମାନଙ୍କୁ ବିଭ୍ରାନ୍ତ କରୁଛନ୍ତି । ମନ୍ତ୍ର, ତନ୍ତ୍ର ଦ୍ୱାରା ରୋଗ ଭଲ କରିବା, ଛୋଟ ପିଲାମାନଙ୍କୁ ନିଆଁର ଚେଙ୍କ ଦେବା, କୁଲାବୁଲାଇ, ଖଟବୁଲାଇ ଚୋର ଧରିବା ପରି ନାନା ଉଦ୍ଭଟ ଭାବନା କେତେକ ଅଜ୍ଞତା ଯୋଗୁ ସମାଜରେ ରହିବା ସାମାଜିକ ଅନଗ୍ରସରତାର ଚିତ୍ର ଦେଇଥାଏ ।

ନିଜର ପ୍ରତିକୂଳ ପରିବେଶ, ପାରିବାରିକ ଅଶାନ୍ତି, ଆର୍ଥିକ ଅସ୍ୱଚ୍ଛଳତା ବା ଜୀବନର କୌଣସି ବିଫଳତା ପାଇଁ ଭାଗ୍ୟ, କପାଳ ଲିଖନ, ଅଦୃଷ୍ଟରେ ବିଶ୍ୱାସ ମଧ ସଂପୂର୍ଣ୍ଣ ଆଧାରହୀନ । କେଉଁ ଅଦୃଷ୍ଟ ଶକ୍ତି ଆମର ଭବିଷ୍ୟତକୁ ସ୍ଥିର କରିଦେଇ ନାହାନ୍ତି । ଆମର ସାମାଜିକ ପରିବେଶ, ଅର୍ଥନୈତିକ ବ୍ୟବସ୍ଥା, ରାଜନୈତିକ ପରିସ୍ଥିତି ଆମର

ଜୀବନଧାରାକୁ ପ୍ରଭାବିତ କରିଥାଏ। ଇତିହାସରୁ ଏହା ଏକ ଉପଲବ୍ଧି ଯେ ଯେଉଁ ଦେଶମାନେ ବିକଶିତ ଓ ଯେଉଁଠି ଜୀବନର ଗୁଣାତ୍ମକ ମାନ ଉନ୍ନତ ସେମାନଙ୍କୁ ଦିଅଁ ଦେବତାର ଆଶୀର୍ବାଦ ମିଳି ନାହିଁ। ବରଂ ଯେଉଁଠି ନାନା ଦିଅଁ, ଦେବତା, ପୂଜାସ୍ଥଳ ଓ ଧାର୍ମିକ ଆବେଗର ପ୍ରାବଲ୍ୟ ରହିଛି ସେଠାରେ ସାଧୁତା, କର୍ତ୍ତବ୍ୟନିଷ୍ଠା ପ୍ରତି ଯଥେଷ୍ଟ ଆନ୍ତରିକତା ପ୍ରକାଶ ପାଏ ନାହିଁ। ବରଂ ସାମାଜିକ ଜୀବନ ପ୍ରବାହରେ ନାନା ଭେଦଭାବ, ଧାର୍ମିକ ଅସହିଷ୍ଣୁତା ଓ ଦୁର୍ନୀତି ପରିଲକ୍ଷିତ ହୁଏ।

କୁସଂସ୍କାର ଓ ଆଧାରହୀନ ବିଶ୍ୱାସ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ସଂସ୍କାରିତ ଚେତନାର ପରିପନ୍ଥୀ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମୁକ୍ତ ମନ, ବିଚାରଶୀଳତା ଓ ତଥ୍ୟଭିତ୍ତିକ ଜ୍ଞାନକୁ ପ୍ରାଧାନ୍ୟ ଦିଏ। ସଂସ୍କାରିତ ଚେତନା ମାନବବାଦ, ସାମାଜିକ ସମତା ଓ ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱକୁ ସ୍ୱୀକାର କରେ। ବ୍ୟକ୍ତି ଓ ଗୋଷ୍ଠୀ ଜୀବନରେ ବୈଜ୍ଞାନିକ ମନୋଭାବ ଓ ମାନବବାଦୀ ମୂଲ୍ୟବୋଧର ପ୍ରସାର ଯେତେ ଅଧିକ ହେବ ଜୀବନର ଗୁଣାତ୍ମକ ମାନ ସେତେ ଉନ୍ନତ ହେବ। ଅପରପକ୍ଷରେ ସମାଜରେ କୁସଂସ୍କାର ଜନିତ ପରିବେଶର ପ୍ରସାର ହେଲେ ସାମାଜିକ ଜୀବନରେ କ୍ଷୟଶୀଳତା ସୃଷ୍ଟି ହେବ।

(ପ୍ରଗତିବାଦୀ, ୧୩.୦୪.୨୦୧୬)

# ହେତୁବାଦୀ ଜୀବନବୋଧ

ବିଭିନ୍ନ ସଭ୍ୟତାର ଚିନ୍ତାଶୀଳ ବ୍ୟକ୍ତିମାନେ ଉତ୍ତମ ସମାଜ ଓ ଉତ୍ତମ ଜୀବନ ନେଇ କେତେ କେତେ ଗମ୍ଭୀର ଚିନ୍ତା ପ୍ରକଟକରି ଆସିଛନ୍ତି । ସମାଜ ଯେତେ ସୁବ୍ୟବସ୍ଥିତ ହୋଇଛି ଓ ଚିନ୍ତା ଚେତନାର ବିକାଶ ହୋଇଛି ଉନ୍ନତ ସମାଜ ନେଇ ଦାର୍ଶନିକମାନେ ବିଭିନ୍ନ ବିଚାର ଦେଇଛନ୍ତି । ଏହି ପ୍ରକ୍ରିୟାରେ ରାଜନୈତିକ ଆଦର୍ଶ, ଅର୍ଥନୈତିକ ବ୍ୟବସ୍ଥା, ସାଂସ୍କୃତିକ ଢାଞ୍ଚାମାନ ସମାଜରେ ବିକଶିତ ହୋଇଛି । ତେବେ ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ପରଠାରୁ ସମାଜର ସକଳ ବ୍ୟବସ୍ଥା ଧର୍ମକୈନ୍ଦ୍ରିକ ହୋଇଯାଇଛି । ଧର୍ମ ସକଳ ସାମାଜିକ ନିୟନ୍ତ୍ରଣର ଆଧାର ହୋଇଛି । ପ୍ରତ୍ୟେକ ଧର୍ମ ପରମ୍ପରାର ପୂଜକ ଗୋଷ୍ଠୀ ପ୍ରଭାବଶାଳୀ ହୋଇ ସାମାଜିକ ବ୍ୟବସ୍ଥା, ରାଜନୀତି, ଅର୍ଥନୈତିକ ବିକାଶକୁ ପ୍ରଭାବିତ ଓ ନିୟନ୍ତ୍ରଣ କରିଛନ୍ତି । ରାଜତନ୍ତ୍ର ଯୁଗରେ ଏକ କ୍ଷୁଦ୍ର ସଂଭ୍ରାନ୍ତ ଗୋଷ୍ଠୀ ଓ ପୂଜକ ଶ୍ରେଣୀ ସମାଜର ସକଳ ଜନଗଣଙ୍କ ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରି ଆସିଛନ୍ତି । ଶିକ୍ଷା ସେମାନଙ୍କର ଅଧିକାରର ବସ୍ତୁ ହୋଇଛି ଓ ସାଧାରଣ ମଣିଷ ଗୋଷ୍ଠୀ ଅବମାନବୀୟ ସ୍ତରରେ ଜୀବନ ନିର୍ବାହ କରିଛନ୍ତି । ଜୀବନର ଦୁଃଖ, ଘନଘଟା ଯେ ପୂର୍ବନିର୍ଦ୍ଧାରିତ ଏହି ଭାବନା ସମାଜରେ ପ୍ରସାରିତ ହୋଇଛି । ପ୍ରକୃତିର ସକଳ ନିୟମ ଓ ଶୃଙ୍ଖଳା ଏକ ସର୍ବଜ୍ଞ ଓ ସର୍ବଶକ୍ତିମାନ ଈଶ୍ୱରଙ୍କ ଦ୍ୱାରା ନିୟନ୍ତ୍ରିତ ବୋଲି ବ୍ୟାପକ ଭାବେ ସବୁ ସମାଜରେ ପ୍ରଚାରିତ ହୋଇଛି । ଈଶ୍ୱରଙ୍କୁ ବାଦ୍ ଦେଇ ପ୍ରକୃତି, ସମାଜ ଓ ଜୀବନର ଅବବୋଧ ଅଚିନ୍ତନୀୟ ମନେ ହୋଇଛି । ସାହିତ୍ୟ ବି ଧାର୍ମିକ କଳ୍ପନା ଆଧାରରେ ରୂପ ନେଇଛି । ଈଶ୍ୱରଙ୍କୁ କେନ୍ଦ୍ରରେ ରଖି ନାନା ପ୍ରକାରର ପୌରାଣିକ ଉପାଖ୍ୟାନମାନ ରଚିତ ହୋଇଛି । ନୀତି, ନୈତିକତାକୁ ଈଶ୍ୱରଙ୍କର ଅନୁଜ୍ଞା ବୋଲି ଗ୍ରହଣ କରାଯାଇଛି । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜର ଧର୍ମଗ୍ରନ୍ଥକୁ ପବିତ୍ର, ଶାଶ୍ୱତ ଓ ଈଶ୍ୱରୀୟ ଜ୍ଞାନର ଆଧାର ଭାବେ ବିଶ୍ୱାସ କରି ଆସିଛନ୍ତି । ଧର୍ମଗ୍ରନ୍ଥର କୌଣସି ବିଶ୍ୱାସର ବିରୁଦ୍ଧାଚରଣ ଅପବିତ୍ର, ଅଧାର୍ମିକ ଓ ଅନୈତିକ ବୋଲି ଗ୍ରହଣ କରାଯାଇଛି । ସେହି ପୃଷ୍ଠଭୂମିରେ ଧର୍ମ ସଂସ୍ଥାପନ କରିବା ପାଇଁ ଶାସକ ଓ ପୂଜକ ଗୋଷ୍ଠୀ ନିଜକୁ ଶକ୍ତିଶାଳୀ କରିଛନ୍ତି ।

ସେହିପରି ଜୀବନର ଅନ୍ତିମ ଲକ୍ଷ୍ୟ ନେଇ କେତେ କେତେ ରହସ୍ୟମୟ ଭାବନାର ବିକାଶ ହୋଇଛି । ସ୍ୱର୍ଗ ପ୍ରାପ୍ତି, ମୋକ୍ଷ, ନିର୍ବାଣର ବହୁ ଚମତ୍କାର ଚିନ୍ତା ବିଭିନ୍ନ ଧର୍ମ ପରମ୍ପରାରେ ବ୍ୟକ୍ତ ହୋଇଛି । ଏକ ପାରଲୌକିକ ଜୀବନାଦର୍ଶ ଅଧିକାଂଶ ଧର୍ମର ଅନ୍ତର୍ନିହିତ ବିଚାର ହୋଇ ଆସିଛି । ମାନବ ଜୀବନ ଅଳୀକ, ଦୁଇଦିନର ଖେଳ ଓ ସମସ୍ତ ସମ୍ବନ୍ଧ ନିରର୍ଥକ ବୋଲି କେତେ କେତେ କାବ୍ୟିକ ଶୈଳୀରେ ପ୍ରକାଶ ପାଇଛି । ଇହଲୋକର ସୁଖ ଶାନ୍ତି ଅପେକ୍ଷା ପାରଲୌକିକ ସୁଖ ଶାନ୍ତି ପାଇଁ ଅଧିକ ସଂପୃକ୍ତି ବ୍ୟକ୍ତ ହୋଇଛି । ଏହି ଉଦ୍ଦେଶ୍ୟରେ ନାନା ଧାର୍ମିକ କର୍ମକର୍ମାଣି ଜୀବନ ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ହୋଇପଡିଛି । ଏପରିକି କେତେକ ଧର୍ମପ୍ରାଣ ବ୍ୟକ୍ତି ଦୁସ୍ଥ ମଣିଷଙ୍କର ସେବାକୁ ଜୀବନର ପରମ ବ୍ରତ ବୋଲି ଗ୍ରହଣ କରିଛନ୍ତି । ମଣିଷର ସେବା ହିଁ ଈଶ୍ୱରଙ୍କ ସେବା ଓ ଏହି ସେବା କରିଥିବା ବ୍ୟକ୍ତି ହିଁ ପରଲୋକରେ ଈଶ୍ୱରଙ୍କ ସାନିଧ ଲାଭ କରିପାରିବ ବୋଲି ମାନସିକତା ଆସିଛି । ଜୀବନର ସକଳ ଶ୍ରେୟ ଓ ମହତ୍ତର ଭାବନା ବି ଧର୍ମକୈନ୍ଦ୍ରିକ ହୋଇ ଯାଇଛି ।

ପୁନଶ୍ଚ ଧାର୍ମିକ ଅବବୋଧରେ ମଣିଷକୁ ଈଶ୍ୱର ନିଜ ସ୍ୱରୂପରେ ସୃଷ୍ଟି କରିଛନ୍ତି । ଏ ଜଗତ ମଧ୍ୟ ଈଶ୍ୱରଙ୍କ ସୃଷ୍ଟି । ଆମ ପୃଥିବୀ ଓ ଏହାର ପ୍ରକୃତି ତଥା ପ୍ରାଣୀଜଗତକୁ ମଣିଷର ସୁଖ ଶାନ୍ତି ପାଇଁ ଈଶ୍ୱର ସୃଷ୍ଟି କରିଛନ୍ତି । ସୂର୍ଯ୍ୟ, ଚନ୍ଦ୍ର ଓ ନଭମଣ୍ଡଳ ସବୁ ଈଶ୍ୱରଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଛି । ଈଶ୍ୱରଙ୍କୁ ଛାଡି ପ୍ରକୃତିର ଅସ୍ତିତ୍ୱ ନାହିଁ ବା ଜୀବନର ମୂଲ୍ୟ ନାହିଁ ।

ତେବେ ଯୁଗ ଯୁଗର ଏହି ବିଶ୍ୱାସ ଓ ଜୀବନବୋଧରେ ବିଜ୍ଞାନର ବିକାଶ ପରଠାରୁ ପରିବର୍ତ୍ତନର ସୂତ୍ରପାତ ହୋଇଛି । ତେଣୁ ବିଜ୍ଞାନର ଆରମ୍ଭ କାଳରେ ଧର୍ମ ଓ ବିଜ୍ଞାନ ଭିତରେ ଏକ ସଂଘର୍ଷର ପରିବେଶ ସୃଷ୍ଟି ହୋଇଛି । ବହୁ ସତ୍ୟାନ୍ୱେଷୀ ବୈଜ୍ଞାନିକଙ୍କୁ କାଠଗଡାରେ ଛିଡା ହେବାକୁ ପଡିଛି । ଜ୍ୟୋତିର୍ବିଜ୍ଞାନ ବସ୍ତୁନିଷ୍ଠ ଭାବେ ପ୍ରମାଣ କରୁଛି ଯେ ଆମ ପୃଥିବୀ ଗୋଟିଏ ସୌରମଣ୍ଡଳର ଏକ ଗ୍ରହ ମାତ୍ର । ବିଶ୍ୱରେ କୋଟି କୋଟି ଛାୟାପଥ ଓ ସୌରମଣ୍ଡଳ ରହିଛି । ପୃଥିବୀ ଏକ ନିର୍ବାଚିତ ଗ୍ରହ ନୁହଁ । ସୂର୍ଯ୍ୟ, ଚନ୍ଦ୍ର, ଆକାଶ କୌଣସି ଦେବତା ନୁହନ୍ତି । ସ୍ୱର୍ଗ, ନରକ, ଯମପୁର ଇତ୍ୟାଦି ଭାବନା ଗୁଡିଏ ଆଇ ମା' କାହାଣୀ ମାତ୍ର, ସେଗୁଡିକର କୌଣସି ଅସ୍ତିତ୍ୱ ହିଁ ନାହିଁ । ପ୍ରାଣୀଜଗତ ଓ ମଣିଷକୁ କୌଣସି ସର୍ବଜ୍ଞ ଈଶ୍ୱର ତାଙ୍କ ସ୍ୱରୂପରେ ସୃଷ୍ଟି କରିନାହାନ୍ତି, ବରଂ କୋଟି କୋଟି ବର୍ଷର ପ୍ରାକୃତିକ ପରିବର୍ତ୍ତନ ଜୈବିକ ବିବର୍ତ୍ତନ ମଧ୍ୟ ଦେଇ ପ୍ରାଣୀଜଗତ ଓ ମଣିଷର ଉତ୍ପତ୍ତି ହୋଇଛି । ଏହି ପ୍ରକ୍ରିୟାରେ ପ୍ରାକୃତିକ ପରିବର୍ତ୍ତନ ସହ କେତେ କେତେ ପ୍ରାଣୀ ଓ ଉଦ୍ଭିଦ ଧ୍ୱଂସ ପାଇ ଯାଉଛନ୍ତି । ମଣିଷ ଆଜି ଯେଉଁ ସ୍ଥିତିରେ ରହିଛି

ଆରମ୍ଭ ବେଳେ ସେହି ସ୍ଥିତିରେ ନ ଥିଲା । ଲକ୍ଷ ଲକ୍ଷ ବର୍ଷର ଜୈବିକ ପରିବର୍ତ୍ତନ ଧାରାରେ ଆଜିର ସ୍ଥିତିକୁ ମଣିଷ ଆସିବାକୁ ସମର୍ଥ ହୋଇଛି । ସାମାଜିକ ପରିବର୍ତ୍ତନ ଓ ବିକାଶ ଏକ ନିରନ୍ତର ପ୍ରକ୍ରିୟା । ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ଦେଇ ଆଜିର ସମାଜ ବ୍ୟବସ୍ଥା ବିକଶିତ ହୋଇଛି । ହଜାର ହଜାର ଭାଷା ମଣିଷର କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀ ଜୀବନରୁ ଉଦ୍ଭବ ହୋଇଛି । ସାମାଜିକ ବିକାଶ ପ୍ରକ୍ରିୟାରେ କେତେକ ଭାଷା ବି ବିଲୁପ୍ତ ହୋଇଯାଉଛି ।

ବିଜ୍ଞାନର ବିକାଶ ପରଠାରୁ ଗୋଟିଏ ବଡ ଉପଲବ୍ଧି ଆସିଛି ଯେ ସଭ୍ୟତାର ବିକାଶ, ଜ୍ଞାନବିଜ୍ଞାନର ଅଭ୍ୟୁଦୟ, ଉନ୍ନତ ଜୀବନଶୈଳୀ, ସୁସ୍ଥ ସାମାଜିକ ବ୍ୟବସ୍ଥା ମଣିଷର ଉଦ୍ୟମ ଓ ବୌଦ୍ଧିକ ଅନୁସନ୍ଧିତ୍ସା ଯୋଗୁ ସମ୍ଭବ ହୋଇଛି । ଯେଉଁଠି ସମାଜର ଜନଗଣ ବିଜ୍ଞାନ-ମନସ୍କ ହୋଇଛନ୍ତି, ପ୍ରକୃତିର ରହସ୍ୟକୁ ବୁଝିବାକୁ ପ୍ରୟାସ କରିଛନ୍ତି ଓ ପ୍ରତିକୂଳ ସ୍ଥିତିକୁ ଅତିକ୍ରମ କରିବାକୁ ଗଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି ସେମାନେ ଅଧିକ ବିକଶିତ ହୋଇଛନ୍ତି । କୌଣସି ବିକାଶ ଆକାଶରୁ ଖସି ନାହିଁ କିମ୍ୱା କେଉଁ ଦିଅଁ ଦେବତାଙ୍କର ଆଶୀର୍ବାଦରୁ ଆସି ନାହିଁ। ମଣିଷର ପ୍ରୟାସରେ ଜ୍ଞାନ ବିଜ୍ଞାନର ବିକାଶ ଘଟିଛି, ଜୀବନ ଅଧିକ ନିରାପଦ ହୋଇଛି ଓ ସୁସ୍ଥ ସାମାଜିକ ପରିବେଶ ଉଦ୍ଭବ ହୋଇଛି । ଯେଉଁଠି ଏହି ସଂପୃକ୍ତି ପ୍ରକାଶ ପାଇ ନାହିଁ, ପାରଲୌକିକ ମାନସିକତା ଜୀବନବୋଧକୁ ଅଧିକ ପ୍ରଭାବିତ କରି ରଖିଛି, ଧାର୍ମିକ ଆବେଗ ସାମାଜିକ ମନସ୍ତତ୍ତ୍ୱକୁ କବଳିତ କରିଛି ଓ ନୀତି ନୈତିକତା ସାମାଜିକ କର୍ତ୍ତବ୍ୟ ପରିବର୍ତ୍ତେ ଧାର୍ମିକ କର୍ମକର୍ମାଣି ସହ ସଂପୃକ୍ତ ହୋଇଛି ସେଠି ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇରହିଛି ।

ବୈଜ୍ଞାନିକ ଚିନ୍ତା ଚେତନାର ବିକାଶ ପରଠାରୁ ମଣିଷର ସାମାଜିକ କର୍ତ୍ତବ୍ୟର ପରିସର ଦିନକୁ ଦିନ ପରିବ୍ୟାପ୍ତ ହେବାରେ ଲାଗିଛି । ବିଜ୍ଞାନର ଯେପରି ଅପପ୍ରୟୋଗ ନ ହୁଏ ଓ ଜ୍ଞାନ ବିଜ୍ଞାନ ସାମାଜିକ ହିତ ଦିଗରେ ବିନିଯୋଗ ହୁଏ ସେଥି ପାଇଁ ବିଭିନ୍ନ ରାଷ୍ଟ୍ରର ମାନବହିତୈଷୀ ଦାର୍ଶନିକମାନେ ଗମ୍ଭୀର ଚିନ୍ତା ପ୍ରକଟ କରି ଆସୁଛନ୍ତି । ଜ୍ଞାନ ଓ ବୁଦ୍ଧି ଏକ ସାଧନ ମାତ୍ର । ଏକ ସାଧନ କେଉଁ ଲକ୍ଷ୍ୟ ଦିଗରେ ବିନିଯୋଗ ହେବ ତାହା ଏକ ନୈତିକ ପ୍ରଶ୍ନ । ମଣିଷ ନିଜର ବୁଦ୍ଧି ବା ଜ୍ଞାନକୌଶଳକୁ ଏକ ମହତ୍ତର ଲକ୍ଷ୍ୟ ଉଦ୍ଦେଶ୍ୟରେ ପ୍ରୟୋଗ କରିପାରେ କିମ୍ୱା ମନ୍ଦ ଉଦ୍ଦେଶ୍ୟରେ ବି ପ୍ରୟୋଗ କରିପାରେ । ସୁତରାଂ ବ୍ୟକ୍ତି ଭିତରେ ଓ ସାମାଜିକ ପରିବେଶରେ ଏକ ଉନ୍ନତ ଜୀବନବୋଧର ଭାବନା କିପରି ଦୃଢ ଭିତ୍ତି ନେଇପାରିବ ସେଥିପାଇଁ ନାନା ଚିନ୍ତା ପ୍ରକାଶ ପାଉଛି । ଅତୀତରେ ଦାର୍ଶନିକମାନେ ଅଧିକ ଭାବବାଦୀ ଓ ତାତ୍ତ୍ୱିକ ପ୍ରଶ୍ନମାନଙ୍କ ଉପରେ ଗମ୍ଭୀର ଚର୍ଚ୍ଚା ବ୍ୟକ୍ତ କରୁଥିଲେ । ତେବେ ଦାର୍ଶନିକ ଚିନ୍ତାଧାରାରେ

ବି ମୌଳିକ ପରିବର୍ତ୍ତନ ଯୋଗୁ ଦର୍ଶନ ଧୀରେ ଧୀରେ ଅଧିକ ବାସ୍ତବବାଦୀ ଓ ଜୀବନଧର୍ମୀ ହେବାକୁ ପ୍ରୟାସ କରିଛି । ମୁକ୍ତି, ମୋକ୍ଷ, ନିର୍ବାଣ, ଈଶ୍ୱର ଇତ୍ୟାଦି କାଳ୍ପନିକ ବିଷୟ ଉପରେ ତତ୍ତ୍ୱ ବଖାଣିବା ପରିବର୍ତ୍ତେ ମାନବବାଦ, ସାମାଜିକ ନ୍ୟାୟ, ଭ୍ରାତୃତ୍ୱଭାବ, ଉନ୍ନତ ରାଜନୈତିକ ବ୍ୟବସ୍ଥା, ନିରନ୍ତର ବିକାଶର ଧାରା, ଉନ୍ନତ ଶୈକ୍ଷିକ ପରିବେଶ, ବ୍ୟକ୍ତି ସ୍ୱତନ୍ତ୍ରତା ଇତ୍ୟାଦି ଭାବନା ଉପରେ ଗମ୍ଭୀର ଚର୍ଚ୍ଚା ଦର୍ଶନ ପରିସରରେ ହେଉଛି । ସେହିପରି ନୀତି, ନୈତିକତାର ଭାବନାକୁ ସୁଖମୟ ଜୀବନ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ପ୍ରୀତିପୂର୍ଣ୍ଣ ମାନବ ସମାଜ ଗଠନ ପାଇଁ ସଂଶ୍ଳିଷ୍ଟ କରା ଯାଉଛି । ବ୍ୟକ୍ତିର ସୁଖ, ଶାନ୍ତି ସାମାଜିକ ପରିବେଶଦ୍ୱାରା ପ୍ରଭାବିତ ହୋଇଥାଏ । ବୃହତ୍ତର ସାମାଜିକ ପରିବେଶରେ ଉଚ୍ଚ ନାଗରିକ ଶୃଙ୍ଖଳାବୋଧ, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ମାନବିକ ମୂଲ୍ୟବୋଧ ପ୍ରତି ସମ୍ମାନ ରହିବାଦ୍ୱାରା ବ୍ୟକ୍ତିର ଜୀବନ ସୁଖ, ଶାନ୍ତିପୂର୍ଣ୍ଣ ହୋଇପାରିବ । ପରନ୍ତୁ ଯଦି ସାମାଜିକ ଜୀବନ ପ୍ରବାହରେ ବିଶୃଙ୍ଖଳା, ଦୁର୍ନୀତି, ନାଗରିକ କର୍ତ୍ତବ୍ୟବୋଧ ନେଇ ସ୍ପର୍ଶକାତରହୀନ ମାନସିକତାର ପ୍ରାବଲ୍ୟ ରହେ, ତେବେ ଜୀବନର ଗୁଣାତ୍ମକ ମୂଲ୍ୟ ନ୍ୟୂନ ହୋଇ ରହିବ । ଏହା ଛଡା ଯେଉଁ ସାମାଜିକ ଦୃଶ୍ୟପଟରେ ଭେଦଭାବମୂଳକ ପରିବେଶ ଓ ଉଚ୍ଚ କର୍ମ ସଂସ୍କୃତି ପରିବର୍ତ୍ତେ ପାରଲୌକିକ ଜୀବନଦୃଷ୍ଟିର ପ୍ରଭାବ ଅଧିକ ରହେ ସେଠାରେ ଜୀବନର ଗୁଣାତ୍ମକ ଉତ୍ତରଣ ବାଧାପ୍ରାପ୍ତ ହୁଏ ।

ବସ୍ତୁତଃ ଜୀବନ ପ୍ରତି ଏକ ଯଥାର୍ଥ ମନୋଭାବ ଓ ସମାଜ ପ୍ରତି ଏକ ମାନବିକ ଉତ୍ତରଦାୟିତ୍ୱବୋଧ ସାମାଜିକ ବିକାଶର ଏକ ପ୍ରଧାନ ଅବଲମ୍ବନ ମନେହୁଏ । ଭୌତିକ ବିକାଶ ସହ ନୈତିକ ଜୀବନବୋଧର ସମନ୍ୱୟ ହେଲେ ଏକ ଉନ୍ନତ ସାଂସ୍କୃତିକ ପରିବେଶର ଅଭ୍ୟୁଦୟ ହୋଇପାରିବ । ହେତୁବାଦୀ ଜୀବନବୋଧ ଏହି ସାଂସ୍କୃତିକ ପରିବର୍ତ୍ତନର ବାର୍ତ୍ତା ଦେଉଥିବା ହେତୁବାଦୀ ଜୀବନ-ଦର୍ଶନରୁ ଜଣାପଡେ ।

(ପ୍ରଗତିବାଦୀ, ୨୫.୦୫.୨୦୧୬)

# ଅନ୍ଧକାରର କାହାଣୀ

ପ୍ରକୃତି ଯେପରି ପରିବର୍ତ୍ତନଶୀଳ, ସଭ୍ୟତା ସେପରି ଗତିଶୀଳ । ମଣିଷ ଏକ ଆଦିମ ସ୍ଥିତିରୁ କେତେ ପରିବର୍ତ୍ତନ ଓ ବିକାଶର ସ୍ତର ଦେଇ ପହଞ୍ଚିଛି ଆଜିର ଯୁଗରେ । ସକଳ ବିକାଶ ଓ ଉତ୍ତରଣ ପଶ୍ଚାତରେ ରହିଛି ମଣିଷର ଅବିରତ ପ୍ରୟାସ । ସଭ୍ୟତାର ଆରମ୍ଭ ପର୍ବରୁ କିଛି ବ୍ୟକ୍ତି ଜୀବନ ଓ ପରିବେଶକୁ ବୁଝିବାକୁ ପ୍ରୟାସ କରିଛନ୍ତି । ସେହି ପ୍ରୟାସ ମଧ୍ୟ ଦେଇ ଧୀରେ ଧୀରେ ସଭ୍ୟତାର ରଥ ଆଗକୁ ବଢ଼ିଛି । ଏକ ଅସୁରକ୍ଷିତ ଯାଯାବର ଜୀବନରୁ ଆରମ୍ଭ ହୋଇଛି କୃଷିଭିତ୍ତିକ ଗ୍ରାମୀଣ ଜୀବନ । ବଣ ଜଙ୍ଗଲରେ ବୁଲି ଶିକାର କରି, ଗଛର ଫଳମୂଳ ଖାଇ ବଞ୍ଚୁଥିବା ଆଦିମ ମଣିଷ ପ୍ରବେଶ କରିଛି କୃଷିଭିତ୍ତିକ ଗୋଷ୍ଠୀ ଜୀବନକୁ । ଗୋଷ୍ଠୀ ଜୀବନ କିଛିଟା ଦୃଢ଼ ଭିତ୍ତି ନେବା ପରେ ଦଳପତିରୁ ରାଜତନ୍ତ୍ର ଉଦ୍ଭବ ହୋଇଛି । ରାଜତନ୍ତ୍ର ଏକ ସୁଦୃଢ଼ ସାମାଜିକ ବ୍ୟବସ୍ଥାର ବିକାଶ ପାଇଁ ସହାୟକ ହୋଇଛି । ରାଜତନ୍ତ୍ର ଯୁଗରେ କେତେ କେତେ ଯୁଦ୍ଧ, ବିଭୀଷିକା ଓ ଅତ୍ୟାଚାରର ଲୋମହର୍ଷଣ କାହାଣୀ ସଭ୍ୟତାର ଇତିହାସକୁ ରକ୍ତରଂଜିତ କରିଛି । ଏପରିକି ବିଂଶଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ କେତେ କେତେ ଯୁଦ୍ଧର ବିଭୀଷିକା ମାନବ ସଭ୍ୟତା ପ୍ରତି ଆତଙ୍କ ସୃଷ୍ଟି କରିଛି । ଆଜିର ଏକବିଂଶ ଶତାବ୍ଦୀରେ ବି ପ୍ରତ୍ୟେକ ଦେଶ ନିଜ ଜାତୀୟ ଆୟର ଏକ ବଡ଼ ଅଂଶ ଖର୍ଚ୍ଚ କରୁଛି ପ୍ରତିରକ୍ଷା କ୍ଷେତ୍ରରେ । ଗଣବିଧ୍ୱଂସକାରୀ ମାରଣାସ୍ତ୍ରରେ ଶକ୍ତିଶାଳୀ ହେବାକୁ ପ୍ରତ୍ୟେକ ରାଷ୍ଟ୍ର ବୈଜ୍ଞାନିକ ଜ୍ଞାନକୌଶଳର ପ୍ରୟୋଗ-ଅପପ୍ରୟୋଗ କରି ଚାଲିଛି । ଗୋଟିଏ ସମୟରେ ରାଜତନ୍ତ୍ର, ବଂଶାନୁକ୍ରମିକ ପାରିବାରିକ ଶାସନ ବିରୁଦ୍ଧରେ ବୈପ୍ଳବିକ ଚେତନା ଜାଗ୍ରତ ହୋଇଛି । ଗଣତନ୍ତ୍ର, ଲୋକତନ୍ତ୍ର ସପକ୍ଷରେ କେତେକ ଦେଶରେ ଉଭୟ ବୌଦ୍ଧିକ ଓ ସାମାଜିକ ଆଲୋଡ଼ନ ସୃଷ୍ଟି ହୋଇଛି । ସେହି ଆଲୋଡ଼ନରୁ ଆସିଛି ଲୋକତନ୍ତ୍ର । ଏବେ ବିଶ୍ୱ ଦୃଶ୍ୟପଟରେ ଗଣତନ୍ତ୍ର ହିଁ ହେଉଛି ଏକ ସଭ୍ୟ ରାଜନୈତିକ ବିଚାରବୋଧ । ତେବେ ଗଣତାନ୍ତ୍ରିକ ପ୍ରକ୍ରିୟାରେ ଯେଉଁ ଦୋଷ, ତ୍ରୁଟି ପ୍ରକାଶ ପାଉଛି ତାକୁ ଅତିକ୍ରମ କରାଯାଇ ପାରିବ ଓ ସେଥିପାଇଁ ଲୋକଚରିତ୍ର, ଶିକ୍ଷା, ଗଣମାଧ୍ୟମ ଓ ବିଚାରବିଭାଗର ଯଥେଷ୍ଟ ପ୍ରଭାବ ରହିଛି ।

ସେହିପରି ଦୁଇଶହ ବର୍ଷ ତଳର ପୃଥିବୀରେ ସାମ୍ରାଜ୍ୟବାଦ ବେଶ୍ କାୟା ବିସ୍ତାର କରିଥିଲା । ସାମ୍ରାଜ୍ୟବାଦ ଯୁଗରେ ଯେଉଁ ଶୋଷଣ, ଅତ୍ୟାଚାରର ଲୋମହର୍ଷଣ କାହାଣୀ

ଘଟିଯାଇଛି ତାହା ସକଳ ମାନବିକ ଅନୁଭବକୁ ଗଭୀର ଆଘାତ ଦେଇଥାଏ। ମାନବିକ ନୃଶଂସତା, କ୍ରୂରତା ଓ ଅତ୍ୟାଚାର ସଭ୍ୟତାର ଇତିହାସକୁ କଳଙ୍କିତ କରିଛି। ବିଭିନ୍ନ ଦେଶକୁ ଜଳପଥ ଆବିଷ୍କୃତ ହେବା ପରେ ବିଭିନ୍ନ ଦେଶର ଜନଗୋଷ୍ଠୀ, ସଭ୍ୟତା, ସଂସ୍କୃତି ବିଷୟରେ ଧାରଣା ସୃଷ୍ଟି ହୋଇଛି। ସାମରିକ ଦୃଷ୍ଟିରୁ ବଳଶାଳୀ ଲୋକମାନେ ଅନ୍ୟ ଭୂଖଣ୍ଡକୁ ଯାଇ ସେହି ସ୍ଥାନର ଜନଗଣଙ୍କ ଉପରେ ଯେଉଁ ଅମାନବିକ ଅତ୍ୟାଚାର କରିଛନ୍ତି ତାହାର କାହାଣୀ ବେଶ୍ ମର୍ମାନ୍ତିକ। ବିଶେଷକରି ଲାଟିନ ଆମେରିକା ଓ ଆଫ୍ରିକାର ମୂଳ ଅଧିବାସୀଙ୍କ ଉପରେ ତଥାକଥିତ ସଭ୍ୟ ୟୁରୋପୀୟମାନେ ନାନା ବର୍ବରୋଚିତ ଘଟଣା ଘଟାଇଛନ୍ତି। ଇତିହାସ କହେ ଲୋହିତ ଭାରତୀୟମାନେ ଓ ଆଫ୍ରିକୀୟ ନିଗ୍ରୋମାନେ ସଭ୍ୟତାର ଇତିହାସରେ ସବୁଠାରୁ ଅଧିକ ଅତ୍ୟାଚାରିତ ହୋଇଛନ୍ତି; ଯାହା ମାତ୍ର ତିନି ଚାରି ଶତାବ୍ଦୀ ତଳର ଘଟଣା, ସୁଦୂର ଅତୀତର କାହାଣୀ ନୁହେଁ। ସେମାନଙ୍କର ନିଜସ୍ୱ ସଭ୍ୟତା, ସଂସ୍କୃତି, ସାହିତ୍ୟ ଓ ଜୀବନଧାରା ଗଢି ଉଠିଥିଲା। ତେବେ ଲୋହିତ ଭାରତୀୟଙ୍କ ମଧ୍ୟରୁ ଶତକଡା ନବେ ଭାଗ ମଣିଷଙ୍କୁ ମୃତ୍ୟୁ ମୁଖରେ ପଡିବାକୁ ହେଲା। ଆକ୍ରମଣକାରୀଙ୍କୁ ପ୍ରତିରୋଧ କରି ଅନେକ ଲୋକ ମଲେ, ଗାଁ ଗାଁରେ ପ୍ରବେଶକରି ଅନେକ ମଣିଷଙ୍କୁ ହତ୍ୟା କରାଗଲା। ଶେଷରେ ଦାରିଦ୍ର୍ୟ, ଅସ୍ୱାସ୍ଥ୍ୟ ଓ ନାନା ପ୍ରକାର ଶୋଷଣ ଓ ଅବହେଳା ଯୋଗୁଁ କେତେକ ଭୂଖଣ୍ଡର ସ୍ଥାୟୀ ମୂଳ ଅଧିବାସୀ ଓ ଲୋହିତ ଭାରତୀୟମାନେ ଅତ୍ୟାଚାରିତ ହେବା ସହ ବିଲୋପର ଦ୍ୱାର ଦେଶରେ ପହଞ୍ଚିବା ଏକ ଐତିହାସିକ ସତ୍ୟ।

ସେହିପରି ଆଫ୍ରିକୀୟ ଭୂଭାଗଟି ଆବିଷ୍କୃତ ହେବା ପରେ ସେଠିକାର ମୂଳ ଅଧିବାସୀ ନିଗ୍ରୋମାନେ ଅକଥନୀୟ ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି। ଲକ୍ଷ ଲକ୍ଷ ନିଗ୍ରୋମାନଙ୍କୁ କ୍ରୀତଦାସ କରି ଅଣାଗଲା, ସେହି ମଣିଷମାନଙ୍କୁ ଗାଈ, ଛେଳି ଭଳି ବିକ୍ରି କରାଗଲା। ଗୋରାଲୋକଙ୍କୁ ସେବା ଦେବା ପାଇଁ ଈଶ୍ୱର ସେହି ମଣିଷମାନଙ୍କୁ କଳା କରିଛନ୍ତି ଏକ ତତ୍ତ୍ୱର ପ୍ରଚାର କରାଗଲା। ନିଜ ପରିବାର, ପରିବେଶ, ସଂସ୍କୃତିରୁ ବିଚ୍ଛିନ୍ନ ହୋଇ ଅନେକ ଆତ୍ମହତ୍ୟା କରୁଥିଲେ। ଯେଉଁମାନେ ବଞ୍ଚୁଥିଲେ କ୍ରୀତଦାସ ହୋଇ ଯନ୍ତ୍ରଣା ଜର୍ଜରିତ ହୋଇ ବଞ୍ଚୁଥିଲେ। ଆଜିର ସମୃଦ୍ଧ ଆମେରିକାର ବିକାଶ ପଛରେ ଯେଉଁମାନଙ୍କର ଶ୍ରମ, ସ୍ୱେଦ ଓ ରକ୍ତ ରହିଛି ସେମାନେ ହେଲେ ନିଗ୍ରୋ। ଆମେରିକାରେ ଗୃହଯୁଦ୍ଧ ଆରମ୍ଭ ଓ ଆବ୍ରାହମ୍ ଲିଙ୍କନଙ୍କ ବଳିଷ୍ଠ ପଦକ୍ଷେପ ପର୍ଯ୍ୟନ୍ତ ବର୍ଣ୍ଣବୈଷମ୍ୟର ଯେଉଁ କରୁଣ କାହାଣୀର ଚିତ୍ର ଇତିହାସରୁ ପଢିବାକୁ ମିଳେ ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ଘଟିବା ପର୍ଯ୍ୟନ୍ତ ନାଜୀ ଜର୍ମାନୀରେ ହିବ୍ରୁ ସଂପ୍ରଦାୟର ଜିଉମାନଙ୍କ ଉପରେ ଯେପରି ଅକଥନୀୟ ଅତ୍ୟାଚାର ହୋଇଛି ତାହା ବି ବେଶ୍ ମର୍ମାନ୍ତିକ। ଜିଉ ଓ ଜର୍ମାନଙ୍କ ମଧ୍ୟରେ ରଙ୍ଗଭେଦ ବା ଧର୍ମଭେଦ ନାହିଁ, ରହିଛି କିଛି ସାଂସ୍କୃତିକ ଭିନ୍ନତା। ଏକ ଭାଷା କହୁଥିବା, ଏକ ଧର୍ମଧାରାର ବ୍ୟକ୍ତି ହୋଇଥିବା ଗୋଟିଏ ଗୋଷ୍ଠୀ ଉପରେ ଆଉ ଗୋଟିଏ ବଳଶାଳୀ ଗୋଷ୍ଠୀର ଅତ୍ୟାଚାର କେତେ ଯନ୍ତ୍ରଣାଦାୟକ ହୋଇପାରେ ତାର ବଳିଷ୍ଠ ଉଦାହରଣ ହେଉଛି ଜିଉମାନଙ୍କ ଉପରେ ଅତ୍ୟାଚାର। ଲକ୍ଷ ଲକ୍ଷ ଜିଉମାନଙ୍କୁ ଯେପରି ଗ୍ୟାସଚାମ୍ବର ଭିତରେ ପୂରାଇ ଅମାନୁଷିକ ଭାବରେ ହତ୍ୟା କରାଯାଇଛି ଓ ଯନ୍ତ୍ରଣା ଜର୍ଜରିତ କରାଯାଇଛି ତାହା ମଣିଷର ମାନବିକତା ପ୍ରତି ଏକ ଉପହାସ କହିଲେ ଅତ୍ୟୁକ୍ତି ହେବ ନାହିଁ। ଜଣେ ଆଇନଷ୍ଟାଇନ, ଜଣେ କାର୍ଲ ମାର୍କ୍ସ ଓ ଜଣେ ସିଗମଣ୍ଡ ଫ୍ରଏଡଙ୍କ ପରି ମନୀଷୀମାନଙ୍କୁ ସୃଷ୍ଟି କରିଥିବା ଜିଉ ଜାତି ଇତିହାସର ଗୋଟିଏ କାଳଖଣ୍ଡରେ ଯେଉଁ ଅମାନବିକ ବର୍ବରତାର ଶିକାର ହୋଇଛି ତାହା ପ୍ରକୃତରେ ମାନବିକ ମୂଲ୍ୟବୋଧ ପ୍ରତି ଏକ ବଡ ଆହ୍ୱାନ କୁହାଯାଇପାରେ।

ସଭ୍ୟତାର ଅନ୍ଧକାରକୁ ତୀବ୍ର କରିବାରେ ଭାରତବର୍ଷ ବି ପଛରେ ପଡି ନାହିଁ। କାହିଁ କେଉଁ ସୁଦୂର ଅତୀତରୁ ଭାରତୀୟ ସମାଜ ଜାତିଭିତ୍ତିରେ ବିଭାଜିତ ହୋଇରହିଛି। ଅସ୍ପୃଶ୍ୟତା ଓ ନିଶୁଣି ସଦୃଶ ଜାତିପ୍ରଥା ଭାରତୀୟ ଜନଜୀବନକୁ କଳଙ୍କିତ କରିଆସିଛି। ଦଳିତ ଓ ଶୂଦ୍ରମାନେ ମନୁଷ୍ୟୋଚିତ ସର୍ବନିମ୍ନ ଅଧିକାର ଓ ସ୍ୱୀକୃତିରୁ ସାମୂହିକ ଭାବେ ବଞ୍ଚିତ ହୋଇ ରହିଛନ୍ତି। ଆହୁରି ବିଡମ୍ବନାର କଥା ଏକ ଅମାନବିକ ପ୍ରଥାକୁ ଧର୍ମଶାସ୍ତ୍ରରେ ସ୍ୱୀକୃତି ଦିଆଯାଇଛି ଓ ଏହା ଯେ ଏକ ଦୈବୀବିଧାନ ଏହି ପ୍ରକାରର ଏକ ବୌଦ୍ଧିକ ପରିମଣ୍ଡଳ ଭାରତୀୟ ଜନଜୀବନକୁ ଆକ୍ରାନ୍ତକରି ରଖିଆସିଛି। ବିକାଶର ସକଳ ବିଭବ ଓ ପ୍ରତିଶ୍ରୁତି ମୁଷ୍ଟିମେୟ ଲୋକଙ୍କର କବଳରେ ରହିଆସିଛି ଓ ସମାଜର ଅଧାରୁ ଅଧିକ ମଣିଷ ବଞ୍ଚିତ, ଅସହାୟ ଓ କବଳିତ ହୋଇ ରହିଛନ୍ତି। ଶିକ୍ଷା, ଅର୍ଥ ଓ କ୍ଷମତାର ଅଧିକାରରୁ ବଞ୍ଚିତ ହୋଇ ଏ ଦେଶର ଅଗଣିତ ମଣିଷ ଅବମାନବୀୟ ସ୍ତରରେ ପିଢି ପିଢି ଦେଇ ଜୀବନ ନିର୍ବାହ କରି ଆସିଛନ୍ତି। ସେହିପରି ଭାରତବର୍ଷର ମୂଳନିବାସୀ କୁହାଯାଉଥିବା ଜନଜାତିର ଲୋକମାନେ କେଉଁ ପରିସ୍ଥିତିରେ ସାମାଜିକ ମୂଳସ୍ରୋତରୁ ଦୂରେଇ ଯାଇ ବଣଜଙ୍ଗଲ ଭିତରେ ଜୀବନ ନିର୍ବାହ କରିଛନ୍ତି ଓ ଅତ୍ୟନ୍ତ ଅବହେଳିତ ରହି ବଞ୍ଚିଛନ୍ତି, ତାହା ଏବେ ବି ଗବେଷଣାର ବିଷୟ।

ସଭ୍ୟତାର ଏହା ସବୁଠାରୁ ବଡ ବିଡମ୍ବନା ଯେ ଆମ ସଂସାରରେ ଯେତେ ଦୁଃଖ, ଦୁର୍ବିପାକ ଓ ଯନ୍ତ୍ରଣା ରହିଛି ତାହା ଅନେକାଂଶରେ ମାନବୀୟ କ୍ରୂରତାର ପରିଣାମ। ପ୍ରକୃତି ତ ମଣିଷ ପାଇଁ କିଛି ଦୁଃଖ ସୃଷ୍ଟି କରେ ତେବେ ତାହାକୁ ମଣିଷ ସମାଜର କିଛି ଜ୍ଞାନଦୀପ୍ତ

ବ୍ୟକ୍ତି ଅତିକ୍ରମ କରିବାକୁ ଚେଷ୍ଟା କରନ୍ତି ଓ ସଫଳତା ମଧ୍ୟ ପାଇଛନ୍ତି । ହେଲେ ପରିତାପର ବିଷୟ ମଣିଷ ଉପରେ ମଣିଷର ଅତ୍ୟାଚାର ଓ ଶୋଷଣ ସଭ୍ୟତାର ସବୁଠାରୁ ବଡ ଅନ୍ଧକାର ।

ବହୁ ସଭ୍ୟତାର ଇତିହାସରେ ମହିଳାମାନେ ନାନା ପ୍ରକାରର ଭେଦଭାବ ଓ ଶୋଷଣର ଶିକାର ହୋଇଆସିଛନ୍ତି । ଗୋଟିଏ ସମୟରେ ମଣିଷର ଜୀବନଶୈଳୀକୁ ଧର୍ମବିଶ୍ୱାସ ଗଭୀର ଭାବରେ ପ୍ରଭାବିତ କରୁଥିଲା ଓ ଧର୍ମର ଅଖଣ୍ଡ ପ୍ରଭାବ ଜନଜୀବନରେ ଅନୁଭୂତ ହେଉଥିଲା । ଅଧିକାଂଶ ଧର୍ମଗ୍ରନ୍ଥରେ ନାରୀମାନଙ୍କୁ ନ୍ୟୂନ କରାଯାଇଛି । ପରିଣାମତଃ ନରନାରୀ ସମ୍ପର୍କ କ୍ଷେତ୍ରରେ ସମାନତାର ଚିତ୍ର ଦେଖିବାକୁ ମିଳେ ନାହିଁ । ଗୋଟିଏ ଧର୍ମର ବିଶ୍ୱାସ ଅନୁଯାୟୀ ନାରୀ ହେଉଛି ସବୁ ପାପର ମୂଳ ଓ ନରକର ପ୍ରତୀକ । ପୁରୁଷ ଉଦ୍ଦେଶ୍ୟରେ ପୁରୁଷ ଦେହର ଖଣ୍ଡିଏ ହାଡ ନେଇ ଈଶ୍ୱର ନାରୀକୁ ସୃଷ୍ଟି କରିଛନ୍ତି । ଅନ୍ୟ ଏକ ଧର୍ମର ବିଶ୍ୱାସ କ୍ଷେତ୍ରରେ କୁହାଯାଇଛି ଯେ ଜଣେ ପୁରୁଷ ଚାରିଜଣ ମହିଳାଙ୍କୁ ବିବାହ କରିପାରିବ ଓ କୌଣସି ଅଦାଲତରେ ଜଣେ ପୁରୁଷଙ୍କର ସାକ୍ଷ୍ୟ ସହ ଚାରିଜଣ ନାରୀଙ୍କର ସାକ୍ଷ୍ୟ ସମାନ । ଅନ୍ୟ ଏକ ଧର୍ମର ବିଶ୍ୱାସ କ୍ଷେତ୍ରରେ ନାରୀର ମହତ୍ତ୍ୱ ପୁତ୍ର ସନ୍ତାନ ଜନ୍ମ ପାଇଁ ଉଦ୍ଦିଷ୍ଟ ବୋଲି କୁହାଯାଇଛି । ସ୍ୱାମୀ ଯେତେ ମନ୍ଦ ହେଲେ ବି ସେ ପତ୍ନୀର ଦେବତା ଓ ସ୍ୱାମୀର ସମସ୍ତ ବ୍ୟବହାରକୁ ସହ୍ୟ କରିବା ପତ୍ନୀର କର୍ତ୍ତବ୍ୟ । ଆମ ସାମାଜିକ ପରମ୍ପରାରେ ନାନା ଓଷା, ବ୍ରତ, ଉପବାସ କେବଳ ନାରୀମାନଙ୍କ ପାଇଁ ଖଞ୍ଜାଯାଉଛି । ଏକ ପୁରୁଷ-ପ୍ରାଧାନ୍ୟ ସମାଜ ବ୍ୟବସ୍ଥା ପୃଥିବୀର ବହୁ ଦେଶରେ ହଜାର ହଜାର ବର୍ଷ ଧରି ଚଳି ଆସିଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆନ୍ତର୍ଜାତିକ ଦୃଶ୍ୟପଟରେ ମାନବବାଦୀ ଜୀବନଦୃଷ୍ଟିର ଏକ ନବଜାଗରଣ ଆସିଛି । ବର୍ଣ୍ଣଭେଦ, ଜାତିଭେଦ, ଲିଙ୍ଗଭେଦ ପରି ନାନା ଭେଦଭାବକୁ ଦୂର କରି ବିଶ୍ୱରେ ଏକ ସମତାଭିତ୍ତିକ ମାନବସମାଜ ପ୍ରତିଷ୍ଠା ପାଇଁ ଆନ୍ତର୍ଜାତିକ ଘୋଷଣାନାମା ଏକ ଆଲୋକବର୍ତ୍ତିକା କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରତ୍ୟେକ ମଣିଷର ମୂଲ୍ୟ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ଜୀବନ ବଞ୍ଚିବା ତାର ଏକ ମୌଳିକ ଅଧିକାର । ସାମାଜିକ ବିବର୍ତ୍ତନ ପ୍ରକ୍ରିୟାରେ ଏହି ମୂଲ୍ୟବୋଧର ବିକାଶ ଏକ ନୈତିକ ଉତ୍ତରଣ । ସାମ୍ପ୍ରତିକ ସମୟର ଆତଙ୍କବାଦ, ଅସହିଷ୍ଣୁତା ଓ ସାମ୍ପ୍ରଦାୟିକତା ମଧ୍ୟ ମାନବିକତା ବିରୋଧୀ ଭାବଧାରା । ଯାହା ମାନବିକତାବିରୋଧୀ ତାହାର ଦୂରୀକରଣ ଆଜିର ବଡ ଆହ୍ୱାନ ।

(ପ୍ରଗତିବାଦୀ, ୧୦. ୦୮.୨୦୧୬)

# ନୈରାଶ୍ୟର ଭୂଗୋଳ ଓ କୁସଂସ୍କାର

ଇତର ପ୍ରାଣୀଠାରୁ ମନୁଷ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବ ଏକ ପ୍ରାକୃତିକ ପ୍ରକ୍ରିୟା ଦେଇ ଜନ୍ମଲାଭ କରିଥାଏ । ବିବର୍ତ୍ତନ ଧାରାରେ ଯେତେ ପ୍ରକାରର ପ୍ରାଣୀ ଉଦ୍ଭବ ହୋଇଛନ୍ତି ସେମାନଙ୍କ ମଧ୍ୟରେ ମନୁଷ୍ୟ ସବୁଠାରୁ ଅଧିକ ବିକଶିତ । ମନୁଷ୍ୟର ଶ୍ରେଷ୍ଠତା ପଶ୍ଚାତରେ ରହିଛି ବିକଶିତ ମସ୍ତିଷ୍କ । ଏକ ବିକଶିତ ମସ୍ତିଷ୍କର ଅଧିକାରୀ ହେବା କାରଣରୁ ମନୁଷ୍ୟ ପାଖରେ କେତେକ ଉନ୍ନତ ଲକ୍ଷଣ ରହିବା ଦେଖାଯାଏ । ପ୍ରକୃତି ମନୁଷ୍ୟକୁ ଏକ ମସ୍ତିଷ୍କ ଓ ସ୍ୱରପେଟିକାର ଅଧିକାରୀ କରିଥିବା ହେତୁ ମଣିଷ ଭାଷା କହିପାରେ । ଭାଷା କହିବାର ସାମର୍ଥ୍ୟରୁ ନାନା ଜ୍ଞାନ, ବିଜ୍ଞାନର ବିକାଶ ହେବା ସମ୍ଭବପର ହୋଇପାରିଛି । ଜ୍ଞାନ, ବିଜ୍ଞାନର ସର୍ବଦା ଅଗ୍ରଗତି ହୋଇଚାଲିଛି । ଏକ ଆଦିମ ସ୍ଥିତିରୁ ନାନା ସ୍ତର ଦେଇ ଜ୍ଞାନବିଜ୍ଞାନ ଯୋଗୁ ମଣିଷ ଆଜିର ସ୍ଥିତିକୁ ଆସିବା ସମ୍ଭବ ହୋଇଛି । ସେହିପରି ନିଜର ବୁଦ୍ଧି, କୌଶଳ ପ୍ରୟୋଗ କରି ମନୁଷ୍ୟ ନାନା ବସ୍ତୁ ନିର୍ମାଣ କରିବାକୁ ସାମର୍ଥ୍ୟ ହାସଲ କରିଛି । ପ୍ରକୃତିରେ ଉପଲବ୍ଧ ଥିବା ବିଭିନ୍ନ ଉପାଦାନ ଆଧାରରେ ମଣିଷ ନାନା କଥା ପ୍ରସ୍ତୁତ କରିଛି । ନିତିଦିନିଆ ଉପକରଣ, ଲୁଗାପଟା, ଗାଡି ମଟର, ଘରଦ୍ୱାର, ରାସ୍ତାଘାଟ ମଣିଷ ନିଜ ହାତରେ ପ୍ରାକୃତିକ ଉପାଦାନକୁ ପ୍ରୟୋଗ କରି ସୃଷ୍ଟି କରିଛି । ମଣିଷ ଭିତରେ ରହିଛି ସାମାଜିକ ପ୍ରବୃତ୍ତି । ପ୍ରାକୃତିକ ଆବଶ୍ୟକତାରୁ ମଣିଷ ପରିବାର ଓ ସମାଜରେ ରହେ । ଆଦିମ ଯୁଗର ଗୋଷ୍ଠୀ ଜୀବନ ନାନା ସ୍ତର ଦେଇ ରାଷ୍ଟ୍ରୀୟ ଓ ଅନ୍ତଃରାଷ୍ଟ୍ରୀୟ ସ୍ତରକୁ ପ୍ରସାରିତ ହୋଇଛି । ଆଧୁନିକ ପ୍ରଯୁକ୍ତି ସମଗ୍ର ପୃଥିବୀକୁ ଏକ ବିଶ୍ୱ-ଗ୍ରାମରେ ପରିଣତ କରିଥିବା ଯୋଗୁ ଏକ ଆନ୍ତର୍ଜାତିକ ମନୋଭାବର ବିକାଶ ହୋଇପାରିଛି । ଏସବୁ ସମ୍ଭବ ହୋଇଛି ମଣିଷର ବିଚାରଶୀଳ ସାମର୍ଥ୍ୟରୁ । ମଣିଷର ବିଚାରଶୀଳ ସାମର୍ଥ୍ୟ ଯୋଗୁ ସେ ଅନେକ ବିଷୟ ଜାଣିବାକୁ କୌତୁହଳୀ ହୋଇଛି । ତା ଚାରିପାଖର ପରିବେଶ, ପ୍ରାକୃତିକ ଘଟଣା ପ୍ରବାହ ଓ ଜୀବନର ଘନଘଟାକୁ ବୁଝିବା ପାଇଁ ମଣିଷ ପ୍ରୟାସ କରିଆସିଛି । ଏହି ଉଦ୍ୟମରୁ ସଭ୍ୟତାର ଅଗ୍ରଗତି ଘଟିଛି, ଜ୍ଞାନ-ବିଜ୍ଞାନର ବିକାଶ ହୋଇଛି, ଜୀବନର ଗୁଣାତ୍ମକ ମାନରେ କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତି ଘଟିଛି, ନୀତି, ନୈତିକତା ଓ ମାନବିକ ମୂଲ୍ୟବୋଧର ପ୍ରସାର ହୋଇଛି । ପାରସ୍ପରିକ ସହଯୋଗ ମଧ୍ୟ ଦେଇ ବିଭିନ୍ନ ସାମାଜିକ ସଙ୍ଗଠନ ଓ ଅନୁଷ୍ଠାନମାନ ସୃଷ୍ଟି ହୋଇଛି ।

ମାନବ ସଭ୍ୟତାର କ୍ରମବିକାଶର ଧାରାକୁ ଅନୁଶୀଳନ କରିଥିବା ସମାଜବିଜ୍ଞାନୀମାନେ ସାମାଜିକ ବିକାଶର ଯେଉଁ ଚିତ୍ରଟି ଦେଇଛନ୍ତି ସେଥିରୁ ଜଣାପଡେ ଯେ ଆଜିର ସ୍ଥିତିକୁ ଆସିବା ପାଇଁ ମନୁଷ୍ୟକୁ ହଜାର ହଜାର ବର୍ଷ ଲାଗିଯାଇଛି । ଗୋଟିଏ ଗୋଟିଏ ଉଦ୍ଭାବନ ଓ ଆବିଷ୍କାର ସାମାଜିକ ଜୀବନଧାରାରେ ବିରାଟ ପରିବର୍ତ୍ତନର ସୂତ୍ରପାତ କରାଇଛି । କୃଷିର ଜ୍ଞାନ ପରେ ମଣିଷର ଯାଯାବର ଜୀବନର ପରିସମାପ୍ତି ଘଟିଛି ଓ ଆରମ୍ଭ ହୋଇଛି କୃଷିଭିତ୍ତିକ ଗ୍ରାମୀଣ ଜୀବନ । ଗ୍ରାମୀଣ ଜୀବନରୁ ପାରିବାରିକ ଜୀବନ ଦୃଢଭିତ୍ତି ନେଇଛି । ଏହା ସହିତ ସାମାଜିକ ଜୀବନଧାରାରେ କେତେକ ରୀତି, ନୀତି, ଧାର୍ମିକ ଆବେଗ, ପାରଲୌକିକ କଳ୍ପନାମାନ ସୃଷ୍ଟି ହୋଇଛି । ସଭ୍ୟତାର ବିକାଶଧାରା କ୍ଷେତ୍ରରେ ବହୁ ଦିନ ପର୍ଯ୍ୟନ୍ତ ଖାଦ୍ୟ, ବସ୍ତ୍ର, ବାସଗୃହ ଭିତରେ ମଣିଷର ଆବଶ୍ୟକତା ସୀମିତ ହୋଇ ରହିଥିଲା । ଖାଦ୍ୟ ଉତ୍ପାଦନ କରିବା ଥିଲା ମଣିଷ ପାଇଁ ସବୁଠାରୁ ବଡ ଆହ୍ୱାନ । କେତେ କେତେ ପ୍ରାକୃତିକ ବିପର୍ଯ୍ୟୟକୁ ସେ ସାମ୍ନା କରୁଥିଲା । ପ୍ରକୃତି, ରୋଗ ବିରୋଧରେ ସଂଗ୍ରାମ କରି ତାକୁ ବଞ୍ଚିବାକୁ ପଡୁଥିଲା । କୌଣସି ପ୍ରାକୃତିକ ବିପର୍ଯ୍ୟୟ ଘଟିଲେ ସେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା । କେତେକ ରୋଗ ମହାମାରୀର ରୂପ ନେଇ ଗଣମୃତ୍ୟୁ ସୃଷ୍ଟି କରୁଥିଲା । ସେହି ପରିସ୍ଥିତିରେ ବଞ୍ଚି ରହିବା ପାଇଁ ମଣିଷକୁ ନାନା ସଂଗ୍ରାମ କରିବାକୁ ପଡୁଥିଲା । ବହୁ ପ୍ରତିକୂଳ ସ୍ଥିତିରେ ବଞ୍ଚି ରହିବାକୁ ସେ ଯାହା କିଛି ଚିକିତ୍ସା ସଂପର୍କିତ ଜ୍ଞାନ ହାସଲ କରିଥିଲା ତାହା ବିଶେଷ ଫଳପ୍ରଦ ହେଉନଥିଲା । ଏହା ସହିତ ବାହ୍ୟ ଆକ୍ରମଣ, ଯୁଦ୍ଧ ଇତ୍ୟାଦିର ଘନଘଟା ଜୀବନପ୍ରବାହକୁ ବିପଦସଙ୍କୁଳ କରି ରଖିଥିଲା । ମୋଟ ଉପରେ କହିଲେ ନାନା କାରଣରୁ ଜୀବନ ଅତ୍ୟନ୍ତ ବିପଦସଙ୍କୁଳ ଥିଲା ଓ ସର୍ବତ୍ର ଏକ ଭୟର ବାତାବରଣ ରହିଥିଲା ।

ନିରାପଦବିହୀନ ଅସହାୟତା ଓ ଭୟର ମାନସିକତାରୁ ପ୍ରାଚୀନ ସମୟରେ ନାନା ଅଲୌକିକ ଶକ୍ତିର ପରିକଳ୍ପନା ସମାଜରେ ସୃଷ୍ଟି ହୋଇଥିଲା । ପ୍ରକୃତିର ପ୍ରତ୍ୟେକଟି କ୍ଷେତ୍ର କୌଣସି ଅଲୌକିକ ଶକ୍ତିଦ୍ୱାରା ଯେ ନିୟନ୍ତ୍ରିତ ଏହି ଭାବନା ବହୁ ଅତୀତରେ ମଣିଷ ମନକୁ ଆସିଥିଲା । ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ସମୁଦ୍ର, ପର୍ବତ ଇତ୍ୟାଦି ପ୍ରାକୃତିକ ବସ୍ତୁକୁ ସେ ଦେବତା ଭାବେ କଳ୍ପନା କଲା । ସେହିପରି ପବନ ବହିବା, ବର୍ଷା ହେବା, ଘଡଘଡି ମାରିବା, ଋତୁ ବଦଳିବା ଇତ୍ୟାଦି ପ୍ରାକୃତିକ ଘଟଣାମାନ ଯେ କୌଣସି ଆଧିଦୈବିକ ଶକ୍ତିଦ୍ୱାରା ସଙ୍ଘଟିତ ହେଉଛି ଏହା ସେ ଯୁଗର ଭାବନା ଥିଲା । ସେହିପରି ଜୀବନର ଘଟଣା ପ୍ରବାହ ଯଥା ଜନ୍ମ, ରୋଗ, ମୃତ୍ୟୁ ଇତ୍ୟାଦିକୁ ଯେ କୌଣସି ଶକ୍ତି ନିୟନ୍ତ୍ରିତ କରୁଛି ଏହା ଲୋକମାନଙ୍କର ସାର୍ବଜନୀନ ବିଶ୍ୱାସ ଥିଲା । ସମସ୍ତ ପ୍ରକାରର ଅସ୍ୱାଭାବିକ ବ୍ୟବହାର ଯେ ଭୂତ, ପ୍ରେତ ଓ ମନ୍ଦ

ଆତ୍ମାର ପ୍ରଭାବରୁ ହୁଏ ଏହାକୁ ଲୋକମାନେ ବିଶ୍ୱାସ କରୁଥିଲେ। କେତେକ ସମାଜରେ କେତେକ ମହିଳାଙ୍କୁ ଡାହାଣୀ ବୋଲି ଚିତ୍ରଣ କରାଯାଉଥିଲା। ବସ୍ତିରେ କିଛି ରୋଗ ହେବା ବା କାହାର କିଛି ଅଘଟଣ ଘଟିଲେ ମନ୍ତ୍ର, ତନ୍ତ୍ରର ପ୍ରଭାବ ଯୋଗୁ ଏହା ହେଉଛି ବୋଲି ନାନା ଅହେତୁକ ବିଶ୍ୱାସ ବିଭିନ୍ନ ସମାଜରେ ବ୍ୟାପକ ଭାବେ ରହିଥିଲା। ଏବେ ବି ଗାଁ ଗହଳିରେ ଏହି ପ୍ରକାର ବିଶ୍ୱାସ ଥିବା ଦେଖାଯାଏ। ଆଧୁନିକ ଶିକ୍ଷା, ଚିକିତ୍ସା ଓ ବୈଜ୍ଞାନିକ ମନୋଭାବ ଅଭାବରେ ଏହି ପ୍ରକାରର ନାନା ବିଶ୍ୱାସ ଗ୍ରାମୀଣ ଜୀବନଧାରାରେ ଏକବିଂଶ ଶତାବ୍ଦୀରେ ବି ପରିବ୍ୟାପ୍ତ ହୋଇ ରହିବା ଦୃଷ୍ଟିଗୋଚର ହୁଏ। ଆଜକୁ ଗୋଟିଏ ଦୁଇଟି ଶତାବ୍ଦୀ ତଳେ ଏହି ସବୁ ବିଶ୍ୱାସର ପ୍ରାବଲ୍ୟ ସମାଜରେ ବହୁ ବ୍ୟାପକ ଭାବେ ରହିଥିବା ଏକ ନିଚ୍ଛକ ବାସ୍ତବତା ଅଟେ।

ଅତୀତରୁ ଚଳି ଆସିଥିବା କେତେକ ଆଧାରହୀନ ବିଶ୍ୱାସ ସାମ୍ପ୍ରତିକ ସମୟରେ କେତେ ରୂପ ରଙ୍ଗ ନେଇ ଅଧିକ ବ୍ୟାପକ ହେବା ଏକ ବିଡମ୍ବନା ମନେହୁଏ। ବିଭିନ୍ନ ପ୍ରକାରର କଳ୍ପିତ ଦିଅଁ ଦେବତାଙ୍କୁ ଭୋଗ ଦେଲେ, ନଡିଆ ପଠାଇଲେ, କେଉଁଠି ବଳି ପକାଇଲେ ତାଙ୍କର ଆଶୀର୍ବାଦ ମିଳିବ ଏ ପ୍ରକାରର ବିଶ୍ୱାସ ଜନମାନସରେ ଏବେ ବି ପ୍ରଭାବ ବିସ୍ତାର କରି ରହିବା ଦେଖାଯାଏ। ସେହିପରି କେଉଁ ଶୁଭବେଳାରେ କେଉଁଠି ବୁଡ ପକାଇଲେ, କେଉଁ ଦିଅଁଙ୍କ ପାଖରେ ପାଣି ଢାଳିଲେ, କେଉଁ ଠାକୁର ଠାକୁରାଣୀଙ୍କ ପାଖରେ ଅଧିଆ ପଡିଲେ, କାହା ଦଉଡିକୁ ଛୁଇଁଦେଲେ, କେଉଁଠି ଦୀପଟିଏ ଜାଳିଲେ, କେଉଁଠି ଚଦର ପକାଇଲେ ଜୀବନର ସମସ୍ତ ପାପ, ତାପ ଧୋଇଯିବ ବୋଲି ନାନା ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିବା ଦେଖାଯାଏ। ଏହା ସତ୍ୟ ଯେ ଜୀବନ ସହିତ ନାନା ପ୍ରତିକୂଳ ପରିସ୍ଥିତି, ରୋଗ, ଦୁଃଖ, ସନ୍ତାପ ଜଡିତ। ବିଶେଷକରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ବହୁ ଦାରିଦ୍ର୍ୟ ରହିଛି। ଓଡିଶା ପରି କେତେକ ରାଜ୍ୟରେ ଅନେକ ଗ୍ରାମ ରହିଛି ଯେଉଁ ସ୍ଥାନକୁ ରାସ୍ତା ନାହିଁ। ଦାରିଦ୍ର୍ୟ, ଅପପୁଷ୍ଟି, ନିରକ୍ଷରତା, ସ୍ୱାସ୍ଥ୍ୟ ସେବାର ଅଭାବ ପରି ନାନା ସମସ୍ୟା ଭିତରେ ବହୁ ଲୋକ ଅତ୍ୟନ୍ତ ପ୍ରତିକୂଳ ପରିସ୍ଥିତିରେ ନିଜର ଜୀବନ ନିର୍ବାହ କରନ୍ତି। ନାନା ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ କାରଣରୁ ଜନମଙ୍ଗଳକାରୀ ଯୋଜନା ସେମାନଙ୍କ ପାଖକୁ ଯାଇପାରୁ ନାହିଁ। ଏହି ସ୍ଥିତିରେ ସେମାନେ ନାନା ପାରମ୍ପରିକ କୁସଂସ୍କାର ଭିତରେ ବୁଡି ରହିଥିବା ମନେହୁଏ। କେତେ ପ୍ରକାରର କଳାଯାଦୁ, ଡାହାଣୀଜନିତ ଅପରାଧ ଓ କୁସଂସ୍କାର ଗ୍ରାମମାନଙ୍କରେ ରହିବା ସାମାଜିକ ବାସ୍ତବତା।

ଏପରିକି ସମାଜର ଅନେକ ଶିକ୍ଷିତ ଓ ସଚେତନ ବ୍ୟକ୍ତି ଧାର୍ମିକ ଆବେଗ, ପରମ୍ପରାର ଦୁହାଇ ଦେଇ ନାନା ଅହେତୁକ ଓ ଅବୈଜ୍ଞାନିକ କାର୍ଯ୍ୟରେ ସଂପୃକ୍ତ ହେବା ଦେଖାଯାଏ। ନାନା ପ୍ରକାରର ପୂଜା, ପାର୍ବଣ, ଦେଉଳ, ପୂଜାସ୍ଥଳ, ଦିଅଁ ଦେବତା ପାଖରେ ସମର୍ପଣ ଇତ୍ୟାଦି ଜନଜୀବନରେ ବ୍ୟାପକ ଭାବେ ଦୃଷ୍ଟିଗୋଚର ହୁଏ। ସାମାଜିକ କର୍ତ୍ତବ୍ୟ ବା ନାଗରିକ ବିଶୃଙ୍ଖଳା ପାଳନ କରିବାରେ ଆମର ଯେତିକି ସଂପୃକ୍ତି ପ୍ରକାଶ ପାଏ ନାହିଁ, ତାଠାରୁ ଗଭୀର ସଂପୃକ୍ତି ଧାର୍ମିକ ପୂଜା ଆରାଧନାରେ ପ୍ରକାଶ ପାଏ। ବୃହତ୍ତର ସମାଜ ଉପରେ ଆସ୍ଥା ସ୍ଥାପନ କରିବା ପରିବର୍ତ୍ତେ କାଳ୍ପନିକ ଦିଅଁ ଦେବତାର ଆଶୀର୍ବାଦ ଉପରେ ଅଧିକ ଆସ୍ଥା ଲୋକମାନେ ବ୍ୟକ୍ତ କରନ୍ତି। ଆମର ସାମାଜିକ ମନସ୍ତତ୍ତ୍ୱ ଅଧିକ ପାରଲୌକିକ ହେବା ପଶ୍ଚାତରେ ନାନା କାରଣ ବିଦ୍ୟମାନ। ଯେଉଁଠି ହତାଶା ଓ ନୈରାଶ୍ୟବୋଧ ବ୍ୟାପକ ହୋଇଥାଏ, ସେଠାରେ ସାଧାରଣତଃ ଲୋକମାନେ ଅଧିକ ପାରଲୌକିକ ହେବା ଏକ ବିଚାର ରହିଛି। ଅସହାୟବୋଧରୁ ବିଚାରଶୀଳ ମନୋଭାବ ଅଭାବରେ ଜୀବନଦୃଷ୍ଟି ପାରଲୌକିକ ହେବା ଏକ ମନୋବୈଜ୍ଞାନିକ ଅନୁଭବ। ପାରଲୌକିକ ମାନସିକତା ଓ ସାମାଜିକ ଅନଗ୍ରସରତା ପରସ୍ପର ସହ ଘନିଷ୍ଠ ଭାବେ ସଂପୃକ୍ତ। ଇତିହାସରୁ ଏହା ଏକ ଅନୁଭବସିଦ୍ଧ ଘଟଣା ଯେ ମାନବିକ ପ୍ରୟାସ, ଉଚ୍ଚ କର୍ମସଂସ୍କୃତି ଓ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧରୁ ସାମାଜିକ ଜୀବନ ଉନ୍ନତ ହୋଇଥାଏ। ଏହାର ଅଭାବରେ ସାମାଜିକ ପରିବେଶ ଉନ୍ନତ ହୋଇପାରେ ନାହିଁ। ଏହି ପରିବେଶରେ ବ୍ୟକ୍ତିମାନସ ପାରଲୌକିକ ହେବା ସହ ନାନା ଅହେତୁକ ବିଚାରବୋଧ ସମାଜରେ ବ୍ୟାପକ ଭିତ୍ତି ନେଇଥାଏ।

(ପ୍ରଗତିବାଦୀ, ୨୧.୦୯.୨୦୧୬)

# ପୌତ୍ତଳିକତା : ଏକ ଦୃଷ୍ଟିପାତ

ଆମ ଜନଜୀବନରେ ନାନା କାଳ୍ପନିକ ଦିଅଁ ଦେବତାର ପୂଜା ଆରାଧନା ପ୍ରଚଳିତ ରହିଛି। ସେସବୁ ଆମ ସାଂସ୍କୃତିକ ଜୀବନଧାରାର ଅଙ୍ଗ ହୋଇ ଉଠୁଛି। ପ୍ରାଚୀନ ସମୟରେ ବିଭିନ୍ନ ପୁରାଣ ଓ ଲୋକବିଶ୍ୱାସରେ ରହିଥିବା ମିଥ୍ ବା କାଳ୍ପନିକ କାହାଣୀ ଆଧାରରେ କେତେ ଦେଉଳ ମନ୍ଦିର ନିର୍ମାଣ କରାଯାଇଥିଲା। ବିଭିନ୍ନ ମନ୍ଦିର, ପୂଜାସ୍ଥଳକୁ ନେଇ ନାନା ଲୋକବିଶ୍ୱାସମାନ ସୃଷ୍ଟି ହୋଇଥିଲା। ଗୋଟିଏ ସମୟରେ ସମାଜରେ ଦୃଢ ବିଶ୍ୱାସ ଥିଲା ଯେ ଦୃଷ୍ଟିର ଅନ୍ତରାଳରେ ଦୈବଶକ୍ତି ବିଦ୍ୟମାନ। ସବୁ କିଛି ଦୈବଶକ୍ତିର ନିର୍ଦ୍ଦେଶରେ ହୁଏ। ବିଶେଷକରି ଯେଉଁ ଯୁଗରେ ଜ୍ଞାନବିଜ୍ଞାନର ବିକାଶ ହୋଇନଥିଲା, ଜୀବନ ନିରାପଦବିହୀନ ଥିଲା ସେ ଯୁଗରେ ମଣିଷ ମନରେ ଭୟ ଓ ଅସହାୟବୋଧ ବ୍ୟାପକ ଭାବେ ରହିଥିଲା। ସେହି ମାନସିକ ସ୍ଥିତିରେ ନାନା ଦିଅଁ ଦେବତାର କଳ୍ପନା ସମାଜର ସାଧାରଣ ମନସ୍ତତ୍ତ୍ୱ ଥିଲା। ସମାଜର ପ୍ରଚଳିତ ବିଶ୍ୱାସ, ସାଂସ୍କୃତିକ ଭାବଧାରା ଓ ଏହାରି ଆଧାରରେ ନୀତି, ନୈତିକତାର ଭିତ୍ତି ପଡିଥିଲା। ପାରଲୌକିକ ବିଶ୍ୱାସ ଓ ଅତୀନ୍ଦ୍ରିୟ ଶକ୍ତିର କେତେ କେତେ କଳ୍ପନା ଜୀବନବୋଧର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଥିଲା। ଆନୁଷ୍ଠାନିକ ଧର୍ମର ଗଭୀର ପ୍ରଭାବ ରହିଥିବା ସମାଜରେ ଏକେଶ୍ୱରବାଦର ବିଚାର ଦାର୍ଶନିକ ଓ ବ୍ୟାବହାରିକ ସ୍ତରରେ ଦୃଢ ଭିତ୍ତି ନେଇଥିଲା, ପରିଣାମତଃ ସେହି ସବୁ ସମାଜରୁ ବହୁ ଦେବାଦେବୀ ପୂଜାର ପ୍ରଥା ବିଲୋପ ହୋଇଥିଲା। ପରନ୍ତୁ ଏହାର ଅଭାବରେ ବହୁ କାଳ୍ପନିକ ଦିଅଁ ଦେବତାଙ୍କ ପୂଜା ଆରାଧନା ସମାଜରେ ବ୍ୟାପକ ହୋଇ ରହିଥିଲା। ବିଭିନ୍ନ ଦିଅଁ ଦେବତାଙ୍କୁ ଆଧାର କରି କେତେ କେତେ କାଳ୍ପନିକ କାହାଣୀ, ରହସ୍ୟମୟ ଭାବନା, ନାନା ଧାର୍ମିକ ଆବେଗ ଓ ନାନା ମିରାକେଲମାନ ସୃଷ୍ଟି ହୋଇଥିଲା। ଜୀବନର ପ୍ରତ୍ୟେକ ସ୍ତରକୁ ଧାର୍ମିକ ଆବେଗ ଓ ପାରଲୌକିକ ବିଶ୍ୱାସ ଗଭୀର ଭାବେ ପ୍ରଭାବିତ କରୁଥିଲା।

ପ୍ରତ୍ୟେକ ଧର୍ମ ଯେଉଁ ଯୁଗରେ ସୃଷ୍ଟି ହୋଇଥିଲା ସେହି କାଳଖଣ୍ଡରେ ମଣିଷର ବୌଦ୍ଧିକ ସ୍ତର ବିଶେଷ ବିକଶିତ ହୋଇନଥିଲା। ଏହା ସହ ନାନା ଅବୈଜ୍ଞାନିକ ଭାବନା, କାଳ୍ପନିକ କାହାଣୀ ଓ କୁସଂସ୍କାର ଧାର୍ମିକ ଭାବନା ସହ ସଂଶ୍ଲିଷ୍ଟ ହୋଇଥିବା ପରିପ୍ରେକ୍ଷୀରେ ଧର୍ମ

ବ୍ୟବସ୍ଥା ଭିତରେ କିଛି କିଛି ସଂସ୍କାରବାଦୀ ଭାବଧାରାର ଅଭ୍ୟୁଦୟ ହେଲା । ଜ୍ଞାନବିଜ୍ଞାନର ବିକାଶ ଓ ଦାର୍ଶନିକ ଅନୁଶୀଳନର ପ୍ରଭାବରୁ କେତେକ ଅବୈଜ୍ଞାନିକ ଓ ଅହେତୁକ ଭାବଧାରାରେ ପରିବର୍ତ୍ତନର ସୂତ୍ରପାତ ହେଲା । ସମାଜର କିଛି ସଂସ୍କାରବାଦୀ, ମାନବବାଦୀ ବ୍ୟକ୍ତି ଚିନ୍ତା ଚେତନାରେ ପରିବର୍ତ୍ତନର ସୂତ୍ରପାତ କଲେ । ଧର୍ମର ପରିସର ଭିତରେ ଯଦି ସଂସ୍କାରବାଦୀ ଆନ୍ଦୋଳନମାନ ସୃଷ୍ଟି ହୋଇନଥାନ୍ତା, ସମ୍ଭବତଃ ଧର୍ମମାନ ସମାଜରୁ ଧୀରେ ଧୀରେ ଲୋପ ପାଇଥାନ୍ତେ । ତେବେ ସଂସ୍କାରବାଦୀ ଆନ୍ଦୋଳନମାନ ଧାର୍ମିକ ଚେତନାରେ ଗୁଣାତ୍ମକ ପରିବର୍ତ୍ତନର ସୂତ୍ରପାତ କରାଇ ଧର୍ମକୁ ନୈତିକ, ମାନବିକ ଓ ଆଧ୍ୟାତ୍ମିକ ଭିତ୍ତି ଦେବାକୁ ପ୍ରୟାସ କଲେ । ପରିଣାମତଃ ସମୟର ବିବର୍ତ୍ତନ ସହ ଚିନ୍ତା ଚେତନାରେ ଓ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର କିଛି ଧାରା ସୃଷ୍ଟି ହେଲା ।

ହିନ୍ଦୁସମାଜର ବର୍ଣ୍ଣବ୍ୟବସ୍ଥା ଓ ତହିଁରୁ ଉଦ୍ଭବ ଜାତିପ୍ରଥା ତଥା ପ୍ରତିମାପୂଜା ନେଇ ସଂସ୍କାରବାଦୀ ଆନ୍ଦୋଳନମାନ ନୂଆ ଆଲୋଡନ ଆଣିଲା । ହିନ୍ଦୁଧର୍ମର ମହାନ୍ ସନ୍ଥ ସ୍ୱାମୀ ଦୟାନନ୍ଦ ସରସ୍ୱତୀ (୧୮୨୫-୧୮୮୩) ଆର୍ଯ୍ୟସମାଜ ନାମରେ ଏକ ସଙ୍ଗଠନର ଭିତ୍ତି ପକାଇ ପ୍ରତିମାପୂଜାକୁ ଅବୈଦିକ କହି ଏକ ସାଂସ୍କୃତିକ ଆଲୋଡନ ସୃଷ୍ଟି କଲେ । ହିନ୍ଦୁଧର୍ମର ପ୍ରାମାଣିକ ଗ୍ରନ୍ଥ ବେଦ ଓ ଉପନିଷଦରେ ପ୍ରତିମାପୂଜାର କୌଣସି ଭାବନା ବ୍ୟକ୍ତ ହୋଇନଥିବା ସେ ଦର୍ଶାଇଲେ । ସ୍ୱାମୀ ଦୟାନନ୍ଦ ଥିଲେ ଏକେଶ୍ୱରବାଦୀ, ବୈଦିକ ବିଦ୍ୱାନ ଓ ସମାଜ ସଂସ୍କାରକ । ହିନ୍ଦୁଧର୍ମର ଏହି ସଂସ୍କାରକଙ୍କ ବିଚାରଧାରାରେ ଅନୁପ୍ରାଣିତ ହୋଇ ବହୁ ବ୍ୟକ୍ତି ଆର୍ଯ୍ୟସମାଜରେ ସଂପୃକ୍ତ ହେବାରୁ ଏହା ହିନ୍ଦୁଧର୍ମରେ ଓ ସାମାଜିକ ପରିବେଶରେ କେତେକ ସଂସ୍କାରର ସୂତ୍ରପାତ କରିଥିଲା । ସେହିପରି ପ୍ରାର୍ଥନା ସମାଜ, ବ୍ରାହ୍ମସମାଜ ପରି କେତେକ ସଙ୍ଗଠନମାନ ହିନ୍ଦୁଧର୍ମରେ ସଂସ୍କାରର ବାର୍ତ୍ତାକୁ ଆଗକୁ ନେଇଥିଲେ । ବିଶେଷକରି ରାଜା ରାମମୋହନ ରାୟ (୧୭୭୨-୧୮୩୩) ସମାଜରୁ ଅନେକ କଳଙ୍କିତ ପ୍ରଥା ଦୂର କରିବାରେ ପଥପ୍ରଦର୍ଶକ ଥିଲେ । ସତୀଦାହ ପ୍ରଥା ବନ୍ଦ କରିବାରେ ସେ ଏକ ପ୍ରମୁଖ ଭୂମିକା ନେଇଥିଲେ । ଏହା ସହିତ ପ୍ରତିମାପୂଜା, ବହୁ ଦେବଦେବୀ ପୂଜା ଓ ନାନା ଅର୍ଥହୀନ କର୍ମକାଣ୍ଡକୁ ଦୂର କରିବା ପାଇଁ ସେ ପ୍ରୟାସ କରିଥିଲେ । ଓଡିଶା ଭୂଇଁରେ ପ୍ରଚାରିତ ମହିମା ଧର୍ମ ବି ପ୍ରତିମା ପୂଜାକୁ ବିରୋଧ କରିବା ସୁବିଦିତ ଅଟେ । ଯେଉଁମାନେ ପ୍ରତିମାପୂଜାକୁ ବିରୋଧ କରିଛନ୍ତି ସେମାନେ କେହି ନିରୀଶ୍ୱରବାଦୀ, ସଂଶୟବାଦୀ ବା ହେତୁବାଦୀ ନଥିଲେ, ବରଂ ଗଭୀର ଈଶ୍ୱରବିଶ୍ୱାସୀ ଥିଲେ । ତେବେ ପୌତ୍ତଳିକତା ଯେ ଏକ ଅବୈଦିକ, ଅଧାର୍ମିକ ଓ ଅନୈଶ୍ୱରୀୟ ଭାବନା ଏହି ବିଚାରବୋଧରୁ ସେମାନେ ଏହାକୁ ବିରୋଧ କରୁଥିଲେ ।

ପ୍ରତିମାପୂଜାର ଏକ ସମ୍ଭାବ୍ୟ ପ୍ରତିପାଦ୍ୟ ଭାବନା ହେଉଛି ବହୁ ଈଶ୍ୱରବାଦ । ଈଶ୍ୱର ଭାବନାର କ୍ରମବିକାଶ ସଂପର୍କରେ ବିଶ୍ଳେଷଣ କରିଥିବା ସମାଜବିଜ୍ଞାନୀମାନେ ମତପୋଷଣ କରନ୍ତି ଯେ ସଭ୍ୟତାର ଆରମ୍ଭରେ ବହୁ ଈଶ୍ୱରବାଦର ଭାବନା ସବୁ ସମାଜରେ ରହିଥିଲା । ସଭ୍ୟତାର ପହିଲି ପର୍ବରେ ପ୍ରକୃତିର ବିଶାଳତା ଓ ରହସ୍ୟମୟତା ମଣିଷ ବୋଧିରେ ଅବୋଧଗମ୍ୟ ଥିଲା । ଚିନ୍ତା ଚେତନାର ସାମାନ୍ୟ ବିକାଶ ସହ ସମାଜରେ ଭାବନା ସୃଷ୍ଟି ହେଲା ଯେ, ଏହି ବିଶାଳ ପ୍ରକୃତିର ବିଭିନ୍ନ କ୍ଷେତ୍ର ନାନା ଐଶ୍ୱରୀୟ ଶକ୍ତିଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ ହେଉଛି । ସେତେବେଳେ ପ୍ରାକୃତିକ ବସ୍ତୁ ଯଥା ସୂର୍ଯ୍ୟ, ଚନ୍ଦ୍ର, ଜଳ, ଅଗ୍ନି, ବାୟୁ, ସମୁଦ୍ର ଏସବୁ ବି ମଣିଷର ବୋଧିରେ ଦେବତାର ସ୍ଥାନ ନେଇଥିଲେ । ସେତେବେଳର ବିଶ୍ୱାସ ଅନୁଯାୟୀ ସେଗୁଡିକ ଏକ ଏକ ଦୈବୀ ସତ୍ତା ବା ଦୈବୀଶକ୍ତି ଦ୍ୱାରା ନିୟନ୍ତ୍ରିତ ଶକ୍ତି । ପୂଜା ଆରାଧନାଦ୍ୱାରା ସେମାନଙ୍କୁ ସନ୍ତୁଷ୍ଟ କରାଯାଇ ପାରିବ, ଏହା ନକଲେ ସେମାନଙ୍କ କ୍ରୋଧର ଶିକାର ହେବାକୁ ହେବ । ସେମାନଙ୍କୁ ତୁଷ୍ଟି କରିବା ପାଇଁ କେତେକେତେ କର୍ମକାଣ୍ଡ, ଆରାଧନା, ପ୍ରାର୍ଥନା, ଭକ୍ତିଭାବର ଉଦ୍ଭବ ହୋଇଥିଲା ।

ପ୍ରାକୃତିକ ଶକ୍ତି ବ୍ୟତୀତ ଗୋଷ୍ଠୀ ଜୀବନରେ କୃଷି, କାରଗରୀ କୌଶଳ, ଧନ, ବିଦ୍ୟା, ସୁଖ ଇତ୍ୟାଦିର ଗୁରୁତ୍ୱ ଥିବାରୁ ସେଥିପାଇଁ ମଧ୍ୟ ବିଭିନ୍ନ ଦେବାଦେବୀଙ୍କୁ ପରିକଳ୍ପନା କରାଯାଇଛି । ଜୀବନର ପ୍ରତ୍ୟେକ କ୍ଷେତ୍ର ନିର୍ଦ୍ଦିଷ୍ଟ ଦେବ ବା ଦେବୀଙ୍କ ଦ୍ୱାରା ନିୟନ୍ତ୍ରିତ । କିଏ ଜ୍ଞାନର ଦେବତା, କିଏ ଧନର ଦେବତା, ଅନ୍ୟ କେହି କାରିଗରୀ କୌଶଳର ଦେବତା, କିଏ ବିବାହର ଦେବତା, କିଏ ମୃତ୍ୟୁର ଦେବତା ଇତ୍ୟାଦି ଇତ୍ୟାଦି । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପ୍ରାପ୍ତି ପାଇଁ ନିର୍ଦ୍ଦିଷ୍ଟ ଦେବତାଙ୍କୁ ହିଁ ଆରାଧନା କରିବାକୁ ହେବ । ଆମେ ଯାହା ଚାହୁଁ, ସେହି ଲକ୍ଷ୍ୟ ପୂରଣ ପାଇଁ ସଂପୃକ୍ତ ଦେବ ବା ଦେବୀଙ୍କୁ ଆରାଧନା କରିବା ଯେ ବିଧି ଏହି ଭାବନା ସମାଜରେ ସୃଷ୍ଟି ହୋଇଛି ।

ବହୁ ଈଶ୍ୱରବାଦ ନାନା ଦେବାଦେବୀ ପୂଜା ପୃଷ୍ଠଭୂମିରେ ସାମାଜିକ ବିକାଶଧାରାର କିଛି ଚିତ୍ର ମିଳିଥାଏ । ସାମାଜିକ ବିବର୍ତ୍ତନ କ୍ଷେତ୍ରରେ ଯେତେବେଳେ ନାରୀକେନ୍ଦ୍ରିକ ପାରିବାରିକ ଜୀବନର ଅଭ୍ୟୁଦୟ ହୋଇଛି ସେତେବେଳେ ଶକ୍ତିପୂଜାର ଭାବନା ସୃଷ୍ଟି ହୋଇଛି । ସାମାଜିକ ବିକାଶ ପ୍ରକ୍ରିୟାରେ ପୁରୁଷ ପ୍ରାଧାନ୍ୟ ସମାଜର ବ୍ୟବସ୍ଥା ଆସିବାପରେ ଈଶ୍ୱରମାନଙ୍କୁ ପୁରୁଷ ଭାବରେ ଚିତ୍ରଣ କରାଯାଇଛି । ମଣିଷ ନିଜର କଳ୍ପିତ ଈଶ୍ୱର ବା ଦେବାଦେବୀଙ୍କୁ ସର୍ବଜ୍ଞ, ଶକ୍ତିମାନ, ବିଘ୍ନନାଶକ, ରକ୍ଷାକର୍ତ୍ତା ଇତ୍ୟାଦି ଗୁଣରେ ଭୂଷିତ କରିଛି ।

ସାମାଜିକ ପରିବର୍ତ୍ତନଧାରାରେ ସହରମାନଙ୍କର ଅଭ୍ୟୁଦୟ ଫଳରେ ସାମୂହିକ ପୂଜାପାର୍ବଣମାନ କରାଯାଉଛି। ଏକ ଶତାବ୍ଦୀ ଭିତରେ ଛୋଟ ବଡ ସହରମାନଙ୍କର ବିକାଶ ଓ ଜାତି ବ୍ୟବସ୍ଥାର କିଛି ନମନିୟତା ଯୋଗୁ ସମାଜର ବିଭିନ୍ନ ଶ୍ରେଣୀର ଲୋକମାନେ ସମ୍ମିଳିତ ଭାବରେ ପୂଜା, ପର୍ବ ବା ଉତ୍ସବ ପାଳନ କରିବାକୁ ସମର୍ଥ ହେଉଛନ୍ତି। ଏହି ସାମୂହିକ ପୂଜା ପାର୍ବଣ ପାଳନ କରିବାରେ କେତେକ କାରଣ ମଧ୍ୟ ଦିଆଯାଇପାରେ। ଏହି ପୂଜା ଆରାଧନା ଲୋକମାନଙ୍କ ମଧ୍ୟରେ କିଛି ଆଧାତ୍ମିକ ବା ନୈତିକ ଜୀବନଦୃଷ୍ଟି ସୃଷ୍ଟି କରିପାରିବ। ଏହା ଛଡା ଜନଗଣଙ୍କ ଭିତରେ ଏକ ସାଂସ୍କୃତିକ ସଂହତି ଆଣିବାରେ ସମ୍ମିଳିତ ପୂଜା ବା ଉତ୍ସବର ମହତ୍ତ୍ୱ ରହିଛି। ସେହିପରି କର୍ମକ୍ଳାନ୍ତ ଜୀବନର ବନ୍ଧନ ଭିତରେ ସାମୂହିକ ପର୍ବପାଳନ ଓ ପୂଜା ଆରାଧନା ଏକ ଚିତ୍ତବିନୋଦନର ପରିବେଶ ସୃଷ୍ଟିକରିବ। କର୍ମତତ୍ପର ଜୀବନଧାରାରୁ ଏହି ସାମୟିକ ବିରତି ଜୀବନକୁ ଉପଭୋଗ୍ୟ କରାଇବ। ପୂଜାପାର୍ବଣ ସହ ଏହିପରି ସାଂସ୍କୃତିକ, ନୈତିକ ଓ ବିଭିନ୍ନ ଆନନ୍ଦପ୍ରଦ ଅନୁଭବକୁ ସଂଶ୍ଳିଷ୍ଟ କରାଯିବା ଦେଖାଯାଏ।

ତେବେ ପୂଜାପାର୍ବଣର ବହୁ ନକାରାତ୍ମକ ଦିଗ ବି ରହିଛି। ବିଶେଷକରି ପୂଜାପାର୍ବଣକୁ ନେଇ ବିଭିନ୍ନ ସମାଜିକ ଗୋଷ୍ଠୀ ଭିତରେ ବିଦ୍ୱେଷ ଓ ତିକ୍ତତା ସୃଷ୍ଟି ହେବାର ବହୁ ଦୃଷ୍ଟାନ୍ତ ରହିଛି। ତେବେ ଏହାର ସବୁଠାରୁ ଅନିଷ୍ଟକର ଦିଗ ହେଉଛି ପରିବେଶ ପ୍ରଦୂଷଣ। ସେହିପରି ଚାନ୍ଦା ଆଦାୟ ଜନିତ କିଛି ଜୁଲମ, ନାନା ଅସାମାଜିକ କାର୍ଯ୍ୟ ଓ ବିଭିନ୍ନ ଅପସଂସ୍କୃତି ମଧ୍ୟ ଏହା ସହିତ ସଂଶ୍ଳିଷ୍ଟ ହେବା ଦେଖାଯାଏ। ତେବେ ବାସ୍ତବତା ହେଉଛି ସମସ୍ତ ଦିଅଁ, ଦେବତା କେବଳ ମଣିଷ ମନର କଳ୍ପନା। କଳ୍ପିତ ଦିଅଁ ଦେବତା ସାମାଜିକ ବିକାଶଧାରାକୁ ଉନ୍ନତ କରିବେ ନାହିଁ ବା ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆଣିବେ ନାହିଁ।

(ପ୍ରଗତିବାଦୀ, ୨୬.୧୦.୨୦୧୬)

# ଜାଲିକାଟ୍ଟୁ ଓ ଜନବିଶ୍ୱାସ

ଭାରତୀୟ ସଂସ୍କୃତିର ମହତ୍ତ୍ୱ ହେଉଛି ଏହାର ବିବିଧତା । ବହୁ ଭାଷା, ନାନା ଲୋକବିଶ୍ୱାସ, ନାନାବିଧ ପରମ୍ପରା, ଅସଂଖ୍ୟ ପର୍ବପର୍ବାଣି ଆମ ଜାତୀୟ ଜୀବନରେ ଦେଖିବାକୁ ମିଳେ । ସେହିପରି ଖାଦ୍ୟ, ପୋଷାକ, ସାମାଜିକ ଚଳଣି ଇତ୍ୟାଦି କ୍ଷେତ୍ରରେ ବି ଭିନ୍ନତା ଦୃଷ୍ଟିଗୋଚର ହୁଏ । ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ପ୍ରକାରର ଚଳଣି ଓ ପରମ୍ପରା ମଧ୍ୟ ପ୍ରଚଳିତ । ବିବିଧତା ଭିତରେ ଏକତ୍ୱବୋଧ ଆମ ଦେଶର ଗୌରବ । ତାମିଲନାଡୁର ଏକ ଲୋକପର୍ବ ଗତ ଏକ ମାସ ଧରି ଗଣମାଧ୍ୟମରେ ବହୁଳ ଚର୍ଚ୍ଚା ହେବା ଜଣାଯାଏ । ଦକ୍ଷିଣ ଭାରତରେ ପୋଙ୍ଗଲ ଏକ କୃଷିଭିତ୍ତିକ ବଡ଼ ପର୍ବ । ପ୍ରାୟତଃ ଜାନୁଆରୀ ମଝିରେ ଏହି ପର୍ବ ପାଳିତ ହୁଏ ଓ ପୋଙ୍ଗଲ ପରଠାରୁ ତାମିଲନାଡୁରେ ନୂଆ ବର୍ଷ ଆରମ୍ଭ ହୁଏ । ଗୋଟିଏ ବର୍ଷର କୃଷିର ଅମଳ ଶେଷରେ ପୋଙ୍ଗଲର ଠିକ୍ ପୂର୍ବରୁ ଓ ପୋଙ୍ଗଲ ସମୟରେ ଜାଲିକାଟ୍ଟୁ ନାମରେ ପରିଚିତ ଏକ ଷଣ୍ଢ ଯାତ୍ରା ଗାଁରେ ଗାଁରେ ଅନୁଷ୍ଠିତ ହୁଏ । ଷଣ୍ଢମାନଙ୍କୁ ବଶୀଭୂତ କରିବାକୁ ପ୍ରୟାସ କରାଯାଏ ଓ ଏହି ପ୍ରକ୍ରିୟାରେ ଉଭୟ ଷଣ୍ଢ ଓ ମଣିଷ ଏଥିରେ ଆଘାତପ୍ରାପ୍ତ ହୁଅନ୍ତି । ତେବେ ଲୋକମାନେ ଷଣ୍ଢକୁ ବଶୀଭୂତ ବା ନିୟନ୍ତ୍ରଣ କରିବାର ଖେଳକୁ ବିଭିନ୍ନ ସ୍ଥାନରେ ଉପଭୋଗ କରନ୍ତି । ତାମିଲନାଡୁର ଗାଁଠାରୁ ସହର ପର୍ଯ୍ୟନ୍ତ ଏହି ପର୍ବ ପାଳନ ପରିପ୍ରେକ୍ଷୀରେ ଷଣ୍ଢ ଲଢେଇକୁ ଲୋକମାନେ ପରମ୍ପରା ଭାବେ ପାଳନ କରିଆସୁଛନ୍ତି ।

ଷଣ୍ଢ ଲଢେଇରେ ଯେହେତୁ କ୍ରୂରତା ଅବଲମ୍ବନ କରାଯାଉଛି ଓ ମଣିଷ ଜୀବନ ପ୍ରତି ଭୟର ସମ୍ଭାବନା ରହୁଛି ସେଥିପାଇଁ ଏହାକୁ ବନ୍ଦକରିବାକୁ ମାଡ୍ରାସ୍ ହାଇକୋର୍ଟରେ ପଶୁ ଅଧିକାର ସପକ୍ଷରେ କେସ୍ ଦାୟର କରାଗଲା । ମାଡ୍ରାସ ହାଇକୋର୍ଟ ଘଟଣାର ଗୁରୁତ୍ୱକୁ ଅନୁଭବ କରି ଜାଲିକାଟ୍ଟୁକୁ ୨୦୦୬ ଠାରୁ ବାରଣ କରିଥିଲେ । ଏହାପରେ ତାମିଲନାଡୁ ସରକାର ଜାଲିକାଟ୍ଟୁ ରେଗୁଲେସନ୍ ଆକ୍ଟ କରି ଏହାକୁ ଏକ "ବଶୀଭୂତ ଖେଳ" ଭାବରେ ସ୍ୱୀକୃତି ଦେଲେ । ଆମ ଦେଶରେ ପଶୁ ସୁରକ୍ଷା ବା ଆନିମଲ ୱେଲଫେୟାର ବୋର୍ଡ ରହିଛି ଓ ସେଥିରେ କେତେକ ନିୟମ ରହିଛି । ସେଥିରେ କେତେକ ପଶୁମାନଙ୍କୁ ନେଇ ସେମାନଙ୍କ ପ୍ରତି ହିଂସାଜନିତ ଖେଳ ପ୍ରଦର୍ଶନ କରିବାକୁ ବାରଣ କରାଯାଇଛି । ସେଥିରେ

ଷଣ୍ଢମାନଙ୍କୁ ରଖାଯାଇଛି । ତାମିଲନାଡୁ ସରକାର ଜାଲିକାଟୁକୁ ଏକ ବଶୀଭୂତ ଖେଳ ଭାବରେ ସ୍ୱୀକୃତି ଦେବା ପରେ "ଆନିମଲ ୱେଲଫେୟାର ବୋର୍ଡ" ଓ "ପିପୁଲ ଫର ଦି ଏଥିକାଲ ଟ୍ରିଟମେଣ୍ଟ ଅଫ୍ ଆନିମଲସ" ସଙ୍ଗଠନ ସୁପ୍ରିମ କୋର୍ଟରେ ରିଟ ପିଟିସନ ଦେଲେ । ସେମାନେ ଉଲ୍ଲେଖକଲେ ଯେ ବଶୀଭୂତ ଖେଳରେ ଷଣ୍ଢମାନଙ୍କୁ ବିନିଯୋଗ କରାଯିବା ଏକ ପ୍ରକାରର ହିଂସାତ୍ମକ ଖେଳ । ଷଣ୍ଢମାନଙ୍କୁ ନେଇ ହିଂସାତ୍ମକ ଖେଳ କରାଇବା ପଶୁ ସୁରକ୍ଷା ଆଇନର ବିରୁଦ୍ଧାଚରଣ କରୁଛି । ସୁପ୍ରିମ୍ କୋର୍ଟ ଘଟଣାର ବିଚାର କରି ତାମିଲନାଡୁ ସରକାର ଜାଲିକାଟୁକୁ ଯେଉଁ ସାଂସ୍କୃତିକ ଖେଳ କହି ସ୍ୱୀକୃତି ଦେଇଥିଲେ ତାହା ସଂସଦଦ୍ୱାରା ପାରିତ ହୋଇଥିବା ଆଇନ ପ୍ରିଭେନସନ୍ ଅଫ୍ କ୍ରୁଏଲିଟି ଟୁ ଆନିମଲ ଆକ୍ଟର ବିରୁଦ୍ଧାଚରଣ କହି ତାମିଲନାଡୁ ସରକାରଙ୍କ ଆଇନକୁ ଅସିଦ୍ଧ ଘୋଷଣା କଲେ । ଏହାପରେ ତାମିଲନାଡୁ ସରକାର ଏକ ରିଭ୍ୟୁ ପିଟିସନ ଦାୟରକରି ଏହା ଉପରେ ପୁନର୍ବିଚାର ପାଇଁ କୋର୍ଟରେ ଦ୍ୱାରସ୍ଥ ହେଲେ । ସୁପ୍ରିମକୋର୍ଟ ଜାଲିକାଟୁ ପରମ୍ପରାକୁ ସ୍ୱୀକୃତି ଦେବାକୁ ସର୍ତ୍ତ ରଖିଲେ ଯେ ସେହି ଖେଳରୁ ଷଣ୍ଢମାନଙ୍କୁ ବାଦ୍ ଦେଇ ସେହି ପରମ୍ପରାକୁ ପାଳନ କରାଯିବାରେ ଅସୁବିଧା ନାହିଁ । ପରିଣାମତଃ ୨୦୧୫ ଓ ୨୦୧୬ ଦୁଇବର୍ଷ ଧରି ଜାଲିକାଟୁ ପରମ୍ପରା ପାଳିତ ହୋଇନଥିଲା ।

ଚଳିତବର୍ଷ ୨୦୧୭ରେ ପୁନଶ୍ଚ ଜାଲିକାଟୁ ପ୍ରସଙ୍ଗ ଆସିଲା । ଏହା ଯେହେତୁ ଏକ ସାଂସ୍କୃତିକ ପରମ୍ପରା ଭାବେ ସମଗ୍ର ତାମିଲନାଡୁରେ ପାଳିତ ହେଉଥିଲା ଯେଉଁଥିରେ ମୁଖ୍ୟତଃ ଯୁବସମାଜ ଭାଗ ନେଉଥିଲେ ତାମିଲନାଡୁରେ ଏହା ଏକ ତୀବ୍ର ଆନ୍ଦୋଳନର ରୂପ ନେଲା । ଏହା ସହିତ ଅନ୍ୟ କେତେକ ପ୍ରସଙ୍ଗ ଯଥା କାବେରୀ ଜଳବିବାଦ, ବୈଷୟିକ ଶିକ୍ଷା କ୍ଷେତ୍ରରେ ପୂର୍ବରୁ ରହିଥିବା ନାମଲେଖା ନିୟମରେ ପରିବର୍ତ୍ତନ ଇତ୍ୟାଦିକୁ ମିଶାଇ ଦିଆଗଲା ଓ ଲୋକମାନଙ୍କ ଭିତରେ ଏକ ଜାଗରଣ ସୃଷ୍ଟି କରାଗଲା । ତାମିଲ ଐତିହ୍ୟ, ଅସ୍ମିତା ଓ ସାଂସ୍କୃତିକ ପରମ୍ପରା ଉପରେ ଏହା ଆକ୍ରମଣ କହି ଲୋକମାନଙ୍କ ଭିତରେ ଏକ ଆବେଗ ଅଣାଗଲା । ସଂପ୍ରତି ମୋବାଇଲ ଫୋନ୍, ୱାଟସଆପ୍, ଫେସବୁକ୍, ଟ୍ୱିଟର, ଇମେଲ ଇତ୍ୟାଦି ପ୍ରାଯୁକ୍ତିକ ଜ୍ଞାନ ସାହାଯ୍ୟରେ ତାମିଲ ସଂସ୍କୃତିର ସୁରକ୍ଷା ପାଇଁ ମତ ପ୍ରକାଶ ପାଇଲା । ଫଳରେ ଯୁବକ, ଛାତ୍ର, ମହିଳାମାନେ ମଧ୍ୟ ଆନ୍ଦୋଳନକୁ ଓହ୍ଲାଇଲେ ଓ ବିଭିନ୍ନ ସ୍ଥାନରେ ପ୍ରତିବାଦ ହେଲା । ଆନ୍ଦୋଳନ ପ୍ରଥମ ପର୍ଯ୍ୟାୟରେ ବେଶ୍ ଶାନ୍ତିପୂର୍ଣ୍ଣ ଥିଲା । କିନ୍ତୁ ସରକାର ଆନ୍ଦୋଳନ ନ ବ୍ୟାପିବା ପାଇଁ ଆଧୁନିକ ପ୍ରଯୁକ୍ତି କ୍ଷେତ୍ରରେ କେତେକ କଟକଣା କଲେ । ଏହା ଅଧିକ ଉତ୍ତେଜନାର ପରିବେଶ ସୃଷ୍ଟି କଲା ଓ ଯୁବକମାନେ ଏଥିରେ ଭାବପ୍ରବଣ ହୋଇ ସାମିଲ ହେଲେ ।

ଏହି ସ୍ଥିତିରେ ତାମିଲନାଡୁ ସରକାର ଏକ ଅଧ୍ୟାଦେଶ ପ୍ରବର୍ତ୍ତନ କଲେ ଓ ପରେ ବିଧାନସଭାରେ ଏକ ସର୍ବସମ୍ମତ ବିଲ୍ ପାରିତ କଲେ। ଭାରତୀୟ ସମ୍ବିଧାନ ଧାରା ୨୯(୧)ରେ କୁହାଯାଇଛି ଯେ ଭାରତବର୍ଷରେ ରହୁଥିବା କୌଣସି ଅଞ୍ଚଳର ଜନଗୋଷ୍ଠୀର ଯଦି ସ୍ୱତନ୍ତ୍ର ଭାଷା, ଲିପି ଓ ନିଜସ୍ୱ ସଂସ୍କୃତି ଥାଏ ତେବେ ତାହାକୁ ସୁରକ୍ଷିତ ରଖିବାର ଅଧିକାର ସେହି ଜନଗୋଷ୍ଠୀ ବା ଅଞ୍ଚଳର ରହିଛି। ଏହି ଆଧାରରେ ତାମିଲନାଡୁ ନିଜ ଅଞ୍ଚଳର ଏକ ସାଂସ୍କୃତିକ ପରମ୍ପରାର ସୁରକ୍ଷା ପାଇଁ ସରକାର ଆଇନଗତ ପଦକ୍ଷେପ ନେଲେ ଓ କେନ୍ଦ୍ର ସରକାର ଜାଲିକାଟୁ ଉପରେ ଯେଉଁ ସର୍ତ୍ତ ରଖିଥିଲେ ତାହାକୁ ପ୍ରତ୍ୟାହାର କରିନେଲେ। ଏହା ଫଳରେ ଜାଲିକାଟୁ ପୁନଶ୍ଚ ଏକ "ଲୋକ-ସଂସ୍କୃତି" ଭାବରେ ପାଳିତ ହେବାରେ ସରକାରୀ ପ୍ରତିବନ୍ଧକକୁ ଦୂର କରାଗଲା। ତାମିଲନାଡୁର ଏକ ସ୍ୱତନ୍ତ୍ର ପରମ୍ପରା ଭାବେ ଏହି ଗ୍ରାମୀଣ କୃଷିପର୍ବ ଶହ ଶହ ବର୍ଷ ଧରି ପାଳିତ ହୋଇ ଏହି ସାଂସ୍କୃତିକ ଅସ୍ମିତାରେ ରୂପାନ୍ତରିତ ହୋଇଛି।

ସମାଜରେ ପ୍ରଚଳିତ ରହିଥିବା କେତେକ ପରମ୍ପରା ପ୍ରତି ଏକ ଅହେତୁକ ଶ୍ରଦ୍ଧା ପ୍ରକାଶ ପାଇବା ଏକ ସାଧାରଣ ମନସ୍ତତ୍ତ୍ୱ। ବିଶେଷକରି ଏକ ରକ୍ଷଣଶୀଳ ସମାଜରେ ପ୍ରଚଳିତ ପରମ୍ପରାକୁ ଐତିହ୍ୟ, ଅସ୍ମିତା ଓ ଆବେଗର ପ୍ରଶ୍ନ ଭାବେ ସାଧାରଣ ଲୋକମାନେ ବିଶ୍ୱାସ କରନ୍ତି। ବହୁ ଅତୀତରୁ ଚଳି ଆସୁଥିବା ପରମ୍ପରା ବା ଲୋକବିଶ୍ୱାସ କେତେଦୂର ଯୁକ୍ତିସଙ୍ଗତ, ନୀତିସଙ୍ଗତ ଓ ସାମ୍ପ୍ରତିକ ଯୁଗଧର୍ମ ସହ ସମତାଳ ତାହାରି ଆଧାରରେ ଯେକୌଣସି ବିଶ୍ୱାସ ବା ପରମ୍ପରାକୁ ମୂଲ୍ୟାୟନ କରାଯିବା ଦରକାର। ଅତୀତରେ ଲୋକମାନଙ୍କର ଜ୍ଞାନ ଓ ବିଚାରବୋଧ ଯେଉଁ ସ୍ତରରେ ରହିଥିଲା ସେହି ସ୍ଥିତିରେ କେତେକ ପ୍ରଥା ସେ ଯୁଗରେ ପ୍ରଚଳିତ ହୋଇଥିଲା। ତେବେ ମାନବ ସମାଜ ଏକ ପରିବର୍ତ୍ତନ ଧାରାରେ ସର୍ବଦା ଅଗ୍ରଗାମୀ ହେଉଛି। ନୂଆ ନୂଆ ଜ୍ଞାନ ଓ ପ୍ରଯୁକ୍ତି ଜୀବନଧାରାରେ ସର୍ବଦା ପରିବର୍ତ୍ତନ ସଂଘଟିତ କରିବାରେ ପରିବେଶ ସୃଷ୍ଟି କରିପାରୁଛି। ଅତୀତରେ ଲୋକମାନେ କୁଡିଆ ବା ଚାଳ ଘରେ ରହୁଥିଲେ, ସଂପ୍ରତି ଆମେ ବିଶାଳକାୟ ଆପାର୍ଟମେଣ୍ଟରେ ରହୁଛେ। ଘର ଭିତରେ ପାଇଖାନା ଦୁଇ ତିନି ଶତାବ୍ଦୀ ତଳେ ଚିନ୍ତା ସ୍ତରକୁ ବି ଆସିନଥିଲା, ସଂପ୍ରତି ଆମେ କମୋଡ ବ୍ୟବହାର କରୁଛେ। ଶହେ ବର୍ଷ ତଳେ ଆମ ପୂର୍ବପୁରୁଷମାନେ ଦୀପ ଓ ଡିବିର ଆଲୁଅରେ ରାତ୍ରିଯାପନ କରୁଥିଲେ, ଆମେ ଏବେ ଚମତ୍କାର ବିଜୁଳି ଆଲୁଅ, ଶୀତତାପ ନିୟନ୍ତ୍ରିତ ଘରେ ରହୁଛେ। ଆମର ଖାଦ୍ୟ, ପୋଷାକ, ଗମନାଗମନ ସବୁଥିରେ ମାତ୍ର ଏହି ଦୁଇ ତିନି ପିଢି ଭିତରେ କେତେ କେତେ ପରିବର୍ତ୍ତନ

ଆସିଗଲାଣି। ମୋବାଇଲ ଫୋନ୍, ଟେଲିଭିଜନ, ଇଣ୍ଟରନେଟ ଆମକୁ କେଉଁଠି ପହଂଚାଇଲାଣି, ସମଗ୍ର ମାନବ ସମାଜ ବାହ୍ୟିକ ସ୍ତରରେ ସଂଯୋଜିତ ହୋଇ ପାରିଲାଣି। ଏହି ପରିବର୍ତ୍ତନ ଏକ ସ୍ୱାଭାବିକ ପ୍ରକ୍ରିୟା ଭାବରେ ସାମାଜିକ ଜୀବନଧାରାକୁ ବଦଳାଇ ଚାଲିବା ଏକ ନିଛକ ବାସ୍ତବତା, ଯାହାକୁ ସ୍ୱୀକାର କରିବାକୁ ହେବ। ଯେତେବେଳେ ମଣିଷ ପରିବର୍ତ୍ତନ-ବିରୋଧୀ ହୁଏ ଓ ସମାଜର ପ୍ରଚଳିତ ଭାବଧାରା ଅହେତୁକ ଓ ଅବୈଜ୍ଞାନିକ ହୋଇଥିଲେ ମଧ ତାକୁ ଛାଡିବାକୁ ପ୍ରସ୍ତୁତ ହୁଏ ନାହିଁ ସେତେବେଳେ ତାହାର ମାନସିକ ବିକାଶ ବାଧାପ୍ରାପ୍ତ ହୁଏ। ଯେକୌଣସି ପରମ୍ପରାର ସାମ୍ପ୍ରତିକ ଉପଯୋଗିତା କ'ଣ ରହିଛି ଓ ଆଧୁନିକ ଜ୍ଞାନବିଜ୍ଞାନ, ନୀତିବୋଧ ସହ ତାହାର ସମ୍ବନ୍ଧ କ'ଣ ତାହାରି ଆଧାରରେ ତାର ମୂଲ୍ୟାୟନ କରାଯିବା ଆବଶ୍ୟକ।

ଷଣ୍ଢ ସହ ଖେଳ ବା ତାକୁ ବଶୀଭୂତ କରିବାର ପ୍ରକ୍ରିୟାକୁ ବିରୋଧ କରୁଥିବା ଲୋକମାନେ ଦୁଇଟି କାରଣରୁ ଏହାକୁ ବିରୋଧ କରୁଥିବା ମନେହୁଏ। ବିଶେଷକରି ପଶୁ ପ୍ରତି ଅହେତୁକ ହିଂସା ଓ ଷଣ୍ଢକୁ ବଶୀଭୂତ କରିବା ପ୍ରକ୍ରିୟାରେ ଜୀବନ ପ୍ରତି ରହିଥିବା ଭୟ କାରଣରୁ ଏହି ପ୍ରାଚୀନ ପରମ୍ପରାକୁ ସେମାନେ ବିରୋଧ କରୁଥିବା ବେଶ୍ ଯୁକ୍ତିସଙ୍ଗତ ମନେହୁଏ। ତେବେ ଅନେକ ସମୟରେ ଧାର୍ମିକ ବା ରାଜନୈତିକ ଭାବାବେଗ ସୃଷ୍ଟି କରାଯାଇ ସଂସ୍କାରବାଦୀ ଆଭିମୁଖ୍ୟକୁ ପ୍ରତିହତ କରାଯାଏ। ଯେଉଁଠି ବିଶ୍ୱାସ ଓ ଆବେଗ ପ୍ରାଧାନ୍ୟ ନିଏ ଓ ବିଚାରଶୀଳ ଦୃଷ୍ଟିକୁ ନ୍ୟୂନ କରାଯାଏ ସେଠାରେ ସମାଜ ପ୍ରଗତିଶୀଳ ନ ହୋଇ କ୍ଷୟଶୀଳ ହୁଏ। ସମାଜରେ ସଂସ୍କାର ଓ ମହତ୍ତର ଜୀବନବୋଧ ବିଷୟରେ ମୁଷ୍ଟିମେୟ ଲୋକମାନେ ଚିନ୍ତା ପ୍ରକଟ କରନ୍ତି। ସମାଜର ସାଧାରଣ ଲୋକମାନେ ପିଲାଟି ବେଳୁ ଯେଉଁ ପ୍ରଥା, ବିଶ୍ୱାସ ଓ ଚଳଣି ଭିତରେ ବଞ୍ଚିଥାନ୍ତି ତାହାକୁ ହିଁ ଗୁରୁତ୍ୱ ଦିଅନ୍ତି ଓ ଏପରିକି ସେସବୁର ପାଳନ କ୍ଷେତ୍ରରେ ଭାବପ୍ରବଣତା ସୃଷ୍ଟି କରନ୍ତି। ଭାରତୀୟ ସମାଜରେ ସତୀପ୍ରଥାକୁ ଯେତେବେଳେ ରାଜା ରାମମୋହନ ରାୟ ବିରୋଧ କରିଥିଲେ, ସେତେବେଳେ ରକ୍ଷଣଶୀଳ ଲୋକମାନେ ତାଙ୍କୁ ବହୁ ବିରୋଧ କରିଥିଲେ। ଜ୍ୟୋତିରାଓ ଫୁଲେ ଯେତେବେଳେ ଝିଅମାନଙ୍କର ଓ ଶୂଦ୍ରମାନଙ୍କର ପାଠ ପଢିବା ପାଇଁ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ପ୍ରୟାସ କଲେ ସେତେବେଳେ ସେ ବହୁ ବିରୋଧର ସମ୍ମୁଖୀନ ହେବା ଆଜି ଇତିହାସ। ସେହିପରି ବିଂଶ ଶତାବ୍ଦୀରେ ବାବାସାହେବ ଆମ୍ବେଦକର ଓ ପେରିୟାର ଅସ୍ପୃଶ୍ୟତା ବିରୁଦ୍ଧରେ ପରାଧୀନ ଭାରତରେ ଯେତେବେଳେ ସ୍ୱର ଉଠାଇଥିଲେ ସେମାନେ ବି କିଛି କମ୍ ବିରୋଧର ସମ୍ମୁଖୀନ ହୋଇନାହାନ୍ତି। ଏହା କେବଳ ଭାରତବର୍ଷର ଚିତ୍ର

ନୁହଁ, ପୃଥିବୀର ବିଭିନ୍ନ ଦେଶର ସମାଜରେ ରକ୍ଷଣଶୀଳ ଓ ରୂଢ଼ିବାଦୀ ଲୋକମାନେ ସର୍ବଦା ପ୍ରଗତିଶୀଳ ପଦକ୍ଷେପକୁ ବିରୋଧ କରିବା ଏକ ଐତିହାସିକ ସତ୍ୟ। ପରମ୍ପରା, ଧାର୍ମିକ ଆବେଗ, ରକ୍ଷଣଶୀଳ ମାନସିକତା ଓ ଅନ୍ଧସଂସ୍କାର ସାମାଜିକ ବିକାଶ, ପ୍ରଗତିଶୀଳ ମୂଲ୍ୟବୋଧ ଓ ମାନବବାଦୀ ଜୀବନଦୃଷ୍ଟିର ପ୍ରତିବନ୍ଧକ ହୋଇଆସିଛି। ତେବେ ବୈଜ୍ଞାନିକ ବିଚାରବୋଧ, ମାନବବାଦୀ ଜୀବନବୋଧ ଓ ବିଚାରଶୀଳ ଦୃଷ୍ଟି ହିଁ ସଭ୍ୟତାର ମାପକାଠି। ଯେଉଁ ପରମ୍ପରା, ଲୋକବିଶ୍ୱାସ ଓ ସାମାଜିକ ଚଳଣି ଏହାର ପରିପନ୍ଥୀ ତାହା ସଭ୍ୟତାର ବିକାଶରେ ପ୍ରତିବନ୍ଧକ। ଯାହା ବହୁ ଲୋକ ବିଶ୍ୱାସ କରନ୍ତି ତାହା ଗ୍ରହଣଯୋଗ୍ୟ ନୁହେଁ, ଯାହା ବିଚାରଶୀଳ ଓ ମାନବିକ ତାହା ହିଁ ଗ୍ରହଣଯୋଗ୍ୟ। ବହୁ ଲୋକଙ୍କର ବିଶ୍ୱାସ ଯଦି ଯୁକ୍ତିବିରୋଧୀ ଓ ମାନବିକତାବିରୋଧୀ ହୋଇଥାଏ ତାହାକୁ ପରିହାର କରିବା ଆଜିର ଯୁଗଧର୍ମ ମନେହୁଏ।

(ପ୍ରଗତିଶୀଳ, ୦୧.୦୩.୨୦୧୭)

# ଫିରାର ସନ୍ଦେଶ

ଫିରା ହେଉଛି ଫେଡେରେସନ୍ ଅଫ୍ ଇଣ୍ଡିଆନ୍ ରେସନାଳିଷ୍ଟ ଆସୋସିଏନ୍ସ, ଅର୍ଥାତ୍ ଭାରତୀୟ ହେତୁବାଦୀ ମହାସଂଘ। ଏହି ସଙ୍ଗଠନଟି ବିଶିଷ୍ଟ ସଂସ୍କାରକ, ହେତୁବାଦୀ ପ୍ରବକ୍ତା ଓ ଇଣ୍ଡିଆନ ସ୍କେପ୍ଟିକ ମାସିକ ପତ୍ରିକାର ପ୍ରତିଷ୍ଠାତା ବି. ପ୍ରେମାନନ୍ଦଙ୍କ ଉଦ୍ୟମରେ ୧୯୯୭ରେ ପ୍ରତିଷ୍ଠା ହୋଇଥିଲା। ଭାରତବର୍ଷର ବିଭିନ୍ନ ରାଜ୍ୟରେ କାର୍ଯ୍ୟ କରୁଥିବା ହେତୁବାଦୀ, ମାନବବାଦୀ, ବୈଜ୍ଞାନିକ, ମାନବିକ ଅଧିକାର ସଙ୍ଗଠନମାନଙ୍କୁ ନେଇ ଏହି ମହାସଂଘ ସୃଷ୍ଟି କରାଯାଇଥିଲା। ବି. ପ୍ରେମାନନ୍ଦ(୧୯୩୦-୨୦୦୯) ଥିଲେ ସ୍ୱାଧୀନତା ସଂଗ୍ରାମୀ, ସଂସ୍କାରକ, ସୁଲେଖକ ଓ ହେତୁବାଦୀ ବୁଦ୍ଧିଜୀବୀ। ସମାଜରୁ କୁସଂସ୍କାର, ସାମାଜିକ ଭେଦଭାବ ଓ ଅପବିଶ୍ୱାସମାନଙ୍କୁ ଦୂରକରିବା ପାଇଁ ସେ ଜୀବନକୁ ଉତ୍ସର୍ଗ କରିଥିଲେ। ଫିରାର ଜାତୀୟ ସମ୍ମିଳନୀ ପ୍ରତି ଦୁଇବର୍ଷରେ ଥରେ ଅନୁଷ୍ଠିତ ହୋଇଥାଏ ଓ ଚଳିତବର୍ଷ ନିକଟରେ ଏହା କେରଳର ରାଜଧାନୀ ତ୍ରିଭାନ୍ଦ୍ରମ୍‌ଠାରେ ଅନୁଷ୍ଠିତ ହୋଇଥିଲା। ଭାରତର ବିଭିନ୍ନ ରାଜ୍ୟରୁ ସମାଜସଂସ୍କାର ପାଇଁ କାର୍ଯ୍ୟ କରୁଥିବା ହେତୁବାଦୀ, ମାନବବାଦୀ, ନିରୀଶ୍ୱରବାଦୀ, ମୁକ୍ତ ଚିନ୍ତକ ଓ ମାନବିକ ଅଧିକାର କର୍ମୀମାନେ ବିଭିନ୍ନ ସଙ୍ଗଠନର ପ୍ରତିନିଧି ଭାବେ ଯୋଗ ଦେଇଥାନ୍ତି।

ଫିରା ସଙ୍ଗଠନର ମୁଖ୍ୟ ଲକ୍ଷ୍ୟ ହେଉଛି ଲୋକମାନଙ୍କ ଭିତରେ ବୈଜ୍ଞାନିକ ମନୋଭାବ ଓ ମାନବବାଦୀ ଜୀବନଦୃଷ୍ଟିର ପ୍ରସାର କରାଇବା। ଏହା ହିଁ ହେଉଛି ହେତୁବାଦର ଅନ୍ତର୍ନିହିତ ତାତ୍ପର୍ଯ୍ୟ। ହେତୁବାଦ ଏକ ଜୀବନଦର୍ଶନ ଓ ଏକ ମହତ୍ତର ଜୀବନବୋଧ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ବିଚାରବୋଧ ଏହି ଦର୍ଶନର ମୌଳିକ ତାତ୍ପର୍ଯ୍ୟ। ପୁନଶ୍ଚ ଏହି ପ୍ରତ୍ୟେକ ଭାବନା ବହୁବିଧ ଭାବଧାରାର ଏକ ସମନ୍ୱିତ ପରିପ୍ରକାଶ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ କହିଲେ ପ୍ରକୃତରେ କ'ଣ ବୁଝାଏ ? ମୁକ୍ତ ମନ, ଏକ ସାର୍ବଜନୀନ ପ୍ରଣାଳୀ ଓ ବିଚାରଶୀଳତାର ପ୍ରାଧାନ୍ୟକୁ ନେଇ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିକଶିତ ହୋଇଥିବା ମନେହୁଏ। ପ୍ରକୃତି ସମ୍ପର୍କରେ ବସ୍ତୁନିଷ୍ଠ ଜ୍ଞାନ ଅର୍ଜନ ପାଇଁ ଯେଉଁ ପ୍ରଣାଳୀର ପ୍ରୟୋଗ କରାଯାଏ ତାହା ସାର୍ବଜନୀନ। ଏକ ସୁନିୟନ୍ତ୍ରିତ ପଦ୍ଧତି ପ୍ରୟୋଗକରି ବିଜ୍ଞାନ ତଥ୍ୟଭିତ୍ତିକ ଜ୍ଞାନ ପ୍ରଦାନ କରିଥାଏ। ବୈଜ୍ଞାନିକ ଜ୍ଞାନ ତଥ୍ୟ ଆଧାରିତ, ପରୀକ୍ଷା ସାପେକ୍ଷ ଓ ମୁକ୍ତ। ଏହାର ଆଧାର ହେଉଛି ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ। ବିଜ୍ଞାନ ସର୍ବଦା ପ୍ରଗତିଶୀଳ ଜ୍ଞାନ ପ୍ରଦାନ କରିଥାଏ। ଏହା ମଧ୍ୟ ସ୍ୱସଂଶୋଧନାତ୍ମକ

ଓ ସାର୍ବଜନୀନ । ହେତୁବାଦ ବିଚାରଶୀଳତାର ପ୍ରାଧାନ୍ୟକୁ ଗୁରୁତ୍ୱ ଦେଇଥାଏ । କୌଣସି ବିଷୟ କିଛି ବିଶିଷ୍ଟ ବ୍ୟକ୍ତି କହିବା ବା ଧର୍ମଗ୍ରନ୍ଥରେ ଲିଖିତ ଥିବା ଯୋଗୁ ଏହା ସତ୍ୟ ଏପରି ଭାବିବା ଯଥାର୍ଥ ନୁହେଁ । ଯାହା ତଥ୍ୟ ସମର୍ଥିତ ବା ଯୁକ୍ତି-ଆଧାରିତ ନୁହେଁ ତାହାକୁ ସତ୍ୟ ବୋଲି ଗ୍ରହଣ କରାଯାଇ ନପାରେ । ପୁନଶ୍ଚ ଜ୍ଞାନ ବିଜ୍ଞାନର ବିକାଶ ପଶ୍ଚାତରେ ଗୋଟିଏ ସିଦ୍ଧାନ୍ତ ରହିଛି ଯେ ପ୍ରକୃତିରେ ଘଟୁଥିବା ପ୍ରତ୍ୟେକ ଘଟଣା ପଶ୍ଚାତରେ କିଛି ପ୍ରାକୃତିକ କାରଣ ରହିଛି, ତାହା ହୁଏତ ଆମେ ଜାଣିଥାଉ କିମ୍ବା ଜାଣିନଥାଉ । ପ୍ରକୃତି ଏତେ ବିଶାଳ ଓ ଜଟିଳ ଯେ ପ୍ରକୃତିର ଅନେକ ଘଟଣା ଆମ ଜ୍ଞାନର ପରିସରରେ ବ୍ୟାଖ୍ୟା କରିବା ସମ୍ଭବ ହୋଇ ନାହିଁ । ତେବେ ବିଜ୍ଞାନର ଏହା ଏକ ସ୍ୱତଃସିଦ୍ଧ ସିଦ୍ଧାନ୍ତ ଯେ କୌଣସି ଅତିପ୍ରାକୃତିକ ଶକ୍ତି ପ୍ରାକୃତିକ ଘଟଣାକୁ ପ୍ରଭାବିତ କରିବାର କୌଣସି ପ୍ରମାଣ ନାହିଁ । ପ୍ରତ୍ୟେକ ପ୍ରାକୃତିକ ଘଟଣାକୁ କେବଳ ପ୍ରାକୃତିକ ନିୟମ, କାର୍ଯ୍ୟକାରଣ ଶୃଙ୍ଖଳା ଓ ପ୍ରାକୃତିକ ଏକରୂପତା ଆଧାରରେ ବ୍ୟାଖ୍ୟା କରାଯାଇ ପାରିବ । ପ୍ରକୃତିରେ ବହୁ ରହସ୍ୟ ରହିଛି କିନ୍ତୁ କୌଣସି ଅତିପ୍ରାକୃତିକ ଘଟଣା ବା ଚମତ୍କାରିତା ଥିବାର କିଛି ପ୍ରମାଣ ନାହିଁ । ଏହି ସିଦ୍ଧାନ୍ତକୁ ଆଧାର କରି ବୈଜ୍ଞାନିକ ଜ୍ଞାନର ବିକାଶ ହୋଇଛି ଯାହା ଏକ ନୂତନ ପୃଥିବୀ ନିର୍ମାଣ କରିବାରେ ସଫଳ ହୋଇଛି ।

ହେତୁବାଦୀ ଜୀବନବୋଧର ଅନ୍ୟ ଦିଗଟି ହେଲା ମାନବବାଦର ପ୍ରତିଷ୍ଠା । ମାନବବାଦ ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମହତ୍ତ୍ୱକୁ ପ୍ରାଧାନ୍ୟ ଦିଏ । ସମାଜରେ ଯେକୌଣସି ପ୍ରକାରର ଭେଦଭାବ, ଶୋଷଣ ଓ ଅନ୍ୟାୟକୁ ଏହା ବିରୋଧ କରିଥାଏ । ମଣିଷ ସମାଜର ଇତିହାସରେ ମଣିଷ ଉପରେ ମଣିଷର ଅତ୍ୟାଚାର, ମଣିଷକୁ ମଣିଷର ଶୋଷଣ, ଅମାନବିକତା ଓ କ୍ରୂରତାର କାହାଣୀ ଅତ୍ୟନ୍ତ ମର୍ମାନ୍ତିକ । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ଇତ୍ୟାଦି ଆଧାରରେ ସମାଜରେ ଯେତେ ସବୁ ଭେଦଭାବ ରହିଆସିଛି ସେସବୁକୁ ମାନବବାଦୀ ଜୀବନଦୃଷ୍ଟି ବିରୋଧ କରିଥାଏ । ମାନବବାଦ ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶ, ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ନାଗରିକ ଅଧିକାରକୁ ଗୁରୁତ୍ୱ ଦେଇଥାଏ । ପୁନଶ୍ଚ ମାନବ ସମାଜରେ ରହିଥିବା ଜାତିବାଦ, ସାମନ୍ତବାଦ ଓ ସାମ୍ରାଜ୍ୟବାଦକୁ ଏହା ବିରୋଧ କରିଥାଏ । ବସ୍ତୁତଃ ମାନବବାଦ ଏକ ମାନବକୈନ୍ଦ୍ରିକ ଜୀବନବୋଧ ଯାହା ସଭ୍ୟତାର ଇତିହାସରେ ଏକ ସଭ୍ୟ ମୂଲ୍ୟବୋଧ ଭାବେ ବିକଶିତ ହେବା ଦେଖାଯାଏ ।

ବସ୍ତୁତଃ ହେତୁବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ଉପରେ ଆଧାରିତ ଏକ ଜୀବନ-ଦର୍ଶନ । ପୁନଶ୍ଚ ଇତିହାସରୁ ଏହା ଏକ ଉପଲବ୍ଧି ଯେ ମଣିଷ ସମାଜ ଏକ ଆଦିମ ଅବସ୍ଥାରୁ ନାନା ସ୍ତର ଦେଇ ଆଜିର ସ୍ତରକୁ ଆସିଛି । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେସବୁ ମାନବିକ ପ୍ରୟାସ ଓ ବୁଦ୍ଧିର ପ୍ରୟୋଗ ଯୋଗୁ ସମ୍ଭବ ହୋଇଛି । ଜ୍ଞାନବିଜ୍ଞାନର

ବିକାଶର ପରିଣାମରୁ ସଭ୍ୟତା ଅଗ୍ରଗାମୀ ହୋଇଛି ଓ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ହୋଇଚାଲିଛି । ଆମେ ଆଜି ଯେଉଁ ସ୍ଥିତିରେ ରହିଛେ ତାହା ପଶ୍ଚାତରେ ଏକ ସୁଦୀର୍ଘ କାହାଣୀ ରହିଛି । ଆଦିମ ସ୍ତରରୁ ଆଧୁନିକ ଜୀବନ ସ୍ତରର ଯାତ୍ରା ପଶ୍ଚାତରେ ମଣିଷର ବୌଦ୍ଧିକ କୌତୂହଳତା, ବୁଦ୍ଧି ଓ ଜିଜ୍ଞାସା ରହିଛି । ପୁନଶ୍ଚ ସଭ୍ୟତାର ଇତିହାସରୁ ଏହା ବି ଆମର ଏକ ଉପଲବ୍ଧି ଯେ ସକଳ ନୀତି, ନୈତିକତା ଓ ଉନ୍ନତ ଜୀବନବୋଧ ନେଇ ଚିନ୍ତା ଚେତନାରୁ ଏସବୁ ବିକଶିତ ହୋଇଛି । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ, ଏହା ଏକ ସଭ୍ୟ ଜୀବନ ପାଇଁ ଅବଶ୍ୟମ୍ଭାବୀ । ସମାଜରେ ନୈତିକ ମୂଲ୍ୟବୋଧମାନ ନାନା ଭାବରେ ବିକଶିତ ହୋଇଆସିଛି ।

ଏହି ସବୁ ଭାବଧାରାର ସମନ୍ୱିତ ଅଭିବ୍ୟକ୍ତି ହେଉଛି ହେତୁବାଦ । ସମାଜରେ ହେତୁବାଦର ପ୍ରଭାବ ଯେତେ ଅଧିକ ରହିବ ସାମାଜିକ ଜୀବନରୁ କୁସଂସ୍କାର, ଅବୈଜ୍ଞାନିକ ମନୋଭାବ ଓ ଅମାନବିକ ଆଚରଣ ସେତେ ହ୍ରାସ ହୋଇପାରିବ । ବିଶେଷକରି ଏକ ରକ୍ଷଣଶୀଳ, ପରିବର୍ତ୍ତନବିରୋଧୀ ଓ ପାରମ୍ପରିକ ସମାଜରେ ହେତୁବାଦୀ ଜୀବନବୋଧର ପ୍ରସାରଦ୍ୱାରା ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସିବା ସମ୍ଭବ ହେବ । ଯୁଗ ଯୁଗ ଧରି ରହି ଆସିଥିବା ସାମାଜିକ ଭେଦଭାବ, କୁସଂସ୍କାର ଓ ଅବୈଜ୍ଞାନିକ ମନୋଭାବକୁ ଦୂର କରିବା କ୍ଷେତ୍ରରେ ହେତୁବାଦ ଯେ ସବୁଠାରୁ ବଡ ପ୍ରତିକାର ଏହା ନିଃସନ୍ଦେହ ମନେହୁଏ ।

ଏହି ସବୁ କେତେକ ଆଭିମୁଖ୍ୟକୁ ନେଇ ବି. ପ୍ରେମାନନ୍ଦ ବିଭିନ୍ନ ରାଜ୍ୟର ହେତୁବାଦୀ ଓ ମୁକ୍ତଚିନ୍ତକମାନଙ୍କୁ ନେଇ ଫିରା ସଙ୍ଗଠନ ସୃଷ୍ଟି କରିଥିଲେ । ପ୍ରେମାନନ୍ଦ ଥିଲେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ହେତୁବାଦୀ ଓ ବୈଜ୍ଞାନିକ ଆବ୍ରାହମ ଥୋମାସ୍ କୋଭୁରଙ୍କର ଅନୁଗାମୀ । କୋଭୁର(୧୮୯୮-୧୯୭୮) ୧୯୬୪ରେ ସମଗ୍ର ପୃଥିବୀରେ ଏକ ଆହ୍ୱାନ ରଖିଥିଲେ ଯେ ଯଦି କୌଣସି ବାବା, ମାତା, ଆଧ୍ୟାତ୍ମିକ ବ୍ୟକ୍ତି, ଯୋଗୀ, ସାଧୁ ତାଙ୍କର ସିଦ୍ଧି ବଳରେ ଏକ ଚମତ୍କାରିତା କୋଭୁରଙ୍କ ସମ୍ମୁଖରେ ବା ତାଙ୍କ ମନୋନୀତ ବ୍ୟକ୍ତିଙ୍କ ପାଖରେ ଦେଖାଇ ପାରିବେ ତେବେ ସେ ତାଙ୍କୁ ଏକ ଲକ୍ଷ ଟଙ୍କା ଦେବା ସହ ତାଙ୍କର ଅନୁଗାମୀ ହେବେ । ତେବେ ତଥାକଥିତ ରହସ୍ୟମୟ ବ୍ୟକ୍ତିମାନଙ୍କର ଚମତ୍କାରିତାକୁ କୋଭୁର ସର୍ବସାଧାରଣରେ ପ୍ରଦର୍ଶନ କରିପାରୁଥିଲେ । ଚମତ୍କାରିତା ପ୍ରଦର୍ଶନ କରିବା କ୍ଷେତ୍ରରେ କ'ଣ କୌଶଳ ପ୍ରୟୋଗ କରାଯାଏ ତାହା ସର୍ବସାଧାରଣରେ ସେ ବ୍ୟାଖ୍ୟା କରୁଥିଲେ । କୋଭୁରଙ୍କ ପରେ ତାଙ୍କର ଏହି ଆହ୍ୱାନକୁ ପ୍ରେମାନନ୍ଦ ଭାରତରେ ରଖିଥିଲେ । ଏହା ସହିତ ଆନ୍ତର୍ଜାତିକ ସଙ୍ଗଠନ "କମିଟି ଫର୍ ସାଇଣ୍ଟିଫିକ୍ ଇନ୍‌ଭେଷ୍ଟିଗେସନ ଅଫ୍ ଦି କ୍ଲେମ୍‌ସ ଅଫ୍ ଦି ପାରାନର୍ମାଲ

(ବା CSICOP)" କୋଭୁରଙ୍କ ଆହ୍ୱାନକୁ ବିଶ୍ୱ ସ୍ତରରେ କୋଟି କୋଟି ଟଙ୍କା ବିନିମୟରେ ଜାରି ରଖିଛି। ଏହି ଅନୁଷ୍ଠାନର ଭାରତୀୟ ପ୍ରତିନିଧି ଫିରାର ଆବାହକ ଥିଲେ ପ୍ରେମାନନ୍ଦ। ପ୍ରେମାନନ୍ଦଙ୍କ ଦେହାନ୍ତ ପରେ ଫିରା ତରଫରୁ ଭାରତବର୍ଷରେ ଓ ଆନ୍ତର୍ଜାତିକ ସ୍ତରରେ କୋଭୁରଙ୍କ ମୂଳ ଆହ୍ୱାନ ଅବ୍ୟାହତ ରହିଛି। ଏତେ କୋଟି ଟଙ୍କାର ଆହ୍ୱାନ ଥିଲେ ବି କୌଣସି ରହସ୍ୟବାଦୀ ବ୍ୟକ୍ତି ଏକ ଚମତ୍କାରିତା ହେତୁବାଦୀଙ୍କ ସମ୍ମୁଖରେ ଦେଖାଇବାକୁ ସମର୍ଥ ହୋଇନାହାନ୍ତି। କାରଣ ସେମାନେ ଦେଖାଉଥିବା ଯେକୌଣସି ଚମତ୍କାରିତା ହେତୁବାଦୀମାନେ ବି ଦେଖାଇବାକୁ ସମର୍ଥ।

ଫିରା ସଙ୍ଗଠନ ମୁଖ୍ୟତଃ ସମାଜରୁ କୁସଂସ୍କାର, ଅପବିଶ୍ୱାସ, ସାମାଜିକ ଭେଦଭାବ, ସାମ୍ପ୍ରଦାୟିକ ମନୋଭାବ ଓ ଅସହିଷ୍ଣୁତାକୁ ଦୂର କରି ବୈଜ୍ଞାନିକ ବିଚାରବୋଧ, ମାନବବାଦ ଓ ସାମାଜିକ ସଂପ୍ରୀତିର ବାର୍ତ୍ତା ପ୍ରଚାର କରିଆସୁଛି। ତେବେ ପରିତାପର ବିଷୟ ଜ୍ଞାନାନ୍ୱେଷୀ ଓ ମାନବବାଦୀ ତିନି ଜଣ ବିଶିଷ୍ଟ ହେତୁବାଦୀଙ୍କୁ ଏହି କିଛି ବର୍ଷ ଭିତରେ ଅସହିଷ୍ଣୁ ରକ୍ଷଣଶୀଳ ଲୋକମାନେ ହତ୍ୟା କରିଛନ୍ତି। ନରେନ୍ଦ୍ର ଦାଭୋଲକର, ଏମ.ଏମ. କଲବର୍ଗି ଓ ଗୋବିନ୍ଦ ପାନ୍‌ସାରେଙ୍କ ପରି ତିନିଜଣ ବିଶିଷ୍ଟ ବୁଦ୍ଧିଜୀବୀଙ୍କୁ ଏହି କେତେବର୍ଷ ଭିତରେ ରକ୍ଷଣଶୀଳ ସାମ୍ପ୍ରଦାୟିକ ବ୍ୟକ୍ତିମାନେ ହତ୍ୟା କରିଛନ୍ତି। ଏହା ଏକ ବିଡମ୍ବନା ଯେ ସମାଜର ଶାନ୍ତିପ୍ରିୟ, ସଂସ୍କାରବାଦୀ ବୁଦ୍ଧିଦୀପ୍ତ ବ୍ୟକ୍ତିମାନେ ସାମ୍ପ୍ରଦାୟିକ ଶକ୍ତିମାନଙ୍କଦ୍ୱାରା ଅତ୍ୟାଚାରିତ ବା ନିହତ ହୋଇଆସିଛନ୍ତି। ଫିରା ଏହି ବିଶିଷ୍ଟ ସଂସ୍କାରକ ଓ ଚିନ୍ତକମାନଙ୍କର ବର୍ବରୋଚିତ ହତ୍ୟାକାଣ୍ଡକୁ ନିନ୍ଦା କରିବା ସହ ସମାଜରେ ବଢୁଥିବା ଅସହିଷ୍ଣୁ ମନୋଭାବରେ ଗଭୀର କ୍ଷୋଭ ପ୍ରକାଶ କରିଛି।

ବୌଦ୍ଧିକ ସହିଷ୍ଣୁତା ଏକ ପ୍ରଗତିଶୀଳ ମୂଲ୍ୟବୋଧ। ପ୍ରତିପକ୍ଷର ମତ ସହ ମୁଁ ସାମାନ୍ୟ ସହମତ ନ ହେଲେ ବି ଅନ୍ୟର ମତପ୍ରକାଶ କରିବାର ଅଧିକାରକୁ ସ୍ୱୀକାର କରିବା ଏକ ସଭ୍ୟ ଦୃଷ୍ଟିଭଙ୍ଗୀ। ଯେଉଁଠି ଏହି ଦୃଷ୍ଟିଭଙ୍ଗୀ ଓ ଉଦାରତା ପ୍ରତି ଆହ୍ୱାନ ଆସେ ତାହା ସାମାଜିକ କ୍ଷୟଶୀଳତାକୁ ଉଦ୍ରେକ କରାଏ। ଏହା ହିଁ ଥିଲା ନିକଟରେ ହୋଇଥିବା ଫିରା ସମ୍ମିଳନୀର ସନ୍ଦେଶ।

(ପ୍ରଗତିଶୀଳ, ୦୫.୦୪.୨୦୧୬)

# ଲବଣମ୍ : ପ୍ରଜ୍ଞା ଓ ସେବାର ସମନ୍ୱିତ ବ୍ୟକ୍ତିତ୍ୱ

ବିଶିଷ୍ଟ ସମାଜସେବୀ, ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନିରୀଶ୍ୱରବାଦୀ, ମାନବିକ ଅଧିକାରର ପ୍ରବକ୍ତା, ସର୍ବୋଦୟ ନେତା, ମାନବବାଦୀ ଓ ଗାନ୍ଧିବାଦୀ ଦାର୍ଶନିକ ଲବଣମ୍‌ଙ୍କର ଅଗଷ୍ଟ ୧୪, ୨୦୧୫ ଦିନ ପଞ୍ଚାଅଶୀ ବର୍ଷ ବୟସରେ ଦେହାନ୍ତ ହୋଇଯାଇଛି । ଯେଉଁ କେତେକ ବ୍ୟକ୍ତି ପିଲାଟି ବେଳୁ ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ଆସିବାର ଅବକାଶ ପାଇଥିଲେ ଓ ଜୀବନବ୍ୟାପୀ ଗାନ୍ଧୀ ପ୍ରଦର୍ଶିତ ମାର୍ଗରେ ଜୀବନ ବଞ୍ଚିବାକୁ ପ୍ରୟାସ କରିଥିଲେ ସେମାନଙ୍କ ମଧ୍ୟରେ ଲବଣମ୍ ଥିଲେ ଅନ୍ୟତମ । ଲବଣମ୍‌ଙ୍କର ଜନ୍ମ ୧୯୩୦ ମସିହାରେ, ଯେଉଁ ବର୍ଷ ଭାରତବର୍ଷରେ ଲବଣ ସତ୍ୟାଗ୍ରହ ଅନୁଷ୍ଠିତ ହୋଇଥିଲା । ସୁତରାଂ ବାପା, ମା' ତାଙ୍କ ନାମ ରଖିଥିଲେ 'ଲବଣମ୍', ଯାହା ତେଲୁଗୁ ଭାଷାରେ ଲୁଣକୁ ବୁଝାଏ । ଲବଣମ୍‌ଙ୍କର କୌଣସି ଔପଚାରିକ ଶିକ୍ଷାଗତ ଯୋଗ୍ୟତା ନ ଥିଲା । ସେ ସପ୍ତମରେ ପଢୁଥିବା ବେଳେ ବାପା-ମା 'ଭାରତ ଛାଡ' ଆନ୍ଦୋଳନରେ ଯୋଗ ଦେଇ ବନ୍ଦୀ ହୋଇଥିଲେ । ସେହି କଅଁଳ ବୟସରୁ ଲବଣମ୍ ପାଠ ଛାଡିଥିଲେ ଓ ବ୍ରିଟିଶ୍ ପରିଚାଳିତ ଶିକ୍ଷାନୁଷ୍ଠାନରେ ନ ପଢିବାକୁ ନିଷ୍ପତ୍ତି ନେଇଥିଲେ । ତେବେ ନିଜସ୍ୱ ପ୍ରୟାସରେ ସେ ଅନେକ କିଛି ଅଧ୍ୟୟନ କରିଥିଲେ । ଜଣେ ଗାନ୍ଧୀବାଦୀ ଚିନ୍ତକ, ନିରୀଶ୍ୱରବାଦୀ ଦାର୍ଶନିକ ଓ ସମାଜସେବୀ ଭାବେ ସେ ବହୁ ଆନ୍ତର୍ଜାତିକ ସ୍ୱୀକୃତି ପାଇଛନ୍ତି । ବିଭିନ୍ନ ଦେଶକୁ ଯାଇଛନ୍ତି, ପୃଥିବୀର ବିଭିନ୍ନ ବିଶ୍ୱ ବିଦ୍ୟାଳୟରେ ଭାଷଣ ଦେଇଛନ୍ତି ଓ ବହୁ ଆନ୍ତର୍ଜାତିକ ସମ୍ମିଳନୀରେ ଅଂଶଗ୍ରହଣ କରିଛନ୍ତି । ମାନବିକ ଅଧିକାରର ପ୍ରବକ୍ତା ମାର୍ଟିନ ଲୁଥର କିଙ୍ଗ ଜୁନିଅର, ନିରପେକ୍ଷ ମାନବବାଦର ଦୃଢ ସମର୍ଥକ ପଲ୍ କର୍ଜ, ହର୍ମାନ ବଣ୍ଡିଙ୍କ ପରି ଆନ୍ତର୍ଜାତିକ ସ୍ତରର ସମାଜକର୍ମୀ ଓ ବୁଦ୍ଧିଜୀବୀମାନଙ୍କ ସହ ସଂପର୍କିତ ହୋଇଛନ୍ତି । ୧୯୫୫ ରେ ବିନୋବା ଭୂଦାନ ଆନ୍ଦୋଳନ ଆନ୍ଧ୍ରରେ ଆରମ୍ଭ କଲା ବେଳେ ଲବଣମ୍ ତାଙ୍କ ସହ ରହିଛନ୍ତି ଓ ବିନୋବାଙ୍କର ହିନ୍ଦୀ ଭାଷଣକୁ ତେଲୁଗୁରେ ଅନୁବାଦ କରିଛନ୍ତି । ତରୁଣ ଲବଣମ୍ ପ୍ରାଜ୍ଞ ବିନୋବାଙ୍କ ଜୀବନଶୈଳୀରେ ଏକ ପରିବର୍ତ୍ତନ ଆଣିଛନ୍ତି । ବିନୋବା ତାଙ୍କର ସାଧାରଣ ସଭାମାନଙ୍କରେ ତିରିଶ-ଚାଳିଶ ମିନିଟ୍ ଧରି ପ୍ରାର୍ଥନା କରୁଥିଲେ ଓ ତାପରେ ତାଙ୍କର କାର୍ଯ୍ୟକ୍ରମ ଆରମ୍ଭ ହେଉଥିଲା । ନିରୀଶ୍ୱରବାଦୀ ଲବଣମ୍ ବିନୋବାଙ୍କ ସହ ମାସ ମାସ ଧରି ବିଭିନ୍ନ ପ୍ରସଙ୍ଗ ଉପରେ ତାତ୍ତ୍ୱିକ ଆଲୋଚନାରେ ବ୍ରତୀ ହୋଇଛନ୍ତି । ଲବଣମ୍‌ଙ୍କର ବାପା ଗୋପରାଜୁ ରାମଚନ୍ଦ୍ର ରାଓ (ସେ ଭାରତରେ ଓ

ଆନ୍ତର୍ଜାତିକ ସ୍ତରରେ 'ଗୋରା' ନାମରେ ପରିଚିତ) ଓ ମା' ସରସ୍ୱତୀ ଦେବୀ ନିଜକୁ ନିରୀଶ୍ୱରବାଦୀ ଘୋଷଣା କରି ଆନ୍ଧ୍ରରେ 'ନାସ୍ତିକ କେନ୍ଦ୍ର' ୧୯୪୦ ମସିହାରେ ସ୍ଥାପନ କରି ସମାଜସେବାରେ ବ୍ରତୀ ହୋଇଛନ୍ତି। ପରେ ବିନୋବା ତାଙ୍କର ପ୍ରାର୍ଥନା ସମୟକୁ କେବଳ ନୀରବ ପାଞ୍ଚ ମିନିଟ୍ ଧ୍ୟାନରେ ସୀମିତ କରିଛନ୍ତି। କୌଣସି ପ୍ରାର୍ଥନା ଗାନ କରାନଯାଇ ଜୀବନର ମହତ୍ତମ ଲକ୍ଷ୍ୟ ଓ କର୍ତ୍ତବ୍ୟ ନେଇ ପ୍ରତ୍ୟେକ ପାଞ୍ଚ ମିନିଟ୍ ନୀରବରେ ଚିନ୍ତା କରିବାକୁ ବିନୋବା ନିଜର କାର୍ଯ୍ୟଧାରାରେ ପରିବର୍ତ୍ତନ ଆଣିଛନ୍ତି। ବିନୋବାଙ୍କର ଦେହାନ୍ତ ୧୯୮୨ରେ ହେବା ପର୍ଯ୍ୟନ୍ତ ସେ କେବଳ ପାଞ୍ଚ ମିନିଟ୍ ନୀରବ ପ୍ରାର୍ଥନା ପ୍ରତ୍ୟହ କରିଛନ୍ତି। ସନ୍ଥ ବିନୋବାଙ୍କର ଜୀବନଶୈଳୀରେ ପୁତ୍ର ପ୍ରତିମ ଲବଣମ୍ ଏକ ବଡ ପରିବର୍ତ୍ତନ ଆଣିବାରେ ସମର୍ଥ ହୋଇଛନ୍ତି।

ଲବଣମ୍‌ଙ୍କର ବାପା-ମା' ରକ୍ଷଣଶୀଳ ବ୍ରାହ୍ମଣ ପରିବାରର ହୋଇଥିଲେ ବି ଜାତିପ୍ରଥା, ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଗୋରା ଆନ୍ଧ୍ରରେ ଏକ ସାମାଜିକ କ୍ରାନ୍ତିର ପଥପ୍ରଦର୍ଶକ ହୋଇଛନ୍ତି। ବାପା ମା'ଙ୍କର ପଦାଙ୍କ ଅନୁସରଣ କରି ଲବଣମ୍ ଜାତି, ଧର୍ମ ଊର୍ଦ୍ଧ୍ୱକୁ ଯାଇ ଜଣେ ଦଳିତ ଖ୍ରୀଷ୍ଟିଆନ୍ ମହିଳାଙ୍କୁ ୧୯୬୦ରେ ଗାନ୍ଧୀଙ୍କ ଆଶ୍ରମ ସେବାଗ୍ରାମରେ ବିବାହ କରିଛନ୍ତି। ପତ୍ନୀ ହେମଲତା ଦେବୀ ସ୍ୱାମୀଙ୍କ ସହ ସମାଜସେବାରେ ବ୍ରତୀ ହୋଇଛନ୍ତି। ଗାନ୍ଧୀ ସ୍ମାରକ ନିଧିର ସହ ସଂପାଦକ ଓ ସର୍ବ ସେବା ସଂଘର ଦଶ ବର୍ଷ ଧରି ସଂପାଦକ ଭାବେ ଲବଣମ୍ କାର୍ଯ୍ୟ ନିର୍ବାହ କରିଛନ୍ତି।

ସମାଜର କୌଣସି ଗମ୍ଭୀର ସମସ୍ୟା ଦୂର କରିବାରେ ଲବଣମ୍ ସର୍ବଦା ନିଜର ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି। ଚମ୍ବଲ ଉପତ୍ୟକାର ଦୁର୍ଦ୍ଦାନ୍ତ ଡକାଏତମାନଙ୍କୁ ସମାଜର ମୁଖ୍ୟ ସ୍ରୋତକୁ ଆଣିବାରେ ଲବଣମ୍, ବିନୋବା ଓ ଜୟପ୍ରକାଶଙ୍କ ସହ ମିଶି କାର୍ଯ୍ୟ କରିଛନ୍ତି। ସମାଜର ଜମିଦାର ଓ ଉଚ୍ଚବର୍ଗର ଲୋକଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ଯେଉଁମାନେ ପ୍ରତିକ୍ରିୟାଶୀଳ ହୋଇ ଦସ୍ୟୁ ପାଲଟିଥିଲେ ସେମାନଙ୍କ ହୃଦୟରେ ପରିବର୍ତ୍ତନ ଆଣିବାକୁ ସତୁରୀ ଦଶକରେ ଯେଉଁ ପ୍ରୟାସ ହୋଇଥିଲା, ସେଥିରେ ଲବଣମ୍ ନିଜର ସଂପୃକ୍ତି ରଖିଥିଲେ। ସେହିପରି ଆନ୍ଧ୍ରରେ ନକସଲ ସମସ୍ୟା ଓ ପରେ ମାଓ ସମସ୍ୟା ମୁଣ୍ଡ ଟେକିଥିଲା। ଏକ ଶୋଷଣମୁକ୍ତ ସମାଜ ପାଇଁ ହିଂସାତ୍ମକ ବିପ୍ଳବ ଚାହୁଁଥିବା ଯୁବକମାନଙ୍କୁ ହିଂସାତ୍ମକ ପନ୍ଥା ପରିହାର କରି ଅହିଂସ ପନ୍ଥାର ଆଶ୍ରୟ ନେବାକୁ ଯେଉଁ ଉଦ୍ୟମ ଗତ ଦଶନ୍ଧି ଭିତରେ ହୋଇଛି ସେଥିରେ ଲବଣମ୍ ହିଁ ପୁରୋଭାଗରେ ରହିଛନ୍ତି। ମାଓବାଦୀଙ୍କୁ ସେ ଯେଉଁ ମର୍ମସ୍ପର୍ଶୀ ପତ୍ର ଲେଖିଛନ୍ତି ଓ ଯାହା ସାରା ଦେଶରେ ଗଣମାଧ୍ୟମରେ ଚର୍ଚ୍ଚା ହୋଇଛି ତାହା ଅନେକ ନକସଲ ପନ୍ଥୀଙ୍କ

ମାନସିକତାରେ ପରିବର୍ତ୍ତନ ଆଣିବାରେ ପରିବେଶ ସୃଷ୍ଟି କରିଛି। ସେହିପରି ସମସ୍ତ ଲୋକ ପ୍ରତିନିଧିମାନଙ୍କୁ ଦୁର୍ନୀତିମୁକ୍ତ ରହିବାକୁ ସେ ଯେଉଁ ନିବେଦନ କରିଛନ୍ତି ତାହା ମଧ୍ୟ ନାନା ସ୍ତରରେ ନୈତିକ ଆଲୋଡନ ସୃଷ୍ଟି କରିଛି। ଲୋକପ୍ରତିନିଧିଙ୍କ ଦୁର୍ନୀତି ଓ ନକ୍ସଲପନ୍ଥୀଙ୍କ ହିଂସାତ୍ମକ ବିପ୍ଳବ ଉଭୟର ନକାରାତ୍ମକ ଦିଗ ଉପରେ ବିଶ୍ଳେଷଣ କରି ସେ ଏହାର ଦୂରୀକରଣ ପାଇଁ ଅନେକ ସୁଚିନ୍ତିତ ମନ୍ତବ୍ୟ ରଖିଛନ୍ତି। ଲୋକପ୍ରତିନିଧିଙ୍କ ଭିତରୁ ଯଦି ଦୁର୍ନୀତି ଲୋପ ପାଇବ ଓ ଗଣତନ୍ତ୍ର ଏକ ନୈତିକ ଶକ୍ତିରେ ରୂପାନ୍ତରିତ ହେବ ଏବଂ ପୁଲିସ ବ୍ୟବସ୍ଥାରେ ପରିବର୍ତ୍ତନ ଅଣାଯାଇ ପାରିବ, ତେବେ ହିଂସାତ୍ମକ ନକ୍ସଲବାଦର ବିଲୋପ ହୋଇପାରିବ। ଏହି ପୃଷ୍ଠଭୂମିରେ ଲବଣମ୍ ଏକ ରାଜନୈତିକ ଦର୍ଶନର ଅବତାରଣା ମଧ୍ୟ କରିଛନ୍ତି।

ଲବଣମ୍ ଓ ପତ୍ନୀ ହେମଲତା ୧୯୬୪ରେ ଅପରାଧ ସଂସ୍କାର ଆନ୍ଦୋଳନ ଆରମ୍ଭ କରି ଆନ୍ଧ୍ରପ୍ରଦେଶରେ ବିଭିନ୍ନ ଅପରାଧରେ ସଂଶ୍ଳିଷ୍ଟ ହୋଇ ଜେଲ ଖଟୁଥିବା ଲୋକମାନଙ୍କୁ ସମାଜର ମୁଖ୍ୟ ସ୍ରୋତକୁ ଆଣିବା ପାଇଁ ପ୍ରୟାସ କରିଛନ୍ତି। କୌଣସି ବ୍ୟକ୍ତି ସାମାଜିକ, ଅର୍ଥନୈତିକ ବା ସେପରି କିଛି କାରଣରୁ ଅପରାଧରେ ସଂଶ୍ଳିଷ୍ଟ ହେଲା ପରେ ସେ ଅଭିଯୁକ୍ତ ହୋଇ ଜେଲ ଯାଏ। ତେବେ ସେମାନଙ୍କୁ ଜେଲ ଜୀବନ ପରେ ସ୍ୱାବଲମ୍ବୀ କରାଯାଇ କିପରି ସୁସ୍ଥ ନାଗରିକ କରାଯିବ ଏଥିରେ ଲବଣମ୍ ଓ ହେମଲତା ଅନେକ କିଛି କରିଛନ୍ତି। ସେହିପରି ଆନ୍ଧ୍ରର ବିଭିନ୍ନ ମନ୍ଦିରମାନଙ୍କରେ ଥିବା ଯୋଗିନୀ(ଓଡିଶାର ଦେବଦାସୀ ପରି)ମାନେ ଯେଉଁପରି ଅମର୍ଯ୍ୟାଦାଜନକ ଜୀବନ ବଞ୍ଚନ୍ତି ସେଥିରୁ ସେମାନଙ୍କୁ ମୁକ୍ତ କରି ସେମାନଙ୍କୁ ପରିବାର କରି ବଞ୍ଚିବାକୁ ଅନେକ ପଦକ୍ଷେପ ନେଇଛନ୍ତି। ସମାଜର ଦୁସ୍ଥ, ଅବହେଳିତ ଓ ଭେଦଭାବର ଶିକାର ହେଉଥିବା ଲୋକମାନଙ୍କ ମଧ୍ୟରେ ନାଗରିକ ଅଧିକାର ଓ ସାମାଜିକ ସଚେତନତା ସୃଷ୍ଟି କରିବା ପାଇଁ ଲବଣମ୍ ଜୀବନବ୍ୟାପୀ ପ୍ରୟାସ କରିଛନ୍ତି। ଆନ୍ଧ୍ରରେ କୌଣସି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ସରକାରୀ ଓ ବେସରକାରୀ ରିଲିଫ୍ କାର୍ଯ୍ୟର ତଦାରଖ ନିଷ୍ଠାପର ଭାବେ କରି ଆସିଛନ୍ତି। ପ୍ରାକୃତିକ ବିପର୍ଯ୍ୟୟକୁ ମୁକାବିଲା କରିବାକୁ କିପରି ପ୍ରସ୍ତୁତି ଦରକାର ସେଥିରେ ସେ ଦେଶରେ ପଥପ୍ରଦର୍ଶକ ହୋଇଛନ୍ତି।

ସେ ଥିଲେ ଜଣେ ଅଦ୍ୱିତୀୟ ବାଗ୍ମୀ। ଇଂରାଜୀ, ହିନ୍ଦୀ ବା ତେଲୁଗୁ ଏହି ତିନୋଟି ଭାଷାରେ ସେ ପାରଦର୍ଶୀ ଥିଲେ। ଜାତୀୟ ବା ଆନ୍ତର୍ଜାତିକ ସମ୍ମିଳନୀରେ ସେ କେନ୍ଦ୍ରବିନ୍ଦୁ ଥାନ୍ତି। ବୌଦ୍ଧିକ ସ୍ୱଚ୍ଛତା, ବୈଚାରିକ ଗଭୀରତା ଓ ଭାଷାର ଯାଦୁରେ ସେ ଶ୍ରୋତାମାନଙ୍କୁ

ମନ୍ତ୍ରମୁଗ୍ଧ କରିପାରୁଥିଲେ । ବିଭିନ୍ନ ସାମାଜିକ ସମସ୍ୟା ଓ ଏକ ସୁନ୍ଦର ସମାଜର ଚିତ୍ର ସମ୍ବନ୍ଧରେ ସେ ରାଶି ରାଶି ଲେଖା ଲେଖିଛନ୍ତି ।

ଜଣେ ଗାନ୍ଧୀବାଦୀ ଚିନ୍ତକ ଓ ନିରୀଶ୍ୱରବାଦୀ ଦାର୍ଶନିକ ଭାବେ ସେ ଆନ୍ତର୍ଜାତିକ ସ୍ତରରେ ପରିଚିତ ଥିଲେ । ମହାତ୍ମା ଗାନ୍ଧୀ ଜାତୀୟ ପୁରସ୍କାର, ଜମନଲାଲ ବଜାଜ ପୁରସ୍କାର ପରି ଜାତୀୟ ପୁରସ୍କାର ସହ ଆଥେଇଷ୍ଟ ଅଫ ଦି ଡିକେଡ ଆୱାର୍ଡ, ଇଣ୍ଟରନେସନାଲ ହ୍ୟୁମାନିଷ୍ଟ ଏଣ୍ଡ ଏଥିକାଲ ୟୁନିୟନ ଆୱାର୍ଡ ପରି ବହୁ ଆନ୍ତର୍ଜାତିକ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ମାନବବାଦ ଓ ବିଶ୍ୱ-ଦୃଷ୍ଟି ତାଙ୍କ ଜୀବନର ଆଦର୍ଶ ଥିଲା । ସମସ୍ତ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଯାଇ ସେ ନିଜକୁ ଜଣେ ବିଶ୍ୱ ନାଗରିକ ବୋଲି ମନେ କରୁଥିଲେ ।

ତାଙ୍କର ଶେଷ ଇଚ୍ଛାନୁଯାୟୀ ତାଙ୍କ ଦେହାନ୍ତ ପରେ ତାଙ୍କର ଆଖିକୁ ଚକ୍ଷୁ ବ୍ୟାଙ୍କକୁ ଦିଆଯାଇ ତାଙ୍କର ମର ଶରୀରକୁ ସିଦ୍ଧାର୍ଥ ମେଡିକାଲ କଲେଜକୁ ଚିକିତ୍ସା ବିଜ୍ଞାନର ଗବେଷଣା ପାଇଁ ଦାନ କରାଯାଇଛି । ଏହି ମହାନ ମାନବବାଦୀ ଦାର୍ଶନିକଙ୍କୁ ଅନ୍ତରର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

(ପ୍ରଗତିବାଦୀ, ୨୬.୦୮.୨୦୧୫)

# ପ୍ରଜ୍ଞାପୁରୁଷଙ୍କ ପୁଣ୍ୟସ୍ମୃତିରେ

ବିଶିଷ୍ଟ ପୁଷ୍ଟିବିଜ୍ଞାନୀ, ଦାର୍ଶନିକ ଓ ସୁସାହିତ୍ୟିକ ଡକ୍ଟର ନୃସିଂହ ଚରଣ ପଣ୍ଡାଙ୍କର ସତାଅଶୀ ବର୍ଷ ବୟସରେ ଡିସେମ୍ବର ୩୦, ୨୦୧୬ଦିନ ଦେହାନ୍ତ ହୋଇଯାଇଛି । ପୁଷ୍ଟିବିଜ୍ଞାନ ବା ଆନିମଲ ନିଉଟ୍ରିସନ କ୍ଷେତ୍ରରେ ସେ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ । ଜାତୀୟ ତଥା ଆନ୍ତର୍ଜାତିକ ସ୍ତରର ଜର୍ଣ୍ଣାଲମାନଙ୍କରେ ବହୁ ଗବେଷଣା ନିବନ୍ଧ ସେ ଲେଖିଛନ୍ତି । ଏହା ସହିତ ଜଣେ ଦାର୍ଶନିକ ଭାବରେ ସେ ନିଜର ସ୍ୱାକ୍ଷର ରଖି ଯାଇଛନ୍ତି । ବିଜ୍ଞାନ ଓ ଦର୍ଶନ ଉଭୟ କ୍ଷେତ୍ରରେ ତାଙ୍କର ଯେଉଁ ଗଭୀର ପ୍ରବେଶ ଥିଲା ଓ ଯେପରି ପ୍ରଜ୍ଞାଦୀପ୍ତ ଗ୍ରନ୍ଥମାନ ସେ ରଚନା କରିଛନ୍ତି ତାହା ତାଙ୍କୁ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ କରାଇଛି । ଏହା ସହିତ ଓଡିଆ ସାହିତ୍ୟକୁ ତାଙ୍କର ଅବଦାନ ମଧ୍ୟ ଅତୁଳନୀୟ । ଓଡିଆ ଭାଷାରେ ଆଠଟି ସୁଖପାଠ୍ୟ ଉପନ୍ୟାସ, ଦୁଇଟି ଗଳ୍ପ ସଂକଳନ, ଚାରୋଟି ପ୍ରବନ୍ଧ ସଂକଳନ, ଚାରୋଟି କବିତା ସଂକଳନ ଓ ଛ'ଟି ଶିଶୁ ସାହିତ୍ୟ ତାଙ୍କର ସୃଜନ-ସୃଷ୍ଟି । ଏହାଛଡା ତାଙ୍କର ସୁଦୀର୍ଘ ଆତ୍ମଜୀବନୀ "ପାଷାଣଭେଦୀ ଗୁଳ୍ମର କାହାଣୀ" ଏକ ଅନବଦ୍ୟ କୃତି । ବିଜ୍ଞାନ, ଦର୍ଶନ ଓ ସାହିତ୍ୟ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ଅବଦାନ ଯେପରି ମୌଳିକ ସେହିପରି ଭାବଗର୍ଭକ । ସେ ବୃତ୍ତିଗତ ଗବେଷଣାରେ ପୁଷ୍ଟିବିଜ୍ଞାନୀ ହେଲେ ମଧ୍ୟ ପଦାର୍ଥବିଜ୍ଞାନ ଓ ସୃଷ୍ଟିବିଜ୍ଞାନ ବା କସ୍ମୋଲୋଜି କ୍ଷେତ୍ରରେ ତାଙ୍କର ଗଭୀର ପ୍ରବେଶ ରହିଥିଲା । ଓଡିଶା କୃଷି ବିଶ୍ୱବିଶ୍ୱବିଦ୍ୟାଳୟରେ ସେ ଆନିମଲ ନିଉଟ୍ରିସନର ପ୍ରଫେସର ଓ ଡିନ ରହି କର୍ମକ୍ଷେତ୍ରରୁ ଅବସର ନେଇଥିଲେ । କର୍ମକ୍ଷେତ୍ରରୁ ଅବସର ପରେ ଇମେରିଟସ୍ ସାଇଣ୍ଟିଷ୍ଟ ଭାବେ ସେ କିଛି ବର୍ଷ କାର୍ଯ୍ୟ କରିଛନ୍ତି । ପ୍ରତିଭା, ପ୍ରଜ୍ଞା ଓ ମାନବୀୟତା ତାଙ୍କ ପାଖରେ ସମନ୍ୱିତ ହୋଇଥିଲା । ସେ ଥିଲେ ପ୍ରଜ୍ଞାଦୀପ୍ତ ଚେତନାର ଅଧିକାରୀ ଓ ଏକ ଭାବମଗ୍ନ ବ୍ୟକ୍ତିତ୍ୱ ।

ଢେଙ୍କାନାଳ ଜିଲ୍ଲା କାମାକ୍ଷାନଗର ସବଡିଭିଜନର ତଳବେରଣା ଗ୍ରାମରେ ତାଙ୍କର ଜନ୍ମ ହୋଇଥିଲା ୧୯୨୯ରେ । ମାଟ୍ରିକ ପରୀକ୍ଷାରେ ପ୍ରଥମ ଦଶଜଣଙ୍କ ଭିତରେ ରହି ଉତ୍ତୀର୍ଣ୍ଣ ହେବା ପରେ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ପଢ଼ି ସେଥିରେ ମଧ୍ୟ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ଖୁବ୍ ମୁଷ୍ଟିମେୟ ଛାତ୍ର ଆଇ.ଏସ୍‌ସି.ରେ ପ୍ରଥମ ଶ୍ରେଣୀ

ପାଉଥିଲେ । ସେ ଚାହିଁଥିଲେ ଡାକ୍ତରୀ ବା ଇଂଜିନିୟରିଂ ବା ଯାହା କିଛି ପଢି ପାରିଥାନ୍ତେ । କିନ୍ତୁ ଉତ୍କଟ ଦାରିଦ୍ର୍ୟ ଭିତରେ ପଢ଼ିବା ସମ୍ଭବ ନ ଥିଲା । ଘଟଣାକ୍ରମେ ସେ ଯାଇ ମଥୁରାରେ ସରକାରୀ ସାହାଯ୍ୟରେ ପ୍ରାଣୀଚିକିତ୍ସା ବିଜ୍ଞାନ ପଢିଲେ । ସେଠାରେ ପ୍ରତି ବର୍ଷ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପ୍ରତିବର୍ଷ ସ୍ୱର୍ଣ୍ଣପଦକ ସହ ସାମଗ୍ରିକ ଭାବେ ଅଧିକ ନମ୍ବର ରଖିଥିବାରୁ ମୋଟରେ ପାଞ୍ଚଟି ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ସେ ସମୟକୁ ଓଡିଶାରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଆରମ୍ଭ ହୋଇନଥିଲା । ଅଳ୍ପ ଦିନ ଓଡିଶାରେ ପଶୁ ଡାକ୍ତର ଭାବେ କାର୍ଯ୍ୟକରି ସେ ଅଲ ଇଣ୍ଡିଆ ଭେଟେରାରୀ ରିସର୍ଚ୍ଚ ଇନଷ୍ଟିଚ୍ୟୁଟରୁ ପି.ଜି. ଡିଗ୍ରୀ ହାସଲ କଲେ । ଏହାପରେ ଓୟୁଟିରେ ଆସିଷ୍ଟାଣ୍ଟ ପ୍ରଫେସର ଭାବେ ଯୋଗ ଦେଲେ । ଏହାପରେ ଆମେରିକା ଯାଇ ମିସୋରୀ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରି ମାଷ୍ଟର ଅଫ ସାଇନ୍ସ ଡିଗ୍ରୀ ହାସଲ କରି ୧୯୬୨ରେ ଓଡିଶା ଫେରିଲେ । ପୁନଶ୍ଚ ଚାରିବର୍ଷ ପରେ ଆମେରିକା ୧୯୬୬ରେ ପିଏଚ୍.ଡି. କରିବାକୁ ଗଲେ । ଏହି ସମୟରେ ସେ ଏକ ବଡ ବିପର୍ଯ୍ୟୟର ସମ୍ମୁଖୀନ ହେଲେ । ତାଙ୍କ ଗାଇଡଙ୍କ ସହ ସେ ଏକ ସମ୍ମିଳନୀକୁ ଯାଇଥିଲେ । ସେ ଥିବା ହୋଟେଲର ରୁମ୍‌ରେ ଅସାବଧାନତାବଶତଃ ତାଙ୍କର ମୁଣ୍ଡ ଏକ ଲୁହାରଡ୍‌ରେ ପିଟି ହୋଇଗଲା ଓ ସେ ସମ୍ପୂର୍ଣ୍ଣ ଅନ୍ଧ ହୋଇଗଲେ । ରେଟିନାରେ ଆଘାତ ଯୋଗୁ ସେ ଯେ ଦୃଷ୍ଟିଶକ୍ତି ହରାଇଛନ୍ତି ଏହା ଜଣାପଡିଲା । ତାହାର ଚିକିତ୍ସା ଅତି ଜଟିଳ ଥିଲା ଓ ବିଶାଳ ଆମେରିକାରେ ମାତ୍ର ଚାରୋଟି ସ୍ଥାନରେ ଏହି ଅପରେସନ ହେଉଥିଲା । ପ୍ରଫେସର ଗାଇଡଙ୍କର ନିଷ୍ଠାପର ଉଦ୍ୟମ ଯୋଗୁ ତାଙ୍କର ଅପରେସନ ଗୋଟିଏ ଜାଗାରେ ହେଲା । ଦୀର୍ଘ ସମୟର ଚିକିତ୍ସା ପରେ ବାମ ଆଖିର ଦୃଷ୍ଟିଶକ୍ତି ଫେରିଲା ନାହିଁ ଓ ଡାହାଣ ଆଖିରେ ମାତ୍ର ଏକ ତୃତୀୟାଂଶ ଦୃଷ୍ଟି ଶକ୍ତି ଫେରିଲା । ଡ. ପଣ୍ଡା ନିଜ ଆତ୍ମଜୀବନରେ ତାଙ୍କ ଗୁରୁ, ଗୁରୁମା ଓ ଚିକିତ୍ସକଙ୍କର ଯେଉଁ ସାହାଯ୍ୟ ଓ ଉଦାର ମାନବିକତାର ଚିତ୍ର ଦେଇଛନ୍ତି ତାହା ଅତ୍ୟନ୍ତ ମର୍ମସ୍ପର୍ଶୀ । ଏହି ସ୍ଥିତିରେ ଓ ସ୍ୱଳ୍ପ ଦୃଷ୍ଟି ଶକ୍ତି ଭିତରେ ସେ ଆମେରିକା ବିଶ୍ୱବିଦ୍ୟାଳୟରୁ ନିର୍ଦ୍ଧାରିତ ସମୟ ଭିତରେ ପିଏଚ.ଡି କରି ଫେରିଲେ ।

ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ସେ ଜଣେ ପ୍ରଫେସର ଭାବେ ରହି କାର୍ଯ୍ୟକରି ଅବସର ନେଲେ । ସ୍ୱଳ୍ପ ଦୃଷ୍ଟି ଶକ୍ତି ସତ୍ତ୍ୱେ ଗବେଷଣା, ଅଧ୍ୟାପନା ଓ ସାହିତ୍ୟ-ସୃଜନରେ ନିଜକୁ ଉତ୍ସର୍ଗ କଲେ । ସେ ନିଜେ ଲେଖିଛନ୍ତି ଯେ ସେ ବିଶେଷ ପଢିପାରନ୍ତି ନାହିଁ, ହେଲେ ମନନଶୀଳତା ଭିତରେ ସେ ଅନେକ କଥା ଜାଣିପାରନ୍ତି । ସତେ ଯେପରି ତାଙ୍କର ତୃତୀୟ ନେତ୍ର ଖୋଲିଗଲା ଓ ସେ ପ୍ରଜ୍ଞାଲାଭ କରିପାରିଲେ ।

ଜୀବନର ଶେଷ ପର୍ଯ୍ୟନ୍ତ ତିନୋଟି ବିଷୟ ପ୍ରତି ସେ ପ୍ରତିବଦ୍ଧ ଥିଲେ। ବହୁ ଝଡଝଞ୍ଜା, ପ୍ରତିକୂଳ ପରିସ୍ଥିତି, କେତେକ ସହକର୍ମୀଙ୍କର ଅସୂୟା ଭାବ ଓ ଶାରୀରିକ ସମସ୍ୟା ଭିତରେ ଗବେଷଣା, ଲେଖକୀୟ ତନ୍ମୟତା ଓ ଆଧ୍ୟାତ୍ମିକ ସାଧନା ତାଙ୍କ ଜୀବନଧାରାରେ ଏକୀଭୂତ ହୋଇଥିଲା। ପଶୁ ଚିକିତ୍ସାବିଜ୍ଞାନର ଅଧ୍ୟାପକ ଭାବରେ ପୁଷ୍ଟିବିଜ୍ଞାନ ଥିଲା ତାଙ୍କର ଗବେଷଣାର ପରିସର। ଏ କ୍ଷେତ୍ରରେ ବହୁ ବୈଜ୍ଞାନିକ ନିବନ୍ଧମାନ ଦେଶ ବିଦେଶର ଜର୍ଣ୍ଣାଲମାନଙ୍କରେ ତାଙ୍କର ପ୍ରତି ବର୍ଷ ପ୍ରକାଶିତ ହୁଏ ଓ ଏ କ୍ଷେତ୍ରରେ ଆନ୍ତର୍ଜାତିକ ସ୍ତରରେ ସେ ଥିଲେ ଏକ ସୁନାମଧନ୍ୟ ଗବେଷକ। ବିଜ୍ଞାନ ସହ ବହୁ ମାନବୀୟ ବିଦ୍ୟା ବା ହ୍ୟୁମାନିଟିଜରେ ମଧ୍ୟ ତାଙ୍କର ଗଭୀର ପ୍ରବେଶ ଥିଲା। ମନୋବିଜ୍ଞାନ, ଦର୍ଶନ କ୍ଷେତ୍ରରେ ତାଙ୍କର ଯଥେଷ୍ଟ ପାରଦର୍ଶିତା ଥିଲା। ମାଇଣ୍ଡ ଓ ସୁପରମାଇଣ୍ଡ ନାମରେ ସେ ଯେଉଁ ଦୁଇଟି ଭଲ୍ୟୁମ ରଚନା କରିଛନ୍ତି ତାହା ଏକ ଅନବଦ୍ୟ କୃତି। ବିଶେଷକରି ଯେଉଁ ପୁସ୍ତକମାନ ତାଙ୍କୁ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ କରାଇଛି ସେଗୁଡିକ ଭିତରେ ମାୟା ଇନ ଫିଜିକ୍‌ସ, ଦି ଭାଇବ୍ରେଟିଂ ୟୁନିଭର୍ସ, ଦି ସାଇକ୍ଲିକ ୟୁନିଭର୍ସ ଓ ଇଣ୍ଟିଗ୍ରାଲ କସ୍ମୋଲୋଜି। ଏ ପ୍ରତ୍ୟେକଟି ପୁସ୍ତକ ଆନ୍ତର୍ଜାତିକ ସ୍ତରରେ ଆଦୃତ ଓ ପ୍ରତ୍ୟେକ ବହିର ଅନେକ ସଂସ୍କରଣ ହେବା ଦେଖାଯାଏ। ତାଙ୍କ ଜ୍ଞାନର ଦିଗନ୍ତ ଏତେ ବ୍ୟାପକ ଥିଲା ଓ ଏପରି ଗଭୀର ଥିଲା ତାହା ତାଙ୍କ ସମ୍ପର୍କରେ ଆସିଥିବା ବ୍ୟକ୍ତି ହିଁ ଅନୁଭବ କରିପାରିବେ।

ଏତଦ୍‌ବ୍ୟତୀତ ଓଡିଆ ସାହିତ୍ୟ କ୍ଷେତ୍ରକୁ ତାଙ୍କର ଅବଦାନ କିଛି କମ୍ ନୁହେଁ। ଆଠଟି ଉପନ୍ୟାସ ମଧ୍ୟରୁ ସପ୍ତସିନ୍ଧୁ ଏକ ବୈଦିକ ଉପନ୍ୟାସ ଓ ଏହା ଦୁଇଖଣ୍ଡ। ଚଣ୍ଡାଶୋକ, ଧର୍ମାଶୋକ, ଖାରବେଳ ତିନୋଟି ଐତିହାସିକ ଉପନ୍ୟାସ। ଅଶୋକ ଓ ଖାରବେଳ ଐତିହାସିକ ଚରିତ୍ରମାନଙ୍କୁ ନେଇ ଲିଖିତ ଉପନ୍ୟାସମାନ ଓଡିଆ ସାହିତ୍ୟରେ ଏକ ନୂତନ ଧାରା ସୃଷ୍ଟି କରିଥିବା ମନେହୁଏ। ସେହିପରି ମେଷ ପାଳକ, ଦଗ୍ଧ ଗୋଲାପର ଚିରବସନ୍ତ, ଅଶାନ୍ତ ଅନଳ ନୂତନ ଭାବଧାରା ଓ ନୂତନ ଶୈଳୀର ଉପନ୍ୟାସ। ଏହା ଛଡା ଗଳ୍ପ, କବିତା, ଶିଶୁ ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେ ନିଜ ସାରସ୍ୱତ ସାଧନାର ପରିଚୟ ଦେଇଛନ୍ତି। ଶତାଧିକ ପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି, ଯାହା ଚାରୋଟି ସଂକଳନରେ ପ୍ରକାଶ ପାଇଛି।

ନିଜର ଦାର୍ଶନିକ ସିଦ୍ଧାନ୍ତରେ ସେ ଥିଲେ ଜଣେ ଅଦ୍ୱୈତ ବ୍ରହ୍ମବାଦୀ। ସଂସ୍କୃତ ଭାଷାରେ ସେ ଥିଲେ ଅତି ଧୂରୀଣ। ଭଗବଦ୍‌ଗୀତା ଉପରେ ସେ ଯେଉଁ ସମୀକ୍ଷାମୂଳକ ବୃହତ୍ ଗ୍ରନ୍ଥଟି ଲେଖିଛନ୍ତି ତାହା ତାଙ୍କ ଦାର୍ଶନିକ ଦୃଷ୍ଟିର ପରିଚୟ ଦିଏ। ଗୀତା ଉପରେ ବହୁ ଭାଷ୍ୟ ଲେଖାଯାଇଛି ତେବେ ତାଙ୍କର ଭାଷ୍ୟ ଅତ୍ୟନ୍ତ ଭାବଗର୍ଭକ ଓ ପାଣ୍ଡିତ୍ୟପୂର୍ଣ୍ଣ

ମନେହୁଏ। ଏ ସବୁ ସହିତ ତନ୍ତ୍ର ଓ ଯୋଗ ଉପରେ ମଧ୍ୟ ତାଙ୍କର କିଛି ନୂତନ ବିଚାର ସମ୍ମିଳିତ ପୁସ୍ତକ ରହିଛି। ସେ ଥିଲେ ନୀତିବାନ, ମାନବ-ଦରଦୀ ଓ ଏକ ଆଧ୍ୟାତ୍ମିକ ବ୍ୟକ୍ତି। ଆତ୍ମଜୀବନୀର ଗୋଟିଏ ସ୍ଥାନରେ ଲେଖିଛନ୍ତି- "ମୋ ମନରେ ଏକ ୟୁଟୋପିଆ ବସା ବାନ୍ଧିକରି ରହିଛି। ସମଗ୍ର ପୃଥିବୀରେ ଲୋକେ ରିଲିଜନ୍‌ବିହୀନ ହୋଇଗଲେ ଭଲହୁଅନ୍ତା।" ପ୍ରଜ୍ଞା ଓ ମାନବବାଦର ସୁନ୍ଦର ସମନ୍ୱୟ ତାଙ୍କ ବ୍ୟକ୍ତିତ୍ୱରେ ହୋଇଥିବା ଦେଖାଯାଏ।

ତାଙ୍କ ପ୍ରଜ୍ଞା, ପାଣ୍ଡିତ୍ୟ ଓ ପାରଦର୍ଶିତା ତାଙ୍କ ପାଇଁ ବେଳକେ ସମସ୍ୟା ଆଣିଛି ଓ କିଛି ବ୍ୟକ୍ତି ତାଙ୍କ ପ୍ରତି ନାନା ଅସୂୟା ବ୍ୟକ୍ତ କରିଛନ୍ତି। ତେବେ ସେ କାହା ପ୍ରତି ଅନ୍ୟାୟ କରିନାହାନ୍ତି ଯଦିବା ଅନେକ ଥର ଅନ୍ୟମାନଙ୍କ ଆକ୍ରୋଶର ଶିକାର ହୋଇଛନ୍ତି। ଏକ ଅପରିଗ୍ରାହ୍ୟ ବ୍ୟକ୍ତି ଭାବେ ସେ ଜୀବନ ବିତାଇଛନ୍ତି। "ତେନ ତ୍ୟକ୍ତେନ ଭୁଂଜିଆ" ହିଁ ଜୀବନର ଆଦର୍ଶ ହୋଇରହିଛି। ଉପନିଷଦର ଏହି ବାଣୀ ତ୍ୟାଗ କରିବାଦ୍ୱାରା ଭୋଗ କର ତାଙ୍କୁ ସର୍ବଦା ପ୍ରଭାବିତ କରିଛି।

ନିଜ ବିଷୟରେ ଆତ୍ମଜୀବନୀରେ ଲେଖିଛନ୍ତି- "ମୁଁ ମୋ ଜୀବନରେ ଏକ ବ୍ରଡ-ସ୍ପେକ୍‌ଟ୍ରମ ପରିବେଶ ପାଇଛି; ଗଡଜାତିଆ, ଢେଙ୍କାନାଳିଆ, ମଫସଲିଆ, ଜଙ୍ଗଲିଆ ପରିବେଶରୁ ଆରମ୍ଭ କରିଛି; ନ୍ୟୁୟର୍କ, ଶିକାଗୋ, ଲଣ୍ଡନ, ପ୍ୟାରିସ, ବର୍ଲିନ ଇତ୍ୟାଦି ପରିବେଶରେ କେତେ କାଳ ବଢିଛି। ପୁଣି ମୁଁ ଫେରିଆସିଛି ମୋ ଉତ୍କଳୀୟ ପରିବେଶକୁ। କିନ୍ତୁ ମୋ ମନ ମୁତାବକ ପରିବେଶ ଆଉ ମୁଁ ପାଉନାହିଁ। ପରମେଶ୍ୱରଙ୍କୁ ପ୍ରାର୍ଥନା କରୁଛି : "ହେ ପ୍ରଭୁ, ପର ଜୀବନରେ ମୋତେ ଏମିତି ପରିବେଶ ଦିଅ, ଯେଉଁଠାରେ ମାନବୀୟତା ଥିବ। ଶାନ୍ତି, ସମୃଦ୍ଧି, ସଂସ୍କୃତି ଓ ସଭ୍ୟତା ଥିବ।"

ଏ ମହାନ୍ ସ୍ରଷ୍ଟାଙ୍କ ପାଇଁ ଅନ୍ତରର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି।

(ପ୍ରଗତିବାଦୀ, ୦୬.୦୧.୨୦୧୬)

# ବୁଦ୍ଧଙ୍କ ବାର୍ତ୍ତା

ମୁକ୍ତଚିନ୍ତକମାନେ ଗୌତମ ବୁଦ୍ଧଙ୍କର ଏକ ବାଣୀକୁ ବହୁ ସମୟରେ ଉଲ୍ଲେଖ କରିଥାନ୍ତି। ସେହି ବାଣୀଟି ହେଲା- "ତୁମେ ଯାହା ପଢ଼ିଛ କିମ୍ବା ଯାହା ତୁମକୁ କୁହାଯାଇଛି (ତାହା ମୁଁ କହିଥିଲେ ମଧ୍ୟ) ତାହା ବିଶ୍ୱାସ କରିନିଅ ନାହିଁ। ଯାହା ପ୍ରାଚୀନ ପାଣ୍ଡୁଲିପିରେ କୁହାଯାଇଛି, ଯାହା ତୁମ ରାଜ୍ୟରେ ବିଶ୍ୱାସ କରାଯାଉଛି, ଯାହା ପିଲାଟି ବେଳୁ ତୁମକୁ ବିଶ୍ୱାସ କରିବାକୁ କୁହାଯାଉଛି ତାହା ବିଶ୍ୱାସ କରିନିଅ ନାହିଁ। ସତ୍ୟ ବିଷୟରେ ଅନୁଶୀଳନ କର, ସେହି ଅନୁସନ୍ଧାନରୁ ଯଦି ଅନୁଭବ କର ଯେ ଏହି ଭାବନା ପ୍ରତ୍ୟେକଙ୍କର ମଙ୍ଗଳ କରିପାରିବ, ତେବେ ତାହା ବିଶ୍ୱାସ କର। ଯେଉଁ ସତ୍ୟରେ ଉପନୀତ ହେଲ, ସେହି ଆଦର୍ଶରେ ଜୀବନକୁ ପରିଚାଳିତ କର; ଅନ୍ୟମାନେ ସେହି ଆଦର୍ଶରେ ବଞ୍ଚିବା ପାଇଁ ସେମାନଙ୍କୁ ସାହାଯ୍ୟ କର।"

ବୁଦ୍ଧଙ୍କର ଏହି ବକ୍ତବ୍ୟଟି ଏକ ମହତ୍ତର ଜୀବନବୋଧର ସୂଚନା ଦିଏ। ଜ୍ଞାନ ବିଜ୍ଞାନର ବିକାଶ କ୍ଷେତ୍ରରେ ମୁକ୍ତ ମନ, ସତ୍ୟନିଷ୍ଠତା ଓ ବିଚାରଶୀଳ ଦୃଷ୍ଟି ନିର୍ଣ୍ଣାୟକ ମନେହୁଏ। ଏକ ଆଦିମ ସ୍ଥିତିରୁ ବୌଦ୍ଧିକ କୌତୂହଳତା ମଧ୍ୟ ଦେଇ ମଣିଷ ସଭ୍ୟତାର କ୍ରମବିକାଶ ଘଟିଛି। ସଭ୍ୟତାରେ ଯାହା କିଛି ବିକାଶ ହୋଇଛି ତାହା ପଛରେ ମୁଷ୍ଟିମେୟ ବ୍ୟକ୍ତିଙ୍କର ଜୀବନବ୍ୟାପୀ ସାଧନା ରହିଛି। ଜଣେ ଜଣେ ବ୍ୟକ୍ତିଙ୍କର ଗଭୀର ଅନୁଶୀଳନ, ଉଦ୍ଭାବନ, ଆବିଷ୍କାର, ମାନବିକ ଦୃଷ୍ଟି, ସମ୍ବେଦନଶୀଳ ହୃଦୟତାରୁ ସଭ୍ୟତାର ଉତ୍ତରଣ ଘଟିଛି। ସବୁ ସଭ୍ୟତାରେ ଏହିପରି ବିଚାରଶୀଳ ଓ ସୃଜନଶୀଳ ବ୍ୟକ୍ତିମାନେ ରହିଛନ୍ତି ଓ ସଭ୍ୟତାକୁ ବୌଦ୍ଧିକ, ସାଂସ୍କୃତିକ ଓ ମାନବିକ ଲକ୍ଷ୍ୟ ଦେବାରେ ସେମାନେ ଏକ ନିର୍ଣ୍ଣାୟକ ଭୂମିକା ନେଇଛନ୍ତି। ସେହି ମାନଦଣ୍ଡରେ ବିଚାର କଲେ ବୁଦ୍ଧଙ୍କର ଜୀବନଦର୍ଶନ ଓ ନୀତିବୋଧ ଭିତରେ ଏକ ବିଚାରଶୀଳ ଦୃଷ୍ଟି ଓ ମହାମାନବୀୟ ଚେତନାର କେତେକ ସ୍ଫୁଲିଙ୍ଗ ଦୃଷ୍ଟିଗୋଚର ହୁଏ।

ଜଣେ ମହାକାଂକ୍ଷୀ ବ୍ୟକ୍ତି ଭିତରେ ପରହିତବାଦୀ ଜୀବନଦୃଷ୍ଟି ପ୍ରାଧାନ୍ୟ ନେଇଥାଏ। ଯେଉଁମାନେ ଅନ୍ୟର ଦୁଃଖ ଦୁର୍ଦ୍ଦଶାକୁ ଗଭୀର ଭାବେ ଅନୁଭବ କରନ୍ତି ଓ ମାନବୀୟ ଦୁଃଖକୁ ଦୂର କରିବାକୁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରନ୍ତି ସେମାନେ ନିଶ୍ଚିତଭାବେ ମାନବବାଦୀ। ଯେଉଁ

ଜୀବନଦୃଷ୍ଟି ମାନବିକ ହିତସାଧନ ପ୍ରତି ବୃହତ୍ତର ସମାଜକୁ ସଚେତନ କରାଏ ତାହା ଏକ ବୁଦ୍ଧିଦୀପ୍ତ ଚେତନା କହିଲେ ଅତ୍ୟୁକ୍ତି ହେବ ନାହିଁ। ଏକ ବୁଦ୍ଧିଦୀପ୍ତ ଚେତନା ମାନବୀୟ ଉତ୍କର୍ଷ ଓ ସମ୍ବେଦନଶୀଳତାକୁ ପ୍ରାଧାନ୍ୟ ଦେଇଥାଏ। ପ୍ରତ୍ୟେକ ବ୍ୟକ୍ତିର ସାମାଜିକ ଚେତନା କେତେ ଅଧିକ ବ୍ୟାପ୍ତ ହୋଇପାରିବ, ବୃହତ୍ତର ସମାଜ ପ୍ରତି ଉତ୍ତରଦାୟୀ ହେବ ଓ ନିଜର କର୍ତ୍ତବ୍ୟବୋଧ କେତେ ଅଧିକ ନ୍ୟାୟନିଷ୍ଠ ହେବ ତାହା ଉପରେ ଜୀବନର ଗୁଣାତ୍ମକ ମାନ ଅନେକାଂଶରେ ନିର୍ଭର କରେ। ଯେଉଁ ଜୀବନଦର୍ଶନ ବ୍ୟକ୍ତି ଓ ସମାଜକୁ ଏକ ବିଚାରଶୀଳ ଓ ମାନବିକ ସଂପ୍ରୀତିର ପ୍ରେରଣା ଦିଏ ତାହା ଏକ ଉନ୍ନତ ଦର୍ଶନ କହିଲେ ଅତ୍ୟୁକ୍ତି ହେବ ନାହିଁ।

ବିଭିନ୍ନ ସଭ୍ୟତାର ଇତିହାସରେ କୌଣସି କୌଣସି କାଳଖଣ୍ଡରେ ଏକ ବଡ ସାଂସ୍କୃତିକ ଆଲୋଡନ ଆସିଥିବା ଦୃଷ୍ଟିଗୋଚର ହୁଏ। ସଂପ୍ରତି ଯାହାକୁ ସବୁ 'ଧର୍ମ' ବା ରିଲିଜିଅନ୍ କୁହାଯାଉଛି ତାହା ବିଭିନ୍ନ ଭୌଗୋଳିକ ଭୂଖଣ୍ଡର ଗୋଟିଏ ଗୋଟିଏ ବଡ ସାଂସ୍କୃତିକ ପ୍ରବାହ ବୋଲି ଧରାଯାଉଛି। ପ୍ରତ୍ୟେକ ଧର୍ମ ବହୁ ପରେ ଏକ ଏକ ଆନୁଷ୍ଠାନିକ ରୂପ ନେଇଛି ଓ ଶହ ଶହ ବର୍ଷର ବ୍ୟବଧାନ ଭିତରେ ଏହା ସହ ବହୁ ତାତ୍ତ୍ୱିକ ବିଚାର, କର୍ମକାଣ୍ଡ, ନୀତିବୋଧ, ପବିତ୍ର ଗ୍ରନ୍ଥ, ନାନା କାହାଣୀ, ରୂପକଳ୍ପ ଓ ଗୋଷ୍ଠୀ ସଂଶ୍ଳିଷ୍ଟ ହୋଇଯାଇଛି। ବୌଦ୍ଧଧର୍ମ ଓ ଜୈନଧର୍ମ ଦୁଇଟିକୁ ବାଦ୍ ଦେଲେ ଅନ୍ୟ ସମସ୍ତ ଧର୍ମ ସହ 'ଈଶ୍ୱର' ଭାବନା ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ହୋଇରହିଛି। ଏପରିକି ପ୍ରତ୍ୟେକ ଧର୍ମ ପରମ୍ପରାରେ ଏହାର ଧର୍ମଶାସ୍ତ୍ରର ବାଣୀକୁ ଅକାଟ୍ୟ, ଅଲଙ୍ଘନୀୟ, ଶାଶ୍ୱତ ଓ ଈଶ୍ୱରଦତ୍ତ ଜ୍ଞାନ ବୋଲି ବିଶ୍ୱାସ କରାଯାଇଛି। ଈଶ୍ୱର-କୈନ୍ଦ୍ରିକ ଜୀବନ-ଦୃଷ୍ଟି ଭିତରେ ସବୁ କିଛିକୁ ଈଶ୍ୱର-ସୃଷ୍ଟ ବୋଲି ସହଜରେ ବିଶ୍ୱାସ କରାଯାଇଛି। ଈଶ୍ୱର ହିଁ ଜୀବନର ଓ ପ୍ରକୃତିର ଘଟଣା ପ୍ରବାହକୁ ନିୟନ୍ତ୍ରିତ କରନ୍ତି ଓ ସେ ହେଉଛନ୍ତି ସବୁର ସ୍ରଷ୍ଟା, ପାଳନକର୍ତ୍ତା ଓ ସଂହର୍ତ୍ତା। ସେହିପରି ଧର୍ମ ପୃଷ୍ଠଭୂମିରେ ଏକ ପାରଲୌକିକ ଜୀବନଦୃଷ୍ଟି ବ୍ୟକ୍ତି ଓ ସମାଜର ଜୀବନବୋଧକୁ ନାନା ଭାବରେ ପ୍ରଭାବିତ କରିଆସିଛି। ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ଓ ଈଶ୍ୱର ଉପଲବ୍ଧିକୁ ଜୀବନର ଅନ୍ତିମ ଲକ୍ଷ୍ୟ ବୋଲି ବିଶ୍ୱାସ କରାଯାଇଛି। ସେହି ଅବବୋଧରେ କେତେକ ଦର୍ଶନରେ ବାସ୍ତବ ଜଗତକୁ ମିଥ୍ୟା, ମାୟା ବୋଲି ବର୍ଣ୍ଣନା କରାଯାଇଛି ଓ ଏକ କାଳ୍ପନିକ ପାରଲୌକିକ ସ୍ଥିତିକୁ ବାସ୍ତବ ଓ ସତ୍ୟ ବୋଲି ସ୍ୱୀକାର କରାଯାଇଛି। ସ୍ୱର୍ଗ, ମୁକ୍ତି, ମୋକ୍ଷ ଇତ୍ୟାଦିର କେତେ ଚମତ୍କାର କଳ୍ପନା କେତେକ ଧର୍ମଗ୍ରନ୍ଥରେ ନାନା ରୂପରେ ଅଭିବ୍ୟକ୍ତ ହୋଇଛି। ସେହି ପାରଲୌକିକ ଲକ୍ଷ୍ୟ ହାସଲ ପାଇଁ ନାନା ପୂଜା, ପ୍ରାର୍ଥନା, କର୍ମକାଣ୍ଡ, କୃଚ୍ଛ୍ର ସାଧନାର ବାର୍ତ୍ତା ଦିଆଯାଇଛି। ଧର୍ମଶାସ୍ତ୍ରରେ ବ୍ୟକ୍ତ ହୋଇଥିବା ନୀତିବୋଧକୁ ଅପରିବର୍ତ୍ତନୀୟ ଓ ଶାଶ୍ୱତ ବୋଲି ଗ୍ରହଣ କରିନିଆଯାଇଛି।

ଏହି ପରିପ୍ରେକ୍ଷୀରେ ଧର୍ମ ସହ ବିଶ୍ୱାସକୁ ଅଭିନ୍ନ କରାଯାଇଛି। ଧର୍ମମାନଙ୍କରେ ବିଶ୍ୱାସ କରାଯାଇଛି ଯେ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ରହିଛି ଓ ଆତ୍ମାମାନେ ବ୍ୟକ୍ତି ସତ୍ତାର ମୃତ୍ୟୁ ପରେ ମଧ୍ୟ ଶରୀର-ରହିତ ସ୍ଥିତିରେ ରହିଥାନ୍ତି। ଅବଶ୍ୟ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଜଣାଯାଏ ଯେ ଆତ୍ମାର ସ୍ୱରୂପ, ସ୍ଥିତି ଓ ମୁକ୍ତିର ଭାବନା ଧର୍ମମାନଙ୍କ ଭିତରେ ସମାନ ନୁହଁ। ପ୍ରତ୍ୟେକ ଧର୍ମ ନିଜର ନିଜସ୍ୱ ବିଶ୍ୱାସ ଆଧାରରେ ବିଭିନ୍ନ କାଳ୍ପନିକ କାହାଣୀ ସୃଷ୍ଟି କରିଛି। କେତେକ ଧର୍ମରେ ପୁନର୍ଜନ୍ମବାଦର ଧାରଣା ରହିଛି, ଅନ୍ୟ କେତେକ ଧର୍ମରେ ପୁନର୍ଜନ୍ମବାଦର ବିଶ୍ୱାସ ନାହିଁ। ସ୍ୱର୍ଗପ୍ରାପ୍ତି, ନରକଗତିର ଭାବନା ଧର୍ମମାନଙ୍କରେ ପୃଥକ୍ ପୃଥକ୍ ହୋଇ ରହିଛି। କେବଳ ଆତ୍ମା ପ୍ରସଙ୍ଗ ନୁହଁ, ବହୁ ତାତ୍ତ୍ୱିକ ପ୍ରଶ୍ନ ଉପରେ ବି ଧର୍ମମାନ ଭିନ୍ନ ଭିନ୍ନ ସିଦ୍ଧାନ୍ତର ଅବତାରଣା କରିବା ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ସ୍ପଷ୍ଟ ହୋଇଥାଏ।

ଏହି ଆଲୋଚନା ପୃଷ୍ଠଭୂମିରେ ବୌଦ୍ଧଧର୍ମର କେତେକ ଆଧୁନିକ ବ୍ୟାଖ୍ୟାକାର ବୁଦ୍ଧଙ୍କ ମୂଳ ସିଦ୍ଧାନ୍ତମାନଙ୍କୁ ଚିରାଚରିତ "ଧର୍ମ" ସହ ସଂଶ୍ଳିଷ୍ଟ କରୁନାହାନ୍ତି। ସେମାନେ ଯୁକ୍ତି ପ୍ରଦର୍ଶନ କରିଥାନ୍ତି ଯେ ବୁଦ୍ଧ ବିଶ୍ୱାସକୁ ଗୁରୁତ୍ୱ ଦେଇ ନାହାନ୍ତି ବରଂ ସବୁ କ୍ଷେତ୍ରରେ ମୁକ୍ତ ମନ ଓ ବିଚାରଶୀଳତାକୁ ପ୍ରାଧାନ୍ୟ ଦେଇ ଆସିଛନ୍ତି। ସେହିପରି ବୁଦ୍ଧ ଈଶ୍ୱର ଭାବନା ଉପରେ ନୀରବତା ଅବଲମ୍ବନ କରିଛନ୍ତି। ଈଶ୍ୱରଙ୍କୁ ନେଇ କୌଣସି ଆଲୋଚନା ବୁଦ୍ଧଙ୍କ ବିଚାର ପରିସରରେ ସ୍ଥାନ ପାଇ ନାହିଁ। ସେହିପରି ଆତ୍ମା ଯେ ଏକ ସତ୍ତା ଏହାକୁ ମଧ୍ୟ ବୁଦ୍ଧ ଗ୍ରହଣ କରିନାହାନ୍ତି। 'ଅନାତ୍ମାବାଦ' ବୁଦ୍ଧଙ୍କ ବିଚାର ପୃଷ୍ଠଭୂମିରେ ଏକ ନିଷ୍କର୍ଷ ଭାବେ ଗୃହୀତ ହୋଇଛି।

ବୌଦ୍ଧଧର୍ମ ଓ ଦର୍ଶନର ଜଣେ ବିଶିଷ୍ଟ ବ୍ୟାଖ୍ୟାକାର ବୁଦ୍ଧଙ୍କୁ ଜଣେ ମାନବବାଦୀ, ସତ୍ୟସନ୍ଧାନୀ, କ୍ରାନ୍ତିକାରୀ ଚିନ୍ତାନାୟକ ଭାବେ ଚିତ୍ରଣ କରିଛନ୍ତି। ଡି.ଡି. ବାନ୍ଦିଷ୍ଟେ "ଧମ୍ମ" ନାମରେ ଏକ ଗବେଷଣାଧର୍ମୀ ପୁସ୍ତକ ଇଂରାଜୀରେ ଲେଖି ବୁଦ୍ଧଙ୍କ ଦର୍ଶନର ଏକ ତର୍କସଙ୍ଗତ ଓ ଜୀବନଧର୍ମୀ ବ୍ୟାଖ୍ୟା ପ୍ରଦାନ କରିଛନ୍ତି। ତାଙ୍କ ପୁସ୍ତକରେ ବାନ୍ଦିଷ୍ଟେ ବୁଦ୍ଧଙ୍କର ବିଭିନ୍ନ ସିଦ୍ଧାନ୍ତକୁ ସାଂପ୍ରତିକ ବିଚାର ପ୍ରସଙ୍ଗରେ ବିଶ୍ଳେଷଣ କରି ଏକ ନୂତନ ଦୃଷ୍ଟିର ସଂରଚନା ଦେଇଛନ୍ତି। ବୁଦ୍ଧ ତାଙ୍କ ସାମଗ୍ରିକ ବିଚାର ପରିପ୍ରେକ୍ଷୀରେ କୌଣସି ପାରଲୌକିକ ବିଶ୍ୱାସ, ଅତୀନ୍ଦ୍ରିୟ ସ୍ଥିତିର ଅବତାରଣା କରିନାହାନ୍ତି, ଯାହା ସାଧାରଣତଃ ଧର୍ମ ସହ ସଂଶ୍ଳିଷ୍ଟ ହେବା ଦେଖାଯାଏ। ସେହିପରି ଜୀବନ-ପ୍ରବାହରୁ ସକଳ ଦୁଃଖ, ଦୁର୍ଦ୍ଦଶାକୁ ଦୂର କରିବାକୁ ବୁଦ୍ଧ ସର୍ବଦା ପ୍ରାଧାନ୍ୟ ଦେଇଛନ୍ତି। ଏକ ଦୁଃଖରହିତ ଜୀବନ ପାଇଁ ସେ ଯେଉଁ ଗମ୍ଭୀର ସଂପୃକ୍ତି

ବ୍ୟକ୍ତ କରିଛନ୍ତି ତାହା ଏକ ଅନନ୍ୟ ମାନବବାଦୀ ଜୀବନବୋଧ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏକ ବାସ୍ତବବାଦୀ ଓ ନ୍ୟାୟନିଷ୍ଠ ଜୀବନ ନିର୍ବାହ ପାଇଁ ବୁଦ୍ଧ ଗଭୀର ନିବେଦନ ପ୍ରକାଶ କରିଛନ୍ତି। ଜୀବନ ପ୍ରତି ଓ ସମାଜ ପ୍ରତି ସର୍ବଦା ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରିବାକୁ ପ୍ରେରଣା ଦେଇଛନ୍ତି। କୌଣସି ଭାବନାକୁ ଶାଶ୍ୱତ ବା ଚିରନ୍ତନ ବୋଲି ଗ୍ରହଣ ନକରି ଏହା ସାଂପ୍ରତିକ ଜ୍ଞାନର ମାନଦଣ୍ଡରେ ମୂଲ୍ୟାୟନ କରିବାକୁ ସେ ଭାବନା ବ୍ୟକ୍ତ କରିଛନ୍ତି। ଅର୍ଥାତ୍ ଜ୍ଞାନର ଦିଗନ୍ତ ଯେ ଏକ ଉନ୍ମୁକ୍ତ ଓ କ୍ରମ-ପ୍ରସାରିତ ଧାରା ଏହି ସତ୍ୟରେ ବିଶ୍ୱାସ ରଖିଛନ୍ତି। ଜ୍ଞାନ, ବିଜ୍ଞାନ, ସତ୍ୟ, ନ୍ୟାୟ, ନୀତିବୋଧ ସାମାଜିକ ବିକାଶଧାରାରେ ଯେ ସର୍ବଦା ଅଗ୍ରଗାମୀ ଏହିପରି ଏକ ଜୀବନଦର୍ଶନର ଝଲକ ବୁଦ୍ଧ ପ୍ରକାଶ କରିଛନ୍ତି। ମାନବୀୟ ଚେତନା ହିଁ ସକଳ ମୂଲ୍ୟାୟନର ମାନଦଣ୍ଡ ଓ ବିକାଶର ଦିଗଦର୍ଶକ ଏହା ବୁଦ୍ଧ ତାଙ୍କ ତତ୍ତ୍ୱ ଆଧାରରେ ସୂଚାଇଛନ୍ତି। 'ନିର୍ବାଣ'ର ମଧ୍ୟ ଏକ ମାନବିକ ବିଶ୍ଳେଷଣ କରାଯାଉଛି। ନିର୍ବାଣ ବ୍ୟକ୍ତିସତ୍ତାର ବିଲୟ ବା କୌଣସି ପାରଲୌକିକ ପ୍ରାପ୍ତିର ସୂଚନା ଦେଉ ନାହିଁ ବରଂ ଏକ ପ୍ରଜ୍ଞାଦୀପ୍ତ ଉତ୍ତରଣକୁ ସୂଚାଉଛି। କରୁଣା ବା ସମ୍ବେଦନଶୀଳତା, ମୁଦିତା ଅର୍ଥାତ୍ ବୃହତ୍ତର ସମାଜର ସୁଖ ଶାନ୍ତି ସହ ବ୍ୟକ୍ତିର ସୁଖ ଶାନ୍ତି ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟର ଭାବନା, ମୈତ୍ରୀ ଅର୍ଥାତ୍ ସମଗ୍ର ମାନବ ସମାଜକୁ ମିତ୍ରର ଦୃଷ୍ଟିରେ ଦେଖିବାର ଅନୁଭବ ଓ ଉପେକ୍ଷା ଅର୍ଥାତ୍ ସକଳ ଭେଦଭାବ ଜନିତ ମାନସିକତାରୁ ମୁକ୍ତି ହିଁ ପ୍ରଜ୍ଞାଦୀପ୍ତ ଚେତନାର ସୂଚନା ଦିଏ। ନିର୍ବାଣ ପ୍ରତୀତି ସହ କରୁଣା, ମୁଦିତା, ମୈତ୍ରୀ ଓ ଉପେକ୍ଷା ଭାବନାକୁ ସଂଶ୍ଳିଷ୍ଟ କରି ଏହାର ମାନବିକ ଦିଗଟିକୁ ଆଧୁନିକ ବ୍ୟାଖ୍ୟାକାରମାନେ ପ୍ରାଧାନ୍ୟ ଦେଉଛନ୍ତି। ମୋଟ ଉପରେ କହିଲେ ଆଧୁନିକ ପରିଭାଷାରେ ବୁଦ୍ଧ ଏକ ରିଲିଜିଅନ୍‌ର ଅବତାରଣା କରି ନାହାନ୍ତି। ବରଂ ଏକ ମାନବବାଦୀ ଜୀବନ ଦର୍ଶନ ଓ ମହତ୍ତର ଜୀବନବୋଧର ଏକ ସାର୍ବଜନୀନ ଚିତ୍ର ପ୍ରଦାନ କରିଛନ୍ତି।

(ପ୍ରଗତିବାଦୀ, ୨୪.୦୨.୨୦୧୬)

# ଜଣେ ଦାର୍ଶନିକଙ୍କ ସ୍ମୃତିରେ

ବିଂଶ ଶତାବ୍ଦୀର ଜଣେ ପ୍ରଭାବଶାଳୀ ଦାର୍ଶନିକ ଭାବେ ବର୍ଟ୍ରାଣ୍ଡ ରସେଲ ଏକ ସୁପରିଚିତ ନାମ। ରସେଲଙ୍କ ଜନ୍ମ ମେ' ମାସ ୧୮ ତାରିଖ ୧୮୭୨ ମସିହା। ଦାର୍ଶନିକମାନେ ଚିନ୍ତାରାଜ୍ୟର ବିପ୍ଳବୀ। ଯେଉଁମାନେ ଚିନ୍ତାରାଜ୍ୟକୁ କିଛି ମୌଳିକ ଅବଦାନ ଦେଇଛନ୍ତି ସେମାନେ ସାଧାରଣତଃ ଦାର୍ଶନିକ। ଅନ୍ୟ ଭାବରେ କହିଲେ ଦାର୍ଶନିକମାନେ ସଭ୍ୟତାର ପଥ ପ୍ରଦର୍ଶକ। ବର୍ଟ୍ରାଣ୍ଡ ରସେଲ ଏକ ବହୁମୁଖୀ ପ୍ରତିଭା ଓ ମଣିଷର ବୌଦ୍ଧିକ ବିକାଶରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ। ଦର୍ଶନ, ନୀତିଦର୍ଶନ, ଗଣିତ, ମନୋବିଜ୍ଞାନ, ସମାଜବିଜ୍ଞାନ, ତର୍କଶାସ୍ତ୍ର ଓ ଧର୍ମଦର୍ଶନକୁ ରସେଲଙ୍କର ମୌଳିକ ଅବଦାନ ରହିଛି। ପ୍ରାୟ ସତୁରୀ ଖଣ୍ଡ ଉଚ୍ଚ ମାନର ପୁସ୍ତକ ଓ ସହସ୍ରାଧିକ ନିବନ୍ଧ ସେ ଲେଖିଛନ୍ତି। ଦର୍ଶନ ଓ ବୌଦ୍ଧିକ ପ୍ରସଙ୍ଗ ବ୍ୟତୀତ ବହୁ ବୈଜ୍ଞାନିକ ସିଦ୍ଧାନ୍ତମାନଙ୍କୁ ବିଶ୍ଳେଷଣ କରିବାରେ ନିଜର ପାରଦର୍ଶିତା ଦେଖାଇଛନ୍ତି। ତାଙ୍କ ପ୍ରତିଭାର ସ୍ୱୀକୃତି ସ୍ୱରୂପ ବହୁ ଆନ୍ତର୍ଜାତିକ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି। ଏହି ବ୍ରିଟିଶ ଦାର୍ଶନିକଙ୍କୁ ଇଂଲଣ୍ଡର ସର୍ବୋଚ୍ଚ ନାଗରିକ ସମ୍ମାନ ଅଡର ଅଫ ମେରିଟ ୧୯୪୯ରେ ପ୍ରଦାନ କରାଯାଇଥିଲା। ଏହାପରେ ୧୯୫୦ରେ ନୋବେଲ ପୁରସ୍କାର ଓ ୧୯୫୭ରେ ୟୁନେସ୍କୋ ଦ୍ୱାରା ପ୍ରଦତ୍ତ ବିଜୁ ପଟ୍ଟନାୟକଙ୍କ ସ୍ଥାପିତ କଳିଙ୍ଗ ପୁରସ୍କାର ପରି ଅନେକ ଆନ୍ତର୍ଜାତିକ ସମ୍ମାନ ଲାଭ କରିଛନ୍ତି।

ରସେଲଙ୍କର ଆତ୍ମଜୀବନୀ ତିନି ଭାଗରେ ୧୯୬୭ରୁ ପ୍ରଥମେ ପ୍ରକାଶ ପାଇ ଶେଷରେ ଗୋଟିଏ ଖଣ୍ଡରେ ଉପଲବ୍ଧ ହେଲା। ତାଙ୍କର ଆତ୍ମଜୀବନୀ ଏକ ବିଶିଷ୍ଟ କୃତି ଭାବେ ବିଶ୍ୱର ବୁଦ୍ଧିଜୀବୀ ମହଲରେ ସ୍ୱୀକୃତ। ରସେଲ ତାଙ୍କ ଆତ୍ମଜୀବନୀର ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି ଯେ ତିନୋଟି ବିଷୟ ତାଙ୍କ ଜୀବନଧାରାକୁ ଗଭୀର ଭାବେ ପ୍ରଭାବିତ କରିଆସିଛି। ଜ୍ଞାନ ଅର୍ଜନ ପାଇଁ କୌତୂହଳ ପ୍ରବଣତା, ବିଶ୍ୱର ଦୁସ୍ଥ ଜନଗଣଙ୍କ ପାଇଁ ସମ୍ବେଦନଶୀଳ ମନୋଭାବ ଓ ପ୍ରେମର ଅନୁଭବ ତାଙ୍କ ଜୀବନର ଗତିଧାରାକୁ ନିୟନ୍ତ୍ରଣ କରିଆସିଛି। ଜ୍ଞାନାନ୍ୱେଷଣ ଥିଲା ତାଙ୍କ ଜୀବନର ବଡ ବ୍ରତ। ତାଙ୍କ ଅଧ୍ୟୟନର ଦିଗନ୍ତ ଥିଲା ସୁବିସ୍ତୃତ। ତାଙ୍କର ବହୁ ଆଦୃତ ଗ୍ରନ୍ଥ 'ପାଶ୍ଚାତ୍ୟ ଦର୍ଶନର ଇତିହାସ' ରସେଲଙ୍କ ଜ୍ଞାନର ଗଭୀରତାର

ସୂଚନା ଦିଏ । ସେହିପରି ଜୀବନସାରା ଯେତେ ସବୁ ପାଣ୍ଡିତ୍ୟପୂର୍ଣ୍ଣ ମୌଳିକ ଗ୍ରନ୍ଥମାନ ରଚନା କରିଛନ୍ତି ସେଥିରୁ ତାଙ୍କ ଚିନ୍ତାର ଉତ୍କର୍ଷର ପରିଚୟ ମିଳେ । ଗୋଟିଏ ପଟେ ବୌଦ୍ଧିକତା ଓ ଅନ୍ୟ ପଟେ ମାନବବାଦୀ ଜୀବନଦୃଷ୍ଟି ତାଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ଥିଲା ।

ରସେଲଙ୍କୁ ମାତ୍ର ଦୁଇ ବର୍ଷ ବେଳେ ତାଙ୍କର ମାଆ ଓ ଚାରିବର୍ଷ ବେଳେ ତାଙ୍କ ବାପାଙ୍କର ଦେହାନ୍ତ ହେବାରୁ ସେ ନିଜର ପିତାମହୀଙ୍କ ତତ୍ତ୍ୱାବଧାନରେ ପାଳିତ ହୋଇଥିଲେ । ଜେଜେମା' ଥିଲେ ଜଣେ ଧର୍ମପ୍ରାଣ ମହିଳା, ନୈଷ୍ଠିକ ଖ୍ରୀଷ୍ଟିଆନ । କିଶୋର ବୟସ ବେଳେ ଥରେ ତାଙ୍କ ଜନ୍ମଦିନରେ ତାଙ୍କ ଜେଜେମା' ତାଙ୍କୁ ବାଇବେଲଟିଏ ଉପହାର ଦେଇ ଜଣେ ଭଲ ମଣିଷ ହେବାକୁ ସେଥିରେ ଲେଖି ଦେଇଥିଲେ । ଜେଜେମା'ଙ୍କର ଏହି କଥାପଦକ ତାଙ୍କୁ ଅନେକ ପ୍ରେରଣା ଯୋଗାଇଥିଲା । ତେବେ ବାଇବେଲ ପଢ଼ିବା ପରେ ମାତ୍ର ପନ୍ଦର ଷୋହଳ ବର୍ଷ ବେଳକୁ ସେ ଏହାର ମୌଳିକ ବିଚାରଗୁଡ଼ିକ ଉପରେ ଗଭୀର ଚିନ୍ତା କରିବାକୁ ଲାଗିଲେ । ପରବର୍ତ୍ତୀ ଜୀବନରେ ସେ ଧର୍ମଧାରଣାର ବଡ ସମାଲୋଚକ ହେଲେ । ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ପର୍କରେ ପ୍ରଦତ୍ତ ଯୁକ୍ତିଗୁଡ଼ିକ କିପରି ତ୍ରୁଟିପୂର୍ଣ୍ଣ ଓ ଅବୈଧ ତାହା ସେ ଚିନ୍ତା କରିବାକୁ ଲାଗିଲେ । ସେହିପରି ଆତ୍ମାର ଅମରତ୍ୱ, ସ୍ୱର୍ଗ, ନରକ, ବିଚାର ଦିବସ ଇତ୍ୟାଦି ଭାବନାମାନ କିପରି କାଳ୍ପନିକ କାହାଣୀ ଏହା ସେ ବେଶ୍ ଅନୁଭବ କଲେ । ଧର୍ମ ବିଶ୍ୱାସଗୁଡ଼ିକ ଯେହେତୁ ଯୁକ୍ତି ବା ତଥ୍ୟ ଉପରେ ଆଧାରିତ ନୁହେଁ ଏଥିରେ ନାନା କୁସଂସ୍କାର ଓ ମତାନ୍ଧତା ସ୍ଥାନ ପାଇବା ଦେଖାଯାଏ । ଏହା ସହ ସମାଜର ନୈତିକ ଓ ବୈଜ୍ଞାନିକ ବିକାଶରେ ଧର୍ମ କିପରି ଅନ୍ତରାୟ ହୋଇ ରହିଛି ତାହା ସେ ବିଭିନ୍ନ ଲେଖାରେ ବ୍ୟକ୍ତ କରିଛନ୍ତି । "ମୁଁ କାହିଁକି ଖ୍ରୀଷ୍ଟିଆନ ନୁହେଁ" ତାଙ୍କର ଏକ ବହୁ ଚର୍ଚ୍ଚିତ ପୁସ୍ତକ । ଭୟ ଓ ଆତଙ୍କରୁ ଧର୍ମର ସୃଷ୍ଟି, ତେଣୁ ସମାଜରେ ବିଭିନ୍ନ ଯୁଦ୍ଧ ଓ ବିଭୀଷିକା ଧର୍ମକୁ ଆଧାର କରି ତିଷ୍ଠି ରହିଛି । ଧର୍ମବିଶ୍ୱାସ ସାମାଜିକ ବିକାଶର ପରିଚାୟକ ନୁହେଁ । ଏକ ଉତ୍ତମ ସମାଜ ଓ ବିଶ୍ୱ ପାଇଁ ଜ୍ଞାନ, କରୁଣାର ମନୋଭାବ ଓ ବିଜ୍ଞାନର ଆବଶ୍ୟକତା ରହିଛି । ଯେଉଁ ଯୁଗରେ ଧର୍ମମାନଙ୍କର ବିକାଶ ହୋଇଥିଲା ତାହା ଥିଲା ମାନବ ବୁଦ୍ଧିର ଶୈଶବ କାଳ । ସେହି ଅବସ୍ଥାକୁ ମଣିଷ ଅତିକ୍ରମ କରି ସାରିଲାଣି । ଧାର୍ମିକ ଆବେଗ ସମାଜକୁ ଭାଗ ଭାଗ କରି ରଖିଛି, ସୁତରାଂ ସାମ୍ପ୍ରଦାୟିକ ଧର୍ମର ଊର୍ଦ୍ଧ୍ୱକୁ ଯାଇ ମାନବବାଦ ହିଁ ସାଂପ୍ରତିକ ଯୁଗର ଧର୍ମ ହେବା ଆବଶ୍ୟକ । ରସେଲ ଖ୍ରୀଷ୍ଟଧର୍ମ ସଂପର୍କରେ ଯେଉଁ ମନ୍ତବ୍ୟ ରଖିଛନ୍ତି, ତାହା ବିଶ୍ୱର ପ୍ରତ୍ୟେକ ସାମ୍ପ୍ରଦାୟିକ ଧର୍ମ ପ୍ରତି ପ୍ରଯୁଜ୍ୟ ।

ରସେଲ ପାଠ ପଢ଼ିଥିଲେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଟ୍ରିନିଟୀ କଲେଜରେ । ଗଣିତଶାସ୍ତ୍ର ଓ ଦର୍ଶନଶାସ୍ତ୍ର ତାଙ୍କ ଅଧ୍ୟୟନର ବିଷୟବସ୍ତୁ ମଧ୍ୟରେ ତାଙ୍କ ପାଇଁ ସବୁଠାରୁ

ଅଧିକ ଆକର୍ଷଣୀୟ ଥିଲା । ଏହାପରେ ସେ ବର୍ଲିନ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନ ଓ ଅର୍ଥନୀତି ଉପରେ ଅଧ୍ୟୟନ କରିଥିଲେ । ଯେଉଁ ବିଷୟରେ ଅଧ୍ୟୟନ କରୁଥିଲେ ତାହାର ମୌଳିକ ସିଦ୍ଧାନ୍ତଗୁଡ଼ିକର ସ୍ୱରୂପ ନେଇ ସେ ଗମ୍ଭୀର ବିଶ୍ଳେଷଣ କରୁଥିଲେ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଗଣିତଶାସ୍ତ୍ର ପଢ଼ିବା ପରେ ତାଙ୍କ ଶିକ୍ଷକ ହ୍ୱାଇଟହେଡ୍‌ଙ୍କ ସହ ମିଶି ପ୍ରିନ୍‌ସିପିଆ ମାଥ୍‌ମେଟିକା (ଗଣିତର ମୌଳିକସୂତ୍ର) ନାମରେ ତିନି ଖଣ୍ଡ ବିଶିଷ୍ଟ ଯେଉଁ ପୁସ୍ତକ ରଚନା କରିଥିଲେ ତାହା ଏକ ଅନବଦ୍ୟ କୃତି । ଗଣିତର ସକଳ ନିୟମମାନ କିପରି ତର୍କଶାସ୍ତ୍ରରୁ ନିସୃତ ଏହା ଥିଲା ଏହି କୃତିର ମୌଳିକ ପ୍ରସଙ୍ଗ । ତାଙ୍କର ଏହି ସବୁ ପାଣ୍ଡିତ୍ୟପୂର୍ଣ୍ଣ ପୁସ୍ତକ ପ୍ରକାଶ ପରେ ସେ ଇଂଲଣ୍ଡ, ଆମେରିକା, ରୁଷ, ଚୀନ, ଜାପାନ ଓ ବିଭିନ୍ନ ୟୁରୋପୀୟ ଦେଶମାନଙ୍କର ବିଖ୍ୟାତ ବିଶ୍ୱବିଦ୍ୟାଳୟମାନଙ୍କରେ ଭିଜିଟିଙ୍ଗ ପ୍ରଫେସର ଭାବେ କାର୍ଯ୍ୟ କରିବାର ସୁଯୋଗ ପାଇଛନ୍ତି । ନିଜର ଚାରିତ୍ରିକ ବୈଶିଷ୍ଟ୍ୟ, ସୃଜନାତ୍ମକ ରଚନା, ମାନବବାଦୀ ଦୃଷ୍ଟିଭଙ୍ଗୀ ଓ ଚିନ୍ତାର ଉତ୍କର୍ଷ ତାଙ୍କୁ ସମଗ୍ର ବିଶ୍ୱରେ ପରିଚିତ କରାଇଥିଲା ।

ବ୍ୟକ୍ତିଗତ ବିଶ୍ୱାସରେ ରସେଲ ଥିଲେ ମାନବବାଦୀ ଓ ହେତୁବାଦୀ । ସମାଜରେ ସକଳ ମତାନ୍ଧତା ଓ ବିଦ୍ୱେଷମୂଳକ ମନୋଭାବକୁ ଦୂର କରିବାକୁ ସେ ପ୍ରୟାସୀ ଥିଲେ । ଚିନ୍ତା ଓ କାର୍ଯ୍ୟର ସମନ୍ୱୟ ତାଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ଥିଲା । ବୌଦ୍ଧିକତ ଓ ତର୍କଶୀଳତାକୁ ସେ ପ୍ରାଧାନ୍ୟ ଦେଉଥିଲେ ମଧ୍ୟ ଜୀବନ ଯେ କେବଳ ବୁଦ୍ଧି ସର୍ବସ୍ୱ ନୁହଁ ଏହା ତାଙ୍କର ଉପଲବ୍ଧି ଥିଲା । ଆବେଗ ଓ ଭାବାବେଗ ବି ଜୀବନରେ ପ୍ରାଧାନ୍ୟ ନେଇଥାଏ । ବରଂ ଆମର ଆବେଗ, ଭାବାବେଗ ଓ ଜୀବନଦୃଷ୍ଟି ଯେତେ ଉଦାର ଓ ମହନୀୟ ହେବ ଜୀବନ ସେତେ ଅଧିକ ପ୍ରୀତିପୂର୍ଣ୍ଣ ହେବ । ବୁଦ୍ଧି ହେଉଛି ସାଧନ, ଏହାକୁ ଭଲ ବା ମନ୍ଦ ଲକ୍ଷ୍ୟରେ ବିନିଯୋଗ କରାଯାଇପାରେ । ସୁତରାଂ ଆମର ଆବେଗିକ ସ୍ତର ଉନ୍ନତ, ଦରଦୀ ଓ ମହନୀୟ ହେଲେ ସେହି ଉତ୍ତମ ଲକ୍ଷ୍ୟ ଦିଗରେ ବୁଦ୍ଧି ବିନିଯୋଗ ହୋଇପାରିବ । ତାଙ୍କ ଜୀବନର ମହନୀୟତା ତାଙ୍କ ଆତ୍ମ ଜୀବନୀର ମୁଖବନ୍ଧରେ ପ୍ରତିଫଳିତ । ପ୍ରେମର ଅନୁଭବ ସହିତ ଜ୍ଞାନ ଅନ୍ୱେଷଣ ଜନିତ କୌତୂହଳତା ଓ ମାନବ ସମାଜର ଦୁଃଖ ଓ ଯନ୍ତ୍ରଣାକୁ ଦୂର କରିବାର ଭାବାବେଶ ତାଙ୍କ ଜୀବନକୁ ସର୍ବଦା ନିୟନ୍ତ୍ରିତ କରିଥିଲା । ଏହି ଲକ୍ଷ୍ୟ ଦିଗରେ ସେ ନିଜର ବୁଦ୍ଧି ଓ ବିଚାରଶୀଳ ଦୃଷ୍ଟିକୁ ପ୍ରୟୋଗ କରି ଚାଲିଥିଲେ ।

ରସେଲ ଅନେକାଂଶରେ ଥିଲେ ବାସ୍ତବବାଦୀ । ଜୀବନରେ ସେ କେତେକ ସାମାଜିକ ଓ ରାଜନୈତିକ ଆଦର୍ଶ ତଥା ନୈତିକ ମୂଲ୍ୟବୋଧରେ ଗଭୀର ଆସ୍ଥା ରଖିଥିଲେ ।

ସେ ଯେଉଁ ଆଦର୍ଶରେ ବିଶ୍ୱାସୀ ଥିଲେ ତାହାକୁ ନିଜ ଜୀବନଧାରାରେ ପ୍ରତିଫଳିତ କରୁଥିଲେ। ନୈତିକତା ଓ ଉତ୍ତମ ସ୍ୱଭାବର ଭିତ୍ତି, ସ୍ୱରୂପ ଓ ପ୍ରୟୋଗ ନେଇ ଦର୍ଶନ ପରିସରରେ ବହୁ ଗଭୀର ଚର୍ଚ୍ଚା ହେବା ଦେଖାଯାଏ। ନୈତିକ ପ୍ରଶ୍ନମାନଙ୍କର ବ୍ୟାଖ୍ୟା ଉପରେ, ଶ୍ରେୟ-ଅଶ୍ରେୟ ପାର୍ଥକ୍ୟ ମଧ୍ୟରେ ରସେଲ ଅନେକ ନିବନ୍ଧ ଲେଖିଛନ୍ତି। ନୈତିକ ସଦ୍‌ଗୁଣ ଏକ ସାମାଜିକ କର୍ତ୍ତବ୍ୟ ଓ ନୈତିକ ଆଚରଣ ଏକ ସୁଖମୟ ଜୀବନ ଓ ସଂହିତିପୂର୍ଣ୍ଣ ସମାଜ ପାଇଁ କିପରି ଅବଶ୍ୟମ୍ଭାବୀ ତାହାର ବହୁ ବ୍ୟାଖ୍ୟା ରସେଲଙ୍କ ଲେଖାରେ ପ୍ରତିଫଳିତ ହୋଇଥିବା ଦେଖାଯାଏ।

ରସେଲ ଦର୍ଶନ ବାହାରେ ତାଙ୍କର ରାଜନୈତିକ ଓ ସାମାଜିକ ଆଦର୍ଶ ପାଇଁ ଅଧିକ ପରିଚିତ। ବିଶେଷକରି ସେ ଥିଲେ ଜଣେ ଶାନ୍ତିକାମୀ ମଣିଷ। ଯୁଦ୍ଧ ଓ ଯୁଦ୍ଧଜନିତ ବିଭୀଷିକା ମାନବକୃତ ବର୍ବରତା ବୋଲି ସେ ବିଶ୍ୱାସ କରୁଥିଲେ। ଦୁଇ ଦୁଇଟି ବିଶ୍ୱଯୁଦ୍ଧ ଦେଖିଥିବା ରସେଲ ଯୁଦ୍ଧ କିପରି ମାନବ ସମାଜର ସବୁଠାରୁ ବଡ କଳଙ୍କ ଏହା ସେ ଗଭୀର ଭାବେ ଅନୁଭବ କରିଥିଲେ। ଜାତୀୟତାବାଦୀ ଉଗ୍ର ମାନସିକତା ସକଳ ଯୁଦ୍ଧର ମୁଖ୍ୟ କାରଣ ବୋଲି ସେ ଗ୍ରହଣ କରୁଥିଲେ। ଏହା ସହିତ ଆଣବିକ ନିରସ୍ତ୍ରୀକରଣ ପାଇଁ ସାରା ପୃଥିବୀରେ ସଚେତନତା ସୃଷ୍ଟି କରିବାକୁ ସେ ମୃତ୍ୟୁ ପର୍ଯ୍ୟନ୍ତ ପ୍ରୟାସ କରିଥିଲେ। ପୃଥିବୀର ସମସ୍ତ ରାଷ୍ଟ୍ର ମୁଖ୍ୟ, ବୈଜ୍ଞାନିକ ଓ ସବୁ ଦେଶର ଶାନ୍ତିକାମୀ ବ୍ୟକ୍ତିମାନଙ୍କୁ ପତ୍ର ଲେଖି ଆଣବିକ ଯୁଦ୍ଧର ଆଶଙ୍କାକୁ ଦୂର କରିବାକୁ ଆବେଗଭରା ନିବେଦନ କରିଥିଲେ। କାରଣ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘଟଣାବଳୀରୁ ଏହା ସ୍ପଷ୍ଟ ହୋଇଥିଲା ଯେ ଯଦି ପୃଥିବୀରେ ତୃତୀୟ ବିଶ୍ୱଯୁଦ୍ଧର ପରିବେଶ ଆସେ ତେବେ ମାନବ ସଭ୍ୟତାର ବିଲୋପ ଘଟିବ। ଏହି ପରିପ୍ରେକ୍ଷୀରେ ବିଶ୍ୱ ସରକାର ପାଇଁ ସେ ନିଜର ବିଚାର ମୁକ୍ତ ଭାବରେ ବ୍ୟକ୍ତ କରିଥିଲେ। ଯୁଦ୍ଧରହିତ ପୃଥିବୀ ପାଇଁ ବିଶ୍ୱ ସରକାର ଯେ ଏକମାତ୍ର ବିକଳ୍ପ ଏହା ତାଙ୍କର ବିଚାର ଥିଲା।

ମୋଟଉପରେ ରସେଲ ଥିଲେ ଜଣେ ମାନବଦରଦୀ, ଶାନ୍ତିକାମୀ ପ୍ରଜ୍ଞାପୁରୁଷ। ସଫଳ ଜୀବନର ଅଧିକାରୀ ଏହି ଦାର୍ଶନିକଙ୍କର ଅଠାନବେ ବର୍ଷ ବୟସରେ ୧୯୭୦ ଫେବୃୟାରୀ ୨ ତାରିଖ ଦିନ ଦେହାନ୍ତ ହେଲା। ତାଙ୍କ ଦେହାନ୍ତରେ ସବୁ ଦେଶର ଶାନ୍ତିକାମୀ ଜନଗଣ ତାଙ୍କ ପାଇଁ ଗଭୀର ଶ୍ରଦ୍ଧାଞ୍ଜଳି ବ୍ୟକ୍ତ କରିଥିଲେ।

(ପ୍ରଗତିବାଦୀ, ୧୮.୦୫.୨୦୧୬)

# ଦୁଇ ଚିନ୍ତାନାୟକଙ୍କ ସ୍ମୃତିରେ

ମାନବ ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଥିବା ଦୁଇ ଜଣ ବିଶିଷ୍ଟ ଚିନ୍ତାନାୟକଙ୍କ ଜନ୍ମଦିନ ହେଉଛି ଫେବୃୟାରୀ ୧୨, ୧୮୦୯ ମସିହା। ଏହି ଏକାଦିନରେ ଇଂଲଣ୍ଡରେ ଜନ୍ମ ହୋଇଥିଲେ ଚାର୍ଲସ ଡାରଓ୍ୱିନ ଓ ଆମେରିକାରେ ଜନ୍ମ ହୋଇଥିଲେ ଆବ୍ରାହମ ଲିଙ୍କନ। ଡାରଓ୍ୱିନ ଥିଲେ ଜୀବବିଜ୍ଞାନୀ ଓ ଲିଙ୍କନ ଥିଲେ ରାଷ୍ଟ୍ରନୀତିଜ୍ଞ। ଡାରଓ୍ୱିନଙ୍କର ଉଦ୍ଭାବନ ବିଜ୍ଞାନ କ୍ଷେତ୍ରରେ ଏକ ନୂଆ ଯୁଗର ସୂତ୍ରପାତ କରିଥିଲା ଓ ଲିଙ୍କନଙ୍କର ବିଚାରବୋଧ ମାନବବାଦର ପ୍ରସାର କ୍ଷେତ୍ରରେ ଯୁଗାନ୍ତକାରୀ ଥିଲା। ଫେବୃୟାରୀ ୧୨ତାରିଖ ଦିନ ଏକ ଏନଜିଓଦ୍ୱାରା ଭୁବନେଶ୍ୱରରେ ଏହି ଦୁଇ ଚିନ୍ତାନାୟକଙ୍କ ଉପରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା। ସେଠାରେ ଯୋଗ ଦେଇ ରଖିଥିବା କିଛି ମତର ଅବତାରଣା ପୃଷ୍ଠଭୂମିରେ ଏହି ଆଲେଖ୍ୟ।

ଡାରଓ୍ୱିନ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଜୀବବିଜ୍ଞାନ ଉପରେ ଅଧ୍ୟୟନ କଲାପରେ ଇଂଲଣ୍ଡରୁ ଦକ୍ଷିଣ ଆମେରିକା ଅଭିଯାନରେ ଯାଉଥିବା ଏକ ଜାହାଜରେ ପାଞ୍ଚବର୍ଷ ଯାତ୍ରା କରିଥିଲେ। ଅନୁସନ୍ଧିତ୍ସୁ ଓ କୌତୂହଳ ପ୍ରବଣ ଡାରଓ୍ୱିନ ମାତ୍ର ୨୩ ବର୍ଷରେ ସମୁଦ୍ର ଭିତରେ ଯାତ୍ରା କରି ପୃଥିବୀର ବିଭିନ୍ନ ଭୂଖଣ୍ଡ ଦେଖିବାର ଅବକାଶ ପାଇଥିଲେ। ବିଭିନ୍ନ ସ୍ଥାନକୁ ଯିବା ଭିତରେ ନାନା ପ୍ରକାରର ପଶୁ, ପକ୍ଷୀ ଓ ଜଳଚର ଜୀବମାନଙ୍କୁ ଅନୁଧ୍ୟାନ କରିଥିଲେ। ଏହା ସହିତ ବିଭିନ୍ନ ଅଞ୍ଚଳରୁ କେତେକେତେ ପ୍ରାଣୀମାନଙ୍କର ଫସିଲ ବା ଜୀବାଶ୍ମ ଗବେଷଣା ପାଇଁ ସଂଗ୍ରହ କରିଥିଲେ। ବିଭିନ୍ନ ଅଞ୍ଚଳର ପ୍ରାଣୀମାନଙ୍କ ମଧ୍ୟରେ ସେ ଯେଉଁ ବିବିଧତା ଓ ଭିନ୍ନତା ପ୍ରତ୍ୟକ୍ଷ କରିଥିଲେ ତାହାର କାରଣ ନେଇ ସେ ଗବେଷଣା ଆରମ୍ଭ କଲେ ଓ ସେ ସଂପର୍କରେ ଗମ୍ଭୀର ଭାବେ ବିଚାର କରିବାକୁ ଲାଗିଲେ। ବର୍ଷ ବର୍ଷର ଅନୁଶୀଳନ, ପରୀକ୍ଷଣ ଓ ବିଶ୍ଳେଷଣରୁ ସେ ବିବର୍ତ୍ତନବାଦର ଅବଧାରଣା କଲେ। ଡାରଓ୍ୱିନଙ୍କର ଆବିର୍ଭାବ ପୂର୍ବରୁ ବିଜ୍ଞାନର ଏକ ପରମ୍ପରା ପାଶ୍ଚାତ୍ୟ ଚିନ୍ତାରାଜ୍ୟରେ ଦୃଢ ଭିତ୍ତି ନେଇ ସାରିଥିଲା। ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ ଇତ୍ୟାଦି ପ୍ରାକୃତିକ ବିଜ୍ଞାନମାନ ନୂଆ ନୂଆ ଗବେଷଣାଦ୍ୱାରା ବହୁ ଚମକପ୍ରଦ ଉଦ୍ଭାବନ ଓ

ଆବିଷ୍କାରମାନ କରିଥିଲେ। ଧର୍ମଗ୍ରନ୍ଥରେ ରହିଥିବା ବିଶ୍ୱାସମାନ ସେତେବେଳର ବୈଜ୍ଞାନିକ ସିଦ୍ଧାନ୍ତ ଆଧାରରେ ତଥ୍ୟରହିତ ଓ ଅସତ୍ୟ ବୋଲି ପ୍ରତିପାଦିତ ହୋଇ ସାରିଥିଲା । ତଥାପି ମଣିଷକୁ ଏକ ସର୍ବଜ୍ଞ ଓ ସର୍ବଶକ୍ତିମାନ ଈଶ୍ୱର ନିଜ ସ୍ୱରୂପରେ ସୃଷ୍ଟି କରିଛନ୍ତି ବୋଲି ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଥିଲା । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ ଇତ୍ୟାଦି ବିଜ୍ଞାନମାନ "ବୈଜ୍ଞାନିକ ପ୍ରକୃତିବାଦ" ନାମରେ ଏକ ସିଦ୍ଧାନ୍ତର ଭିତ୍ତି ପକାଇଥିଲେ । ବୈଜ୍ଞାନିକ ପ୍ରକୃତିବାଦ ଅନୁଯାୟୀ ପ୍ରକୃତିରେ ଯାହା କିଛି ଅଛି ବା ପ୍ରକୃତିରେ ଯାହା କିଛି ଘଟଣା ଘଟେ ସେସବୁ ପ୍ରାକୃତିକ ଓ ପ୍ରତ୍ୟେକ ପ୍ରାକୃତିକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ବା ନିୟମ ରହିଛି । କୌଣସି ଘଟଣା ପଶ୍ଚାତରେ ଯେ କିଛି ଅତିପ୍ରାକୃତିକ ବା ସୁପରନାଚୁରାଲ କାରଣ ନାହିଁ ଏହାହିଁ ସକଳ ବିଜ୍ଞାନର ପ୍ରତିପାଦ୍ୟ ସିଦ୍ଧାନ୍ତ । ଏହି ବୈଜ୍ଞାନିକ ପ୍ରକୃତିବାଦ ସିଦ୍ଧାନ୍ତ ଡାରଉ୍ୱିନଙ୍କ ବିବର୍ତ୍ତନବାଦ ମତଦ୍ୱାରା ପରିପୂର୍ଣ୍ଣତା ଲାଭ କଲା ।

ତେବେ ଡାରଉ୍ୱିନଙ୍କ ବିବର୍ତ୍ତନବାଦର ମୌଳିକ ଭାବନା କ'ଣ ଥିଲା ? ବିବର୍ତ୍ତନବାଦ ଅନୁଯାୟୀ ପ୍ରକୃତିରେ ଲକ୍ଷ ଲକ୍ଷ ବର୍ଷ ଧରି ହୋଇଥିବା ଜୈବିକ ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ଉଦ୍ଭିଦଜଗତ ଓ ପ୍ରାଣୀଜଗତର ଉତ୍ପତ୍ତି ହୋଇଛି । ସେହି ପରିବର୍ତ୍ତନ ଏକ ଅବାରିତ ପ୍ରକ୍ରିୟା । ପ୍ରାକୃତିକ ନିର୍ବାଚନ ଭିତରେ ପ୍ରକୃତି ଓ ପରିବେଶ ସହିତ ନିଜକୁ ଖାପ ଖୁଆଇ ପାରିବାର ପ୍ରୟାସ ଓ ବଞ୍ଚି ରହିବା ପାଇଁ ସଂଗ୍ରାମ ଯୋଗୁଁ ଜୀବମାନଙ୍କ ଭିତରେ ଭିନ୍ନତା ପ୍ରକାଶ ପାଇଛି । ଜୀବମାନେ ପରିବେଶ ସହ ଖାପ ଖୁଆଇ ବଞ୍ଚିବା ପାଇଁ ପ୍ରୟାସ କରି ଆସିଛନ୍ତି । ପରିବେଶ ମଧ୍ୟ ପରିବର୍ତ୍ତନଶୀଳ । ତେବେ ପରିବର୍ତ୍ତିତ ପରିସ୍ଥିତିରେ ଯେଉଁମାନେ ନିଜକୁ ଖାପ ଖୁଆଇ ପାରନ୍ତି ନାହିଁ ସେମାନଙ୍କର ଧୀରେ ଧୀରେ କ୍ରମବିଲୟ ଘଟିଥାଏ । ପରିବର୍ତ୍ତନ ପ୍ରକ୍ରିୟାରେ ପ୍ରାଣୀମାନଙ୍କ ଭିତରେ କେତେ ପିଢି ପରେ ଭିନ୍ନତା ଦୃଷ୍ଟିଗୋଚର ହୁଏ । ଡାରଉ୍ୱିନଙ୍କ ମତ ଥିଲା ଯେ ଲକ୍ଷ ଲକ୍ଷ ବର୍ଷର ଜୈବିକ ପରିବର୍ତ୍ତନ ମଧ୍ୟ ଦେଇ ମଣିଷର ଉତ୍ପତ୍ତି ହୋଇଛି । ବାନର ଜାତୀୟ ଜୀବମାନଙ୍କ ସହ ମଣିଷର ଗୁଣଗତ, ଆକୃତିଗତ ଓ ଡିଏନଏ ସ୍ତରରେ ବହୁ ସାମଞ୍ଜସ୍ୟ ରହିଛି । ଡାରଉ୍ୱିନ ମଣିଷର ଉତ୍ପତ୍ତି ଓ ବିବର୍ତ୍ତନ ବିଷୟରେ ଯେଉଁ ସିଦ୍ଧାନ୍ତର ଅବତାରଣା କଲେ ତାହା ଯୁଗ ଯୁଗର ବହୁ ଧାର୍ମିକ ବିଶ୍ୱାସକୁ ଦୂର କରିବାସହ ବିଜ୍ଞାନର ନାନା ନୂଆ ଦିଗନ୍ତ ସୃଷ୍ଟି କଲା । ଚିକିତ୍ସାବିଜ୍ଞାନ, ଜେନେଟିକ୍ ଅନୁଶୀଳନ, କୋଷବିଜ୍ଞାନ ପ୍ରଭୃତି ନାନା କ୍ଷେତ୍ରରେ ଡାରଉ୍ୱିନଙ୍କ ସିଦ୍ଧାନ୍ତ ପ୍ରେରଣାଦାୟକ ଥିଲା । ତାଙ୍କର ବିଖ୍ୟାତ ପୁସ୍ତକ "ଜୀବ ଜଗତର ଉତ୍ପତ୍ତି" ଚିନ୍ତାରାଜ୍ୟରେ ଏକ ତୁମୁଳ ଆଲୋଡନ ସୃଷ୍ଟି କରିଥିଲା ।

ଆବ୍ରାହମ ଲିଙ୍କନ ଆମେରିକାରେ ଏକ ସାଧାରଣ ପରିବାରରେ ଜନ୍ମ ହୋଇ ବହୁ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୋଇ ଓକିଲ ଭାବରେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ। ନିଜର ନିଷ୍ଠା, ପରିଶ୍ରମ ଓ ଦକ୍ଷତା ଯୋଗୁ ସେ ଆମେରିକାର ଷୋଡଶ ରାଷ୍ଟ୍ରପତି ଭାବେ ୧୮୬୦ରେ ନିର୍ବାଚିତ ହୋଇଥିଲେ। ସେହି ସମୟରେ ଆମେରିକାରେ ଦାସତ୍ୱ ପ୍ରଥାର ପ୍ରଚଳନ ଥାଏ। ଆଫ୍ରିକୀୟ ନିଗ୍ରୋମାନେ ଆମେରିକାରେ ଗୋରା ଲୋକଙ୍କର ଦାସ ଭାବେ ଦୟନୀୟ ସ୍ଥିତିରେ ଜୀବନ ନିର୍ବାହ କରୁଥାନ୍ତି। ଆମେରିକାରୁ ଦାସତ୍ୱ ପ୍ରଥାର ବିଲୋପ ପାଇଁ ସେ ରାଷ୍ଟ୍ରପତି ଭାବରେ ପଦକ୍ଷେପ ନେଲେ। ଦାସତ୍ୱ ପ୍ରଥା ମାନବିକ ମୂଲ୍ୟବୋଧ ଓ ଗଣତାନ୍ତ୍ରିକ ବ୍ୟବସ୍ଥାର ଯେ ପ୍ରତିକୂଳ ଏହି ଉପଲବ୍ଧିରୁ ସେ ଦାସତ୍ୱ ପ୍ରଥାକୁ ନିଜ ଦେଶରୁ ଦୂର କରିବାକୁ ପ୍ରୟାସ କଲେ। ତାଙ୍କର ପ୍ରସ୍ତାବଦ୍ୱାରା ଦେଶ ଅଶାନ୍ତ ହୋଇ ଉଠିଲା। ଆମେରିକାର ଦକ୍ଷିଣ ଭାଗର ରାଜ୍ୟମାନଙ୍କରେ ଭୀଷଣ ଜନଆନ୍ଦୋଳନ ହୋଇ ଦେଶରେ ଏକ ଗୃହଯୁଦ୍ଧର ପରିବେଶ ସୃଷ୍ଟି ହେଲା। ଦାସତ୍ୱ ପ୍ରଥା ରହୁ ବୋଲି ଦକ୍ଷିଣ ଆମେରିକାର ରାଜ୍ୟମାନେ ଯେଉଁ ବିଦ୍ରୋହ ଆରମ୍ଭ କଲେ ତାହାଦ୍ୱାରା ଦେଶ ଦୁଇ ଭାଗ ହୋଇଯିବାର ପରିସ୍ଥିତି ଆସିଲା। ଲିଙ୍କନ ନିଜ ନିଷ୍ପତ୍ତିରେ ଦୃଢ ରହି ଗୃହଯୁଦ୍ଧର ସମ୍ମୁଖୀନ ହେଲେ। ଦାସତ୍ୱ ପ୍ରଥାକୁ ଆମେରିକାରେ ବେଆଇନ ଘୋଷଣା କରି ଦାସମାନଙ୍କୁ ମୁକ୍ତ କଲେ। ସମାନ ଅଧିକାର, ବ୍ୟକ୍ତି ସ୍ୱାଧୀନତା, ବ୍ୟକ୍ତି ମର୍ଯ୍ୟାଦାବୋଧ ମୂଲ୍ୟଚୟମାନ ଯେ ଗଣତନ୍ତ୍ରର ମୂଳମନ୍ତ୍ର ଏହି ଭାବନା ସୃଷ୍ଟି କରିବାରେ ଲିଙ୍କନ ଇତିହାସରେ ଏକ ଯୁଗାନ୍ତକାରୀ ଭୂମିକା ନିର୍ବାହ କରିଛନ୍ତି। ଆମେରିକାର ରାଷ୍ଟ୍ରପତି ଭାବରେ ସେ ଗୃହଯୁଦ୍ଧ, ସବୁଠାରୁ ବଡ ରାଜନୈତିକ ଓ ସାମ୍ବିଧାନିକ ସଙ୍କଟ ଭିତରେ ଦେଶକୁ ନେତୃତ୍ୱ ଦେଇଛନ୍ତି। ମାନବିକ ମୂଲ୍ୟବୋଧର ସୁରକ୍ଷା, ଏକ ସଂଘୀୟ ବ୍ୟବସ୍ଥାର ପ୍ରତିଷ୍ଠା ଓ ଦେଶର ଅର୍ଥନୀତିକୁ ସୁଦୃଢ କରିବାରେ ସେ ଯେଉଁ ଦକ୍ଷତା ଓ ଦୂରଦୃଷ୍ଟିର ପରିଚୟ ଦେଇଛନ୍ତି ତାହା ତାଙ୍କୁ ଇତିହାସରେ ଏକ ଗୌରବାବହ ସ୍ଥାନ ଦେଇଛି।

ଗେଟସବର୍ଗଠାରେ ସେ ୧୮୬୩ରେ ଯେଉଁ ଭାଷଣ ପ୍ରଦାନ କରିଥିଲେ ତାହା ସଭ୍ୟତାର ଇତିହାସରେ ଯୁଗାନ୍ତକାରୀ ଥିଲା। ସେ ପ୍ରଥମକରି କହିଥିଲେ "ଗଣତନ୍ତ୍ର ହେଉଛି ଲୋକମାନଙ୍କର, ଲୋକମାନଙ୍କଦ୍ୱାରା ଓ ଲୋକମାନଙ୍କ ପାଇଁ"। ଏକ ଭେଦଭାବମୂଳକ ଓ ବୈଷମ୍ୟପୂର୍ଣ୍ଣ ସାମାଜିକ ବ୍ୟବସ୍ଥା ଭିତରେ ଗଣତନ୍ତ୍ର ରହିପାରିବ ନାହିଁ। ବ୍ୟକ୍ତିସ୍ୱାଧୀନତା ଓ ସମତାକୁ ସ୍ୱୀକାର ନକଲେ କୌଣସି ରାଷ୍ଟ୍ର ଗଣତାନ୍ତ୍ରିକ ହେବା ସମ୍ଭବ ନୁହେଁ। ଆମେରିକାର ଗୋଟିଏ ଭାଗରେ ଗଭୀର ଜନଅସନ୍ତୋଷ ଓ ଗୃହଯୁଦ୍ଧ ସତ୍ତ୍ୱେ ସେ ଦ୍ୱିତୀୟବାର ୧୮୬୪ରେ ବି ରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ। ଦ୍ୱିତୀୟବାର ରାଷ୍ଟ୍ରପତି ପଦ ଅଳଙ୍କୃତ

କରିବାର ମାତ୍ର କେତୋଟି ମାସ ପରେ ସେ ଆତତାୟୀର ଗୁଳିରେ ୧୮୬୫ ମସିହା ଏପ୍ରିଲ ୧୫ ତାରିଖ ଦିନ ମୃତ୍ୟୁବରଣ କଲେ । ମାନବବାଦର ପ୍ରବକ୍ତା, ମାନବିକ ଅଧିକାର ଓ ବ୍ୟକ୍ତି ସ୍ୱାଧୀନତାର ପଥ ପ୍ରଦର୍ଶକ ଓ ଗଣତନ୍ତ୍ରର ନିହିତାର୍ଥକୁ ସ୍ପଷ୍ଟ କରିଥିବା ଜଣେ କ୍ରାନ୍ତିକାରୀ ରାଷ୍ଟ୍ରନୀତିଜ୍ଞ ପାଶବିକ ହିଂସାର ଶିକାର ହେଲେ । ଇତିହାସର ଏହା ଏକ ବିଡମ୍ବନା ଯେ ସଭ୍ୟ ଜୀବନବୋଧର ମାର୍ଗଦର୍ଶକ ଓ ସଭ୍ୟତାର ଉତ୍ତରଣ ପାଇଁ ମୌଳିକ ଅବଦାନ ଦେଇଥିବା କ୍ରାନ୍ତିକାରୀ ବ୍ୟକ୍ତିମାନେ ବର୍ବରତା ଓ ହିଂସାର ଶରବ୍ୟ ହୋଇଛନ୍ତି । ତେବେ ସେମାନଙ୍କର ବଳିଦାନ ସମାଜରେ ବୃଥା ଯାଇ ନାହିଁ । ସଭ୍ୟ ମୂଲ୍ୟବୋଧର ବିକାଶରେ ଓ ସଭ୍ୟତାର ଗୁଣାତ୍ମକ ଉତ୍ତରଣରେ ସେହି ଶହୀଦମାନେ ମାନବଜାତିର ଆଲୋକବର୍ତ୍ତିକା ହୋଇଛନ୍ତି ।

ଆବ୍ରାହମ ଲିଙ୍କନ ବ୍ୟକ୍ତି ସ୍ୱାଧୀନତା ଓ ମାନବିକ ମର୍ଯ୍ୟାଦାର ପ୍ରତିଷ୍ଠା ପାଇଁ ଯେଉଁ ପଦକ୍ଷେପ ନେଇଥିଲେ ବହୁ ପରେ ତାହା ଜାତିସଂଘର ମାନବିକ ଅଧିକାରର ବିଶ୍ୱଘୋଷଣାନାମାରେ ପ୍ରତିଫଳିତ ହେଲା । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ପ୍ରତ୍ୟେକ ନାଗରିକ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବା ତାର ଏକ ପ୍ରାକୃତିକ ଅଧିକାର । ଏହା ସହ ଦାସତ୍ୱ ପ୍ରଥାର ବିଲୋପ ପାଇଁ ତାଙ୍କର ପଦକ୍ଷେପ ବର୍ଣ୍ଣବୈଷମ୍ୟକୁ ଦୂର କରିବାକୁ ପ୍ରେରଣାଦାୟକ ଅଭିନିବେଶ ଯୋଗାଇଛି ।

ତେବେ ବିଡମ୍ବନାର ବିଷୟ ଏବେ ବି ଆମ ସଂସାରରେ ନାନା ପ୍ରକାରର ବୈଷମ୍ୟ ଓ ଅନ୍ୟ ପ୍ରକାରର ଦାସତ୍ୱ ରହିଛି । ଆନ୍ତର୍ଜାତିକ ସ୍ତରରେ ଦାସତ୍ୱ ପ୍ରଥାର ଯେଉଁ ଆକଳନ ଓ ପରିସଂଖ୍ୟାନ ପ୍ରକାଶ ପାଉଛି ସେଥିରୁ ଜଣାପଡେ ଯେ ଏବେ ବି ଦାସତ୍ୱ ଭିନ୍ନ ଭିନ୍ନ ଭାବରେ କେତେକ ସମାଜରେ ରହିଛି । କେତେ ଲୋକ ଆର୍ଥିକ ପ୍ରତିକୂଳତା ଓ ତାଡନାରୁ ଅନ୍ୟ ଘରେ ଚାକର ପରି ଖଟୁଛନ୍ତି । ଏବେ ବି ଗରିବ ଦେଶମାନଙ୍କରେ ଗୋତିପ୍ରଥା ରହିଛି । ଦାରିଦ୍ର୍ୟ, ଅନାହାର ଓ ନିରକ୍ଷରତା ଭିତରେ ଏବେ ବି ଅନେକ ମଣିଷ ଦାଦନ ଶ୍ରମିକ ଭାବେ ଦାସତ୍ୱର ଜୀବନ ନିର୍ବାହ କରୁଛନ୍ତି । ଦାସତ୍ୱର ପରିଭାଷାକୁ ବୃହତ୍ତର ଅର୍ଥରେ ନେଲେ ଅବୈଧ ଯୌନ ନିର୍ଯ୍ୟାତନାରେ ଶରବ୍ୟ ହେଉଥିବା ବା ନିଜର ଇଚ୍ଛା ବିରୁଦ୍ଧରେ ବାଧହୋଇ ବିବାହକରି ଶୋଷିତ ହେଉଥିବା ମହିଳାମାନେ ବି ଦାସତ୍ୱ ଭିତରେ ବଞ୍ଚୁଛନ୍ତି ଯେହେତୁ ସେମାନଙ୍କର ସାମାନ୍ୟତମ ସ୍ୱାଧୀନତା ନାହିଁ । କ୍ଷୁଧା, ଶୋଷଣ ଓ ନିର୍ଯ୍ୟାତନା ଭିତରେ ଏବେ ବି ଅନଗ୍ରସର ଦେଶମାନଙ୍କରେ ବହୁ ମଣିଷ ରହିଛନ୍ତି ଯେଉଁମାନେ ଗୋତି ବା ଦାଦନ ଭିତରେ ଜୀବନ

ନିର୍ବାହ କରୁଛନ୍ତି । ଆଧୁନିକ ବିକାଶଠାରୁ ସେମାନେ ଯୋଜନ ଦୂରରେ ରହି ଦାସମାନଙ୍କ ପରି ଉପମାନବୀୟ ସ୍ତରରେ ଜୀବନ ବଞ୍ଚୁଛନ୍ତି । ଏକ କ୍ଷୁଧାମୁକ୍ତ, ଶୋଷଣମୁକ୍ତ ସମାଜର ଭିତ୍ତି ନପଡିଲେ ଆମ ସଂସାରରୁ ପ୍ରାୟତଃ ଦାସତ୍ୱ ପ୍ରଥାର ବିଲୋପ ହେବ ନାହିଁ ।

ଯେଉଁ ଦୁଇ ବ୍ୟକ୍ତିଙ୍କ ସମାନ ଜନ୍ମ ଦିବସରୁ ଏହି ଲେଖାଟି ଆରମ୍ଭ ହୋଇଥିଲା ସେମାନେ ଥିଲେ ଊନବିଂଶ ଶତାବ୍ଦୀର ଦୁଇ ପ୍ରମୁଖ ବୁଦ୍ଧିଜୀବୀ । ଡାରୱିନଙ୍କ ବିବର୍ତ୍ତନବାଦରେ ବହୁ ନୂତନ ଭାବନା ସଂଯୁକ୍ତ ହୋଇଛି ଓ ତାହା ବହୁ ଦିଗନ୍ତରେ ବିସ୍ତାରିତ ହୋଇଛି । ତେବେ ବିଜ୍ଞାନର ବହୁ ବିକାଶ ସତ୍ତ୍ୱେ ଅବୈଜ୍ଞାନିକ ଓ ଅହେତୁକ ଭାବନା ଏବେ ବି ବିଭିନ୍ନ ସମାଜରେ କାୟା ବିସ୍ତାରକରି ରହିଛି । ଡାରୱିନଙ୍କ ବିଚାରର ସାର୍ବଜନୀନ ବିସ୍ତାର ହୋଇପାରି ନାହିଁ । ଲିଙ୍କନ ଯେଉଁ ସମତାଭିତ୍ତିକ ସମାଜ ପାଇଁ ବଳିଷ୍ଠ ପଦକ୍ଷେପ ନେଇ ଦାସତ୍ୱପ୍ରଥାକୁ ବିଲୋପ କରିଥିଲେ, ତାହା ସାର୍ବଜନୀନ ଭାବେ ଏକ ନୂତନ ସମାଜ ଓ ବିଶ୍ୱ ସୃଷ୍ଟି କରିବାରେ ସଫଳ ହୋଇନାହିଁ । ମାନବଜାତିର କେତେକ ବିଫଳତା ସତ୍ତ୍ୱେ ଡାରୱିନ ଓ ଲିଙ୍କନ ବୈଜ୍ଞାନିକ ଚିନ୍ତା ଓ ମାନବିକ ମୂଲ୍ୟବୋଧର ଯଥାକ୍ରମେ ବିକାଶ ପାଇଁ ଦେଖାଇଥିବା ପଥ ଏବେ ବି ମନୁଷ୍ୟ ସମାଜକୁ ପ୍ରେରଣା ଯୋଗାଉଛି ।

(ପ୍ରଗତିବାଦୀ, ୨୨.୦୨.୨୦୧୭)

# ବୈଜ୍ଞାନିକଙ୍କ ସ୍ମୃତିରେ

**ବିଶିଷ୍ଟ** ବୈଜ୍ଞାନିକ, ଶିକ୍ଷାବିତ୍ ଓ ହେତୁବାଦୀ ବୁଦ୍ଧିଜୀବୀ ଯଶ ପାଲଙ୍କର ୨୦୧୭ ଜୁଲାଇ ୨୪ତାରିଖ ଦିନ ନବେବର୍ଷ ବୟସରେ ଦେହାନ୍ତ ହୋଇଯାଇଛି । ବିଜ୍ଞାନକୁ ଜନଗଣଙ୍କ ମଧ୍ୟରେ ଜନପ୍ରିୟ କରିବା ଓ ସମାଜରୁ କୁସଂସ୍କାର ଦୂରକରି ବୈଜ୍ଞାନିକ ମନୋଭାବର ପ୍ରସାର କରିବାରେ ତାଙ୍କର ବହୁ ଅବଦାନ ରହିଛି । ବିଜ୍ଞାନ ଓ ବୈଜ୍ଞାନିକ ମନୋଭାବର ପ୍ରସାର କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ପାଇଁ ସେ ଭାରତୀୟ ଚିନ୍ତାମାନସରେ ଜୀବିତ ରହିବେ ।

ଏହି ପ୍ରତିଭାଧର ବୈଜ୍ଞାନିକଙ୍କର ଜନ୍ମ ୧୯୨୬ ମସିହାରେ ପରାଧୀନ ଭାରତର ଅବିଭକ୍ତ ପଞ୍ଜାବ ପ୍ରଦେଶର ଝାଙ୍ଗ ଜିଲ୍ଲାରେ ହୋଇଥିଲା ଯାହା ଏବେ ପାକିସ୍ଥାନରେ ରହିଛି । ଚଣ୍ଡିଗଡସ୍ଥିତ ପଞ୍ଜାବ ବିଶ୍ୱବିଦ୍ୟାଳୟରୁ ପଦାର୍ଥବିଜ୍ଞାନରେ ଏସ୍.ଏସ୍‌ସି ଓ ଆମେରିକାସ୍ଥିତ ମାସାଚୁସେଟ ଇନ୍‌ଷ୍ଟିଚ୍ୟୁଟ ଅଫ ଟେକ୍ନୋନୋଲୋଜିରୁ ପିଏଚ.ଡି ଡିଗ୍ରୀ ହାସଲ କରି ସେ ଟାଟା ଇନ୍‌ଷ୍ଟିଚ୍ୟୁଟ ଅଫ୍ ଫଣ୍ଡାମେଣ୍ଟାଲ ରିସର୍ଚ୍ଚରେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ । ନଭୋ ପଦାର୍ଥବିଜ୍ଞାନ ବା ଆଷ୍ଟ୍ରୋଫିଜିକ୍ସ ଗବେଷଣା କ୍ଷେତ୍ରରେ ସେ ଥିଲେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବ୍ୟକ୍ତି । ଭାରତ ସରକାର ଯେତେବେଳେ ଅହମଦାବାଦଠାରେ ୧୯୭୨ରେ ଅନ୍ତରୀକ୍ଷ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କଲେ ଇସ୍ରୋ ପରିଚାଳିତ ଏହି ଅନୁଷ୍ଠାନରେ ସେ ବି ବୈଜ୍ଞାନିକ ଭାବେ କାର୍ଯ୍ୟ କରିଛନ୍ତି । ବିଶେଷକରି ଉପଗ୍ରହମାଧ୍ୟମରେ ବିଭିନ୍ନ ଲକ୍ଷ୍ୟ ହାସଲ ପାଇଁ ସ୍ୱଦେଶୀ ଜ୍ଞାନକୌଶଳଦ୍ୱାରା ଗବେଷଣାକୁ ତ୍ୱରାନ୍ୱିତ କରିବାକୁ ଯେଉଁ ମୁଷ୍ଟିମେୟ ବୈଜ୍ଞାନିକଙ୍କର ଗବେଷଣା ମହତ୍ତ୍ୱପୂର୍ଣ୍ଣ ଥିଲା, ସେ କ୍ଷେତ୍ରରେ ଯଶ ପାଲ ବେଶ୍ ଅଗ୍ରଣୀ ରହିଥିଲେ । ସାଂପ୍ରତିକ ସମୟର ମୋବାଇଲ ଫୋନ୍, ଟେଲିଭିଜନ, ପାଗଜନିତ ପୂର୍ବାନୁମାନ ଇତ୍ୟାଦି ନାନା ସଫଳତା ପଶ୍ଚାତରେ ମହାକାଶ ଗବେଷଣା, ଉପଗ୍ରହ ପ୍ରେରଣ ଜନିତ ଜ୍ଞାନକୌଶଳ ଯେ ନିର୍ଣ୍ଣାୟକ ହୋଇଛି ଏହା ନିଃସନ୍ଦେହ ମନେହୁଏ । ବିଶେଷକରି ଏ କ୍ଷେତ୍ରରେ କୃତ୍ରିମ ଉପଗ୍ରହ ପ୍ରେରଣର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହି ସବୁ ଗବେଷଣା କ୍ଷେତ୍ରରେ ଯେଉଁ ମୁଷ୍ଟିମେୟ ବୈଜ୍ଞାନିକଙ୍କର

ଭୂୟସୀ ଅବଦାନ ରହିଛି ସେମାନଙ୍କ ମଧ୍ୟରେ ଯଶ ପାଲ ଅନ୍ୟତମ । ବୈଜ୍ଞାନିକ ଗବେଷଣା ସହ ଅନ୍ୟାନ୍ୟ ବହୁ କ୍ଷେତ୍ରରେ ଯଶ ପାଲ ତାଙ୍କର ସ୍ୱାକ୍ଷର ରଖିଯାଇଛନ୍ତି ।

ଅନ୍ତରୀକ୍ଷ ବିଜ୍ଞାନ ଗବେଷଣା କ୍ଷେତ୍ରରେ ତାଙ୍କର ଅବଦାନ ଆନ୍ତର୍ଜାତିକ ସ୍ତରରେ ମଧ୍ୟ ସ୍ୱୀକୃତ ହୋଇଛି ଓ ସେ କିଛି ବର୍ଷ ଜାତିସଂଘର ବିଜ୍ଞାନର ଶାନ୍ତିପୂର୍ଣ୍ଣ ଅନ୍ତରୀକ୍ଷ ଗବେଷଣାର ପରାମର୍ଶଦାତା ରହିଛନ୍ତି । ଏହା ସହିତ ଭାରତ ସରକାରଙ୍କ ଯୋଜନା କମିଶନ କ୍ଷେତ୍ରରେ ପରାମର୍ଶଦାତା ଭାବେ କାର୍ଯ୍ୟ କରିଛନ୍ତି । ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତି ବିଭାଗର ସଚିବ ଭାବେ ଦୁଇବର୍ଷ କାର୍ଯ୍ୟ କରିଛନ୍ତି । ବିଶ୍ୱବିଦ୍ୟାଳୟ ଆୟୋଗ ବା ୟୁ.ଜି.ସି.ର ଚେୟାରମାନ ଭାବେ ୧୯୮୬ରୁ ୧୯୯୧ ପର୍ଯ୍ୟନ୍ତ କାର୍ଯ୍ୟକରି ବିଶ୍ୱବିଦ୍ୟାଳୟ ଶିକ୍ଷାରେ ବିଭିନ୍ନ ସଂସ୍କାରମୂଳକ ପଦକ୍ଷେପ ନେଇଛନ୍ତି । ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି । ପ୍ରାଥମିକ ଶିକ୍ଷାରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ଏନସିଆରଟିର ଷ୍ଟିଅରିଂ କମିଟିର ଚେୟାରମାନ ଭାବେ ନାନା ସଂସ୍କାରମୂଳକ ପଦକ୍ଷେପ ପାଇଁ ସରକାରଙ୍କୁ ସୁପାରିଶ କରିଛନ୍ତି । ୧୯୯୩ରେ ସେ ସରକାରଙ୍କୁ ପ୍ରାଥମିକ ସ୍ତରର ଶିକ୍ଷାରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ "ଲର୍ଣ୍ଣିଂ ୱିଦାଉଟ୍ ବର୍ଡନ" ଯେଉଁ ବିବରଣୀ ଦେଇଥିଲେ ତାହାକୁ ଏକ ଯୁଗାନ୍ତକାରୀ ଦଲିଲ ଭାବେ ଗ୍ରହଣ କରାଯାଉଛି । ପିଲାମାନଙ୍କର ସୃଜନଶୀଳତାର ବିକାଶ ପାଇଁ ତାଙ୍କ ଉପରୁ ପାଠର ବୋଝ କମାଇବାକୁ ସେ ବହୁ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଦେଇଛନ୍ତି । ପିଲାମାନଙ୍କୁ କୌତୂହଳପ୍ରବଣ କରିବା, ସେମାନଙ୍କର ସହଜାତ ରୁଚି ଓ ଆକର୍ଷଣ ପ୍ରତି ପ୍ରାଧାନ୍ୟ ଦେବା, ସ୍ୱାଭାବିକ ଧାରାରେ ସେମାନେ ଯେପରି ନିଜର ସୃଜନଶୀଳତାର ଅଭିବୃଦ୍ଧି ଘଟାଇବେ ସେ ପାଇଁ ଧ୍ୟାନ ଦେବା ଆବଶ୍ୟକ । ସେମାନଙ୍କୁ କେବଳ ପାଠର ବୋଝ ଦେଇ ଭାରାକ୍ରାନ୍ତ କରିବାଦ୍ୱାରା ଶିକ୍ଷାର ଆଭିମୁଖ୍ୟ ପୂରଣ ହୋଇପାରିବ ନାହିଁ ।

ବୈଜ୍ଞାନିକ, ଗବେଷକ ଓ ଶିକ୍ଷାବିତ୍ ଭାବରେ ସେ ନିଜର ଏକ ଆନ୍ତର୍ଜାତିକ ପରିଚୟ ସୃଷ୍ଟି କରିଥିଲେ । ଆନ୍ତର୍ଜାତିକ ସ୍ତରରେ ରହିଥିବା ପଦାର୍ଥ ବିଜ୍ଞାନ ସଂଘର ଉପ-ସଭାପତି ଓ ଜାତିସଂଘର ବିଜ୍ଞାନ ଓ ପ୍ରଯୁକ୍ତି ପରାମର୍ଶଦାତା କମିଟିର ସଭ୍ୟ ପରି ସମ୍ମାନଜନକ ପଦ ଅଳଙ୍କୃତ କରିଥିଲେ । ବୈଜ୍ଞାନିକ ଜ୍ଞାନ କିପରି ମାନବଜାତିର କଲ୍ୟାଣ ପାଇଁ ବିନିଯୋଗ ହେବ ଓ କୌଣସି ଧ୍ୱଂସାତ୍ମକ ଆଭିମୁଖ୍ୟରେ ପ୍ରୟୋଗ ହେବ ନାହିଁ ଏଥି ପାଇଁ ଯେଉଁ କେତେକ ଦରଦୀ ହେତୁବାଦୀ ବୁଦ୍ଧିଜୀବୀମାନେ ପ୍ରୟାସ କରିଛନ୍ତି ସେମାନଙ୍କ ମଧ୍ୟରେ ଯଶ ପାଲ ଅନ୍ୟତମ । ବିଜ୍ଞାନ ଓ ତାର ପ୍ରୟୋଗରେ ଆଧୁନିକ ପ୍ରଯୁକ୍ତି ଯେଉଁ ଅଭୂତପୂର୍ବ ସଫଳତା ବିଂଶ

ଶତାବ୍ଦୀରେ ହାସଲ କରିଛି ତାହାରି ଆଧାରରେ ସଂସାରରୁ ବହୁ ଦାରିଦ୍ର୍ୟ, ରୋଗ, ଦୁଃଖ ଦୂର କରାଯାଇପାରିବ। କିନ୍ତୁ ବିଜ୍ଞାନର ଯଦି ଅପପ୍ରୟୋଗ ହୁଏ ଓ ରାଷ୍ଟ୍ରମାନେ ଆଣବିକ ଅସ୍ତ୍ର ନିର୍ମାଣକରି ପରସ୍ପର ପ୍ରତି ଶତ୍ରୁଭାବାପନ୍ନ ହୁଅନ୍ତି ତେବେ ସଭ୍ୟତା ଯେ ଧ୍ୱଂସକାମୀ ହେବ ଏହି ଉପଲବ୍ଧି ବହୁ ବୈଜ୍ଞାନିକ ପୋଷଣ କରୁଥିଲେ। ବୈଜ୍ଞାନିକ ଜ୍ଞାନକୁ ମାନବ ସଭ୍ୟତାର କଲ୍ୟାଣ ଦିଗରେ ବିନିଯୋଗ କରିବା ପାଇଁ ବୈଜ୍ଞାନିକମାନଙ୍କର ଏକ ମାନବବାଦୀ ଦୃଷ୍ଟିଭଙ୍ଗୀ ରହିବା ଉଚିତ ଏହା ହିଁ ଯଶ ପାଲଙ୍କ ପରି ବହୁ ଶାନ୍ତିକାମୀ ବୈଜ୍ଞାନିକଙ୍କର ଜୀବନବ୍ୟାପୀ ଧ୍ୟେୟ ହୋଇ ରହିଥିଲା।

ବହୁ କର୍ମବହୁଳ ଜୀବନ ଭିତରେ ଯଶ ପାଲ ବିଭିନ୍ନ ସମ୍ବାଦପତ୍ର ଓ ପତ୍ରିକାରେ ବିଜ୍ଞାନ ସମ୍ବନ୍ଧୀୟ ଲେଖାମାନ ଲେଖୁଥିଲେ ଓ ବିଭିନ୍ନ ପ୍ରଶ୍ନର ଉତ୍ତର ରଖୁଥିଲେ। ନବେ ଦଶକରେ ଦୂରଦର୍ଶନରେ ତାଙ୍କ ପ୍ରଚାରିତ କାର୍ଯ୍ୟକ୍ରମ "ଟର୍ଣ୍ଣିଂ ପଏଣ୍ଟ" ଏକ ଅତି ଶିକ୍ଷଣୀୟ କାର୍ଯ୍ୟକ୍ରମ ଥିଲା। ଗୋଟିଏ ଗୋଟିଏ ଉଦ୍ଭାବନ ସଭ୍ୟତାର ରୂପରେଖ କିପରି ପରିବର୍ତ୍ତନ କରିଛି ତାହାର ଚମତ୍କାର ବିଶ୍ଳେଷଣ ସେ କରୁଥିଲେ। ଗମନାଗମନ, ପ୍ରିଣ୍ଟିଂପ୍ରେସ, ଆଧୁନିକ ଚିକିତ୍ସା, ମହାକାଶ ଯାତ୍ରା ଇତ୍ୟାଦି ବହୁ କ୍ଷେତ୍ରରେ ସଭ୍ୟତାର କିପରି ଅଗ୍ରଗତି ଘଟିଛି ଓ ଏହି ଦୁଇଶହ ବର୍ଷ ଭିତରେ ମାନବଜାତିର ଯେଉଁ ବୌଦ୍ଧିକ ଉତ୍ତରଣ ଘଟିଛି ତାହାର ବ୍ୟାଖ୍ୟା ସେ ସୁନ୍ଦର ଭାବରେ ବୁଝାଉଥିଲେ। ବିଜ୍ଞାନର ନାନା ଜଟିଳ ଓ କ୍ଲିଷ୍ଟକର ବିଷୟମାନଙ୍କୁ ଏତେ ସହଜ ଓ ସରଳ ଭାଷାରେ ଯେ ବ୍ୟାଖ୍ୟା କରି ସାଧାରଣ ଲୋକମାନଙ୍କୁ ସଚେତନ କରାଯାଇ ପାରିବ ତାଙ୍କର ଟର୍ଣ୍ଣିଂ ପଏଣ୍ଟ କାର୍ଯ୍ୟକ୍ରମର ତାହା ଆଭିମୁଖ୍ୟ ଥିଲା। ବିଜ୍ଞାନ କେବଳ ବୈଜ୍ଞାନିକମାନଙ୍କର ଗବେଷଣା ଓ ଅନୁଶୀଳନର ବିଷୟ ନୁହେଁ ଏହା ନିତିଦିନିଆ ଜୀବନଧାରାରେ ବି ପ୍ରୟୋଗ ହୋଇପାରିବ ଓ ଜୀବନର ମାନକୁ ଉନ୍ନତ କରିପାରିବ ଏହାକୁ ସେ ଦୂରଦର୍ଶନ କାର୍ଯ୍ୟକ୍ରମରେ ସୁନ୍ଦର ଭାବେ ବ୍ୟାଖ୍ୟା କରୁଥିଲେ।

ତାଙ୍କ ଅବଦାନର ସ୍ୱୀକୃତି ସ୍ୱରୂପ ଯଶ ପାଲ ବହୁ ଜାତୀୟ ତଥା ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇଥିଲେ। ମାର୍କୋନି ପୁରସ୍କାର, ଲାଲ ବାହାଦୂର ଶାସ୍ତ୍ରୀ ଜାତୀୟ ପୁରସ୍କାର, ବିଜ୍ଞାନକୁ ଜନପ୍ରିୟ କରିଥିବାରୁ ଇନ୍ଦିରା ଗାନ୍ଧୀ ପୁରସ୍କାର, ମେଘନାଦ ସାହା ମେଡଲ ଓ କଳିଙ୍ଗ ପୁରସ୍କାର ପାଇବାର ଗୌରବ ଲାଭ କରିଛନ୍ତି। ଏହା ସହିତ ଭାରତ ସରକାର ୧୯୭୬ରେ ତାଙ୍କୁ ପଦ୍ମଭୂଷଣ ଓ ୨୦୧୩ରେ ପଦ୍ମବିଭୂଷଣ ପରି ସମ୍ମାନରେ ସମ୍ମାନିତ କରିଛନ୍ତି। ଶିକ୍ଷାକ୍ଷେତ୍ରକୁ ତାଙ୍କର ଦିଗ୍‌ଦର୍ଶନ

ପାଇଁ ଜେଏନ୍‌ୟୁ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ଚାନ୍‌ସେଲର ଭାବେ ୨୦୦୭ରୁ ସେ ୨୦୧୨ ପର୍ଯ୍ୟନ୍ତ କାର୍ଯ୍ୟ କରିଛନ୍ତି।

ଯଶ ପାଲ କବି ନ ଥିଲେ କିନ୍ତୁ ତାଙ୍କୁ କୁହାଯାଏ ବିଜ୍ଞାନର କବି। ବିଜ୍ଞାନକୁ ଏପରି କଳାତ୍ମକ ଢଙ୍ଗରେ ସେ ସାଧାରଣ ମଣିଷ ପାଖକୁ ନେଇଥିବା ଯୋଗୁ ଓ ସେଥିରେ ନିଜ ସୃଜନଶୀଳତାର ଛାପ ରଖିଥିବା ଯୋଗୁ ତାଙ୍କୁ "ବିଜ୍ଞାନର କବି" ବୋଲି ଅଭିହିତ କରାଯାଏ।

ଯଶ ପାଲ ବ୍ୟକ୍ତିଗତ ଆତ୍ମବିଶ୍ୱାସରେ ଥିଲେ ହେତୁବାଦୀ ଓ ନିରୀଶ୍ୱରବାଦୀ। ହେତୁବାଦୀ ଜୀବନଦର୍ଶନରେ ସେ ଗଭୀର ଆସ୍ଥାପୋଷଣ କରୁଥିଲେ। ସଭ୍ୟତାର ସକଳ ବିକାଶ ଯେ ମାନବିକ ପ୍ରୟାସ ଓ ବୁଦ୍ଧିର ପ୍ରୟୋଗ ଯୋଗୁ ସମ୍ଭବ ହୋଇଛି ଏହା ତାଙ୍କର ବିଶ୍ୱାସ ରହିଥିଲା। ଯେତେବେଳେ ଦୂରଦର୍ଶନରେ ତାଙ୍କର ଟର୍ଣ୍ଣିଂ ପଏଣ୍ଟ କାର୍ଯ୍ୟକ୍ରମ ପ୍ରଚାରିତ ହେଉଥିଲା ସେହି ସମୟରେ ଗୋଟିଏ ଗୁଜବ ଦେଶରେ ପ୍ରଚାରିତ ହେଲା ଯେ ଗଣେଶ ମୂର୍ତ୍ତି କ୍ଷୀର ପିଉଛି। ବିଭିନ୍ନ ସ୍ଥାନରେ ଲୋକମାନେ ନେଇ ଗଣେଶ ଓ ଅନ୍ୟାନ୍ୟ ମୂର୍ତ୍ତି ପାଖରେ କ୍ଷୀର ଢାଳିବାକୁ ଲାଗିଲେ। ଏହି ଗୁଜବ ପ୍ରଚାରିତ ହେବାପରେ ତାହାର ବୈଜ୍ଞାନିକ ବ୍ୟାଖ୍ୟା ବିଜ୍ଞାନ ନିୟମ ଅନୁଯାୟୀ ସେ ଟର୍ଣ୍ଣିଂ ପଏଣ୍ଟରେ ଦର୍ଶାଇଥିଲେ। କ୍ଷୀର କୌଣସି ନିର୍ଜୀବ ବସ୍ତୁ ପିଏ ନାହିଁ, ଏହା ତଳକୁ ବୋହିଯାଏ। ଯେଉଁ ନିୟମରେ କୌଣସି ମୂର୍ତ୍ତି କ୍ଷୀର ପିଇବେ, ସେହି ନିୟମରେ ସିଏ ଚା', କଫି ଓ ଏପରିକି ମଦିରା ବି ପି' ପାରିବେ। ସେହିପରି ସୂର୍ଯ୍ୟପରାଗ, ଚନ୍ଦ୍ରଗ୍ରହଣ ପରି ଅନେକ ପ୍ରାକୃତିକ ଘଟଣାମାନଙ୍କୁ ବିଜ୍ଞାନସମ୍ମତ ଧାରାରେ ବ୍ୟାଖ୍ୟାକରି ସେ ସମ୍ବନ୍ଧରେ ରହିଥିବା କୁସଂସ୍କାର ଦୂରକରିବାକୁ ସେ ପ୍ରୟାସ କରୁଥିଲେ। ଲୋକମାନେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରିବାଦ୍ୱାରା ଜୀବନର ମାନ ଯେ ଉନ୍ନତ ହୋଇପାରିବ ଏହି ବାର୍ତ୍ତା ସେ ଦେଇ ଆସିଥିଲେ।

ଏହି ପ୍ରତିଭାଧର ବୈଜ୍ଞାନିକ, ଗବେଷକ, ଶିକ୍ଷାବିତ୍ ଓ ମାନବଦରଦୀ ହେତୁବାଦୀଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି।

(ପ୍ରଗତିବାଦୀ, ୦୯.୦୮.୨୦୧୭)

# ସ୍ୱଚ୍ଛ ମନର ମୂଲ୍ୟ

ଏକ ଉନ୍ନତ ପରିମଳ ବ୍ୟବସ୍ଥା ନେଇ ମହାତ୍ମା ଗାନ୍ଧୀଙ୍କର ସ୍ୱପ୍ନ ପୃଷ୍ଠଭୂମିରେ ପ୍ରଧାନମନ୍ତ୍ରୀ ଆରମ୍ଭ କରିଥିବା "ସ୍ୱଚ୍ଛ ଭାରତ ଅଭିଯାନ" ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଗାନ୍ଧୀଙ୍କର ୧୫୦ତମ ଜୟନ୍ତୀ ବେଳକୁ ସାରା ଭାରତବର୍ଷରେ ଏକ ସ୍ୱଚ୍ଛ ପରିମଳ ପରିବେଶ ସୃଷ୍ଟି କରିବାକୁ ଲକ୍ଷ୍ୟ ରଖାଯାଉଛି । ଆମର ରାସ୍ତାଘାଟ ଯେପରି ପରିଷ୍କାର ପରିଚ୍ଛନ୍ନ ରହିବ, ପ୍ରତ୍ୟେକ ପରିବାରରେ ଟଏଲେଟ ରହିପାରିବ, ସ୍ଲମର ଅସ୍ୱାସ୍ଥ୍ୟକର ପରିବେଶ ପରିବର୍ତ୍ତେ ସବୁ ଲୋକମାନଙ୍କୁ ବାସୋପଯୋଗୀ ଗୃହ ଦିଆଯାଇ ପାରିବ ଓ ଆମର ବାହ୍ୟ ପରିବେଶକୁ ନିର୍ମଳ କରାଯିବ ଏଥିପାଇଁ ସରକାର ଗୁରୁତ୍ୱ ଦେଉଛନ୍ତି । ଏହା ନିଶ୍ଚିତ ଭାବେ ଏକ ସ୍ୱାଗତଯୋଗ୍ୟ ଲକ୍ଷ୍ୟ । ସରକାରଙ୍କ ଲକ୍ଷ୍ୟ ଓ ଏପରିକି ଆମର ସମ୍ବିଧାନର ପ୍ରତିଶ୍ରୁତି ଅତି ପବିତ୍ର ମନେହେଲେ ବି ତାହା ବାସ୍ତବତାରେ ପରିଣତ ହୋଇପାରେ ନାହିଁ । ଜନସଚେତନତାର ସ୍ତର ଉନ୍ନତ ନ ହେଲେ ଓ ମାନସିକତାରେ ପରିବର୍ତ୍ତନ ନ ଆସିଲେ ଆମର ମହତ୍ ଲକ୍ଷ୍ୟଗୁଡ଼ିକ କେବଳ ଲକ୍ଷ୍ୟ ହୋଇ ରହିଯିବ । ଉନ୍ନତ ପରିମଳ ବ୍ୟବସ୍ଥା, ଉଚ୍ଚ-ନୀଚ ଭେଦଭାବର ବିଲୋପ, ନିରକ୍ଷରତା ଦୂରୀକରଣ, ମହିଳା ସଶକ୍ତୀକରଣ, ନିଶା ନିବାରଣ ପରି ବହୁ ମହତ୍ତର ଲକ୍ଷ୍ୟ ପୂରଣ ପାଇଁ ପରାଧୀନ ଭାରତରୁ ପ୍ରୟାସ ହୋଇଆସୁଛି । ଏ କ୍ଷେତ୍ରରେ କିଛି ଉନ୍ନତି ନିଶ୍ଚୟ ହୋଇଛି, ତେବେ ଲକ୍ଷ୍ୟ ପୂରଣ ପାଇଁ ଆହୁରି ଅନେକ ଦୂର ଯିବାକୁ ରହିଛି । ଆମ ଦେଶର ଦୁର୍ନୀତି, ସାମାଜିକ ସଚେତନତାର ଅଭାବ, ଜାତିବାଦୀ ସମାଜ-ବ୍ୟବସ୍ଥା, ବ୍ୟାପକ ନିରକ୍ଷରତା, ଉନ୍ନତ କର୍ମସଂସ୍କୃତିର ଅଭାବ, ଅହେତୁକ ଜୀବନଦୃଷ୍ଟି ପରି ବହୁ ପରିସ୍ଥିତି ଯୋଗୁ ସାମାଜିକ ଲକ୍ଷ୍ୟ ହାସଲ ହୋଇପାରୁ ନାହିଁ । ସମସ୍ତ ପ୍ରତିକୂଳତା ସତ୍ତ୍ୱେ ଏକ ଉନ୍ନତ ସ୍ଥିତିକୁ ଯିବା ପାଇଁ ସ୍ୱପ୍ନ ଓ ପ୍ରତିବଦ୍ଧତା ଯେ ପ୍ରକାଶ ପାଉଛି ଏହା ଏକ ବଡ ଉପଲବ୍ଧି ।

ନିକଟରେ ଅହମଦାବାଦଠାରେ ଗାନ୍ଧୀଙ୍କ ଆଶ୍ରମ ପରିସରରେ ଏକ ଗବେଷଣା ପ୍ରତିଷ୍ଠାନ ଓ ସଂଗ୍ରହାଳୟର ଉଦ୍‌ଘାଟନ ଅବସରରେ ମହାମାନ୍ୟ ରାଷ୍ଟ୍ରପତି ସ୍ୱଚ୍ଛ ଭାରତ ଅଭିଯାନକୁ ସ୍ୱାଗତକରି କହିଛନ୍ତି ଯେ ପ୍ରକୃତ ମଇଳା ଆମ ମନ ଭିତରେ ରହିଛି । ମହାତ୍ମା ଗାନ୍ଧୀ ବିଶ୍ୱକୁ ଅହିଂସାର ଆଲୋକ ଦେଖାଇଥିବା ବେଳେ ଆମ ସମାଜରେ ହିଂସା, ଅସହିଷ୍ଣୁତା ଓ ସାମ୍ପ୍ରଦାୟିକ

ବିଦ୍ୱେଷ ବୃଦ୍ଧି ପାଇବାରେ ଲାଗିଛି । ଆମ ମାନସିକତାରୁ ଏହି ମଇଳା ଦୂର ନ ହେଲେ ଆମର ସାମାଜିକ ଜୀବନ ଉନ୍ନତ ହୋଇପାରିବ ନାହିଁ । ବାହ୍ୟ ପରିମଳ ବ୍ୟବସ୍ଥା ନିଶ୍ଚୟ ସ୍ୱାଗତଯୋଗ୍ୟ, ହେଲେ ମନର ମଇଳା ପ୍ରଥମେ ଦୂର ହେବା ଆବଶ୍ୟକ । ରାଷ୍ଟ୍ରପତି ତାଙ୍କ ବକ୍ତବ୍ୟରେ କହିଲେ ଯେ ପ୍ରତିଦିନ ଆମେ ଆମ ଚତୁଃପାର୍ଶ୍ୱରେ ନାନା ହିଂସାତ୍ମକ ଘଟଣା ଘଟୁଥିବା ଦେଖୁଛେ । ଭୟ, ଅବିଶ୍ୱାସ ଓ ବିଦ୍ୱେଷ ହିଁ ହିଂସାତ୍ମକ ପରିସ୍ଥିତିକୁ ଉଦ୍ଭବ କରାଉଛି । ଅବିଚ୍ଛିନ୍ନ ଭାବରେ ଘଟି ଯାଉଥିବା ହିଂସାତ୍ମକ ଘଟଣାମାନଙ୍କୁ ଆମେ ଦୂର କରିବାକୁ ଉପାୟ ଚିନ୍ତା କଲାବେଳେ ଗାନ୍ଧୀଙ୍କର ଅହିଂସା ଆମକୁ ଅନେକ ପ୍ରେରଣା ଯୋଗାଉଛି । ମଣିଷ ଯେତେବେଳେ ବିଚାରଶୀଳତାଠାରୁ ଦୂରେଇ ଯାଏ ସିଏ ହିଂସାତ୍ମକ ପନ୍ଥାର ଆଶ୍ରୟ ନିଏ । ହିଂସା, ଅନ୍ୟ ପ୍ରତି ବିଦ୍ୱେଷ ଓ ଅସହିଷ୍ଣୁତା ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ ଓ ରାଷ୍ଟ୍ରୀୟ ସଂହତି ପାଇଁ ବଡ ପ୍ରତିବନ୍ଧକ ବୋଲି ରାଷ୍ଟ୍ରପତି ତାଙ୍କ ବକ୍ତବ୍ୟରେ ଉଲ୍ଲେଖ କରିଛନ୍ତି । ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ସାମ୍ପ୍ରଦାୟିକ ସଦ୍‌ଭାବ ରାଷ୍ଟ୍ରୀୟ ବିକାଶର ମୂଳମନ୍ତ୍ର ବୋଲି ରାଷ୍ଟ୍ରପତି ମତ ଦେଇଛନ୍ତି ।

ସଂପ୍ରତି ଆମର ଗଣମାଧ୍ୟମ ଓ ବୁଦ୍ଧିଜୀବୀ ମହଲରେ ଅସହିଷ୍ଣୁତା ଓ ସାମ୍ପ୍ରଦାୟିକତା ପ୍ରସଙ୍ଗରେ ନାନା ଚର୍ଚ୍ଚା ହେଉଛି । ସମାଜର କିଛି ପ୍ରତିଷ୍ଠିତ ସାହିତ୍ୟିକ, ବୁଦ୍ଧିଜୀବୀ, ସୃଜନଶୀଳ କଳାକାର ଓ ସମାଜର ପ୍ରତିଷ୍ଠିତ ବ୍ୟକ୍ତିବିଶେଷ ବର୍ଦ୍ଧିଷ୍ଣୁ ଅସହିଷ୍ଣୁତା ଓ ସାମ୍ପ୍ରଦାୟିକତା ନେଇ ଗଭୀର ଉଦ୍‌ବେଗ ପ୍ରକାଶ କରୁଛନ୍ତି । ସେମାନଙ୍କର ଆଶଙ୍କା ହେଉଛି ଯେ ସୃଜନଶୀଳ ସ୍ରଷ୍ଟାମାନଙ୍କର ମୁକ୍ତ ଭାବନା ଏହାଦ୍ୱାରା ସଙ୍କୁଚିତ ହେବ ଓ ସମାଜରେ ମୁକ୍ତ ପରିବେଶ ନ ରହିଲେ ବୌଦ୍ଧିକ ସ୍ତରରେ ସମାଜ ସ୍ଥାଣୁ ପାଲଟିଯିବ । ସେମାନଙ୍କର ଏହି ଆଶଙ୍କା ନିରର୍ଥକ ବୋଲି କେତେକ ମତ ବ୍ୟକ୍ତ କରୁଛନ୍ତି ଓ ଏପରିକି ସେମାନଙ୍କ ପ୍ରତି ରାଜନୈତିକ ଉଦ୍ଦେଶ୍ୟ ଆରୋପ କରୁଛନ୍ତି । ଏହି ପ୍ରସଙ୍ଗକୁ ନେଇ ସାହିତ୍ୟିକ ଓ ବୁଦ୍ଧିଜୀବୀ ଗୋଷ୍ଠୀ ଭାଗ ହୋଇ ଯାଉଥିବା ମନେହେଉଛି । ତେବେ ପ୍ରସଙ୍ଗଟିକୁ ରାଜନୀତିରୁ ମୁକ୍ତ ରଖି ନିରପେକ୍ଷ ଭାବେ ବିଚାର କରାଯାଇପାରେ ।

ଅସହିଷ୍ଣୁତାର ଅଭିବ୍ୟକ୍ତି ନାନା ଭାବରେ ଓ ନାନା ସ୍ତରରେ ହୋଇପାରେ । ଛୋଟ ବଡ କେତେକ ଘଟଣାକୁ ବାଦ୍ ଦେବାପରେ ଏହା ଭିତରେ ତିନି ଜଣ ପ୍ରଥିତଯଶା ସଂସ୍କାରକ, ଲେଖକ ଓ ବୁଦ୍ଧିଜୀବୀ ସେମାନଙ୍କର ପ୍ରଗତିଶୀଳ ବିଚାରବୋଧ ପାଇଁ ହତ୍ୟାର ଶିକାର ହୋଇଛନ୍ତି । ଡାକ୍ତର ନରେନ୍ଦ୍ର ଦାଭୋଲକର ଥିଲେ ଜଣେ ବୁଦ୍ଧିଜୀବୀ ସଂସ୍କାରକ । ମହାରାଷ୍ଟ୍ରରେ ଜାତିଆଣ ଭେଦଭାବ ଦୂର କରିବା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର କରାଇବାରେ ସେ ଥିଲେ ଜଣେ

ଅଗ୍ରଗାମୀ ବୁଦ୍ଧିଜୀବୀ। ସେହିପରି ଗୋବିନ୍ଦ ପାନସାରେ ଥିଲେ ଜଣେ ପ୍ରଗତିଶୀଳ ସଂସ୍କାରକ ଓ ସୁଲେଖକ। ସମାଜରୁ କୁସଂସ୍କାର ଦୂର କରିବା ପାଇଁ ସେ ଉତ୍ସର୍ଗୀକୃତ ଥିଲେ। ଏମ.ଏମ କୁଲବର୍ଗୀ ଥିଲେ ଜଣେ ଶିକ୍ଷାବିତ୍, ଉଚ୍ଚଶ୍ରେଣୀର ଗବେଷକ ଓ ଖ୍ୟାତିସମ୍ପନ୍ନ କନଡ ସାହିତ୍ୟିକ। ଏମାନେ ସମସ୍ତେ ଥିଲେ ଅହିଂସକାମୀ ସଂସ୍କାରକ, ବୁଦ୍ଧିଜୀବୀ ଓ ହେତୁବାଦୀ ଚିନ୍ତାନାୟକ। ଏମାନଙ୍କୁ କେତେକ ରକ୍ଷଣଶୀଳ ଧର୍ମାନ୍ଧ ବ୍ୟକ୍ତି ହତ୍ୟା କରିଛନ୍ତି। ଅନ୍ୟର ମତ ବା ବିଚାରବୋଧ ସହିତ ମତ ପାର୍ଥକ୍ୟ ରହିପାରେ ଓ ରହିବା ସ୍ୱାଭାବିକ ମଧ୍ୟ। ତେବେ ସେମାନଙ୍କର ବିଚାରଧାରା ପ୍ରତି ଅସହିଷ୍ଣୁ ହୋଇ ସେମାନଙ୍କୁ ଯୋଜନାବଦ୍ଧ ଭାବରେ ହତ୍ୟା କରିବା ଏକ ଜଘନ୍ୟ ଘଟଣା ମନେହୁଏ। ଗଣମାଧ୍ୟମର ସମ୍ବାଦ ଅନୁଯାୟୀ ଏହି ସୃଜନଶୀଳ ପ୍ରତିଭାଧର ବ୍ୟକ୍ତିମାନେ ରକ୍ଷଣଶୀଳ ଧର୍ମାନ୍ଧ ଲୋକମାନଙ୍କ ଦ୍ୱାରା ନିହତ ହୋଇଛନ୍ତି। ଯେଉଁମାନେ ଏହି ହତ୍ୟା ଘଟଣାରେ ସଂପୃକ୍ତ ସେମାନେ ଆଇନ୍, ବିଚାରଶୀଳତା ଓ ମାନବିକତାର ବିରୋଧୀ କହିଲେ ଅତ୍ୟୁକ୍ତି ହେବ ନାହିଁ। ନିହତ ବୁଦ୍ଧିଜୀବୀମାନେ କୌଣସି ରାଜନୈତିକ ଗୋଷ୍ଠୀର ନୁହନ୍ତି କିମ୍ବା ସେମାନେ କିଛି ରାଜନୈତିକ ଲକ୍ଷ୍ୟ ପୋଷଣ କରିନାହାନ୍ତି। ସେମାନେ ସମାଜ ସଂସ୍କାର, ମାନବବାଦର ପ୍ରସାର ଓ କୁସଂସ୍କାରର ବିଲୋପ କରି ବୈଜ୍ଞାନିକ ମନୋଭାବର ବିସ୍ତାର ପାଇଁ ପ୍ରୟାସ କରି ଆସିଛନ୍ତି। ସେମାନଙ୍କୁ ହତ୍ୟାକରି ଧର୍ମାନ୍ଧ ବ୍ୟକ୍ତିମାନେ ଏହି ପ୍ରକାରର ଏକ ବାୟୁମଣ୍ଡଳ ସୃଷ୍ଟି କରିବାକୁ ଚାହାନ୍ତି ଯେ ଧାର୍ମିକ କୁସଂସ୍କାର ବିରୁଦ୍ଧରେ କେହି ସ୍ୱର ଉତ୍ତୋଳନ କରିପାରିବେ ନାହିଁ।

ଅସହିଷ୍ଣୁତା ଓ ସାମ୍ପ୍ରଦାୟିକତା ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଲିଷ୍ଟ। ସାମ୍ପ୍ରଦାୟିକତା ବିଭିନ୍ନ ସ୍ତରରେ ରହିପାରେ, ତେବେ ଧାର୍ମିକ ଅସହିଷ୍ଣୁତା ହେଉଛି ସାମ୍ପ୍ରଦାୟିକତା। ଭିନ୍ନ ଧର୍ମଗୋଷ୍ଠୀ, ସଂସ୍କୃତି ଓ ଜୀବନଧାରା ପୋଷଣ କରୁଥିବା ବ୍ୟକ୍ତିମାନଙ୍କ ପ୍ରତି ଯେତେବେଳେ ଘୃଣା ଓ ବିଦ୍ୱେଷ ମନୋଭାବ ବ୍ୟକ୍ତ ହୁଏ ତାହା ସାମ୍ପ୍ରଦାୟିକତାର ରୂପ ନୁହେଁ। ସମାଜରେ ବିବିଧତା ରହିବା ଏକ ସ୍ୱାଭାବିକ ପ୍ରକ୍ରିୟା। ତେବେ ଯେତେବେଳେ ଏହି ଭାବନା ମସ୍ତିଷ୍କକୁ ଆକ୍ରାନ୍ତ କରେ ଯେ ଯେଉଁମାନେ ଆମ ବିଶ୍ୱାସ ଓ ଧାର୍ମିକ ଜୀବନଦୃଷ୍ଟିକୁ ଗ୍ରହଣ କରନ୍ତି ନାହିଁ ଓ ଭିନ୍ନ ବିଶ୍ୱାସ ଓ ଧର୍ମମତରେ ଆସ୍ଥା ପୋଷଣ କରନ୍ତି ସେମାନେ ଆମର ଶତ୍ରୁ, ସେତେବେଳେ ସାମ୍ପ୍ରଦାୟିକତାର ଉଦ୍ଭବ ହୋଇଥାଏ। ଧାର୍ମିକ ବିଶ୍ୱାସ ଆଧାରରେ ସମାଜକୁ ଭାଗ ଭାଗ କରିବା ଓ ଧର୍ମଗୋଷ୍ଠୀମାନଙ୍କ ମଧ୍ୟରେ ତିକ୍ତତା ସୃଷ୍ଟି କରିବା ହେଉଛି ସାମ୍ପ୍ରଦାୟିକତା। ଜଣେ ବ୍ୟକ୍ତି ଉତ୍ତରାଧିକାରୀ ସୂତ୍ରରେ ଏକ ଧର୍ମର ପରିଚୟ ପାଇଥାଏ ଓ ଏହା ବ୍ୟକ୍ତିଗତ ବିଶ୍ୱାସ ସ୍ତରରେ ରହିବାକୁ କେହି ବିରୋଧ କରିବେ ନାହିଁ। କିନ୍ତୁ ଧର୍ମଗତ ପରିଚୟ ଆଧାରରେ

ସମାଜରେ ଏକ ଭେଦଭାବ ଓ ବିଦ୍ୱେଷର ବାତାବରଣ ସୃଷ୍ଟି ହେଲେ ରାଷ୍ଟ୍ରୀୟ ସଂହତି ବାଧାପ୍ରାପ୍ତ ହୋଇଥାଏ। ଏକଦା ଆମ ଦେଶରେ ଜାତିଗତ ବିଦ୍ୱେଷ ତୀବ୍ର ଭାବରେ ରହିଥିଲା ଓ ସେଥି ପାଇଁ ରାଷ୍ଟ୍ରକୁ ବହୁ ମୂଲ୍ୟ ଦେବାକୁ ହୋଇଛି। ଜାତିଗତ ବିଦ୍ୱେଷ ଦୂର ହୋଇ ଆସୁଥିବା ବେଳେ ସାମ୍ପ୍ରଦାୟିକ ବିଦ୍ୱେଷ ସମାଜରେ ମୁଣ୍ଡ ଟେକିବା ବା ତାହାକୁ ଯୋଜନାବଦ୍ଧ ଭାବେ ପ୍ରସାର କରାଇବା ଏକ ସୁସ୍ଥ ସମାଜ ପାଇଁ ବଡ ପ୍ରତିବନ୍ଧକ ମନେହୁଏ।

ମାନବବାଦ, ସମତାର ଭାବ, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ଧର୍ମନିରପେକ୍ଷ ଜୀବନଦୃଷ୍ଟି ଏ ଯୁଗର ସାର୍ବଜନୀନ ମୂଲ୍ୟବୋଧ। ଏସବୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସାମାଜିକ ନ୍ୟାୟ ଓ ଅହିଂସ ଭାବଧାରା ସହ ସମତାଳ ମନେହୁଏ। ପରନ୍ତୁ ସନ୍ତ୍ରାସବାଦ, ଅସହିଷ୍ଣୁତା ଓ ସାମ୍ପ୍ରଦାୟିକତା ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ। ମହାମାନ୍ୟ ରାଷ୍ଟ୍ରପତି ଯେତେବେଳେ ମାନସିକ ସ୍ତରରେ ମଇଳାକୁ ଦୂର କରିବାକୁ ନିବେଦନ କରିଛନ୍ତି ସେ ପ୍ରାୟତଃ ଏସବୁକୁ ପରିହାର କରିବାକୁ କହିଛନ୍ତି। ରାଷ୍ଟ୍ରପତିଙ୍କର ବକ୍ତବ୍ୟ ଥିଲା – "Real dirt of India lies not in our streets but in our minds"। ଆମ ମନର ମଇଳା ଦୂର ନ ହେଲେ ବୌଦ୍ଧିକ ପଙ୍ଗୁତା ଓ ନୈତିକ କ୍ଷୟଶୀଳତାରେ ଆମେ ଆକ୍ରାନ୍ତ ହେବା। ସମାଜରେ ବୌଦ୍ଧିକ ଓ ନୈତିକ କ୍ଷୟଶୀଳତା ଦେଖାଦେଲେ ରାଷ୍ଟ୍ରକୁ ବହୁ ମୂଲ୍ୟ ଦେବାକୁ ପଡେ। ଏହି ଐତିହାସିକ ସତ୍ୟଟିକୁ ଦେଶବାସୀଙ୍କୁ ସୂଚାଇବା ରାଷ୍ଟ୍ରପତିଙ୍କ ବକ୍ତବ୍ୟର ନିହିତାର୍ଥ ମନେହୁଏ।

(ପ୍ରଗତିବାଦୀ, ୨୩.୧୨.୨୦୧୫)

# ଆନ୍ତର୍ଜାତିକ ଦୃଷ୍ଟି ଓ ଆଗାମୀ ବିଶ୍ୱ

କେତେକ ଭୌଗୋଳିକ, ସାଂସ୍କୃତିକ ଓ ରାଜନୈତିକ କାରଣରୁ ମଣିଷ ସମାଜ ବହୁ ଅତୀତରୁ ବିଭାଜିତ ହୋଇ ରହିଛି । ଏହା ସହିତ ଭାଷାଗତ, ବର୍ଣ୍ଣଗତ ଓ ଧର୍ମଗତ କାରଣରୁ ସମାଜରେ ବି ବିଭାଜନ ଘଟିଛି । ରାଷ୍ଟ୍ରୀୟ ଭାବନାର ବିକାଶ ପରଠାରୁ ମଣିଷ ସମାଜର ରାଜନୈତିକ ବିଭାଜନ ଦୃଢ ଭିତ୍ତି ନେଇଛି । ଏହା ଛଡା ଅନ୍ୟାନ୍ୟ କେତେକ କାରଣ ନେଇ ସମାଜ ବି ପୃଥକ୍ ପୃଥକ୍ ଗୋଷ୍ଠୀରେ ବିଭାଜିତ ହୋଇଛି । ବୌଦ୍ଧିକ ମାନଦଣ୍ଡରୁ ସମାଜରେ ଭିନ୍ନତା, ପାର୍ଥକ୍ୟ ରହିବା ଏକ ସ୍ୱାଭାବିକ ପ୍ରକ୍ରିୟା । ତେବେ ସ୍ଥଳ ବିଶେଷରେ ସାମାଜିକ ବିଭାଜନ ବା ପାର୍ଥକ୍ୟକୁ ଆଧାର କରି ଗୋଷ୍ଠୀ ଗୋଷ୍ଠୀ ଭିତରେ ବିଦ୍ୱେଷ, ହିଂସାତ୍ମକ ମନୋଭାବ ସୃଷ୍ଟି ହୋଇଛି । ମାନବ ସଭ୍ୟତାର ଇତିହାସରେ କେତେ କେତେ ଯୁଦ୍ଧ, ବିଭୀଷିକା, ଶୋଷଣ, ଅତ୍ୟାଚାର ଓ ଅମାନବିକ ବର୍ବରତା ସୃଷ୍ଟି ହୋଇଛି । ଏସବୁ ସତ୍ତ୍ୱେ ମାନବ ସଭ୍ୟତାର ଇତିହାସରେ କେତେ କେତେ ମହତ୍ତର ଭାବନା, ମାନବିକ ସମ୍ବେଦନଶୀଳତା, ବିଶ୍ୱ ଭ୍ରାତୃତ୍ୱର ପରିକଳ୍ପନା ଓ ସୁଖ ଶାନ୍ତିର ବାର୍ତ୍ତା ମଧ୍ୟ ପ୍ରଚାରିତ ହୋଇଛି । ଏକ କ୍ଷୁଦ୍ର ପରିସରରୁ ଏକ ବୃହତ୍ତର ଓ ମହତ୍ତର ଜୀବନବୋଧର ପ୍ରସାର ପାଇଁ ମାନବିକ ମୂଲ୍ୟବୋଧମାନ ପ୍ରେରଣା ଦାୟକ ହୋଇ ରହିଛି ।

ଦେଶାତ୍ମବୋଧ, ଜାତୀୟତାବାଦ ସାମାଜିକ ମୂଲ୍ୟବୋଧ ଭାବେ ଏବେ ବି ମାନବ ସମାଜରେ ସୁଦୃଢ ହୋଇରହିଛି । ତେବେ ବିଂଶ ଶତାବ୍ଦୀର ମଧ୍ୟଭାଗରୁ ଆନ୍ତର୍ଜାତୀୟତାବାଦର ଭାବଧାରା ବିଶ୍ୱ ସ୍ତରରେ କିଛି ଆଲୋଡନ ଆଣିଛି । ବିଭିନ୍ନ ଆନ୍ତର୍ଜାତିକ ସଙ୍ଗଠନମାନ ବିଶ୍ୱ ସ୍ତରରେ ସୃଷ୍ଟି ହୋଇଛି । ଅତୀତରେ କେତେକ ସେବାମୂଳକ ସଙ୍ଗଠନ ସୃଷ୍ଟି ହୋଇଥିଲେ ବି ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ବିଶେଷତଃ ବିଂଶ ଶତାବ୍ଦୀର ମଧ୍ୟ ଭାଗରୁ ନିର୍ଦ୍ଦିଷ୍ଟ ରୂପରେଖ ନେବା ସମ୍ଭବ ହୋଇପାରିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ଯୁଦ୍ଧ-ବିଧ୍ୱସ୍ତ ପୃଥିବୀରେ ଏହି ଭାବନା ଏକ ଆତଙ୍କ ସୃଷ୍ଟି କରିଛି ଯେ ଯଦି ଘଟଣାକ୍ରମରେ ତୃତୀୟ ବିଶ୍ୱଯୁଦ୍ଧ ହୁଏ ତେବେ ସଭ୍ୟତା ଆତ୍ମହତ୍ୟା କରିବ । ଆଣବିକ ଅସ୍ତ୍ର ନିର୍ମାଣର ଜ୍ଞାନକୌଶଳ ଏକ ହିଂସାତ୍ମକ ପୃଥିବୀରେ ସଭ୍ୟତାର ମୃତ୍ୟୁ ଘଣ୍ଟି ବଜାଇବ । ଏହି ବିଚାରବୋଧରୁ ରାଜନୈତିକ ସ୍ତରରେ ଜାତିସଂଘର ପ୍ରତିଷ୍ଠା ସଭ୍ୟତାର ଇତିହାସରେ ଥିଲା ଏକ ଉଲ୍ଲେଖନୀୟ ଘଟଣା । ଏହା ସହିତ ସେହି ସମୟର

ବିଭିନ୍ନ ଦେଶର ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ, ବୈଜ୍ଞାନିକ ଓ ମାନବହିତୈଷୀ ହେତୁବାଦୀମାନେ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ଗମ୍ଭୀର ଚିନ୍ତା ପ୍ରକଟ କରିବାକୁ ଲାଗିଲେ। ମାନବିକ ସମସ୍ୟା ଓ ବିଭିନ୍ନ ସଙ୍କଟମାନଙ୍କର କିପରି ଶାନ୍ତିପୂର୍ଣ୍ଣ ସମାଧାନ ସମ୍ଭବ ହେବ ସେଥିପାଇଁ ଗମ୍ଭୀର ଚିନ୍ତା ବିଭିନ୍ନ ସ୍ତରରେ ପ୍ରକାଶିତ ହେବାକୁ ଲାଗିଲା। ଜାତିସଂଘର ପରିସର ଭିତରେ ବିଭିନ୍ନ ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ସଙ୍ଗଠନମାନ ଆନ୍ତର୍ଜାତିକ ସ୍ତରରେ କାର୍ଯ୍ୟ କରିବାକୁ ସୃଷ୍ଟି ହେଲା। ଜାତିସଂଘ ବାହାରେ ବିଭିନ୍ନ ରାଷ୍ଟ୍ରମାନଙ୍କର ସହଯୋଗରେ ସେହି ଦେଶମାନଙ୍କର ସମସ୍ୟାମାନଙ୍କୁ ସମାଧାନ କରିବା ପାଇଁ ସଙ୍ଗଠନମାନ ମୁଣ୍ଡ ଟେକିଲା। ଏହି ପରିବେଶରେ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ବିଶ୍ୱୈକଭାବର ମନୋଭାବ ସାରା ବିଶ୍ୱରେ ପରିବ୍ୟାପ୍ତ ହେବାକୁ ଲାଗିଲା। ମାନବ ସମାଜରେ ଶାନ୍ତି, ସ୍ଥିରତା ଓ ଭ୍ରାତୃତ୍ୱଭାବର ପ୍ରସାର ଏହି ପ୍ରକ୍ରିୟା ମାଧ୍ୟମରେ ଅଗ୍ରଗତି କଲା।

ଆନ୍ତର୍ଜାତୀୟତାବାଦ ଯେତିକି ଏକ ରାଜନୈତିକ ଆଦର୍ଶ ସେହିପରି ଏକ ସାଂସ୍କୃତିକ ବିଚାରବୋଧ। ରାଜନୈତିକ ସ୍ତରରେ ବିଭିନ୍ନ ରାଷ୍ଟ୍ରର ସହଯୋଗରେ ସମାଜର ଅର୍ଥନୈତିକ ବିକାଶ କିପରି ତ୍ୱରାନ୍ୱିତ ହୋଇପାରିବ ଓ ପାରସ୍ପରିକ ଆଦାନପ୍ରଦାନଦ୍ୱାରା ବୈଜ୍ଞାନିକ ଗବେଷଣା ଅଧିକ ଫଳପ୍ରଦ ହେବ ତାହା ଏହାର ଲକ୍ଷ୍ୟ ହେଲା। ସଂପ୍ରତି କେତେକ ଗବେଷଣା ଏତେ ବ୍ୟୟବହୁଳ ଯେ ତାହା ଗୋଟିଏ ରାଷ୍ଟ୍ର ପାଖରେ କଷ୍ଟକର ଓ ଜଟିଳ ମନେ ହେଉଛି। ଏଥି ପାଇଁ ଆନ୍ତର୍ଜାତିକ ସହଯୋଗର ଯଥେଷ୍ଟ ଆବଶ୍ୟକତା ପଡୁଛି। ବିଶେଷକରି ସାଂପ୍ରତିକ ସ୍ଥିତିରେ ପରିବେଶ ଜନିତ ପ୍ରଦୂଷଣ ମାନବ ସମାଜ ପାଇଁ ଏକ ବଡ ସଙ୍କଟ ଭାବେ ଉଭା ହୋଇଛି। ପରିବେଶର ଉତ୍ତପ୍ତୀକରଣ ବା ଗ୍ଲୋବାଲ ୱାର୍ମିଂ, ପାଗରେ ପରିବର୍ତ୍ତନ, ପ୍ରାକୃତିକ ବିପର୍ଯ୍ୟୟ ପରି ସମସ୍ୟାମାନ ଏତେ ବ୍ୟାପକ ଓ ସଙ୍କଟଜନକ ପରିସ୍ଥିତି ସୃଷ୍ଟି କରିବାରେ ଲାଗିଛି ତାହା କୌଣସି ଗୋଟିଏ ଦେଶର ପ୍ରୟାସରେ ସମାଧାନ ହୋଇପାରିବ ନାହିଁ। ଏଥି ପାଇଁ ଆନ୍ତର୍ଜାତିକ ସହଯୋଗ ଓ ଗବେଷଣାର ଆବଶ୍ୟକତା ରହିଛି। କାରଣ ଏହା କୌଣସି ଦେଶ ବା ଭୂଖଣ୍ଡର ସମସ୍ୟା ହୋଇ ନାହିଁ, ବରଂ ଏହା ସମଗ୍ର ବିଶ୍ୱ ଓ ମାନବ ସମାଜ ପାଇଁ ଆହ୍ୱାନ ସୃଷ୍ଟି କରୁଛି। ଏହି ସଙ୍କଟର ମୁକାବିଲା ପାଇଁ ବିଶ୍ୱ ସ୍ତରରେ ପ୍ରୟାସ ଆବଶ୍ୟକ। ସେହିପରି ଯେଉଁ ରାଷ୍ଟ୍ର ସକଳରେ ବହୁ ଦାରିଦ୍ର୍ୟ ରହିଛି ଓ ଜନଗଣଙ୍କର ଜୀବନ ମାନରେ ଗୁଣାତ୍ମକ ପରିବର୍ତ୍ତନ ରାଷ୍ଟ୍ରର ଉଦ୍ୟମରେ ସମ୍ଭବ ହୋଇ ପାରୁନାହିଁ ସେ କ୍ଷେତ୍ରରେ ଆନ୍ତର୍ଜାତିକ ସାହାଯ୍ୟ ଓ ସହଯୋଗର ଗୁରୁତ୍ୱ ରହିଛି। ପୃଥିବୀର ସବୁ ଦେଶର ସମସ୍ତ ଜନଗଣ କିପରି ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଓ ନିରାମୟ ଜୀବନଯାପନ କରିପାରିବେ ସେ ପାଇଁ ଆନ୍ତର୍ଜାତିକ ପ୍ରୟାସ ଆବଶ୍ୟକ। ଅତୀତର କେତେକ ମହାମାରୀକୁ ନିର୍ମୂଳ କରିବାରେ ବିଶ୍ୱ ସ୍ୱାସ୍ଥ୍ୟ ସଂଘ ଏକ ଭୂମିକା ନେଇପାରିଛି। ସେହିପରି

ପୃଥିବୀର ସମସ୍ତ ଜନଗଣଙ୍କୁ ଆବଶ୍ୟକ ଉନ୍ନତ ସ୍ୱାସ୍ଥ୍ୟ ସେବା ଯୋଗାଇବା ଓ କେତେକ ଦୁରାରୋଗ୍ୟ ରୋଗମାନଙ୍କର ନିରାକରଣ ପାଇଁ ବିଶ୍ୱ ସ୍ତରରେ ପ୍ରୟାସ ଓ ଗବେଷଣାର ଯେ ଆବଶ୍ୟକତା ରହିଛି ଏହା ଅସ୍ୱୀକାର କରିହେବ ନାହିଁ।

ସାଂପ୍ରତିକ ବିଶ୍ୱରେ ଏକ ଭାବନା ପ୍ରସାରିତ ହେଉଛି ଯେ କେତେକ ପ୍ରାକୃତିକ ସମ୍ପଳ ଅପରିସୀମ ନୁହେଁ ଓ କିଛି ବର୍ଷ ପରେ ସେ ସବୁର ସମାପ୍ତି ହେବ। ପେଟ୍ରୋଲ, ପ୍ରାକୃତିକ ଇନ୍ଧନ, କୋଇଲା ପରି କେତେକ ପ୍ରାକୃତିକ ସମ୍ପଦ ପୃଥିବୀରୁ ଦିନେ ସରିଯିବ। ସେପରି ସ୍ଥିତିରେ ଭବିଷ୍ୟତ ପୃଥିବୀର ଜନଗଣଙ୍କର ଜୀବନଶୈଳୀ କିପରି ହେବ ତାହା ଏବେ ଚିନ୍ତାର ବିଷୟ ହେଉଛି। ଆମେ ଆଗାମୀ ପିଢିର ଜନଗଣଙ୍କ ପାଇଁ ଏକ ପ୍ରଦୂଷିତ ପୃଥବୀ ଓ ପ୍ରାକୃତିକ ସମ୍ପଳହୀନ ପରିବେଶ ଛାଡିଯିବା କି ? ଏହି ପରିପ୍ରେକ୍ଷୀରେ ବିକାଶର ଏକ ଭିନ୍ନ ଚିତ୍ର ନେଇ କେତେକ ବିଶିଷ୍ଟ ବ୍ୟକ୍ତି ଚିନ୍ତା ବ୍ୟକ୍ତ କରୁଛନ୍ତି। ବିକାଶ କିପରି ଏକ ନିରନ୍ତର ପ୍ରକ୍ରିୟା ଭାବେ ସଭ୍ୟତାକୁ ଆଗକୁ ନେଉଥିବ ଓ ମାନବ ସମାଜରେ ଅଧିକରୁ ଅଧିକ ସୁଖ ଶାନ୍ତିର ପରିବେଶ ଆଣିପାରିବ ସେ ନେଇ ବିଚାର ବିମର୍ଶ ପ୍ରକାଶ ପାଉଛି। ଅର୍ଥାତ୍ ବିକାଶର ଭିତ୍ତି ନିରନ୍ତର ହେବା ସହ ଏହା ଏକ ସମତାର ପରିବେଶ ଦିଗରେ ସହାୟକ ହେବା ଆବଶ୍ୟକ। ଯେଉଁ ପ୍ରାଯୁକ୍ତିକ ଜ୍ଞାନ ଓ ବିକାଶ ସମାଜରେ ଅର୍ଥନୈତିକ ବୈଷମ୍ୟକୁ ଦୃଢ କରିବା ସହ ପରିବେଶକୁ ନଷ୍ଟ କରୁଥିବ ତାହାକୁ ପରିହାର କରିବାକୁ ହେବ। ପରିବେଶ ସୁରକ୍ଷା, ନିରନ୍ତର ପ୍ରଗତି ଓ ଏକ ସମତାପୂର୍ଣ୍ଣ ସମାଜ ଗଠନ ପ୍ରଗତିର ଆଭିମୁଖ୍ୟ ହେବା ଦରକାର। ଏହିପରି ଏକ ବିଶ୍ୱ ପାଇଁ ଆନ୍ତର୍ଜାତିକ ସଂପୃକ୍ତି ଅବଶ୍ୟମ୍ଭାବୀ ମନେହୁଏ।

କେତେକ ସମାଜ ଏକବିଂଶ ଶତାବ୍ଦୀରେ ବି ଅତ୍ୟନ୍ତ ରକ୍ଷଣଶୀଳ ରହିବା ଓ ଧାର୍ମିକ ଆବେଗ ଜନିତ ବିଚାରଧାରାରେ ସଂକ୍ରମିକ ହେବା ଏକ ନିଛକ ବାସ୍ତବତା। ଏହି ସ୍ଥିତିରୁ ସାମ୍ପ୍ରଦାୟିକତାବାଦ, ସନ୍ତ୍ରାସବାଦ ଓ ମାନବିକ ଅଧିକାରର ଉଲଙ୍ଘନ ସେହି ସମାଜରେ ପ୍ରସାର ଲାଭକରିବା ଦେଖାଯାଏ। ଏହି ସ୍ଥିତିରେ ବିଶ୍ୱ ସ୍ତରୀୟ ପ୍ରଭାବ ନ ରହିଲେ ରକ୍ଷଣଶୀଳ ଓ ଅନ୍ୟାୟପୂର୍ଣ୍ଣ ସମାଜମାନଙ୍କର ପରିବର୍ତ୍ତନ ସମ୍ଭବ ହେବ ନାହିଁ। ଶହ ଶହ ବର୍ଷର ସାମାଜିକ ଭେଦଭାବର ବାୟୁମଣ୍ଡଳକୁ ଦୂର କରିବା ପାଇଁ ଆଧୁନିକ ବିଶ୍ୱର ପ୍ରଗତିଶୀଳ ଜ୍ଞାନ ଓ ନୀତିବୋଧର ପ୍ରସାର ହେବା ଆବଶ୍ୟକ। ମାନବିକ ଅଧିକାରର ଉଲଙ୍ଘନ କେତେକ ସମାଜରେ ଏକ ସାଧାରଣ ଘଟଣା। ବିଶେଷକରି ଧର୍ମର ବଳିଷ୍ଠ ପ୍ରଭାବ ରହିଥିବା କେତେକ ସମାଜରେ ରକ୍ଷଣଶୀଳତା, ଅନୁଦାରତା ଓ କୁସଂସ୍କାର ବ୍ୟାପକ ଭାବେ ରହିଥିବା ଏକ ସାଧାରଣ ଅନୁଭବ।

ସେହି ପରିସ୍ଥିତିର ପରିବର୍ତ୍ତନ ପାଇଁ ଆନ୍ତର୍ଜାତିକ ସ୍ତରର ପ୍ରଗତିଶୀଳ ଲକ୍ଷ୍ୟଗୁଡିକର ପ୍ରସାର ସାଂପ୍ରତିକ ବିଶ୍ୱର ଏକ ଆବଶ୍ୟକତା କହିଲେ ଅତ୍ୟୁକ୍ତି ହେବ ନାହିଁ। ସେହିପରି ମାନବିକ ଅଧିକାର ଯେଉଁ ଯେଉଁ ସ୍ତରରେ ସହଜରେ ଭୂଲୁଣ୍ଠିତ ହେଉଛି ସେ ନେଇ କେତେକ ସାମାଜିକ ସଚେତନତାର ବାୟୁମଣ୍ଡଳ ସୃଷ୍ଟି ହେବା ଦରକାର। ମାନବିକ ଅଧିକାରର ବିଶ୍ୱ ଘୋଷଣା ଏକ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ସାର୍ବଜନୀନ ମୂଲ୍ୟବୋଧ। ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବା ତାହାର ଏକ ପ୍ରାକୃତିକ ଅଧିକାର। ଏହି ଆନ୍ତର୍ଜାତିକ ଘୋଷଣାନାମା ଏବେ ବି ସମଗ୍ର ପୃଥିବୀର ସବୁ ଦେଶରେ ବାସ୍ତବତାରେ ପରିଣତ ହୋଇପାରି ନାହିଁ। ଆନ୍ତର୍ଜାତିକ ପ୍ରୟାସ ଓ ସତର୍କତା ବ୍ୟତୀତ ଏହାର ବାସ୍ତବ ରୂପାୟନ ସମ୍ଭବ ହେବ ନାହିଁ।

ଆନ୍ତର୍ଜାତିକ ମନୋଭାବ ଅନ୍ୟ ଏକ ଦିଗନ୍ତ ପ୍ରତି ଏବେ ଦୃଷ୍ଟି ଆକର୍ଷଣ କରୁଛି ଯାହାକୁ "ଗ୍ରହମଣ୍ଡଳୀୟ ମାନବବାଦ" କୁହାଯାଉଛି। ବିଶାଳ ବିଶ୍ୱ ବ୍ରହ୍ମାଣ୍ଡରେ ରହିଛି କୋଟି କୋଟି ସୌରମଣ୍ଡଳ। ଆମ ସୌରମଣ୍ଡଳର ପୃଥିବୀ ରୂପକ ଗ୍ରହଟିରେ ମାନବ ସଭ୍ୟତାର କ୍ରମବିକାଶ ହୋଇଛି। ମାନବ ସଭ୍ୟତା କିପରି ସବୁଦିନ ପାଇଁ ପୃଥିବୀ ପୃଷ୍ଠରେ ରହିବ ତାହାର ସୁରକ୍ଷା ଆମର ଏକ ନୈତିକ କର୍ତ୍ତବ୍ୟ। ଏକ ଆଦିମ ଅବସ୍ଥାରୁ ଆମେ ମାନବିକ ପ୍ରୟାସରେ ଆଜିର ସ୍ଥିତିକୁ ଆସିପାରିଛେ। ସୁତରାଂ ଆମର ଏହି ସଭ୍ୟତାକୁ ସୁରକ୍ଷିତ ରଖିବା ଓ ଆମର ଆଗାମୀ ପିଢି ପାଇଁ ଏକ ସୁନ୍ଦର ପରିବେଶ ଛାଡିଯିବା ଆମର କର୍ତ୍ତବ୍ୟ ବୋଲି କୁହାଯାଉଛି। ବସ୍ତୁତଃ ଏକ ସୁନ୍ଦର ପ୍ରୀତିଭରା ମାନବ ସମାଜର ବିକାଶ ଆମ ପାଇଁ ଏକ କର୍ତ୍ତବ୍ୟ ଓ ଆହ୍ୱାନ ଭାବରେ ଆସୁଛି। ଆମର ସକଳ ଭେଦଭାବ, ପ୍ରତିହିଂସା, ଧ୍ୱଂସକାରୀ ମାରଣାସ୍ତ୍ର ଓ ଅମାନବିକ ମନୋଭାବର ବିଲୋପ ଘଟାଇ ଏକ ଆନ୍ତର୍ଜାତିକ ଓ ନୀତିପୂର୍ଣ୍ଣ ଦୃଷ୍ଟିଭଙ୍ଗୀର ବିକାଶ ଘଟାଇବା ଆଜିର ଏକ ବଡ ଆବଶ୍ୟକତା କହିଲେ ଅତ୍ୟୁକ୍ତି ହେବ ନାହିଁ।

(ପ୍ରଗତିବାଦୀ, ୩୦.୦୩.୨୦୧୬)

# ବୌଦ୍ଧିକ ବିକାଶ ଓ ଭାଷା

ବୌଦ୍ଧିକ ବିକାଶ ଏକ ନିରନ୍ତର ପ୍ରକ୍ରିୟା । ବୌଦ୍ଧିକ ବିକାଶ ସହିତ ସଭ୍ୟତାର କ୍ରମବିକାଶ ନିବିଡ ଭାବେ ସମ୍ବନ୍ଧିତ । ମଣିଷ ପାଖରେ ଚିନ୍ତା କରିବାର ସାମର୍ଥ୍ୟ ଯେବେଠାରୁ ଉଦ୍ଭବ ହୋଇଛି ତାହା ଧୀରେ ଧୀରେ ଅଗ୍ରଗତି କରିଛି । ଚିନ୍ତା କରିବାର ସାମର୍ଥ୍ୟରୁ ହିଁ ସଭ୍ୟତାର ଆରମ୍ଭ ହୋଇଛି । ଚିନ୍ତା କରିବାର ସାଧନ ହେଉଛି ଭାଷା । ଭାଷାମାନଙ୍କର କ୍ରମବିକାଶ ସହ ଜ୍ଞାନ-ବିଜ୍ଞାନର ଦିଗନ୍ତ ପ୍ରସାରିତ ହୋଇଛି । ନୂଆ ନୂଆ ଭାବନାକୁ ବ୍ୟକ୍ତ କରିବାକୁ ନୂଆ ନୂଆ ଶବ୍ଦ ସମ୍ଭାର ସୃଷ୍ଟି ହୋଇଛି । ମଣିଷର ବୌଦ୍ଧିକ ଦିଗନ୍ତ ବିସ୍ତାର ଲାଭ କରିବା ପାଇଁ ନୂଆ ନୂଆ ପରିଭାଷାର ଆବଶ୍ୟକତା ପଡିଛି । ଭାଷାର କ୍ରମବିକାଶକୁ ଅନୁଶୀଳନ କରିଥିବା ଭାଷାବିଜ୍ଞାନୀମାନେ ମତପୋଷଣ କରିଥାନ୍ତି ଯେ ପୃଥିବୀରେ ହଜାର ହଜାର ଭାଷା ରହିଥିଲେ ମଧ୍ୟ ପ୍ରତ୍ୟେକ ଉନ୍ନତ ଭାଷାର ବିକାଶ ବିଭିନ୍ନ ସ୍ତର ଦେଇ ହୋଇଛି । ପ୍ରାଥମିକ ଅବସ୍ଥାରେ ପ୍ରକୃତିରେ ଦୃଶ୍ୟମାନ ବସ୍ତୁମାନଙ୍କ ପାଇଁ ଶବ୍ଦ ସୃଷ୍ଟି ହୋଇଛି । ଆମେ ଆମ ଚତୁଃପାର୍ଶ୍ୱରେ ଦେଖୁଥିବା ବସ୍ତୁ ଯଥା ପାଣି, ଗଛ, ନଦୀ, ସୂର୍ଯ୍ୟ, ତାରା, ପାହାଡ, ଗାଇ, କୁକୁର ଇତ୍ୟାଦି ପଦାର୍ଥ ଓ ପ୍ରାଣୀମାନଙ୍କୁ ବୁଝିବାକୁ ମଣିଷ ଶବ୍ଦର ପ୍ରୟୋଗ କରିଛି । ସେହିପରି ବିଭିନ୍ନ କାର୍ଯ୍ୟ ଓ ଅବସ୍ଥାକୁ ବୁଝାଇବା ପାଇଁ ଶବ୍ଦ ବାହାର କରିଛି । ଖାଇବା, ଶୋଇବା, ଦଉଡିବା, ଶିକାର କରିବା, ପହଁରିବା ପରି ଅସଂଖ୍ୟ କାର୍ଯ୍ୟକୁ ବୁଝିବା ପାଇଁ ଶବ୍ଦ ବାହାରିଛି । ଆସ୍ତେ ଆସ୍ତେ ମଣିଷ ନାନା ବିଷୟ ଚିନ୍ତା କରିଛି । ଚିନ୍ତା ଚେତନାର ବିକାଶ ସହିତ ନୂଆ ନୂଆ ଶବ୍ଦସମ୍ଭାର ସୃଷ୍ଟି ହୋଇଛି । ଜ୍ଞାନର ଯେତେ ଯେତେ ବିକାଶ ହେଉଛି, ସେତିକି ସେତିକି ନୂଆ ନୂଆ ଶବ୍ଦର ଆବଶ୍ୟକତା ପଡୁଛି ଓ ସେହି ପ୍ରକ୍ରିୟାରେ ନୂଆ ପରିଭାଷା ସୃଷ୍ଟି ହେଉଛି । ଯେଉଁ ଭାଷା ଜ୍ଞାନର ଆଧାର ହେବାକୁ ପ୍ରୟାସ କରିଛି, ସେହି ଭାଷା ନୂଆ ନୂଆ ଶବ୍ଦ ସମ୍ଭାର ସୃଷ୍ଟି କରିବାକୁ ସମର୍ଥ ହୋଇଛି । ଜ୍ଞାନବିଜ୍ଞାନକୁ ପ୍ରକାଶ କରିବାକୁ ପ୍ରୟାସ ଫଳରେ ଭାଷାର ସାମର୍ଥ୍ୟ ବୃଦ୍ଧି ପାଇଛି । ଜ୍ଞାନବିଜ୍ଞାନକୁ ପ୍ରକାଶ କରିବାରେ ଯେଉଁ ଭାଷା ଯେତେ ସମର୍ଥ ସେହି ଭାଷା ସେତେ ସମୃଦ୍ଧ ହେବାର ସୁଯୋଗ ପାଇଛି ।

ଏହି ପୃଷ୍ଠଭୂମିରେ ଏକ ଶାସ୍ତ୍ରୀୟ ଭାଷା ଓ ଏକ ସମୃଦ୍ଧ ଭାଷା ମଧ୍ୟରେ ପାର୍ଥକ୍ୟ ରହିଛି । ଏକ ଭାଷା ପ୍ରାଚୀନ ହୋଇପାରେ, କିନ୍ତୁ ତାହା ଯଦି ସାଂପ୍ରତିକ ମାନଦଣ୍ଡରେ ଜ୍ଞାନ-

ବିଜ୍ଞାନର ବିଭିନ୍ନ ବିଭାଗକୁ ପ୍ରକାଶ କରିବାକୁ ସମର୍ଥ ନୁହେଁ, ତେବେ ଭାଷା ସମୃଦ୍ଧ ସ୍ତରକୁ ଆସିପାରି ନାହିଁ। କେତେକ ଅତି ପ୍ରାଚୀନ ଭାଷା ମୃତ ସ୍ତରକୁ ଆସିବା ଏକ ଐତିହାସିକ ବାସ୍ତବତା। ଯଦି ଏକ ଭାଷା କଥିତ ଭାଷା ହୋଇ ରହେ ନାହିଁ ବା ସେଥିରେ ଆଧୁନିକ ଜ୍ଞାନ-ବିଜ୍ଞାନ ସମ୍ବନ୍ଧିତ ପୁସ୍ତକ ରଚିତ ହୁଏ ନାହିଁ ତେବେ ତାହା ମୃତ ସ୍ତରକୁ ଆସିଥାଏ। ଅର୍ଥାତ୍ ଯେଉଁ ଭାଷାମାନ ମନୁଷ୍ୟର ଭାବନାକୁ ଉନ୍ନତି ପଥରେ ଅଗ୍ରସର କରାଇବା ପାଇଁ ଅସମର୍ଥ ହୋଇଛନ୍ତି ଓ ଯେଉଁ ଭାଷାଗୋଷ୍ଠୀର ଲୋକମାନେ ବୌଦ୍ଧିକ ସ୍ତରରେ ଅନଗ୍ରସର ରହିଛନ୍ତି ସେମାନେ ନିଜର ଭାଷାକୁ ସମୃଦ୍ଧ କରିପାରି ନାହାନ୍ତି।

ଯଦି କେଉଁ ଈଶ୍ୱର ମନୁଷ୍ୟକୁ ସୃଷ୍ଟି କରିଥାନ୍ତେ, ତେବେ ସବୁ ମଣିଷ ଗୋଟିଏ ଭାଷା କହୁଥାନ୍ତେ। କିମ୍ବା ଏପରି ଯଦି ହୋଇଥାନ୍ତା ଯେ ଗୋଟିଏ ସ୍ଥାନରେ ମନୁଷ୍ୟ ପ୍ରଥମେ ଜନ୍ମ ହୋଇଥାନ୍ତେ ଓ ସେମାନଙ୍କର ବଂଶଧରମାନେ କ୍ରମେ ପୃଥିବୀ ଭୂଖଣ୍ଡର ବିଭିନ୍ନ ଅଞ୍ଚଳକୁ ଯାଇ ବସବାସ କରିଥାନ୍ତେ ତେବେ ସମ୍ଭବତଃ ଗୋଟିଏ ଭାଷାର କଥା ସମସ୍ତେ ବୁଝିଯାଉ ଥାଆନ୍ତେ। କିନ୍ତୁ ନୃତାତ୍ତ୍ୱିକ ଅନୁଶୀଳନରୁ ଜଣାପଡେ ଯେ ତାହା ସମ୍ଭବ ହୋଇ ନାହିଁ। ବରଂ ଏହି ବିଶାଳ ପୃଥିବୀର ବିଭିନ୍ନ ଅଞ୍ଚଳରେ ମନୁଷ୍ୟମାନେ ସୃଷ୍ଟି ହୋଇଛନ୍ତି। ସମୁଦ୍ର, ପର୍ବତ, ହ୍ରଦ, ଅରଣ୍ୟ, ମରୁଭୂମି ଦ୍ୱାରା ପୃଥିବୀ ଭାଗ ଭାଗ ହୋଇ ରହିଛି। ଗମନାଗମନର ବିକାଶ ପର୍ଯ୍ୟନ୍ତ ଗୋଟିଏ ଅଞ୍ଚଳର ଲୋକ ଅନ୍ୟ ଅଞ୍ଚଳ ବିଷୟରେ ଜାଣିବାର ଅବକାଶ ନ ଥିଲା। ଯେହେତୁ ମନୁଷ୍ୟର ସ୍ୱରପେଟିକା ରହିଛି ଓ ସେ ଭାଷା କହିବାକୁ ସମର୍ଥ ସେହି ସାମର୍ଥ୍ୟରୁ ପୃଥିବୀ ପୃଷ୍ଠରେ ହଜାର ହଜାର ଭାଷାମାନ ସୃଷ୍ଟି ହେଲା। ଅନ୍ୟ ସହିତ ଭାବବିନିମୟ କରିବାର ଆବଶ୍ୟକତାରୁ ମଣିଷ ଯେଉଁ ଧ୍ୱନିମାନ ଏକ ସମୟରେ ସୃଷ୍ଟି କରିଛି ତାହା ଶବ୍ଦରେ ପରିଣତ ହୋଇଛି ଓ ଏହି ପ୍ରକ୍ରିୟାରେ ବିଭିନ୍ନ ଶବ୍ଦସମୂହର କ୍ରମବିକାଶ ହୋଇଛି। ଗୋଟିଏ ବସ୍ତୁକୁ ନାନା ଭାଷାଗୋଷ୍ଠୀ ନାନା ଶବ୍ଦ ପ୍ରୟୋଗ କରି କହିବାକୁ ପ୍ରୟାସ କରିଛନ୍ତି। ଉଦାହରଣ ସ୍ୱରୂପ, ଜଳକୁ ବୁଝିବା ପାଇଁ ପାଣି, ପାନି, ନିରୁ, ୱାଟର, ଆକ୍ୱା, ହାଇଡ୍ରୋ ପରି ହଜାର ହଜାର ଶବ୍ଦ ମଣିଷର ଭାଷାରେ ରହିଛି।

ପ୍ରାଣୀଜଗତରେ ମନୁଷ୍ୟ ଏକମାତ୍ର କଥା କହିପାରୁଥିବା ବା ଭାଷା ମାଧ୍ୟମରେ ମନର ଭାବ ପ୍ରକାଶ କରୁଥିବା ଜୀବ। ଚିନ୍ତା ଚେତନାର ଆରମ୍ଭ ପର୍ବରେ ମଣିଷମାନେ ବିଭିନ୍ନ ଭୂଖଣ୍ଡରେ ନିଜ ଚାରିପଟେ ଯାହା ଦେଖିଛନ୍ତି, ଯେଉଁ ସବୁ କାର୍ଯ୍ୟ କରୁଛନ୍ତି ସେ ସବୁକୁ ନିଜ ଧାରାରେ ବ୍ୟକ୍ତ କରିବା ପାଇଁ ପ୍ରୟାସ କରିଛନ୍ତି। ଏହି ପ୍ରକ୍ରିୟାରେ ବିଭିନ୍ନ ଭାଷାଗୋଷ୍ଠୀରେ

ଶବ୍ଦମାନ ସୃଷ୍ଟି ହୋଇଛି । କୌଣସି ବସ୍ତୁକୁ ବୁଝିବା ପାଇଁ ବା କୌଣସି କାର୍ଯ୍ୟକୁ ଜାଣିବା ପାଇଁ ପ୍ରତ୍ୟେକ ଭାଷାଗୋଷ୍ଠୀରେ ଯେଉଁସବୁ ଶବ୍ଦ ବ୍ୟବହାର ହେଉଛି ତାହା କାଳକ୍ରମେ ବୃହତ୍ତର ପରିବେଶରେ ସ୍ୱୀକୃତ ହୋଇ ଶବ୍ଦର ନିର୍ଦ୍ଦିଷ୍ଟ ଅର୍ଥ ବ୍ୟକ୍ତ ହୋଇଛି । ତେବେ ସଭ୍ୟତାର କ୍ରମବିକାଶ ଧାରାରେ ମନୁଷ୍ୟ ନାନା କଥା ଚିନ୍ତା କରିବାକୁ ପ୍ରୟାସ କରିଛି । କାଳକ୍ରମେ ସମାଜର ରାଜନୈତିକ ଚିନ୍ତନ, ଅର୍ଥନୈତିକ ବ୍ୟବସ୍ଥା, ସାଂସ୍କୃତିକ ଭାବଧାରା, ନୈତିକ ମୂଲ୍ୟବୋଧ ଧାର୍ମିକ ବିଶ୍ୱାସମାନ ସୃଷ୍ଟି ହୋଇଛି । ଏହି ସବୁକୁ ବ୍ୟକ୍ତ କରିବା ପାଇଁ ବିଭିନ୍ନ ଭାଷାରେ ଶବ୍ଦଭଣ୍ଡାରମାନ ସୃଷ୍ଟି ହେଲା । ଏହି ପ୍ରକ୍ରିୟାରେ ନାନା ନୂଆ ନୂଆ ଶବ୍ଦ ଭାଷାମାନଙ୍କରେ ଉଦ୍ଭବ ହେଲା । ଗାଣିତିକ ଜ୍ଞାନକୁ ବୁଝାଇବା ପାଇଁ ସେହି ପରିସରରେ ବିଭିନ୍ନ ଶବ୍ଦ ମନୁଷ୍ୟ ନିଜସ୍ୱ ମସ୍ତିଷ୍କ ଖଟାଇ ବାହାର କଲା, ଏକ ଶାସନ ବ୍ୟବସ୍ଥା ଭିତରେ କେତେ କେତେ ଶବ୍ଦ ବିକଶିତ ହେଲା, ସାହିତ୍ୟ ମାଧ୍ୟମରେ ନୂଆ ନୂଆ ଶବ୍ଦ ପ୍ରତ୍ୟେକ ଭାଷାରେ ଉଦ୍ଭବ ହେଲା । ସମାଜର ଅତ୍ୟନ୍ତ ବୁଦ୍ଧିମାନ ଲୋକମାନେ ବିଭିନ୍ନ ସ୍ତରର କାର୍ଯ୍ୟ, ଭାବନାକୁ ବୁଝାଇବାକୁ ନିଜସ୍ୱ ବିଚାରବୋଧରେ ଶବ୍ଦମାନ ସୃଷ୍ଟି କଲେ ଓ ତାହା ଭାଷା ଗୋଷ୍ଠୀରେ କାଳକ୍ରମେ ଗୃହୀତ ହେଲା । କୌଣସି ପ୍ରସଙ୍ଗକୁ ଶବ୍ଦ ମାଧ୍ୟମରେ ବ୍ୟକ୍ତ କରିବାର ସାମର୍ଥ୍ୟ ଯେଉଁମାନଙ୍କ ପାଖରେ ବ୍ୟକ୍ତ ହେଲା ସେମାନେ ନିଜ ସମସାମୟିକ ଯୁଗରେ ଜ୍ଞାନୀ ବୋଲି ନିଜ ଭାଷାଗୋଷ୍ଠୀରେ ପରିଚିତ ହେଲେ ।

ବିଜ୍ଞାନର ଯୁଗ ଆସିବା ପରେ ଜ୍ଞାନର ଦିଗନ୍ତ ବହୁ ଭାବରେ ବିସ୍ତାରଲାଭ କଲା । ପ୍ରକୃତିର ବହୁ କ୍ଷେତ୍ର ଉପରେ ନୂଆ ନୂଆ ଗବେଷଣା ଜ୍ଞାନବିଜ୍ଞାନର ବହୁ ଦିଗନ୍ତ ସୃଷ୍ଟି କଲା । ପ୍ରତ୍ୟେକ କ୍ଷେତ୍ର ପାଇଁ କେତେ କେତେ ବୈଷୟିକ ଶବ୍ଦରାଜି ନୂଆ ନୂଆ ଅର୍ଥ ନେଇ ବିକଶିତ ହେବାକୁ ଲାଗିଲା । ଯେଉଁ ଭାଷାଗୋଷ୍ଠୀର ଲୋକମାନେ ବୈଷୟିକ ବିଷୟକୁ ନେଇ ଜ୍ଞାନଚର୍ଚ୍ଚାରେ ସଂପୃକ୍ତ ହେଲେ ସେମାନଙ୍କର ଭାଷାମାନ ଉନ୍ନତ ହେବାକୁ ଲାଗିଲା । ଏହି ପ୍ରକ୍ରିୟାରେ ଅସଂଖ୍ୟ ଶବ୍ଦମାନ ଭାଷାର ପରିସରକୁ ଆସିଲା । ପ୍ରିଣ୍ଟିଂ ପ୍ରେସର ଉଦ୍ଭାବନ ପରେ ଜ୍ଞାନ ସାର୍ବଜନୀନ ହେବାକୁ ଲାଗିଲା । ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର, ବୈଜ୍ଞାନିକ ଜ୍ଞାନାନୁଶୀଳନ, ଉଚ୍ଚମାନର ସାହିତ୍ୟକୃତି ମଧ୍ୟ ସୃଷ୍ଟି ହେବାକୁ ଲାଗିଲା । ଏସବୁର ସମ୍ମିଳିତ ପ୍ରଭାବରୁ କେତେକ ଭାଷା ଉନ୍ନତ ହୋଇଗଲେ । ଯେଉଁ ଭାଷା ଜ୍ଞାନବିଜ୍ଞାନର ଭାଷା ହେଲା ଓ ପ୍ରସାରର ଭାଷା ହେଲା, ସେହି ଭାଷାମାନ ବିକଶିତ ହୋଇପାରିଲେ । ଯେତେବେଳେ ଏହି ସବୁ ପ୍ରକ୍ରିୟାରେ ଲକ୍ଷାଧିକ ଶବ୍ଦମାନ ସୃଷ୍ଟି ହେଲା, ସେସବୁ ଶବ୍ଦର ଅର୍ଥକୁ ପ୍ରକାଶ କରିବା ପାଇଁ ଏକ ନୂତନ ବ୍ୟବସ୍ଥା ଜନ୍ମଲାଭ କଲା । ଉନ୍ନତ ଭାଷାମାନ

ନିଜ ଭାଷାର ଶବ୍ଦମାନଙ୍କୁ ନେଇ ଅଭିଧାନ ରଚନା କଲେ । ପରେ ଏହା ସାର୍ବଜନୀନ ହେଲା ଓ ପ୍ରାୟତଃ ପ୍ରତ୍ୟେକ ଭାଷାଗୋଷ୍ଠୀ ନିଜ ନିଜର ଅଭିଧାନମାନ ସୃଷ୍ଟି କଲେ । ପ୍ରତ୍ୟେକ ଭାଷାର ଅଭିଧାନମାନ ସେହି ଭାଷାର ଜ୍ଞାନଗ୍ରନ୍ଥ ଭାବେ ଏବେ ପ୍ରାୟ ସ୍ୱୀକୃତ ।

ସଂପ୍ରତି ଇଂରାଜୀ ଭାଷା ଏକ ସମୃଦ୍ଧ ଭାଷା । ଜ୍ଞାନ-ବିଜ୍ଞାନର ଯେତେ କ୍ଷେତ୍ର ରହିଛି, ସବୁର ମାଧମ ଇଂରାଜୀ ଭାଷା ହେବାର ସାମର୍ଥ୍ୟ ଆଣିପାରିଛି । କିନ୍ତୁ ପାଞ୍ଚଶହ ବର୍ଷ ତଳେ ଇଂରାଜୀ ଭାଷା ଅତ୍ୟନ୍ତ ଅନୁନ୍ନତ ଅବସ୍ଥାରେ ଥିଲା । ତେବେ ଇଂଲଣ୍ଡରେ ଶିଳ୍ପବିପ୍ଳବ ଆସିଲା, ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ହେଲା, ବୈଜ୍ଞାନିକ ଗବେଷଣାର ପରିବେଶ ସୃଷ୍ଟି ହେଲା ଓ ସାମ୍ରାଜ୍ୟବାଦର ବିସ୍ତାର ହେଲା । ଫଳରେ ବହୁ ନୂଆ ନୂଆ ଶବ୍ଦ ଇଂରାଜୀ ଭାଷାରେ ସ୍ଥାନିତ ହେଲା । ଊନବିଂଶ ଶତାବ୍ଦୀର ମଧ ଭାଗରେ ଯେତେବେଳେ ଇଂରାଜୀ ଭାଷାର ଏକ ବିସ୍ତୃତ ଅଭିଧାନ ପ୍ରକାଶ ପାଇଲା, ସେତେବେଳେ ଭାଷାର ଶବ୍ଦ ସଂଖ୍ୟା ଏକ ଲକ୍ଷ ଭିତରେ ଥିଲା । ଶହେ ବର୍ଷ ପରେ ଇଂରାଜୀ ଭାଷାରେ ଅଧିକା ଶାଢେ ତିନି ଲକ୍ଷ ଶବ୍ଦ ମିଶିଲା । ବିଂଶ ଶତାବ୍ଦୀ ଶେଷ ବେଳକୁ ଇଂରାଜୀ ଭାଷାର ଶବ୍ଦ ସଂଖ୍ୟା ପାଞ୍ଚ ଲକ୍ଷରେ ପହଞ୍ଚିଛି । ଏହା ସହିତ ଜ୍ଞାନବିଜ୍ଞାନର ସବୁ ବିଭାଗର ବିଷୟମାନଙ୍କୁ ନେଇ ଇଂରାଜୀ ଭାଷାରେ ଏନସାଇକ୍ଲୋପିଡିଆମାନ ମିଳି ପାରୁଛି ।

ଗୋଟିଏ ଭାଷାକୁ ସମୃଦ୍ଧ କରିବାକୁ ହେଲେ ସେହି ଭାଷାରେ ଜ୍ଞାନବିଜ୍ଞାନର ଗ୍ରନ୍ଥମାନ ରଚିତ ହେବା ଆବଶ୍ୟକ ଓ ଉଚ୍ଚମାନର ଏନ୍‌ସାଇକ୍ଲୋପିଡିଆ ପାଇଁ ପ୍ରୟାସ ହେବା ଦରକାର । ଏହା ସହିତ ବିଶ୍ୱବିଖ୍ୟାତ କୃତିମାନ ଭାଷାରେ ଅନୁବାଦିତ ହେବା ଆବଶ୍ୟକ । ଜ୍ଞାନରାଜ୍ୟର ଯେଉଁ ସବୁ ରତ୍ନମାନ ଅନ୍ୟ ଭାଷାରେ ରହିଛି ତାହା ଯଦି ଏକ ଭାଷାରେ ଉପଲବ୍ଧ ହୋଇପାରୁଛି, ତେବେ ଭାଷା ସମୃଦ୍ଧ ହୋଇପାରିବ । କୌଣସି ଭାଷାକୁ ସମୃଦ୍ଧ କରିବା ପାଇଁ ଏହି ଦିଗରେ ଗଭୀର ସଂପୃକ୍ତି ବ୍ୟକ୍ତ ହେବା ଆବଶ୍ୟକ ।

(ପ୍ରଗତିବାଦୀ, ୨୯.୦୬.୨୦୧୬)

# ଏକ ମହତ୍ ସ୍ୱପ୍ନ

ଇତିହାସରୁ ଏହା ଏକ ଉପଲବ୍ଧି ଯେ ମଣିଷ ହିଁ ତାର ସମାଜ, ସଂସ୍କୃତି, ଧର୍ମ, ନୀତିବୋଧ, ପରମ୍ପରା ଇତ୍ୟାଦି ନିର୍ମାଣ କରିଛି। ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେ ସବୁ ମଣିଷର ପ୍ରୟାସରେ ସମ୍ଭବ ହୋଇଛି। ହଜାର ହଜାର ବର୍ଷର ସଂଘବଦ୍ଧ ପ୍ରୟାସ ଓ ବୌଦ୍ଧିକ କୌତୂହଳତା ମଧ୍ୟ ଦେଇ ସାମାଜିକ ବିକାଶର ରଥ ଆଗକୁ ଯାଇଛି। ପ୍ରତ୍ୟେକ ସଭ୍ୟତାର କିଛି ଗୁଣୀ, ଜ୍ଞାନୀ ବୁଦ୍ଧିଦୀପ୍ତ ବ୍ୟକ୍ତି ନିଜ ସମାଜର ଜୀବନଧାରାରୁ ଦୁଃଖ, ଦୁର୍ଦ୍ଦଶା ଦୂର କରିବାକୁ ପ୍ରଯତ୍ନ କରିଛନ୍ତି ଓ ଏକ ସୁଖପ୍ରଦ ପରିବେଶ ପାଇଁ ସଂପୃକ୍ତି ବ୍ୟକ୍ତ କରିଛନ୍ତି। ତେବେ ମାନବ ସମାଜରେ ସର୍ବଦା କିଛି ଦୁଃଖ, ସଙ୍କଟ, ଉତ୍ପୀଡନ ଲାଗିରହିଛି। ଗୋଟିଏ ପଟେ ପ୍ରକୃତି ମଣିଷ ପାଇଁ ପ୍ରତିକୂଳତା ସୃଷ୍ଟି କରିଆସିଛି। ଯେଉଁ ସମୟରେ ଗାଡି, ମଟର ନଥିଲା, ରାସ୍ତା ଘାଟ ନ ଥାଇ ଜଙ୍ଗଲଭରା ପରିବେଶ ରହିଥିଲା ସେହି ସମୟରେ ମଣିଷ ଏକ ସୀମିତ ଅଞ୍ଚଳରେ ଜୀବନ ନିର୍ବାହ କରୁଥିଲା। କୌଣସି ପ୍ରାକୃତିକ ଦୁର୍ବିପାକ ଘଟିଲେ ଅସହାୟ ହୋଇ ମୃତ୍ୟୁବରଣ କରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା। ଏପରିକି ଶହେ ଦୁଇ ଶହ ବର୍ଷ ତଳର ପୃଥିବୀରେ କେତେ ଦୁର୍ଭିକ୍ଷ ପଡୁଥିଲା ତାହାର କାହାଣୀ ବେଶ୍ ମର୍ମାନ୍ତିକ। ଉନବିଂଶ ଶତାବ୍ଦୀର ସତୁରୀ ଦଶକରେ ଓଡିଶାର ନଅଙ୍କ ଦୁର୍ଭିକ୍ଷ ଓ ସ୍ୱାଧୀନତା ପୂର୍ବରୁ ବଙ୍ଗଳା ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଲୋକ ପୋକ ମାଛି ପରି ଖାଦ୍ୟାଭାବ ଯୋଗେ ମୃତ୍ୟୁବରଣ କରିଥିବାର କାହାଣୀ ସୁବିଦିତ। ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ବର୍ଷ ମରୁଡି, ନଦୀବଢି, ବାତ୍ୟା ଇତ୍ୟାଦି ଯୋଗୁ ଲୋକମାନେ ମୃତ୍ୟୁବରଣ କରୁଥିଲେ କିମ୍ବା ବହୁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଉଥିଲେ। କେବଳ ଭାରତବର୍ଷରେ ଯେ ଏପରି ସ୍ଥିତି ଥିଲା ତାହା ନୁହଁ, ସାରା ପୃଥିବୀରେ ଅଳ୍ପ ବହୁତ ଏହି ସ୍ଥିତି ରହିଥିଲା। ସେହିପରି ଶହେ ଦୁଇଶହ ବର୍ଷ ତଳେ ଚିକିତ୍ସା ବିଜ୍ଞାନର ବିକାଶ ବିଶେଷ ହୋଇନଥିଲା। ରୋଗ ବାଧକରେ ଲୋକମାନେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲେ। ବିଶେଷକରି କେତେକ ରୋଗ ମହାମାରୀର ରୂପ ନେଇ ଆସୁଥିଲା ଯେଉଁଥିରେ ଗାଁ ଗାଁରେ ମୃତ୍ୟୁର କରାଳ ତାଣ୍ଡବ ସୃଷ୍ଟି ହେଉଥିଲା। ଏସବୁ ପ୍ରାକୃତିକ ବିପର୍ଯ୍ୟୟ ସହିତ ମାନବକୃତ ଶୋଷଣ, ଅତ୍ୟାଚାର, କ୍ରୂରତା ମଧ୍ୟ ସମାଜରେ ବହୁ ଦୁଃଖର କାରଣ ହେଉଥିଲା। ଯୁଦ୍ଧ, ବିଭୀଷିକା, ରାଜ୍ୟଜୟ ରାଜତନ୍ତ୍ର ଯୁଗରେ ସାଧାରଣ ଘଟଣା ଥିଲା। ସାମ୍ରାଜ୍ୟବାଦ,

ସାମନ୍ତବାଦର ଶୋଷଣ ବିଭିନ୍ନ ଦେଶରେ ରହିଥିଲା । ଶିକ୍ଷା ସମାଜର ମୁଷ୍ଟିମେୟ ସାମନ୍ତବର୍ଗଙ୍କ ନିୟନ୍ତ୍ରଣ ଭିତରେ ଥିଲା ଓ ଗଣଶିକ୍ଷାର ଭାବନା ହିଁ ଆସିନଥିଲା । ଦୁଇଶହ ବର୍ଷ ତଳେ ଛପା ବହି ଖଣ୍ଡିଏ ଦୁଷ୍ପ୍ରାପ୍ୟ ବସ୍ତୁ ହୋଇ ରହିଥିଲା । ସାଧାରଣ ବ୍ୟକ୍ତି ଜୀବନର କୌଣସି ମୂଲ୍ୟ ନ ଥିଲା । ସବୁ ସଭ୍ୟତାରେ ମହିଳାମାନେ ନ୍ୟୂନ ହୋଇ ରହିଥିଲେ । ବିଜ୍ଞାନର ବିକାଶ ପୂର୍ବରୁ ୟୁରୋପରେ ଲକ୍ଷ ଲକ୍ଷ ମହିଳାଙ୍କୁ ମନ୍ଦାତ୍ମା, ଡାହାଣୀ କହି ମାରି ଦିଆ ଯାଉଥିଲା । କେଉଁଠି ସତୀଦାହ ପ୍ରଥା ଥିଲା ତ ଅନ୍ୟ କେଉଁଠି ପରଦାପ୍ରଥାର ଆବରଣ ତଳେ ମହିଳାମାନଙ୍କୁ ଦମନକରି ରଖା ଯାଇଥିଲା । ବିଭିନ୍ନ ଭୂଖଣ୍ଡରେ ଉତ୍କଟ ଦାରିଦ୍ର୍ୟ ରହିଥିଲା ଓ ଦୁଇଶହ ତିନିଶହ ବର୍ଷ ତଳେ ନିରକ୍ଷରତା ସର୍ବବ୍ୟାପୀ ହୋଇ ରହିଥିଲା । ସବୁ ସମାଜରେ ମୃତ୍ୟୁହାର ବହୁ ଅଧିକ ଥିଲା ଓ ମଣିଷର ସାଧାରଣ ଆୟୁ ଆଜିର ତୁଳନାରେ ବହୁତ କମ୍ ରହିଥିଲା । ୧୮୦୦ ମସିହାରେ ପୃଥିବୀର ଲୋକସଂଖ୍ୟା ଥିଲା ଶହେ କୋଟି, ୧୯୦୦ ମସିହା ବେଳକୁ ତାହା ବୃଦ୍ଧି ପାଇ ହେଲା ଶହେ ଷାଠିଏ କୋଟି । ଏତେ କମ୍ ଲୋକ ଥିବା ପୃଥିବୀରେ ବି ବହୁ ଦୁର୍ଭିକ୍ଷ ପଡୁଥିଲା । ଆଜି ତ ପୃଥିବୀର ଲୋକସଂଖ୍ୟା ସାତଶହ କୋଡିଏ କୋଟି ବୋଲି କୁହାଯାଉଛି । ସମ୍ଭବତଃ ପୃଥିବୀରେ କେଉଁଠି ଦୁର୍ଭିକ୍ଷର ପରିବେଶ ନାହିଁ । ଅବଶ୍ୟ କେତେକ ଅନଗ୍ରସର ରାଷ୍ଟ୍ରରେ ଅପପୁଷ୍ଟି ଏବେ ବି ଏକ ସମସ୍ୟା ହୋଇ ରହିଛି । ସମଗ୍ର ପୃଥିବୀରେ ଧୀରେ ଧୀରେ ଶିକ୍ଷା ସାର୍ବଜନୀନ ହେବାରେ ଲାଗିଛି ଓ ନିରକ୍ଷରତା ଦୂର କରିବା ପାଇଁ ସମସ୍ତ ଜନମଙ୍ଗଳକାରୀ ରାଷ୍ଟ୍ରରେ ନାନା ଯୋଜନା କରାଯାଉଛି । ରାଜତନ୍ତ୍ର ସାରା ପୃଥିବୀରୁ ଲୋପ ପାଇଛି । ଗଣତନ୍ତ୍ର, ସମାଜବାଦ, ଜନମଙ୍ଗଳକାରୀ ଭାବନା, ବ୍ୟକ୍ତି ସମ୍ମାନବୋଧ ପରି ମୂଲ୍ୟଚୟ ସାମାଜିକ ଜୀବନ ପ୍ରବାହରେ ଅଧିକରୁ ଅଧିକ ସ୍ୱୀକୃତ ହେବାରେ ଲାଗିଛି । ସଭ୍ୟତାର ଅନେକ ଅନ୍ଧକାର ଦୂର ହେବାରେ ଲାଗିଛି ।

ଏହି ସବୁ ବିକାଶର ଇତିହାସରୁ ଗୋଟିଏ କଥା ସତ୍ୟ ଯେ ସବୁ ବିକାଶ ମଣିଷର ପ୍ରୟାସ ଯୋଗୁ ସମ୍ଭବ ହୋଇଛି । ସାମଗ୍ରିକ ଭାବେ ଚିନ୍ତା ଚେତନାରେ ଯେଉଁ ପରିବର୍ତ୍ତନ ଆସିଛି ତାହା ସମ୍ଭବ ହୋଇଛି ମଣିଷର ଚେଷ୍ଟା ତଥା ସୃଜନଶୀଳ ଓ ବୌଦ୍ଧିକ ଉଦ୍ୟମରୁ । ଅବଶ୍ୟ ଏହି ସବୁ ବିକାଶ ସବୁ ରାଷ୍ଟ୍ରରେ ସମାନ ଭାବେ ଉପଲବ୍ଧ ହୋଇ ନାହିଁ । ଏବେ ବି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଅନେକ ଦାରିଦ୍ର୍ୟ ରହିଛି । ଏବେ ବି ଅପପୁଷ୍ଟି, ନିରକ୍ଷରତା, ବାଳଶ୍ରମିକ ପ୍ରଥା, ଭିକ୍ଷାବୃତ୍ତି, ବେଶ୍ୟାବୃତ୍ତି ପରି କେତେକ ଜଘନ୍ୟ ସ୍ଥିତି କେତେକ ସମାଜରେ ରହିଛି । ପୃଥିବୀର ସବୁ ରାଷ୍ଟ୍ରର ଜନଗଣଙ୍କର ଜୀବନ ଧାରଣର ମାନ ସମାନ ସ୍ତରକୁ ଆସିପାରି ନାହିଁ । ନାନା ମନ୍ଦ ସ୍ଥିତି କେତେକ ଦେଶରେ ଏବେ ବି କାୟା ବିସ୍ତାରକରି ରହିଛି । ପୃଥିବୀର

ବିକଶିତ ରାଷ୍ଟ୍ରସମୂହ ଯେଉଁମାନଙ୍କୁ ପ୍ରଥମ ବିଶ୍ୱ କୁହାଯାଉଛି ସେମାନେ ବହୁ ଉନ୍ନତ ସ୍ଥିତିକୁ ଯାଇଛନ୍ତି । ଜୀବନର ଗୁଣାତ୍ମକ ମାନ ସେଠାରେ ଯଥେଷ୍ଟ ଉନ୍ନତ ହେବା କୁହାଯାଉଛି । ସମସ୍ତ ସମାଜବାଦୀ ରାଷ୍ଟ୍ରମାନେ ହେଲେ ଦ୍ୱିତୀୟ ବିଶ୍ୱ ଓ ସେଠାରେ ମଧ୍ୟ ଭୌତିକ ବିକାଶ ସହ ଜୀବନର ମାନ ଉନ୍ନତ ହୋଇପାରିଛି ।

ଏହି ପଚାଶ ବର୍ଷ ଭିତରେ ମାନବ ସଭ୍ୟତାର ଇତିହାସରେ ଏକ ବଡ ନୈତିକ ଉତ୍ତରଣ ଅନ୍ତତଃ ଚିନ୍ତା ସ୍ତରରେ ହୋଇଛି । ମାନବ ସଭ୍ୟତାର ଇତିହାସରେ ମଣିଷ ଉପରେ ମଣିଷର ଅତ୍ୟାଚାରର ଯେଉଁ ମର୍ମାନ୍ତିକ କାହାଣୀ ରହିଛି ତାହା ବିରୁଦ୍ଧରେ ଏକ ଆନ୍ତର୍ଜାତିକ ଆଲୋଡନ ଆସିଛି । ରଙ୍ଗଭେଦ ଜନିତ ଶୋଷଣ, ଅସ୍ପୃଶ୍ୟତା, ଜାତିବାଦ, ଅପରଥେଡ ପରି ଯେଉଁ ଜଘନ୍ୟ ବ୍ୟବସ୍ଥା ବିଭିନ୍ନ ଦେଶରେ ରହିଥିଲା ତାହାର ବିଲୋପ ପାଇଁ ବିଶ୍ୱ ସ୍ତରରେ ପ୍ରୟାସ ହୋଇଛି । ସବୁ ମଣିଷ ଜନ୍ମରୁ ସମାନ, ପ୍ରତ୍ୟେକ ବ୍ୟକ୍ତି ଏକ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବା ତାହାର ଏକ ପ୍ରାକୃତିକ ଅଧିକାର । ଯେକୌଣସି ପ୍ରକାରର ଭେଦଭାବ ଓ ଅନ୍ୟ ପ୍ରତି ନ୍ୟୂନ ମନୋଭାବ ଅନ୍ୟାୟ, ଅନୈତିକ ଓ ମାନବିକତା-ବିରୋଧୀ । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ଜାତୀୟତା ନିର୍ବିଶେଷରେ ପ୍ରତ୍ୟେକ ନାଗରିକ ନିଜ ସାମର୍ଥ୍ୟର ବିକାଶ ଘଟାଇବା ଓ ଆତ୍ମମର୍ଯ୍ୟାଦାର ସହ ବଞ୍ଚିବା ପାଇଁ ପ୍ରତ୍ୟେକ ରାଷ୍ଟ୍ର ଉତ୍ତରଦାୟୀ । ଯେକୌଣସି ପ୍ରକାରର ଶୋଷଣ, କ୍ରୂରତା ଓ ଭେଦଭାବକୁ ଲୋପ କରିବା ପାଇଁ ପ୍ରତ୍ୟେକ ରାଷ୍ଟ୍ର ପ୍ରୟାସ କରିବ । ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ଆନ୍ତର୍ଜାତିକ ସ୍ତରରେ ମାନବବାଦର ଏହି ଯେଉଁ ବିଚାର ସ୍ୱୀକୃତ ହୋଇଛି ତାହା ଯେ ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ତାହା ନିଃସନ୍ଦେହ । ଏହାର ବହୁ ବ୍ୟତିକ୍ରମ ବା ଉଲଙ୍ଘନ ହୁଏତ ବିଭିନ୍ନ ଦେଶରେ ଘଟୁଛି, ତଥାପି ଏ କ୍ଷେତ୍ରରେ ଯେଉଁ ସଚେତନତା ସାରା ବିଶ୍ୱରେ ପ୍ରକାଶ ପାଇଛି ତାହା ଏକ ଗୌରବାବହ ଘଟଣା । ସେହିପରି ବିଜ୍ଞାନ ଓ ପ୍ରଯୁକ୍ତି ଆଜି ସମଗ୍ର ବିଶ୍ୱର ଜନଗଣଙ୍କ ଜୀବନଧାରାରେ ବହୁ ଉନ୍ନତି ଆଣିପାରିଛି । ଜ୍ଞାନ, ବିଜ୍ଞାନ ସାର୍ବଜନୀନ ହେବାରେ ଲାଗିଛି । ଯେଉଁମାନେ ନିଜର ଗବେଷଣାଦ୍ୱାରା ନୂଆ ନୂଆ ଜ୍ଞାନ ଦେଇଛନ୍ତି ତାହାର ସୁଫଳ ସମଗ୍ର ମାନବ ସମାଜ ଉପଭୋଗ କରୁଛି । ଗୋଟିଏ ଗୋଟିଏ ନୂଆ ଉଦ୍ଭାବନ ବା ଆବିଷ୍କାର ସଭ୍ୟତାକୁ ଯେଉଁ ଲମ୍ଫ ଦେଇଛି ତାହା ସମଗ୍ର ମାନବଜାତିର ମଙ୍ଗଳ ସାଧନ କରିଛି । ପ୍ରିଣ୍ଟିଂ ପ୍ରେସ, ବିଜୁଳି ଆଲୁଅ, ବିଭିନ୍ନ ରୋଗର ନିଦାନ, ଟେଲିଭିଜନ, ଉଡାଜାହାଜ, ମୋବାଇଲ ଫୋନ, ଇଣ୍ଟରନେଟ ଇତ୍ୟାଦି ଜ୍ଞାନକୌଶଳ ସଭ୍ୟତାର ରୂପରେଖ ପରିବର୍ତ୍ତନ କରିପାରିଛି । ସେହିପରି ବୈଜ୍ଞାନିକ ଚାଷ ପ୍ରଣାଳୀ ପୃଥିବୀର କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ଦୂରକରିବାରେ ସହାୟକ ହୋଇପାରିଛି ।

ଏହି ସବୁ ବିକାଶ ଓ ସମୃଦ୍ଧି ମାତ୍ର ଦୁଇଶହ ବର୍ଷ ଭିତରେ ସମ୍ଭବ ହୋଇଛି। ବିଜ୍ଞାନ ଏକ ନୂଆ ଦୁନିଆ ଗଢ଼ିବାରେ ମଣିଷର ସାମର୍ଥ୍ୟକୁ ବହୁଗୁଣିତ କରିପାରିଛି।

ଏସବୁ ସକାରାତ୍ମକ ବିକାଶ ସତ୍ତ୍ୱେ ତଥାପି ମାନବ ସଭ୍ୟତାରେ ବହୁ ସଙ୍କଟ ରହିଛି। ଆତଙ୍କବାଦ, ସନ୍ତ୍ରାସବାଦ, ବିଜ୍ଞାନର ଅପପ୍ରୟୋଗ, ଉଗ୍ର ଜାତୀୟତାବୋଧ, ସାମ୍ପ୍ରଦାୟିକ ବିଦ୍ୱେଷ, ମୌଳବାଦ ଓ ପୁଞ୍ଜିବାଦୀ ଶୋଷଣ ସମସ୍ୟାମାନ ବହୁ ଭାବରେ ସମାଜର ଶାନ୍ତି, ସ୍ଥିରତାକୁ ବିପନ୍ନ କରିବାରେ ଲାଗିଛି। ଦେଖିବାକୁ ଗଲେ ଧାର୍ମିକ ରକ୍ଷଣଶୀଳତା ବା ଧର୍ମାନ୍ଧତାରୁ ବହୁ ବିଦ୍ୱେଷ ଓ ଆତଙ୍କବାଦ ସୃଷ୍ଟି ହେଉଛି। ଧର୍ମାନ୍ଧତା ନାନା ଉଗ୍ରବାଦ ଓ ମାନବିକତା-ବିରୋଧୀ ମାନସିକତା ସୃଷ୍ଟିରେ ମୁଖ୍ୟ ଆୟୁଧ ହେଉଛି। ସେହିପରି ପ୍ରତ୍ୟେକ ରାଷ୍ଟ୍ର ନିଜ ରାଷ୍ଟ୍ରର ସୁରକ୍ଷା ପାଇଁ ପ୍ରତିରକ୍ଷା କ୍ଷେତ୍ରରେ ଜାତୀୟ ଆୟର ଏକ ମୁଖ୍ୟ ଭାଗ ବ୍ୟୟ କରୁଛି। ପ୍ରତ୍ୟେକ ରାଷ୍ଟ୍ର ଆଣବିକ ଶକ୍ତି ହାସଲ କରିବାକୁ ନାନା ଗବେଷଣାରେ ପ୍ରଚୁର ବ୍ୟୟ କରୁଛି। ଧର୍ମାନ୍ଧତା ଓ ଉଗ୍ର ଜାତୀୟତା ସାଂପ୍ରତିକ ସ୍ଥିତିରେ ସଭ୍ୟତାର ଦୁଇଟି ବଡ ନକାରାତ୍ମକ ଦିଗ ବୋଲି ବିଶ୍ୱ ସ୍ତରରେ ବୁଦ୍ଧିଜୀବୀମାନେ ମତପୋଷଣ କରିବାରେ ଲାଗିଛନ୍ତି।

ମଣିଷ ନିଜର ବିଚାରଶୀଳତାର ପ୍ରୟୋଗ କରି ଯେକୌଣସି ମାନବୀୟ ସଙ୍କଟକୁ ଦୂର କରିବାକୁ ପ୍ରଯତ୍ନ କରିଆସୁଛି। ଏହି ସ୍ଥିତିରେ ଏହି ଦୃଷ୍ଟିକୋଣ ବ୍ୟକ୍ତ ହେବାରେ ଲାଗିଛି ଯେ ସମଗ୍ର ବିଶ୍ୱ ପାଇଁ ଏକ ବିଶ୍ୱ ସରକାର ପ୍ରତିଷ୍ଠା ହେଲେ ସମ୍ଭବତଃ ରାଷ୍ଟ୍ର ରାଷ୍ଟ୍ର ଭିତରର ବିଦ୍ୱେଷ ଓ ଆଣବିକ ଶକ୍ତି ବୃଦ୍ଧି ପାଇଁ ପ୍ରତିଯୋଗିତାର ଅବସାନ ହୋଇପାରିବ। ପ୍ରତିରକ୍ଷା କ୍ଷେତ୍ରରେ ବ୍ୟୟ ହେଉଥିବା ଅର୍ଥ ବିକାଶ କ୍ଷେତ୍ରରେ ବିନିଯୋଗ ହେଲେ ପୃଥିବୀରୁ ସକଳ ଦାରିଦ୍ର୍ୟର ବିଲୋପ ହେବ। ଏହା ସହ ଧାର୍ମିକ ମତାନ୍ଧତାର ଊର୍ଦ୍ଧ୍ୱକୁ ଯାଇ ଧର୍ମନିରପେକ୍ଷତା ଓ ମାନବବାଦ ବିଶ୍ୱର ନୈତିକ ଆଦର୍ଶ ହେବ। ଏକ ଆଦିମ ସ୍ଥିତିରୁ ଆରମ୍ଭ ହୋଇଥିବା ଯାତ୍ରାର ପରିଣତି ହେବ ଏକ ଭ୍ରାତୃତ୍ୱଭରା ବିଶ୍ୱସମାଜ। ଏହା ଯଦି ସମ୍ଭବ ହୁଏ, ଏହା ସମ୍ଭବ ହେବ ମହାକାଂକ୍ଷୀ ବ୍ୟକ୍ତିମାନଙ୍କର ଉଦ୍ୟମରେ, କୌଣସି ଈଶ୍ୱରୀୟ ଆଶୀର୍ବାଦରେ ନୁହଁ।

(ପ୍ରଗତିବାଦୀ, ୦୯.୧୧.୨୦୧୬)

# ସାହିତ୍ୟର ଦିଗନ୍ତ

ଜୀବନ ସହ ସାହିତ୍ୟର ସଂପର୍କ ଅତି ନିବିଡ । ମଣିଷ ଯେବେଠାରୁ ଭାଷା ଶିଖିଲା, ସାମାଜିକ ଜୀବନକୁ ସୁବ୍ୟବସ୍ଥିତ କଲା, ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ, ନୀତି-ଅନୀତିର ଭାବନା ଆଣିଲା ଓ ତା ଚାରିପାଖର ପ୍ରାକୃତିକ ଶୋଭାରେ ଆମୋଦିତ ହେଲା ତା ଭିତରେ ସାହିତ୍ୟର ରୁଚିବୋଧ ସୃଷ୍ଟି ହେଲା । କଳା, ସଙ୍ଗୀତ ଓ ସୌନ୍ଦର୍ଯ୍ୟବୋଧ ପ୍ରତି ମଣିଷର ଯେଉଁ ରୁଚିବୋଧ ରହିଛି, ସେହିପରି ସାହିତ୍ୟ ପ୍ରତି ମଧ୍ୟ ଏକ ସହଜାତ ଆକର୍ଷଣ ରହିଛି । ସାମାଜିକ ବିକାଶ, ସଭ୍ୟତାର ଅଗ୍ରଗତି ଓ ମାନବିକ ଚେତନାର ଉତ୍ତରଣ କ୍ଷେତ୍ରରେ ସାହିତ୍ୟର ବି ଏକ ବଳିଷ୍ଠ ଅବଦାନ ରହିଛି । ସାହିତ୍ୟ ମାନବୀୟ ସୃଜନଶୀଳତାର ଏକ ବଡ ଅଭିବ୍ୟକ୍ତି । ତେବେ ସଭ୍ୟତାର ବିକାଶ ସହ ସାହିତ୍ୟର ଦିଗନ୍ତ ବିସ୍ତାରିତ ହୋଇ ଚାଲିଛି । ଗୋଟିଏ ସମୟରେ କାବ୍ୟ, କବିତା ସାହିତ୍ୟ ସୃଜନର ଏକମାତ୍ର ଆଧାର ଥିଲା । ଧୀରେ ଧୀରେ ନାଟକ, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ଇତ୍ୟାଦି ସାହିତ୍ୟର ପରସରକୁ ଆସିଲା । ସାହିତ୍ୟର ଦିଗନ୍ତ କାବ୍ୟ, କବିତା, ନାଟକ ଭିତରେ ସୀମାବଦ୍ଧ ରହିଲା ନାହିଁ । ସାହିତ୍ୟର ଦିଗନ୍ତ ବହୁ କ୍ଷେତ୍ରକୁ ବିସ୍ତାରିତ ହେଲା । ମାନବୀୟ ସୃଜନଶୀଳତା କେତେ କେତେ କ୍ଷେତ୍ରରେ ପ୍ରତିଫଳିତ ହେଲା । ସଂପ୍ରତି ସୃଜନଶୀଳ ସାହିତ୍ୟ ପରିସରରେ କାବ୍ୟ କବିତା, ଗଳ୍ପ ଉପନ୍ୟାସ, ପ୍ରବନ୍ଧ ସମାଲୋଚନା ଇତ୍ୟାଦି ସହ ଜୀବନୀ-ଆତ୍ମଜୀବନୀ, ହେତୁବାଦୀ ସାହିତ୍ୟ, ବୈଜ୍ଞାନିକ ଚେତନା ଆଧାରିତ ସୃଜନ ଇତ୍ୟାଦି ବି ସଂଯୁକ୍ତ ହେବା ଏକ ସ୍ୱୀକୃତ ବିଷୟ । ଏହି ଦୃଷ୍ଟିରୁ ସାହିତ୍ୟର ଦିଗନ୍ତ ବହୁ ବିସ୍ତୃତ ଓ ନାନା ସମ୍ଭାବନାମୟ ।

କଳାତ୍ମକ ଭାବରେ କୁହାଯାଏ ଯେ ପବନ ଯେପରି ଦେହକୁ ସ୍ପର୍ଶ କରେ, ସାହିତ୍ୟ ସେହିପରି ଚେତନାକୁ ସ୍ପର୍ଶ କରେ । ଏହା ବ୍ୟକ୍ତି ଭିତରେ ମାନବିକ ଚେତନାର ଉତ୍ତରଣ ଘଟାଏ । ସାହିତ୍ୟ ବ୍ୟକ୍ତିକୁ ଅନ୍ୟ ମଣିଷ, ସମାଜ ଓ ଏକ ବୃହତ୍ତର ଜନଗୋଷ୍ଠୀ ସହ ସମ୍ବନ୍ଧିତ କରାଏ । ସେହିପରି ବ୍ୟକ୍ତି ଭିତରର ନାନା ସୂକ୍ଷ୍ମ ଅନୁଭବ ଓ ମହତ୍ତର ଉପଲବ୍ଧି କଳାତ୍ମକ ଭାବରେ ସାହିତ୍ୟର କୌଣସି ମାଧ୍ୟମ ଦେଇ ଅଭିବ୍ୟକ୍ତ ହୁଏ । ବିଶ୍ୱ ସାହିତ୍ୟରେ ଯେଉଁ ଅମର କୃତିମାନ ରହିଛି ତାହା ଭିତରେ ଜୀବନବୋଧର ଯେଉଁ ଆବେଗ, ଅନୁଭବ ଓ ବାର୍ତ୍ତା ରହିଛି

ତାହା ଜଣେ ପାଠକର ଚେତନାରେ ଭାବାନ୍ତର ସୃଷ୍ଟି କରେ। ଜୀବନକୁ ମହନୀୟ ସ୍ପର୍ଶ ଓ ଉତ୍ତମ ପ୍ରେରଣା ପ୍ରଦାନ କରିବାରେ ସାହିତ୍ୟର ଅବଦାନ ଅତୁଳନୀୟ।

କୁହାଯାଏ ଅସି ବା ଅସ୍ତ୍ରଠାରୁ ମଶି ବା କଲମ ଅଧିକ ଶକ୍ତିଶାଳୀ। ମାନବିକତାର ସ୍ଫୁରଣ କରିବାରେ ସାହିତ୍ୟ ଏକ ବଡ ଭୂମିକା ନିର୍ବାହ କରେ। ଏହା ନାନ୍ଦନିକ ବା ସୌନ୍ଦର୍ଯ୍ୟର ଅନୁଭବ ସହ ନ୍ୟାୟବୋଧ ଓ ମାନବବାଦର ବାର୍ତ୍ତା ଦେଇଥାଏ। ଗୋଟିଏ ଗୋଟିଏ କୃତି ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ କିପରି ବଳିଷ୍ଠ ପ୍ରେରଣା ଯୋଗାଇଛି ତାହାର ବହୁ ଦୃଷ୍ଟାନ୍ତ ଇତିହାସରୁ ଦେଖିବାକୁ ମିଳେ। ସମାଜର କାଳିମା, ଅନ୍ଧକାର, ଭେଦଭାବ ଓ ଅନ୍ୟାୟ ଦୂର କରିବାରେ ସାହିତ୍ୟ ବିଭିନ୍ନ ସଂସ୍କୃତିରେ ବଳିଷ୍ଠ ଭୂମିକା ନେଇପାରିଛି। ଜନମାନସକୁ ନ୍ୟାୟବୋଧ ଓ ମାନବିକତାର ସ୍ପର୍ଶ ଦେବାରେ ସାହିତ୍ୟ ହିଁ ସବୁଠାରୁ ବଡ ବୌଦ୍ଧିକ ଉତ୍ସ କୁହାଯାଇପାରେ।

କୁହାଯାଏ ଦୁଃଖର ଅନୁଭବରୁ ଜଣେ ସୃଜନଶୀଳ ସ୍ରଷ୍ଟାଙ୍କ କଲମରୁ ସାହିତ୍ୟ ଝରେ। ଯେଉଁଠି ସହୃଦୟତାର ଅନୁଭବ ରହେ, ଜଣେ ସୃଜନଶୀଳ ଶିଳ୍ପୀଙ୍କ କଲମରୁ ଉଚ୍ଚ ସ୍ତରର ସାହିତ୍ୟ ନିଷ୍ପନ୍ନ ହୋଇଥାଏ। ଏହି ଦୃଷ୍ଟିରୁ ସାହିତ୍ୟିକର ଦୃଷ୍ଟି କିଛିଟା ଅସାଧାରଣ। ନିଜର ଅନୁଭବ ଓ କଳ୍ପନାକୁ ସେ ଭାଷାରେ ଏକ ନାନ୍ଦିନିକ ରୂପ ଦିଏ। ସାହିତ୍ୟିକ କ୍ଷୁଦ୍ର, ଅସୁନ୍ଦର ଭିତରେ ମହାନ ଓ ସୁନ୍ଦରର ପରିକଳ୍ପନା କରେ। କେଉଁଠି ପ୍ରକୃତି ସହିତ ଆତ୍ମୀୟତା ଆଣେ ତ କେଉଁଠି ବାସ୍ତବ ଜୀବନର ନିଛକ ପ୍ରତିଫଳନ ସାଧାରଣ ଚରିତ୍ର ଭିତରେ ପ୍ରକାଶ କରେ। କବି ଓ ଲେଖକ କଳ୍ପନା, ନାନ୍ଦନିକତା ଓ ବାସ୍ତବତା ଭିତରେ ସମନ୍ୱୟ ଆଣିଥାଏ। ସାମାଜିକ ବାସ୍ତବତାର ଚିତ୍ର ଦେବା ସହ ମହତ୍ତର ଜୀବନବୋଧ ଓ ଏକ ସୁନ୍ଦର, ପ୍ରୀତିଭରା ସାମାଜିକ ସମ୍ବନ୍ଧର ରୂପରେଖ ପାଠକ ପାଖରେ ପରିବେଷଣ କରିଥାଏ। ଅତୀତ ଓ ବର୍ତ୍ତମାନକୁ ନେଇ ଭବିଷ୍ୟତ ପାଇଁ ସ୍ୱପ୍ନର ନୀଡ ରଚନା କରିଥାଏ। କଳ୍ପନା, ସ୍ୱପ୍ନ, ବାସ୍ତବତା ଭିତରେ ସ୍ୱପ୍ନରାଜ୍ୟ ଓ କେତେକ ୟୁଟୋପିଆର ବି ଚିତ୍ର ରହିଥାଏ। ସମସାମୟିକ ଯୁଗର ସାହିତ୍ୟରୁ କେତେକ ସେହି କାଳ ବା ସମୟର ସାମାଜିକ ସ୍ଥିତିର ପରିକଳ୍ପନା କରିଥାନ୍ତି। ବିଶ୍ୱାସ କରାଯାଏ ଯେ ସାହିତ୍ୟ ହେଉଛି ସମାଜର ଦର୍ପଣ। ଦର୍ପଣରେ ଯେପରି ଚିତ୍ର ଦେଖିହୁଏ, ସାହିତ୍ୟ ଭିତରେ ସେହିପରି ସାମାଜିକ ଜୀବନର ଚିତ୍ର ବା ପ୍ରତିଫଳନ ଦେଖିହୁଏ। ଏକ ଉନ୍ନତ ଭାଷା ସାହିତ୍ୟର ପରିସରରେ ଭାଷାଗୋଷ୍ଠୀର ସାମାଜିକ ବାସ୍ତବତାର ଚିତ୍ର ବା ପ୍ରତିଫଳନ ମଧ୍ୟ ଦେଖିହୁଏ। ସାହିତ୍ୟିକ ଜଣେ ଭାବୁକ, ଶିଳ୍ପୀ, ସ୍ୱପ୍ନଦ୍ରଷ୍ଟା ଓ ପଥଦ୍ରଷ୍ଟା ବ୍ୟକ୍ତି। ସାହିତ୍ୟିକ ବ୍ୟକ୍ତି ହୋଇ

ଥିବାରୁ ସେ ମରଣଶୀଳ। କିନ୍ତୁ ସାହିତ୍ୟ କାଳାତୀତ ଓ ସାର୍ବଜନୀନ। ବାଲ୍ମୀକି, ବ୍ୟାସ, ହୋମର, କାଳିଦାସ, ସେକ୍ସପିୟର ବ୍ୟକ୍ତି ଭାବରେ ଦୁନିଆରେ ନାହାନ୍ତି, କିନ୍ତୁ ସେମାନଙ୍କର ସୃଷ୍ଟି କାଳଜୟୀ ଓ ସାର୍ବଜନୀନ ହୋଇପାରିଛି। ଯେଉଁ ସାହିତ୍ୟ-ସୃଷ୍ଟି ଭିତରେ ମହତ୍ତର, ଜୀବନବୋଧର ବାର୍ତ୍ତା ରହିଛି, ଦୁଃଖ, ନୈରାଶ୍ୟ, ଗ୍ଲାନି ସହ ସୁଖ, ଆନନ୍ଦ ଓ ମିଳନର ଗଭୀର ମାନବିକ ଅନୁଭବ ରହିଛି ଓ କିଛି ସାର୍ବିକ ମୂଲ୍ୟବୋଧର ଚିତ୍ର ରହିଛି ସେହି ସାହିତ୍ୟ କାଳଜୟୀ ଓ ସାର୍ବଜନୀନ ହୋଇଛି।

କେତେକ ଭାବନ୍ତି କଳା କଳା ପାଇଁ ଉଦ୍ଦିଷ୍ଟ। ସେହି ସାଦୃଶ୍ୟରେ କେତେକ କହନ୍ତି ସାହିତ୍ୟ ସୃଜନାତ୍ମକ କୃତି ଭାବରେ ମୂଲ୍ୟବୋଧ-ନିରପେକ୍ଷ। ତେବେ ଏହି ମତଟି ବିବାଦୀୟ। ବରଂ ଅନେକ ମନେକରନ୍ତି ସାହିତ୍ୟିକର ଏକ ଅଙ୍ଗୀକାରବଦ୍ଧତା ରହିବା ଆବଶ୍ୟକ। ସାମାଜିକ ଜୀବନକୁ ନୂତନ ଦିଶା ଦେଖାଇବା, ଜୀବନର ଉତ୍କର୍ଷ ସାଧନ ପାଇଁ ପ୍ରେରଣାର ବାର୍ତ୍ତା ବହନ କରିବା ସାହିତ୍ୟିକର ନୈତିକ କର୍ତ୍ତବ୍ୟ। ସାହିତ୍ୟିକର ଏକ ସାମାଜିକ ପ୍ରତିବଦ୍ଧତା ରହିବା ଆବଶ୍ୟକ। ଯେଉଁ ଆବେଗ ଓ ବିଚାର ସମାଜକୁ ପଥଭ୍ରଷ୍ଟ କରିବାର ସମ୍ଭାବନା ରହିଥାଏ ତାହାକୁ ପରିହାର କରିବା ଦରକାର। ଜୀବନରେ ଯାହା ମହନୀୟ, ସୁନ୍ଦର ଓ ସତ୍ୟ ତାହାର ବିକାଶ ଘଟାଇବା ସାହିତ୍ୟିକର ନୈତିକ କର୍ତ୍ତବ୍ୟ ହେବା ଉଚିତ। ଲୋଭ, ମିଥ୍ୟା ଓ ଶଠତାରୁ ବ୍ୟକ୍ତିଚେତନାକୁ ମୁକ୍ତ କରିବାରେ ସାହିତ୍ୟର ଭୂମିକା ରହିବା ଯଥାର୍ଥ ମନେହୁଏ।

ଇତିହାସରୁ ଏହା ଏକ ଉପଲବ୍ଧି ଯେ ଯେଉଁ ଯୁଗରେ ଯେଉଁ ବୌଦ୍ଧିକ ଆଲୋଡନ ଚିନ୍ତାରାଜ୍ୟରେ ପ୍ରଭାବ ବିସ୍ତାର କରିଥାଏ, ତାହାର ପ୍ରତିଫଳନ ସାହିତ୍ୟ ଭିତରେ ବି ହୋଇଥାଏ। ଯେଉଁ ସମୟରେ ଧାର୍ମିକ ଆବେଗ ଓ ବିଶ୍ୱାସ ଜନଜୀବନରେ ବ୍ୟାପକ ଭାବେ ରହିଥିଲା ତାହାର ପ୍ରତିଫଳନ ସାହିତ୍ୟର ମୁଖ୍ୟ ସ୍ୱର ହୋଇ ରହିଥିଲା। ରାଜତନ୍ତ୍ର ଓ ସାମନ୍ତବାଦୀ ଯୁଗରେ ରାଜା, ସାମନ୍ତମାନଙ୍କୁ ନେଇ ଦରବାରୀ ସାହିତ୍ୟ ସୃଷ୍ଟି ହେଉଥିଲା। ପ୍ରତ୍ୟେକ ଉନ୍ନତ ସାହିତ୍ୟିକ ପରମ୍ପରାରେ ସାହିତ୍ୟର ଆଦିପର୍ବରେ ପୌରାଣିକ ଚରିତ୍ର, ରାଜା-ରାଣୀଙ୍କ କାହାଣୀ ଓ ବିଭିନ୍ନ ପରି ରାଇଜର କଥା ସାହିତ୍ୟର ମୁଖ୍ୟ ପ୍ରସଙ୍ଗ ଥିଲା। ବିଜ୍ଞାନର ଯୁଗ ଆସିବା ପରେ ବହୁ ପୁରାତନ ବିଷୟ ଓ ଧାରଣାମାନ ଅହେତୁକ ଓ ଆଧାରହୀନ ବୋଲି ଜଣାପଡିଲା। ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ସହ ଗଣତାନ୍ତ୍ରିକ ବିଚାରବୋଧ, ସମାଜବାଦୀ ଜୀବନଦୃଷ୍ଟି ଓ ବ୍ୟକ୍ତିମର୍ଯ୍ୟାଦାବୋଧର ଭାବନା ଚିନ୍ତାରାଜ୍ୟରେ ଆଲୋଡନ ଆଣିଲା। ପରିଣାମତଃ ସାଧାରଣ ମଣିଷର ଜୀବନ କାହାଣୀ, ହସ-କାନ୍ଦ, ସଂଘର୍ଷ ଓ ସ୍ୱପ୍ନ ସାହିତ୍ୟ ସୃଷ୍ଟିର ଆଧାର ହେଲା।

ସାହିତ୍ୟ ଭିତରେ ସାମାଜିକ ବାସ୍ତବତା ଓ ଜୀବନର ଦୁଃଖ, ଯନ୍ତ୍ରଣା, ଆଶା, ନୈରାଶ୍ୟ, ସଂଗ୍ରାମ ପ୍ରତିଫଳିତ ହେବାକୁ ଲାଗିଲା। ଦେଶର ରାଜନୈତିକ ଘଟଣା ପ୍ରବାହ, ସାମାଜିକ ଆଲୋଡନ, ଯୁଗ ଯନ୍ତ୍ରଣା ଇତ୍ୟାଦି ସାହିତ୍ୟରେ ପ୍ରତିଫଳିତ ହେଲା। ସାମାଜିକ ବିପର୍ଯ୍ୟୟର ଚିତ୍ର ଦେବା ସହ ଭବିଷ୍ୟ ନେଇ ନାନା ସ୍ୱପ୍ନ ଓ ପ୍ରତିଶ୍ରୁତିର ବାର୍ତ୍ତା ସାହିତ୍ୟ ମଧ୍ୟରେ ପ୍ରକାଶିତ ହେଲା। ଗୋଟିଏ ଜନଗୋଷ୍ଠୀର ସାହିତ୍ୟ ଭିତରୁ ତାର ସଭ୍ୟତା, ସାଂସ୍କୃତିକ ଢାଞ୍ଚା ତଥା ବୌଦ୍ଧିକ ଓ ନୈତିକ ଜୀବନଦୃଷ୍ଟିର ଚିତ୍ର ଦେଖିବାକୁ ମିଳେ। ସାହିତ୍ୟ ମଧ ଦେଇ ସାଧାରଣ ମଣିଷର ଉନ୍ନତି ଓ ମର୍ଯ୍ୟାଦା ପାଇଁ ଏବେ ଯେଉଁ ଚିତ୍ର ପ୍ରକାଶ ପାଉଛି ଏହା ସଭ୍ୟତାରେ ନ ଥିଲା, ଏପରିକି ଚିନ୍ତାରାଜ୍ୟରେ ବି ନ ଥିଲା।

ସଂପ୍ରତି ସାହିତ୍ୟ ଜୀବନର ବହୁ ଦିଗନ୍ତକୁ ସ୍ପର୍ଶ କରିପାରୁଛି। ସାହିତ୍ୟର ଭାଷା ଆଞ୍ଚଳିକ ହୋଇପାରେ କିନ୍ତୁ ତାହାର ଭାବ ସାର୍ବଜନୀନ। ଏକ ମହତ୍ତର ଜୀବନବୋଧ ଓ ସମୁଚିତ ସାଂସ୍କୃତିକ ତଥା ନୈତିକ ପ୍ରୋତ୍ସାହନ ମଣିଷକୁ ଯୋଗାଇବା ସାହିତ୍ୟର ଯେ ଆଭିମୁଖ୍ୟ ଏହା କୁହାଯାଇପାରେ।

(ପ୍ରଗତିବାଦୀ, ୧୪.୧୨.୨୦୧୬)

# ସାର୍ବଜନୀନ ଦୃଷ୍ଟି

ସଭ୍ୟତା ଯେତେ ଆଗକୁ ଯାଉଛି ଜ୍ଞାନ, ବିଜ୍ଞାନ କ୍ଷେତ୍ରରେ ସେତେ ବିକାଶ ହେଉଛି । ହଜାର ହଜାର ବର୍ଷର ପ୍ରୟାସ ଓ ଅନୁସନ୍ଧିତ୍ସା ହିଁ ଜ୍ଞାନର ଶିଡିରେ ଆଗକୁ ଯିବାରେ ମନୁଷ୍ୟକୁ ସାହାଯ୍ୟ କରିଛି । ତେବେ ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ଯୁଗ ଆରମ୍ଭ ହୁଏ । ବିଜ୍ଞାନର ଯୁଗ ଆସିବା ପରଠୁ ପ୍ରକୃତିର ବିଭିନ୍ନ କ୍ଷେତ୍ର ଉପରେ ବ୍ୟକ୍ତିଗତ ସ୍ତରରେ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ନାନା ବିଷୟରେ ଯେଉଁ ସବୁ ଗବେଷଣା ହୋଇଛି ସେଥିରେ ଜ୍ଞାନର ଦିଗନ୍ତ ଯଥେଷ୍ଟ ବିସ୍ତାର ଲାଭ କରିଛି । ଏହି ବିସ୍ତାର ହିଁ ଏକ ନିରନ୍ତର ଓ ଅବାରିତ ପ୍ରକ୍ରିୟା ଭାବେ ସର୍ବଦା ଚାଲୁ ରହିଛି । ବହୁ କ୍ଷେତ୍ର ଉପରେ ପ୍ରତିବର୍ଷ ନୂଆ ନୂଆ ତଥ୍ୟ ଗବେଷଣା ମାଧ୍ୟମରେ ଉପଲବ୍ଧ ହେଉଛି । ବିଜ୍ଞାନର ଯୁଗ ଆସିବା ପୂର୍ବରୁ ଜ୍ଞାନ ବିଜ୍ଞାନର ବିକାଶ ହୋଇନଥିଲା । ପ୍ରକୃତିର ଘଟଣା ଓ ଜୀବନର ଘନଘଟାକୁ ନାନା କାଳ୍ପନିକ ବା ଧାର୍ମିକ ବିଶ୍ୱାସ ଆଧାରରେ ମଣିଷ ବୁଝୁଥିଲା । ବିଭିନ୍ନ ସଂସ୍କୃତିରେ ଧର୍ମର ଗଭୀର ପ୍ରଭାବ ରହିଥିଲା ଓ ପ୍ରତ୍ୟେକ ଧର୍ମର ବିଶ୍ୱାସମାନଙ୍କୁ ପ୍ରତ୍ୟେକ ଧର୍ମଗୋଷ୍ଠୀରେ ଅଭ୍ରାନ୍ତ ଓ ଶାଶ୍ୱତ ବୋଲି ଗ୍ରହଣ କରାଯାଉଥିଲା । ସବୁକିଛିକୁ ଈଶ୍ୱରୀୟ ବ୍ୟବସ୍ଥାର ପରିଣତି ବୋଲି ସେତେବେଳେ ବିଚାର ରହିଥିଲା । ପ୍ରାକୃତିକ ଦୁର୍ବିପାକକୁ ମାନବକୃତ ପାପର ଦୈବୀ-ଦଣ୍ଡ ବୋଲି ମଣିଷ ବୁଝିଥିଲା । ସେହିପରି ରୋଗ, ମହାମାରୀ ଫଳରେ ଗଣମୃତ୍ୟୁ ସାଧାରଣ ଘଟଣା ଥିଲା । ଭୟ ଓ ଅସହାୟବୋଧ ଜୀବନରେ ଲାଗି ରହିଥିଲା । ପ୍ରାକୃତିକ ଦୁର୍ବିପାକ ସହ ସାମନ୍ତବାଦୀ ଶୋଷଣ ଓ ରାଜତନ୍ତ୍ର ଯୁଗର ଅତ୍ୟାଚାର ଯୋଗୁ ଭୟର ବାତାବରଣ ସର୍ବବ୍ୟାପୀ ହୋଇ ରହିଥିଲା । ଏହି ସ୍ଥିତିରେ ବିପଦରୁ ରକ୍ଷା ପାଇବା ପାଇଁ ଦୈବୀ କରୁଣା ପାଇଁ କେତେ କେତେ ଭକ୍ତିଭାବ ଓ ଆରାଧନାର ଧାରା ବିଭିନ୍ନ ସଂସ୍କୃତିରେ ପ୍ରସାରିତ ହୋଇଥିଲା । ମଣିଷ ଯେତେବେଳେ ଅସହାୟତା ଅନୁଭବ କରିଛି, ସେତେବେଳେ ସେ ଦେବୀ-ଦେବତାର ଶରଣ ପଶିଛି । ତା ସଂସ୍କୃତିରେ ରହିଥିବା ପାରଲୌକିକ ଜୀବନବୋଧ ଓ ବିଶ୍ୱାସକୁ ସେ ନିଷ୍ଠାର ସହ ପାଳନ କରିବାକୁ ଉଦ୍ୟମ କରିଛି । ଏହାଦ୍ୱାରା ଈଶ୍ୱର ତାର ଡାକ ଶୁଣିବେ ଓ ଆସନ୍ନ ବିପଦ ଆପଦରୁ ତାକୁ ରକ୍ଷା କରିବେ ବୋଲି ସେ ବିଚାର କରିଛି । ଧାର୍ମିକ ମାନସିକତା ଭିତରେ ପୂଜା, ପ୍ରାର୍ଥନା, ଭକ୍ତିଭାବ, ସମର୍ପଣ ଇତ୍ୟାଦି ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ହୋଇଯାଇଛି । ତାର ପ୍ରଭାବ ଏବେ ବି କେତେକାଂଶରେ ଗୋଷ୍ଠୀ ଜୀବନରେ ପରିଲକ୍ଷିତ ହୁଏ ।

ଏହି ଜୀବନବୋଧର ଅନ୍ୟ ଏକ ପରିଣାମ ହେଉଛି ପୂର୍ବନିର୍ଦ୍ଦିଷ୍ଟବାଦ ଓ ଭାଗ୍ୟବାଦୀ ବିଶ୍ୱାସ। ଜୀବନରେ କିଏ କ'ଣ ହେବ ତାହା ପୂର୍ବ ନିର୍ଦ୍ଧାରିତ। ସବୁ କିଛି ଅଜ୍ଞେୟ ଦୈବ୍ୟଶକ୍ତି ଦ୍ୱାରା ସୁନିର୍ଦ୍ଦିଷ୍ଟ। ମଣିଷର କିଛି ସ୍ୱତନ୍ତ୍ରତା ନାହିଁ। ଦଇବ ଦଉଡିରେ ତାର ଜୀବନ ବନ୍ଧା। ଦଉଡି ତାକୁ ଯୁଆଡେ ଓ ଯେପରି ଭିଡିବ, ସେ ସେପରି ଗତି କରିବ। ଜୀବନରେ ଦୁଃଖ, ନୈରାଶ୍ୟ, ହତାଶା ଇତ୍ୟାଦି ତାର କପାଳ ଲିଖନ। ସେଥିରୁ ମୁକ୍ତି ନାହିଁ। ମୁକ୍ତି କେବଳ ମୃତ୍ୟୁରେ ହିଁ ମିଳିବ। ସେ ଭାଗ୍ୟର ପଶାପାଲିରେ ଗୋଟି ମାତ୍ର। ସେ ନିଜ ଜୀବନକୁ ଚଳାଉ ନାହିଁ। ତା ଜୀବନକୁ ଦୈବୀଶକ୍ତି ହିଁ ନିୟନ୍ତ୍ରିତ କରୁଛି। ତାର ଦୁଃଖ ଯନ୍ତ୍ରଣା ତାର କପାଳ ଲିଖନ। ଧାର୍ମିକ ବିଚାରବୋଧରେ ଏହି ପରି ଜୀବନଦୃଷ୍ଟି ପ୍ରାୟତଃ ସାର୍ବଜନୀନ ଭାବେ ରହିଥିବା ଏକ ସାଧାରଣ ଉପଲବ୍ଧି।

ତେବେ ବିଜ୍ଞାନର ଯୁଗ ଆସିବାପରେ ଧୀରେ ଧୀରେ ପ୍ରାକୃତିକ ରହସ୍ୟମାନଙ୍କୁ ବୁଝିବାକୁ କିଛି ନିଷ୍ଠାପର ପ୍ରୟାସ ହେଲା। ପ୍ରାକୃତିକ ଘଟଣାମାନଙ୍କୁ ବିଜ୍ଞାନଧାରାରେ ବୁଝିବାକୁ ଉଦ୍ୟମ ଭିତରୁ ବହୁ ପ୍ରୟାସ ଜଣାପଡିଲା। ଆମ ଚତୁଃପାର୍ଶ୍ୱର ପ୍ରକୃତି, ଜୀବଜଗତ ଓ ମଣିଷ ଜୀବନର ଗତିପଥକୁ କେହି ସୃଷ୍ଟି କରିନାହାନ୍ତି ବା କେହି ପରିଚାଳିତ କରୁନାହାନ୍ତି। କୋଟି କୋଟି ବର୍ଷର ନାନା ରାସାୟନିକ ଓ ଜୈବିକ ପ୍ରକ୍ରିୟାର ପରିଣାମରୁ ପୃଥିବୀ ଓ ଜୀବଜଗତର ଉଦ୍ଭବ ହୋଇଛି। ପ୍ରାକୃତିକ ଶକ୍ତିକୁ ନିୟନ୍ତ୍ରଣ କରି ସେମାନଙ୍କର କେତେକ କୁପ୍ରଭାବକୁ ନିୟନ୍ତ୍ରଣ କରିହେବ। ନାନା ରୋଗ ଓ ମହାମାରୀ କୌଣସି ଦୈବୀଦଣ୍ଡ ନୁହେଁ। ବିଭିନ୍ନ ରୋଗମାନଙ୍କର କାରଣକୁ ଜାଣିଲେ ସେସବୁକୁ ନିୟନ୍ତ୍ରଣ କରାଯାଇ ପାରିବ। ନାନା ପ୍ରତିଷେଧକ ବ୍ୟବସ୍ଥା ମାଧ୍ୟମରେ ରୋଗ, ମହାମାରୀମାନଙ୍କୁ ପ୍ରତିରୋଧ କରିବା ସମ୍ଭବ। ଏପରିକି ଶାରୀରିକ ସ୍ତରରେ କିଛି ତ୍ରୁଟି ଥିବା ଅପଙ୍ଗ ବ୍ୟକ୍ତିମାନଙ୍କୁ ମଧ୍ୟ ଚିକିତ୍ସା ବିଜ୍ଞାନ ସହାୟତାରେ ସୁସ୍ଥ ଜୀବନ ପ୍ରଦାନ କରିହେବ। ଗମନାଗମନର ବିକାଶ କରାଇଲେ ଲୋକମାନଙ୍କର ଗତିଶୀଳତା ବୃଦ୍ଧି ପାଇବ। ଶିକ୍ଷାକୁ ସାର୍ବଜନୀନ କରିହେବ। ଶିକ୍ଷାର ଆଲୋକରେ ପ୍ରତ୍ୟେକ ବ୍ୟକ୍ତି ନିଜର ସୃଜନଶୀଳ ସାମର୍ଥ୍ୟକୁ ବୃଦ୍ଧିକରିପାରିବ।

ବିଜ୍ଞାନର ଯୁଗ ଆସିବା ପରେ ପ୍ରକୃତି ବିଷୟରେ ମଣିଷର ଜ୍ଞାନର ଦିଗନ୍ତ ବିସ୍ତାରିତ ହେବା ସହ ସମାଜର ରାଜନୈତିକ, ଅର୍ଥନୈତିକ, ଶୈକ୍ଷିକ ଓ ସାଂସ୍କୃତିକ ଦୃଶ୍ୟପଟରେ ଆସ୍ତେ ଆସ୍ତେ ବିଭିନ୍ନ ପରିବର୍ତ୍ତନର ଯୁଗ ଆସିଲା। ସାମନ୍ତବାଦ, ରାଜତନ୍ତ୍ର ଓ ସାମାଜିକ ଭେଦଭାବ ବିରୋଧରେ ସାମାଜିକ ଚେତନା ପ୍ରକାଶ ପାଇଲା। ଧର୍ମ ସହ ଗୋଟିଏ ସମୟରେ ରାଜତନ୍ତ୍ର ଅଙ୍ଗାଙ୍ଗୀ ଭାବେ ସଂଶ୍ଲିଷ୍ଟ ହୋଇଥିଲା। ଧାର୍ମିକ ବ୍ୟବସ୍ଥାକୁ ସୁରକ୍ଷା ଦେବା ରାଜତନ୍ତ୍ରର

ଅଭିମୁଖ୍ୟ ଥିଲା ଓ ରାଜା ଯେ ଧରାରେ ଈଶ୍ୱରଙ୍କ ପ୍ରତିନିଧି ଏହା ଧର୍ମଧାରାର ପ୍ରତିପାଦ୍ୟ ବିଶ୍ୱାସ ଥିଲା । ତେବେ କାଳକ୍ରମେ ଅଷ୍ଟାଦଶ ଶତାବ୍ଦୀରୁ କେତେକ ରାଷ୍ଟ୍ରରେ କିଛି ଦାର୍ଶନିକ ବ୍ୟକ୍ତି-ସ୍ୱାଧୀନତା, ସମତା ଓ ମାନବିକ ମହତ୍ତ୍ୱ ନେଇ ଯେଉଁ ବିଚାରର ସୂତ୍ରପାତ କଲେ ତାହା ସାମଗ୍ରିକ ଭାବେ ଜନଚେତନାକୁ ଗଭୀର ଭାବେ ଆନ୍ଦୋଳିତ କଲା । ରାଜତନ୍ତ୍ର, ସାମନ୍ତବାଦ ଓ ବୈଷମ୍ୟ ବିରୁଦ୍ଧରେ ଗଣସଂଗ୍ରାମମାନ କେତେକ ରାଷ୍ଟ୍ରରେ ମୁଣ୍ଡ ଟେକିଲା । ଏହାର ପ୍ରଭାବରୁ ରାଜତନ୍ତ୍ର ଯେ ଏକ ମନ୍ଦ ରାଜନୈତିକ ବ୍ୟବସ୍ଥା ଏହି ଭାବନା ଦୃଢ଼ ଭିତ୍ତି ନେବାକୁ ଲାଗିଲା । ରାଜତନ୍ତ୍ର ପରିବର୍ତ୍ତେ ଗଣତାନ୍ତ୍ରିକ ବ୍ୟବସ୍ଥା ଏକ ସଭ୍ୟ, ଉତ୍ତରଦାୟୀ ଓ ଅଧିକ ନ୍ୟାୟପୂର୍ଣ୍ଣ ବୋଲି ଜନମାନସରେ ଓ ବୌଦ୍ଧିକ ସ୍ତରରେ ଗୃହୀତ ହେବାକୁ ଲାଗିଲା । ଜାତି, ବର୍ଣ୍ଣ, ଧର୍ମ, ଲିଙ୍ଗ ଇତ୍ୟାଦିକୁ ନେଇ ବିଭିନ୍ନ ସମାଜରେ ଯେଉଁ ଭେଦଭାବମୂଳକ ପରିବେଶ ରହିଥିଲା ତାହା ବିରୁଦ୍ଧରେ ସାମାଜିକ ଚେତନା ସୃଷ୍ଟି ହେଲା । ସଭ୍ୟତାର ଇତିହାସରେ ଯେତେ ଯେତେ କ୍ରୂରତା, ମାନବିକ ଶୋଷଣ, ଅତ୍ୟାଚାର, ନାନା ଭେଦଭାବ ଓ ଅନ୍ୟାୟ ଯୁଗ ଯୁଗ ଧରି ସମାଜରେ ରହିଥିଲା ତାହା ବିପକ୍ଷରେ ସଚେତନତା ଆସିଲା । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ଏକ ମର୍ଯ୍ୟାଦା ଓ ସମ୍ମାନର ଜୀବନ ଅତିବାହିତ କରିବା ତାର ପ୍ରାକୃତିକ ଅଧିକାର । ପ୍ରତ୍ୟେକଟି ଶିଶୁର ଯଥୋଚିତ ଉନ୍ନତି କିପରି ହେବ ଓ ତା ଭିତରର ସୃଜନଶୀଳତା ଉପଯୁକ୍ତ ବାତାବରଣରେ ବିକଶିତ ହୋଇପାରିବ ତାହା ରାଷ୍ଟ୍ରୀୟ ଯୋଜନାର ଲକ୍ଷ୍ୟ ରହିଲା । ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ର କିପରି ଏକ ନ୍ୟାୟପୂର୍ଣ୍ଣ, ଭେଦଭାବରହିତ, ଶୋଷଣମୁକ୍ତ ସୁସ୍ଥ ସମାଜର ବିକାଶ କରାଇବ ତାହାକୁ ନିଜର ଲକ୍ଷ୍ୟ ଭାବରେ ଗ୍ରହଣ କରିବାକୁ ଲାଗିଲା । କେତେକ ରାଷ୍ଟ୍ରରେ ବିପ୍ଳବଦ୍ୱାରା ସମାଜବାଦର ପ୍ରତିଷ୍ଠା ହେଲା ଓ ଆର୍ଥିକ ତଥା ସାମାଜିକ ସମତାକୁ ପ୍ରାଧାନ୍ୟ ଦିଆଗଲା ।

ବିଜ୍ଞାନର ଯୁଗ ଆସିବା ସହ ଏକ ସାଂସ୍କୃତିକ ବିପ୍ଳବର ଯୁଗ ମଧ୍ୟ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଆସିଲା । ଗଣତନ୍ତ୍ର, ସମାଜବାଦ, ମାନବିକ ଅଧିକାର, ବ୍ୟକ୍ତିମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ସାର୍ବଜନୀନ ଶିକ୍ଷା, ଏକ ନୀତିପୂର୍ଣ୍ଣ ବିଚାର ବ୍ୟବସ୍ଥା, ନାଗରିକ ଦାୟିତ୍ୱବୋଧ, ସମତାର ଭାବନା ଇତ୍ୟାଦି ମୂଲ୍ୟବୋଧମାନ ଧୀରେ ଧୀରେ ସାର୍ବଜନୀନ ହେବାରେ ଲାଗିଛି । ଗତ ଗୋଟିଏ ଦୁଇଟି ଶତାବ୍ଦୀ ଭିତରେ ଚିନ୍ତା ରାଜ୍ୟରେ ଏହି ପ୍ରକାରର ବୈଚାରିକ କ୍ରାନ୍ତି ଏକ ସାଂସ୍କୃତିକ ଉତ୍କର୍ଷର ସୂଚନା ଦିଏ ।

ଗୋଟିଏ ପଟେ ଜ୍ଞାନବିଜ୍ଞାନର ବିକାଶ ଓ ଅନ୍ୟ ପଟେ ସାମାଜିକ ଚେତନାରେ ପରିବର୍ତ୍ତନର ସମ୍ମିଳିତ ପ୍ରଭାବରୁ ଜୀବନ ଧାରଣର ମାନରେ ଉଲ୍ଲେଖନୀୟ ପରିବର୍ତ୍ତନମାନ ସଂଘଟିତ ହୋଇ ପାରିଛି । ଯେଉଁ ସମୟରେ ବହୁ ସ୍ତରରେ ଯେପରି ଅଜ୍ଞତା ଭରି ରହିଥିଲା,

ତାହା ନାନା ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଥିଲା । କୁଷ୍ଠରୋଗର କାରଣ ନଜାଣିଥିବା ବେଳେ ଏହି ରୋଗରେ ଆକ୍ରାନ୍ତ ବ୍ୟକ୍ତିର ଜୀବନ ଦୁର୍ବିସହ ହେବା ସହ ତାଙ୍କ ପ୍ରତି ସାମାଜିକ ଦୃଷ୍ଟିଭଙ୍ଗୀ ଅତ୍ୟନ୍ତ ବେଦନାଦାୟକ ଥିଲା । କିନ୍ତୁ ଯେତେବେଳେ ଏହା ଏକ ଜୀବାଣୁଜନିତ ରୋଗ ବୋଲି ଜଣାପଡିଲା ଓ ତାହାର ଚିକିତ୍ସାଦ୍ୱାରା ଆରୋଗ୍ୟ ସମ୍ଭବ ବୋଲି ଜ୍ଞାନ ଆସିଲା, ସେତେବେଳେ ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ସହ ସଂସାରରୁ କିଛି ଦୁଃଖ ଦୂର ହୋଇପାରିଲା । ବାତ୍ୟା, ବନ୍ୟା ଇତ୍ୟାଦିର ପୂର୍ବସୂଚନା ଯେତେବେଳେ ମିଳୁ ନଥିଲା, ସେହି ସ୍ଥିତିରେ ମଣିଷ ଏ ସବୁ ପ୍ରାକୃତିକ ବିପଦରେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା । ବିଜ୍ଞାନର ଅଗ୍ରଗତି ଯୋଗୁ ସଂପ୍ରତି ମଣିଷ ଏଥି ପାଇଁ ବହୁ ସତର୍କ ପଦକ୍ଷେପ ନେଇପାରୁଛି । ଜ୍ଞାନ, ବିଜ୍ଞାନ ମଣିଷର ଦୁଃଖକୁ ଦୂର କରିବା ସହ ତାକୁ ଶକ୍ତିଶାଳୀ କରିବାରେ ଲାଗିଛି ।

ସପ୍ତଦଶ ଶତାବ୍ଦୀର ଜଣେ ବିଶିଷ୍ଟ ଦାର୍ଶନିକ ଏକଦା କହିଥିଲେ ଜ୍ଞାନ ହିଁ ଶକ୍ତି । ମୁକ୍ତ ମନ, ବୈଜ୍ଞାନିକ ପ୍ରଣାଳୀ ଓ ବିଚାରଶୀଳତାର ସାର୍ବଭୌମତ୍ୱ ସକଳ ଜ୍ଞାନର ମୂଳ ସୂତ୍ର । ପ୍ରାକୃତିକ ଘଟଣା ପ୍ରବାହ, ସାମାଜିକ ବ୍ୟବସ୍ଥା ଓ ଜୀବନର ସକଳ ଘନଘଟାକୁ ବୁଝିବାକୁ ଏହା ଅତ୍ୟନ୍ତ ଆବଶ୍ୟକ । ଏଥିରୁ କୌଣସିଟିର ଅଭାବରେ ଜ୍ଞାନ-ବିଜ୍ଞାନର ଯଥୋଚିତ ବିକାଶ ସମ୍ଭବ ନୁହେଁ । ତେବେ ଜ୍ଞାନ ଜୀବନ ପ୍ରବାହରେ ଏକ ସାଧନ ମାତ୍ର । ଏକ ସାଧନକୁ ଭଲ ବା ମନ୍ଦ ଯେକୌଣସି ଲକ୍ଷ୍ୟ ଦିଗରେ ବିନିଯୋଗ କରାଯାଇପାରେ । ଏହି ଦୃଷ୍ଟିରୁ ଲକ୍ଷ୍ୟ ଯେତେ ଉନ୍ନତ, ମାନବିକ ଓ ସାର୍ବଜନୀନ ହେବ ତାହା ସମାଜ ପାଇଁ ସେତେ ଶୁଭପ୍ରଦ ହେବ । ଏକ ମାନବିକ ଓ ମହତ୍ତର ଜୀବନଦୃଷ୍ଟି ଅଭାବରେ ଜ୍ଞାନ ଅହିତକର ଲକ୍ଷ୍ୟରେ ବିନିଯୋଗ ହେବାର ସମ୍ଭାବନାକୁ ଏଡାଇ ଦିଆଯାଇ ନପାରେ । ଆମ ସଂସାରରେ ଜ୍ଞାନ, ବିଜ୍ଞାନର ଯଥେଷ୍ଟ ବିକାଶ ହେଲାଣି, ଆଧୁନିକ ପ୍ରଯୁକ୍ତି ଉତ୍ତୁଙ୍ଗ ଶିଖରକୁ ଗଲାଣି । ଏସବୁ ସତ୍ତ୍ୱେ ମାନବ ସମାଜରେ ବହୁ ମାନବକୃତ ଦୁଃଖ-ଦୁର୍ଦ୍ଦଶା ଓ ସଙ୍କଟଜନକ ସ୍ଥିତି ପରିଲକ୍ଷିତ ହୁଏ । ଏହି ସବୁ ସଙ୍କଟ ଅନେକାଂଶରେ ମାନବିକ ଦୁର୍ବୁଦ୍ଧିର ପରିଣାମ କହିଲେ ଅତ୍ୟୁକ୍ତି ହେବ ନାହିଁ । ମାନବବାଦୀ ଜୀବନବୋଧ ଓ ସମ୍ବେଦନଶୀଳ ଅନୁଭବ ସାର୍ବଜନୀନ ଭାବେ ବିକଶିତ ହୋଇପାରିଲେ ଆମ ସଂସାର ମଧୁମୟ ହୋଇପାରିବ । ଜ୍ଞାନ ଓ ମାନବିକତାର ସମନ୍ୱୟ ହେଲେ ସମାଜରୁ ବହୁ ମନ୍ଦ ବା ଇଭିଲର ଅବସାନ ଘଟିପାରିବ । ବ୍ୟକ୍ତି ଓ ସମଷ୍ଟି ଉଭୟ ସ୍ତରରେ ଜୀବନର ଉତ୍କର୍ଷ ସାଧନ ପାଇଁ ଏ ଉଭୟର ସମନ୍ୱୟ ଅବଶ୍ୟମ୍ଭାବୀ ମନେହୁଏ ।

(ପ୍ରଗତିବାଦୀ, ୦୪.୦୧.୨୦୧୭)

# ମୁକ୍ତିର ପରିଭାଷା

ସବୁ ସମୟରେ କିଛି ଚିନ୍ତାଶୀଳ ଓ ମହାକାଂକ୍ଷୀ ବ୍ୟକ୍ତି ମଣିଷର ମୁକ୍ତି ନେଇ ଚିନ୍ତା ଓ ସଂପୃକ୍ତି ବ୍ୟକ୍ତ କରିଛନ୍ତି । ତେବେ ମୁକ୍ତିର ପରିଭାଷା ସମୟକୁ ସମୟ ବଦଳି ଯାଇଛି । ମୁକ୍ତିର ବିପରୀତ ବନ୍ଧନ, ଦାସତ୍ୱ, ଶୋଷଣ, ଅଜ୍ଞତା ଇତ୍ୟାଦି ଯାହା କିଛି ବି ହୋଇପାରେ । ମୁକ୍ତିର ଅର୍ଥ ଯଦି ସ୍ୱାଧୀନତା ବା ସ୍ୱତନ୍ତ୍ରତା ହୁଏ ତେବେ ପ୍ରଶ୍ନ ହେବ କେଉଁ ପରାଧୀନତାରୁ ମଣିଷ ମୁକ୍ତି ଚାହେଁ ? କେଉଁ ସ୍ଥିତି ମଣିଷ ପାଇଁ ଅନୁପଯୋଗୀ ବା କଷ୍ଟକର ସେଥି ପାଇଁ ସେହି ସ୍ଥିତିକୁ ମଣିଷ ବା କେହି ବ୍ୟକ୍ତି ବା ଏକ ଗୋଷ୍ଠୀ ପରିବର୍ତ୍ତନ କରିବାକୁ ଇଚ୍ଛା କରେ ? ଏହି ସବୁ ଭାବନାକୁ ନେଇ ମୁକ୍ତିର କେତେ କେତେ ବ୍ୟାଖ୍ୟା ଓ ପରିକଳ୍ପନା ବୌଦ୍ଧିକ ପରିସରରେ ବା ସାମାଜିକ ସ୍ତରରେ ନାନାବିଧ ଆଲୋଡନ ସୃଷ୍ଟି କରିଛି ।

ଯେଉଁ ଯୁଗରେ ବୈଜ୍ଞାନିକ ବିଚାରବୋଧ ବା ରାଜନୈତିକ ଚିନ୍ତାଚେତନାର ବିଶେଷ ବିକାଶ ହୋଇନଥିଲା, ସେହି ସମୟରେ ବିଭିନ୍ନ ଧର୍ମମାନଙ୍କର ବିଭିନ୍ନ ଭୂଖଣ୍ଡରେ ଗଭୀର ପ୍ରଭାବ ରହିଥିଲା । ପ୍ରତ୍ୟେକ ଧର୍ମ ଏକ ଭୌଗୋଳିକ ଭୂଖଣ୍ଡର ସାଂସ୍କୃତିକ ଓ ବୌଦ୍ଧିକ ଜୀବନ ପ୍ରବାହର ମୌଳିକ ଅଙ୍ଗ ହୋଇ ରହିଥିଲା । ଧର୍ମର ତାତ୍ତ୍ୱିକ ପରିକଳ୍ପନା ଭିତରେ ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ଇତ୍ୟାଦି ଭାବନା ମୁଖ୍ୟ ସ୍ଥାନ ନେଇଥିଲା । ବିଶ୍ୱାସ କରାଯାଉଥିଲା ଯେ ବ୍ୟକ୍ତିର ମୃତ୍ୟୁପରେ ତାର ସଚେତନ ଅସ୍ତିତ୍ୱ ରହେ । ବିଭିନ୍ନ ଧର୍ମରେ ଆତ୍ମାର ଅସ୍ତିତ୍ୱ ନେଇ ବିଭିନ୍ନ କଳ୍ପନା ସ୍ଥାନ ପାଇଥିଲା । ବିଭିନ୍ନ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଆତ୍ମାର ସ୍ୱରୂପ ନେଇ ପରସ୍ପର ବିରୋଧୀ ଭାବନାମାନ ପରେ ଜଣାପଡିଲା । କେତେକ ଧର୍ମ ଆତ୍ମାର ପୁନର୍ଜନ୍ମବାଦରେ ବିଶ୍ୱାସ କରନ୍ତି ନାହିଁ । ଇହୁଦୀଧର୍ମ, ଖ୍ରୀଷ୍ଟଧର୍ମ, ଇସ୍‌ଲାମ ଇତ୍ୟାଦି ଧର୍ମରେ ପୁନର୍ଜନ୍ମବାଦର ଧାରଣା ନାହିଁ । ସେମାନେ ସ୍ୱର୍ଗ, ନରକରେ ବିଶ୍ୱାସ କରନ୍ତି ଓ ବ୍ୟକ୍ତିର ମୃତ୍ୟୁପରେ ତାର ଆତ୍ମା ରହେ ଓ ବିଚାର ଦିବସ ପରେ ସେ ହୁଏତ ସ୍ୱର୍ଗଗାମୀ ହୁଏ ବା ନରକଗାମୀ ହୁଏ । ଯେଉଁ କେତେକ ଧର୍ମ ଯଥା ହିନ୍ଦୁଧର୍ମ, ଜୈନଧର୍ମ, ଶିଖଧର୍ମ ଇତ୍ୟାଦି ପୁନର୍ଜନ୍ମବାଦରେ ବିଶ୍ୱାସ କରନ୍ତି ସେମାନେ କଳ୍ପନା କରିଛନ୍ତି ଯେ ମୃତ୍ୟୁପରେ ପୁଣି ଆତ୍ମା ଜନ୍ମନିଏ ଓ ମୁକ୍ତି ପାଇବା ପର୍ଯ୍ୟନ୍ତ ଜନ୍ମ-ମୃତ୍ୟୁ ଚକ୍ରରେ ଘୂରୁଥାଏ । ତେବେ ମୁକ୍ତି ପାଇବା ଅର୍ଥ

ପୁନର୍ଜନ୍ମରୁ ଉଦ୍ଧାର ପାଇବା। ପୁନଶ୍ଚ ମୁକ୍ତି ପାଇବା ପରେ ଆତ୍ମାର ସ୍ୱତନ୍ତ୍ର ଅସ୍ତିତ୍ୱ ରହେ କି ଓ ଯଦି ରହେ କେଉଁ ସ୍ଥିତିରେ ରହେ ସେ ବିଷୟରେ ବିଭିନ୍ନ କଳ୍ପନାମାନ ରହିଥିବା ଦେଖାଯାଏ। ପୁନର୍ଜନ୍ମବାଦରେ ବିଶ୍ୱାସ କରୁଥିବା ଧର୍ମମାନେ ବିଶ୍ୱାସ କରନ୍ତି ଯେ ଜୀବନ ଦୁଃଖପୂର୍ଣ୍ଣ। ବଞ୍ଚି ରହିଥିବା ପର୍ଯ୍ୟନ୍ତ ଜୀବନରେ ଦୁଃଖ , ଯନ୍ତ୍ରଣା, ହତାଶା, ନୈରାଶ୍ୟ ରହିବ ହିଁ ରହିବ। ତେଣୁ ଏହି ସ୍ଥିତିରୁ ମୁକ୍ତି ଆବଶ୍ୟକ।

ଧାର୍ମିକ ପରିକଳ୍ପନାରେ ମୁକ୍ତି ହେଉଛି ଏକ ପାରଲୌକିକ ଅର୍ଥାତ୍ ମରଣୋତ୍ତର ସ୍ଥିତି। ମୁକ୍ତି ପାଇବା ଅର୍ଥ ସ୍ୱର୍ଗଗାମୀ ହେବା, ଈଶ୍ୱରଙ୍କ ସହ ଲୀନ ହୋଇ ନିଜର ସ୍ୱତନ୍ତ୍ର ସ୍ଥିତି ହରାଇବା, ଆତ୍ମାର ସ୍ଥିତିରେ ରହି ଈଶ୍ୱରଙ୍କୁ ଉପଲବ୍ଧି କରିବା, ଅନନ୍ତ ଜ୍ଞାନ, ଶକ୍ତି ପ୍ରାପ୍ତ ହେବା ଇତ୍ୟାଦି ନାନା କଳ୍ପନା ବିଭିନ୍ନ ଧର୍ମରେ କରାଯାଇଛି। ଯେହେତୁ ଏହି ସବୁ ଭାବନା କେବଳ ପ୍ରାଚୀନ ଯୁଗର କଳ୍ପନା ଏ ସବୁ ପଶ୍ଚାତରେ କୌଣସି ତଥ୍ୟଭିତ୍ତିକ ଆଧାର ନାହିଁ କିମ୍ବା ଏସବୁର କିଛି ସତ୍ୟତା ନାହିଁ। ବିଭିନ୍ନ ଧର୍ମରେ ନାନା ପାରଲୌକିକ କଳ୍ପନା ରହିଛି ଓ ସେସବୁ ବିଚାର ପଛରେ କୌଣସି ବସ୍ତୁନିଷ୍ଠ ବା ଯୁକ୍ତିନିଷ୍ଠ ପ୍ରମାଣ ନାହିଁ। ତେବେ ଧର୍ମର ପରିସର ଭିତରେ ମୁକ୍ତିର ଏକ ଭାବନା ରହିଛି।

ମଣିଷର ରାଜନୈତିକ ଓ ସାମାଜିକ ଚେତନାର ବିକାଶ ସହ ମୁକ୍ତିର ଏକ ଭିନ୍ନ ପରିଭାଷା ଚିନ୍ତାରାଜ୍ୟରେ ଆଲୋଡନ ସୃଷ୍ଟି କରିଛି। ସାମ୍ରାଜ୍ୟବାଦରୁ ମୁକ୍ତି ପାଇଁ ବିଭିନ୍ନ ଦେଶରେ ରାଜନୈତିକ ଆଲୋଡନ ଆସିଛି। ସ୍ୱାଧୀନତା ମୋର ଜନ୍ମଗତ ଅଧିକାର ବୋଲି ଦେଶାତ୍ମବୋଧର ଭାବନା ସାମ୍ରାଜ୍ୟବାଦୀ କବଳରେ ଥିବା ଦେଶମାନଙ୍କରେ ଊନବିଂଶ ବିଂଶ ଶତାବ୍ଦୀରେ ସୃଷ୍ଟି ହୋଇଛି। ଦେଶର ରାଜନୈତିକ ସ୍ୱାଧୀନତା ପାଇଁ ପରାଧୀନ ଦେଶମାନଙ୍କରେ ଜାଗରଣ ଦେଖାଦେଇଛି। ସାମାଜିକ ଦାସତ୍ୱ ବା ଶୋଷଣରୁ ମୁକ୍ତି ପାଇଁ ବିଭିନ୍ନ ଦେଶରେ ଜନ-ଆନ୍ଦୋଳନ ସୃଷ୍ଟି ହୋଇଛି। ପୁଞ୍ଜିବାଦୀ ଶୋଷଣରୁ ମୁକ୍ତି ପାଇଁ ସମାଜବାଦର ଭାବନା ଚିନ୍ତାରାଜ୍ୟରେ ନୂତନ ବିଚାର ସୃଷ୍ଟି କରିଛି। ସମାଜବାଦୀ ବିପ୍ଳବ ଶ୍ରେଣୀଗତ ଶୋଷଣରୁ ମୁକ୍ତି ପାଇଁ କେତେ କେତେ ପ୍ରେରଣା ଯୋଗାଇଛି। ଏହା ସହିତ ନାରୀମୁକ୍ତି ଆନ୍ଦୋଳନ, ଦଳିତମାନଙ୍କର ମୁକ୍ତି ପାଇଁ ଆନ୍ଦୋଳନ ମୁକ୍ତିର ନୂଆ ନୂଆ ଆବେଦନ ସୃଷ୍ଟି କରିଛି।ବିଂଶଶତାବ୍ଦୀ ଚିନ୍ତାମାନସରେ ଉପନିବେଶବାଦ, ସାମନ୍ତବାଦ, ଏକଛତ୍ରବାଦ ଇତ୍ୟାଦିକୁ ଦୂର କରିବାକୁ ବିଭିନ୍ନ ଭୂଖଣ୍ଡରେ ନାନା ଜନ ଆନ୍ଦୋଳନମାନ ସୃଷ୍ଟି ହୋଇଛି। ମୁକ୍ତିର ନୂଆ ନୂଆ ପରିଭାଷା ମଧ୍ୟ ଦେଇ ବ୍ୟକ୍ତି, ଗୋଷ୍ଠୀ ବା ଦେଶର ସ୍ୱାଧିକାର ଓ ସ୍ୱତନ୍ତ୍ରତା ପାଇଁ ଚେତନା ବିକଶିତ

ହୋଇଛି । ଏକ ଦେଶର ଜନଗଣ ଓ ସେହି ଜନଗଣଙ୍କ ଭିତରେ ବିଭିନ୍ନ ସମୂହ କିପରି ଶୋଷିତ ହେବେ ନାହିଁ ଓ ଆତ୍ମନିର୍ଣ୍ଣୟର ଅବକାଶ ପାଇବେ ସେଥିପାଇଁ ସାମାଜିକ ସଚେତନତା ପ୍ରକାଶ ପାଇଛି । ସମାଜରୁ ସକଳ ଭେଦଭାବ, ଶୋଷଣ ବିଲୋପ ହେଲେ ଯେ ଏକ ସମତାଭିତ୍ତିକ ସଂସ୍କୃତିର ବିକାଶ ହେବ ଏହି ଭାବନା ବିଂଶଶତାବ୍ଦୀର ମୁକ୍ତଚେତନାରେ ମୁଖ୍ୟ ସ୍ଥାନ ନେଇଛି । ଏହି ପ୍ରକ୍ରିୟାରେ ମାନବ ସମାଜରୁ ଜାତିଭେଦ, ରଙ୍ଗଭେଦ, ଲିଙ୍ଗଭେଦ ଇତ୍ୟାଦିକୁ ଦୂର କରିବାଦ୍ୱାରା ଯେ ମୁକ୍ତିର ଏକ ନୂତନ ଅନୁଭବ ଆସିବ ତାହା ନେଇ କେତେ ବୈଚାରିକ ଆଲୋଡନ ସୃଷ୍ଟି ହୋଇଛି ।

ମୁକ୍ତିର ଏକ ଭିନ୍ନ ପରିଭାଷା ମୁକ୍ତଚିନ୍ତକମାନେ ବ୍ୟକ୍ତ କରିଆସିଛନ୍ତି । ସକଳ ପ୍ରକାରର ମାନସିକ ଦାସତ୍ୱରୁ ମୁକ୍ତି ସେମାନଙ୍କ ପାଇଁ ବେଶ୍ ଆକର୍ଷଣୀୟ ମନେହୋଇଛି । ଯେତେବେଳେ ମଣିଷ ବିଭିନ୍ନ ଭିତ୍ତିହୀନ ବିଶ୍ୱାସମାନଙ୍କୁ ଗ୍ରହଣକରେ, ସ୍ୱାଧୀନ ଭାବରେ ଚିନ୍ତା କରିବାଠାରୁ ଦୂରେଇ ଯାଏ, ଏକ ରୁଦ୍ଧ ମାନସିକତା ପୋଷଣ ଭିତରେ ରହିଥିବା ଅନୁସନ୍ଧିତ୍ସୁ ମନୋଭାବ, କୌତୂହଳ ପ୍ରବଣତା ଓ ସ୍ୱାଧୀନ ଚିନ୍ତାକୁ ଯଦି ପରିବାର, ସାମାଜିକ ପରିବେଶ ଓ ଧାର୍ମିକ ଆବେଗ ନଷ୍ଟ କରିଦିଏ ବା ପ୍ରତିବନ୍ଧକ ହୁଏ ତାହାର ପରିଣତି ସ୍ୱରୂପ ମାନସିକ ଦାସତ୍ୱ ଆସିଥାଏ । ଅଜ୍ଞତା, କୁସଂସ୍କାର ଓ ଅପବିଶ୍ୱାସ ଯଦି ଜୀବନବୋଧକୁ କବଳିତ କରେ ତାହା ସୂକ୍ଷ୍ମ ସ୍ତରରେ ଯେଉଁ ଦାସତ୍ୱର ବେଡି ପିନ୍ଧାଏ, ସେଥିରୁ ମୁକ୍ତି ପାଇବା ଦ୍ୱାରା ଏକ ବଡ ସଫଳତା ମିଳିଥାଏ । ବିଚାରଶୀଳତାକୁ ପରିହାର କରି ଯେଉଁଠି ଆବେଗ ଓ ଅଜ୍ଞତା ବ୍ୟକ୍ତି ବା ଗୋଷ୍ଠୀଜୀବନକୁ ନିୟନ୍ତ୍ରଣ ଓ ପରିଚାଳିତ କରେ ତାହା ବୌଦ୍ଧିକ ସ୍ଥାଣୁତ୍ୱ ସୃଷ୍ଟି କରିଥାଏ । ଏହି ବୌଦ୍ଧିକ ସ୍ଥାଣୁତ୍ୱ ପାଇଁ ଏକ ଜାତି ବା ଦେଶର ଜନଗଣଙ୍କୁ ବହୁ ମୂଲ୍ୟ ଦେବାକୁ ହୁଏ । ସ୍ୱାଧୀନ ଭାବରେ ଚିନ୍ତାକରିବା, ଯୁକ୍ତିଶୀଳ ହେବା ଓ ବିଜ୍ଞାନ ମନସ୍କ ହେବାଦ୍ୱାରା ଯେ ଜ୍ଞାନବିଜ୍ଞାନ, ସଭ୍ୟତା, ସଭ୍ୟ ମୂଲ୍ୟବୋଧର ବିକାଶ ହୁଏ ଏହା ଏକ ଐତିହାସିକ ଉପଲବ୍ଧି । ଏହାର ଅଭାବରେ ସମାଜ କ୍ଷୟଶୀଳ ହୁଏ ଓ ସାଂସ୍କୃତିକ ଅବକ୍ଷୟ ବୃଦ୍ଧି ପାଏ । ବିଚାରଶୀଳ ହେବାଦ୍ୱାରା ବ୍ୟକ୍ତିର ବୌଦ୍ଧିକ ଦିଗନ୍ତ ବିସ୍ତାରିତ ହେବା ସହ ମାନବିକ ମୂଲ୍ୟବୋଧର ମଧ୍ୟ ବିସ୍ତାର ହୋଇଥାଏ । ଉଦାରବାଦୀ ହେବା, ସହିଷ୍ଣୁ ହେବା, ସମ୍ବେଦନଶୀଳ ହେବା ଓ ସୃଜନଶୀଳ ହେବା ଜୀବନକୁ ଯେ କେବଳ ଅର୍ଥପୂର୍ଣ୍ଣ କରେ ତାହା ନୁହଁ ଏହା ଜୀବନର ଗୁଣାତ୍ମକ ମାନରେ ମଧ୍ୟ ପରିବର୍ତ୍ତନ ଆଣିଥାଏ । ଏହା ସତ୍ୟ ଯେ ମଣିଷ ଭିତରେ ସ୍ୱାର୍ଥପରତା, ଆତ୍ମକୈନ୍ଦ୍ରିକତା ଯେପରି ରହିଛି ସେହିପରି ତାର ବିପରୀତ ପ୍ରବୃତ୍ତି ମଧ୍ୟ ରହିଛି । ଭୂମିଟି ଅନୁକୂଳ ହେଲେ ଏକ ଚାରା ଯେପରି ସୁନ୍ଦର ଭାବରେ ବୃଦ୍ଧି ପାଏ ଠିକ୍ ସେହିପରି ସାମାଜିକ ପରିବେଶ ଓ ପାରିବାରିକ ସ୍ଥିତି ଉନ୍ନତ

ହେଲେ ବ୍ୟକ୍ତିତ୍ୱର ବିକାଶ ଭଲ ଦିଗରେ ପ୍ରଭାବିତ ହୋଇଥାଏ। ସକଳ ସଂକୀର୍ଣ୍ଣତା, ସାମ୍ପ୍ରଦାୟିକତା ଓ ବିଦ୍ୱେଷର ଊର୍ଦ୍ଧ୍ୱକୁ ଯାଇ ଏକ ସାର୍ବଜନୀନ ଓ ଭ୍ରାତୃତ୍ୱପୂର୍ଣ୍ଣ ଦୃଷ୍ଟିକୋଣର ବିକାଶ କରାଇବା ଏ ଯୁଗର ସବୁଠାରୁ ବଡ ମୁକ୍ତିଚେତନା କହିଲେ ଅତ୍ୟୁକ୍ତି ହେବ ନାହିଁ। ନାନା ଭୌଗୋଳିକ ଓ ସାମାଜିକ କାରଣରୁ ମଣିଷ ମଣିଷ ଭିତରେ ନାନା ପ୍ରାଚୀର ଛିଡା ହୋଇଛି। ମଣିଷ ସମାଜକୁ ଏକତ୍ୱର ଦୃଷ୍ଟିରେ ଦେଖିବା ଓ ଏକ ମହାମାନବୀୟ ଚେତନାର ବିକାଶ କରାଇବା ହେବ ଏକବିଂଶ ଶତାବ୍ଦୀର ମୁକ୍ତିଚେତନା। ଏହି ମୁକ୍ତିଚେତନାର ଆଧାର ହେବ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନବୋଧ। ବିଶ୍ୱ ଏକ ପରିବାର ଏହା କେବଳ କିଛି ମାନବବାଦୀ ହେତୁବାଦୀଙ୍କର ସ୍ୱପ୍ନ ହେବ ନାହିଁ, ଏହା ହେବ ଏକ ବାସ୍ତବ ଜୀବନଦର୍ଶନ। ଏହି ଜୀବନଦର୍ଶନର ବିକାଶଦ୍ୱାରା ସଭ୍ୟତାର ନୈତିକ ଉତ୍ତରଣ ସମ୍ଭବ ହେବ। ଏହା ହିଁ ହେବ ଆଗାମୀ ଦିନରେ ମୁକ୍ତିର ପରିଭାଷା।

(ପ୍ରଗତିବାଦୀ, ୧୭.୦୮.୨୦୧୭)

# ବ୍ୟକ୍ତିଚେତନା : ଏକ ମାନବିକ ଦିଗନ୍ତ

ପ୍ରତ୍ୟେକ ମଣିଷ ଜଣେ ବ୍ୟକ୍ତି, ତାହାର ଏକ ବ୍ୟକ୍ତି-ସତ୍ତା ରହିଛି । ବ୍ୟକ୍ତି-ସତ୍ତା ସହ ତାହାର ମଧ୍ୟ ଏକ ସାମାଜିକ-ସତ୍ତା ରହିଛି । ଏହି ସାମାଜିକ ସତ୍ତାଟି ପ୍ରସାରିତ ହୋଇଛି ପରିବାର, ପଡାଠାରୁ ରାଷ୍ଟ୍ର ଓ ଅନ୍ତଃରାଷ୍ଟ୍ରୀୟ ସ୍ତରକୁ । ବ୍ୟକ୍ତିସତ୍ତାଟି ଯଦି ଅତ୍ୟନ୍ତ ସଙ୍କୁଚିତ ହୋଇଯାଏ ତେବେ ବ୍ୟକ୍ତି ସ୍ୱାର୍ଥପର ହୁଏ । ବ୍ୟକ୍ତିସତ୍ତାଟି ଯେତେ ପ୍ରସାରିତ ହୁଏ ଓ ଅନ୍ୟ ପ୍ରତି ସଂପୃକ୍ତି ରଖେ ତାହା ସହାନୁଭୂତିଶୀଳତାରେ ରୂପାନ୍ତରିତ ହୁଏ । ସ୍ୱାର୍ଥପରତା ଓ ସହାନୁଭୂତିଶୀଳତା ଦୁଇଟି ପୃଥକ୍ ଦୃଷ୍ଟିଭଙ୍ଗୀ । ତେବେ ପ୍ରତ୍ୟେକ ବ୍ୟକ୍ତି ଭିତରେ ସ୍ୱାର୍ଥପରତା ରହିପାରେ, ସହାନୁଭୂତିଶୀଳତା ବି ରହିପାରେ । ଯେଉଁ କ୍ଷେତ୍ରରେ ସ୍ୱାର୍ଥପରତା ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଅଧିକ ପ୍ରାଧାନ୍ୟ ନିଏ ଓ ସବୁ କ୍ଷେତ୍ରରେ ଯଦି ଏହା ହିଁ ଜୀବନବୋଧର ମାପକାଠି ହୁଏ ବ୍ୟକ୍ତିର ସାମାଜିକ-ସତ୍ତାଟି ସଙ୍କୁଚିତ ହୋଇଯାଏ । ଅପର ପକ୍ଷରେ ଯେଉଁଠି ସାମାଜିକ ସଂପୃକ୍ତି ବ୍ୟକ୍ତିସ୍ୱାର୍ଥକୁ ଅତିକ୍ରମ କରିଯାଏ ତାହା ଜୀବନର ନୈତିକ ଉତ୍ତରଣ ଘଟାଏ । ଯଦି ପ୍ରତ୍ୟେକ କ୍ଷେତ୍ରରେ ବ୍ୟକ୍ତି ତ୍ୟାଗର ମନୋଭାବ ରଖେ ଓ ସେହି ଆଦର୍ଶବୋଧକୁ ସକଳ ସ୍ଥିତିରେ ଜୀବନବୋଧର ମର୍ମକରେ ତେବେ ତାହାର ଯେ ଉତ୍ତରଣ ହୋଇଛି ଏହା କୁହାଯାଇପାରେ ।

ସଭ୍ୟତାର କ୍ରମବିକାଶ ସହ ବ୍ୟକ୍ତିର ଦାୟିତ୍ୱବୋଧ ବୃହତ୍ତର ସାମାଜିକ ସ୍ତରକୁ ପ୍ରସାରିତ ହୋଇଚାଲିଛି । ଗୋଟିଏ ସ୍ଥିତିରେ ମଣିଷର ସାମାଜିକ ସମ୍ବନ୍ଧ ଅତି ସଙ୍କୁଚିତ ହୋଇ ରହିଥିଲା । ନିଜ ପରିବାର, ଗ୍ରାମ ବା ନିଜ ସାମାଜିକ ପରିଚୟ ବହନ କରୁଥିବା ଏକ ଗୋଷ୍ଠୀ ପ୍ରତି ବ୍ୟକ୍ତିର ନୈତିକ କର୍ତ୍ତବ୍ୟକୁ ପ୍ରାଧାନ୍ୟ ଦିଆଯାଉଥିଲା । ଆସ୍ତେ ଆସ୍ତେ ସାମାଜିକ ପରିବେଶ ଓ ସମ୍ବନ୍ଧ ବିସ୍ତାରିତ ହୋଇଚାଲିଲା । ବୃତ୍ତି, ଭାଷା, ଧର୍ମ, ଜାତୀୟତା ଇତ୍ୟାଦି ବ୍ୟକ୍ତି ପାଇଁ ନୂଆ ନୂଆ ପରିଚୟ ସୃଷ୍ଟି କଲା । ଏହି ପରିଚୟ ମଧ୍ୟ ଦେଇ ବ୍ୟକ୍ତିର କର୍ତ୍ତବ୍ୟ ମଧ୍ୟ ପ୍ରସାରିତ ହେବାକୁ ଲାଗିଲା । ବ୍ୟକ୍ତି ସବୁଥିରେ ମୂଳ ହେଲେ ବି ବ୍ୟକ୍ତିର ପରିଚୟଟି ସାମାଜିକ ଅସ୍ମିତା ପାଖରେ ନ୍ୟୂନ ହୋଇଗଲା ।

କାଳକ୍ରମେ ଜ୍ଞାନବିଜ୍ଞାନର ବିକାଶ ତ୍ୱରାନ୍ୱିତ ହେଲା । ନୂଆ ନୂଆ ପ୍ରଯୁକ୍ତି ମଣିଷକୁ ଅଧିକରୁ ଅଧିକ ଶକ୍ତିଶାଳୀ କରିଚାଲିଲା । କେତେ କେତେ ଜ୍ଞାନକୌଶଳ ଓ ସାଧନମାନ

ଜୀବନଯାତ୍ରାକୁ ସୁଖକର ପରିବେଶ ଆଣିଦେଲା। ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଅଭୂତପୂର୍ବ ସଫଳତା ଜୀବନକୁ ଯନ୍ତ୍ରଣାରହିତ କରିବା ସହ ଆୟୁଷକୁ ବୃଦ୍ଧି କରିବାରେ ସହାୟକ ହେଲା। କୌଣସି ଭାଗ୍ୟ, ଅଦୃଷ୍ଟ ଆମ ଜୀବନକୁ ନିୟନ୍ତ୍ରଣ କରୁ ନାହିଁ, ବରଂ ଆମର ସାମାଜିକ ପରିବେଶ, ଆର୍ଥିକ ସଂପନ୍ନତା, ପୁଷ୍ଟିକର ଖାଦ୍ୟ, ସୁସ୍ଥ ମନ ଇତ୍ୟାଦି ଆମ ଜୀବନ ଅବଧିକୁ ପ୍ରଭାବିତ କରୁଛି। ତେବେ ଭୌତିକ ସଂପନ୍ନତା ସତ୍ତ୍ୱେ ସମାଜରେ ତୀବ୍ର ପ୍ରତିଯୋଗିତା, ନାନା କାରଣ ଜନିତ ମାନସିକ ଉତ୍ତେଜନା ଓ ବ୍ୟକ୍ତି-କୈନ୍ଦ୍ରିକତା ବୃଦ୍ଧି ପାଇବା ଏକ ବିଡମ୍ବନା ନିଶ୍ଚୟ। ବ୍ୟକ୍ତିର ସାମାଜିକ ସମ୍ବନ୍ଧ ଯେତେ ପ୍ରସାରିତ ହୋଇଚାଲିଛି, ସାମାଜିକ ସମ୍ବେଦନଶୀଳତା ସଙ୍କୁଚିତ ହେଉଛି କି ? ଜ୍ଞାନର ଯେଉଁ ଅନୁପାତରେ ବିକାଶ ହେଉଛି, ଆଧୁନିକ ପ୍ରଯୁକ୍ତି ଜୀବନ ପାଇଁ ଯେତେ ଯେତେ ସୁଖକର ସାଧନ ଯୋଗାଇପାରୁଛି ସେହି ଧାରାରେ ଆମର ସାମାଜିକ ସମ୍ବେଦନ ବୃଦ୍ଧି ପାଉଛି ନା ସ୍ୱାର୍ଥପରତା ବୃଦ୍ଧି ପାଉଛି ? ଏହି ପୃଷ୍ଠଭୂମିରେ କେତେ କେତେ ନୈତିକ ଓ ମାନବିକ ସମସ୍ୟା ଦୃଷ୍ଟିକୁ ଆସୁଛି।

ଅତୀତରେ ସାମାଜିକ ସମ୍ବନ୍ଧ ଓ ଦାୟିତ୍ୱବୋଧ ସଙ୍କୁଚିତ ହୋଇ ରହିଥିଲା। ସମୟର ପରିବର୍ତ୍ତନ ସହ ସାମାଜିକ ସମ୍ବନ୍ଧ ବେଶ୍ ଜଟିଳ ହୋଇଚାଲିଛି। ସମ୍ବନ୍ଧ ଯେତିକି ଜଟିଳ ହୋଇଚାଲିଛି ବ୍ୟକ୍ତିର ନୈତିକ ଦ୍ୱନ୍ଦ୍ୱ ସେତିକି ଜଟିଳ ହେଉଛି। ସାଂପ୍ରତିକ ପରିବେଶରେ ନିଜର କର୍ମକ୍ଷେତ୍ରର ପରିସର ଏତେ ପ୍ରତିଯୋଗିତାମୂଳକ ହେଉଛି ଯେ ଅନେକ ବ୍ୟକ୍ତି କେତେକ ପାରିବାରିକ ଦାୟିତ୍ୱ ବି ନିଷ୍ଠାର ସହ ପାଳନ କରିବା ସମ୍ଭବ ହେଉ ନାହିଁ। ଧୀରେ ଧୀରେ ପାରିବାରିକ ବନ୍ଧନ ଶିଥିଳ ହୋଇଯାଉଛି। ନିଜର ବୃତ୍ତି, ପ୍ରମୋସନ, ଉପାର୍ଜନ, ନିଯୋକ୍ତା ପ୍ରତି ଆନୁଗତ୍ୟ ଭିତରେ ଜୀବନ ଏପରି ଭାରାକ୍ରାନ୍ତ ହୋଇଉଠୁଛି ଯାହାଦ୍ୱାରା ସୂକ୍ଷ୍ମ ଆବେଗ ଓ ପାରିବାରିକ କର୍ତ୍ତବ୍ୟ ବାଧାପ୍ରାପ୍ତ ହେଉଛି। ସଂପନ୍ନତା, ପ୍ରାଚୁର୍ଯ୍ୟ ସତ୍ତ୍ୱେ ଜୀବନର ମହତ୍ତର ଆବେଗମାନ ଗଭୀର ଭାବରେ ବାଧାପ୍ରାପ୍ତ ହେବାରେ ଲାଗିଛି। ଜୀବନ ଅଧିକରୁ ଅଧିକ ଯାନ୍ତ୍ରିକ ହୋଇଉଠୁଛି ଓ କଳାତ୍ମକ ସୃଜନଶୀଳତା ହ୍ରାସ ପାଇବାରେ ଲାଗିଛି। ଆଧୁନିକ ଜୀବନ ପ୍ରବାହରୁ ଏହିପରି ଆହ୍ୱାନମାନ ବ୍ୟକ୍ତିକୁ ସାମ୍ନା କରିବାକୁ ହେଉଛି।

ବୃତ୍ତିଗତ କର୍ତ୍ତବ୍ୟ ଓ ମାନବିକତାବୋଧ ଭିତରେ ସମନ୍ୱୟ ରହିପାରେ; ଦ୍ୱନ୍ଦ୍ୱ ବି ରହିପାରେ। ବୃତ୍ତିଗତ କର୍ତ୍ତବ୍ୟ ଯଦି ବ୍ୟକ୍ତିଚେତନାକୁ ଶୃଙ୍ଖଳିତ, ମାନବିକ ଓ ସମ୍ବେଦନଶୀଳ କରୁଥାଏ ତାହା ସ୍ୱାଗତଯୋଗ୍ୟ। କିନ୍ତୁ ଯେଉଁ କ୍ଷେତ୍ରରେ ଦ୍ୱନ୍ଦ୍ୱ ଆସୁଥାଏ ତାହା ଜୀବନ ପାଇଁ

ବଡ ଆହ୍ୱାନ ଆଣେ। ଏହି ଦ୍ୱନ୍ଦ୍ୱ କିପରି ତୀବ୍ର ହୋଇପାରେ ତାହାର ଗୋଟିଏ ଦୁଇଟି ଉଦାହରଣର ଅବତାରଣା କରାଯାଇପାରେ। କ୍ୟାପଟେନ୍ ପାଓ୍ୱାରସ ଥିଲେ ଆମେରିକା ବିମାନବାହିନୀର ପଦସ୍ଥ କର୍ମଚାରୀ। ଜାପାନର ହିରୋସିମା ସହର ଉପରେ ଆଣବିକ ବୋମା ନିକ୍ଷେପ କରିବାକୁ ତାଙ୍କୁ ବିଭାଗୀୟ ନିର୍ଦ୍ଦେଶ ଦିଆଗଲା। ଜଣେ କର୍ତ୍ତବ୍ୟରତ ଓ ଶୃଙ୍ଖଳିତ କର୍ମଚାରୀ ଭାବେ ସେ ସେହି ନିର୍ଦ୍ଦେଶ ପାଳନକରି ହିରୋସିମା ସହର ଉପରେ ଆଣବିକ ବୋମା ନିକ୍ଷେପ କଲେ। ପରିଣତି ହେଲା ଲକ୍ଷାଧିକ ନିରୀହ ଜନଗଣ ମୃତ୍ୟୁମୁଖରେ ପଡିଲେ। ପରବର୍ତ୍ତୀ ପର୍ଯ୍ୟାୟରେ ପାଓ୍ୱାରସ ନିଜର ଏହି କାର୍ଯ୍ୟ ପାଇଁ ଗଭୀର ଅନୁତପ୍ତ ହେଲେ ଓ ଏହିପରି ଏକ ଧ୍ୱଂସର ନାୟକ ହୋଇଥିବାରୁ ତାଙ୍କର ମନୁଷ୍ୟତ୍ୱ ବିଦ୍ରୋହ କରିଉଠିଲା। ଏକବିଂଶ ଶତାବ୍ଦୀରେ ପୃଥିବୀର ଅଧିକାଂଶ ଦେଶ ଆଣବିକ ଶକ୍ତିସଂପନ୍ନ ହେବାକୁ ପରସ୍ପର ଭିତରେ ପ୍ରତିଯୋଗିତା କରିଚାଲିଛନ୍ତି। ଯେଉଁ ଦେଶ ଆଣବିକ ପରୀକ୍ଷଣଦ୍ୱାରା ସଫଳତା ହାସଲ କରୁଛି ତାହାଦ୍ୱାରା ସେ ଦେଶର ଜନଗଣ ଉଲ୍ଲସିତ ହେଉଛନ୍ତି। ଦେଶାତ୍ମବୋଧ ଓ ମାନବିକତାବୋଧ ଭିତରେ କେଉଁ ମୂଲ୍ୟବୋଧର ପ୍ରାସଙ୍ଗିକତା ଅଧିକ ?

ଆମେରିକାରେ ଯେତେବେଳେ ଦାସତ୍ୱ ପ୍ରଥାର ବିଲୋପ ପାଇଁ ଆବ୍ରାହମ ଲିଙ୍କନ(୧୮୦୯-୧୮୬୫) ଦୃଢ ପଦକ୍ଷେପ ନେଲେ ଆମେରିକାରେ ଗୃହଯୁଦ୍ଧର ପରିବେଶ ଆସିଲା। ପରିସ୍ଥିତି ଯାହା ହେଲେ ମଧ୍ୟ ଲିଙ୍କନ ଦୃଢ ରହିଲେ। ସମାଜର ଅଧା ମଣିଷ ମୁକ୍ତ ଓ ଅଧା ମଣିଷ ଦାସ ହୋଇରହିବା ସମାଜର ନୈତିକ ବିକାଶର ସବୁଠାରୁ ବଡ ପ୍ରତିବନ୍ଧକ ବୋଲି ଲିଙ୍କନ ମତଦେଲେ। ଦେଶ ଭାଗ ଭାଗ ହୋଇଯାଇପାରେ, କିନ୍ତୁ ଏକ ଅମାନବିକ ପ୍ରଥା ବିଲୋପ ହେବା ଆବଶ୍ୟକ ବୋଲି ସେ ଯେଉଁ ନିଷ୍ପତ୍ତି ନେଇଥିଲେ ତାହା ଥିଲା ବିବେକର ଆହ୍ୱାନ। ଏଥିପାଇଁ ଲିଙ୍କନ ଆତତାୟୀର ଗୁଳିରେ ଶହୀଦ ହେଲେ କିନ୍ତୁ ମାନବିକତାର ବିଜୟ ହେଲା। ଭାରତବର୍ଷରୁ ଜାତିପ୍ରଥାର ବିଲୋପ ପାଇଁ କିଛି ମାନବଦରଦୀ ବ୍ୟକ୍ତି ସ୍ୱପ୍ନ ଦେଖି ଆସିଛନ୍ତି ତଥାପି ଭାରତୀୟ ମାନସରୁ ଏହି ଭେଦଭାବର ଅନ୍ତ ଘଟିପାରୁ ନାହିଁ। ସାମାଜିକ ପ୍ରଥା, ପରମ୍ପରା ଯେତେ ମାନବିକତାବିରୋଧୀ ହେଲେ ମଧ୍ୟ ତାହାର ବିଲୁପ୍ତି ହୋଇପାରୁ ନାହିଁ।

ବ୍ୟକ୍ତିର ସାମାଜିକ ଚେତନା ଯେତେ ଅଧିକରୁ ଅଧିକ ମାନବିକ ହୁଏ ତାହା ଜୀବନର ଗୁଣାତ୍ମକ ମାନବୃଦ୍ଧିରେ ସହାୟକ ହୋଇଥାଏ। ମାନବିକ ସମ୍ବେଦନଶୀଳତା ହିଁ ଉନ୍ନତ

ଜୀବନବୋଧର ସର୍ବଶ୍ରେଷ୍ଠ ମାପକାଠି । କିନ୍ତୁ ଏହା ବିଡମ୍ବନା ଯେ ଗୋଷ୍ଠୀରେ, ସମାଜରେ ଓ ବୃହତ୍ତର ପରିବେଶରେ ନାନା ଭେଦଭାବ ରହିଆସିଛି । ସେହି ଭେଦଭାବ ଜନ୍ମ ଦେଇଛି ନାନା ହିଂସା, ପ୍ରତିହିଂସା ଓ ଅସହିଷ୍ଣୁତାକୁ । ବୈଷମ୍ୟ, ଭେଦଭାବ, ଶୋଷଣ ଇତ୍ୟାଦି ନାନା ଅନୈତିକ ବ୍ୟବସ୍ଥାକୁ ଦୃଢ କରିବା ପାଇଁ ନାନା ସାମାଜିକ ଅସ୍ମିତା ଓ ପରମ୍ପରାକୁ ଆଧାର କରାଯାଉଛି । ବ୍ୟକ୍ତି-ସତ୍ତାଟି ସମାଜିକ-ସତ୍ତା ଭିତରେ ନିଜର ସ୍ଥିତିକୁ ହରାଇବା ଓ ସାମାଜିକ ବ୍ୟବସ୍ଥାକୁ ଅଲଘନୀୟ ମନେକରିବା ଯଥାର୍ଥ ମନେହୁଏ ନାହିଁ । ବ୍ୟକ୍ତି ସତ୍ତାଟି ଯେତେ ଅଧିକରୁ ଅଧିକ ମାନବିକ ଭାବଧାରାରେ ପ୍ରଭାବିତ ହେବ, ଜୀବନର ଗୁଣାତ୍ମକ ମାନ ଯେ ସେତେ ବିକଶିତ ହେବ ଏହା ହିଁ ସଭ୍ୟ ଜୀବନଦୃଷ୍ଟି । ତେବେ ସ୍ୱାର୍ଥପରତା ଏକ ମାନବିକ ପ୍ରବୃତ୍ତି ଓ ଦୁର୍ବଳତା । ସେହି ପ୍ରବୃତ୍ତିରୁ ଆମ ସଂସାରରେ କେତେ କେତେ ଅସହିଷ୍ଣୁତା, ଅମାନବିକତା, ମନୁଷ୍ୟକୃତ ବିଭୀଷିକା, ହିଂସା, ଶୋଷଣ ରହିଆସିଛି । ସଭ୍ୟତା ଯେତେ ଅଗ୍ରଗତି କଲେ ମଧ୍ୟ ଏହି ସବୁ ସଙ୍କଟ ସମାଜରୁ ବିଲୋପ ହୋଇପାରୁ ନାହିଁ । ମାନବିକ ସମ୍ବେଦନଶୀଳତାର ଯେଉଁ ସୂକ୍ଷ୍ମ ଅନୁଭବ କିଛି ବ୍ୟକ୍ତି ସଭ୍ୟତାର ଇତିହାସରେ ପ୍ରକାଶ କରିଆସିଛନ୍ତି ସେହିମାନେ ଯେ ବିଶ୍ୱ-ବିବେକର ପ୍ରତୀକ ଏହା ନିଃସନ୍ଦେହ ମନେହୁଏ ।

(ପ୍ରଗତିବାଦୀ, ୨୩.୦୮.୨୦୧୭)

# ସୃଜନଶୀଳତାର ମାନବିକ ଦିଗନ୍ତ

ମଣିଷ ସୃଜନଶୀଳ। ଏହି ସୃଜନଶୀଳତା ଯୋଗୁ ସେ ବିକାଶର ଧାରାରେ ସର୍ବଦା ଅଗ୍ରଗତି କରିଚାଲିଛି। ଏକ ଆଦିମ ସ୍ଥିତିରୁ ଆଜିର ଅତ୍ୟାଧୁନିକ ଜୀବନଶୈଳୀ ହାସଲ ପଶ୍ଚାତରେ ରହିଛି ଆମର ସୃଜନଶୀଳ ସାମର୍ଥ୍ୟ। ଅତୀତରେ ମଣିଷର ସୃଜନଶୀଳତା ବିଭିନ୍ନ କଳାକୃତି, ଭାସ୍କର୍ଯ୍ୟ, ନାନା ପୌରାଣିକ ଉପାଖ୍ୟାନ, ରଚନା ଇତ୍ୟାଦିରେ ପ୍ରତିଫଳିତ ହେଉଥିଲା। ଅବଶ୍ୟ ମାନବିକ ସୃଜନଶୀଳତାର ଦିଗନ୍ତ ବହୁ ବିସ୍ତାରିତ। ଭାଷା ମାଧ୍ୟମରେ ଭାବ ବିନିମୟ କରିବାର ସାମର୍ଥ୍ୟ, ବିଚାର ବୁଦ୍ଧି ପ୍ରୟୋଗ କରିବାର ଦକ୍ଷତା ଓ ପରିବେଶରେ ଉପଲବ୍ଧ ହେଉଥିବା ବସ୍ତୁ ସକଳକୁ ନେଇ ଆବଶ୍ୟକୀୟ ପଦାର୍ଥ ନିର୍ମାଣ କରିବାର କୌଶଳ ମଣିଷର ସହଜାତ। ତେବେ ମଣିଷ ସ୍ୱଭାବର ଅନ୍ୟ ଏକ ଲକ୍ଷଣ ହେଉଛି ଯେ ଗୋଟିଏ ସମୟରେ ମଣିଷ ଯେଉଁ ଜ୍ଞାନ ଓ ଦକ୍ଷତା ହାସଲ କରିଛି ତାହା ପିଢି ପରେ ପିଢି ଉନ୍ନତ ହୋଇଚାଲିଛି। ମଣିଷ ଯେବେଠାରୁ କୃଷିକରି ଶିଖିଲା ସେଥିରେ କେତେ କେତେ ଉନ୍ନତିକରି ଚାଲିଲା। ଯେବେଠାରୁ ଲୁଗା ପିନ୍ଧିବା ଶିଖିଲା, ମାଟିତଳୁ ଜଳ ବାହାର କରିବାର ଜ୍ଞାନ ହାସଲ କଲା, ଭାଷାକୁ ଲିପି ମାଧ୍ୟମରେ ଲେଖିବାକୁ ଉଦ୍ୟମ କଲା, ନିଜର ଖରା ବର୍ଷା ଓ ବନ୍ୟଜନ୍ତୁଙ୍କ ଆକ୍ରମଣରୁ ରକ୍ଷାକରିବା ପାଇଁ ଉଦ୍ୟମ କଲା ସେସବୁଥିରେ ଦିନକୁ ଦିନ ଉନ୍ନତି କରିଚାଲିଲା। ଝାଟିମାଟିର କୁଡିଆରୁ ସେ ବହୁତଳ ପ୍ରାସାଦ ନିର୍ମାଣ କରିବାର କୌଶଳ ହାସଲ କରିଛି। ନିଆଁର ବ୍ୟବହାରଠାରୁ ଆରମ୍ଭ ହୋଇଥିବା ଯାତ୍ରା ଆଜିର ଇଲେକ୍‌ଟ୍ରୋନିକ୍ ଯୁଗରେ ପହଞ୍ଚି ପାରିଛି। ହାତୀ ଓ ଘୋଡାକୁ ପୋଷାମନାଇ ସେମାନଙ୍କ ପିଠିରେ ବସି ଦୂର ସ୍ଥାନକୁ ଯାଉଥିବା ମଣିଷ ସଂପ୍ରତି ମହାକାଶ ଯାତ୍ରାରେ ସଫଳତା ହାସଲ କରିପାରିଛି। ଏହିପରି ବହୁ କ୍ଷେତ୍ରରେ ଏକ ଆଦିମ ସ୍ଥିତିରୁ ସେ ଆଜିର ଅତ୍ୟାଧୁନିକ ଯୁଗରେ ପହଞ୍ଚିବାରେ ସମର୍ଥ ହୋଇଛି।

ଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ସଭ୍ୟତାର ଯେପରି ଅଗ୍ରଗତି ଘଟିଛି, କେତେକ ସାଂସ୍କୃତିକ ଭାବନା ଓ ମୂଲ୍ୟବୋଧ କ୍ଷେତ୍ରରେ ସଭ୍ୟତାର ମଧ୍ୟ ଅଗ୍ରଗତି ଘଟିଛି। ବିଜ୍ଞାନ ଓ ପ୍ରଯୁକ୍ତି ମଣିଷର ସୃଜନ ସାମର୍ଥ୍ୟକୁ ଯେପରି ନାନା ଦିଗରେ ବିକଶିତ କରାଇଛି ସେହିପରି ମାନବୀୟ ଚିନ୍ତା ଚେତନା କ୍ଷେତ୍ରରେ ମଧ୍ୟ ବହୁ ପରିବର୍ତ୍ତନ ଆସିପାରିଛି। ଅତୀତରେ ପାଠ ପଢିବାର

ପରିବେଶ ସମସ୍ତଙ୍କ ପାଇଁ ନ ଥିଲା। ସମାଜର ସାମନ୍ତବର୍ଗ ଓ ଶାସକଗୋଷ୍ଠୀ ହିଁ କେବଳ ବିଦ୍ୟା ଶିକ୍ଷାକରିବାର ସୁଯୋଗ ପାଉଥିଲେ। ସମାଜର ଅଗଣିତ ମଣିଷଙ୍କ ପାଖରେ ଶିକ୍ଷାର ଆଲୋକ ପହଞ୍ଚି ପାରୁନଥିଲା। ସେହିପରି ବ୍ୟକ୍ତିର ନୈତିକବୋଧ ଏକ କ୍ଷୁଦ୍ର ଗୋଷ୍ଠୀଭିତରେ ସୀମାବଦ୍ଧ ହୋଇ ରହିଥିଲା। ନିଜର ପରିବାର ବା ଏକ କ୍ଷୁଦ୍ର ଗୋଷ୍ଠୀ ଭିତରେ ବ୍ୟକ୍ତିର କର୍ତ୍ତବ୍ୟ ସଙ୍କୁଚିତ ହୋଇରହିବା ଯୁଗର ଆଦର୍ଶ ହୋଇ ରହିଥିଲା। ମୁଷ୍ଟିମେୟ ଲୋକଙ୍କ ହାତରେ ଅର୍ଥ ଓ କ୍ଷମତା କେନ୍ଦ୍ରିଭୂତ ଥିଲା ଓ ସାଧାରଣ ମଣିଷର ଜୀବନର ମୂଲ୍ୟ ନ ଥିଲା। ପୁନଶ୍ଚ ସମାଜରେ ନାନା ପ୍ରକାରର ଶୋଷଣ ଓ ଭେଦଭାବ ରହିଥିଲା ଓ ସେସବୁ ଯେ ଈଶ୍ୱର-ସୃଷ୍ଟ ଏହି ବିଶ୍ୱାସ ମଧ ସମାଜରେ ପରିବ୍ୟାପ୍ତ ଥିଲା।

ତେବେ ଧୀରେ ଧୀରେ ନାନା ମାନବବାଦୀ ଆଦର୍ଶ ଓ ମୂଲ୍ୟବୋଧ ସମାଜରେ ସୃଷ୍ଟି ହେଲା। ଏକଛତ୍ରବାଦ, ରାଜତନ୍ତ୍ର, ସାମନ୍ତବାଦ ଓ ସାମାଜିକ ବୈଷମ୍ୟ ବିରୁଦ୍ଧରେ ବିଚାରମାନ ସୃଷ୍ଟି ହେଲା। ରାଜନୈତିକ ଦୃଶ୍ୟପଟରେ ଗଣତାନ୍ତ୍ରିକ ବ୍ୟବସ୍ଥା ଏକ କ୍ରାନ୍ତିକାରୀ ପରିବର୍ତ୍ତନର ସୂତ୍ରପାତ କରାଇଲା। ସମତା, ସ୍ୱାଧୀନତା, ଭେଦଭାବରହିତ ଭ୍ରାତୃତ୍ୱବୋଧ ମୂଲ୍ୟଚୟମାନ ସାମୂହିକ ଜୀବନରେ ନୂଆ ନୂଆ କ୍ରାନ୍ତିର ପରିବେଶ ସୃଷ୍ଟି କଲେ। ଶିକ୍ଷା ସାର୍ବଜନୀନ ହେବାକୁ ଲାଗିଲା ଓ ଶିକ୍ଷାର ଦିଗନ୍ତ ବି ବିସ୍ତାରିତ ହେବାକୁ ଲାଗିଲା। ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ଇତ୍ୟାଦି ନିର୍ବିଶେଷରେ ଶିକ୍ଷାଲାଭ କରିବା ପ୍ରତ୍ୟେକ ଶିଶୁର ପ୍ରାକୃତିକ ଅଧିକାର ବୋଲି ବିଚାର ପ୍ରକାଶ ପାଇଲା। ପ୍ରତ୍ୟେକ ରାଷ୍ଟ୍ର ଏହାର ଜନମଙ୍ଗଳକାରୀ ଆଭିମୁଖ୍ୟକୁ ପ୍ରତ୍ୟେକ ନାଗରିକ ପାଖକୁ ପ୍ରସାର କରିବା ପାଇଁ ଯୋଜନାବଦ୍ଧ ପ୍ରୟାସ କଲେ। ପ୍ରତ୍ୟେକ ରାଷ୍ଟ୍ର ନିରକ୍ଷରତା ଦୂରୀକରଣ ପାଇଁ ଯୋଜନାବଦ୍ଧ ଭାବରେ ପ୍ରୟାସ କଲେ। ସେହିପରି ପ୍ରତ୍ୟେକ ନାଗରିକକୁ ସୁରକ୍ଷା ଯୋଗାଇବା ରାଷ୍ଟ୍ରର ଲକ୍ଷ୍ୟ ହେବାକୁ ଲାଗିଲା। ଏତଦ୍‌ବ୍ୟତୀତ ସ୍ୱାସ୍ଥ୍ୟସେବା ଯେପରି ଆବଶ୍ୟକ ବେଳେ ପ୍ରତ୍ୟେକ ବ୍ୟକ୍ତିପାଖକୁ ପ୍ରସାରିତ ହୋଇପାରିବ ସେଥି ପାଇଁ ରାଷ୍ଟ୍ରୀୟ ସ୍ତରରେ ବିଭିନ୍ନ ଯୋଜନାମାନ ପ୍ରସ୍ତୁତ କରାଗଲା। ଏପରିକି ସମାଜରେ ରହିଥିବା ଦିବ୍ୟାଙ୍ଗମାନେ ଯେପରି ସୁସ୍ଥ ଜୀବନ ସମାଜରେ ନିର୍ବାହ କରିପାରିବେ ସେଥିପାଇଁ ଜାତୀୟ ଜୀବନର ପ୍ରତ୍ୟେକ ସ୍ତରରେ ପ୍ରୟାସ ହେଲା। ଆଇନ ଦୃଷ୍ଟିରେ ସବୁ ନାଗରିକମାନଙ୍କର ମୂଲ୍ୟକୁ ଗ୍ରହଣ କରାଗଲା ଓ ନ୍ୟାୟୋଚିତ ଅଧିକାର ପାଇବା ବ୍ୟକ୍ତିର ପ୍ରାକୃତିକ ଅଧିକାର ହେଲା। ମାନବିକ ଅଧିକାରର ବିଶ୍ୱଘୋଷଣାନାମାରେ ଏକ ଆଦର୍ଶ ମାନବ ସମାଜର ରୂପରେଖ ପ୍ରକାଶ ପାଇଲା। ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦା ଓ ସମ୍ମାନର ସହ ଜୀବନ ଅତିବାହିତ କରିବା ଯେ ତାର ପ୍ରାକୃତିକ ଅଧିକାର ଏହି ଭାବଧାରା ସଭ୍ୟତାର ଇତିହାସରେ ଏକ କ୍ରାନ୍ତିକାରୀ ବିଚାର ଥିଲା। ଜାତିସଂଘର ଏହି

ଘୋଷଣାନାମାକୁ ଯେପରି ପ୍ରତ୍ୟେକ ରାଷ୍ଟ୍ର ସଫଳ ଭାବେ କାର୍ଯ୍ୟକାରୀ କରନ୍ତି ସେଥିପାଇଁ ପ୍ରତ୍ୟେକ ରାଷ୍ଟ୍ରକୁ ନିବେଦନ ରହିଲା। ପୃଥିବୀରୁ ସକଳ ପ୍ରକାରର ମହାମାରୀର ବିଲୋପ ପାଇଁ ଆନ୍ତର୍ଜାତିକ ସ୍ତରରେ ଯେଉଁ ପ୍ରୟାସ ହେଲା ତାହାର ପରିଣାମରୁ କେତେ କେତେ ମହାମାରୀମାନଙ୍କୁ ନିୟନ୍ତ୍ରଣ କରାଯାଇପାରିଲା। ସେହିପରି ଯେଉଁ ଯେଉଁ ସ୍ତରରେ ମାନବ ସମାଜ ପ୍ରତି କୌଣସି ସଙ୍କଟର ସମ୍ଭାବନା ଆସୁଛି ତାହାର ମୁକାବିଲା କରିବା ପାଇଁ ଆନ୍ତର୍ଜାତିକ ସ୍ତରରେ ଗମ୍ଭୀର ସଂପୃକ୍ତି ପ୍ରକାଶ ପାଇବାରେ ଲାଗିଛି। ବିଶେଷକରି ପରିବେଶ ପ୍ରଦୂଷଣ, ଜନସଂଖ୍ୟାର ବିସ୍ଫୋରଣ, ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା, ତୃତୀୟ ବିଶ୍ୱର ଦାରିଦ୍ର୍ୟ, ଆଣବିକ ପ୍ରତିଯୋଗିତା ପରି ସମସ୍ୟାମାନଙ୍କୁ କିପରି ଆନ୍ତର୍ଜାତିକ ସହମତିରେ ସମାଧାନ କରାଯାଇପାରିବ ସେଥିପାଇଁ କେତେ ସଚେତନତା ପ୍ରକାଶ ପାଉଛି। ସଭ୍ୟତାର କ୍ରମବିକାଶ ଧାରାରେ ଏସବୁ ଯେ ମାନବଜାତିର ଏକ ସୁନ୍ଦର ଭବିଷ୍ୟତର ଚିତ୍ର ପ୍ରଦାନ କରୁଛି ଏହା ନିଃସନ୍ଦେହ ମନେହୁଏ।

ଏହା ସହିତ ଅନେକ ମାନବଦରଦୀ ଦାର୍ଶନିକ ଓ ହେତୁବାଦୀ ଚିନ୍ତକ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର କେତେ କେତେ ପରିକଳ୍ପନା ପ୍ରକାଶ କରୁଛନ୍ତି। ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ମଣିଷ ହାତରେ ଅମାପ ଜ୍ଞାନ ଓ ସାଧନ ସୃଷ୍ଟି କରିପାରିଛି। ତେବେ ଏହାକୁ ଯଦି ମନ୍ଦ ଦିଗରେ ବିନିଯୋଗ କରାଯାଏ ମଣିଷର ସ୍ଥିତି ବିପଦ ଓ ସଙ୍କଟର ସମ୍ମୁଖୀନ ହେବ। ମାନବିକ ମୂଲ୍ୟବୋଧ ଓ ଭେଦଭାବରହିତ ସମ୍ବେଦନଶୀଳ ଜୀବନବୋଧର ବିକାଶ ନହେଲେ ମାନବ ସମାଜ ଅଧିକ ଅସୁରକ୍ଷିତ ହୋଇପଡିବ। ଉଗ୍ର ଜାତୀୟତାବୋଧ, ସାମ୍ପ୍ରଦାୟିକ ମନୋଭାବ ଓ ଅସହିଷ୍ଣୁତାର ବିକାଶ ହେଲେ ଆଧୁନିକ ସଭ୍ୟତାର ସକଳ ସମ୍ଭାର ସତ୍ତ୍ୱେ ସନ୍ତ୍ରାସବାଦ ଓ ବର୍ବରତାର ବିକାଶ ହେବ। ଯେତେବେଳେ ମଣିଷ ହାତରେ ଆଣବିକ ଅସ୍ତ୍ର ନିର୍ମାଣର କୌଶଳ ନ ଥିଲା, ସେତେବେଳେ ଦେଶ ଦେଶ ଭିତରେ ବହୁ ଯୁଦ୍ଧର ବାତାବରଣ ରହୁଥିଲା। ସେହିପରି ଅତୀତରେ ବର୍ଣ୍ଣବୈଷମ୍ୟ, ସାମ୍ପ୍ରଦାୟିକ ବିଦ୍ୱେଷ, ଅମାନବିକ ବର୍ବରତାର ବହୁ ଦୁଃଖଦ କାହାଣୀ ଇତିହାସରେ ଘଟିଯାଇଛି। ଅତୀତରେ ଏହି ସବୁ ବର୍ବରତା ଓ ବିକୃତିକୁ ଅତିକ୍ରମ କରି ସଭ୍ୟ ଭାବରେ ବଞ୍ଚିବା ସାଂପ୍ରତିକ ଯୁଗର ଆବଶ୍ୟକତା ମନେହୁଏ। ଆମ ପିତାମହ, ପ୍ରପିତାମହ ଓ କେତେ କେତେ ସୃଜନଶୀଳ ବ୍ୟକ୍ତିଙ୍କର ଅବଦାନ ଯୋଗୁ ଆମେ ଆଜି ଯେଉଁ ଦୁନିଆରେ ଏତେ ସୁଖକର ସ୍ଥିତିରେ ରହିଛେ ତାହାକୁ ଆଗାମୀ ପିଢି ପାଇଁ ଅଧିକ ସୁଖପ୍ରଦ କରିବା ଆମର ଏକ ନୈତିକ ଉତ୍ତରଦାୟିତ୍ୱ। ଅତୀତର କେତେ ପ୍ରୟାସ, ଅଧ୍ୟବସାୟ, ସାଧନା ଓ ମାନବୋଚିତ ବିଚାରରୁ ଯେଉଁ ଜ୍ଞାନ ଓ ସାର୍ବଜନୀନ ମୂଲ୍ୟବୋଧମାନଙ୍କର ବିକାଶ ହୋଇଛି ତାହାକୁ ଉନ୍ନତ କରିବା ପାଇଁ ପ୍ରୟାସ ହେଲେ ପୃଥିବୀ ସ୍ୱର୍ଗରାଜ୍ୟରେ ରୂପାନ୍ତରିତ ହୋଇପାରିବ। ଏହି କ୍ଷେତ୍ରରେ

ଦୁଇଟି ନିର୍ଣ୍ଣାୟକ ଆଦର୍ଶ ହେଉଛି ବିଚାରଶୀଳତା ଓ ମାନବିକ ସମ୍ବେଦନଶୀଳତା । ଅତୀତରେ କେତେ କେତେ ଉଦ୍‌ବେଳନମାନ ସଭ୍ୟତାର ଇତିହାସରେ ଘଟିଯାଇଛି । ସକଳ ଆହ୍ୱାନ, ସଙ୍କଟ, ଅଜ୍ଞତା ଓ ବର୍ବରତାକୁ ଅତିକ୍ରମ କରିବା କ୍ଷେତ୍ରରେ ମଣିଷର ବିଚାରଶୀଳତା ଓ ସମ୍ବେଦନଶୀଳତା ନିର୍ଣ୍ଣାୟକ ଭାବେ ବାଟ ଦେଖାଇଛି । ଏପରିକି କେତେକ ମାନବହିତୈଷୀ ମହତ୍ତ୍ୱାକାଂକ୍ଷୀ ବ୍ୟକ୍ତି ରାଷ୍ଟ୍ରବାଦକୁ ଅତିକ୍ରମ କରି ପୃଥିବୀକୁ ଗୋଟିଏ ରାଜନୈତିକ ବୁଝାମଣାଦ୍ୱାରା ଶାସନ କରିବାକୁ ଇଚ୍ଛା ବ୍ୟକ୍ତ କରୁଛନ୍ତି । ଯଦି ପୃଥିବୀରେ ରାଷ୍ଟ୍ରୀୟତାର ଭାବନାକୁ ନେଇ ପ୍ରତିରକ୍ଷା କ୍ଷେତ୍ରରେ ଯେଉଁ ବିପୁଳ ସମ୍ପଦକୁ ବ୍ୟୟ କରାଯାଉଛି ତାହାକୁ ମାନବିକ ବିକାଶ ଦିଗରେ ବ୍ୟୟ କରାଯିବ, ତେବେ ପୃଥିବୀରୁ ସକଳ ଦାରିଦ୍ର୍ୟ ଅକ୍ଲେଶରେ ବିଲୁପ୍ତ ହୋଇପାରିବ । ସେହିପରି ଆର୍ଥିକ ସଂପନ୍ନତା, ଉତ୍ତମ ଜୀବନଶୈଳୀର ପରିବେଶ, ଉନ୍ନତ ସ୍ୱାସ୍ଥ୍ୟସେବା ଇତ୍ୟାଦି ପ୍ରତ୍ୟେକ ମଣିଷ ପାଇଁ ଉପଲବ୍ଧ ହେବା ସମ୍ଭବ ହେବ । ଶିକ୍ଷାୟତନରେ ମାନବଜାତିର ଏକତ୍ୱ ନେଇ ଭାବନା ସବୁ ପିଲାଙ୍କୁ ଦିଆଯାଇ ଏକ ଭ୍ରାତୃତ୍ୱର ପରିବେଶ ସୃଷ୍ଟି କରାଯାଇ ପାରିବ । ଅନ୍ୟ ଦେଶ, ଧର୍ମ, ସଂସ୍କୃତି, ଭାଷା ଇତ୍ୟାଦିକୁ ନେଇ ଲୋକମାନଙ୍କ ଭିତରେ ଯେଉଁ ଘୃଣା, ବିଦ୍ୱେଷ, ଅବିଶ୍ୱାସ ଓ ଅସହିଷ୍ଣୁତାର ବାତାବରଣ ସାରା ପୃଥିବୀରେ ରହିଛି ତାହାର ବିଲୁପ୍ତି ସମ୍ଭବ ହେବ । ମନ୍ଦ ଆବେଗମୟ ମନୋଭାବ ପରିବର୍ତ୍ତେ ଶୁଦ୍ଧ ମାନବିକତା ସଂସାରର ରୂପ ବଦଳାଇ ଦେଇପାରିବ । ବିବଧବର୍ଣ୍ଣା ଧରିତ୍ରୀର ସନ୍ତାନ ଭାବେ ସବୁ ମଣିଷ ଭ୍ରାତୃତ୍ୱର ଡୋରିରେ ଏକତ୍ରିତ ହୋଇପାରିବେ ।

(ପ୍ରଗତିବାଦୀ, ୨୭.୧୨.୨୦୧୭)

# ଜୀବନଦୃଷ୍ଟି : କିଛି ଅନୁଭବ

ପ୍ରତ୍ୟେକ ବ୍ୟକ୍ତି ଭିତରେ ବୁଦ୍ଧି, ଚିନ୍ତା ଓ ଚେତନାର ବିକାଶ ପରଠାରୁ ସେ ଧୀରେ ଧୀରେ ନିଜର ପରିବାର, ସାମାଜିକ ସ୍ଥିତି ଓ ପ୍ରାକୃତିକ ପରିବେଶ ବିଷୟରେ କିଛି ଧାରଣା ପୋଷଣ କରେ। ବୟସ ବୃଦ୍ଧି ସହ ଶିକ୍ଷା, ନିଜର ଅନୁଭୂତି, ସାମାଜିକ ଭାବଧାରାର ପ୍ରଭାବ ତାର ଜୀବନଦୃଷ୍ଟିକୁ ପ୍ରଭାବିତ କରିଥାଏ। ଏକ ସୁସ୍ଥ ପରିବେଶରେ ବଢ଼ିଥିବା ଓ ନିଜର ବିବେକ ବୁଦ୍ଧିକୁ ଭଲ ଦିଗରେ ପ୍ରୟୋଗ କରିବାର ପରିବେଶ ପାଇଥିବା ବ୍ୟକ୍ତିମାନେ ପ୍ରାୟତଃ ଉତ୍ତମ ନାଗରିକ ହେବାର ସମ୍ଭାବନା ରହିଥାଏ। ତେବେ ପିଲାଟି ବେଳୁ ନାନା ପ୍ରତିକୂଳ ସ୍ଥିତିର ସାମ୍ନା କରିଥିବା ଓ ମନ୍ଦ ପରିବେଶରେ ଗଢ଼ି ଉଠିଥିବା ବ୍ୟକ୍ତିମାନେ ଅସାମାଜିକ ନାଗରିକ ହେବାର ସମ୍ଭାବନା ଅଧିକ ଥାଏ। ତେବେ ବ୍ୟକ୍ତିର ଜୀବନଧାରା ବହୁ ଘଟଣା ଓ ନାନା କାରଣଦ୍ୱାରା ପ୍ରଭାବିତ ହୋଇଥାଏ। ସାମାଜିକ ପରିବେଶଟି ଉନ୍ନତ ଥିଲେ ତାର ପ୍ରଭାବ ସାଧାରଣ ଜନଜୀବନକୁ ଭଲ ଦିଗରେ ପ୍ରଭାବିତ କରିଥାଏ। ସାମାଜିକ ପରିବେଶ ଅନ୍ୟାୟ, ଭେଦଭାବ, କୁସଂସ୍କାର, ଶୋଷଣ ଇତ୍ୟାଦିଦ୍ୱାରା ବହୁଳ ଭାବରେ ପ୍ରଭାବିତ ହେଉଥିଲେ ତାହା ବ୍ୟକ୍ତି ସ୍ୱଭାବକୁ ସେହିପରି ହେବାରେ ସାହାଯ୍ୟ କରିଥାଏ। ତେବେ ଏହା ଯେ ସବୁ କ୍ଷେତ୍ରରେ ହୁଏ ତାହା ନିଶ୍ଚିତ କହିହେବ ନାହିଁ। ସାମାଜିକ ସମ୍ବନ୍ଧର ଜଟିଳତା, ଜୀବନ ପ୍ରବାହ କ୍ଷେତ୍ରରେ ଆସୁଥିବା ନୂଆ ନୂଆ ପରିବେଶ, ସମାଜ ଓ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଭିତରେ ବ୍ୟକ୍ତିର ସ୍ୱଭାବ ଓ ଆଚରଣ ମଧ୍ୟ ପରିବର୍ତ୍ତିତ ହେଉଥାଏ। ପ୍ରତ୍ୟେକ ବ୍ୟକ୍ତି ଭିତରେ ଚିନ୍ତା କରିବାର, ବୁଦ୍ଧି ପ୍ରୟୋଗ କରିବାର ସାମର୍ଥ୍ୟ ବେଶ୍ ସହଜାତ। ଏହା ବ୍ୟକ୍ତି ଜୈବିକ ଗୁଣସୂତ୍ର ଆଧାରରେ ନିଜର ପିତାମାତାଙ୍କଠାରୁ ପାଇଥାଏ ଓ ଉପଯୁକ୍ତ ବାତାବରଣରେ ବିକଶିତ ହୋଇଥାଏ। ତେବେ ପ୍ରତ୍ୟେକ ପ୍ରାଣୀ ଭିତରେ କେତେକ ଜୈବିକ ପ୍ରବୃତ୍ତି ରହିବା ଦେଖାଯାଏ। କେତେକ ପ୍ରବୃତ୍ତି ଉତ୍ତମ, ସାମାଜିକ ବା ସମାଜଦ୍ୱାରା ଗୃହୀତ ଓ ଅନ୍ୟ କେତେକ ପ୍ରବୃତ୍ତି ଅଗ୍ରହଣୀୟ ଓ ସମାଜ ଦୃଷ୍ଟିରେ ମନ୍ଦ ବା ଅନୈତିକ। ବ୍ୟକ୍ତିର ଇଚ୍ଛା, ଆକାଂକ୍ଷା ଓ ଲକ୍ଷ୍ୟ ପ୍ରବୃତ୍ତି ସ୍ତରରୁ ଆସିଥାଏ। ବୁଦ୍ଧି ଏକ ସାଧନ ଭାବେ ଇଚ୍ଛାକୁ ପୂରଣ କରିବାରେ ସହାୟକ ହୋଇଥାଏ। ଅର୍ଥାତ୍ ବୁଦ୍ଧି ଉତ୍ତମ ଲକ୍ଷ୍ୟ ଦିଗରେ କିମ୍ବା ମନ୍ଦ ଲକ୍ଷ୍ୟ ଦିଗରେ ବିନିଯୋଗ ହୋଇପାରେ। ଆବେଗିକ ସ୍ତର ଉନ୍ନତ ହେଲେ ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇଥାଏ, ଆବେଗିକ ସ୍ତର ନିକୃଷ୍ଟ ହେଲେ

ଜୀବନର ମାନ ନ୍ୟୁନ ହେବାର ସମ୍ଭାବନା ଥାଏ। ଆମ ଚତୁଃପାର୍ଶ୍ୱରେ ଆମେ ଏପରି ବହୁ ବ୍ୟକ୍ତିଙ୍କୁ ଦେଖୁ ଯେଉଁମାନେ ସ୍ନେହୀ, ପରୋପକାରୀ ଓ ଉତ୍ତମ ସ୍ୱଭାବର ମଣିଷ। ସେମାନେ ବିଶେଷ ଶିକ୍ଷିତ ନୁହଁନ୍ତି, ସାଧାରଣ ତେଲ, ଲୁଣର ସଂସାର ଭିତରେ ବଞ୍ଚନ୍ତି, ତେବେ ଜ୍ଞାତ ସାରରେ କାହାର ଅମଙ୍ଗଳ କରନ୍ତି ନାହିଁ ବା ନିଜେ ବି ଅନ୍ୟାୟ ପନ୍ଥାରେ ଯିବାକୁ ଉଚିତ୍ ଭାବନ୍ତି ନାହିଁ। ତେବେ ଆମ ଚତୁଃପାର୍ଶ୍ୱରେ କିଛି ବ୍ୟକ୍ତି ଅଛନ୍ତି ଯେଉଁମାନେ ବୁଦ୍ଧିମାନ, ଉଚ୍ଚଶିକ୍ଷିତ, ଉଚ୍ଚ ପଦପଦବୀରେ ବି ରହିଛନ୍ତି, ଆର୍ଥିକ ସ୍ତରରେ ବେଶ୍ ସୁରକ୍ଷିତ। ତଥାପି ସେମାନେ ସମ୍ମାନହାନୀ ହେଉ ନ ଥିଲେ ଲାଞ୍ଚ ମିଛ ନିଅନ୍ତି, ଅସାଧୁ ପନ୍ଥା ଅବଲମ୍ବନ କରିବାରେ ବିବେକର ଦଂଶନ ପାନ୍ତି ନାହିଁ।

ସେହିଭଳି ସମାଜରେ ବହୁ ଲୋକ ଦେଖାଯାନ୍ତି ଯେଉଁମାନେ ଧର୍ମବିଶ୍ୱାସୀ। ସେମାନେ ପ୍ରତିଦିନ ଦିଅଁ ଦେବତାଙ୍କୁ ବା ନିଜ ଧର୍ମର ବିଶ୍ୱାସ ଅନୁଯାୟୀ ପ୍ରାର୍ଥନା କରନ୍ତି। ପ୍ରାର୍ଥନା ନ କରି ଅନ୍ନ ସ୍ପର୍ଶ କରିବେ ନାହିଁ। ପ୍ରତ୍ୟେକ ପର୍ବପର୍ବାଣି ଅବସରରେ କେତେ କେତେ କର୍ମକାଣ୍ଡ ପାଳନ କରନ୍ତି। କେତେ ଦିଅଁ ଦେବତା ପାଖରେ ମାନସିକ କରନ୍ତି। ରାସ୍ତାରେ ଯିବା ବେଳେ କେଉଁଠି କିଛି ପୂଜାସ୍ଥଳ ଦେଖିଲେ ଓ ଏପରିକି ଲାଲକନା ଉଡୁଥିଲେ ବା ସିନ୍ଦୁର ମରା ଯାଇଥିଲେ ସେଠାରେ ମୁଣ୍ଡିଆ ମାରନ୍ତି। ପ୍ରତିଦିନ ନିଜ ଧର୍ମଗ୍ରନ୍ଥରୁ କିଛି ପଢନ୍ତି ଓ କେଉଁଠି ପ୍ରବଚନ ହେଉଥିଲେ ସେଠାରେ ପହଞ୍ଚନ୍ତି। ଏହିପରି କିଛି ବ୍ୟକ୍ତି ଆମ ଦୈନନ୍ଦିନ ଅନୁଭୂତିରେ ଆସନ୍ତି ଯେଉଁମାନେ ବାସ୍ତବ ଜୀବନରେ ସାଧୁତା ଅବଲମ୍ବନ କରନ୍ତି ନାହିଁ। ବ୍ୟବସାୟୀ ହୋଇଥିଲେ ଟିକସ ଫାଙ୍କନ୍ତି, ସୁଯୋଗ ପାଇଲେ ଗ୍ରାହକଙ୍କୁ ଠକନ୍ତି ଓ ଏଥିରେ କୌଣସି ମାନସିକ କଷ୍ଟ ପା'ନ୍ତି ନାହିଁ। କେତେକ ସରକାରୀ କର୍ମଚାରୀ ବେଶ୍ ଧର୍ମ ପରାୟଣ, ଘରେ କେତେ ଦିଅଁ ଦେବତାଙ୍କୁ ପୂଜା କରନ୍ତି। କିନ୍ତୁ ଅଫିସରେ ଲାଞ୍ଚ ନିଅନ୍ତି, କୌଣସି ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଥିଲେ ଦରମା ବାହାରେ ବେଶ୍ ଦୁଇ ପଇସା ରୋଜଗାର କରନ୍ତି। ଲାଞ୍ଚ ନିଅନ୍ତି ଓ ନିଜର ସ୍ୱାର୍ଥ ହାସଲ ପାଇଁ ଲାଞ୍ଚ ବି ଦିଅନ୍ତି। ଯୁଗର ପରିସ୍ଥିତି ସହ ନିଜକୁ ଖାପ ଖୁଆଇ ଚଳାଇବାକୁ ଉଚିତ ମନେ କରନ୍ତି ଓ ସେଥିପାଇଁ ନିଜକୁ ବାସ୍ତବବାଦୀ ଭାବିଥାନ୍ତି। ତେବେ ସମାଜରେ ମୁଷ୍ଟିମେୟ ହେତୁବାଦୀ, ମାନବବାଦୀ ବା ନିରୀଶ୍ୱରବାଦୀ ଦେଖାଯାନ୍ତି ଯେଉଁମାନେ ନିଜର ସାମାଜିକ କର୍ତ୍ତବ୍ୟକୁ ସୁଚାରୁରୂପେ ପାଳନ କରନ୍ତି। ଜ୍ଞାତସାରରେ ଅନ୍ୟାୟ କରନ୍ତି ନାହିଁ ଓ ଯେତେ ଦୂର ସମ୍ଭବ ସାଧୁତା ଅବଲମ୍ବନ କରନ୍ତି। ନିଜ ଉପରେ ଗଭୀର ଆତ୍ମ ବିଶ୍ୱାସ ରଖିଥାନ୍ତି ଓ ଜୀବନର ଯେ କୌଣସି ପରିସ୍ଥିତିର ସମ୍ମୁଖୀନ ହେବାକୁ ନିଜର ମାନସିକ ଶକ୍ତି ଉପରେ ଭରସା କରନ୍ତି। କୌଣସି ମନଗଢା କଳ୍ପିତ ଦିଅଁ ଦେବତାଙ୍କୁ ପ୍ରାର୍ଥନା କରନ୍ତି ନାହିଁ ଓ ତାହାକୁ ମାନସିକ ଦୁର୍ବଳତା

ବୋଲି ମନେ କରନ୍ତି । ଆବଶ୍ୟକ ବେଳେ ଅନ୍ୟ ପ୍ରତି ସହାନୁଭୂତି ଓ ସାହାଯ୍ୟର ହାତ ବଢ଼ାନ୍ତି ଓ କାହା ପ୍ରତି ବିଦ୍ୱେଷ ପୋଷଣ କରନ୍ତି ନାହିଁ । ଅନ୍ୟମାନଙ୍କର ମାନସିକ ଦୁର୍ବଳତାକୁ ଅନୁଭବ କରନ୍ତି, ସୁତରାଂ ନିଜ ବିଚରାଦର୍ଶଠାରୁ ଭିନ୍ନ ବ୍ୟକ୍ତିବିଶେଷଙ୍କ ପ୍ରତି କୌଣସି ଅସୂୟା ଭାବ ପୋଷଣ କରନ୍ତି ନାହିଁ । ମାନବିକ ସମ୍ବେଦନକୁ ଜୀବନରେ ମୂଲ୍ୟ ଦିଅନ୍ତି ଓ ବିଚାରଶୀଳ ହୋଇ ରହିବାକୁ ଯଥାର୍ଥ ମନେ କରନ୍ତି ।

ସମାଜରେ ଏକ ସୁସ୍ଥ ଜୀବନ ପାଇଁ ସମସ୍ତେ ଆଗ୍ରହ ପ୍ରକାଶ କରିବା ଏକ ସ୍ୱାଭାବିକ ଭାବନା କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ସୁସ୍ଥ ଜୀବନ ଓ ସୁସ୍ଥ ପରିବେଶ କ୍ଷେତ୍ରରେ ବ୍ୟକ୍ତିର ଜ୍ଞାନ, ବିଶ୍ୱାସ ଓ ଅନୁଭବ ଗୁରୁତ୍ୱପୂର୍ଣ୍ଣ ମନେ ହୁଏ । ସମାଜର ସବୁ ବ୍ୟକ୍ତି ଯେ ଜ୍ଞାନୀ ବା ବିଦ୍ୱାନ ହେବେ ଏହା କୁହାଯାଉ ନାହିଁ । ତେବେ ସାଧାରଣ ଭାବେ ଦେଖିଲେ ଯେଉଁ ଜ୍ଞାନ ବ୍ୟକ୍ତିକୁ ଉତ୍ତମ ଜୀବନ ପାଇଁ ପ୍ରେରଣା ଦିଏ, ଏକ ବୃହତ୍ତର ସମାଜ ପ୍ରତି ନିଜର କର୍ତ୍ତବ୍ୟବୋଧ ଶିକ୍ଷା ଦିଏ ଓ ଜୀବନ ପ୍ରବାହରେ ନାଗରିକ ଶୃଙ୍ଖଳାବୋଧର ଭାବନା ପ୍ରତି ପ୍ରତିବଦ୍ଧତା ଆଣେ ତାହା ଯଥାର୍ଥ ମନେ ହୁଏ । ଜ୍ଞାନ ଯଦି ବିବେକବୋଧକୁ ସୁଦିଗରେ ପରିଚାଳିତ କରେ ତେବେ ତାହା ଜୀବନ ପାଇଁ ଓ ସମାଜ ପାଇଁ ମଙ୍ଗଳକର ହୋଇଥାଏ । ଅପର ପକ୍ଷରେ ଜ୍ଞାନ ଯଦି ବ୍ୟକ୍ତିକୁ ସ୍ୱାର୍ଥପର କରେ ଓ ଆତ୍ମକୈନ୍ଦ୍ରିକ ଭାବନା ଭିତରେ କବଳିତ କରେ ତେବେ ତାହା ଜୀବନଧାରାରେ କ୍ଷତିକାରକ ହୋଇଥାଏ । ସେହିପରି ବ୍ୟକ୍ତିର ବିଶ୍ୱାସର ଗୁଣାତ୍ମକ ମୂଲ୍ୟ ଉପରେ ଜୀବନର ଗୁଣାତ୍ମକ ମୂଲ୍ୟ ନିର୍ଭର କରେ । ସାଧାରଣ ଭାବରେ କହିଲେ ଯେଉଁ ବିଶ୍ୱାସ କୁସଂସ୍କାର ମୁକ୍ତ, ମାନବିକ ଓ ସୃଜନଧର୍ମୀ ସେଗୁଡ଼ିକ ଉପଯୁକ୍ତ ବୋଲି ନିଆଯାଇପାରେ । ତେବେ ନିଜର ସାମାଜିକ ପରିବେଶ, ଧାର୍ମିକ ପରମ୍ପରା ଓ ସାମାଜିକ ଜନଗୋଷ୍ଠୀ ଭିତରେ କେତେକ ଆଧାରହୀନ ବିଶ୍ୱାସ ରହିଥିବା ଦେଖାଯାଏ । ଯେଉଁ ବିଶ୍ୱାସମାନ ଯୁକ୍ତିବିରୋଧୀ, ବିଜ୍ଞାନବିରୋଧୀ ଓ ମାନବିକତାବିରୋଧୀ ସେହି ବିଶ୍ୱାସମାନଙ୍କଠାରୁ ମୁକ୍ତ ରହିବା ଆବଶ୍ୟକ । ସମାଜରେ ଘଟୁଥିବା ନାନା ଘଟଣା, ଦୁର୍ଘଟଣା, ଭଲ ମନ୍ଦ ଆମର ଅନୁଭବ ପରିସରକୁ ଆସିଥାଏ । ଆମେ ଆମର ବୃହତ୍ତର ପରିବେଶର ଘଟଣା ପ୍ରବାହକୁ ଅନୁଭବରେ ଆଣୁ । ସେହି ଅନୁଭବରୁ ଜୀବନ, ପରିବେଶ ଓ ସମାଜ ପ୍ରତି ଆମର ଦୃଷ୍ଟିଭଙ୍ଗୀ ରୂପ ନେଇଥାଏ ।

ବ୍ୟକ୍ତିର ଦୃଷ୍ଟିଭଙ୍ଗୀକୁ ସାମାଜିକ ଚଳଣି, ପରିବେଶ ଓ ବ୍ୟବସ୍ଥା ସାଧାରଣତଃ ପ୍ରଭାବିତ କରିଥାଏ । ଆମ ସାମାଜିକ ଦୃଶ୍ୟପଟରେ ବହୁ ବ୍ୟକ୍ତି ଦରଦୀ, ହୃଦୟବାନ, ଅନ୍ୟ ପ୍ରତି ବି ସମ୍ବେଦନଶୀଳ । ତେବେ ସାମାଜିକ ପରମ୍ପରା ଭିତରେ ରହିଥିବା ଜାତିବାଦ ଏକ ବଦ୍ଧମୂଳ

ଧାରଣା ଭାବେ ସମାଜରେ ରହିଛି। କିଛି ବ୍ୟକ୍ତି ଭେଦଭାବରେ ବିଶ୍ୱାସ ନ କଲେ ମଧ୍ୟ ଜାତିପ୍ରଥାକୁ ପରିବାରରୁ ଦୂର କରିବାକୁ ସାହାସ ଦେଖାଇ ପାରନ୍ତି ନାହିଁ। ସେମାନଙ୍କ ଅନୁଭବରେ ଜାତିଗତ ଭେଦଭାବ ଯେ ଏକ ମନ୍ଦ ପ୍ରଥା ଏହା ସେମାନେ ଜାଣନ୍ତି। ତେବେ ଜାତି ବ୍ୟବସ୍ଥାର ଊର୍ଦ୍ଧ୍ୱକୁ ଯାଇ ବୈବାହିକ ସମ୍ବନ୍ଧ ସ୍ଥାପନ କରିବା ସେମାନେ ଚିନ୍ତା କରିପାରନ୍ତି ନାହିଁ। ପାରିବାରିକ ସମ୍ବନ୍ଧ ପୃଷ୍ଠଭୂମିରେ କେତେକଙ୍କ ସହ ନିଜର ସମ୍ପର୍କକୁ ଖରାପ ନ କରିବାର ଆଳ ଦେଖାଇ ଜାତିଗତ ନିୟମ ଭିତରେ ନିଜକୁ ଆବଦ୍ଧ କରି ରଖନ୍ତି। ଅନ୍ୟ ସମୟରେ କେତେ ପ୍ରଗତିଶୀଳ ଚିନ୍ତା ଓ ଭାବନାକୁ ସମର୍ଥନ ଦେଉଥିଲେ ସୁଦ୍ଧା ନିଜସ୍ୱ ପରିସରରେ ଏକ ମନ୍ଦ ପ୍ରଥାକୁ ଉଲ୍ଲଘନ କରିବାର ଆତ୍ମବିଶ୍ୱାସ ରଖି ପାରନ୍ତି ନାହିଁ।

ଭାଗ୍ୟବାଦରେ ବିଶ୍ୱାସ କରିବା ନ କରିବା ନେଇ ଭିନ୍ନ ଭିନ୍ନ ଦୃଷ୍ଟିଭଙ୍ଗୀ ସମାଜରେ ରହିଥିବା ଦେଖାଯାଏ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ରଖିଥିବା ବ୍ୟକ୍ତିମାନେ ନିଜର ଶ୍ରମ ଓ ପ୍ରୟାସ ଉପରେ ଗଭୀର ଆସ୍ଥା ସ୍ଥାପନ କରନ୍ତି। ମଣିଷର ପ୍ରୟାସ ଦ୍ୱାରା ସାମାଜିକ ଜୀବନ ଯେ ଉନ୍ନତ ହୋଇପାରିବ ଏଥିରେ ସେମାନେ ବିଶ୍ୱାସ କରିଥାନ୍ତି। ସକଳ ବିକାଶ ଓ ପ୍ରଗତି ମଣିଷର ପ୍ରଚେଷ୍ଟା ଓ ଉଦ୍ୟମର ଯେ ପରିଣାମ ଏହା ଏକ ଆନୁଭବିକ ସତ୍ୟ। ଏ ସତ୍ତ୍ୱେ କିଛି ବ୍ୟକ୍ତି ଭାଗ୍ୟବାଦରେ ବିଶ୍ୱାସ କରନ୍ତି ଓ ନିଜକୁ ଅସହାୟ ମଣନ୍ତି।

ଏହିପରି ଦେଖିଲେ ନାନା ପରସ୍ପର ବିରୋଧୀ ଭାବଧାରା, ଜୀବନଦୃଷ୍ଟି ସମାଜରେ ଥିବା ଜଣାଯାଏ। କେତେକ ବିଶ୍ୱାସ, ବିଚାର ଓ ଜୀବନବୋଧ ଗୁଣାତ୍ମକ ଜୀବନ ପାଇଁ ପ୍ରେରଣାଦାୟକ ହେବା ବେଳେ ଅନ୍ୟ କେତେକ ଭାବନା ସୁସ୍ଥ ବିକାଶରେ ପ୍ରତିବନ୍ଧକ ହୋଇଥାଏ।

(ପ୍ରଗତିବାଦୀ, ୧୯.୦୮.୨୦୧୫)

# ଅସହିଷ୍ଣୁ ମନୋଭାବ

କନ୍ନଡ ସାହିତ୍ୟର ବିଶିଷ୍ଟ ଲେଖକ, କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ, ଶିକ୍ଷାବିତ୍ ଓ କନ୍ନଡ ବିଶ୍ୱବିଦ୍ୟାଳୟର ଭୂତପୂର୍ବ କୁଳପତି ଏମ.ଏମ. କଲବର୍ଗୀଙ୍କୁ ଧରଓ୍ୱାଡଠାରେ ଦୁଇ ଜଣ ଆତତାୟୀ ହତ୍ୟା କରିଛନ୍ତି। ସତସ୍ତରି ବର୍ଷର ଜଣେ ବରିଷ୍ଠ ବ୍ୟକ୍ତି ଓ ବୁଦ୍ଧିଜୀବୀଙ୍କୁ ହତ୍ୟା କରିବାରେ ଆତତାୟୀମାନେ କୌଣସି ବିବେକର ଦଂଶନ ପ୍ରାୟ ପାଇନାହାନ୍ତି। କଲବର୍ଗୀ ଥିଲେ ଜଣେ ମୁକ୍ତଚିନ୍ତକ, ସମାଜ ସଂସ୍କାରକ ଓ ହେତୁବାଦୀ ଚିନ୍ତାନାୟକ। କନ୍ନଡ ଭାଷାରେ ତାଙ୍କର ଶହେରୁ ଅଧିକ ପୁସ୍ତକ ଓ ପ୍ରାୟ ଚାରିଶହ ନିବନ୍ଧ ରହିଛି। ତାଙ୍କ ଲେଖାରେ ସେ ସମାଜର ବିଭିନ୍ନ କୁସଂସ୍କାର, ଧର୍ମଭିତ୍ତିକ ଆଧାରହୀନ ବିଶ୍ୱାସ ଓ ଅମାନବିକ ପରମ୍ପରାମାନଙ୍କୁ ସମାଲୋଚନା କରିବା କୁହାଯାଏ। ସମ୍ବାଦ ଅନୁଯାୟୀ କେତେକ ଧର୍ମାନ୍ଧ ଉଗ୍ର ବ୍ୟକ୍ତି ତାଙ୍କୁ ପୂର୍ବରୁ ଧମକ ଦେଉଥିଲେ। ପରେ ସୁପରିକଳ୍ପିତ ଭାବେ ତାଙ୍କ ଘରକୁ ଆସି ତାଙ୍କୁ ଗୁଳି କରି ଚାଲିଗଲେ।

କଲବର୍ଗୀଙ୍କ ହତ୍ୟା ପରି ଜଣେ ବିଶିଷ୍ଟ ବାମପନ୍ଥୀ ବୁଦ୍ଧିଜୀବୀ ଓ ସଂସ୍କାରକ ଗୋବିନ୍ଦ ପାନ୍‌ସାରେଙ୍କୁ ମହାରାଷ୍ଟ୍ରର କୋଲାପୁରଠାରେ ଏହି ଫେବୃୟାରୀ ମାସରେ ପ୍ରାତଃଭ୍ରମଣ ସମୟରେ ଆତତାୟୀମାନେ ଗୁଳି କରି ହତ୍ୟା କରିଛନ୍ତି। ସେ ବି ଥିଲେ ଜଣେ ସୁଲେଖକ ଓ ପ୍ରଗତିଶୀଳ ବୁଦ୍ଧିଜୀବୀ। ହତ୍ୟା ପୂର୍ବରୁ ତାଙ୍କୁ ବି କେତେକ ଧର୍ମାନ୍ଧ ଲୋକ ଧମକ ଦେଉଥିଲେ। ବୟାଅଶୀ ବର୍ଷର ପାନ୍‌ସାରେ ନିଜର ସଂସ୍କାରଧର୍ମୀ ଲେଖା ପାଇଁ ଧର୍ମାନ୍ଧ ଲୋକଙ୍କର ବିରାଗଭାଜନ ହେଉଥିଲେ। ଦୁଇ ବର୍ଷ ତଳେ 'ମହାରାଷ୍ଟ୍ର ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତି'ର ପ୍ରତିଷ୍ଠାତା ଡାକ୍ତର ନରେନ୍ଦ୍ର ଦାଭୋଲକରଙ୍କୁ ବି ପ୍ରାତଃଭ୍ରମଣରେ ଥିବା ବେଳେ ଆତତାୟୀମାନେ ଗୁଳି କରି ବାଇକରେ ଚାଲିଗଲେ। ଦାଭୋଲକର ମନ୍ତ୍ର-ତନ୍ତ୍ର, ଗୁଣିଗାରେଡି, କଳାଯାଦୁକୁ ଦଣ୍ଡନୀୟ ଅପରାଧ କରିବାକୁ ସରକାରଙ୍କ ଉପରେ ଚାପ ପକାଉଥିଲେ। ଲୋକଙ୍କ ଅଜ୍ଞତା ଓ ସରଳତାର ସୁଯୋଗ ନେଇ କେତେକ ବ୍ୟକ୍ତି ଚମତ୍କାରିତା ଦେଖାଇ ସାଧାରଣ ଲୋକଙ୍କୁ ଯେଉଁପରି ଶୋଷଣ କରୁଛନ୍ତି ତାହା ବିରୁଦ୍ଧରେ ସ୍ୱର ଉଠାଇଥିଲେ। ଅଠଷଠି ବୟସର ସଂସ୍କାରକ ଦାଭୋଲକର ବି ହତ୍ୟାର ଶିକାର ହେଲେ। ଅଲୌକିକତା ଓ ଦେବପୁରୁଷମାନଙ୍କର ଚମତ୍କାରିତାକୁ ଅନାବରଣ କରୁଥିବା ବିଶିଷ୍ଟ ହେତୁବାଦୀ ସାନାଲ ଏଡମାରୁକ ହତ୍ୟା ଧମକ ପାଇବା ପରେ ନିଜକୁ ଅସୁରକ୍ଷିତ ମନେ କରି ଭାରତ ଛାଡି ଏବେ ବିଦେଶରେ ରହୁଛନ୍ତି।

କଲବର୍ଗି, ପାନସାରେ ଓ ଦାଭୋଲକର ସମସ୍ତେ ଥିଲେ ବୁଦ୍ଧିଜୀବୀ, ହେତୁବାଦୀ ଓ ସମାଜ ସଂସ୍କାରକ। ଆମ ସମାଜରେ ଥିବା ରାଶି ରାଶି କୁସଂସ୍କାର, ଅହେତୁକ ବିଶ୍ୱାସ ଓ ସାମାଜିକ ଭେଦଭାବର ସେମାନେ ସମାଲୋଚକ। ସେହିପରି ଚମତ୍କାରିତା ଆଳରେ ନିଜର ସାମ୍ରାଜ୍ୟ ସୃଷ୍ଟି କରିଥିବା ବହୁ ତଥାକଥିତ ଦେବପୁରୁଷ(ଗଡମେନ୍ ଓ ଗଡ୍ଓ୍ୱିମେନ)ମାନଙ୍କୁ ଯେଉଁ ହେତୁବାଦୀମାନେ ବିଭିନ୍ନ ସମୟରେ ଚମତ୍କାରିତାର ପ୍ରମାଣ ଦେବାକୁ ଆହ୍ୱାନ କରିଛନ୍ତି ସେମାନେ ବି ନାନା ଧମକର ସମ୍ମୁଖୀନ ହୋଇଛନ୍ତି। ଯେଉଁମାନେ ସମାଜକୁ ନାନା ଆଧାରହୀନ ବିଶ୍ୱାସ, ଅପସଂସ୍କୃତି ଓ ଅର୍ଥହୀନ ପରମ୍ପରାମାନଙ୍କୁ ଦୂର କରିବାକୁ ଆଗଭର ହୋଇଛନ୍ତି ଓ ଜନଗଣଙ୍କୁ ମାନସିକ ଦାସତ୍ୱରୁ ମୁକ୍ତ କରିବାକୁ ଗୋଡ କାଢ଼ିଛନ୍ତି ସେମାନେ ନାନା ପ୍ରତିକୂଳ ସ୍ଥିତିର ସାମ୍ନା କରିଛନ୍ତି। ରକ୍ଷଣଶୀଳ ଧର୍ମାନ୍ଧ ଲୋକମାନେ କୁସଂସ୍କାରକୁ ଐତିହ୍ୟ, ପରମ୍ପରାର ରୂପ ଦେଇ ପ୍ରଗତିଶୀଳ ଜୀବନଦୃଷ୍ଟିକୁ ବିରୋଧ କରିଥାନ୍ତି। ନିଜର ସ୍ୱାର୍ଥସାଧନ ପାଇଁ ସେମାନେ ସଂସ୍କାରବାଦୀ କାର୍ଯ୍ୟସୂଚୀକୁ ଗ୍ରହଣ କରିପାରନ୍ତି ନାହିଁ। ପ୍ରତିକ୍ରିୟାଶୀଳ ହୋଇ ସମାଜର ପ୍ରଗତିଶୀଳ କ୍ରାନ୍ତିକାରୀ ବ୍ୟକ୍ତିମାନଙ୍କୁ କେବେକେବେ ହତ୍ୟା କରିବାକୁ ସେମାନେ ଆଗଭର ହୁଅନ୍ତି। ସମାଜର ପ୍ରଚଳିତ ବିଶ୍ୱାସ ଯେତେ ଅହେତୁକ, ଅମାନବିକ ଓ ସଭ୍ୟ ଜୀବନଦୃଷ୍ଟିର ପ୍ରତିକୂଳ ହେଲେ ମଧ୍ୟ ରକ୍ଷଣଶୀଳ ବ୍ୟକ୍ତିମାନେ ସେଥିରେ ପରିବର୍ତ୍ତନ ଚାହାନ୍ତି ନାହିଁ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଚାହୁଁଥିବା ହେତୁବାଦୀମାନେ ସଭ୍ୟତାର ବିକାଶରେ ପ୍ରମୁଖ ଭୂମିକା ନିର୍ବାହ କରୁଥିଲେ ବି ସେମାନେ ନିଜ ସମସାମୟିକ ସମାଜର ରକ୍ଷଣଶୀଳ ଲୋକଙ୍କ ତରଫରୁ ବହୁ ବିରୋଧର ସମ୍ମୁଖୀନ ହୋଇଥାନ୍ତି। ସବୁ ସଭ୍ୟତାରେ ଅତୀତରେ ମୁକ୍ତଚିନ୍ତକମାନେ ନାନା ନିର୍ଯାତନାର ଶରବ୍ୟ ହୋଇଛନ୍ତି। ଇଉରୋପରେ ବିଜ୍ଞାନର ଆଦିପର୍ବରେ ବହୁ ପ୍ରତିଭାଧର ଜ୍ଞାନପିପାସୁ ବୈଜ୍ଞାନିକଙ୍କୁ ବନ୍ଦୀ ଜୀବନ ବିତାଇବାକୁ ପଡିଛି, ନାନା ନିର୍ଯାତନା ସହିବାକୁ ହୋଇଛି। ଭାରତବର୍ଷରେ ସମାଜ ସଂସ୍କାର କ୍ଷେତ୍ରରେ ନିଜର ସଂପୃକ୍ତି ରଖୁଥିବା ବୁଦ୍ଧିଜୀବୀ ଓ ମାନବବାଦୀ ହେତୁବାଦୀମାନଙ୍କୁ ଠିକ୍ ସେହିପରି ପ୍ରତିକୂଳ ସ୍ଥିତିର ସାମ୍ନା କରିବାକୁ ପଡୁଛି। ଏହି ପ୍ରତିରୋଧର ସମର୍ଥକ ହେଉଛନ୍ତି ଧର୍ମର ଧ୍ୱଜା ଧରିଥିବା ରକ୍ଷଣଶୀଳ ବର୍ଗ। ସମାଜରେ କୁସଂସ୍କାର ଓ ଅହେତୁକ ବିଶ୍ୱାସ ଯେତେ ବଳବତ୍ତର ରହିବ ରକ୍ଷଣଶୀଳ ଓ ସଂସ୍କାରବିରୋଧୀ ଲୋକମାନେ ସେଥିରେ ଉପକୃତ ହେବେ।

ଭାରତବର୍ଷରେ ଭେଦଭାବମୂଳକ ଜାତିପ୍ରଥା ଯେତେ ମାନବିକତାବିରୋଧୀ ହେଲେ ମଧ୍ୟ ରକ୍ଷଣଶୀଳ ଜାତିବାଦୀ ଲୋକଙ୍କର ସମର୍ଥନ ଯୋଗୁ ଏହା ହଜାର ହଜାର ବର୍ଷ ଧରି

ସାମାଜିକ ମନସ୍ତତ୍ତ୍ୱକୁ କବଳିତ କରି ରଖିଛି । ଅତୀତରେ ଏପରି ଏକ ଅମାନବିକ ସାମାଜିକ ପ୍ରଥାକୁ ପରିବର୍ତ୍ତନ କରିବା ପାଇଁ ଯାହା କିଛି ଉଦ୍ୟମ ହୋଇଛି ତାହା କେବଳ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଅଳ୍ପ ସମୟ ପାଇଁ କିଛି ଆଲୋଡନ ଆଣିଛି । ତେବେ ସ୍ୱାଧୀନତା ଆନ୍ଦୋଳନ ସମୟରେ ସମାଜ ସଂସ୍କାର କ୍ଷେତ୍ରରେ ଯେଉଁମାନେ ସ୍ୱର ଉଠାଇଛନ୍ତି ସେମାନଙ୍କୁ ନାନା ବିରୋଧର ସମ୍ମୁଖୀନ ହେବାକୁ ପଡିଛି । ଏପରିକି ସତୀଦାହ ପ୍ରଥା ଓ ବାଲ୍ୟବିବାହ ପରି କୁତ୍ସିତ ବ୍ୟବସ୍ଥା ବିରୋଧରେ ଯେତେବେଳେ ସ୍ୱର ଉଠିଛି ତାହାକୁ ବି ଧର୍ମୀୟ ପରମ୍ପରାର ଦୁହାଇ ଦେଇ କେତେକ ରକ୍ଷଣଶୀଳ ଲୋକ ସମର୍ଥନ ଜଣାଇଛନ୍ତି । ମହାତ୍ମା ଗାନ୍ଧୀଙ୍କ ସ୍ତରର ସର୍ବମାନ୍ୟ ନେତା ଅସ୍ପୃଶ୍ୟତା ଦୂର କରିବାକୁ ପଦଯାତ୍ରା କଲା ବେଳେ ତାଙ୍କୁ ବିଭିନ୍ନ ସ୍ଥାନରେ ରକ୍ଷଣଶୀଳ ଲୋକମାନେ କଳାପତାକା ଦେଖାଇଛନ୍ତି । ପୁନଶ୍ଚ ସାମ୍ପ୍ରଦାୟିକ ଶକ୍ତିମାନେ ଅହିଂସାର ମହାନ୍ ପ୍ରବକ୍ତାଙ୍କୁ ହତ୍ୟା କରିବାରେ ସଫଳ ହୋଇଛନ୍ତି ।

ଇତିହାସରେ ଏହା ଏକ ବିଡମ୍ବନା ଯେ ଧର୍ମରେ ଥିବା ନୈତିକତା, ମହତ୍ତର ଜୀବନବୋଧ ରକ୍ଷଣଶୀଳ ଲୋକମାନଙ୍କୁ ପ୍ରଭାବିତ କରେ ନାହିଁ । ଧର୍ମର ବୃଥା ଔପଚାରିକତା ଓ ରକ୍ଷଣଶୀଳ ଭାବନାମାନ ସେମାନଙ୍କୁ ପ୍ରଭାବିତ କରିଥାଏ । ସେମାନେ ହିଂସାର ଆଶ୍ରୟ ନିଅନ୍ତି । ହିଂସାତ୍ମକ କାର୍ଯ୍ୟଦ୍ୱାରା ମୁକ୍ତଚିନ୍ତକ, ପ୍ରଗତିଶୀଳ ବୁଦ୍ଧିଜୀବୀ ଓ ସଂସ୍କାରକମାନଙ୍କୁ ଧମକଦ୍ୱାର ଭୟ ପ୍ରଦର୍ଶନ କରାନ୍ତି । ସେମାନଙ୍କର ବିଶ୍ୱାସ, ପରମ୍ପରା ଓ ଧାର୍ମିକ ଆବେଗକୁ ଯେପରି କେହି ପ୍ରଶ୍ନ କରିବେ ନାହିଁ ସେଥିପାଇଁ ଏହା ପରୋକ୍ଷ ଧମକ ଭଳି କାର୍ଯ୍ୟ କରିଥାଏ । ଜଣେ ଜଣେ ପ୍ରତିଭାବାନ ଲେଖକଙ୍କୁ ହତ୍ୟା କରି ସେମାନେ ସମାଜକୁ ଏହି ବାର୍ତ୍ତା ଦିଅନ୍ତି ଯେ ଧର୍ମଗତ ବିଶ୍ୱାସ, ତାହା ଯେତେ ଭିତ୍ତିହୀନ ଓ ଅହେତୁକ ହେଲେ ମଧ୍ୟ, ବିରୁଦ୍ଧରେ କେହି କହିପାରିବେ ନାହିଁ ।

ମୁକ୍ତ ଚିନ୍ତା ଓ ସ୍ୱାଧୀନ ଭାବେ ମତବ୍ୟକ୍ତ କରିବାର ଅଧିକାର ଏକ ସଭ୍ୟ ଜୀବନଦୃଷ୍ଟି । ପ୍ରତ୍ୟେକ ଗଣତାନ୍ତ୍ରିକ ରାଷ୍ଟ୍ରରେ ମତଦେବା ଓ କୌଣସି ବିଷୟରେ ସମାଲୋଚନାମୂଳକ ଅଭିବ୍ୟକ୍ତି ରଖିବା ଏକ ସାମ୍ବିଧାନିକ ଅଧିକାର । ଜଣେ ଲେଖକ, କଳାକାର ବା ବୁଦ୍ଧିଜୀବୀଙ୍କର କୌଣସି ବିଷୟରେ ସ୍ୱାଧୀନ ମତ ରଖିବାର ଅଧିକାରକୁ ସ୍ୱୀକୃତି ଦିଆନଗଲେ ସମାଜ ଓ ରାଷ୍ଟ୍ରର ବୌଦ୍ଧିକ ତଥା ନୈତିକ ଉତ୍ତରଣ ହୋଇପାରିବ ନାହିଁ । ସ୍ୱାଧୀନ ଚିନ୍ତା, ମତ ରଖିବାର ଅଧିକାର, ଗବେଷଣା ଜନିତ ଜ୍ଞାନର ଅଭିବ୍ୟକ୍ତି ଗଣତାନ୍ତ୍ରିକ ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ । ଯେଉଁ ସାମ୍ପ୍ରଦାୟିକ ଶକ୍ତିମାନେ ହିଂସାର ଆଶ୍ରୟ ନେଇ ଅନ୍ୟର ସ୍ୱାଧୀନ

ବିଚାର ପାଇଁ ସେମାନଙ୍କୁ ହତ୍ୟା କରିବାକୁ ଯୋଜନା କରନ୍ତି ସେମାନେ ଗଣତନ୍ତ୍ର ଓ ଗଣତାନ୍ତ୍ରିକ ମୂଲ୍ୟବୋଧର ଧା'ର ଧାରନ୍ତି ନାହିଁ। ଅନ୍ୟର ବୌଦ୍ଧିକ ସ୍ୱାଧୀନତାକୁ ଯେଉଁମାନେ ସହ୍ୟ କରିପାରନ୍ତି ନାହିଁ ସେମାନେ ଏକ ଅହେତୁକ ଓ ଅମାନବିକ ଦୁନିଆରେ ରହିବା ମନେହୁଏ।

ବ୍ୟକ୍ତିକୁ ହତ୍ୟା କରାଯାଇପାରେ, କିନ୍ତୁ ଏକ ବିଚାରକୁ ବା ଜୀବନଦର୍ଶନକୁ କେହି ହତ୍ୟା କରିପାରିବେ ନାହିଁ। ସଭ୍ୟତା ଯେତେ ଆଗକୁ ଯାଉଥିବ ମୁକ୍ତଚିନ୍ତକ ବିଚାରବନ୍ତ ଲୋକମାନେ ଇତିହାସର ପୃଷ୍ଠାରେ ସେତେ ଅଧିକ ଜାଜ୍ୱଲ୍ୟମାନ ହେଉଥିବେ। ଅସହିଷ୍ଣୁତା ଯେ ଏକ ଅସାମାଜିକ ଓ ଅନୈତିକ ବିଚାର ଏହା ଅନ୍ତତଃ ବୌଦ୍ଧିକ ସ୍ତରରେ ଗୃହୀତ। ବିଶେଷକରି ବୌଦ୍ଧିକ ଅସହିଷ୍ଣୁତା ଯେ ଏକ ଅମାନବିକ ଓ ସଭ୍ୟତା-ବିରୋଧୀ ଭାବଧାରା ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ।

(ପ୍ରଗତିବାଦୀ, ୨୬.୦୯.୨୦୧୫)

# ସ୍ୱଚ୍ଛ ଭାରତ ଅଭିଯାନ : ଏକ ଦୃଷ୍ଟିପାତ

୨୦୧୪ ଅକ୍ଟୋବର ୨ ତାରିଖ ଦିନ ମହାତ୍ମା ଗାନ୍ଧୀଙ୍କ ୧୪୫ତମ ଜୟନ୍ତୀ ଅବସରରେ ଭାରତର ମାନ୍ୟବର ପ୍ରଧାନମନ୍ତ୍ରୀ ସ୍ୱଚ୍ଛ ଭାରତ ଅଭିଯାନ ନାମରେ ଏକ ଜାତୀୟ କାର୍ଯ୍ୟକ୍ରମର ଶୁଭାରମ୍ଭ କରିଛନ୍ତି । ଲକ୍ଷ୍ୟ ରଖାଯାଇଛି ଗାନ୍ଧୀଜୀଙ୍କର ୧୫୦ତମ ଜୟନ୍ତୀ ୨୦୧୯ରେ ପାଳନ ବେଳକୁ ଦେଶରେ ଏକ ସ୍ୱଚ୍ଛ,ପରିମଳ ପରିବେଶ ସୃଷ୍ଟି କରିବା । ମହାତ୍ମା ଗାନ୍ଧୀ ପରିଷ୍କାର ପରିଚ୍ଛନ୍ନତା ଦେଶର ସ୍ୱାଧୀନତା ଅପେକ୍ଷା ଅଧିକ ମୂଲ୍ୟବାନ୍ ବୋଲି ମତ ଦେବା ସୁବିଦିତ । ସୁତରାଂ ମହାତ୍ମାଙ୍କ ଆଦର୍ଶକୁ ବାସ୍ତବତାରେ ରୂପାୟନ କରିବା ପାଇଁ ପ୍ରଧାନମନ୍ତ୍ରୀଙ୍କର ଏହି ଘୋଷଣା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏକ ପରିଷ୍କାର ପରିଚ୍ଛନ୍ନ ପରିବେଶ ସୁସ୍ଥ ଜୀବନ ପାଇଁ ଅପରିହାର୍ଯ୍ୟ । ଏହାଦ୍ୱାରା ଅନେକ ରୋଗକୁ ନିୟନ୍ତ୍ରଣ କରାଯାଇପାରେ । ଆମ ପରିବେଶ ଯେତେ ଅଧିକ ପରିଷ୍କାର ଓ ନିର୍ମଳ ରହିବ ଆମ ଜୀବନର ମାନ ସେତେ ଉନ୍ନତ ହେବ । ଏକ ସୁସ୍ଥ ଓ ନିରୋଗ ଜୀବନ ପାଇଁ ପରିଷ୍କାର ପରିଚ୍ଛନ୍ନତା ଅବଶ୍ୟମ୍ଭାବୀ ମନେହୁଏ । ଏହା ସହିତ ଏକ ପରିଷ୍କାର ଓ ସ୍ୱଚ୍ଛ ପରିବେଶ ସୌନ୍ଦର୍ଯ୍ୟବୋଧର ମନୋଭାବ ସୃଷ୍ଟି କରିଥାଏ । ସେଥିପାଇଁ ପରିଚ୍ଛନ୍ନତାକୁ ଦିବ୍ୟ ଅନୁଭବର ଆଧାର ଭାବେ ନିଆଯାଏ । ସୌନ୍ଦର୍ଯ୍ୟବୋଧ ଓ ଦିବ୍ୟ ଅନୁଭବ ସହ ଏକ ପରିଷ୍କାର ପରିଚ୍ଛନ୍ନ ପରିବେଶର ଘନିଷ୍ଠ ସମ୍ବନ୍ଧ ଥିବା କୁହାଯାଇପାରେ । ସ୍ୱଚ୍ଛ ପରିବେଶ ଓ ପରିଚ୍ଛନ୍ନତା ସୁସ୍ଥ ମନ, ସୁସ୍ଥ ଶରୀର ଓ ଏକ ସୁସ୍ଥ ସମାଜ ସହିତ ଘନିଷ୍ଠ ଭାବେ ସମ୍ବନ୍ଧିତ ହେବା ମନେହୁଏ ।

ପରିବେଶର ପରିଚ୍ଛନ୍ନତା ପାଇଁ ଗୋଟିଏ ବଡ ଆବଶ୍ୟକତା ହେଉଛି ପ୍ରଦୂଷଣକୁ ପ୍ରତିହତ କରିବା । ପରିବେଶ ନାନା କାରଣରୁ ପ୍ରଦୂଷିତ ହୋଇଥାଏ । ତେବେ ପ୍ରଦୂଷଣର ଏକ ମାନବିକ କାରଣ ହେଉଛି ବାହାରେ ବା ଖୋଲା ସ୍ଥାନରେ ମଳତ୍ୟାଗ କରିବା । ପରିବେଶର ପରିମଳ ଏହାଦ୍ୱାରା ନଷ୍ଟ ହୋଇଥାଏ । ନଭେମ୍ବର ଉଣେଇଶ ତାରିଖକୁ ସାରା ବିଶ୍ୱରେ 'ଆନ୍ତର୍ଜାତିକ ଟଏଲେଟ ଦିବସ' ଭାବେ ପାଳନ କରାଯାଏ । ସେହି ଅବସରରେ ଏକ ଅନୁଧ୍ୟାନ ଅନୁଯାୟୀ ଆମ ଦେଶରେ ପ୍ରାୟ ଅଧାଅଧି ଲୋକଙ୍କର ଘରେ ନିରାପଦ ଓ ବ୍ୟକ୍ତିଗତ ପାଇଖାନା

ନାହିଁ। ପାଇଖାନା ଅଭାବରେ ଲୋକମାନେ ବାହାରେ ଓ ମୁକ୍ତ ପରିବେଶରେ ମଳତ୍ୟାଗ କରିଥାନ୍ତି। ଗାଁ ଗହଳରେ ଏହି ସମସ୍ୟା ଅତି ଉତ୍କଟ। ଦାରିଦ୍ର୍ୟ ଓ ସଚେତନତାର ଅଭାବରେ ଲୋକମାନେ ପାଇଖାନା ଘରେ ତିଆରି କରିନାହାନ୍ତି। ସହରମାନଙ୍କରେ ବସ୍ତି ବା ସ୍ଲମମାନଙ୍କରେ ରହୁଥିବା ଲୋକମାନଙ୍କ ପରିବାରରେ ପାଇଖାନା ନାହିଁ, ତେବେ କେତେକ ସ୍ଥାନରେ ସର୍ବସାଧାରଣଙ୍କ ପାଇଁ ମ୍ୟୁନିସିପାଲିଟି ପାଇଖାନାମାନ ନିର୍ମାଣ କରିବା ଦେଖାଯାଏ। ତେବେ ସେଗୁଡିକର ପ୍ରକୃତ ରକ୍ଷଣାବେକ୍ଷଣ ଅଭାବରେ ସେଗୁଡିକ ବ୍ୟବହାର ଯୋଗ୍ୟ ଅବସ୍ଥାରେ ରହେ ନାହିଁ। ଗାଁ ଗହଳରେ କାର୍ଯ୍ୟ କରୁଥିବା କେତେକ ବେସରକାରୀ ସଂଗଠନ ବା ଏନ୍‌ଜିଓଙ୍କ ବିବରଣୀରୁ ଜଣାପଡେ ଯେ ଗାଁ ଗହଳରେ ଜନସଂଖ୍ୟା ବଢି ଯିବାରୁ ଖୋଲା ସ୍ଥାନ ବା ଜଙ୍ଗଲମାନ ନଷ୍ଟ ହୋଇଗଲାଣି। ଫଳତଃ ମହିଳାମାନେ ସନ୍ଧ୍ୟାପରେ ଯାଇ ରାସ୍ତା କଡରେ ଝାଡା ଫେରନ୍ତି। ସେଥିପାଇଁ ସେମାନଙ୍କୁ ରାତି ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡେ। ସେହିପରି ସମସ୍ତ ସହଶିକ୍ଷା ବିଦ୍ୟାଳୟମାନଙ୍କରେ ଝିଅମାନଙ୍କ ପାଇଁ ସ୍ୱତନ୍ତ୍ର ଟଏଲେଟର ବ୍ୟବସ୍ଥା ନାହିଁ। ଫଳରେ କିଶୋରୀ ସ୍ତରକୁ ଆସିଲେ ନିଜର ସ୍ୱାଭିମାନ ପାଇଁ ଝିଅମାନେ ପାଠପଢା ଛାଡିବାକୁ ବାଧ୍ୟ ହୋଇଥାନ୍ତି। ଗୋଟିଏ ସମୟରେ ଉଠା ପାଇଖାନାମାନ ସହରମାନଙ୍କରେ ଥିଲା ଓ ସମାଜର ଏକ ନିର୍ଦ୍ଦିଷ୍ଟ ବର୍ଗର ଲୋକମାନେ ମଇଳା ମୁଣ୍ଡରେ ନେଇ ଅନ୍ୟତ୍ର ଢାଳୁଥିଲେ। ମାନୁଆଲ ସ୍କାଭେଞ୍ଜିଙ୍ଗ ପରି ବ୍ୟବସ୍ଥା ରହିଥିଲା।

ଏତଦ୍ ବ୍ୟତୀତ ପୂଜା ପାର୍ବଣ ବେଳେ ସାମାଜିକ ସଚେତନତା ଅଭାବରେ କୁଢ କୁଢ ମଇଳା ଆବର୍ଜନା ସହର ବଜାରର ରାସ୍ତାଘାଟରେ ଦେଖିବାକୁ ମିଳେ। ସର୍ବସାଧାରଣ ସ୍ଥାନମାନଙ୍କରେ ଆମର ଲୋକମାନେ ସାଧାରଣ ନାଗରିକ ଶୃଙ୍ଖଳା ରକ୍ଷାକରନ୍ତି ନାହିଁ। ପୁନଶ୍ଚ ଘରର ଆବର୍ଜନାମାନଙ୍କୁ ରାସ୍ତାରେ ଫିଙ୍ଗିବା, ପୂଜା ସାମଗ୍ରୀକୁ କୁସଂସ୍କାରଜନିତ ବିଶ୍ୱାସରୁ ସର୍ବସାଧାରଣ ବ୍ୟବହାର କରୁଥିବା ଜଳାଶୟକୁ ନିକ୍ଷେପ କରିବା ଦେଖାଯାଏ। ଏହାଛଡା ଏବେ ନାନା ଦିଅଁ ଦେବତାର ପୂଜା କରାଯାଉଛି। ଗଣେଷ ପୂଜା, ଲକ୍ଷ୍ମୀ ପୂଜା, ଦୁର୍ଗା ପୂଜା, ବିଶ୍ୱକର୍ମା ପୂଜା, କାର୍ତ୍ତିକେଶ୍ୱର ପୂଜା, କାଳି ପୂଜା, ସରସ୍ୱତୀ ପୂଜା ଇତ୍ୟାଦି ନାନା ପୂଜାର ମାନସିକତା ସମାଜରେ ବୃଦ୍ଧି ପାଇବାରେ ଲାଗିଛି। ପୂଜା ପରେ ମୂର୍ତ୍ତିଗୁଡିକୁ ଜଳାଶୟରେ ବିସର୍ଜନ କରିବା ସାଧାରଣ ଘଟଣା। ମୂର୍ତ୍ତିଗୁଡିକ କୁଟା, ସୁତୁଲି, ମାଟି ଓ ରାସାୟନିକ ରଙ୍ଗରେ ନିର୍ମିତ ହୋଇଥାଏ। ଏସବୁକୁ ଜଳରେ ଫିଙ୍ଗିବାଦ୍ୱାରା ରାସାୟନିକ ରଙ୍ଗ ପାଣିରେ ମିଶେ ଓ କୁଟା ଇତ୍ୟାଦି ପାଣିରେ ପଚି ଜଳର ଉତ୍ସକୁ ପ୍ରଦୂଷିତ କରେ। ଗତ କିଛି ବର୍ଷ ହେଲା କେତେକ ସ୍ଥାନରେ 'ବୋଇତ ବନ୍ଦାଣ' ଉତ୍ସବ ପାଳନ କରାଯାଉଛି। ଅତୀତର ସ୍ମୃତିକୁ ଉଜ୍ଜୀବିତ କରିବା

ପାଇଁ ବୋଇତର କ୍ଷୁଦ୍ରାୟତନ ପ୍ରତିକୃତି ପ୍ରସ୍ତୁତ କରି ଲୋକମାନେ ତାକୁ ନଦୀ, ପୋଖରୀରେ ଭସାଉଛନ୍ତି। ଏହା ଜଳକୁ ଯେ ପ୍ରଦୂଷିତ କରେ ଏ ବିଷୟରେ ଲୋକମାନେ ସଚେତନ ନୁହଁନ୍ତି କିମ୍ବା ପରମ୍ପରା ପାଳନ କରିବାର ମାନସିକତା ଭିତରେ ଏ ପ୍ରତି ଧ୍ୟାନ ଦିଅନ୍ତି ନାହିଁ। ଶବ୍ଦ-ପ୍ରଦୂଷଣ ଅଧିକ ମାରାତ୍ମକ ଭାବରେ ଆମକୁ ପ୍ରତି ମୁହୂର୍ତ୍ତରେ ପ୍ରଭାବିତ କରିଥାଏ। ଅତି ପ୍ରାତଃକାଳରୁ ବିଭିନ୍ନ ଧର୍ମସ୍ଥଳମାନଙ୍କରେ ଉଚ୍ଚ ସ୍ୱରରେ ମାଇକ୍‌ରେ ପ୍ରାର୍ଥନା ସଙ୍ଗୀତ ପରିବେଷଣ କରାଯାଏ। ସହରମାନଙ୍କରେ ପୂଜାସ୍ଥଳମାନଙ୍କର ସଂଖ୍ୟା ଦିନକୁ ଦିନ ବଢ଼ି ବଢ଼ି ଚାଲିଛି। ଡାକ୍ତରଖାନାର ପରିବେଶଠାରୁ ସରକାରୀ ଅନୁଷ୍ଠାନ ପର୍ଯ୍ୟନ୍ତ ସବୁ ସ୍ଥାନରେ କୌଣସି କଳ୍ପିତ ଦିଅଁ ଦେବତାଙ୍କର ମନ୍ଦିର ନିର୍ମାଣ କରାଯାଉଛି। ପୂଜାସ୍ଥଳମାନଙ୍କରେ ମାଇକ ଯୋଗେ ଗୀତ, ପ୍ରାର୍ଥନା, ମନ୍ତ୍ର ପଢ଼ାଯାଉଛି ଓ ତାହାର ପ୍ରଦୂଷଣ ବିଷୟରେ ଆମର ସାଧାରଣ ସଚେତନତା ରହୁନାହିଁ। ଦୀପାବଳି ପରି ପର୍ବପର୍ବାଣିରେ ବାଣ ଫୁଟାଇବା ଏକ ସାଧାରଣ ଘଟଣା। ବାଣର ଧୁଆଁ ଓ ଶବ୍ଦ ଆମ ପରିବେଶକୁ ଯେପରି ପ୍ରଦୂଷିତ କରେ ତାହା ସମସ୍ତେ ଜାଣନ୍ତି। ଗତ କେତୋଟି ଦଶନ୍ଧି ଭିତରେ 'ରାବଣ ପୋଡ଼ି' ନାମରେ ଏକ ପରମ୍ପରା ଗାଁ ଗହଳି ଠାରୁ ସହର ପର୍ଯ୍ୟନ୍ତ ସୃଷ୍ଟି ହେଲାଣି। ଏକ ବିରାଟ ମୂର୍ତ୍ତି ଦହନ ଯୁକ୍ତ ବସ୍ତୁରେ ପ୍ରସ୍ତୁତ କରି ତାକୁ ନିଆଁ ଲଗାଇ ପୋଡାଯାଉଛି। ଏସବୁ ସହ ଧାର୍ମିକ ଆବେଗ ସଂଶ୍ଳିଷ୍ଟ କରାଯାଉଛି। ଏହାର ଯେତେ ମନ୍ଦ ପ୍ରଭାବ ପରିବେଶ ଉପରେ ରହିଥିଲେ ବି ସେ ସବୁ ନେଇ ସାମାଜିକ ସଚେତନତା ବୃଦ୍ଧି ପାଉ ନାହିଁ। କଳ କାରଖାନାର ବର୍ଜ୍ୟ ବସ୍ତୁ, ଗାଡିମଟରରୁ ନିର୍ଗତ ଅଙ୍ଗାରକାମ୍ଳ ସହିତ ଧାର୍ମିକ ଆବେଗରେ ପାଳିତ ହେଉଥିବା ପର୍ବପର୍ବାଣିର ସମ୍ମିଳିତ ପ୍ରଭାବରୁ ପରିବେଶ ପ୍ରଦୂଷିତ ହେବାରେ ଲାଗିଛି। ପ୍ରଦୂଷିତ ପରିବେଶ ଓ ମଇଳା ଆବର୍ଜନାପୂର୍ଣ୍ଣ ରାସ୍ତାଘାଟ ଆମର ଜୀବନଧାରାକୁ ନାନା ଭାବରେ ପ୍ରଭାବିତ କରିବା ଏକ ସାଧାରଣ ଉପଲବ୍ଧି। ଏହି ପୃଷ୍ଠଭୂମିରେ ସ୍ୱଚ୍ଛ ଭାରତ ଅଭିଯାନ ଏକ ସ୍ୱାଗତଯୋଗ୍ୟ କାର୍ଯ୍ୟକ୍ରମ।

ସ୍ୱଚ୍ଛ ଭାରତ ଅଭିଯାନ ଆଭିମୁଖ୍ୟକୁ ବାସ୍ତବତାରେ ରୂପାୟନ କରିବାକୁ ହେଲେ ବହୁ ପଦକ୍ଷେପ ନେବାକୁ ହେବ। ପ୍ରଥମତଃ ଆବର୍ଜନା ପରିଚାଳନ ପ୍ରକ୍ରିୟା ବା ୱେଷ୍ଟ ମ୍ୟାନେଜମେଣ୍ଟ ଆଧୁନିକ ଜ୍ଞାନକୌଶଳ ପ୍ରୟୋଗକରି ବ୍ୟାପକ କରିବାକୁ ହେବ। ଗାଁଠାରୁ ସହର ପର୍ଯ୍ୟନ୍ତ ବର୍ଜ୍ୟବସ୍ତୁର କିପରି ରିସାଇକେଲଦ୍ୱାରା କମ୍ପୋଷ୍ଟ ବା ପୁନର୍ବ୍ୟବହାର କରାଯାଇପାରିବ ସେ ନେଇ ଉଦ୍ୟମ ହେବା ଆବଶ୍ୟକ। ସହରମାନଙ୍କରେ ପ୍ରତିଦିନ ଯେଉଁ ଟ୍ରକ ଟ୍ରକ ବର୍ଜ୍ୟବସ୍ତୁ ବାହାରୁଛି ତାକୁ ବୈଜ୍ଞାନିକ ପଦ୍ଧତିରେ ପୁନର୍ବ୍ୟବହାର କରିବାକୁ ଆବଶ୍ୟକୀୟ ବୈଷୟିକ ଜ୍ଞାନ ଓ ପ୍ରଯୁକ୍ତିର ବିକାଶ କରିବାକୁ ହେବ। ଦ୍ୱିତୀୟରେ ପ୍ରତ୍ୟେକ

ପରିବାରରେ ଟଏଲେଟ ବ୍ୟବସ୍ଥାକୁ ବାଧ୍ୟତାମୂଳକ କରିବା ପାଇଁ ପଦକ୍ଷେପ ନେବାକୁ ହେବ। ପଞ୍ଚାୟତଠାରୁ ସହର ପର୍ଯ୍ୟନ୍ତ ସମସ୍ତଙ୍କ ପରିବାରରେ କିପରି ପାଇଖାନାର ବ୍ୟବସ୍ଥା ହୋଇପାରିବ ତାହାକୁ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ଶେଷ କରିବାକୁ ହେବ। ଏକବିଂଶ ଶତାବ୍ଦୀରେ ଯଦି ଏହି ବ୍ୟବସ୍ଥା ଆମ ଦେଶରେ ସାର୍ବଜନୀନ ହୋଇପାରିବ ନାହିଁ ତେବେ ଆମେ କେଉଁଠି ରହିଛେ ତାହା ଭାବିବା ଉଚିତ୍। ସେହିପରି ଆମର ରାସ୍ତାଘାଟ, ସର୍ବସାଧାରଣ ଜାଗା ଓ ହାଟ ବଜାରକୁ ପରିଷ୍କାର ରଖିବାକୁ ବ୍ୟାପକ ସାମାଜିକ ସଚେତନତା ଆବଶ୍ୟକ। ଲୋକମାନଙ୍କର ବ୍ୟବହାର ଓ ମାନସିକତାରେ ପରିବର୍ତ୍ତନ ନ ହେଲେ ଏକ କାର୍ଯ୍ୟକ୍ରମ ସଫଳ ହେବ୍ ନାହିଁ। ସେଥିପାଇଁ ସ୍ୱଚ୍ଛ ପରିବେଶ ସମ୍ପର୍କରେ ବ୍ୟାପକ ଜନ-ସଚେତନତା ଆବଶ୍ୟକ। ସ୍କୁଲ କଲେଜରେ ଏଥିପାଇଁ ପିଲାମାନଙ୍କୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ସଚେତନ କରାଯାଇପାରିବ। ଆଧୁନିକ ଗଣମାଧ୍ୟମକୁ ବିନିଯୋଗ କରି ଲୋକଶିକ୍ଷା କାର୍ଯ୍ୟକ୍ରମ ହାତକୁ ନେଇ ସାଧାରଣ ଜନଗଣଙ୍କୁ ସୁସ୍ଥ ପରିବେଶ ଓ ସ୍ୱଚ୍ଛ ପରିମଳ ବ୍ୟବସ୍ଥା ବିଷୟରେ ଅବିରତ ଶିକ୍ଷା ଦିଆଯାଇପାରିବ। ପୁନଶ୍ଚ ଲୋକମାନଙ୍କ ଭିତରେ ରହିଥିବା ଧାର୍ମିକ ଆବେଗ ଜନିତ କୁସଂସ୍କାରକୁ ଦୂର କରିବା ପାଇଁ ବହୁତ କିଛି କରିବାକୁ ହେବ। ଧାର୍ମିକ ଆବେଗ ଜନିତ ଯେଉଁ ପରମ୍ପରା ପରିବେଶ ପାଇଁ ଧ୍ୱଂସକାରକ ହେଉଛି ତାହାର ବିଲୋପ ପାଇଁ ଜନ ସଚେତନତା ସୃଷ୍ଟି କରିବାକୁ ହେବ। ସାମାଜିକ ଚେତନାର ସ୍ତର ଉନ୍ନତ ନ ହେଲେ ସ୍ୱଚ୍ଛ ଭାରତ ଅଭିଯାନ ଲକ୍ଷ୍ୟ ହାସଲ ହୋଇପାରିବ ନାହିଁ। ବାହାର ପରିବେଶର ପରିଚ୍ଛନ୍ନତା ପାଇଁ ମନର ମଇଳା ଦୂର ହେବା ଅବଶ୍ୟମ୍ଭାବୀ ମନେହୁଏ।

(ପ୍ରଗତିବାଦୀ, ୧୬.୧୨.୨୦୧୪)

# ବୋଧଗୟାର ସ୍ମୃତି

**ବିଶ୍ୱକବି ରବୀନ୍ଦ୍ରନାଥ ଓ ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କଦ୍ୱାରା ପ୍ରତିଷ୍ଠିତ "ଭାରତୀୟ ଦର୍ଶନ କଂଗ୍ରେସ" ଜାତୀୟ ସ୍ତରରେ ଏକ ପ୍ରମୁଖ ବୌଦ୍ଧିକ ସଙ୍ଗଠନ । ଭାରତୀୟ ଦର୍ଶନ କଂଗେସର ଅଧିବେଶନରେ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟର ଦର୍ଶନ ଅଧ୍ୟାପକମାନେ ଯୋଗ ଦେଇ ଦର୍ଶନ ସମ୍ବନ୍ଧୀୟ ନିବନ୍ଧ ବିଭିନ୍ନ ସଂପାନରେ ପାଠ କରିଥାନ୍ତି । ଚଳିତବର୍ଷ ଦର୍ଶନ କଂଗ୍ରେସର ନବେତମ ଅଧିବେଶନ ବିହାରର ବୋଧଗୟାସ୍ଥିତ ମଗଧ ବିଶ୍ୱବିଦ୍ୟାଳୟ ପରିସରରେ ଫେବୃୟାରୀ ୧ରୁ ୪ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ 'ଗୁଜୁରାଟ ବିଦ୍ୟାପୀଠ ମହାତ୍ମା ଗାନ୍ଧୀ ଦର୍ଶନ ଏଣ୍ଡୋମେଣ୍ଟ ବକ୍ତୃତା' ପ୍ରଦାନ କରିବାର ସୁଯୋଗ ଏ ଲେଖକ ପାଇଥିଲା । ଏହି ଅବସରରେ ବୋଧଗୟା ଓ ନାଳନ୍ଦା ବିଶ୍ୱବିଦ୍ୟାଳୟ ସଂପର୍କରେ ସୂଚନା ଦେବା ଏହି ଲେଖାଟିଏ ଉଦ୍ଦେଶ୍ୟ ।**

ବୋଧଗୟା ଏକ ପବିତ୍ର ବୌଦ୍ଧ ଧର୍ମପୀଠ । କୁହାଯାଏ ଯେ ଗୌତମ ବୁଦ୍ଧ ବୋଧଗୟାଠାରେ ଜ୍ଞାନଦୀପ୍ତ ହୋଇଥିଲେ । ବୋଧଗୟାଠାରେ ବୁଦ୍ଧଙ୍କର ବହୁ ମୂର୍ତ୍ତି, କୀର୍ତ୍ତିସ୍ତମ୍ଭ ଓ ମନ୍ଦିରମାନ ରହିଛି । ତେବେ ଯେଉଁ ସ୍ଥାନରେ ସେ ତାଙ୍କର ସାଧନା କରୁଥିଲେ ସେଠାରେ ଏକ ବିଶାଳ ମନ୍ଦିର ହୋଇଛି ଓ ବୁଦ୍ଧଙ୍କର ସୁଦୀର୍ଘ ମୂର୍ତ୍ତି ରହିଛି । ପ୍ରତିଦିନ ହଜାର ହଜାର ବୌଦ୍ଧଧର୍ମାବଲମ୍ବୀ ଲୋକମାନେ ଏହି ସ୍ଥାନକୁ ଆସି ପ୍ରାର୍ଥନା କରିଥାନ୍ତି ଓ ଭଗବାନ ବୁଦ୍ଧଙ୍କ ପାଖରେ ତାଙ୍କର ଭକ୍ତିନୈବେଦ୍ୟ ଅର୍ପଣ କରିଥାନ୍ତି । ମନ୍ଦିରକୁ ଲାଗିକରି ଏକ ବଡ ଅଶ୍ୱତ୍ଥ ବୃକ୍ଷ ମଧ୍ୟ ରହିଛି । ଏହି ବୃକ୍ଷ ତଳେ ଗୌତମ ବୌଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ ବୋଲି ବୌଦ୍ଧଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି । ଯେଉଁ ଦେଶମାନଙ୍କରେ ବୌଦ୍ଧଧର୍ମର ପ୍ରସାର ଘଟିଥିଲା ଯଥା-ଚୀନ, ଜାପାନ, ଥାଇଲାଣ୍ଡ, ତିବତ୍ ଇତ୍ୟାଦି ସେହି ଦେଶର ବୌଦ୍ଧଧର୍ମାବଲମ୍ବୀମାନେ ଏଠାରେ ସ୍ୱତନ୍ତ୍ର ବୌଦ୍ଧ ମନ୍ଦିରମାନ ମଧ୍ୟ ନିର୍ମାଣ କରିଛନ୍ତି । ତେବେ ମୁଖ୍ୟ ମନ୍ଦିର ଚତୁଃପାର୍ଶ୍ୱରେ ଶହ ଶହ ବୌଦ୍ଧ ସନ୍ନ୍ୟାସୀ ଓ ସାଧାରଣ ଲୋକମାନେ ଏକ ଶାନ୍ତ ପରିବେଶରେ ପ୍ରାତଃକାଳରୁ ରାତ୍ର ପର୍ଯ୍ୟନ୍ତ ଧ୍ୟାନ ଓ ପ୍ରାର୍ଥନାରେ ବସି ରହିବାର ଦୃଶ୍ୟ ଦେଖିବାକୁ ମିଳେ । ଏହି ମହାବୋଧୀ ମନ୍ଦିର ପରିସରରେ ଯେ କୌଣସି ଧର୍ମର ବ୍ୟକ୍ତି ପ୍ରବେଶ କରି ପ୍ରାର୍ଥନା କରିବାରେ ପ୍ରତିବନ୍ଧକ ନାହିଁ । ସ୍ଥାନଟିର ଗୁରୁତ୍ୱ ଦୃଷ୍ଟିରୁ ଜାତିସଂଘର ଇୟୁନେସ୍କୋ ମହାବୋଧି ମନ୍ଦିରକୁ ଏକ ବିଶ୍ୱ ଐତିହ୍ୟ ବା ୱାର୍ଲଡ ହେରିଟେଜର ମାନ୍ୟତା ପ୍ରଦାନ କରିଛି ।

ବୋଧଗୟାଠାରୁ ପ୍ରାୟ ଶହେ କି.ମି. ଦୂରରେ ରହିଛି ରାଜଗିର ଓ ସେଠାରୁ ବାର କି.ମି. ଦୂରରେ ନାଳନ୍ଦା । ନାଳନ୍ଦାଠାରେ ଥିଲା ବୌଦ୍ଧ ଗୁରୁକୁଳ ବା ବିଶ୍ୱବିଦ୍ୟାଳୟ । ଏହା ପୃଥିବୀର ପ୍ରଥମ ଆବାସିକ ବିଶ୍ୱବିଦ୍ୟାଳୟ । ପଞ୍ଚମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ନାଳନ୍ଦା ଥିଲା ଏକ ଜ୍ଞାନ-କେନ୍ଦ୍ର । ବିଭିନ୍ନ ଦେଶର ବୌଦ୍ଧଧର୍ମାବଲମ୍ବୀ ବିଦ୍ୟାର୍ଥୀମାନେ ସୁଦୀର୍ଘ ପଥ ଅତିକ୍ରମ କରି ନାଳନ୍ଦାରେ ଅଧ୍ୟୟନ କରିବାକୁ ଆସୁଥିଲେ । ଚାଇନିଜ ପରିବ୍ରାଜକ ବିଦ୍ୟାର୍ଥୀ ହୁଏନସାଂ ଏଠାରେ ବହୁ ବର୍ଷ ରହି ଜ୍ଞାନ-ସାଧନାରେ ବ୍ରତୀ ଥିବା ତାଙ୍କ ଭ୍ରମଣ କାହାଣୀରେ ଉଲ୍ଲେଖ ରହିଛି । ଏଠାରେ ବୌଦ୍ଧଦର୍ଶନ, ବେଦ, ତର୍କଶାସ୍ତ୍ର, ଦର୍ଶନ, ବ୍ୟାକରଣ, ଭାଷାବିଜ୍ଞାନ, ଚିକିତ୍ସାବିଜ୍ଞାନ ଇତ୍ୟାଦି ପଢା ଯାଉଥିବା ବିଭିନ୍ନ ଭ୍ରମଣ କାହାଣୀରେ ଉଲ୍ଲେଖ ରହିଛି । ବିଭିନ୍ନ ତଥ୍ୟରୁ ଜଣାଯାଏ ଯେ ଏକଦା ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଦଶ ହଜାର ବିଦ୍ୟାର୍ଥୀ ଅଧ୍ୟୟନ କରୁଥିଲେ ଓ ସେଠାରେ ଦୁଇ ହଜାର ଆଚାର୍ଯ୍ୟ ଅଧ୍ୟାପନା କରାଉଥିଲେ । ପ୍ରାୟ ସାତ ଶହ ବର୍ଷ ଧରି ଏଠାରେ ଯେଉଁ ବୌଦ୍ଧିକ ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା ତାହା ମାନବ ସଭ୍ୟତାର ଇତିହାସରେ ଏକ ଅଭିନବ ଘଟଣା ଥିଲା । ଭାରତବର୍ଷରେ ବୌଦ୍ଧଧର୍ମ ଏକ ଗଣଧର୍ମରେ ପରିଣତ ହୋଇଥିଲା । ତେବେ ଭାରତବର୍ଷରୁ ବୌଦ୍ଧଧର୍ମର କିପରି ବିଲୋପ ଘଟିଲା ତାହା ଏବେ ବି ଏକ ରହସ୍ୟମୟ ଘଟଣା । କୁହାଯାଏ ଶଙ୍କରଙ୍କ ଆବିର୍ଭାବ ପରେ ବ୍ରାହ୍ମଣବାଦ ପୁନଶ୍ଚ ଦୃଢ ହେଲା ଓ ଧୀରେ ଧୀରେ ବ୍ରାହ୍ମଣ ଶାସକମାନେ ବୌଦ୍ଧଧର୍ମକୁ ଧ୍ୱଂସାଭିମୁଖୀ କରାଇଲେ । ପୂଜକ ଶ୍ରେଣୀ ବିଦେଶୀ ଆକ୍ରମଣକାରୀଙ୍କ ସହାୟତାରେ ବୌଦ୍ଧବିହାର, ବୌଦ୍ଧସ୍ତୂପ ଓ ଶିକ୍ଷାନୁଷ୍ଠନମାନଙ୍କୁ ଧ୍ୱଂସ କଲେ ଓ ଅନେକ ବୌଦ୍ଧ ପଣ୍ଡିତଙ୍କୁ ହତ୍ୟା କଲେ ବା ବିତାଡିତ କଲେ । ସେହି ଧାରାରେ ନାଳନ୍ଦା ବିଶ୍ୱବିଦ୍ୟାଳୟ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ଧ୍ୱଂସ ପାଇଲା । ଏକ ବିଶାଳ ଅନୁଷ୍ଠାନ ଧ୍ୱଂସ ପାଇଲା ଓ ମାଟି ତଳେ ପୋତି ହୋଇ ଜଙ୍ଗଲ ହୋଇଗଲା ।

ତେବେ ହୁଏନ୍‌ସାଂ ଓ ଅନ୍ୟମାନଙ୍କର ଭ୍ରମଣ କାହାଣୀମାନ ଇଂରାଜୀରେ ଅନୁବାଦ ହେବା ପରେ ନାଳନ୍ଦା ବିଶ୍ୱବିଦ୍ୟାଳୟ ବିଷୟରେ ଜଣାପଡିଲା । ପରାଧୀନ ଭାରତରେ କେତେକ ଇଂରେଜ ପ୍ରତ୍ନତତ୍ତ୍ୱବିତ୍ ୧ ୯ ୧ ୫ ମସିହାରେ ଅନୁମାନ କରି ସେ ସ୍ଥାନଟିକୁ ଖନନ କରିବାଦ୍ୱାରା ମାଟି ତଳୁ ସେ ବିଶାଳ ବିଶ୍ୱବିଦ୍ୟାଳୟର ଭଗ୍ନାବଶେଷ ଆବିଷ୍କୃତ ହେଲା । ଏବେ ସୁଦ୍ଧା ଖନନ ହୋଇଥିବା ତିରିଶ ଏକର ସ୍ଥାନରୁ ଛ'ଟି ବୁଦ୍ଧ ମନ୍ଦିର, ଏଗାରଟି ପୃଥକ୍ ଛାତ୍ରାବାସ, ବିସ୍ତୃତ ଶ୍ରେଣୀ ଗୃହ, ଧ୍ୟାନକେନ୍ଦ୍ର, ଚାରୋଟି କୂପର ସନ୍ଧାନ ମିଳିଛି । ବିଭିନ୍ନ ମହଲା ବିଶିଷ୍ଟ କକ୍ଷ, ବିଶାଳ ପାଠାଗାର ମଧ୍ୟ ମାଟି ତଳୁ ବାହାରିଛି । ନାଳନ୍ଦା ବିଶ୍ୱବିଦ୍ୟାଳୟର ଭଗ୍ନାବଶେଷ ବୁଲି

ଦେଖିବାବେଳେ ଗାଇଡଙ୍କ ପାଖରୁ ଅନେକ ବିଷୟ ଜାଣିବାକୁ ପ୍ରୟାସ କରିଥିଲି । ବାକ୍‌ପଟୁ ଗାଇଡ୍ ବିଭିନ୍ନ ସ୍ଥାନକୁ ନେଇ ସେ ସବୁ ସ୍ଥାନର ତାତ୍ପର୍ଯ୍ୟ ସୁନ୍ଦର ଭାବେ ବ୍ୟାଖ୍ୟା କରୁଥିଲେ । ନାଳନ୍ଦା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପୂର୍ବରୁ ସେହି ସ୍ଥାନରେ ବୁଦ୍ଧ ବହୁବାର ରହିଥିବା ବିଷୟ ଗାଇଡ୍ ବୁଝାଉଥିଲେ । ବୁଦ୍ଧଙ୍କ ସମୟରେ ମଗଧ ରାଜ୍ୟର ରାଜଧାନୀ ଥିଲା ରାଜଗିର । ପାଟଳିପୁତ୍ର ଠାରୁ ରାଜଗିର ଯିବା ବାଟରେ ବୁଦ୍ଧ ନାଳନ୍ଦାଠାରେ ଥିବା ଆମ୍ବ ବଗିଚା ମଧ୍ୟରେ ଅବସ୍ଥାନ କରୁଥିଲେ । ଏହା ସହ ବୁଦ୍ଧଙ୍କର ପ୍ରିୟ ଶିଷ୍ୟ ସାରିପୁତ୍ରଙ୍କ ନାମରେ ନାଳନ୍ଦା ପରିସରରେ ମଧ୍ୟ ଏକ ବଡ ଆବାସ ସ୍ଥଳ ରହିଛି । ବିଶିଷ୍ଟ ବୌଦ୍ଧ ଦାର୍ଶନିକ ନାଗାର୍ଜୁନ ବି ସେଠାରେ ଦ୍ୱିତୀୟ-ତୃତୀୟ ଶତାବ୍ଦୀରେ ରହି ମାଧ୍ୟମିକ ଦାର୍ଶନିକ ଧାରା ପ୍ରବର୍ତ୍ତନ କରିଥିଲେ । ଗୁପ୍ତ ରାଜବଂଶର ଶାସକମାନେ ନାଳନ୍ଦା ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଓ ପରିଚାଳନା ପାଇଁ ସମସ୍ତ ସାହାଯ୍ୟ ଯୋଗାଇଥିଲେ । ନାଳନ୍ଦା ବିଶ୍ୱବିଦ୍ୟାଳୟକୁ ପଢିବାକୁ ଆସୁଥିବା ଉତ୍ସାହୀ ବିଦ୍ୟାର୍ଥୀମାନଙ୍କୁ କେତେକ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡୁଥିଲା । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଯାଇ ସେମାନଙ୍କୁ ନାଳନ୍ଦାରେ ଶିକ୍ଷାର୍ଥୀ ହେବାର ସୁଯୋଗ ମିଳୁଥିଲା । ଯେଉଁଠି ପାଠାଗାର ଥିଲା ସେଠାକୁ ଗାଇଡ୍ ନେଇ ବୁଝାଇଲେ ଯେ ସେଠାରେ ଲକ୍ଷାଧିକ ପୋଥି ରହିଥିଲା । ସେ ଯୁଗରେ କାଗଜ ନ ଥିଲା, କେବଳ ତାଳପତ୍ରରେ ଯାହା ଲେଖା ଯାଉଥିଲା । ପାଠାଗାରକୁ ପୋଡି ଦିଆ ଯାଇଥିବା ବା ଧ୍ୱଂସ କରାଯାଇଥିବା ଗାଇଡ୍ ବୁଝାଇଲେ । ଗୃହଗୁଡିକ ସବୁ ପୋଡା ଇଟାରେ ନିର୍ମିତ ହୋଇଥିଲା ଓ ସେହି ଇଟାରେ ଧୂଆଁର ଛାପ ରହିଥିବାରୁ ଅନୁମାନ କରାଯାଏ ଯେ ସେ ସବୁକୁ ପୋଡା ଯାଇଛି ।

ନାଳନ୍ଦା ବିଶ୍ୱବିଦ୍ୟାଳୟ ପାଖରେ ରହିଛି ପ୍ରତ୍ନତାତ୍ତ୍ୱିକ ମିଉଜିୟମ୍ । ମିଉଜିୟମ୍‌ରେ ଶତାଧିକ ବୌଦ୍ଧ ମୂର୍ତ୍ତି ସଂଗୃହୀତ ହୋଇ ରଖାଯାଇଛି । ତେବେ ମୂର୍ତ୍ତିଗୁଡିକ ଅକ୍ଷତ ଅବସ୍ଥାରେ ନାହିଁ । ମୂର୍ତ୍ତିଗୁଡିକର ମୁଣ୍ଡ ଭଙ୍ଗାଯାଇଛି ବା ଭାଙ୍ଗିବାର ଉଦ୍ୟମ ହୋଇଛି । ସେହି ମିଉଜିୟମରେ ବୌଦ୍ଧ ମୂର୍ତ୍ତି ସହ କେତେକ ହିନ୍ଦୁ ଦେବ-ଦେବୀଙ୍କର ମୂର୍ତ୍ତି ବି ରହିବାର ଦେଖିବାକୁ ମିଳିଲା । ଏହା ବ୍ୟତୀତ ସେହି ସମୟର ବୁଦ୍ଧଙ୍କ ବାଣୀ ଥିବା କେତେକ ଶିଳାଲେଖ, କେତେକ ତମ୍ବାପାତ୍ର, ମୁଦ୍ରା ଇତ୍ୟାଦି ମଧ୍ୟ ସେଠାରେ ରଖାଯାଇଛି । ବିଭିନ୍ନ ଇଟାରେ ଖୋଦନ କରି ବୁଦ୍ଧଙ୍କର ଦର୍ଶନ, ବିଭିନ୍ନ ଛବି, ବାଣୀ, ଚିତ୍ରପଟ ରହିଥିବା ଦୃଷ୍ଟି ଆକର୍ଷଣ କରିଥିଲା । ବୁଦ୍ଧଙ୍କର ମୌଳିକ ବିଚାରମାନ ପାଲି ବା ସଂସ୍କୃତ ଭାଷାରେ ଲେଖାଥିବା ଗାଇଡ୍‌ଙ୍କଠାରୁ ଜାଣିବାକୁ ମିଳିଲା ।

ନାଳନ୍ଦା ପରିସରରେ ଥିବା ହୁଏନ୍‌ସାଂ ମେମୋରିଆଲ ହଲ ଅତି ଆକର୍ଷଣୀୟ ହୋଇଛି । ଅବଶ୍ୟ ଏହା ସ୍ୱାଧୀନ ଭାରତରେ ଭାରତ ଓ ଚୀନ ସରକାରଙ୍କ ମିଳିତ ସହଯୋଗରେ ନିର୍ମିତ ହୋଇଛି । ଐତିହାସିକ ତଥ୍ୟ ଅନୁଯାୟୀ ଏହି ବିଦ୍ୟାର୍ଥୀ ପରିବ୍ରାଜକ ଜ୍ଞାନାର୍ଜନ ପାଇଁ ଚୀନରୁ ଚାରି ବର୍ଷ ଯାତ୍ରା କରି ନାଳନ୍ଦାରେ ପହଞ୍ଚିଥିଲେ । ନାଳନ୍ଦାରେ ପ୍ରାୟ ବାର ବର୍ଷ ରହି ବୌଦ୍ଧଧର୍ମର କେତେକ ଗ୍ରନ୍ଥ ନେଇ ନିଜ ଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ନିଜ ଦେଶରେ ପହଞ୍ଚିବା ପରେ ଶେଷ ଜୀବନ ପର୍ଯ୍ୟନ୍ତ ବୌଦ୍ଧ ଗ୍ରନ୍ଥରାଜିକୁ ସେ ଚାଇନିଜ୍ ଭାଷାରେ ଅନୁବାଦ କରିଥିଲେ । ସେ ଏଠାରେ ବିଦ୍ୟାର୍ଥୀ ଥିଲେ ଓ ପରେ ଅଧ୍ୟାପନା କରିଥିବା ଜଣାଯାଏ । ତାଙ୍କ ଭ୍ରମଣ କାହାଣୀରୁ ସେ ସମୟର ଭାରତର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ ବହୁ ତଥ୍ୟ ମିଳେ ।

ବୌଦ୍ଧଧର୍ମ ଓ ବୌଦ୍ଧଦର୍ଶନକୁ ଆଧାର କରି ଭାରତବର୍ଷରେ ଯେ ଏତେ ବଡ ଏକ ଶୈକ୍ଷିକ ପରିବେଶ ସାତ ଆଠ ଶତାବ୍ଦୀ ଧରି ଗଢି ଉଠିଥିଲା ତାହା ଏକ ବିସ୍ମୟ ମନେହୁଏ । ଯଦି ଏହି ଶୈକ୍ଷିକ ପରମ୍ପରା ସାରା ଦେଶରେ ପରିବ୍ୟାପ୍ତ ହୋଇ ଚାଲୁ ରହିଥାନ୍ତା ତେବେ ସମ୍ଭବତଃ ଆମ ଦେଶ ପୃଥିବୀରେ ଅଦ୍ୱିତୀୟ ସ୍ଥାନ ନେଇଥାନ୍ତା । କିନ୍ତୁ ହାୟ ! ଭାରତବର୍ଷରୁ ବୌଦ୍ଧଧର୍ମକୁ ଲୋପ କରାଗଲା ଓ ବୌଦ୍ଧ ବିହାର ଓ ଗୁରୁକୁଳମାନଙ୍କୁ ଧ୍ୱଂସ କରାଗଲା । ସେ ସମୟରେ ଧାର୍ମିକ ଅସହିଷ୍ଣୁତା ପାଖରେ ଏକ ମାନବବାଦୀ ଅହିଂସ ଧର୍ମ ନିଜକୁ ରକ୍ଷା କରିପାରିଲା ନାହିଁ । ସେହିପରି ସେ ଯୁଗରେ ବିଜ୍ଞାନଭିତ୍ତିକ ଲୋକାୟତ ଦର୍ଶନକୁ ମଧ୍ୟ ନଷ୍ଟ କରାଗଲା ଓ ଚାର୍ବାକଙ୍କର ସମସ୍ତ କୃତିକୁ ଧ୍ୱଂସ କରାଗଲା । ତେବେ ବୌଦ୍ଧଧର୍ମ ଓ ଦର୍ଶନ ଯେହେତୁ ଚୀନ, ଜାପାନ, ତିବତ୍, କୋରିଆ, ସିଙ୍ଗାପୁର, ଶ୍ରୀଲଙ୍କା ଇତ୍ୟାଦି ରାଷ୍ଟ୍ରମାନଙ୍କୁ ପ୍ରସାରିତ ହୋଇଥିଲା; ବୌଦ୍ଧଧର୍ମ ଏକ ଜୀବନ୍ତ ଧର୍ମ ଓ ଏକ ଉଚ୍ଚାଙ୍ଗ ଦର୍ଶନ ଭାବରେ ତିଷ୍ଠି ରହିଲା । କେତେକ ଐତିହାସିକଙ୍କ ମତରେ ବୌଦ୍ଧଧର୍ମ ଯେଉଁ ଦେଶକୁ ଯାଇଛି ସେଠାରେ ଜୀବନର ମାନ ଉନ୍ନତ ହୋଇଛି । ପରିତାପର ବିଷୟ ଭାରତବର୍ଷରୁ ଏହି ଧର୍ମ ଲୋପପାଇଲା ।

ସୁଖର କଥା ଭାରତ ସରକାର ରାଜଗିର ପାଖରେ ଏକ ଆନ୍ତର୍ଜାତିକ ବିଶ୍ୱବିଦ୍ୟାଳୟ ଅନ୍ୟାନ୍ୟ ଦେଶମାନଙ୍କ ସହଯୋଗରେ ସ୍ଥାପନ କରିବାକୁ ଯାଉଛନ୍ତି । ଦର୍ଶନ କଂଗ୍ରେସରେ ଯୋଗଦେବା ଅବସରରେ ନାଳନ୍ଦା ଓ ବୋଧଗୟାର ଅନୁଭୂତି ସ୍ମୃତିରେ ସ୍ମରଣୀୟ ହୋଇରହିଲା ।

(ପ୍ରଗତିବାଦୀ, ୧୭.୦୨.୨୦୧୬)

# ନବଜନ୍ମର ସ୍ୱପ୍ନ

ଚିନ୍ତା-ଚେତନାର ବିକାଶ ପରଠାରୁ ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ, ନୀତି-ଅନୀତି ଇତ୍ୟାଦି ପାର୍ଥକ୍ୟକୁ ନେଇ ବିଚାର ପ୍ରକାଶ ପାଇଛି। ସଭ୍ୟତା ଯେତିକି ଆଗକୁ ଯାଇଛି ମଣିଷର ସାମାଜିକ ଚେତନା ସେତେ ଅଧିକ ପରିବ୍ୟାପ୍ତ ହୋଇଛି। ଧୀରେ ଧୀରେ ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ବ୍ୟକ୍ତି, ପରିବାରଠାରୁ ଗୋଷ୍ଠୀ, ରାଷ୍ଟ୍ର ସ୍ତରକୁ ପ୍ରସାରିତ ହୋଇଛି। ସାମାଜିକ ବିକାଶଧାରାରେ ନ୍ୟାୟ, ନୀତିବୋଧ, ମାନବିକ ଶ୍ରେୟ, ସମତାର ଭାବନା ସମାଜରେ ଉଦ୍ଭବ ହୋଇଛି। ସାହିତ୍ୟ, ଧର୍ମ, ଦର୍ଶନ, ରାଜନୈତିକ ଆଦର୍ଶ ମାଧ୍ୟମରେ ମହତ୍ତର ଜୀବନବୋଧର ବାର୍ତ୍ତା ସମାଜରେ ଦୃଢ ଭିତ୍ତି ନେଇଛି। ଜୀବନର ପ୍ରେୟ ଓ ଶ୍ରେୟ ନେଇ ବିଚାର ବିମର୍ଶ ସୃଷ୍ଟି ହୋଇଛି। ସଭ୍ୟତାର କ୍ରମବିକାଶ ପ୍ରକ୍ରିୟାରେ କେତେ କେତେ ରାଜନୈତିକ ବିଚାର, ଅର୍ଥନୈତିକ ଆଦର୍ଶ, ସାଂସ୍କୃତିକ ପରିବେଶ ମଣିଷର ବୌଦ୍ଧିକ ଓ ନୈତିକ ଦିଗନ୍ତକୁ ପ୍ରସାରିତ କରିପାରିଛି। ସେହି ବିକାଶ ପ୍ରକ୍ରିୟାରେ ନୀତି, ନୈତିକତା, ନ୍ୟାୟ ନେଇ ବିଭିନ୍ନ ବିଚାର ବୌଦ୍ଧିକ ସୃଜନଶୀଳତା ମଧ୍ୟ ଦେଇ ସମାଜ ପାଇଁ ଆଦର୍ଶ ପାଲଟିଛି। ସମାଜ ଯେତିକି ସୁବ୍ୟବସ୍ଥିତ ହୋଇଛି ସେହି ପ୍ରକ୍ରିୟାରେ ବିଭିନ୍ନ ସାମାଜିକ ସଙ୍ଗଠନମାନଙ୍କର ଭିତ୍ତି ଦୃଢ ହେବାରେ ଲାଗିଛି।

ସଭ୍ୟତାର କ୍ରମବିକାଶର ଇତିହାସକୁ ଗଭୀର ଭାବେ ଅନୁଶୀଳନ କରିଥିବା କେତେକ ଦାର୍ଶନିକ ମତ ଦେଇଥାନ୍ତି ଯେ ବହୁ ଅନ୍ୟାୟ ଓ ଅତ୍ୟାଚାର ସାମାଜିକ ଜୀବନଧାରାରେ ସର୍ବଦା ପରିଦୃଶ୍ୟ ହୋଇଥାଏ। ହିଂସା, ଯୁଦ୍ଧ, ବିଭୀଷିକା, ଅତ୍ୟାଚାର, ଶୋଷଣ, ଭେଦଭାବ ଇତ୍ୟାଦି ମନ୍ଦ ସ୍ଥିତିରୁ ସମାଜ କେବେ ହେଲେ ସଂପୂର୍ଣ୍ଣ ମୁକ୍ତ ହୋଇ ନାହିଁ। ରୋଗ, ବ୍ୟାଧି, ଜରା, ପ୍ରାକୃତିକ ବିପର୍ଯ୍ୟୟ ଏସବୁ ତ ଜୀବନ ସହ ଅଙ୍ଗାଙ୍ଗୀ ଭାବେ ଜଡିତ। ତେବେ ଏସବୁ ପ୍ରାକୃତିକ ପ୍ରତିକୂଳତା ସହିତ ମାନବିକ କ୍ରୂରତା, ଶୋଷଣ ଓ ଅନ୍ୟାୟ ସାମାଜିକ ଜୀବନପ୍ରବାହକୁ ସର୍ବଦା ଆକ୍ରାନ୍ତ କରି ଆସିଛି। କୌଣସି ସମୟରେ ଏକ ନ୍ୟାୟପୂର୍ଣ୍ଣ, ସମତାଭିତ୍ତିକ ଓ ସକଳ ଭେଦଭାବରହିତ ବିଶ୍ୱସମୁଦାୟ ସୃଷ୍ଟି ହୋଇ ନାହିଁ। ମଣିଷ ସମାଜରୁ ସକଳ ଅନ୍ୟାୟର ବିଲୋପ ସମ୍ଭବ ହୋଇ ନାହିଁ। କିଛି ବ୍ୟକ୍ତି ସର୍ବଦା ଦୁର୍ଦ୍ଦଶା ଭିତରେ କାଳାତିପାତ କରି ଆସିଛନ୍ତି।

ସମାଜର ପ୍ରଚଳିତ ଅନ୍ୟାୟ, ଶୋଷଣର ବିଲୋପ ପାଇଁ କିଛି ଚିନ୍ତା ଚେତନା ପ୍ରକାଶ ପାଇଛି । ସଭ୍ୟତାର କେତେକ ମହାକାଂକ୍ଷୀ ବ୍ୟକ୍ତି ସେମାନଙ୍କ ସମସାମୟିକ ସମାଜର ଅନ୍ୟାୟ, ଶୋଷଣ ବିରୁଦ୍ଧରେ ସ୍ୱର ଉଠାଇଛନ୍ତି ଓ ଜନଚେତନାକୁ ଜାଗ୍ରତ କରିଛନ୍ତି । ତେବେ ଏକ ପରିପୂର୍ଣ୍ଣ ନ୍ୟାୟଭିତ୍ତିକ ସମାଜର ବାସ୍ତବ ରୂପାୟନ ପାଇଁ ସେମାନେ ସ୍ୱପ୍ନ ଦେଖି ନାହାନ୍ତି ବରଂ ନିଜ ପରିସରରେ ରହିଥିବା ଘୋର ଅନ୍ୟାୟ ଓ ଅମାନବିକ ବ୍ୟବସ୍ଥାକୁ ଦୂର କରିବା ପାଇଁ ସେମାନେ ଗଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି । ସେମାନେ ନିଜର ଶକ୍ତି, ସାମର୍ଥ୍ୟ ମଧ୍ୟ ଦେଇ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି ଓ ସମାଜକୁ ଦିଗ୍‌ଦର୍ଶନ ଦେଇଛନ୍ତି ।

ନାନା ପ୍ରାକୃତିକ, ଐତିହାସିକ ଓ ସାମାଜିକ କାରଣରୁ ମାନବଜାତି ସର୍ବଦା ବିଭାଜିତ ହୋଇ ରହିଛି । ଭାଷା, ଧର୍ମ, ବର୍ଣ୍ଣ, ଲିଙ୍ଗ, ଜାତୀୟତା ଇତ୍ୟାଦି ଆଧାରରେ ମଣିଷ ସମାଜ ବିଭାଜିତ ହୋଇଆସିଛି । ଅତୀତରେ ପୃଥକ୍ ପୃଥକ୍ ଗୋଷ୍ଠୀ ଭିତରେ ବିଭିନ୍ନ କାରଣକୁ ନେଇ ସାମାଜିକ ତିକ୍ତତା ସୃଷ୍ଟି ହୋଇଛି । ଏପରିକି ଏକ ସମଜାତୀୟ ଗୋଷ୍ଠୀରେ ଅନ୍ୟ କାରଣକୁ ନେଇ ବିଭାଜନ ଓ ବିଦ୍ୱେଷ ସୃଷ୍ଟି ହୋଇଛି । ଜାତୀୟତା ମାନଦଣ୍ଡରୁ ଗୋଟିଏ ରାଷ୍ଟ୍ରର ଜନଗଣ ସମସଂପର୍କିତ ହେଲେ ବି ଧର୍ମ, ଭାଷା, ଲିଙ୍ଗ, ସାକ୍ଷରତା, ଆର୍ଥିକ ସ୍ଥିତି ଇତ୍ୟାଦି ନାନା କାରଣରୁ ସେମାନେ ବିଭାଜିତ ହୋଇପାରନ୍ତି । ସମସ୍ତ ମହିଳା ଲିଙ୍ଗଗତ କାରଣରୁ ସମାନ ହେଲେ ବି ସେମାନେ ଅନ୍ୟ କାରଣରୁ ବହୁଧା ବିଭକ୍ତ ହୋଇପାରନ୍ତି । ଧାର୍ମିକ ବିଶ୍ୱାସ ଦୃଷ୍ଟିରୁ ସବୁ ହିନ୍ଦୁ କିମ୍ବା ସବୁ ମୁସଲମାନ ଏକ ଅସ୍ମିତା ବହନ କରୁଥିଲେ ବି ଅନ୍ୟ ନାନା କାରଣରୁ ସେମାନେ ବହୁଧା ବିଭକ୍ତ ହେବା ସ୍ୱାଭାବିକ ମନେହୁଏ । ତେବେ କୌଣସି କାରଣକୁ ଆଧାର କରି ଗୋଷ୍ଠୀ ଗୋଷ୍ଠୀ ଭିତରେ ତିକ୍ତତା ଓ ବିଦ୍ୱେଷର ବାତାବରଣ ସର୍ବଦା ଲାଗି ରହିଛି । ବିଭେଦତାରୁ ବିଦ୍ୱେଷ ଓ ବିଦ୍ୱେଷରୁ ହିଂସା, ପ୍ରତିହିଂସାର ମନୋଭାବ ସୃଷ୍ଟି ହୋଇଛି । ପରିଣାମତଃ ସଭ୍ୟତାର ଇତିହାସରେ ଅସଂଖ୍ୟ ଯୁଦ୍ଧ, ନାରକୀୟ ଘଟଣା ଓ କେତେ କେତେ ଅନ୍ୟାୟ ଜନଜୀବନକୁ ଭାରାକ୍ରାନ୍ତ କରି ରଖିଛି ।

ସାମାଜିକ ଭେଦଭାବ, ଅନ୍ୟାୟ, ଶୋଷଣ ଓ ତିକ୍ତତାକୁ ଦୂର କରାଯାଇ ଏକ ପ୍ରୀତିପୂର୍ଣ୍ଣ ମାନବିକ ସମ୍ବନ୍ଧ ସବୁ ମଣିଷଙ୍କ ଭିତରେ ପ୍ରତିଷ୍ଠା କରିବା ପାଇଁ କେତେ କେତେ ପ୍ରୟାସ ବହୁ ଅତୀତରୁ ବିଭିନ୍ନ ଭୂଖଣ୍ଡରେ ଓ ବିଭିନ୍ନ ସ୍ତରରେ ହୋଇଆସୁଛି । ଗୋଟିଏ ସମୟରେ

ବର୍ଣ୍ଣଗତ ଓ ଜାତିଗତ ବୈଷମ୍ୟ କେତେକ ସମାଜରେ ଉତ୍କଟ ହୋଇ ରହିଥିଲା । ସେହି ପରିସ୍ଥିତିର ପରିବର୍ତ୍ତନ ପାଇଁ କେତେକ ନ୍ୟାୟପ୍ରାଣ ବ୍ୟକ୍ତି ନିଜର ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଥିଲେ । ସେହିପରି ଅର୍ଥନୈତିକ ଶୋଷଣ ଯେତେବେଳେ ସମାଜକୁ ଭାଗ ଭାଗ କରିଛି ଓ ମୁଷ୍ଟିମେୟ ଗୋଷ୍ଠୀ ଏକ ବୃହତ୍ତର ଗୋଷ୍ଠୀକୁ ଶୋଷଣ କରିଛନ୍ତି ତାହା ବିରୋଧରେ ପ୍ରତିବାଦ ଓ ବିପ୍ଳବ ହୋଇଛି । ସମାଜରେ ସାମନ୍ତବାଦୀ ଗୋଷ୍ଠୀ ସର୍ବହରା ଗୋଷ୍ଠୀକୁ ଶୋଷଣ କରି ଆସିଛନ୍ତି ଓ ଏହାର ପରିବର୍ତ୍ତନ ପାଇଁ କେଉଁଠି ହିଂସାତ୍ମକ ବା ଅନ୍ୟ ଭାବରେ ବିପ୍ଳବର ସ୍ୱର ଉଠିଛି । କ୍ଷମତାସୀନ ଲୋକମାନେ ଏକଛତ୍ରବାଦରେ ଜନଗଣଙ୍କୁ ନାନା ଭାବରେ ଶୋଷଣ କରି ଆସିଛନ୍ତି । ଆହୁରି ବିଡମ୍ବନାର ବିଷୟ ଅନ୍ୟାୟ, ଶୋଷଣ ଓ ଭେଦଭାବକୁ ଦୃଢ କରିବା ପାଇଁ ଧର୍ମକୁ ବେଳକେ ଆୟୁଧ କରାଯାଇଛି । ମାନବିକ ଭିନ୍ନତାକୁ ଏକ ଦୈବୀବିଧାନ ବୋଲି କିଛି ଚତୁର ଲୋକ ବିଚାର ସୃଷ୍ଟି କରିଛନ୍ତି । ସବୁ ଆଙ୍ଗୁଠିକୁ ଈଶ୍ୱର ସମାନ କରି ନାହାନ୍ତି, ସେହିପରି ସବୁ ବ୍ୟକ୍ତି କେବେ ସମାନ ମର୍ଯ୍ୟାଦାର ଅଧିକାରୀ ହୋଇପାରିବେ ନାହିଁ ବୋଲି ଯୁକ୍ତି ପ୍ରକାଶ ପାଇଛି । ଅନ୍ୟକୁ ନ୍ୟୂନ କରିବା ପାଇଁ ବା ଅନ୍ୟାୟ ବିରୋଧରେ ଅନ୍ୟର ସ୍ୱରକୁ ପ୍ରତିହତ କରିବା ପାଇଁ ପାରଲୌକିକ ବିଶ୍ୱାସ ଓ ଧାର୍ମିକ ଆବେଗ ଅତୀତରେ ବଳିଷ୍ଠ ସାଧନ ହୋଇପାରିଛି । ବସ୍ତୁତଃ ମାନବ ସଭ୍ୟତାର ଇତିହାସରେ କେତେ କେତେ ଅନ୍ୟାୟ, ଶୋଷଣ, କ୍ରୂରତା ଓ ଅମାନବିକତାର କାହାଣୀ ରହିଛି ।

ସଭ୍ୟତା ଯେତେ ଅଗ୍ରସର ହେଲେ ମଧ୍ୟ ବିଭିନ୍ନ ସମାଜରେ ନାନା ସଙ୍କଟ ରହିଆସିଛି । ବିଜ୍ଞାନର ଯୁଗ ଆସିବା ପୂର୍ବରୁ ବହୁ ରୋଗ ଯନ୍ତ୍ରଣା, ମହାମାରୀ, ଦୁର୍ଭିକ୍ଷ ଓ ଅନାଟନ ବିଭିନ୍ନ ସମୟରେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସମୟ ବ୍ୟବଧାନରେ ସୃଷ୍ଟି ହେଉଥିଲା । ମହାମାରୀ ଗଣମୃତ୍ୟୁର କାରଣ ହେଉଥିଲା । ଜନସଂଖ୍ୟାରେ ବିଶେଷ ଅଭିବୃଦ୍ଧି ହେଉନଥିଲା । ସାମନ୍ତବାଦ, ରାଜତନ୍ତ୍ର ଯୁଗରେ ଦାରିଦ୍ର୍ୟର କରାଳ ଛାୟା ବହୁ ଭୂଖଣ୍ଡରେ ଦେଖିବାକୁ ମିଳୁଥିଲା । ଜୀବନ ଅତ୍ୟନ୍ତ ବିପଦସଙ୍କୁଳ ଥିଲା ଓ ଆଜିର ତୁଳନାରେ ମଣିଷ ଏତେ ବର୍ଷ ବଞ୍ଚିପାରୁ ନଥିଲା । ତେବେ ବିଜ୍ଞାନର ଯୁଗ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହେଲା । ବିଜ୍ଞାନ ପ୍ରକୃତିର ବହୁ ରହସ୍ୟକୁ ଧୀରେ ଧୀରେ ଜାଣିବାକୁ ସମର୍ଥ ହେଲା । ବିଜ୍ଞାନର ଯୁଗ ଆସିବାର ଦୁଇ ଶହ ବର୍ଷ ପରେ ପ୍ରଯୁକ୍ତିର ଯୁଗ ଆସିଲା । ବୈଜ୍ଞାନିକ ସିଦ୍ଧାନ୍ତ ଓ ପ୍ରାକୃତିକ ନିୟମର ପ୍ରୟୋଗଦ୍ୱାରା ବହୁ ଯନ୍ତ୍ରପାତି ପ୍ରସ୍ତୁତ କରିବାର ଜ୍ଞାନ ଆସିଲା । ସେହି ପ୍ରାଯୁକ୍ତିକ ଜ୍ଞାନରୁ ଶିଳ୍ପ ବିପ୍ଳବ ୟୁରୋପରେ ସମ୍ଭବ ହେଲା । ଏହା ଫଳରେ ଉତ୍ପାଦନ ବହୁ ଗୁଣରେ ବୃଦ୍ଧି

ପାଇଲା ଓ କୃଷିଭିତ୍ତିକ ଗ୍ରାମୀଣ ସମାଜ ରୂପାନ୍ତରିତ ହେବାକୁ ଲାଗିଲା । ବଡ ବଡ ସହରମାନ ସୃଷ୍ଟି ହେଲା ଓ ଅର୍ଥନୈତିକ ସ୍ତରରେ ପୁଞ୍ଜିବାଦ ମୁଣ୍ଡ ଟେକିଲା । ଏହି ପ୍ରକ୍ରିୟାରେ ସାମ୍ରାଜ୍ୟବାଦର ବିସ୍ତାର ହେଲା । ପୁଞ୍ଜିବାଦ, ସାମ୍ରାଜ୍ୟବାଦ ଅର୍ଥନୈତିକ ଶୋଷଣକୁ ଦୃଢ଼ କରିବା ସହ ଏକ ବୈଷମ୍ୟପୂର୍ଣ୍ଣ ପରିବେଶକୁ ଉଦ୍ରେକ କରାଇଲା । ସେହିପରି ସାମ୍ରାଜ୍ୟବାଦର ବିସ୍ତାର ପାଇଁ ଦେଶ ଦେଶ ମଧ୍ୟରେ ଯୁଦ୍ଧର ବିଭୀଷିକା ଉଗ୍ର ରୂପ ନେବାକୁ ଲାଗିଲା । ବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ମାନବ ସମାଜ ନାନା ଭାବରେ ରକ୍ତରଞ୍ଜିତ ହେବାର କାହାଣୀ ସୁବିଦିତ । ଧୀରେ ଧୀରେ ଏସବୁ ପରିବେଶ ବିରୁଦ୍ଧରେ ବିଭିନ୍ନ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଜାଗରଣ ସୃଷ୍ଟି ହେଲା । ରାଜନୈତିକ ଦୃଶ୍ୟପଟରେ ଗଣତନ୍ତ୍ର ଏକ ଉନ୍ନତ ଲୋକାଭିମୁଖୀ ଶାସନ ବ୍ୟବସ୍ଥା ବୋଲି ଗୋଟିଏ ସମୟରେ ଏକ କ୍ରାନ୍ତିକାରୀ ବିଚାର ଥିଲା । ସମତା, ସ୍ୱାଧୀନତା ଓ ଭ୍ରାତୃତ୍ୱଭାବ ଗଣତାନ୍ତ୍ରିକ ବିଚାରବୋଧର ମୂଳମନ୍ତ୍ର କୁହାଗଲା । ଅର୍ଥନୈତିକ ଦୃଶ୍ୟପଟରେ ସମାଜବାଦ ଓ ସାମ୍ୟବାଦ କେତେ ନୂଆ ସ୍ୱପ୍ନ ସୃଷ୍ଟି କରିଥିଲା । ଏକ ଶୋଷଣହୀନ, ସମତାଭିତ୍ତିକ ଓ ଜନମଙ୍ଗଳକାରୀ ରାଷ୍ଟ୍ରର ପରିକଳ୍ପନା ଅନ୍ୟ ଏକ ବୈପ୍ଳବିକ ବିଚାରର ସୂତ୍ରପାତ କରିଥିଲା । ପୁନଶ୍ଚ ମାନବବାଦ ଏକ ମହତ୍ତର ମୂଲ୍ୟବୋଧ ଭାବରେ ମାନବିକ ଶ୍ରେୟ ସାଧନ ପାଇଁ କେତେ ସମ୍ଭାବନାର ଦିଗନ୍ତ ସୃଷ୍ଟି କରିଥିଲା । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ, ଶିକ୍ଷା, ସ୍ୱାସ୍ଥ୍ୟସେବା, ସ୍ୱାବଲମ୍ବନଶୀଳତା ଓ ରାଜନୈତିକ ଅଧିକାର ନେଇ ସମଗ୍ର ପୃଥିବୀରେ ସଚେତନତା ପ୍ରକାଶ ପାଇବାକୁ ଲାଗିଲା । ଏସବୁ ସହିତ ପୃଥିବୀରେ ଆନ୍ତର୍ଜାତିକ ମନୋଭାବ ଓ ବିଶ୍ୱଦୃଷ୍ଟିର ବାତାବରଣ ଧୀରେ ଧୀରେ ରୂପନେବାକୁ ଲାଗିଲା । ଜାତିସଂଘ ଓ ବହୁ ଆନ୍ତର୍ଜାତିକ ସଙ୍ଗଠନ ଏକ ସୁନ୍ଦର ପୃଥିବୀ ଓ ଭ୍ରାତୃତ୍ୱପୂର୍ଣ୍ଣ ମାନବ ସମାଜ ଗଠନ ଦିଗରେ ନିଜର ସଂପୃକ୍ତି ବ୍ୟକ୍ତ କରିବା ସଭ୍ୟତାର ଇତିହାସରେ ଏକ ବଡ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଶ୍ୱ ଦୃଶ୍ୟପଟରେ ମୁଷ୍ଟିମେୟ ମହାକାଂକ୍ଷୀ ବ୍ୟକ୍ତି ବିଭିନ୍ନ ସମୟରେ ଅନ୍ୟାୟରହିତ ସମାଜର ପରିକଳ୍ପନା କରିଛନ୍ତି । ନିଜ ସମୟର ଯୁଗଯନ୍ତ୍ରଣା ଓ ଅନ୍ୟାୟକୁ ଦୂର କରିବା ପାଇଁ ସକାରାତ୍ମକ ବିଚାର ଓ ମାନବଧର୍ମୀ ମୂଲ୍ୟବୋଧର ବିଚାର ଦେଇଛନ୍ତି । ସେହି ସବୁ ମହତ୍ତର ଭାବନାମାନଙ୍କୁ ଆଧାର କରି ଚିନ୍ତାରାଜ୍ୟରେ ଅଭିନବ ଓ ମାନବହିତୈଷୀ ଜୀବନଦୃଷ୍ଟିର ବାର୍ତ୍ତା ପ୍ରଚାରିତ ହେବାରେ ଲାଗିଛି । କେତେକ ସକାରାତ୍ମକ ଓ ମାନବବାଦୀ ବିଚାର ସତ୍ତ୍ୱେ ତଥାପି ଆମ ସଂସାରରେ ଅନେକ ମନ୍ଦସ୍ଥିତି ରହିଛି । ସନ୍ତ୍ରାସବାଦ, ସାମ୍ପ୍ରଦାୟିକତା, ନବସାମ୍ରାଜ୍ୟବାଦ

ଓ କେତେକ ସ୍ତରରେ ଅସହିଷ୍ଣୁତା ସାଂପ୍ରତିକ ସମୟର କେତେକ ବିଭେଦକାରୀ ଭାବନା ଏବେ ବି ମାନବ ସମାଜରେ କାୟା ବିସ୍ତାରକରି ରହିଛି। ସେହିପରି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଅବିଶ୍ୱାସର ବାୟୁମଣ୍ଡଳ ପୃଥିବୀରେ କେତେକ ଅଞ୍ଚଳରେ ଉତ୍ତେଜନାର ବାତାବରଣ ସୃଷ୍ଟି କରୁଛି। ଏହି ସବୁ ପରିସ୍ଥିତିର ପରିବର୍ତ୍ତନଦ୍ୱାରା ଏକ ସୁନ୍ଦର ବିଶ୍ୱ ଯେ ସମ୍ଭବ ହେବ ଏହି ସମ୍ଭାବନା ବିଜ୍ଞାନ ସୃଷ୍ଟି କରିବାକୁ ସମର୍ଥ ହୋଇଛି। ବିଜ୍ଞାନ ସହ ବିଚାରଶୀଳ ଦୃଷ୍ଟି ଓ ମାନବବାଦର ସମନ୍ୱୟ ହେଲେ ସମ୍ଭବତଃ ଏକ ନୂତନ ବିଶ୍ୱ ରୂପରେଖ ନେଇପାରିବ। ଅନ୍ତତଃ ମାନବିକ କ୍ରୂରତା ଓ ଶୋଷଣର ପରିସମାପ୍ତି ଘଟିଲେ ସଭ୍ୟତାର ଏକ ସାଂସ୍କୃତିକ ଉତ୍ତରଣ ସମ୍ଭବ ହେବ। ହେତୁବାଦ ଚିନ୍ତାରାଜ୍ୟରେ ଏହି ବିଚାର ଆଲୋଡନ ସୃଷ୍ଟି କରିଆସୁଛି। ବିଚାରଶୀଳତା, ବିଜ୍ଞାନ ଓ ମାନବବାଦର ସମନ୍ୱୟ ହିଁ ବିଶ୍ୱ ଦୃଶ୍ୟପଟରୁ ସକଳ ମନ୍ଦସ୍ଥିତି ବା ଇଭିଲକୁ ଦୂର କରି ଏକ ସୁନ୍ଦର ବିଶ୍ୱ ନିର୍ମାଣରେ ନିର୍ଣ୍ଣାୟକ ଭୂମିକା ନେଇପାରିବ। ଏହା ସମ୍ଭବ ହେଲେ ମାନବ ସମୁଦାୟର ନବଜନ୍ମ ହେବ।

(ପ୍ରଗତିବାଦୀ, ୨୭.୦୪.୨୦୧୬)

# ସନ୍ତ୍ରାସବାଦର ସ୍ୱରୂପ

**ସାଂ**ପ୍ରତିକ ଜୀବନଧାରାରେ ଘଟୁଥିବା କେତେକ ଘଟଣାମାନଙ୍କୁ ସନ୍ତ୍ରାସବାଦୀ କାର୍ଯ୍ୟ କୁହାଯାଉଛି । ସନ୍ତ୍ରାସବାଦ ଏପରି ବହୁବିଧ ଘଟଣାମାନଙ୍କୁ ବୁଝାଯାଉଛି ଯଦ୍ୱାରା ସନ୍ତ୍ରାସବାଦର ଏକ ଯଥାର୍ଥ ସଂଜ୍ଞା ନିରୂପଣ କରିବା କଷ୍ଟସାଧ୍ୟ ମନେହୁଏ । ରାଷ୍ଟ୍ରୀୟ ଦମନ, ସୀମାପାର ଆତଙ୍କବାଦ, ସର୍ବସାଧାରଣଙ୍କୁ ହତ୍ୟା, ଆତ୍ମହତ୍ୟା ପୂର୍ବକ ବିସ୍ଫୋରଣ, ଲ୍ୟାଣ୍ଡମାଇନ ବିସ୍ଫୋରଣ ଜନିତ ହତ୍ୟା, ସରକାରୀ କାର୍ଯ୍ୟାଳୟ ବା ଶିକ୍ଷାନୁଷ୍ଠାନ ଭିତରେ ନିରୀହ ଲୋକମାନଙ୍କୁ ହତ୍ୟା, ବିମାନ ଅପହରଣ ଇତ୍ୟାଦି ବହୁବିଧ ଘଟଣାମାନଙ୍କୁ ସନ୍ତ୍ରାସବାଦୀ କାର୍ଯ୍ୟ କୁହାଯାଉଛି । ଯେଉଁମାନେ ଏହି ପ୍ରକାର କାର୍ଯ୍ୟରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସଂପୃକ୍ତ ସେମାନେ ସନ୍ତ୍ରାସବାଦୀ ବୋଲି ବିବେଚିତ ହେଉଛନ୍ତି ।

ସନ୍ତ୍ରାସବାଦ ସୁତରାଂ ମୁଖ୍ୟତଃ ଏକ ହିଂସାତ୍ମକ ଅଭିବ୍ୟକ୍ତିକୁ ବୁଝାଯାଉଛି । କୌଣସି ଲକ୍ଷ୍ୟ ହାସଲ ପାଇଁ ଯେତେବେଳେ ହିଂସାତ୍ମକ ପନ୍ଥାର ଆଶ୍ରୟ ନିଆଯାଇ ବୃହତ୍ତର ସମାଜ ବା ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଉଛି ତାହାକୁ ସନ୍ତ୍ରାସବାଦ ଆଖ୍ୟା ଦିଆଯାଉଛି । କୌଣସି ରାଜନୈତିକ, ଧାର୍ମିକ, ସାଂସ୍କୃତିକ ବା ଅର୍ଥନୈତିକ କାରଣରୁ ପ୍ରତିହିଂସା-ପରାୟଣ ହୋଇ ହିଂସାତ୍ମକ କାର୍ଯ୍ୟଦ୍ୱାରା ସମାଜରେ ଆଲୋଡନ ସୃଷ୍ଟି କରିବାକୁ ସନ୍ତ୍ରାସବାଦ କୁହାଯାଉଛି । ସନ୍ତ୍ରାସବାଦୀମାନେ କେତେକ ହିଂସାତ୍ମକ କୌଶଳ ଅବଲମ୍ବନ କରି ସମାଜରେ ଏକ ଭୟ ଓ ଅସ୍ଥିରତାର ବାତାବରଣ ସୃଷ୍ଟି କରିବା ମନେହୁଏ । ଏଥିରେ ବ୍ୟକ୍ତି, ଗୋଷ୍ଠୀ ବା କୌଣସି ରାଜନୈତିକ ସଙ୍ଗଠନ ସଂପୃକ୍ତ ହେବା ଦେଖାଯାଏ । ତେଣୁ ସନ୍ତ୍ରାସବାଦୀ କାର୍ଯ୍ୟ ମୁଖ୍ୟତଃ ଏକ ହିଂସାତ୍ମକ ଅଭିବ୍ୟକ୍ତିକୁ ବୁଝାଯାଏ ଯାହା ପଶ୍ଚାତରେ କିଛି ଲକ୍ଷ୍ୟ ନିହିତ ଥାଏ ଓ ଯାହାଦ୍ୱାରା ସମାଜରେ ଆଲୋଡନ ସୃଷ୍ଟି କରାଯାଏ ।

ସନ୍ତ୍ରାସବାଦ ମୁଖ୍ୟତଃ ଏକ ହିଂସାତ୍ମକ କାର୍ଯ୍ୟ ହୋଇଥିବାରୁ ଏକ ଅସାମାଜିକ ଓ ଏକ ଅପରାଧମୂଳକ କାର୍ଯ୍ୟ । ସନ୍ତ୍ରାସବାଦ ଏକ ଅସାମାଜିକ କାର୍ଯ୍ୟ ହେଲେ ବି ପ୍ରତ୍ୟେକ ଅସାମାଜିକ କାର୍ଯ୍ୟକୁ ସନ୍ତ୍ରାସବାଦୀ କାର୍ଯ୍ୟ କୁହାଯାଇ ପାରିବ ନାହିଁ । ପ୍ରତ୍ୟେକ ସମାଜରେ କିଛି

ଅସାମାଜିକ ବା ଅପରାଧମୂଳକ ଘଟଣା ଘଟିବା ଏକ ସାଧାରଣ ଘଟଣା । ଚୋରି, ଦୁଷ୍କର୍ମ, ଅପହରଣ କାର୍ଯ୍ୟ ସାଧାରଣତଃ ଅପରାଧମୂଳକ, କିନ୍ତୁ ଏସବୁକୁ ସନ୍ତ୍ରାସବାଦୀ କାର୍ଯ୍ୟ କୁହାଯାଏ ନାହିଁ । ପ୍ରତ୍ୟେକ ଅସାମାଜିକ କାର୍ଯ୍ୟ ଆଇନ ପରିସରରେ ଦଣ୍ଡନୀୟ, କିନ୍ତୁ ପ୍ରତ୍ୟେକ ଅସାମାଜିକ ବା ଅପରାଧମୂଳକ କାର୍ଯ୍ୟ ଏକ ସନ୍ତ୍ରାସବାଦୀ କାର୍ଯ୍ୟ ନୁହେଁ । ସନ୍ତ୍ରାସବାଦୀ କାର୍ଯ୍ୟ ପଶ୍ଚାତରେ ଏକ ଗଭୀର ଅଭିସନ୍ଧି ଥାଏ ଓ ଏହାକୁ ସୁବ୍ୟବସ୍ଥିତ ଭାବେ କରାଯାଇ ଜନମାନସରେ ବା ସରକାରରେ ଏକ ଭୟର ବାତାବରଣ ସୃଷ୍ଟି କରାଯାଏ । ସନ୍ତ୍ରାସବାଦୀ କାର୍ଯ୍ୟଦ୍ୱାରା ବୃହତ୍ତର ଜନମାନସର ଦୃଷ୍ଟି ଆକର୍ଷଣ କରାଯାଏ । ଏଥିରେ କେବଳ ନିଷ୍ପୀଡିତ ବ୍ୟକ୍ତି ଭୟର ଶିକାର ହୁଏ ନାହିଁ ବରଂ ସାମାଜିକ ଜୀବନରେ ଏକ ବଡ ଆଲୋଡନ ସୃଷ୍ଟି ହେବା ଦେଖାଯାଏ । ସନ୍ତ୍ରାସବାଦକୁ ଏକ ବିଦ୍ରୋହ ଭାବେ ନିଆଯାଇ ପାରିବ କି ? ସାଧାରଣତଃ ଏକ ବିଦ୍ରୋହ କ୍ଷେତ୍ରରେ ସରକାରକୁ ଆହ୍ୱାନ ଦିଆଯାଏ ଓ ସରକାରକୁ ପରିବର୍ତ୍ତନ କରିବା ବା ଶାସନ ବ୍ୟବସ୍ଥାରେ ଏକ ଉଲ୍ଲେଖନୀୟ ସଂସ୍କାର ଆଣିବା ବିଦ୍ରୋହାତ୍ମକ କାର୍ଯ୍ୟର ଲକ୍ଷ୍ୟ ଥାଏ । ସନ୍ତ୍ରାସବାଦରେ ସରକାରକୁ ଆହ୍ୱାନ ଦିଆଯାଏ ନାହିଁ । ଏକ ବିଦ୍ରୋହ କ୍ଷେତ୍ରରେ ସରକାର ସହ ଏକ ମୁକାବିଲାର ମନୋଭାବ ଥାଏ । ସନ୍ତ୍ରାସବାଦୀମାନେ ସରକାର ସହ ପ୍ରତ୍ୟକ୍ଷ ମୁକାବିଲା କରନ୍ତି ନାହିଁ । ସନ୍ତ୍ରାସବାଦୀମାନେ ହିଂସାତ୍ମକ ଗୁପ୍ତ କାର୍ଯ୍ୟଦ୍ୱାରା ସରକାରର ଦୃଷ୍ଟି ଆକର୍ଷଣ କରନ୍ତି ବା ସରକାରଙ୍କ ଆଭିମୁଖ୍ୟରେ ପରିବର୍ତ୍ତନ ଆଣିବାକୁ ଉଦ୍ୟମ କରନ୍ତି । ଏହି ସବୁ ଦୃଷ୍ଟିରୁ ବିଚାର କଲେ ଅପରାଧମୂଳକ କାର୍ଯ୍ୟ ଓ ବିଦ୍ରୋହାତ୍ମକ କାର୍ଯ୍ୟଠାରୁ ସନ୍ତ୍ରାସବାଦ ପୃଥକ୍ ମନେହୁଏ ।

ସନ୍ତ୍ରାସବାଦୀ କାର୍ଯ୍ୟରେ ମୁଖ୍ୟତଃ ଏକ ପ୍ରତିହିଂସାର ମନୋଭାବ ପ୍ରଚ୍ଛନ୍ନ ଭାବେ ରହିଥାଏ । ଦେଖାଯାଏ କିଛି ବ୍ୟକ୍ତି ବା ସଙ୍ଗଠନ ସେମାନଙ୍କ ପ୍ରତି ହୋଇଥିବା ଅନ୍ୟାୟ ବା ଅତ୍ୟାଚାର ନେଇ ସଚେତନ ହୁଅନ୍ତି ଓ ଏକ ପ୍ରତିହିଂସାମୂଳକ ମାନସିକତାଦ୍ୱାରା ପ୍ରଭାବିତ ହୋଇ ଆବଶ୍ୟକ ସୁଯୋଗ ପାଇଲେ ସନ୍ତ୍ରାସବାଦୀ କାର୍ଯ୍ୟରେ ଲିପ୍ତ ହୋଇଥାନ୍ତି । ଏହା ପଶ୍ଚାତରେ ଏକ ଅନୁଭବ ଥାଏ ଯେ ତାଙ୍କ ଗୋଷ୍ଠୀ ପ୍ରତି ଅନ୍ୟାୟ କରାଯାଉଛି କିମ୍ବା ସେମାନେ କିଛି ଶୋଷଣର ଶିକାର ହେଉଛନ୍ତି । ଏଥିରେ ସୁଧାର ଆଣିବା ପାଇଁ ସେମାନେ ଯେକୌଣସି ତ୍ୟାଗ ସହିବାକୁ ପ୍ରସ୍ତୁତ ହୁଅନ୍ତି ଓ ପରିଣାମ ସ୍ୱରୂପ ପ୍ରତିହିଂସା ପରାୟଣ ହୁଅନ୍ତି । କୌଣସି ଗୋଷ୍ଠୀ ଯଦି କୌଣସି କାରଣରୁ ସେମାନଙ୍କର ଅଧିକାର, ସମ୍ପତ୍ତି ଓ ସ୍ୱାଭିମାନରୁ ବଞ୍ଚିତ ହୁଅନ୍ତି ଓ ପରିସ୍ଥିତିରେ ଶାନ୍ତିପୂର୍ଣ୍ଣ ପ୍ରତିକାର ଆଣିବା ଏତେ ସହଜ ହୁଏ ନୁହେଁ ସେମାନେ ପ୍ରତିକ୍ରିୟାଶୀଳ ହୋଇ ସନ୍ତ୍ରାସବାଦୀ ହେବାର ସମ୍ଭାବନା ରହିଥାଏ । ସନ୍ତ୍ରାସବାଦୀମାନେ ଏପରି ଉଦ୍‌ବୁଦ୍ଧ ହୋଇଥାନ୍ତି ଯେ ତାଙ୍କ ଲକ୍ଷ୍ୟ ଦିଗରେ ତାଙ୍କ ଜୀବନ ତାଙ୍କ ପାଇଁ ବିଶେଷ ଗୁରୁତ୍ୱ ରଖେ ନାହିଁ । ପ୍ରତିହିଂସାତ୍ମକ

ମାନସିକତାରେ ଉଦ୍‌ବୁଦ୍ଧ ହେଲେ ନିଜ ଜୀବନକୁ ପଣ ଲଗାଇ ହିଂସା ସୃଷ୍ଟି କରିବାକୁ ସେମାନେ ବ୍ରତ ଭାବରେ ଗ୍ରହଣ କରନ୍ତି । ଯେଉଁମାନଙ୍କୁ ସେମାନେ ହତ୍ୟା କରନ୍ତି ସେମାନେ ତାଙ୍କର ବ୍ୟକ୍ତିଗତ ଶତ୍ରୁ ନୁହନ୍ତି, ବରଂ ଏହି କାର୍ଯ୍ୟ ଜରିଆରେ ସେମାନେ ଏକ ଗଭୀର ଅସନ୍ତୋଷ ପ୍ରତି ସାମାଜିକ ଦୃଷ୍ଟି ଆକର୍ଷଣ କରନ୍ତି । ହିଂସାଦ୍ୱାରା ଯେ ଭବିଷ୍ୟତରେ କେତେକ ସ୍ଥିତିରେ ପରିବର୍ତ୍ତନ ଆସିପାରିବ ସେହି ମାନସିକତାରୁ ସେମାନେ ଚରମ ପନ୍ଥା ଗ୍ରହଣ କରିନିଅନ୍ତି ।

ସନ୍ତ୍ରାସବାଦୀମାନେ ଏକ ଲକ୍ଷ୍ୟ ଦିଗରେ ଏକ ଉଦ୍‌ବୁଦ୍ଧ ଗୋଷ୍ଠୀ । ମନସ୍ତାତ୍ତ୍ୱିକ କାରଣରୁ ଦେଖିଲେ ନିଜ ଗୋଷ୍ଠୀର ସାମାଜିକ ଅସ୍ମିତା, ରାଷ୍ଟ୍ରୀୟତା ବା ଧାର୍ମିକ ଆବେଗଦ୍ୱାରା ସେମାନେ ଗଭୀର ଭାବେ ପ୍ରଭାବିତ । ଯଦି କୌଣସି କାରଣରୁ ଏକ ସାମାଜିକ ଗୋଷ୍ଠୀ କୌଣସି ଅନ୍ୟାୟ ବା ଭେଦଭାବର ଶିକାର ହୋଇଛନ୍ତି କିମ୍ୱା ରାଜନୈତିକ ପ୍ରକ୍ରିୟାରେ ନିଜର ଅସ୍ମିତା ହରାଉଛନ୍ତି ବୋଲି ଅନୁଭବ କରନ୍ତି, ସେଥିରୁ କିଛି ବ୍ୟକ୍ତି ପ୍ରାଣ ଦେଇ ଲଢିବାକୁ ଉଦ୍‌ବୁଦ୍ଧ ହୁଅନ୍ତି । ଯେତେବେଳେ ଏକ ପ୍ରତିହିଂସାର ମନୋଭାବ ବ୍ୟକ୍ତି ଚେତନାକୁ କବଳିତ କରେ, ସେତେବେଳେ ନ୍ୟାୟ-ଅନ୍ୟାୟ ବା ମାନବିକତାର ବିଚାର ରହେ ନାହିଁ । ସ୍ଥଳବିଶେଷରେ ଜାତୀୟତାବୋଧ ବ୍ୟକ୍ତିମାନଙ୍କୁ ଏକ ସରକାର ବିରୁଦ୍ଧରେ ସଂଗ୍ରାମ କରିବାକୁ ବା ସନ୍ତ୍ରାସବାଦରେ ଲିପ୍ତ ହେବାକୁ ପ୍ରେରଣା ଦେଇଥାଏ । ସେହିପରି ଧାର୍ମିକ ଆବେଗ ଏକ ବଳିଷ୍ଠ ଆବେଗ ଯାହାଦ୍ୱାରା ବ୍ୟକ୍ତି ପରିଚାଳିତ ହେଲେ ଅନ୍ୟ ଧର୍ମଗୋଷ୍ଠୀ ଉପରେ ଆକ୍ରମଣ ବା ହିଂସାତ୍ମକ କାଣ୍ଡ ସୃଷ୍ଟି କରିବାରେ ଉଦ୍‌ବୁଦ୍ଧ ହୁଏ । ଧାର୍ମିକ ଆବେଗକୁ ନେଇ ଜନଗଣଙ୍କୁ ଅକ୍ଳେଶରେ ପ୍ରଭାବିତ କରିବା ଓ ପ୍ରତିହିଂସାର ମନୋଭାବ ସୃଷ୍ଟି କରିବାର ଘଟଣା ଇତିହାସରେ ଦେଖାଯାଏ । ଏବେବି ରକ୍ଷଣଶୀଳ ସମାଜରେ ସେହି ମନୋଭାବ ଦୃଢ ରହିଛି । ଧାର୍ମିକ ଅସ୍ମିତା ଆଧାରରେ ସମାଜକୁ ଭାଗ ଭାଗ କରିବା, ଧର୍ମଗୋଷ୍ଠୀ ଭିତରେ ବିଦ୍ୱେଷର ମନୋଭାବ ସୃଷ୍ଟି କରିବା ସହଜ ହୋଇପାରୁଛି । ଗୋଟିଏ ଭାବନାରେ ଉଦ୍‌ବୁଦ୍ଧ ବ୍ୟକ୍ତି ବା ଗୋଷ୍ଠୀ ଭିତରେ ପ୍ରତିହିଂସାର ମନୋଭାବ ତୀବ୍ର ହେଲେ ସନ୍ତ୍ରାସବାଦ ଜନ୍ମ ନିଏ । ସନ୍ତ୍ରାସବାଦୀମାନେ ସ୍ଥଳବିଶେଷରେ ଏପରି ମାନସିକତା ପୋଷଣ କରନ୍ତି ଯେ ସେମାନେ ଏକ ମହତ୍ତର ଉଦ୍ଦେଶ୍ୟରେ ବା ଧର୍ମଯୁଦ୍ଧରେ ସାମିଲ ହେଉଛନ୍ତି । ସେଥିରେ ମୃତ୍ୟୁବରଣ କରିବା ସେମାନଙ୍କ ପାଇଁ ମର୍ଯ୍ୟାଦାର ପ୍ରଶ୍ନ । ଏକ ଭ୍ରମାତ୍ମକ ଆବେଗ ଓ ଗୋଷ୍ଠୀଗତ ପ୍ରୋତ୍ସାହନ ବ୍ୟକ୍ତିମାନଙ୍କୁ ସନ୍ତ୍ରାସବାଦରେ ସାମିଲ ହେବାକୁ ପ୍ରେରଣା ଯୋଗାଇଥାଏ । ଏପରିକି ଅଭାବ ଓ ଆର୍ଥିକ ଅନାଟନ ଭିତରେ ଥିବା ଯୁବକମାନଙ୍କୁ କିଛି ଆର୍ଥିକ ପ୍ରୋତ୍ସାହନଦ୍ୱାରା ସନ୍ତ୍ରାସବାଦୀ ସଙ୍ଗଠନମାନେ ପ୍ରଲୁବ୍ଧ କରିବା ସହଜ ହୋଇପାରୁଛି ।

ଏହି ବିଚାରବୋଧରୁ ଯେଉଁମାନେ ସନ୍ତ୍ରାସବାଦୀ ବୋଲି ଏକ ସମୟରେ ଆଖ୍ୟାୟିତ ହୋଇଛନ୍ତି, ସେହିମାନେ ଅନ୍ୟ ଏକ ଦୃଷ୍ଟିକୋଣରୁ ଦେଶପ୍ରେମୀ ଭାବେ ସମ୍ମାନିତ ହେବାର ବହୁ ଦୃଷ୍ଟାନ୍ତ ରହିଛି । ଆମେରିକାର ବିଶ୍ୱ ବାଣିଜ୍ୟ ସଙ୍ଗଠନ ଉପରେ ୨୦୦୧ରେ ହୋଇଥିବା ସନ୍ତ୍ରାସବାଦୀ ଆକ୍ରମଣର ମୁଖ୍ୟ ନାୟକ ଭାବେ ଓସ୍‌ମା ବିନ୍ ଲାଡେନଙ୍କୁ ନିଆଯାଇଛି । ଅବଶ୍ୟ କିଛି ବର୍ଷ ପରେ ଲାଡେନଙ୍କୁ ଆମେରିକାର ଗୁଇନ୍ଦା ସଂସ୍ଥା ଠାବ କରିବାପରେ ଆମେରିକା ଆକ୍ରମଣ କରି ତାଙ୍କୁ ହତ୍ୟା କରିଛି । ତେବେ କୌତୂହଳର ବିଷୟ ବିଂଶ ଶତାବ୍ଦୀର ସତୁରୀ ଦଶକରେ ଲାଡେନ ଓ ତାଙ୍କର ସହଯୋଗୀମାନଙ୍କୁ ଆମେରିକା ଜାତୀୟତାବାଦୀ ଭାବେ ଗ୍ରହଣକରି ସାହାଯ୍ୟ କରିଛି । ନେଲସନ୍ ମାଣ୍ଡେଲା ଦକ୍ଷିଣ ଆଫ୍ରିକାର ବିଶିଷ୍ଟ ଜନନେତା । ଦକ୍ଷିଣ ଆଫ୍ରିକାର ମୁକ୍ତି ସଂଗ୍ରାମର ଏହି ନେତାଙ୍କୁ ତାଙ୍କ ସଂଗ୍ରାମ ଆରମ୍ଭ କାଳରେ ଏକ ବଡ ସନ୍ତ୍ରାସବାଦୀ ବୋଲି ଚିତ୍ରଣ କରାଯାଇ ତାଙ୍କୁ ଆଜୀବନ କାରାଦଣ୍ଡ ଦିଆ ଯାଇଥିଲା । ବହୁ ବର୍ଷର ବନ୍ଦୀ ଜୀବନ ପରେ ଯେ ଏକଦା ସନ୍ତ୍ରାସବାଦୀ ବୋଲି ସରକାରଙ୍କ ଦୃଷ୍ଟିରେ ବିବେଚିତ ହୋଇଥିଲେ, ସେ ନୋବେଲ ପୁରସ୍କାର ପାଇଲେ ଓ ଜଣେ ରାଷ୍ଟ୍ରନେତାର ସମ୍ମାନ ଲାଭକଲେ । ଭାରତବର୍ଷରେ ଭଗତ ସିଂଙ୍କର ଘଟଣା ସୁବିଦିତ । ତାଙ୍କର ବୈପ୍ଲବାତ୍ମକ କାର୍ଯ୍ୟକଳାପ ପାଇଁ ତାଙ୍କୁ ସନ୍ତ୍ରାସବାଦୀ ବୋଲି ଚିତ୍ରିତ କରାଯାଇ ତାଙ୍କୁ ଓ ତାଙ୍କ ସହ ସଂଶ୍ଳିଷ୍ଟ ଥିବା ସହଯୋଗୀଙ୍କୁ ଫାଶୀ ଦିଆ ଯାଇଥିଲା । କିନ୍ତୁ ଭାରତୀୟଙ୍କ ଦୃଷ୍ଟିରେ ଭଗତ ସିଂ ଓ ତାଙ୍କର କମ୍ରେଡମାନେ ଥିଲେ ଦେଶପ୍ରେମୀ । ଗୋଟିଏ ବିଚାରବୋଧରେ କିଛି ବ୍ୟକ୍ତି ଜାତୀୟତାବାଦୀ ଦେଶପ୍ରେମୀ ଓ ଏକ ଭିନ୍ନ ମାନଦଣ୍ଡରେ ସେମାନେ ଆତଙ୍କ ସୃଷ୍ଟିକାରୀ ସନ୍ତ୍ରାସବାଦୀ ।

ସାଂପ୍ରତିକ ପରିଭାଷାରେ ସନ୍ତ୍ରାସବାଦ ଉପରେ ବିଶ୍ଳେଷଣ କରୁଥିବା ସମାଜବିଜ୍ଞାନୀମାନେ ଏହାର ଏକ ବ୍ୟାପକ କ୍ଷେତ୍ର ପ୍ରତି ଦୃଷ୍ଟି ଆକର୍ଷଣ କରୁଛନ୍ତି । ଏହି ପରିପ୍ରେକ୍ଷୀରେ ରାଷ୍ଟ୍ରୀୟ ସନ୍ତ୍ରାସବାଦ, ଅନ୍ତଃରାଷ୍ଟ୍ରୀୟ ସନ୍ତ୍ରାସବାଦ ଓ ସାଂସ୍କୃତିକ ସନ୍ତ୍ରାସବାଦର ଭାବନା ଆସୁଛି । ରାଷ୍ଟ୍ରୀୟ ସହଯୋଗରେ ସାଧାରଣ ମଣିଷଙ୍କ ଉପରେ ଅତ୍ୟାଚାର ବା ଆକ୍ରମଣ ହେଉଛି ରାଷ୍ଟ୍ରୀୟ ସନ୍ତ୍ରାସବାଦ । ହିଟଲର ଯେତେବେଳେ ଜିଉମାନଙ୍କୁ ରାଷ୍ଟ୍ରଶକ୍ତି ସାହାଯ୍ୟରେ ହତ୍ୟା କରୁଥିଲେ କିମ୍ବା ସରକାରଙ୍କର ଜ୍ଞାତସାରରେ ଏକ ସଂଖ୍ୟାଲଘୁ ଗୋଷ୍ଠୀ ଉପରେ ଅତ୍ୟାଚାର ହୁଏ ବା ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି କରାଯାଏ ତାହାକୁ ରାଷ୍ଟ୍ରୀୟ ସନ୍ତ୍ରାସବାଦର ଆଖ୍ୟା ଦିଆଯାଉଛି । ସେହିପରି ଏକ ବଳଶାଳୀ ରାଷ୍ଟ୍ର ଅନ୍ୟ ରାଷ୍ଟ୍ର ଉପରେ ଆକ୍ରମଣ କରି ତାହାର ଜନଗଣଙ୍କୁ ଆତଙ୍କିତ କରି ରଖିବାକୁ ଅନ୍ତଃରାଷ୍ଟ୍ରୀୟ ସନ୍ତ୍ରାସବାଦ କୁହାଯାଉଛି । ଇରାକ ଗଣବିଧ୍ୱଂସୀ ମାରାଣାସ୍ତ୍ର

ରଖିଛି କହି ଆମେରିକା ଇରାକ ଉପରେ ଆକ୍ରମଣ କରିବା କିମ୍ବା ଜାପାନର ଦୁଇ ସହର ଉପରେ ଆଣବିକ ଅସ୍ତ୍ର ପ୍ରୟୋଗ କରି ହଜାର ହଜାର ନିରୀହ ଲୋକଙ୍କୁ ହତ୍ୟାକରିବା ବି ସନ୍ତ୍ରାସବାଦ। ସେହିପରି ଗୋଟିଏ ଦେଶର ଏକ ଶକ୍ତିଶାଳୀ ଗୋଷ୍ଠୀ ଏକ ଦୁର୍ବଳ ଶ୍ରେଣୀକୁ ଅସ୍ପୃଶ୍ୟ କରି ଶୋଷଣ କରିବାକୁ ସାଂସ୍କୃତିକ ସନ୍ତ୍ରାସବାଦ କୁହାଯାଉଛି।

ଇତିହାସର ଏକ ବିଡମ୍ବନା ଯେ ପୃଥିବୀ ଇତିହାସରେ ସର୍ବଦା ଯୁଦ୍ଧ, ବିଭୀଷିକାର ଆତଙ୍କ ଲାଗିରହିଛି। ସେହିପରି ସାଂପ୍ରତିକ ସ୍ଥିତିରେ ସନ୍ତ୍ରାସବାଦୀମାନେ ଆତଙ୍କ ସୃଷ୍ଟି କରୁଛନ୍ତି। ସନ୍ତ୍ରାସବାଦଜନିତ ଆତଙ୍କ ଓ ଭୟର ବାତାବରଣରୁ ମୁକ୍ତ ହେବାକୁ ଶାନ୍ତିବାଦ ବା ପାସିଫିଜିମ ହେଉଛି ଏକ ମହତ୍ତର ରାଜନୈତିକ ଆଦର୍ଶ। ପାସିଫିଷ୍ଟମାନେ ଏକ ଭୟମୁକ୍ତ, ହିଂସାମୁକ୍ତ ଓ ଭେଦଭାବମୁକ୍ତ ମାନବ ସମାଜର ଆଦର୍ଶ ପ୍ରସାର କରୁଛନ୍ତି।

(ପ୍ରଗତିବାଦୀ, ୧୫.୦୬.୨୦୧୬)

# ଅନଗ୍ରସରତାର ଦିଗନ୍ତ

ଗୋଟିଏ ସମୟରେ ଜୀବନ ବିପଦସଙ୍କୁଳ ଥିଲା । ମଣିଷ ଯେତେବେଳେ ବଣଜଙ୍ଗଲଭରା ପରିବେଶରେ ରହୁଥିଲା, ଜୀବନରେ ନିରାପତ୍ତା ନ ଥିଲା । ସବୁ ସ୍ତରରେ ଭୟର ବାତାବରଣ ରହିଥିଲା । ଧୀରେ ଧୀରେ କୃଷିର ଜ୍ଞାନ ଆସିଲା । ସ୍ଥାୟୀ ଭାବେ ଗ୍ରାମୀଣ ଜୀବନଧାରାରୁ ସଭ୍ୟତାର ବିକାଶ ପର୍ବ ଆରମ୍ଭ ହେଲା । ଗୋଷ୍ଠୀ ଜୀବନର ଦଳପତିରୁ କାଳକ୍ରମେ ରାଜତନ୍ତ୍ର ସୃଷ୍ଟି ହେଲା । ହଜାର ହଜାର ବର୍ଷର କ୍ରମବିକାଶ ମଧ୍ୟ ଦେଇ ରାଜ୍ୟ ଓ ରାଷ୍ଟ୍ରର ଭାବନା ପରେ ଦୃଢ଼ ଭିତ୍ତି ନେଲା । ଗୋଷ୍ଠୀ ଜୀବନରେ ଯେଉଁ କିଛି ନୀତି ନୈତିକତାର ଭାବନା ସୃଷ୍ଟି ହୋଇଥିଲା ତାହା କାଳକ୍ରମେ ସାମାଜିକ ଜୀବନ ପ୍ରବାହର ଆଦର୍ଶ ହେଲା । ବିଭିନ୍ନ ଭୂଖଣ୍ଡରେ କିଛି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ସଭ୍ୟତାର ବିକାଶ ଦିଗରେ ପଥପ୍ରଦର୍ଶକ ହେଲା । ଯେତେବେଳେ ପୃଥିବୀ ସମୁଦ୍ର, ପର୍ବତ, ମରୁଭୂମି ଇତ୍ୟାଦିଦ୍ୱାରା ଭାଗ ହୋଇ ରହିଥିଲା ଓ ଗମନାଗମନର କୌଣସି ଜ୍ଞାନ ନ ଥିଲା, ବିଭିନ୍ନ ଭୂଖଣ୍ଡରେ ନିଜସ୍ୱ ଧାରାରେ ସଭ୍ୟତାମାନ ଗଢ଼ି ଉଠିଥିଲା । କାଳକ୍ରମେ ବିଭିନ୍ନ ସଭ୍ୟତାରେ କିଛି କିଛି ସାଂସ୍କୃତିକ ଆଲୋଡନ ଆସିଲା । ସେହି ସାଂସ୍କୃତିକ ଆଲୋଡନ ଧାର୍ମିକ ଚେତନାରେ ରୂପାନ୍ତରିତ ହେଲା । ଧୀରେ ଧୀରେ ପ୍ରତ୍ୟେକ ଧର୍ମ ଗୋଟିଏ ଭୂଖଣ୍ଡର ଜନଗୋଷ୍ଠୀ ଭିତରେ ଏକ ସାଂସ୍କୃତିକ ସଂହତି ସୃଷ୍ଟି କଲା । ସମୟର ଆବର୍ତ୍ତନ ସହ ଧର୍ମମାନ ଆନୁଷ୍ଠାନିକ ରୂପ ନେଲେ । ପ୍ରତ୍ୟେକ ଧର୍ମ ଜଗତ ଓ ଜୀବନକୁ ନିଜସ୍ୱ ଧାରାରେ ଅବବୋଧ କରିବାକୁ ଲାଗିଲା । କେତେକ ତାତ୍ତ୍ୱିକ ବିଚାର, ନୀତିବୋଧ, କର୍ମକାଣ୍ଡ ଓ ପାରଲୌକିକ ପରିକଳ୍ପନାମାନଙ୍କୁ ନେଇ ଧର୍ମର ଭିତ୍ତି ସୁଦୃଢ଼ ରୂପରେଖ ନେଲା । ଆସ୍ତେ ଆସ୍ତେ ରାଜ୍ୟମାନ ବିସ୍ତାର ଲାଭ କଲେ ଓ ସମାଜ ଏକ ସୁବ୍ୟବସ୍ଥିତ ରୂପ ନେଇ ପାରିଲା । ସମାଜ ଯେତିକି ରାଜନୈତିକ ସ୍ତରରେ ସୁବ୍ୟବସ୍ଥିତ ହେଲା, ସମାଜର ସାଂସ୍କୃତିକ ଦୃଶ୍ୟପଟ ଧୀରେ ଧୀରେ ସେତିକି ଅଭିବୃଦ୍ଧି ହେବାକୁ ଲାଗିଲା । କଳା, ସାହିତ୍ୟ, ସଙ୍ଗୀତ, ଭାଷା, ମନୋରଞ୍ଜନ ଇତ୍ୟାଦି କ୍ଷେତ୍ରରେ ସୃଜନଶୀଳତାର ପରିପ୍ରକାଶ ହେଲା । ସାମାଜିକ ଜୀବନଧାରାରେ ନାନା ରୀତି, ନୀତି, ପୂଜାପାର୍ବଣ, କର୍ମକାଣ୍ଡମାନ ରୂପରେଖ ନେବାକୁ ଲାଗିଲା । ଯେଉଁ ବିଶ୍ୱାସମାନ ପିଢ଼ି ପିଢ଼ି ଦେଇ ଜନଗୋଷ୍ଠୀ ଭିତରେ ରହିଲା ବା ଯେଉଁ ଆବେଗିକ ଅଭିବ୍ୟକ୍ତି ପ୍ରକାଶ ପାଇଲା ତାହା

କାଳକ୍ରମେ ପରମ୍ପରାର ରୂପ ନେଲା । ପ୍ରତ୍ୟେକ ଜନଗୋଷ୍ଠୀ ନିଜର ବିଶ୍ୱାସ, ପରମ୍ପରା, କର୍ମକାଣ୍ଡ, ରୀତି, ଆଚାର ଇତ୍ୟାଦି ଅଭିବ୍ୟକ୍ତିରେ କିଛିଟା ସ୍ୱତନ୍ତ୍ରତା ରକ୍ଷା କଲା ।

ଆଧୁନିକ ବିଜ୍ଞାନର ବିକାଶ ପୂର୍ବରୁ ସମାଜରେ ଭୟର ବାତାବରଣ ରହିଥିଲା । ବିଶେଷକରି କେତେକ ରୋଗବାଧକ ମହାମାରୀର ରୂପ ନେଇ ଗଣମୃତ୍ୟୁର୍ ପରିବେଶ ସୃଷ୍ଟି କରୁଥିଲା । ହଇଜା, ବସନ୍ତ, ପ୍ଳେଗ୍ ଇତ୍ୟାଦି ରୋଗ ଥରେ ଆରମ୍ଭ ହେଲେ ତାହା ଗାଁକୁ ଗାଁକୁ ସଂକ୍ରମିତ ହେଉଥିଲା । ଯେହେତୁ ରୋଗର କାରଣ, ପ୍ରତିଷେଧକ ବା ଚିକିତ୍ସା ବିଷୟରେ କିଛି ଜ୍ଞାନ ନଥିଲା, ଲୋକମାନେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲେ । ଏପରିକି ଗୋଟିଏ ଗୋଟିଏ ଗାଁ ଜନଶୂନ୍ୟ ହୋଇ ଯାଉଥିଲା । ସେତେବେଳେ ସମାଜରେ ଧାର୍ମିକ ମାନସିକତା ବଳବତ୍ତର ରହିଥିଲା । ସବୁକିଛିକୁ ଦୈବୀବିଧାନ ଭାବରେ ମଣିଷ ବିଶ୍ୱାସ କରୁଥିଲା । ରୋଗ, ମଡକ, ମହାମାରୀ ଆଦି ଦେବ ବା ଦେବୀଙ୍କ କୋପର ପରିଣାମ ବୋଲି ସେତେବେଳର ବିଶ୍ୱାସ ଥିଲା । ଆମ ଦେଶ ଥିଲା ଗ୍ରାମବହୁଳ । ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବତୀଙ୍କୁ ସ୍ଥାପନ କରାଯାଇ ପୂଜା କରା ଯାଉଥିଲା । ବିଶ୍ୱାସ ଥିଲା ଯେ ଗ୍ରାମଦେବତୀ ଗ୍ରାମକୁ ରୋଗ, ମହାମାରୀରୁ ରକ୍ଷା କରିବେ । ଗ୍ରାମରେ କିଛି ବିପତ୍ତି ପଡିଲେ ଗ୍ରାମଦେବତୀଙ୍କ ପାଖରେ ଲୋକମାନେ ଛେଳି, କୁକୁଡା ବଳି ପକାଇବାକୁ ମାନସିକ କରୁଥିଲେ । ସେହିପରି ଗାଁ ଗାଁରେ ଅଷ୍ଟପ୍ରହରୀ ନାମଯଜ୍ଞ ହେଉଥିଲା । ଈଶ୍ୱରଙ୍କ ନାମ ଭଜନ, କୀର୍ତ୍ତନ କଲେ ସେଥିରେ ପୁଣ୍ୟ ସୃଷ୍ଟି ହୁଏ, ଫଳରେ ଗ୍ରାମକୁ ପ୍ରାକୃତିକ ଦୁର୍ବିପାକ ପଡେ ନାହିଁ । ନିଜକୁ ଅସୁରକ୍ଷିତ ମନେକରି ଲୋକମାନେ ମାତ୍ର କେତୋଟି ପିଢି ତଳେ ଏହି ପ୍ରକାରର ଜୀବନଦୃଷ୍ଟି ପୋଷଣ କରିବା ସାଧାରଣ ଘଟଣା ଥିଲା ।

ହିନ୍ଦୁ ସମାଜରେ ବହୁ ଈଶ୍ୱରବାଦର କଳ୍ପନା ପ୍ରାଚୀନ ଅଟେ । ଉପନିଷଦ୍, ବ୍ରହ୍ମସୂତ୍ରରେ ଏକେଶ୍ୱରବାଦର ଭାବନା ରହିଥିଲେ ବି ଆମ ଦେଶର ଲୋକବିଶ୍ୱାସରେ ବହୁ ଦେବଦେବୀ ପୂଜାର ପ୍ରଚଳନ ଦେଖିବାକୁ ମିଳେ । ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର କୌଣସି ଦେବ ବା ଦେବୀଙ୍କଦ୍ୱାରା ନିୟନ୍ତ୍ରିତ ବୋଲି ବିଶ୍ୱାସ ଆମ ସମାଜରେ ରହିଛି । ଧନଲାଭ ପାଇଁ ଯେଉଁ ଦେବୀଙ୍କୁ ଆରାଧନା କରାଯିବ, ବିଦ୍ୟାଲାଭ ପାଇଁ ତାଙ୍କୁ ପୂଜା କରାଯିବ ନାହିଁ ଅନ୍ୟ ଦେବ ବା ଦେବୀଙ୍କୁ ପୂଜା କରାଯିବ । ଉତ୍ତମ ଫସଲ ଆମଦାନୀ ପାଇଁ ଯେଉଁ ଦେବୀଙ୍କୁ ପ୍ରାର୍ଥନା କରାଯିବ, ବର୍ଷା ପାଇଁ ତାଙ୍କୁ ଆବାହନ କରାଯିବ ନାହିଁ । ଉତ୍ତମ ସ୍ୱାସ୍ଥ୍ୟ ପାଇଁ, ସୁଖପ୍ରଦ ବୈବାହିକ ଜୀବନ ପାଇଁ, ଯାତ୍ରାରେ ବିଘ୍ନ ନଘଟିବା ପାଇଁ ଓ କୌଣସି କାର୍ଯ୍ୟରେ ସଫଳତା ପାଇଁ ଭିନ୍ନ ଭିନ୍ନ ଦେବ ବା ଦେବୀଙ୍କୁ ଭକ୍ତିଅର୍ଘ୍ୟ ଦେବାକୁ ହେବ । ବିଶ୍ୱାସ ଥିଲା ଯେ ଜୀବନଧାରାର

ପ୍ରତ୍ୟେକ କ୍ଷେତ୍ର ନିର୍ଦ୍ଦିଷ୍ଟ ଦେବ କିମ୍ବା ଦେବୀଙ୍କ ଦ୍ୱାରା ନିୟନ୍ତ୍ରିତ। ସୁତରାଂ ଦେବ-ଦେବୀଙ୍କର ବିଭାଗ ଥିଲା ଓ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ପାଇଁ ସଂପୃକ୍ତ ଦେବୀଙ୍କୁ ପ୍ରାର୍ଥନା କରିବାକୁ ହେବ। ପୁନଶ୍ଚ ବିଭିନ୍ନ ଦେବ ବା ଦେବୀଙ୍କୁ ଆଧାର କରି କାହାଣୀ, କିମ୍ବଦନ୍ତୀ ଓ ମିଥ୍‌ମାନ ସୃଷ୍ଟି କରାଯାଇଥିଲା। କେଉଁ ଦେବ ବା ଦେବୀଙ୍କୁ କିପରି ଆରାଧନା କରାଯିବ ସେପାଇଁ ସ୍ୱତନ୍ତ୍ର ମନ୍ତ୍ର ବି ରଚିତ ହୋଇଥିଲା।

ସାଂସ୍କୃତିକ କ୍ରମବିକାଶ ଧାରାରେ ବହୁ-ଈଶ୍ୱରବାଦରୁ ଏକେଶ୍ୱରବାଦର ଭାବନା ସୃଷ୍ଟି ହୋଇଥିଲେ ବି ଭାରତୀୟ ହିନ୍ଦୁ ସମାଜରେ ଏକେଶ୍ୱରବାଦ, ବହୁ-ଈଶ୍ୱରବାଦ ଓ ନିରୀଶ୍ୱରବାଦ ଭାବନା ଏକ ସମୟରେ ପରିବ୍ୟାପ୍ତ ରହିବା ବେଶ୍ କୌତୂହଳର ବିଷୟ। ଆମର ଦାର୍ଶନିକ ପରମ୍ପରାରେ ଏକେଶ୍ୱରବାଦ ଓ ନିରୀଶ୍ୱରବାଦର ଭାବନା ଏକତ୍ର ସମଭାବେ ବିକଶିତ ହେବା ଦେଖାଯାଏ। ଭାରତୀୟ ଦର୍ଶନ ଇତିହାସରେ ଯେଉଁ ନ'ଟି ବୌଦ୍ଧିକ ପରମ୍ପରା ରହିଛି ସେଥିରୁ ଅଧିକାଂଶ ପରମ୍ପରା ନିରୀଶ୍ୱରବାଦକୁ ଗ୍ରହଣ କରିବା କୌତୂହଳର ବିଷୟ ଅଟେ। ତେବେ ଯେଉଁ ପରମ୍ପରାମାନ ଈଶ୍ୱରବାଦକୁ ଗ୍ରହଣ କରିଛନ୍ତି ସେମାନେ ଏକେଶ୍ୱରବାଦକୁ ହିଁ ସ୍ୱୀକାର କରିଛନ୍ତି। ବହୁଈଶ୍ୱରବାଦର ପରିକଳ୍ପନା ଅନ୍ତତଃ ଭାରତୀୟ ଦର୍ଶନ ଇତିହାସରେ ଗୃହୀତ ହୋଇ ନାହିଁ। ଆମର ଦାର୍ଶନିକ ବିଚାରବୋଧ ଆମ ସାମାଜିକ ଜୀବନପ୍ରବାହକୁ ଯେ ପ୍ରଭାବିତ କରି ନାହିଁ ଏହା ମନେହୁଏ। ଭାରତୀୟ ଦର୍ଶନ ପରମ୍ପରାରେ ଅଭିବ୍ୟକ୍ତ ହୋଇଥିବା ଜୀବନବୋଧ ସାମାଜିକ ଜୀବନଧାରାରେ ପ୍ରତିଫଳିତ ନ ହେବା ଏକ ବାସ୍ତବତା ଅଟେ।

ସାମାଜିକ ଜୀବନପ୍ରବାହରେ ବହୁ ଦେବଦେବୀର ପରିକଳ୍ପନା ଓ ପୂଜାପାର୍ବଣର ପରମ୍ପରା ପଛାତରେ ନାନା ସାମାଜିକ, ମନସ୍ତାତ୍ତ୍ୱିକ ଓ ଏପରିକି କେତେକ ଅର୍ଥନୈତିକ କାରଣ ଥିବା ମନେହୁଏ। ହିନ୍ଦୁଧର୍ମ ଯେହେତୁ କୌଣସି ଏକକ ତାତ୍ତ୍ୱିକ ଭାବଧାରାଦ୍ୱାରା ଦୃଢ ନୁହେଁ, ବରଂ ବହୁ ତାତ୍ତ୍ୱିକ ବିଚାରଧାରାର ଏକ ସମନ୍ୱିତ ଅଭିବ୍ୟକ୍ତି, ତାର ପ୍ରତିଫଳନ ସମାଜରେ ହେବା ସ୍ୱାଭାବିକ ମନେହୁଏ। ସେହିପରି ହିନ୍ଦୁଧର୍ମର ଏକକ ଧର୍ମଗ୍ରନ୍ଥ ନଥାଇ ବହୁ ଧର୍ମଗ୍ରନ୍ଥ ରହିବା ଏହାର ଏକ ବୈଶିଷ୍ଟ୍ୟ। ମନୋବିଜ୍ଞାନ କ୍ଷେତ୍ରରେ କୁହାଯାଏ ଯେ ଭୟ ଓ ନିରାପଦବିହୀନ ମାନସିକତାରୁ ମଣିଷ କୌଣସି ଅଲୌକିକ ଶକ୍ତିରେ ବିଶ୍ୱାସ ସ୍ଥାପନ କରିଥାଏ। ମଣିଷ ଯେତେବେଳେ ପରିସ୍ଥିତିରେ ନିଜକୁ ଅସହାୟ ମନେକରେ ସେତେବେଳେ ସେ କୌଣସି ଦୈବୀଶକ୍ତି ଉପରେ ଭରସା କରେ। ଏହାଦ୍ୱାରା ସେ କିଛି ମାନସିକ ଶକ୍ତି ଲାଭ କରିଥାଏ। ଜୀବନର ଦୁଃଖ, ଝଡଝଞ୍ଜା, ପ୍ରତିକୂଳ ସ୍ଥିତିକୁ ସମ୍ମୁଖୀନ ହେବାକୁ ଯେତେବେଳେ ମଣିଷ

ଅସମର୍ଥ ହୁଏ ଓ ବୃହତ୍ତର ସମାଜ ଉପରେ ଭରସା ରଖିପାରେ ନାହିଁ, ସେ କଳ୍ପିତ ଦିଅଁ ଦେବତା ଉପରେ ବିଶ୍ୱାସ କରେ । ଅନୁନ୍ନତ ସାମାଜିକ ପରିବେଶରେ ବା ମାନସିକ ଅସ୍ଥିରତା ଭିତରେ ଗତି କରୁଥିବା ଲୋକମାନେ ଅଧିକ ପାରଲୌକିକ ମାନସିକତା ପୋଷଣ କରିବା ଦେଖାଯାଏ । ପୁନଶ୍ଚ ଭାରତୀୟ ସମାଜ ଜାତି ବ୍ୟବସ୍ଥାରେ ବିଭାଜିତ ଏକ ସମାଜ । ବିଭିନ୍ନ ଦିଅଁ, ଦେବତା ଓ ପୌତ୍ତଳିକ ପୂଜା ପଦ୍ଧତି ସମାଜରେ ପ୍ରଭାବଶାଳୀ ପୂଜକ ଗୋଷ୍ଠୀର ନିୟନ୍ତ୍ରଣାଧୀନ । ସମାଜରେ ଯେତେ ଦିଅଁ, ଦେବତା, କର୍ମକାଣ୍ଡ, ପୌତ୍ତଳିକ ଆରାଧନା ଇତ୍ୟାଦିର ପରିବେଶ ରହିବ ତାହାର ସୁଫଳ ସମାଜରେ ପ୍ରଭାବଶାଳୀ ଗୋଷ୍ଠୀ ହିଁ ପାଇବ । ଏହିପରି ନାନା କାରଣର ସମ୍ମିଳିତ ପରିଣାମରୁ ବହୁ ଦେବଦେବୀ ପୂଜା ଆମ ସାମାଜିକ ଜୀବନଧାରାରେ ରହିଥିବା ଓ ବୃଦ୍ଧି ପାଉଥିବା ଦେଖାଯାଏ ।

ଏହି ସାମାଜିକ ପରିବେଶ ଆମ ବୌଦ୍ଧିକ ଅନଗ୍ରସରତାର ଏକ ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ଏକ ଐତିହାସିକ ଉପଲବ୍ଧି ଯେ ଯେଉଁ ଜନଗୋଷ୍ଠୀରେ ବୌଦ୍ଧିକ କୌତୂହଳତା, ବିଜ୍ଞାନମନସ୍କତା ଓ ବିଚାରଶୀଳତା ଅଧିକ ପ୍ରତିଫଳିତ ସେମାନେ ଜ୍ଞାନବିଜ୍ଞାନ କ୍ଷେତ୍ରରେ ସେତେ ଅଗ୍ରଗାମୀ । ମହାମାରୀ ରୋଗମାନଙ୍କର କାରଣ ଜାଣିବାକୁ ଯେଉଁମାନେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନେଇ ଗବେଷଣା କରିଛନ୍ତି ସେମାନେ ଜ୍ଞାନବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇଛନ୍ତି ଓ ମାନବଜାତିର ମଙ୍ଗଳ ସାଧନ କରିଛନ୍ତି । ଯେଉଁମାନେ ଏ କ୍ଷେତ୍ରରେ ଦିଅଁ ଦେବତାର ଆଶୀର୍ବାଦଦ୍ୱାରା, ଗ୍ରହଶାନ୍ତିଦ୍ୱାରା, ନାମଯଜ୍ଞଦ୍ୱାରା ସୁରକ୍ଷା ଖୋଜିଛନ୍ତି ସେମାନେ ବିକାଶର ଶିଡିରେ ଆଗକୁ ଯାଇପାରି ନାହାନ୍ତି । ବୈଜ୍ଞାନିକ ମନୋଭାବ, ଉଚ୍ଚ କର୍ମସଂସ୍କୃତି, ଇହଲୌକିକ ଜୀବନଦୃଷ୍ଟି ଓ ମାନବବାଦୀ ଜୀବନବୋଧ ହିଁ ସାମାଜିକ ବିକାଶ ଓ ଗୁଣାତ୍ମକ ଜୀବନର ମୂଳମନ୍ତ୍ର । ପରନ୍ତୁ ପାରଲୌକିକ ମାନସିକତା, ସାମାଜିକ-ଭେଦଭାବ ଜନିତ ପରିବେଶ ଓ କର୍ମବିମୁଖତା ସାମାଜିକ ଅନଗ୍ରସରତାର ମୂଳ କାରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ଧାର୍ମିକ ଭାବପ୍ରବଣତା, ଚମତ୍କାରିତାରେ ଆସ୍ଥା ସ୍ଥାପନ ବ୍ୟକ୍ତି ଚେତନାକୁ ଯେତେ ଅଧିକ କବଳିତ କରେ ଓ ସାମାଜିକ ଜୀବନର ଆଦର୍ଶ ହୁଏ ତାହା ବୌଦ୍ଧିକ ଓ ସାଂସ୍କୃତିକ କ୍ଷୟଶୀଳତା ପାଇଁ ପଥ ପରିଷ୍କାର କରିଥାଏ । ପ୍ରକୃତି ଯେତେ ଅନୁକୂଳ ହେଉ ଓ ସଭ୍ୟତା ଯେତେ ପ୍ରାଚୀନ ହେଉ ଏହି ମାନସିକତାରୁ ମୁକ୍ତ ନ ହେଲେ ସମାଜର ଅର୍ଥନୈତିକ, ବୌଦ୍ଧିକ ଓ ନୈତିକ ବିକାଶ ତ୍ୱରାନ୍ୱିତ ହୋଇପାରିବ ନାହିଁ ।

(ପ୍ରଗତିବାଦୀ, ୦୩.୦୮.୨୦୧୬)

# ବ୍ୟକ୍ତି ଓ ବ୍ୟବସ୍ଥା

ବ୍ୟକ୍ତି ଓ ପରିବାରକୁ ନେଇ ସମାଜ। ସମାଜର କ୍ଷୁଦ୍ରତମ ସଙ୍ଗଠନ ହେଉଛି ପରିବାର। କେଉଁ ଆଦିମ ଯୁଗରୁ ମଣିଷର ଗୋଷ୍ଠୀ ଜୀବନରୁ ଆସିଛି ପରିବାରର ଭାବନା। ଧୀରେ ଧୀରେ ପରିବାର ସଂପ୍ରସାରିତ ହୋଇଛି ଗ୍ରାମକୁ, ସହରକୁ ଓ ରାଷ୍ଟ୍ରକୁ। ଗ୍ରାମ, ସହର, ନଗର, ରାଷ୍ଟ୍ର ଅନୁଷ୍ଠାନରେ ରୂପାନ୍ତରିତ ହୋଇଛନ୍ତି ଓ ନାନା ଅନୁଷ୍ଠାନ ସୃଷ୍ଟିରେ ସହାୟକ ହୋଇଛନ୍ତି। ସାମାଜିକ ବିକାଶ ପ୍ରକ୍ରିୟାରେ ନାନା ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଓ ବୌଦ୍ଧିକ ସଙ୍ଗଠନମାନ ଉଦ୍ଭବ ହୋଇଛି ଓ ଏସବୁର ସମ୍ମିଳିତ ପ୍ରବାହ ରାଷ୍ଟ୍ର ଓ ସମାଜକୁ ଦୃଢ ଭିତ୍ତି ଯୋଗାଇଛି। ତେବେ ଏସବୁର ମୂଳ ଉତ୍ସ ହେଉଛି ବ୍ୟକ୍ତି ଓ ତାର ପରିବାର। ବ୍ୟକ୍ତି ତ ମରଣଶୀଳ କିନ୍ତୁ ପରିବାର, ସମାଜ ଓ ରାଷ୍ଟ୍ର ଏକ ସୁସଙ୍ଗଠିତ ବ୍ୟବସ୍ଥା ଭାବେ ନିରନ୍ତର ରହିଥାଏ। ନଦୀ ଯେପରି ଏକ ପ୍ରବାହ, ସମାଜ ଓ ରାଷ୍ଟ୍ର ମଧ୍ୟ ସେହିପରି ପ୍ରବାହ। ନଦୀର ଜଳଧାରା ଚିର ପ୍ରବାହିତ। ଜଣେ ଦାର୍ଶନିକଙ୍କ ମତରେ ନଦୀର ଜଳଧାରାରେ ଦୁଇଥର ସ୍ନାନ କରିବା ସମ୍ଭବ ନୁହେଁ। ଏହି ମୁହୂର୍ତ୍ତରେ ଜଣେ ଯେଉଁ ଜଳଧାରାରେ ସ୍ନାନ କରିଥାନ୍ତି, ପର ମୁହୂର୍ତ୍ତରେ ସେହି ଜଳ ସେଠାରେ ନ ଥାଏ। ଜଳ ପ୍ରବାହମାନ ଧାରାରେ ବୋହି ଚାଲିଥାଏ ଓ ନୂତନ ଜଳ ତାର ସ୍ଥାନ ନେଉଥାଏ। ନଦୀ ଥାଏ, କିନ୍ତୁ ଜଳଧାରା ବୋହି ଚାଲିଥାଏ। ଠିକ୍ ସେହି ଉପମାରେ ମହାକାଳର ସ୍ରୋତ ଭିତରେ ବ୍ୟକ୍ତିମାନେ ଆସନ୍ତି, ଯାଆନ୍ତି। କିଛି ବର୍ଷର ଜୀବନ ଅବଧି ଭିତରେ ସ୍ୱପ୍ନ ଦେଖନ୍ତି, କିଛି ସୃଜନଶୀଳତାର ପରିଚୟ ଦିଅନ୍ତି, ପାରିବାରିକ ସ୍ନେହ ବନ୍ଧନ ଭିତରେ ଜୀବନ ନିର୍ବାହ କରନ୍ତି, ସାମାଜିକ ଜୀବନ ପ୍ରବାହରେ କିଛି ଭୂମିକା ନିର୍ବାହ କରନ୍ତି ଓ ପୁଣି ମହାକାଳ ଭିତରେ ଅତୀତ ହୋଇଯାନ୍ତି। ଯେଉଁମାନେ ସମୟର ବେଳାଭୂମିରେ ସୃଜନଶୀଳତାର ବା ମାନବିକତାର କିଛି ପଦଚିହ୍ନ ଛାଡି ଯା'ନ୍ତି ସେହିମାନେ ହୁଏତ ଇତିହାସର ପୃଷ୍ଠାରେ ରୁହନ୍ତି। ମହାକାଳର ପ୍ରବାହ ଭିତରେ କେହି ରହିବେ ନାହିଁ, ଏହା ହିଁ ଜୀବନର ଏକ ଅପ୍ରିୟ ସତ୍ୟ। ହୁଏତ ମାନବ ସଭ୍ୟତା, ସମାଜ, ରାଷ୍ଟ୍ର କେତେ କେତେ ଉତ୍ଥାନ ପତନ ଦେଇ ଓ ନାନା ଆହ୍ୱାନର ସମ୍ମୁଖୀନ ହୋଇ ରହିବ ଓ ଅଗ୍ରଗାମୀ ହୋଇ ଚାଲିବ।

ତେବେ ମଣିଷ ହିଁ ତାର ସମାଜ, ବ୍ୟବସ୍ଥା, ସଂସ୍କୃତି ଇତ୍ୟାଦିକୁ ନିର୍ମାଣ କରେ। ବ୍ୟକ୍ତିମାନଙ୍କର ସାମୂହିକ ପ୍ରୟାସରେ ସାମାଜିକ ବ୍ୟବସ୍ଥା, ସଙ୍ଗଠନ, ଅନୁଷ୍ଠାନ ଇତ୍ୟାଦି ରୂପରେଖ

ନିଏ । ଯଦି ବ୍ୟବସ୍ଥା ଉନ୍ନତ ସ୍ଥିତି ଓ ମହତ୍ତର ଭାବନା ଆଧାରରେ କାଳକ୍ରମେ ଦୃଢ ହୋଇଥାଏ ତାହାର ସୁପ୍ରଭାବ ବ୍ୟକ୍ତି ଓ ପାରିବାରିକ ଜୀବନକୁ ସୁନ୍ଦର କରିବାରେ ସହାୟକ ହୋଇଥାଏ । ଯଦି ତାହା ମନ୍ଦ ଭାବନା, ଭେଦଭାବମୂଳକ ଜୀବନଦୃଷ୍ଟି, ଏକ ଶୋଷଣଯୁକ୍ତ ପରିବେଶ ଓ ଅଜ୍ଞତାର ଭିତ୍ତି ଉପରେ ଗଢି ଉଠେ ତେବେ ତାହାର କୁପ୍ରଭାବ ଜନଜୀବନକୁ ମନ୍ଦ ଦିଗରେ ସନ୍ତୁଳିତ କରିଥାଏ । ଭାରତୀୟ ସମାଜ ବ୍ୟବସ୍ଥାରେ କେଉଁ ପରିସ୍ଥିତିରେ ଜାତିଗତ ବ୍ୟବସ୍ଥା ଉଦ୍ଭବ ହୋଇଥିଲା ବା ଅସ୍ପୃଶ୍ୟତା ସୃଷ୍ଟି ହୋଇଥିଲା ତାହା ଏବେ ବି ଅନେକାଂଶରେ ରହସ୍ୟାବୃତ । ଏକ ବ୍ୟବସ୍ଥା ସ୍ୱରୂପରେ ମନ୍ଦ ହୋଇଥିବାରୁ ତାହା ପାଇଁ ଜନଜୀବନରେ ବହୁ ଦୁଃଖ, ହତାଶା ଓ ଭେଦଭାବ ସୃଷ୍ଟି ହୋଇଛି । ହଜାର ହଜାର ବର୍ଷ ଧରି ସମାଜର ଅଗଣିତ ମଣିଷ ମାନବିକ ଅଧିକାର ଓ ଆତ୍ମମର୍ଯ୍ୟାଦାରୁ ବଞ୍ଚିତ ହୋଇ ରହିଛନ୍ତି । ସମାଜର କିଛି ସୁବିଧାବାଦୀ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ଏହାକୁ କେତେ କେତେ ଧାର୍ମିକ ସ୍ୱୀକୃତି ଓ ଶାସ୍ତ୍ରୀୟ ପୁଟ ଦେବାକୁ ପ୍ରୟାସ କରିଛନ୍ତି । ଏକ ମନ୍ଦ ବ୍ୟବସ୍ଥା ଏପରି ସର୍ବବ୍ୟାପୀ ହୋଇ ଯାଇଛି ଯାହା ରାଷ୍ଟ୍ରୀୟ ଜୀବନଧାରାକୁ କେତେ ଆଘାତ ଦେଇଛି । ବ୍ୟବସ୍ଥା ପାଖରେ ବ୍ୟକ୍ତି ଅସହାୟ ହୋଇଛି । ନିଜର ଦୃଷ୍ଟି ଯେତେ ମାନବିକ, ସମ୍ବେଦନଶୀଳ ଓ ଉଦାର ହେଲେ ବି ଏକ ପ୍ରତିଷ୍ଠିତ ବ୍ୟବସ୍ଥା ଓ ତାହାର କୁପରିଣତିକୁ ବଦଳାଇବା ପାଇଁ ବ୍ୟକ୍ତିମାନଙ୍କର ଆନ୍ତରିକ ପ୍ରୟାସ ପୂର୍ଣ୍ଣ ସଫଳତା ଲାଭ କରି ନାହିଁ । ସମାଜର ପ୍ରଭାବଶାଳୀ ବ୍ୟକ୍ତିମାନେ ଏକ ମାନବିକତାବିରୋଧୀ ବ୍ୟବସ୍ଥାର ଯେଉଁ ଜାଲ ବିସ୍ତାର କରିଛନ୍ତି ସେଥିରୁ ମୁକ୍ତ ହେବା ସମସ୍ତଙ୍କ ପାଇଁ ସମ୍ଭବ ହେଉ ନାହିଁ ।

ସେହିପରି ବେଳକେ ଏକ ଅନୁଭବ ଆସେ ଯେ ଆମ ଚାରିପାଖରେ କୁସଂସ୍କାର, ଅପସଂସ୍କୃତି ଓ ଅଜ୍ଞତାର ପାହାଡ ଛିଡା ହୋଇଛି । ଯେଉଁ ସମୟରେ ଜ୍ଞାନ ବିଜ୍ଞାନର ବିକାଶ ହୋଇନଥିଲା, ପ୍ରାକୃତିକ ଘଟଣା ପ୍ରବାହକୁ ଓ ଜୀବନର ଘନଘଟାକୁ ବୁଝିବା ମଣିଷ ସାମର୍ଥ୍ୟର ବହିର୍ଭୂତ ଥିଲା ସେହି ଯୁଗରେ ସବୁ କିଛିକୁ ଦୈବୀ-ନିୟନ୍ତ୍ରିତ ବ୍ୟବସ୍ଥା ଭାବେ ଅବବୋଧ କରିବା ହୁଏତ ଏକ ସ୍ୱାଭାବିକ ପ୍ରକ୍ରିୟା ଥିଲା । ରୋଗ, ମହାମାରୀକୁ ଦୈବୀ ଦଣ୍ଡ ବୋଲି ଭାବନା ସମାଜରେ ସୃଷ୍ଟି ହୋଇଥିଲା । ପ୍ରାକୃତିକ ବିପର୍ଯ୍ୟୟକୁ ଈଶ୍ୱରୀୟ ଶାସ୍ତି ବୋଲି ମଣିଷ ବୁଝିଥିଲା । ଜୀବନରେ ଯାହା ସବୁ ଦୁଃଖ, ଯନ୍ତ୍ରଣା ଓ ଘନଘଟା ଆସୁଥିଲା ତାକୁ ମୁଣ୍ଡପାତି ସହିବା ଓ ଅସହାୟ ଭାବେ ଦେବୀ, ଦେବତାର ଶରଣ ପଶିବା ଛଡା ଅନ୍ୟ ଉପାୟ ନ ଥିଲା । ଏହି ସବୁ ଭାବନାକୁ ନେଇ କେତେ କେତେ ପୂଜା, ଆରାଧନା, ମନ୍ତ୍ର, ବିଧିବିଧାନ ସମାଜରେ ସୃଷ୍ଟି ହେଲା । ଦିଅଁ, ଦେବତାର ଆଶୀର୍ବାଦ ମିଳିଲେ ଜୀବନରେ ଦୁଃଖ ଯନ୍ତ୍ରଣା ଲାଘବ ହେବ, ଦିଅଁ ଦେବତାକୁ ଆରାଧନା କଲେ ସେ ପ୍ରାକୃତିକ ଦୁର୍ବିପାକରୁ ସୁରକ୍ଷା ଦେବେ ଓ ତାଙ୍କର

ଆଶୀର୍ବାଦ ମିଳିଲେ ଜୀବନରେ ସଫଳତା ମିଳିପାରିବ ଏହି ମାନସିକତା ସମାଜରେ ଧୀରେ ଧୀରେ ଦୃଢ ଭିତ୍ତି ନେବାକୁ ଲାଗିଲା। ଏହି ସାମାଜିକ ବ୍ୟବସ୍ଥାକୁ ସମାଜର ପ୍ରଭାବଶାଳୀ ଓ ସମ୍ପନ୍ନ ଲୋକମାନେ ପ୍ରଭାବିତ କରିଥାନ୍ତି। ଏହା ସହିତ ଯେଉଁ ବ୍ୟବସ୍ଥା ସମାଜର ପ୍ରଭାବଶାଳୀ ଲୋକମାନଙ୍କର ଆର୍ଥିକ ସମୃଦ୍ଧି ବା ନିରାପତ୍ତା ପାଇଁ ଉପଯୋଗୀ, ତାହାକୁ ସୁଚିନ୍ତିତ ଭାବେ ପ୍ରସାର କରିବା ସମାଜର ପ୍ରଭାବଶାଳୀ ବ୍ୟକ୍ତିମାନଙ୍କର ଏକ ମନସ୍ତତ୍ୱ। ସେହି ମାନସିକତାରୁ କେତେକ ବିଶ୍ୱାସକୁ ପରମ୍ପରା, ଐତିହ୍ୟ, ସଂସ୍କୃତିର ରୂପ ଦେଇ ପ୍ରସାର କରିବା ଓ ସମାଜରେ ଦୃଢ କରିବା ଦେଖାଯାଏ। ବିଶେଷକରି ସାଧାରଣ ଜନମାନସରେ ପାରଲୌକିକ ଜୀବନଦୃଷ୍ଟି ଓ ଧାର୍ମିକ ଆବେଗ ଅତି ସହଜରେ ସୃଷ୍ଟି କରାଯିବା ସମ୍ଭବ। ଲୋକମାନଙ୍କୁ ବିଚାରଶୀଳ କରିବା ଓ ବିଜ୍ଞାନ-ମନସ୍କ କରିବା ଏକ ଦୁରୁହ ବ୍ୟାପାର ମନେହୁଏ। ରହସ୍ୟମୟ ଭାବନା, ପାରଲୌକିକ ମନୋଭାବ, ଦୈବୀ ଆଶୀର୍ବାଦ ପରି ବିଚାର ଭିତରେ ସାଧାରଣ ଜନଗଣଙ୍କୁ କବଳିତ କରିବା ସହଜ ହୋଇଥାଏ। ଏହି ପ୍ରକ୍ରିୟାରେ ଯେଉଁ ବ୍ୟବସ୍ଥା ସମାଜରେ ଗଢି ଉଠେ ତାହା ଧୀରେ ଧୀରେ ଦୃଢ ଭିତ୍ତି ନିଏ ଓ ଜନଚେତନାକୁ କବଳିତ କରିଦିଏ। ଆମର ପ୍ରଚଳିତ ବିଶ୍ୱାସ, ପୂଜାପାର୍ବଣ, ଧାର୍ମିକ କର୍ମକାଣ୍ଡ, କିଛି ଭକ୍ତିପୂତ ଆବେଗ ଏପରି ଏକ ବ୍ୟବସ୍ଥାରେ ରୂପାନ୍ତରିତ ହୁଏ ଯେ ତାହା ମୁକ୍ତ ବିଚାର ଓ ବୈଜ୍ଞାନିକ ଦୃଷ୍ଟିକୁ ଆଚ୍ଛାଦିତ କରିଦିଏ। ଏପରିକି ସମାଜର ପ୍ରଭାବଶାଳୀ ଓ ସଚେତନ ବ୍ୟକ୍ତିବିଶେଷ ଏକ ବ୍ୟବସ୍ଥାକୁ ଏପରି ଜାବୁଡି ଧରନ୍ତି ଯାହା ଶେଷରେ ଆବେଗରେ ପରିଣତ ହୁଏ। ଯେଉଁଠି ବିଶ୍ୱାସ ଓ ଆବେଗ ଚେତନାକୁ ଆକ୍ରାନ୍ତ କରେ ସେଠାରେ ବିଚାରଶୀଳତା, ବିଜ୍ଞାନ ଓ ବୁଦ୍ଧି ଅପାଂକ୍ତେୟ ହୋଇ ଉଠେ। ଆହୁରି ବିଡମ୍ବନାର ବିଷୟ ବୈଜ୍ଞାନିକ ଜ୍ଞାନରୁ ପ୍ରସ୍ତୁତ ଅତ୍ୟାଧୁନିକ ପ୍ରଯୁକ୍ତିକୁ ଆମର ଧାର୍ମିକ କର୍ମକାଣ୍ଡ ଓ ପୂଜାପାର୍ବଣ ପାଇଁ ବିନିଯୋଗ କରାଯାଏ। ଏକ ବ୍ୟବସ୍ଥାର ଭଲ ମନ୍ଦ ଦିଗ ନେଇ କୌଣସି ବିଚାର ବା ବିତର୍କ ହୁଏ ନାହିଁ। ବରଂ ବିଶ୍ୱାସକୁ ବିଚାରର ଊର୍ଦ୍ଧ୍ୱରେ ରଖାଯାଏ। ବିଶ୍ୱାସ ପ୍ରତି ପ୍ରଶ୍ନ କରୁଥିବା ବିଚାରଶୀଳ ବ୍ୟକ୍ତିଙ୍କ ପାଇଁ ବୃହତ୍ତର ସମାଜର କଟାକ୍ଷ ଓ ଅସୂୟା ଭାବ ପ୍ରକାଶ ପାଏ।

ଏକ ବ୍ୟବସ୍ଥା କେତୋଟି ପିଢି ଦେଇ ଦୃଢ ହୋଇଗଲା ପରେ ତାହା ପରମ୍ପରାର ଭିତ୍ତି ନିଏ ଓ ତାହା ବ୍ୟକ୍ତି ଚେତନାକୁ କବଳିତ କରିଯାଏ। ନିଜଦ୍ୱାରା ସୃଷ୍ଟ ବ୍ୟବସ୍ଥାରୁ ମଣିଷ ମୁକ୍ତ ହୋଇପାରେ ନାହିଁ। ଯେଉଁ କାଳଖଣ୍ଡରେ ଯେଉଁ ବିଶ୍ୱାସ ସୃଷ୍ଟି ହୋଇଥିଲା, ପରିବର୍ତ୍ତିତ ପରିସ୍ଥିତିରେ ତାହାର ଉପଯୋଗିତା ନ ଥିଲେ ମଧ୍ୟ ମଣିଷ ସେହି ବ୍ୟବସ୍ଥାର ପ୍ରଭାବରୁ ବାହାରିପାରେ ନାହିଁ। ବ୍ୟବସ୍ଥା ବ୍ୟକ୍ତିଠାରୁ ବଳଶାଳୀ ହୋଇଉଠେ ଓ ଏକ ବ୍ୟବସ୍ଥା ବିରୁଦ୍ଧରେ ଜନମତ ଦୃଢ ନହେଲେ ତାହାର ପରିବର୍ତ୍ତନ ସମ୍ଭବ ହୁଏ ନାହିଁ। ବିଶେଷକରି ଧାର୍ମିକ ଆବେଗ

ବହନ କରୁଥିବା ଏକ ବ୍ୟବସ୍ଥା ତାହା ଯେତେ ଅନାବଶ୍ୟକ ହେଲେ ମଧ୍ୟ ସମାଜରୁ ଦୂର କରିବା ଏତେ ସହଜ ବୋଧହୁଏ ନାହିଁ। ଅତୀତରେ ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ଅଭାବରେ ସ୍ଥାନୀୟ ବିଶ୍ୱାସମାନ ଆଞ୍ଚଳିକ ସ୍ତରରେ ସୀମିତ ହୋଇ ରହୁଥିଲା। ସେହି ଦୃଷ୍ଟିରୁ ସମାଜର ଆଧାରହୀନ ବିଶ୍ୱାସ ଓ ବିଜ୍ଞାନବିରୋଧୀ ଭାବନାମାନ ସାର୍ବଜନୀନ ହେଉ ନଥିଲା। କିନ୍ତୁ ସାଂପ୍ରତିକ ସ୍ଥିତିରେ ଆଧୁନିକ ପ୍ରଯୁକ୍ତି ଓ ସଂଚାର ଆଞ୍ଚଳିକ ବିଶ୍ୱାସମାନଙ୍କୁ ବ୍ୟାପକ କରିବାରେ ସାହାଯ୍ୟ କରିପାରୁଛି।

ପ୍ରାଯୁକ୍ତିକ ଜ୍ଞାନ–କୌଶଳ ନୀତିନିରପେକ୍ଷ ବା ବିଚାର-ନିରପେକ୍ଷ। ଯେପରି ଜ୍ଞାନକୁ ସମାଜର ହିତ ଦିଗରେ ପ୍ରୟୋଗ କରାଯାଇପାରେ ବା ମାନବ ସମାଜକୁ ଧ୍ୱଂସ କରିବା କ୍ଷେତ୍ରରେ ବିନିଯୋଗ କରାଯାଇପାରେ ସେହିପରି ପ୍ରଯୁକ୍ତିକୁ ସମାଜକୁ ସଚେତନ ଓ ବିଜ୍ଞାନମନସ୍କ କରିବା ଦିଗରେ ପ୍ରୟୋଗ କରାଯାଇପାରେ କିମ୍ବା ସମାଜରୁ କୁସଂସ୍କାର ଓ ଅବୈଜ୍ଞାନିକ ଭାବନା ପ୍ରସାର କ୍ଷେତ୍ରରେ ବିନିଯୋଗ କରାଯାଇପାରେ। ଯେଉଁଠି ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରସାରରେ ବିନିଯୋଗ ହୁଏ ସେଠାରେ ସାମାଜିକ ଅବକ୍ଷୟ ଅଚିରେ ଅଗ୍ରଗତି କରେ। ଏହି ପରିପ୍ରେକ୍ଷୀରେ ମନେହୁଏ ଆମେ ଆଜି ଏକବିଂଶ ଶତାବ୍ଦୀର ପ୍ରଯୁକ୍ତି ବ୍ୟବହାର କରୁଥିଲେ ମଧ୍ୟ ମାନସିକ ସ୍ତରରେ ଆମେ ମଧ୍ୟଯୁଗୀୟ ପରିବେଶରୁ ଊର୍ଦ୍ଧ୍ୱକୁ ଆସିପାରି ନାହେଁ। ସମାଜର ମୁଷ୍ଟିମେୟ ବ୍ୟକ୍ତି ହେତୁବାଦୀ ଜୀବନଧାରାର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକ ଅଧିକାରର ପ୍ରବକ୍ତା ବା ସମର୍ଥକ ହୋଇଥିଲେ ମଧ୍ୟ ସମାଜର ସାଧାରଣ ଜୀବନବୋଧରେ କୁସଂସ୍କାର, ପାରଲୌକିକ ବିଶ୍ୱାସ ଓ ସାମାଜିକ ଭେଦଭାବ ଅକ୍ଷୁର୍ଣ୍ଣ ହୋଇ ରହିବା ଦେଖାଯାଏ। ଏହାହିଁ ଆମ ବ୍ୟବସ୍ଥାର ବିଡ଼ମ୍ବନା।

(ପ୍ରଗତିବାଦୀ, ୦୩.୧୧.୨୦୧୬)

# ବିକାଶ ଓ ମାନବିକ ପ୍ରୟାସ

ଏହି ଶହେ ବର୍ଷ ଭିତରେ ଜ୍ଞାନବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ଯେଉଁ ବିକାଶ ହୋଇଛି ତାହା ମାନବ ସଭ୍ୟତାର ଇତିହାସରେ କେବେ ସମ୍ଭବ ହୋଇନଥିଲା। କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ଦୂର କରିବା ପାଇଁ ନାନା ଗବେଷଣାରୁ ଅନେକ ସଫଳତା ମିଳିପାରିଛି। ଗମନାଗମନରେ ପ୍ରଭୂତ ଉନ୍ନତି ସାଧନ ଯୋଗୁ କୌଣସି ଅଞ୍ଚଳର ଉତ୍ପାଦିତ ସାମଗ୍ରୀ ଅନ୍ୟ ଅଞ୍ଚଳରେ ଉପଲବ୍ଧ ହୋଇପାରୁଛି। ପୃଥିବୀରେ ଯେଉଁଠି ଯାହା ଉଦ୍‌ଭାବନ, ଆବିଷ୍କାର ହେଉଛି ତାହାର ଜ୍ଞାନ ଖୁବ୍ ଶୀଘ୍ର ସାର୍ବଜନୀନ ହୋଇପାରୁଛି। ଚିକିତ୍ସା ବିଜ୍ଞାନରେ ଯାହା କିଛି ଉନ୍ନତି ଘଟୁଛି ତାହାର ସୁଫଳ ସମଗ୍ର ମଣିଷଜାତି ଉପଭୋଗ କରିବାର ପରିବେଶ ଆସିପାରିଛି। ପୃଥିବୀରେ ରହିଥିବା କେତେକ ମାରାତ୍ମକ ରୋଗର ଚିକିତ୍ସା ପାଇଁ ଆନ୍ତର୍ଜାତିକ ସ୍ତରରେ ଉଚ୍ଚମାନର ଗବେଷଣା ସମ୍ଭବ ହୋଇଛି। ଜ୍ଞାନ ବିଜ୍ଞାନର ଦିଗନ୍ତ ନାନା ଦିଗରେ ପରିବ୍ୟାପ୍ତ ହେବାରେ ଲାଗିଛି। ମାନବିକ ଅଧିକାର ନେଇ ଅନେକ ସଚେତନତା ଆସିପାରିଛି। ପ୍ରତ୍ୟେକ ରାଷ୍ଟ୍ର ସାର୍ବଜନୀନ ଶିକ୍ଷାର ପ୍ରସାର ତଥା ଉନ୍ନତ ସ୍ୱାସ୍ଥ୍ୟସେବା ପାଇଁ ନାନା ମଙ୍ଗଳକାରୀ ଯୋଜନାମାନ କାର୍ଯ୍ୟକାରୀ କରୁଛନ୍ତି। କେତେକ ଦେଶରେ ଦାରିଦ୍ର୍ୟ, ଅପପୁଷ୍ଟି, ନିରକ୍ଷରତା ଇତ୍ୟାଦି ସମସ୍ୟାମାନ ରହିଛି, ଏସବୁ ସତ୍ତ୍ୱେ ସଂପନ୍ନତା ଓ ସମୃଦ୍ଧି ସାଧାରଣ ଭାବେ ବୃଦ୍ଧି ପାଇବାରେ ଲାଗିଛି। ପ୍ରତ୍ୟେକ ଦେଶରେ ସବୁ ନାଗରିକ ଯେପରି ସୁସ୍ଥ ଓ ସଂପନ୍ନ ଜୀବନ ଅତିବାହିତ କରିପାରିବେ ସେଥିପାଇଁ ସମଗ୍ର ପୃଥିବୀରେ ସଚେତନତା ପ୍ରକାଶ ପାଇବାରେ ଲାଗିଛି। ଏହା ଯେ ମାନବ ସଭ୍ୟତାର ସକାରାତ୍ମକ ଅଗ୍ରଗତି ଏହା କୁହାଯାଇପାରେ।

ଏହା ଏକ ଐତିହାସିକ ଉପଲବ୍ଧି ଯେ ମାନବ ସମାଜର ଇତିହାସରେ ନାନା ଅନ୍ୟାୟ, ଶୋଷଣ, ଜଘନ୍ୟ ଅତ୍ୟାଚାର ଓ ଅମାନବିକ ବ୍ୟବସ୍ଥା ସବୁ ସମୟରେ ରହିଆସିଛି। ଇତିହାସରେ କେତେ କେତେ ଯୁଦ୍ଧ, ବିଭୀଷିକା ଅତୀତରେ ଘଟିଯାଇଛି। ରଙ୍ଗଭେଦ ଓ ଜାତିଭେଦକୁ ନେଇ କେତେକ ଶକ୍ତିଶାଳୀ ଗୋଷ୍ଠୀ ଅନ୍ୟ ଉପରେ ଅକଥନୀୟ ଅତ୍ୟାଚାର କରି ଆସିଛନ୍ତି। ଅନ୍ୟାୟ, ଅସତ୍ୟ, ଅସଭ୍ୟତା ଓ ଅମାନବିକତାର ବିକାଶ ହେଲେ ଈଶ୍ୱର ବି ପୃଥିବୀରେ ଜନ୍ମ ନେଇ ସମାଜକୁ ସୁସ୍ଥ କରିବାର ଭାବନା କେତେକ ଧର୍ମଶାସ୍ତ୍ରରେ ପରିକଳ୍ପନା କରାଯାଇଛି। ଈଶ୍ୱର ବୋଲି କେହି ଅଛନ୍ତି ଓ ଆବଶ୍ୟକ ବେଳେ ଈଶ୍ୱର ଜନଗୋଷ୍ଠୀରେ ମଣିଷ ପରି ଜନ୍ମ

ଲାଭ କରନ୍ତି ଅସତ୍ୟ ଲାଗିପାରେ, ତେବେ ସମାଜରେ ଶାନ୍ତି, ଭ୍ରାତୃତ୍ୱ, ସମତା ଓ ସମ୍ବେଦନଶୀଳତା ରହୁ ଏହି ଆଭିମୁଖ୍ୟକୁ କେହି ଅସ୍ୱୀକାର କରିପାରିବେ ନାହିଁ। ପୁନଶ୍ଚ ଏହା ମଧ୍ୟ ଅନୁଭୂତିରୁ ଜଣାଯାଏ ଯେ ସମାଜରେ ଯେତେ ଦୁଃଖ, ଦୁର୍ଦ୍ଦଶା ଓ ବର୍ବରତା ରହିଛି ତାହା ମାନବକୃତ କାର୍ଯ୍ୟରୁ ହିଁ ହେଉଛି। ମଣିଷ ଉପରେ ମଣିଷର ଅତ୍ୟାଚାର ଓ ମଣିଷକୁ ମଣିଷର ଶୋଷଣ ବହୁ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇ ଆସିଛି। ତେବେ ଇତିହାସରେ ଏକ ନ୍ୟାୟମୂଳକ ଓ ସମତାଭିତ୍ତିକ ସମାଜର ସ୍ଥାପନ ପାଇଁ କିଛି ବ୍ୟକ୍ତି ବିଭିନ୍ନ ସଭ୍ୟତାରେ ପ୍ରୟାସ କରି ଆସିଛନ୍ତି। ଯେଉଁ ଦାର୍ଶନିକ ଓ ମାନବବାଦୀ ବ୍ୟକ୍ତିମାନେ ଏକ ନ୍ୟାୟମୂଳକ ସମାଜ ଗଠନ ପାଇଁ ନିଜର ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି ସେହିମାନଙ୍କ ଅବଦାନ ଯୋଗୁ ସଭ୍ୟ ଜୀବନବୋଧର ବାର୍ତ୍ତା ବିଭିନ୍ନ ସମୟରେ ଗୁଞ୍ଜରିତ ହୋଇଆସିଛି। ସମାଜରୁ ସକଳ ଭେଦଭାବ ଦୂର କରି ସଂପ୍ରୀତିର ଓ ମାନବିକତାର ଜୟଗାନ କରିଥିବା ବ୍ୟକ୍ତିମାନେ ମାନବଜାତିର ଆଦର୍ଶ ହୋଇଛନ୍ତି।

ପ୍ରଗତି, ବିକାଶ, ସଂପନ୍ନତା କେବଳ ଏକ ଅର୍ଥନୈତିକ ଅବଧାରଣା ନୁହଁ। ଏହା ସହିତ ନୈତିକତା ଓ ମାନବିକତାର ସମ୍ବନ୍ଧ ନ ରହିଲେ ସଭ୍ୟତାର ଯଥାର୍ଥ ବିକାଶ ହେବ ନାହିଁ। ସଂପନ୍ନତା ସହ ମାନବଧର୍ମୀ ସାମାଜିକ ପ୍ରଗତି ସମତାଳ ଭାବେ ବିକଶିତ ହେଲେ ମଣିଷ ସଭ୍ୟ ହୋଇପାରିବ। ଭୌତିକ ସଂପନ୍ନତା ଏକ ସୁଖମୟ ଜୀବନର ଏକକ ମାନଦଣ୍ଡ ନୁହେଁ। ସକଳ ସଂପନ୍ନତା ସତ୍ତ୍ୱେ ଅନୈତିକତା ଜୀବନବୋଧର ପନ୍ଥା ହେଲେ ଜୀବନରେ ହତାଶ୍ୱାସ ରହିବା ଏକ ଉପଲବ୍ଧି। ତେବେ ଶହେ ବର୍ଷ ତଳର ସାମାଜିକ ପରିସ୍ଥିତି ଓ ସାଂପ୍ରତିକ ସମୟର ପରିସ୍ଥିତି ଭିତରେ ବହୁ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ। ସଂପ୍ରତି ଜୀବନର ଭୌତିକ ଆବଶ୍ୟକତା ଅନେକାଂଶରେ ବୃଦ୍ଧି ପାଇଛି ଓ ସାମାଜିକ ସମ୍ବନ୍ଧ ଅଧିକ ଜଟିଳ ହେବାରେ ଲାଗିଛି। ଏକ କ୍ଷୁଦ୍ର ପରିସରରେ ଓ ସୀମିତ ଆବଶ୍ୟକତା ଭିତରେ ବଞ୍ଚୁଥିଲା ବେଳେ ଜୀବନ ତୁଳନାତ୍ମକ ଭାବେ ସରଳ ରହିଥିଲା। କିନ୍ତୁ ଆଜିର ପରିବର୍ତ୍ତିତ ପରିସ୍ଥିତିରେ ଜୀବନର ଆବଶ୍ୟକତା ଅନେକାଂଶରେ ବୃଦ୍ଧି ପାଇଯାଇଛି। ବିଭିନ୍ନ ସ୍ତରରେ ବ୍ୟକ୍ତିକୁ ନାନା ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡୁଛି। ଏହି ସ୍ଥିତିରେ ସମାଜରେ ଅପରାଧ, ହିଂସା ଇତ୍ୟାଦି ବୃଦ୍ଧି ପାଉଛି। ସମାଜର ଅର୍ଥନୈତିକ ଅଭିବୃଦ୍ଧି ସହ ମାନବବାଦୀ ଜୀବନବୋଧର ବିକାଶ ସମତାଳ ଭାବେ ଅଗ୍ରଗତି କରିପାରୁ ନାହିଁ।

ସମାଜରେ ଭୌତିକ ସଂପନ୍ନତା ଯେତେ ବୃଦ୍ଧି ପାଉଛି ସେହି ଅନୁପାତରେ ଅପରାଧ ପ୍ରବଣତା ବୃଦ୍ଧି ପାଇବା ସଭ୍ୟତାର ଏକ ବିଡମ୍ବନା ନିଶ୍ଚୟ। ଆଧୁନିକ ପ୍ରଯୁକ୍ତି ମଣିଷକୁ ଅଧିକ ଶକ୍ତିଶାଳୀ କରିପାରିଛି। ଆଧୁନିକ ପ୍ରଯୁକ୍ତି ଯୋଗୁ ସମୃଦ୍ଧି ବଢିବାରେ ଲାଗିଛି। ଏହି ସମୃଦ୍ଧି ସମାଜରେ ସମତାର ପରିବେଶ ଆଣିବା ପରିବର୍ତ୍ତେ ବୈଷମ୍ୟ ବୃଦ୍ଧିକରି ଚାଲିଛି। ସମାଜରେ

ବୈଷମ୍ୟ ବୃଦ୍ଧି ପାଇବା ଓ ବିକାଶଶୀଳ ଦେଶମାନଙ୍କରେ ଅଗଣିତ ମଣିଷ ଦାରିଦ୍ର୍ୟ ଭିତରକୁ ଯିବା ଯୁଗର ବିଡମ୍ବନା ନିଶ୍ଚୟ । ପୁନଶ୍ଚ ଯେଉଁ ସମୃଦ୍ଧି ଓ ବିକାଶର ପରିକଳ୍ପନା ପ୍ରକାଶ ପାଉଛି ତାହା ମଧ୍ୟ ଦେଇ ପରିବେଶର ସନ୍ତୁଳନ ରହୁଛି ନା ନଷ୍ଟ ହେଉଛି ଏହି ପ୍ରଶ୍ନ ବି ଆସୁଛି । ପରିବେଶର ଅସନ୍ତୁଳନ, ଅବକ୍ଷୟ ଓ ପ୍ରଦୂଷଣ ମାନବ ସଭ୍ୟତାର ଭବିଷ୍ୟତ ନେଇ ଏକ ନକାରାତ୍ମକ ଚିତ୍ର ପ୍ରଦାନ କରୁଛି । ଏହା ସହିତ ଏହି ଭାବନା ଆସୁଛି ଯେ କେତେକ ପ୍ରାକୃତିକ ସଂସାଧନ ସୀମିତ ଓ ସେସବୁ ଅସୀମ ନୁହେଁ । ଆମେ ଯଦି ସୀମିତ ପ୍ରାକୃତିକ ସମ୍ବଳମାନଙ୍କୁ ଚିନ୍ତାଶୂନ୍ୟ ଭାବେ କ୍ଷୟ ବା ନଷ୍ଟ କରି ଚାଲିବା, ତେବେ ଭବିଷ୍ୟତରେ ମନୁଷ୍ୟ ସମାଜ ଏକ ଭୟାନକ ସ୍ଥିତିର ସମ୍ମୁଖୀନ ହେବ । ଏହି ଦୃଷ୍ଟିରୁ ଆମର କର୍ତ୍ତବ୍ୟର ପରିସରଟି ବ୍ୟାପକ ହେବାରେ ଲାଗିଛି । ବ୍ୟକ୍ତିର, ଗୋଷ୍ଠୀର, ରାଷ୍ଟ୍ରର ଓ ମାନବ ସମୁଦାୟର ନୈତିକ କର୍ତ୍ତବ୍ୟ ପ୍ରସାରିତ ହୋଇଚାଲିଛି । ବ୍ୟକ୍ତିର କର୍ତ୍ତବ୍ୟ କେବଳ ପରିବାର ବା ସମାଜ ଭିତରେ ସୀମିତ ରହୁ ନାହିଁ ବରଂ ଏହା ବୃହତ୍ତର ମାନବ ସମାଜ ପ୍ରତି ସଂପ୍ରସାରିତ ହେବାରେ ଲାଗିଛି । ଏପରିକି ଚିନ୍ତା ପ୍ରକାଶ ପାଉଛି ଯେ ଆମର କର୍ତ୍ତବ୍ୟ ଆମର ଆଗାମୀ ବଂଶଧରମାନଙ୍କ ପାଇଁ ରହିଛି । ପ୍ରକୃତିର ସୀମିତ ପ୍ରାକୃତିକ ସମ୍ବଳଗୁଡ଼ିକୁ ଆମେ ଶେଷ କରିଦେବା ନାହିଁ, ବରଂ ଆମେ ତାହାର ମିତବ୍ୟୟୀ ବ୍ୟବହାର କରିବା, ଯେପରିକି ଆଗାମୀ ବଂଶଧରମାନେ ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହେବେ ନାହିଁ । ପୃଥିବୀରୁ ଯଦି ସମସ୍ତ କୋଇଲା, ପେଟ୍ରୋଲ, ଇନ୍ଧନ ଗ୍ୟାସ ସରିଯାଏ ତେବେ ଭବିଷ୍ୟତରେ କେତେ ସମସ୍ୟା ଆସିବ ସେ ନେଇ ଆନ୍ତର୍ଜାତିକ ସ୍ତରରେ ଚିନ୍ତା ପ୍ରକାଶ ପାଉଛି । ସେହିପରି ପୃଥିବୀର ପରିବେଶ ଯଦି ପ୍ରଦୂଷିତ ହୋଇଯାଏ ତେବେ ଯେଉଁ ଭୟଙ୍କର ସ୍ଥିତି ଆସିବ ସେଥିପାଇଁ ପରିବେଶବିଜ୍ଞାନୀମାନେ ଗମ୍ଭୀର ଭାବନା ବ୍ୟକ୍ତ କରୁଛନ୍ତି । ଏହିପରି ଦେଖିବାକୁ ଗଲେ ରାଷ୍ଟ୍ରୀୟତା ଊର୍ଦ୍ଧ୍ୱରେ ଏକ ଆନ୍ତର୍ଜାତିକ ଚେତନା ଅଲକ୍ଷରେ ବୃଦ୍ଧି ପାଇବାରେ ଲାଗିଛି । ଏହି ଶହେ ବର୍ଷ ଭିତରେ ନାନା ଆନ୍ତର୍ଜାତିକ ଓ ବିଶ୍ୱ ସଙ୍ଗଠନମାନ ପ୍ରତିଷ୍ଠା କରାଯାଇ ମାନବ ସମୁଦାୟର ହିତସାଧନ ପାଇଁ ପ୍ରୟାସ କରାଯାଉଛି । ସଭ୍ୟତାରେ ରହିଥିବା ନାନା ସଙ୍କଟ ଓ ଅନ୍ଧକାର ଦିଗ ପ୍ରତି ସଚେତନତା ପ୍ରକାଶ ପାଉଛି । ଏପରିକି ସାଧାରଣ ମଣିଷର ଉନ୍ନତି ପାଇଁ ଏବେ ଯେତେ ଆନ୍ତରିକତା ପ୍ରକାଶ ପାଉଛି, ତାହା ଇତିହାସରେ କେବେ ଥିଲା ତାହା ମନେ ହେଉ ନାହିଁ । ଏକ ଅଖ୍ୟାତ ପଲ୍ଲୀର ଜଣେ ସାଧାରଣ ଆଦିବାସୀର କାହାଣୀ ଆନ୍ତର୍ଜାତିକ ସ୍ତରରେ ଆଲୋଚିତ ହେଉଛି ଓ ତାଙ୍କ ପାଇଁ ସମବେଦନା ପ୍ରକାଶ ପାଉଛି । ଏହା ଯେ ସଭ୍ୟତାର ନୈତିକ ଉତ୍ତରଣର ଚିତ୍ର ଦେଉଛି ଏହା କୁହାଯାଇପାରେ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ପୃଥିବୀର ଜନଗଣଙ୍କୁ ମାନବିକତାର ଡୋରିରେ ବାନ୍ଧି ପାରୁଛି ।

ଅବଶ୍ୟ କେତେକ ଦେଶରେ ସନ୍ତ୍ରାସବାଦ, ସୀମାପାର ଆତଙ୍କବାଦ, ସାଂପ୍ରଦାୟିକତାବାଦ ଓ ଉଗ୍ର ଆଞ୍ଚଳିକତାବାଦ ପରି ସମସ୍ୟାମାନ ରହିଛି । ବିକାଶଶୀଳ

ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ, ବେକାରି, ଅପପୁଷ୍ଟି, ନିରକ୍ଷରତା ପରି ସମସ୍ୟାମାନ ରହିଛି। ଉପଭୋକ୍ତାବାଦୀ ଅପସଂସ୍କୃତି ବି ସୁସ୍ଥ ସାମାଜିକ ଜୀବନଧାରାକୁ କଳୁଷିତ କରିବାରେ ଲାଗିଛି। ଆଣବିକ ଶକ୍ତିର ଅଧିକାରୀ ହେବା ପାଇଁ ଦେଶ ଦେଶ ଭିତରେ ତୀବ୍ର ପ୍ରତିଯୋଗିତା ଲାଗିରହିଛି। ବହୁରାଷ୍ଟ୍ରୀୟ କମ୍ପାନି ଓ କର୍ପୋରେଟ ସଂସ୍କୃତି ସାଂସ୍କୃତିକ ସାମ୍ରାଜ୍ୟବାଦର ବିସ୍ତାର କରୁଛନ୍ତି ବୋଲି ମତ ପ୍ରକାଶ ପାଉଛି। ରାଜନୈତିକ ସଙ୍ଗଠନମାନ କ୍ଷମତା ହାସଲକୁ ପ୍ରାଥମିକତା ଦେଇ ଆଦର୍ଶବାଦଠାରୁ ଦୂରେଇ ଯାଉଛନ୍ତି। ଏ ସବୁ ସମାଜ ପାଇଁ ଏକ ନକାରାତ୍ମକ ଚିତ୍ର ପ୍ରଦାନ କରୁଛି। ଅବଶ୍ୟ ଏହା ସତ୍ୟ ଯେ ମାନବ ସମାଜ କେବେହେଲେ ନୈତିକ ପରିପୂର୍ଣ୍ଣତା ଲାଭ କରିପାରିବ ନାହିଁ। ସଭ୍ୟତା ଯେତେ ଅଗ୍ରସର ହେଉଥିଲେ ବି ସମାଜରେ କେତେକ ସମସ୍ୟା ଓ ସଙ୍କଟ ରହିବ ହିଁ ରହିବ। ବିଭିନ୍ନ ପରିସ୍ଥିତିରେ ନୂଆ ନୂଆ ସଙ୍କଟ ଦେଖାଦେବା ସ୍ୱାଭାବିକ ମନେହୁଏ। ତେବେ ପ୍ରତ୍ୟେକ ଜଟିଳ ପରିସ୍ଥିତି ଓ ସଙ୍କଟଜନକ ସ୍ଥିତିକୁ ବଦଳାଇବାକୁ ମଣିଷର ଉଦ୍ୟମ ଅବ୍ୟାହତ ରହିବ। ମଣିଷ ହିଁ ତାର ବୌଦ୍ଧିକ ସାମର୍ଥ୍ୟ ଭିତରେ ସମସ୍ୟାର ସମାଧାନ ପାଇଁ ପ୍ରୟାସ କରିବ। ଯେତେବେଳେ ଯେଉଁ ସଙ୍କଟ ଆସିଛି, ସେହି ସମସ୍ୟାକୁ ଅତିକ୍ରମ କରିବାକୁ ମଣିଷ ନିଜର ବୁଦ୍ଧି, ବୈଜ୍ଞାନିକ କୌଶଳ ଓ ସମଷ୍ଟିଗତ ଜ୍ଞାନକୁ ପ୍ରୟୋଗ କରିଛି। ଏସବୁ ମଧ ଦେଇ ମାନବିକ ସୃଜନଶୀଳତାର କ୍ଷେତ୍ର ବିସ୍ତାରିତ ହୋଇପାରିଛି। ମଣିଷର ସୃଜନଶୀଳତା ଓ ବିଜ୍ଞାନମନସ୍କତା ଭିତରୁ ନାନା ସମସ୍ୟାର ସମାଧାନର ସୂତ୍ର ବାହାରିଛି। ଏସବୁ ସହିତ ମାନବିକତାର ସ୍ପର୍ଶ ମିଶିଲେ ମାନବଜାତିର ଯେ ପ୍ରଭୂତ କଲ୍ୟାଣ ସମ୍ଭବ ହୋଇପାରିବ ଏହା ଆଶା କରାଯାଏ। ବୌଦ୍ଧିକ, ନୈତିକ ଓ ଭୌତିକ ଉନ୍ନତିର ବହୁ ପଛରେ ପଡି ରହିଥିବା ଜନଗୋଷ୍ଠୀର ବିକାଶ ପାଇଁ ସମାଜର ରାଜନୈତିକ ଇଚ୍ଛା ଶକ୍ତିର ଆବଶ୍ୟକତା ଯେପରି ରହିଛି, ସେହିପରି ଏକ ସାଂସ୍କୃତିକ ଆଲୋଡନର ଆବଶ୍ୟକତା ମଧ ରହିଛି। ସାମାଜିକ ଜୀବନବୋଧରେ ଏହି ଭାବନା ରହିବା ଦରକାର ଯେ ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେସବୁ ମଣିଷର ନିଷ୍ଠାପର ପ୍ରୟାସ ଯୋଗୁ ସମ୍ଭବ ହୋଇଛି। ଏହି ପ୍ରୟାସ ମଣିଷକୁ ଏକ ଆଦିମ ସ୍ଥିତିରୁ ଆଜିର ସ୍ଥିତିକୁ ଆସିବାରେ ସହାୟକ ହୋଇଛି। ସେହିପରି ଏକ ଉନ୍ନତ ସ୍ଥିତି ଓ ଜୀବନର ଗୁଣାତ୍ମକମାନରେ ଅଧିକ ପରିବର୍ତ୍ତନ ଆଣିବାକୁ ମାନବିକ ନିଷ୍ଠା ଓ ପ୍ରୟାସ ନିର୍ଣ୍ଣାୟକ ମନେହୁଏ। ମଣିଷ ହିଁ ତାର ଭବିଷ୍ୟତ ଯେ ନିର୍ମାଣ କରିପାରିବ ଏହା ହିଁ ଏକ ବୌଦ୍ଧିକ ଉପଲବ୍ଧି।

(ପ୍ରଗତିବାଦୀ, ୦୮.୦୨.୨୦୧୭)

# ଅନ୍ତର୍ଜାତୀୟତାବାଦ ବନାମ ବିଶ୍ୱାୟନ

ଅତୀତରେ ଆମ ପୃଥିବୀ ବହୁ ଭୂଖଣ୍ଡରେ ବିଭାଜିତ ହୋଇ ରହିଥିଲା । ଆଧୁନିକ ଗମନାଗମନର ବିକାଶ ପୂର୍ବରୁ ଏକ ଭୂଖଣ୍ଡର ଜନଗଣ ଅନ୍ୟ ଭୂଖଣ୍ଡର ଜନଗଣଙ୍କ ବିଷୟରେ ଜାଣିବାର ସୁଯୋଗ ନଥିଲା । ପୃଥିବୀ ସମୁଦ୍ର, ପର୍ବତ, ନଦୀ, ମରୁଭୂମି, ଜଙ୍ଗଲ ଇତ୍ୟାଦି ପ୍ରାକୃତିକ କାରଣ ଯୋଗୁ ବହୁ ଭାଗରେ ବିଭକ୍ତ ଥିଲା । ଯେଉଁ ଅଞ୍ଚଳରେ ଜନବସତି ଆରମ୍ଭ ହେଲା ଓ କାଳକ୍ରମେ ବିସ୍ତାରିତ ହେଲା ସେଠାରେ ସଭ୍ୟତା, ସଂସ୍କୃତି, କିଛି ସାମାଜିକ ପରମ୍ପରା, ନୀତିବୋଧ, ଧାର୍ମିକ ବିଶ୍ୱାସ ଧୀରେ ଧୀରେ ବିକଶିତ ହେଲା । ବିଭିନ୍ନ ଭୂଖଣ୍ଡର ଭାଷା ଭିନ୍ନ ଭିନ୍ନ ଥିଲା ଓ ଗୋଟିଏ ସଭ୍ୟତାର ଲୋକମାନେ ଅନ୍ୟ ସଭ୍ୟତା ବିଷୟରେ ସଂପୂର୍ଣ୍ଣ ଅଜ୍ଞ ରହିଥିଲେ । ସେତେବେଳେ ମଣିଷର ଦୁନିଆ ବେଶ୍ ସଙ୍କୁଚିତ ରହିଥିଲା ଓ ଏକ ସୀମିତ ଅଞ୍ଚଳ ଭିତରେ ମଣିଷ ବଞ୍ଚୁଥିଲା । ତେବେ ସବୁ ସଭ୍ୟତାରେ କିଛି ମହାକାଂକ୍ଷୀ ବ୍ୟକ୍ତି ମାନବୀୟ ଆଦର୍ଶର କେତେକ ଭାବନା ବ୍ୟକ୍ତ କରିଥିଲେ । ସେହି ମାନବ-ଦରଦୀ ବ୍ୟକ୍ତିମାନଙ୍କର ଚିନ୍ତା ଭିତରୁ ଯେଉଁ ମହତ ଭାବନା ଆସିଥିଲା ତାହା ସଭ୍ୟ ମୂଲ୍ୟବୋଧର ବିକାଶ ପାଇଁ ଅନେକ ପ୍ରେରଣା ଯୋଗାଇଛି । ପଞ୍ଚତନ୍ତ୍ରରେ ଥିବା ବାର୍ତ୍ତା - ସମଗ୍ର ବିଶ୍ୱ ଗୋଟିଏ ପରିବାର ବା ସେହିପରି ଜଣେ ଦାର୍ଶନିକଙ୍କ ମନ୍ତବ୍ୟ - ସମସ୍ତେ ସୁଖରେ ରହନ୍ତୁ, କେହି ଦୁଃଖରେ ନ ରହନ୍ତୁ ମାନବିକ ଜୀବନଦୃଷ୍ଟିର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସବୁ ସଭ୍ୟତାର ମାନବବାଦୀ ଦାର୍ଶନିକମାନେ ଏକ ପ୍ରୀତିପଦ ଓ ଅହିଂସ ବିଶ୍ୱର ପରିକଳ୍ପନା କରିଛନ୍ତି । ତେବେ ଅତୀତରେ ବିଭିନ୍ନ ରାଜ୍ୟ ଓ ଭୂଖଣ୍ଡମାନଙ୍କ ମଧ୍ୟରେ ଯୁଦ୍ଧ, ଆକ୍ରମଣ ଓ ପ୍ରତିଆକ୍ରମଣ ସାଧାରଣ ଘଟଣା ଥିଲା ।

ୟୁରୋପରେ ଶିଳ୍ପବିପ୍ଲବ ଆସିବା ଓ ବିଭିନ୍ନ ଭୂଖଣ୍ଡକୁ ଜଳପଥ ଆବିଷ୍କୃତ ହେବା ପରେ ପୃଥିବୀରେ ସାମ୍ରାଜ୍ୟବାଦର ଯୁଗ ଆସିଲା । ୟୁରୋପରୁ ବେପାର-ବାଣିଜ୍ୟ ପାଇଁ ଅନେକ ଲୋକ ଦୂର ଅଞ୍ଚଳମାନଙ୍କୁ ଗଲେ । କାଳକ୍ରମେ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ବିଭିନ୍ନ ଦେଶମାନଙ୍କୁ ୟୁରୋପୀୟ ଲୋକମାନେ କରାୟତ କଲେ ଓ ସେମାନଙ୍କୁ ନିଜର ଉପନିବେଶ କଲେ । ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ କରାୟତ କରିଥିବା ଦେଶମାନଙ୍କୁ ନାନା ଭାବରେ ଶୋଷଣ କରିଛନ୍ତି । ସାମ୍ରାଜ୍ୟବାଦ ଓ ଉପନିବେଶବାଦର ଅର୍ଥନୈତିକ ତାତ୍ପର୍ଯ୍ୟ

ହେଉଛି ଶୋଷଣ। ତେବେ ସାମ୍ରାଜ୍ୟବାଦରୁ ସଭ୍ୟତା-ସଭ୍ୟତା ଓ ସଂସ୍କୃତି-ସଂସ୍କୃତି ଭିତରେ ଆଦାନପ୍ରଦାନର ପରିବେଶ ଆସିଲା। ଗୋଟିଏ ସଭ୍ୟତାରେ ରହିଥିବା ସାହିତ୍ୟ, ଧର୍ମ, ମୂଲ୍ୟବୋଧ ବିଷୟରେ ଅନ୍ୟ ସଭ୍ୟତାର ଲୋକମାନେ ଜାଣିବାକୁ ସୁଯୋଗ ପାଇଲେ। ଏହି ପ୍ରକ୍ରିୟାରେ ଜ୍ଞାନ-ବିଜ୍ଞାନ ସାର୍ବଜନୀନ ହେବାର ସୁଯୋଗ ଆସିଲା। ଜ୍ଞାନ-ବିଜ୍ଞାନ ଓ ନୂତନ ପ୍ରଯୁକ୍ତି ଯେଉଁଠି ଯାହା ଆବିଷ୍କୃତ ବା ଉଦ୍ଭାବିତ ହେଲା, ତାହାର ପ୍ରସାର ସାରା ପୃଥିବୀରେ ହେବା ସମ୍ଭବ ହେଲା। ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଯେଉଁ ସବୁ ମହାମାରୀ ଓ ସଙ୍କଟ ଥିଲା ତାହାର ନିରାକରଣ ପାଇଁ ବିଶ୍ୱସ୍ତରରେ ଗବେଷଣା ହେଲା। ଧୀରେ ଧୀରେ ଜ୍ଞାନ, ବିଜ୍ଞାନ ବିସ୍ତାରିତ ହୋଇଚାଲିଲା ଓ ସଭ୍ୟତାକୁ ନୂତନ ରୂପରେଖ ଦେଲା। ବିଂଶଶତାବ୍ଦୀରେ ଦୁଇଦୁଇଟି ବିଶ୍ୱଯୁଦ୍ଧ ବିଶ୍ୱର ଶାନ୍ତିକାମୀ ଜନଗଣଙ୍କ ମନରେ କେତେ କେତେ ଆଶଙ୍କା ସୃଷ୍ଟି କଲା ଯେ ଯଦି କୌଣସି କାରଣରୁ ପୃଥବୀରେ ତୃତୀୟ ବିଶ୍ୱଯୁଦ୍ଧ ହୁଏ ତେବେ ମାନବ ସଭ୍ୟତା ପୃଥିବୀରୁ ବିଲୋପ ହୋଇଯିବ। ମାନବ ସମାଜର ଇତିହାସରେ ଜାତିସଂଘର ପ୍ରତିଷ୍ଠା ଥିଲା ଏକ ଉଲ୍ଲେଖନୀୟ ଘଟଣା। ଜାତିସଂଘ ପୂର୍ବରୁ କେତେକ ଆନ୍ତର୍ଜାତିକ ସଙ୍ଗଠନର ପ୍ରତିଷ୍ଠା ହୋଇଥିଲା, ତେବେ ଜାତିସଂଘର ପ୍ରତିଷ୍ଠା ପରଠାରୁ ଏକ ଆନ୍ତର୍ଜାତିକ ମନୋଭାବର ବିକାଶ ତ୍ୱରାନ୍ୱିତ ହୋଇପାରିଲା। ଯେକୌଣସି ଗୁରୁତର ସମସ୍ୟା ଆନ୍ତର୍ଜାତିକ ସ୍ତରରେ ଆଲୋଚିତ ହେବା ଓ ତାର ସମାଧାନ ପାଇଁ ସଂପୃକ୍ତି ପ୍ରକାଶ ପାଇବା ବିଶ୍ୱ ଦୃଶ୍ୟପଟରେ ଏକ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ। ପୃଥିବୀରୁ ମହାମାରୀ ରୋଗମାନଙ୍କର ନିର୍ମୂଳନ, ମାନବିକ ଅଧିକାରର ସୁରକ୍ଷା, ସକଳ ପ୍ରକାରର ଭେଦଭାବର ଦୂରୀକରଣ, ଆଣବିକ ନିରସ୍ତ୍ରୀକରଣ, ପରିବେଶର ସୁରକ୍ଷା ପରି ବହୁ ବିଶ୍ୱସମସ୍ୟାମାନଙ୍କର ସମାଧାନ ପାଇଁ ଏବେ ଯେଉଁ ଆନ୍ତର୍ଜାତିକ ସଂପୃକ୍ତି ପ୍ରକାଶ ପାଉଛି ତାହା ଗୋଟିଏ ଶତାବ୍ଦୀ ତଳେ ଚିନ୍ତା ସ୍ତରକୁ ବି ଆସିନଥିଲା।

ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଓ ଏକ ସାର୍ବଜନୀନ ବିଚାରବୋଧର ଅଭ୍ୟୁଦୟ କ୍ଷେତ୍ରରେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଯଥେଷ୍ଟ ସହାୟକ ହୋଇପାରିଛି। ଏହି ଶହେ ବର୍ଷ ଭିତରେ ଏକ ନୂତନ ବିଶ୍ୱ ନିର୍ମାଣରେ ବିଜ୍ଞାନ ଅତୁଳନୀୟ ଅବଦାନ ଦେଇଛି। ଗମନାଗମନ ଓ ସଞ୍ଚାରବିଦ୍ୟା ଅଭୂତପୂର୍ବ ସଫଳତା ହାସଲ କରିଛି। ଟେଲିଫୋନ, ଟେଲିଭିଜନ, ଇମେଲ, ସୋସିଆଲ ମିଡିଆ ଇତ୍ୟାଦି ଯେଉଁ ସ୍ତରକୁ ବିକଶିତ ହୋଇଛି ସେଥିରେ ସାରା ବିଶ୍ୱର ଜନଗଣ ସଂଯୋଜିତ ହୋଇପାରିଛନ୍ତି। ପୃଥିବୀର କୌଣସି କୋଣରେ କିଛି ଅଘଟଣ ଘଟିଲେ ସମଗ୍ର ବିଶ୍ୱର ଦୃଷ୍ଟି ତତ୍‌କ୍ଷଣାତ୍ ସେଥିପ୍ରତି ଆକର୍ଷିତ ହୋଇପାରୁଛି। ଯେକୌଣସି ପ୍ରାକୃତିକ ଦୁର୍ବିପାକର ସମ୍ମୁଖୀନ ହେବାକୁ କିମ୍ବା ବିପଦ ପରେ ଜନଗଣଙ୍କୁ ସେବା ଯୋଗାଇ ଦେବାକୁ ଆନ୍ତର୍ଜାତିକ

ତତ୍ପରତା ପ୍ରକାଶ ପାଉଛି । ସାରା ବିଶ୍ୱର ଶାନ୍ତିକାମୀ, ମାନବବାଦୀ ଚିନ୍ତକମାନେ ଏକ ଯୁଦ୍ଧରହିତ ଓ ପ୍ରୀତିପୂର୍ଣ୍ଣ ବିଶ୍ୱସମାଜ ପ୍ରତିଷ୍ଠା ପାଇଁ ଗଭୀର ଆନ୍ତରିକତା ବ୍ୟକ୍ତ କରିଚାଲିଛନ୍ତି । ଆମ ସୌରମଣ୍ଡଳର ପୃଥିବୀରୂପକ ଗ୍ରହଟିରେ ମାନବ ସଭ୍ୟତାର ବିକାଶ ହୋଇଛି ଓ ଅନ୍ୟ କେଉଁଠି ପ୍ରାୟତଃ ସଭ୍ୟତାର ବିକାଶ ହେବା ଆମ ଜ୍ଞାନର ପରିସର ଭିତରେ ନାହିଁ । ଲକ୍ଷ ଲକ୍ଷ ବର୍ଷର ଜୈବିକ ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ପୃଥିବୀପୃଷ୍ଠରେ ଯେଉଁ ସଭ୍ୟତା ଗଢି ଉଠିଛି ତାହାର ସ୍ଥାୟିତ୍ୱ ଓ ଉତ୍ତରୋତ୍ତର ଅଭିବୃଦ୍ଧି ମାନବଜାତିର ଦାୟିତ୍ୱ । ସଂପ୍ରତି ଏହାକୁ "ଗ୍ରହମଣ୍ଡଳୀୟ ମାନବବାଦ" ବା ପ୍ଲାନେଟାରି ହିଉମାନିଜିମ୍ କୁହାଯାଉଛି । ଆମର ନୈତିକ କର୍ତ୍ତବ୍ୟ ଓ ଉତ୍ତରଦାୟିତ୍ୱ ସମଗ୍ର ପୃଥିବୀ ପ୍ରତି ପ୍ରସାରିତ ହୋଇଚାଲିଛି । ସଭ୍ୟତାର ଇତିହାସରେ ଏହି ନୈତିକ ଉତ୍ତରଣ ଏକ ଅଭିନବ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମାନବ ସଭ୍ୟତାର ଇତିହାସରେ ଅତୀତରେ କେତେ କେତେ ଶୋଷଣ, ଭେଦଭାବ, ବିଭୀଷିକା, କ୍ରୂରତା ଘଟିଯାଇଛି । ବର୍ଣ୍ଣଗତ ଭେଦଭାବରୁ ଅଗଣିତ ମଣିଷ ଇତିହାସରେ ନାନା ଅମାନବିକ ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି । ସାରା ପୃଥିବୀରେ ମହିଳାମାନେ କେତେ କେତେ ସାଂସ୍କୃତିକ ଶୋଷଣ ସହିଛନ୍ତି । ଭାରତବର୍ଷରେ ଦଳିତମାନେ ବହୁ ଅତ୍ୟାଚାର ଓ ଭେଦଭାବକୁ ସହି ଆସିଛନ୍ତି । ରାଜତନ୍ତ୍ର ଓ ସାମନ୍ତବାଦ ଯୁଗରେ ରାଜା ଓ ଜମିଦାରମାନେ ସାଧାରଣ ଜନତାଙ୍କୁ ନାନା ଭାବରେ ଶୋଷଣ କରିଛନ୍ତି । ଜିଉମାନଙ୍କ ଉପରେ ନିଜ ଧର୍ମଗୋଷ୍ଠୀର ବଳଶାଳୀମାନେ ନାନା ବର୍ବରତାର କାଣ୍ଡ ଘଟାଇଛନ୍ତି । କେତେ କେତେ ଯୁଦ୍ଧରେ ପୃଥିବୀ ବକ୍ଷ ନାନା ଭାବରେ ରକ୍ତରଞ୍ଜିତ ହୋଇଛି । ଏବେ ବି ସନ୍ତ୍ରାସବାଦ, ସୀମାପାର ଆତଙ୍କବାଦ, ରାଷ୍ଟ୍ରୀୟ ହିଂସା ଓ ସାଂପ୍ରଦାୟିକ ବିଦ୍ୱେଷ କେତେକ ବ୍ୟକ୍ତିଙ୍କର ମାନସିକତାରେ ରହିଛି । ଜାତି, ଧର୍ମ, ଜାତୀୟତା ଇତ୍ୟାଦିକୁ ଆଧାରକରି କିଛି ଘୃଣା, କ୍ରୂରତା ଓ ଭେଦଭାବ ପ୍ରକାଶ ପାଉଛି । ଏ ସତ୍ତ୍ୱେ ସମଗ୍ର ବିଶ୍ୱରେ ଯେ ଏକ ମହାମାନବୀୟ ଚେତନା ଓ ବିଶ୍ୱଦୃଷ୍ଟିର ଜୀବନବୋଧ ବୃଦ୍ଧି ପାଇବାରେ ଲାଗିଛି ଏହା ଗୌରବାବହ ମନେହୁଏ ।

ବିଂଶଶତାବ୍ଦୀର ଶେଷ ଦଶକରୁ ଜଗତୀକରଣ ବା ବିଶ୍ୱାୟନର ଏକ ଭାବନା ସାରା ପୃଥିବୀରେ ପ୍ରସାରିତ ହେଉଛି । ସାଧାରଣତଃ ଏକ ସଂହତିପୂର୍ଣ୍ଣ ମାନବସମାଜର ଧାରଣାକୁ ଜଗତୀକରଣ ବୋଲି ଅବବୋଧ କରାଯାଇପାରେ । ତେବେ ଜଗତୀକରଣକୁ ପ୍ରାୟତଃ ଏକ ଅର୍ଥନୈତିକ ଭାବନା ବୋଲି ଅବବୋଧ କରାଯାଉଛି । ସମଗ୍ର ପୃଥିବୀର ଅର୍ଥନୈତିକ ସଂହତିକୁ ଜଗତୀକରଣ କୁହାଯାଉଛି । ଅର୍ଥନୈତିକ ମାନଦଣ୍ଡରୁ କେତେକ ରାଷ୍ଟ୍ର ବିକଶିତ ଓ ଅନ୍ୟ

କେତେକ ରାଷ୍ଟ୍ର ବିକାଶଶୀଳ। ବିକାଶଶୀଳ ଦେଶମାନଙ୍କରେ ଅନେକ ଦାରିଦ୍ର୍ୟ ରହିଛି। ବିକାଶଶୀଳ ରାଷ୍ଟ୍ରମାନଙ୍କରେ ସବୁ ଲୋକ ଜୀବନର ନ୍ୟୂନତମ ଆବଶ୍ୟକତା ପୂରଣ କରିପାରନ୍ତି ନାହିଁ। ଜନସଂଖ୍ୟାର ଗୋଟିଏ ଅଂଶ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନ ନିର୍ବାହ କରନ୍ତି। ଅପପୁଷ୍ଟିରେ ଆକ୍ରାନ୍ତ ହେବା ଘଟଣା ଏହି ଦେଶମାନଙ୍କରେ ଦେଖାଯାଏ। ସବୁ ମଣିଷଙ୍କ ପାଇଁ ସ୍ୱାସ୍ଥ୍ୟସେବା ସମ୍ଭବ ହୋଇ ନାହିଁ ଓ ସମାଜର କେତେକ ବ୍ୟକ୍ତି ରୋଗ ବାଧକରେ ଆକ୍ରାନ୍ତ ହେଲେ ଅସହାୟ ହୋଇ ମୃତ୍ୟୁବରଣ କରିବା ଛଡା ସେମାନଙ୍କ ପାଇଁ ଅନ୍ୟ ଉପାୟ ନ ଥାଏ। ଏହି ଦେଶମାନଙ୍କରେ ଅନେକ ନିରକ୍ଷର ବ୍ୟକ୍ତି ରହିଛନ୍ତି ଓ ସ୍କୁଲ ସ୍ତରରୁ ବହୁ ପିଲା ପାଠ ଛାଡିଥାନ୍ତି। ଭିକାରି ଓ ଦେହଜୀବୀ ହୋଇ କିଛି ମଣିଷ ଜୀବନ ନିର୍ବାହ କରନ୍ତି। ଏହିଭଳି ସ୍ଥିତି ରହିଥିବା ଦେଶମାନଙ୍କୁ ବିକାଶଶୀଳ ବା ଗରିବ ବୋଲି କୁହାଯାଉଛି।

ଯେଉଁ ରାଷ୍ଟ୍ରମାନଙ୍କରେ ବହୁ ଦାରିଦ୍ର୍ୟ ରହିଛି ସେହି ରାଷ୍ଟ୍ରମାନେ ନିଜ ପ୍ରୟାସରେ ଓ ସୀମିତ ସମ୍ବଳ ଭିତରେ ସେମାନଙ୍କ ଦେଶରୁ ଦାରିଦ୍ର୍ୟ ଦୂରୀକରଣ ସମ୍ଭବତଃ କରିପାରିବେ ନାହିଁ ବୋଲି ଏକ ଧାରଣା ସୃଷ୍ଟି ହୋଇଛି। ବିନା ଆନ୍ତର୍ଜାତିକ ସହଯୋଗରେ ଦାରିଦ୍ର୍ୟ ଦୂର ହେବ ନାହିଁ ବୋଲି ବିଚାର ପ୍ରକାଶ ପାଉଛି। ଏହି ସ୍ଥିତିରେ ଜଗତୀକରଣ କେତେକ ନୂଆ ଆଶା ସଞ୍ଚାର କରୁଛି ବୋଲି କେତେକ ଆଶାପୋଷଣ କରୁଛନ୍ତି। ବିକଶିତ ରାଷ୍ଟ୍ରମାନଙ୍କରେ ପ୍ରଚୁର ପୁଞ୍ଜି ଓ ନୂତନ ପ୍ରାଯୁକ୍ତିକ ଜ୍ଞାନକୌଶଳ ରହିଛି। ଯେଉଁ ଦେଶମାନଙ୍କରେ ଉତ୍କଟ ଦାରିଦ୍ର୍ୟ ରହିଛି ସେଠାରେ ପ୍ରାକୃତିକ ସମ୍ପଦର ଅଭାବ ନାହିଁ। ସେହିପରି ସେହି ଦେଶମାନଙ୍କରେ ପ୍ରଚୁର ଜନଶକ୍ତି ଓ ଶସ୍ତା ଶ୍ରମ ରହିଛି। ବସ୍ତୁତଃ ବିକଶିତ ରାଷ୍ଟ୍ରମାନଙ୍କର ପୁଞ୍ଜି ଓ ପ୍ରଯୁକ୍ତି ଓ ଗରିବ ଦେଶମାନଙ୍କର ଶ୍ରମ ଓ ସମ୍ପଦର ସମନ୍ୱୟ ହେଲେ ବିକାଶଶୀଳ ରାଷ୍ଟ୍ରମାନଙ୍କରୁ ଦାରିଦ୍ର୍ୟ ଦୂରୀକରଣ ହୋଇପାରିବ ବୋଲି ଜଗତୀକରଣର ସମର୍ଥକମାନେ ମତ ପ୍ରକାଶ କରୁଛନ୍ତି। ସମଗ୍ର ପୃଥିବୀରେ ଏକ ଅର୍ଥନୈତିକ ସଂହତି ପ୍ରତିଷ୍ଠା କରିବା ଜଗତୀକରଣର ଆଭିମୁଖ୍ୟ ବୋଲି କୁହାଯାଉଛି। ଜଗତୀକରଣ ସହ ଉଦାରୀକରଣ ଓ ଘରୋଇକରଣକୁ ସଂଶ୍ଳିଷ୍ଟ କରାଯାଇ ଏକ ବିଶ୍ୱ ଅର୍ଥନୀତିର ଭାବନା ବ୍ୟକ୍ତ ହେଉଛି। ରାଜନୈତିକ ଆଦର୍ଶ ନିର୍ବିଶେଷରେ ସମଗ୍ର ବିଶ୍ୱରେ ଅର୍ଥନୈତିକ ସଂହତି ଓ ନିର୍ଭରଶୀଳତା ମାଧ୍ୟମରେ ବିକାଶଶୀଳ ରାଷ୍ଟ୍ରମାନଙ୍କୁ ବିକଶିତ କରାଯାଇପାରିବ ବୋଲି ଜଗତୀକରଣର ସମର୍ଥକମାନେ ମତ ବ୍ୟକ୍ତ କରୁଛନ୍ତି।

ଜଗତୀକରଣକୁ କେତେକ ବୁଦ୍ଧିଜୀବୀ ବି ଘୋର ବିରୋଧ କରୁଛନ୍ତି। ଜଗତୀକରଣକୁ ସେମାନେ ଅର୍ଥନୈତିକ ସାମ୍ରାଜ୍ୟବାଦ ବୋଲି ଅଭିହିତ କରିଆସିଛନ୍ତି। ଶିଳ୍ପ ବିପ୍ଳବ ପରେ

ପୃଥିବୀରେ ଯେଉଁ ରାଜନୈତିକ ସାମ୍ରାଜ୍ୟବାଦ ବିସ୍ତାର ଲାଭ କଲା ତାହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ପୁଞ୍ଜିବାଦୀ ଶୋଷଣ। ସଂପ୍ରତି ଯେଉଁ ଜଗତୀକରଣର କଥା କୁହାଯାଉଛି ତାହା ଶୋଷଣର ଏକ ନୂତନ ରୂପାନ୍ତର ବୋଲି ଜଗତୀକରଣର ସମାଲୋଚକମାନେ ମତ ଦେଉଛନ୍ତି। ସମଗ୍ର ପୃଥିବୀର ପ୍ରାକୃତିକ ସମ୍ପଦକୁ ନିୟନ୍ତ୍ରଣକୁ ନେବା ପାଇଁ, ନିଜ ସାମଗ୍ରୀକୁ ବିଶ୍ୱ ବଜାରରେ ବିକ୍ରି କରିବା ପାଇଁ ଓ ଏକ ଉପଭୋକ୍ତାବାଦୀ ଅପସଂସ୍କୃତିର ବିକାଶ ପାଇଁ ଜଗତୀକରଣ ଉଦ୍ଦିଷ୍ଟ ବୋଲି ସମାଲୋଚକମାନେ ଏହାକୁ ବିରୋଧ କରୁଛନ୍ତି।

ଜଗତୀକରଣ ଏକ ଅର୍ଥନୈତିକ ବିଚାରଭାବେ ବିଶ୍ୱର ହିତସାଧନ କରିବ ବା ମାନବସମାଜ ପାଇଁ କ୍ଷତିକାରକ ହେବ ତାହା ଏକ ବିବାଦୀୟ ବିଷୟ। ତେବେ ସମଗ୍ର ବିଶ୍ୱରେ ଏକ ସାଂସ୍କୃତିକ ସଂହତି ସ୍ଥାପନ କରିବା ସହ ମାନବ ସମାଜରେ ଐକ୍ୟବୋଧ, ଭ୍ରାତୃତ୍ୱଭାବ ଓ ସମ୍ବେଦନଶୀଳ ମନୋଭାବ ସୃଷ୍ଟି କରିବାକୁ ସମସ୍ତେ ସମର୍ଥନ କରିବେ। ମାନବ ସମାଜରୁ ସକଳ ହିଂସା, ଭେଦଭାବ, ସନ୍ତ୍ରାସବାଦ ଓ ଆଞ୍ଚଳିକ ମନୋଭାବକୁ ଦୂର କରି ଏକ ସାର୍ବଜନୀନ ଓ ଆନ୍ତର୍ଜାତିକ ଜୀବନଦୃଷ୍ଟିର ବିକାଶ କରାଇବା ଆଜିର ବଡ ଆହ୍ୱାନ ମନେହୁଏ। ମଣିଷକୁ ହୃଦୟବାନ, ଗରିମାମୟ ଓ ମହନୀୟ କରିବା ଯଦି ଜଗତୀକରଣର ଅନ୍ତର୍ନିହିତ ଆଦର୍ଶ ହୁଏ ତେବେ ସେହି ବିଚାରବୋଧ ଯେ ସମଗ୍ର ପୃଥିବୀରେ ଏକ ସାଂସ୍କୃତିକ ଜାଗରଣ ଆଣିପାରିବ ଏହା ନିଃସନ୍ଦେହ ମନେହୁଏ।

(ପ୍ରଗତିବାଦୀ, ୦୮.୦୩.୨୦୧୭)

# କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର

ଏ ଲେଖାଟି କୌଣସି ବୌଦ୍ଧିକ ବା ସାମାଜିକ ପ୍ରସଙ୍ଗ ସଂପର୍କିତ ନୁହେଁ; ଏହା ଏହି ଲେଖକର ବ୍ୟକ୍ତିଗତ ଆବେଗ ଓ ଅନୁଭୂତି ସମ୍ବନ୍ଧିତ ଏକ ଲେଖା । ମୁଁ ଭୁବନ ହାଇସ୍କୁଲରେ ପଢି ଆଜକୁ ପଚାଶ ବର୍ଷ ତଳେ ୧୯୬୭ରେ ମାଟ୍ରିକ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲି । ଭୁବନ ଗ୍ରାମ ଓଡିଶାରେ ଥିଲା ସବୁଠାରୁ ବଡ ଗ୍ରାମ ଓ ସେଠିକାର ହାଇସ୍କୁଲ ଢେଙ୍କାନାଳ ଜିଲ୍ଲାର ଏକ ପ୍ରମୁଖ ସରକାରୀ ବିଦ୍ୟାଳୟ । ସେତେବେଳେ ହାଇସ୍କୁଲରେ ଏକ ହଷ୍ଟେଲ ରହିଥିଲା ଓ ପ୍ରାୟ ଏକ ଶହ ଛାତ୍ର ଛାତ୍ରାବାସରେ ରହୁଥିଲେ । ଆମ ସମୟରେ ପ୍ରତ୍ୟେକ କ୍ଲାସରେ ଦୁଇଟି ଲେଖାଏଁ ସେକ୍‌ସନ ରହିଥିଲା ଓ ଆମେ ପାଖାପାଖି ସତୁରୀ ଜଣ ଛାତ୍ର ମାଟ୍ରିକ ପରୀକ୍ଷା ଦେଇଥିଲୁ । କେତେକ ସାଥୀ ଯୋଜନା କଲେ ଯେ ଆମ ବ୍ୟାଚରେ ପଢୁଥିବା ସ୍କୁଲର ସାଥିମାନଙ୍କର ଏକ ବନ୍ଧୁମିଳନ କରିବେ । ଓଡିଶାର ବିଭିନ୍ନ ସ୍ଥାନରେ ଏବେ ସ୍ଥାୟୀ ଭାବେ ରହୁଥିବା ସାଥିମାନଙ୍କୁ ଯୋଗାଯୋଗ କରି ଭୁବନେଶ୍ୱରରେ ଏକ ବନ୍ଧୁମିଳନର ଆୟୋଜନ କରାଗଲା । ପଚାଶ ବର୍ଷ ତଳେ ମାଟ୍ରିକ ପରୀକ୍ଷା ଦେଇଥିବା ଅନେକ ସାଥିଙ୍କୁ ଯୋଗାଯୋଗ କରି ଗୋଟିଏ ଦିନ ଭୁବନେଶ୍ୱର ଆସିବାକୁ ସମସ୍ତଙ୍କୁ ନିବେଦନ କରାଗଲା । ଏହା ଭିତରେ କେତେକ ସାଥି ସଂସାରରୁ ବିଦାୟ ନେଇ ସାରିଲେଣି । ସମସ୍ତେ ବାର୍ଦ୍ଧକ୍ୟର ଦ୍ୱାରଦେଶରେ ଉପନୀତ । ତେବେ ହାଇସ୍କୁଲ ଛାଡିବା ପରେ ଏ ଲେଖକର କେତେକ ସାଥିଙ୍କ ସହ ଆଉ ଜୀବନରେ ସାକ୍ଷାତ ହୋଇନଥିଲା । ଦୀର୍ଘ ପଚାଶ ବର୍ଷର ବ୍ୟବଧାନ ପରେ ସାଥିମାନଙ୍କୁ ଦେଖି ଯେଉଁ ଆନନ୍ଦ ଓ ପ୍ରୀତିଭାବର ଅନୁଭବ ଆସିଲା ତାହା ପ୍ରକୃତରେ ଅବିସ୍ମରଣୀୟ । ଆମେ ସମସ୍ତେ ଭୁବନେଶ୍ୱରର ଏକ ମନ୍ଦିର ପରିସରରେ ଏକତ୍ର ହୋଇ ନିଜ ନିଜର ଜୀବନ ଯାତ୍ରାର କାହାଣୀ ପରସ୍ପରକୁ କହିଲୁ ଓ ପରସ୍ପରଠାରୁ ଶେଷରେ ଆବେଗଭରା ବିଦାୟ ନେଲୁ ।

ଆମ ସମୟରେ ସ୍କୁଲରେ ଯେଉଁମାନେ ଶିକ୍ଷକ ଥିଲେ ସେ ମଧ୍ୟରୁ ଅନେକ ସଂସାରରୁ ବିଦାୟ ନେଇ ସାରିଲେଣି । ଆମର ପ୍ରଧାନ ଶିକ୍ଷକ ଥିଲେ ଜଣେ ଉଚ୍ଚକୋଟିର ଆଦର୍ଶବାଦୀ ଶିକ୍ଷକ । ତାଙ୍କର ପାଠପଢା ଥିଲା ଅତି ଉଚ୍ଚମାନର । ତାଙ୍କର ବ୍ୟକ୍ତିତ୍ୱ, ଶୃଙ୍ଖଳାଜ୍ଞାନ, ଉତ୍ତମ ଶିକ୍ଷାଦାନ ଓ ପ୍ରଶାସନିକ ଦକ୍ଷତା ଥିଲା ଅନୁକରଣୀୟ । ଆମ ସମୟରେ ସ୍କୁଲର ଶିକ୍ଷକମାନଙ୍କର

ନିଷ୍ଠା, ଶିକ୍ଷାଦାନ ପ୍ରତି ଉତ୍ସର୍ଗୀକୃତ ମନୋଭାବ ଓ ଆଦର୍ଶବୋଧ ଏବେ ବି ଆମମାନଙ୍କ ସ୍ମୃତିରେ ଅମଳିନ ହୋଇରହିଛି । ଶିକ୍ଷାଦାନ ସହ ଜୀବନବୋଧର ଯେଉଁ ବାର୍ତ୍ତା ସ୍କୁଲ ଜୀବନରେ ଶିକ୍ଷକମାନଙ୍କଠାରୁ ପାଇଥିଲୁ ତାହା ଆମମାନଙ୍କ ପାଇଁ କିପରି ପ୍ରେରଣାର ଉତ୍ସ ହୋଇଛି ତାହା ସାଥିମାନଙ୍କ ଗହଣରେ ସ୍ମୃତିଚାରଣ କରିଥିଲୁ । ପାଠପଢାରେ ଅବହେଳା ବା କିଛି କିଶୋର-ସୁଲଭ ଚପଳତା ପାଇଁ ସାର୍‌ମାନଙ୍କଠାରୁ ଗାଳି ଶୁଣିଛୁ, ମାଡ ଖାଇଛୁ, ତେବେ ସେସବୁ ଜୀବନଯାତ୍ରାରେ ଆଗକୁ ଯିବାରେ ପଥପ୍ରଦର୍ଶକ ହୋଇଛି । ଇଂରାଜୀରେ କୁହାଯାଇଛି ଯେ ଏକ ଦେଶର ଭବିଷ୍ୟତ ତାର ଶ୍ରେଣୀଗୃହରେ ରୂପରେଖ ନେଇଥାଏ । ଏହି କଥାର ତାତ୍ପର୍ଯ୍ୟ ହେଉଛି ଦେଶନିର୍ମାଣ କ୍ଷେତ୍ରରେ ବିଦ୍ୟାଳୟ ଶିକ୍ଷାର କିଛି ନିର୍ଣ୍ଣାୟକ ଭୂମିକା ରହିଥାଏ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଯେତେବେଳେ ବିଭିନ୍ନ ସ୍ଥାନରେ ହାଇସ୍କୁଲମାନ ପ୍ରତିଷ୍ଠା ହେଲା ସେ ସମୟରେ ଅନେକ ମେଧାବୀ ଛାତ୍ର ଶିକ୍ଷକତା ବୃତ୍ତିକୁ ଆସୁଥିଲେ । ଶିକ୍ଷକମାନେ ଶିକ୍ଷାଦାନକୁ ଏକ ବ୍ରତ ଭାବରେ ଗ୍ରହଣ କରୁଥିଲେ । ଶିକ୍ଷକମାନଙ୍କ ଭିତରେ ବହୁ ନିଷ୍ଠା ଓ ଆଦର୍ଶବୋଧ ରହିଥିଲା ଓ ସେମାନଙ୍କର ସରଳ ଜୀବନଯାପନ ଓ ପ୍ରେରଣା ଛାତ୍ରମାନଙ୍କ ପାଇଁ ଆଦର୍ଶ ସ୍ଥାନୀୟ ଥିଲା ।

ଗ୍ରାମୀଣ ଜୀବନଧାରାରେ ସେ ସମୟରେ ସ୍କୁଲମାନଙ୍କର ପରିବେଶ ଆଜି ପରି ଏତେ ଉନ୍ନତ ନ ଥିଲା । ସେତେବେଳେ ସ୍କୁଲରେ ଓ ହଷ୍ଟେଲରେ ବିଜୁଳି ଆଲୋକ ନ ଥିଲା । ରାତିରେ ଅନ୍ତେବାସୀମାନେ ଲଣ୍ଠନ ଲଗାଇ ପାଠ ପଢୁଥିଲେ । ଆମର ଅନେକ ଶିକ୍ଷକ ସ୍କୁଲ ପରିସରରେ ଗୋଟିଏ ଲେଖାଏଁ ରୁମରେ ରହୁଥିଲେ ଓ ପ୍ରାୟତଃ ହଷ୍ଟେଲର ଅନ୍ତେବାସୀମାନେ ସାରମାନଙ୍କଠାରୁ ଆବଶ୍ୟକ ବେଳେ ପରାମର୍ଶ ନେଇପାରୁଥିଲେ । ସ୍କୁଲରେ ପାଠପଢା ସହିତ ଖେଳ, ସାଂସ୍କୃତିକ କାର୍ଯ୍ୟକ୍ରମ, ସାପ୍ତାହିକ ବକ୍ତୃତା, ବାର୍ଷିକ ଉତ୍ସବ, ବାର୍ଷିକ ନାଟକ ଇତ୍ୟାଦି ବିଭିନ୍ନ କାର୍ଯ୍ୟସୂଚୀ ଶିକ୍ଷକମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଭିତରେ ଛାତ୍ରମାନେ ସମାପନ କରୁଥିଲେ । ପାଠପଢା ସହିତ ଏହି ସବୁ ଶିକ୍ଷାତିରିକ୍ତ କାର୍ଯ୍ୟକ୍ରମ ଜୀବନ ଆସ୍ୱାଦର ସୃଜନଶୀଳ ଆବେଗ ସୃଷ୍ଟି କରିବାରେ ସହାୟକ ହେଉଥିଲା । କର୍ମରେ ଶୃଙ୍ଖଳା, ଆଚରଣରେ ଶୁଦ୍ଧତା ଓ ଚିନ୍ତାଧାରାରେ ପବିତ୍ରତା ସୃଷ୍ଟି କରିବାରେ ବିଦ୍ୟାଳୟମାନଙ୍କର ଯେ ଏକ ପ୍ରମୁଖ ଭୂମିକା ରହିଛି ଏହା ନିଃସନ୍ଦେହ ଭାବେ କୁହାଯାଇପାରେ । ବିଶେଷକରି କିଶୋର ବୟସରେ ସୃଜନଶୀଳତାର ଯେଉଁ ଅନୁରାଗ ଓ ଜୀବନବୋଧର ଯେଉଁ ପ୍ରେରଣା ମିଳିଥାଏ ତାହା ଭବିଷ୍ୟତ ଜୀବନକୁ ଅନେକାଂଶରେ ରୂପ ଦେଇଥାଏ । ଏହି ଦୃଷ୍ଟିରୁ ଦେଖିଲେ ବିଦ୍ୟାଳୟ ଜୀବନ ଭବିଷ୍ୟତ ନିର୍ମାଣ ପାଇଁ ସବୁଠାରୁ ବଡ ପ୍ରେରଣାଦାୟକ କ୍ଷେତ୍ର ହୋଇଥାଏ । ପିଲାମାନଙ୍କ ଭିତରେ ଉନ୍ନତ ରୁଚିବୋଧ ଓ ମାନବିକ ମୂଲ୍ୟବୋଧ ପ୍ରତି ଏକ ଶ୍ରଦ୍ଧାଶୀଳ ଦୃଷ୍ଟି ସୃଷ୍ଟି କରିବାରେ ବିଦ୍ୟାଳୟମାନ ଯେ ଏକ ନିର୍ଣ୍ଣାୟକ ଭୂମିକା ନିର୍ବାହ କରନ୍ତି ଏହା ଏକ ସାଧାରଣ ଉପଲବ୍ଧି ।

ପ୍ରତ୍ୟେକ ମଣିଷ ଜୀବନଯାତ୍ରାରେ କେତେ ମଣିଷଙ୍କ ସଂପର୍କରେ ଆସେ, କେତେ କେତେ ବନ୍ଧୁସୁଲଭ ଆତ୍ମୀୟତା ସୃଷ୍ଟି କରେ। ବନ୍ଧୁତା ଜୀବନରେ ସବୁଠାରୁ ବଡ ଆବେଗିକ ସମ୍ବନ୍ଧ। ଏଥିରେ ରହିଥିବା ପାରସ୍ପରିକତା ଜୀବନଯାତ୍ରାରେ ଏକ ବଡ ସମ୍ପଦ। ସ୍ନେହ, ପ୍ରୀତି, ବନ୍ଧନ, ପାରସ୍ପରିକତା, ଆନ୍ତରିକତା, ହୃଦୟଭରା ଅନୁରାଗ ଏସବୁ ମଣିଷ ଜୀବନକୁ ସୁଖମୟ କରିଥାଏ। ନିଜର ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରି ଜୀବନଯାତ୍ରାରେ ଆଗକୁ ଯିବାରେ ବନ୍ଧୁତା ହିଁ ବଳ ଯୋଗାଇଥାଏ। କିଛି ସାହିତ୍ୟ ପଢି, ସଙ୍ଗୀତ ଶୁଣି ବା ଏକ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କରି ମଣିଷ ଯେଉଁ ଆନନ୍ଦ ପାଏ ସେହି ସମସ୍ତ ଆନନ୍ଦ ବନ୍ଧୁସୁଲଭ ଆନ୍ତରିକତା ଭିତରେ ମିଳିଥାଏ। ବନ୍ଧୁମାନଙ୍କ ମେଳରେ ମଣିଷ ଯେଉଁ ସମୟ ଅତିବାହିତ କରେ, ସୁଖ-ଦୁଃଖ ବାଣ୍ଟେ, ସହାନୁଭୂତିର ହାତ ବଢାଏ, ହୃଦୟଖୋଲା ହସ ହସିଥାଏ ତାହା ପ୍ରକୃତରେ ଏକ ପବିତ୍ର ଅନୁଭବ। ପାରିବାରିକ ବନ୍ଧନ ବା ପ୍ରେମର ଅନୁଭବପରି ଏକ ବନ୍ଧୁତ୍ୱପୂର୍ଣ୍ଣ ପ୍ରୀତିଭାବ ଜୀବନବୋଧକୁ ସୁଖମୟ କରିଥାଏ। ଜଣେ ଉତ୍ତମ ବନ୍ଧୁ ପାଖରେ ମଣିଷ ନିଜ ସତ୍ତାର ଏକ ପ୍ରତିବିମ୍ବ ଦେଖେ। ପ୍ରତ୍ୟେକ ବ୍ୟକ୍ତି ଯେପରି ନିଜକୁ ଭଲ ପାଏ, ସେହି ଭଲପାଇବା ବନ୍ଧୁ ପାଖରେ ପ୍ରତିଫଳିତ ହୁଏ। ଯେଉଁଠି ହୃଦୟର ବନ୍ଧନ ଦୃଢ ଥାଏ, ମନର ଭାବ ମିଳେ ସେଠାରେ ହିଁ ବନ୍ଧୁତା ସ୍ଥାୟୀ ହୋଇଥାଏ। ମଣିଷର ସାମାଜିକ ପ୍ରବୃତ୍ତିର ପ୍ରକୃତ ପ୍ରତିଫଳନ ବନ୍ଧୁସୁଲଭ ଆନ୍ତରିକତା ଭିତରେ ପ୍ରକାଶିତ ହୁଏ। ଉତ୍ତମ ବନ୍ଧୁତା ଜୀବନକୁ ସରସ ସୁନ୍ଦର କରେ ଓ ଏହାର ଅଭାବରେ ଜୀବନରେ କିଛି ଅପୂର୍ଣ୍ଣତା ରହିଯାଏ।

ଦୀର୍ଘ ପଚାଶ ବର୍ଷର ବ୍ୟବଧାନ ପରେ ସ୍କୁଲ ସମୟର ନିଜର ସାଥିମାନଙ୍କ ସହ ଭାବର ଆଦାନ ପ୍ରଦାନ କରିବା ଓ ସମସ୍ତଙ୍କ ମୁହଁରୁ ସେମାନଙ୍କ ଜୀବନଯାତ୍ରାର କାହାଣୀ ଶୁଣିବା ମୋ ପାଇଁ ଥିଲା ଏକ ସୁନ୍ଦର ଉପଲବ୍ଧି। ସେତେବେଳେ ଗ୍ରାମୀଣ ଜୀବନଧାରାରେ ଉତ୍କଟ ଦାରିଦ୍ର୍ୟ ରହିଥିଲା। ଅନେକ ସାଥି ମାଟ୍ରିକ ପରେ ଉଚ୍ଚଶିକ୍ଷା କ୍ଷେତ୍ରରେ ଆଗକୁ ଯାଇପାରିଲେ ନାହିଁ। କେତେକ ପାରିବାରିକ ବୃତ୍ତି ଭିତରେ ରହିଲେ, କେତେକ କିଛି ବୈଷୟିକ ପ୍ରଶିକ୍ଷଣ ନେଇ ସ୍ୱାବଲମ୍ବୀ ହେବାକୁ ପ୍ରୟାସ କରିଥିଲେ। ଯେଉଁମାନେ କଲେଜରେ ପାଠ ପଢିବାର ସୁଯୋଗ ପାଇଲେ ସେମାନେ ଭଲ ଭଲ ଚାକିରି କରିବାର ଅବକାଶ ପାଇଲେ। ଯେଉଁମାନେ ଯାହା ବି ଚାକିରି କରନ୍ତୁ ନା କାହିଁକି ସମସ୍ତେ ଅବସର ନେଇ ସାରିଲେଣି। ପରିସ୍ଥିତି କ୍ରମେ ଅଧିକାଂଶ ନିଜର ଭିଟାମାଟିରୁ ବିଚ୍ଛିନ୍ନ ହୋଇ ବିଭିନ୍ନ ସ୍ଥାନରେ ସ୍ଥାୟୀ ଭାବେ ରହୁଛନ୍ତି। ସ୍ୱାଧୀନତା ପରେ ଯେତେବେଳେ ଶିକ୍ଷା ଗାଁ ଗହଳକୁ ପ୍ରସାରିତ ହେଲା ଓ ପାଠ ପଢିବାର ଅବକାଶ ମିଳିଲା, ସେହି ପିଢିର ଲୋକମାନେ ଯେଉଁମାନେ ପଢିବାର ସୁଯୋଗ ପାଇଲେ

ସେମାନେ ଗ୍ରାମରୁ ବିଚ୍ଛିନ୍ନ ହୋଇଗଲେ। ଖୁବ୍ କମ୍ ଉଚ୍ଚଶିକ୍ଷିତ ବ୍ୟକ୍ତି ଏବେ ଅବସର ପରେ ଗ୍ରାମକୁ ଫେରୁଛନ୍ତି। ବରଂ ଏହି ପଚାଶବର୍ଷ ଭିତରେ ଯେଉଁ ଛୋଟ ବଡ ସହରମାନ ଗଢି ଉଠିଛି ସେଠାରେ ସେମାନେ ପ୍ରାୟତଃ ରହିବାକୁ ଉଚିତ ମନେ କରୁଛନ୍ତି। ଗମନାଗମନ, ଚିକିତ୍ସା ସୁବିଧା, ପିଲାମାନଙ୍କ ପାଠପଢା ଇତ୍ୟାଦି ସୁଯୋଗମାନ ସବୁ ସ୍ଥାନରେ ଉପଲବ୍ଧ ହୋଇପାରୁ ନାହିଁ। ସୁତରାଂ ପରିସ୍ଥିତି ଜନିତ ଆବଶ୍ୟକତାରୁ ଅନେକଙ୍କୁ ଗ୍ରାମୀଣ ପରିବେଶରୁ ବିଚ୍ଛିନ୍ନ ହେବାକୁ ପଡିଛି। ଏ ସବୁ ସତ୍ତ୍ୱେ ଆମ ପିଢିର ଲୋକମାନଙ୍କର ଗ୍ରାମୀଣ ଜୀବନ, ସେଠିକାର ପ୍ରାକୃତିକ ପରିବେଶ ସହ କିଛି ଭାବଗତ ସମ୍ବନ୍ଧ ରହିଛି। ଘଟଣାକ୍ରମେ ସହରମାନଙ୍କରେ ରହୁଥିଲେ ବି ଗାଁର ବିଲବାଡି, ତୋଟା, ପାହାଡ, ନଦୀ ଓ ସବୁଜିମା ପରିବେଶ ସହିତ ଆବେଗିକ ବନ୍ଧନ ରହିଛି।

ସ୍କୁଲ ଜୀବନରେ ଅଧିକାଂଶ ସାଥି ପରସ୍ପର ସହ 'ତୁ' ଭାବରେ କଥା ହେଉଥିଲୁ। ଏତେ ବର୍ଷ ପରେ ସେହି ଆତ୍ମୀୟତାର ପରିପ୍ରକାଶ ବି ହେଲା। ପଦ-ପଦବୀ, ସାମାଜିକ ପ୍ରତିଷ୍ଠା, ଶିକ୍ଷାଗତ ଯୋଗ୍ୟତା ନିର୍ବିଶେଷରେ ପରସ୍ପର ସହ କଥା ହେବାବେଳେ ଅନେକ ସାଥି ପରସ୍ପରକୁ ତୁ ଡାକରରେ କଥା ହେବା ବେଶ୍ ଉପଭୋଗ୍ୟ ଥିଲା। ସମସ୍ତେ ଏହି ବ୍ୟବଧାନ ଭିତରେ ଜେଜେ ବା ଅଜା ହୋଇ ସାରିଛନ୍ତି। ସମସ୍ତଙ୍କର ପକ୍ୱ କେଶ, ଆଖିରେ ଚଷମା ଓ କେତେକଙ୍କର କାନରେ ଶ୍ରବଣ ଯନ୍ତ୍ର। କାହାର ରକ୍ତଚାପ ତ କାହାର ମଧୁମେହ। ଏସବୁ ସତ୍ତ୍ୱେ ହୃଦୟ ଭିତରେ ସମସ୍ତେ ସାଥିମାନଙ୍କ ଗହଣରେ ସେହି କିଶୋର ବୟସର ଉଦ୍ଦାମତା କିଛି ସମୟ ପାଇଁ ବ୍ୟକ୍ତ କରିଥିଲେ। ପରସ୍ପର ସହ ସ୍ନେହାଲିଙ୍ଗନ ଏକ ମାର୍ମିକ ଅନୁଭବ ଦେଉଥିଲା। ଶେଷରେ ପରସ୍ପରଠାରୁ ବିଦାୟ ନେଲା ବେଳେ ଅନ୍ତତଃ ବର୍ଷକୁ ଥରେ ଭୁବନ ଗାଁରେ ଏକତ୍ର ହେବାକୁ ନିଷ୍ପତ୍ତି ପ୍ରକାଶ ପାଇଲା। ତେବେ ଆଜିର ମୋବାଇଲ ସେବା ବନ୍ଧୁତାକୁ ଦୃଢ କରିବାରେ ସହାୟକ ହୋଇପାରିଛି।

(ପ୍ରଗତିବାଦୀ. ୧୨.୦୪.୨୦୧୭)

# ସୁଖାନୁଭୂତି

ପ୍ରତ୍ୟେକ ବ୍ୟକ୍ତି ସୁଖ, ଆନନ୍ଦ ଓ ଏକ ତୃପ୍ତିକର ଜୀବନ ଅତିବାହିତ କରିବାକୁ ଚାହେଁ। କୌଣସି ସଚେତନ ବ୍ୟକ୍ତି ସ୍ୱଇଚ୍ଛାରେ ଦୁଃଖ, ଯନ୍ତ୍ରଣା, ନୈରାଶ୍ୟ ଓ ହତାଶା ଭିତରେ ଜୀବନ ବଞ୍ଚିବାକୁ ଚାହେଁ ନାହିଁ। ଏହି ଦୃଷ୍ଟିରୁ ଦେଖିଲେ ସୁଖ ଓ ଆନନ୍ଦ ଜୀବନର ଅନ୍ତର୍ନିହିତ ମୂଲ୍ୟର ସୂଚନା ଦିଏ। ବହୁ ଉତ୍ସରୁ ସୁଖକର ଅନୁଭବ ମିଳିଥାଏ। ସୁଖର ଅନୁଭବ ଜୀବନକୁ ସରସ, ସୁନ୍ଦର ଓ ପ୍ରୀତିପ୍ରଦ କରିବା ବେଳେ ଏହାର ବିପରୀତ ଅନୁଭବ ଜୀବନରେ ହତାଶା, ନୈରାଶ୍ୟ ଆଣିଥାଏ।

ପ୍ରତ୍ୟେକ ବ୍ୟକ୍ତି ଏକ ପରିବାରରେ ଜନ୍ମ ହୁଏ ଓ ଏକ ସାମାଜିକ ପରିବେଶରେ ବୃଦ୍ଧି ପାଇଥାଏ। ବ୍ୟକ୍ତିର ଜୀବନ ବିଭିନ୍ନ ଅବସ୍ଥା ଦେଇ ଗତି କରିଥାଏ। ବାଲ୍ୟାବସ୍ଥା, କିଶୋର ଅବସ୍ଥା, ଯୁବାବସ୍ଥା ଦେଇ ପ୍ରତ୍ୟେକ ବ୍ୟକ୍ତି ବାର୍ଦ୍ଧକ୍ୟରେ ଉପନୀତ ହୁଏ। ଶେଷରେ ମହାକାଳ ଭିତରେ ବ୍ୟକ୍ତି ବିସ୍ମୃତ ହୋଇଯାଏ। ଏହା ତ ଜୀବନର ସାଧାରଣ ଧାରା ଓ ଏହି ଗତି ଅଲଘନୀୟ ମନେହୁଏ। ବ୍ୟକ୍ତି ମରଣଶୀଳ କିନ୍ତୁ ସମାଜ, ରାଷ୍ଟ୍ର, ମାନବଜାତି ଦୀର୍ଘସ୍ଥାୟୀ ହୋଇ ରହେ। ହୁଏତ ମହାକାଳରେ ସେ ଯେ ଦିନେ ନଷ୍ଟ ନହେବେ ଏହା ବି କୁହାଯାଇନପାରେ। ବ୍ୟକ୍ତି ଯେଉଁ ପରିବେଶରେ ବଢେ, ସେହି ସମାଜର ସାଂସ୍କୃତିକ ପରିବେଶ, ଜୀବନବୋଧ, ନୀତି-ଆଦର୍ଶ, ପରମ୍ପରା ଇତ୍ୟାଦି ପ୍ରାଥମିକ ଅବସ୍ଥାରେ ତା'ର ଦୃଷ୍ଟିଭଙ୍ଗୀକୁ ବହୁ ଭାବରେ ପ୍ରଭାବିତ କରିଥାଏ। ତାର ନିଜସ୍ୱ ଶିକ୍ଷା, ବିଚାରବୋଧ, ଅନୁଶୀଳନ ଓ ଅନୁଭବର ଗଭୀରତା ହୁଏତ ତାର ଦୃଷ୍ଟିଭଙ୍ଗୀ ବା ବିଚାରଧାରାରେ ପରିବର୍ତ୍ତନ ଆଣିଥାଏ। ସାଧାରଣ ଭାବେ ଦେଖିଲେ ଅନେକ ବ୍ୟକ୍ତି ନିଜ ସାମାଜିକ ପରିବେଶରୁ ଯେଉଁ ଭାବନା ଓ ମୂଲ୍ୟଚୟ ପାଇଥାନ୍ତି ତାହା ହିଁ ତାଙ୍କ ଜୀବନଧାରାକୁ ଗଭୀର ଭାବେ ନିୟନ୍ତ୍ରିତ କରିଥାଏ।

ସମାଜର ଜଣେ ସାଧାରଣ ମଣିଷ ସୁଖ, ଆନନ୍ଦ ଓ ତୃପ୍ତିକର ଅନୁଭବ କାମନା କରିଥାଏ ଓ ଏଥିପାଇଁ ଉଦ୍ୟମ କରିଥାଏ। ଏହି ଉଦ୍ୟମ ହୁଏତ କଷ୍ଟକର ହୋଇଥାଏ। ଛାତ୍ରଟିଏ କଷ୍ଟକରି ପରିଶ୍ରମ କରେ ଏହି ଆଶାରେ ଯେ ସେ ଉଚ୍ଚଶିକ୍ଷା ଲାଭକରିବ ଓ ସମାଜରେ ଭବିଷ୍ୟତରେ ସ୍ୱାବଲମ୍ବୀ ହୋଇପାରିବ। ଜଣେ କାରିଗର ତା' ବୃତ୍ତି ଭିତରେ ପରିଶ୍ରମକରି ରୋଜଗାର କରିବାକୁ ଚାହେଁ ଯାହାଦ୍ୱାରା ସେ ନିଜ ପରିବାରର ଆବଶ୍ୟକତାକୁ ପୂରଣ

କରିପାରିବ । ଜଣେ ଶ୍ରମଜୀବୀ ବ୍ୟକ୍ତି କଠିନ ପରିଶ୍ରମ କରିଥାଏ ଯାହା ଫଳରେ ସେ ସୁଖରେ ବଞ୍ଚିପାରିବ । ପ୍ରତ୍ୟେକ ବ୍ୟକ୍ତି ନିଜର ଜୀବନଧାରଣ ପାଇଁ ସର୍ବନିମ୍ନ ଆର୍ଥିକ ନିରାପତ୍ତା ଚାହେଁ ଓ ଆର୍ଥିକ ସ୍ୱାବଲମ୍ବନଶୀଳତା ଅଭାବରେ ଜୀବନରେ ସୁଖ ଶାନ୍ତି ମିଳିପାରେ ନାହିଁ । ଅବଶ୍ୟ କୁହାଯାଏ ଯେ ମଣିଷର ଆବଶ୍ୟକତା ବା ଅଭାବ ଅସୀମ । କେତେକ ଆବଶ୍ୟକତାର ପୂରଣ ପରେ ଅନ୍ୟ ଅଭାବ ବ୍ୟକ୍ତିକୁ ବ୍ୟସ୍ତ କରିଥାଏ । ତେବେ ନିଜର ଆର୍ଥିକ ପରିସ୍ଥିତି ଓ ଉପାର୍ଜନ ଭିତରେ କେଉଁ ଆବଶ୍ୟକତାକୁ ପ୍ରାଧାନ୍ୟ ଦେବ ତାହା ବ୍ୟକ୍ତିର ଚିନ୍ତା, ଚେତନା ଓ ଜୀବନଦୃଷ୍ଟି ଉପରେ ନିର୍ଭରଶୀଳ ହୋଇଥାଏ । ତେବେ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କ୍ଷେତ୍ରରେ ବିଫଳ ହେଉଥିଲେ ବ୍ୟକ୍ତିର ସୁଖ, ଶାନ୍ତି ବ୍ୟାହାତ ହେବା ଏକ ସାଧାରଣ ଅନୁଭବ ଅଟେ । ସେହିପରି ଏକ ନୀରୋଗ ଶରୀର ବା କର୍ମକ୍ଷମ ସାମର୍ଥ୍ୟ ଏକ ସୁଖକର ଜୀବନ ପାଇଁ ଅବଶ୍ୟମ୍ଭାବୀ ମନେହୁଏ । କୌଣସି ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହେଲେ ଜୀବନର ସରସତା ଚାଲିଯାଏ । ଶାରୀରିକ ଅସୁସ୍ଥତା ଏକ ସ୍ୱାଭାବିକ ପ୍ରକ୍ରିୟା, ତେବେ ଅସୁସ୍ଥତା ସାମୟିକ ଭାବେ ଆସେ ଓ ଯାଏ । କିନ୍ତୁ ଯଦି ବ୍ୟକ୍ତି ରୋଗରେ ଯନ୍ତ୍ରଣା ଜର୍ଜରିତ ହୁଏ, ନିଜର ସ୍ୱାଭାବିକତା ହରାଇ ବସେ, ଶଯ୍ୟାଶାୟୀ ହୋଇଯାଏ ବା ଅନ୍ୟ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହୋଇପଡେ, ସମ୍ଭବତଃ ସେତେବେଳେ ଜୀବନରୁ ଅନେକ ସରସତା ଚାଲିଯାଏ । ଏହା ସତ୍ୟ ଯେ ପ୍ରତ୍ୟେକ ବ୍ୟକ୍ତିର ଜୀବନରେ ବାର୍ଦ୍ଧକ୍ୟ ଆସିଥାଏ, ବାର୍ଦ୍ଧକ୍ୟ ଯେ ଜୀବନ ପାଇଁ ପୀଡାଦାୟକ ଏହା ଏକ ସାଧାରଣ ଘଟଣା । ମଣିଷ ଜୀବନକୁ ଯେତେ ଭଲ ପାଉନା କାହିଁକି ବାର୍ଦ୍ଧକ୍ୟ ଜନିତ ଅସହାୟ ହୋଇ ବଞ୍ଚିବାକୁ ଅନେକ ବ୍ୟକ୍ତି ଚାହିଁବେ ନାହିଁ । ଅନେକ ବ୍ୟକ୍ତି ଏହି କାମନା ପୋଷଣ କରିବା ଦେଖାଯାଏ ଯେ ଶଯ୍ୟାଶାୟୀ ହୋଇ ଯନ୍ତ୍ରଣାରେ ଜର୍ଜରିତ ହେବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର । ମୃତ୍ୟୁ ତ ଜୀବନ ପାଇଁ ଅବଶ୍ୟମ୍ଭାବୀ, ତେବେ ଅସହାୟବୋଧ, ଯନ୍ତ୍ରଣା ଅପେକ୍ଷା ମୃତ୍ୟୁ ହିଁ ସ୍ୱାଗତଯୋଗ୍ୟ ।

ଶିକ୍ଷା, ଉନ୍ନତ ରୁଚିବୋଧ ଓ ସକାରାତ୍ମକ ମାନସିକତା ଏକ ସୁଖପ୍ରଦ ଜୀବନ ପାଇଁ ହୁଏତ ଆବଶ୍ୟକ ମନେ ହୋଇପାରେ, କିନ୍ତୁ ଏହା ଯେ ସୁଖକର ଜୀବନ ପାଇଁ ଅବଶ୍ୟମ୍ଭାବୀ ଏହା କୁହାଯାଇପାରିବ ନାହିଁ । ଶିକ୍ଷା ବ୍ୟକ୍ତିର ଚିନ୍ତା ଚେତନାକୁ ପ୍ରସାରିତ କରେ, ବୌଦ୍ଧିକ କୌତୂହଳତା ସୃଷ୍ଟି କରେ ଓ ଦେଶଦୁନିଆ ବିଷୟରେ କିଛି ଗଭୀର ଅନୁଭବ ଦେଇଥାଏ । ତେବେ ଆମ ଚତୁଃପାର୍ଶ୍ୱରେ ଏପରି ଲୋକମାନଙ୍କୁ ଆମେ ଦେଖୁ ଯେଉଁମାନେ କୌଣସି ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ପାଇନାହାନ୍ତି, କିନ୍ତୁ ସେମାନଙ୍କ ଭିତରେ ନାଗରିକ କର୍ତ୍ତବ୍ୟବୋଧ ଓ ମାନବିକତାର ଗଭୀର ଅନୁଭବ ରହିଥାଏ । ତେବେ ଶିକ୍ଷାକୁ କେବଳ ସାକ୍ଷରତା ଅର୍ଥରେ ନ

ନେଇ ଏକ ବ୍ୟାପକ ଅର୍ଥରେ ପ୍ରୟୋଗ କରାଯାଇପାରେ। ଯାହାଦ୍ୱାରା ବ୍ୟକ୍ତି ବିଚାରଶୀଳ, ଭଦ୍ର ଓ ସମ୍ବେଦନଶୀଳ ହୁଏ ତାହାକୁ ଶିକ୍ଷାର ଏକ ବିସ୍ତାରିତ ଅର୍ଥ ଭାବେ ଗ୍ରହଣ କରାଯାଏ। ଯାହାଙ୍କ ବ୍ୟକ୍ତିତ୍ୱରେ ଏହି ସବୁ ଗୁଣର ପରିଚୟ ମିଳେ ସେ ହିଁ ଜଣେ ଜ୍ଞାନଦୀପ୍ତ ବା ଶିକ୍ଷିତ ବ୍ୟକ୍ତି। ସମାଜରେ କିଛି ବ୍ୟକ୍ତିଙ୍କୁ ଆମେ ଦେଖେ ଯେଉଁମାନେ ପାଠ ପଢିବାର ପରିବେଶ ବା ସୁଯୋଗ ପାଇନାହାନ୍ତି କିନ୍ତୁ ସେମାନଙ୍କ ଜୀବନଧାରାରେ ବହୁ ମାନବୀୟ ଗୁଣର ପରିଚୟ ମିଳେ। ଅପରପକ୍ଷରେ କେତେକ ଉଚ୍ଚଶିକ୍ଷିତ ବ୍ୟକ୍ତି ନିତାନ୍ତ ସ୍ୱାର୍ଥପର, ଅହଙ୍କାରୀ ଓ ଦୁର୍ନୀତିଗ୍ରସ୍ତ ହେବା ମଧ୍ୟ ଦେଖାଯାଏ। ସୌନ୍ଦର୍ଯ୍ୟବୋଧ ପ୍ରତି ଏକ ପ୍ରାକୃତିକ ଆକର୍ଷଣ ଅନେକ ସୁଖକର ଅନୁଭବ ଦେଇଥାଏ। ପ୍ରାକୃତିକ ପରିବେଶର ଧବୁଳିମା, ସମୁଦ୍ରର ଉତ୍ତାଳ ତରଙ୍ଗ, ଆକାଶର ବିଶାଳତା, ଚନ୍ଦ୍ରର କୋମଳତା ଇତ୍ୟାଦି ମନୋଲୋଭା ଦୃଶ୍ୟ ଆମକୁ ଅନେକ ସୁଖକର ଅନୁଭବ ଦେଇଥାଏ। ଯେଉଁ ଦୃଶ୍ୟମାନ ଆମକୁ ସୁନ୍ଦର ଅନୁଭବ ଦେଇଥାଏ, ଆମ ମନକୁ ନୈସର୍ଗିକ ପ୍ରଶାନ୍ତି ଭିତରକୁ ନିଏ ଓ ଆମ ରୁଚିବୋଧକୁ ମାର୍ଜିତ କରିଥାଏ ତାହା ଆମ ପାଇଁ ସୌନ୍ଦର୍ଯ୍ୟର ବସ୍ତୁ ହୋଇଥାଏ।

ଏକ ସକାରାତ୍ମକ ଜୀବନଦୃଷ୍ଟି ଆମର ନୈତିକ ଉତ୍ତରଣ ପାଇଁ ସହାୟକ ହୋଇଥାଏ। କେତେକ ମନସ୍ତାତ୍ତ୍ୱିକ ସ୍ଥିତି ସୁଖର ଅନୁଭବ ଦେବା ବେଳେ ଅନ୍ୟ କେତେକ ମନସ୍ତାତ୍ତ୍ୱିକ ଅବସ୍ଥା ଅଶାନ୍ତିର କାରଣ ହୋଇଥାଏ। ଆତ୍ମ-ପ୍ରେମ ପ୍ରବଣତା ଏକ ମାନସିକ ଅବସ୍ଥା ଯାହା ବ୍ୟକ୍ତି ପାଇଁ ଅନେକ ଅଶାନ୍ତିର କାରଣ ହୋଇଥାଏ। ଯେଉଁ ବ୍ୟକ୍ତି ଅନୁଭବ କରନ୍ତି ଯେ ସମସ୍ତେ ସବୁ କ୍ଷେତ୍ରରେ ତାଙ୍କୁ ହିଁ ପ୍ରାଧାନ୍ୟ ଦେବା ଓ ଗୌରବାନ୍ୱିତ କରିବା ଆବଶ୍ୟକ ତାଙ୍କୁ ନାର୍ସିସିଷ୍ଟ କୁହାଯାଏ। ଯେତେବେଳେ ଏହା ବାସ୍ତବରେ ହୁଏ ନାହିଁ ସେତେବେଳେ ସେ ଅଶାନ୍ତ ହୋଇଉଠନ୍ତି। ଶୁଦ୍ଧତାବାଦୀମାନେ ଭାବନ୍ତି ଯେ ମଣିଷ ସ୍ୱରୂପରେ ମନ୍ଦ ଓ ପାପୀ। ଏହି ପାପରୁ ମୁକ୍ତି ପାଇଁ ସେ ପ୍ରାୟଶ୍ଚିତ କରିବା ସହ ନିଜକୁ ଈଶ୍ୱରୀୟ କାର୍ଯ୍ୟରେ ସମର୍ପିତ କରିବା ଦରକାର। ସୁଖ, ଆନନ୍ଦ ତାଙ୍କ ପାଇଁ ତୁଚ୍ଛ ହୋଇଥାଏ। କିଛି ବ୍ୟକ୍ତି ଜୀବନରେ ଅର୍ଥ ବା କ୍ଷମତା ପାଇଁ ଅତ୍ୟନ୍ତ ମୋହଗ୍ରସ୍ତ ହୋଇପଡନ୍ତି। ଜୀବନର ଏକ ମାତ୍ର ଲକ୍ଷ୍ୟ ହୁଏ ଅର୍ଥ, ପ୍ରାଚୁର୍ଯ୍ୟ, କ୍ଷମତା, ବିଳାସ। ଅର୍ଥର ଆବଶ୍ୟକତା ଜୀବନ ପାଇଁ ରହିଛି, ତେବେ ଏହା ଏକ ସାଧନ ମାତ୍ର। କିନ୍ତୁ ଅର୍ଥକୁ ସର୍ବଶ୍ରେଷ୍ଠ ସ୍ଥାନ ଦେବା ଓ ସବୁ କଥାକୁ ନିଜର ଲାଭ ପାଇଁ ବିଚାର କରିବାଦ୍ୱାରା ଜୀବନର ମୂଲ୍ୟ ନ୍ୟୂନ ହୋଇଯାଏ। ଏକ ଅର୍ଥସର୍ବସ୍ୱ ଜୀବନ ଏକ ଗୁଣାତ୍ମକ ଜୀବନର ମାନଦଣ୍ଡ ହୋଇନପାରେ। କୃପଣତା, ସ୍ୱାର୍ଥପରତା ଓ ଯେକୌଣସି ପ୍ରକାର ନିଷ୍ଠୁରତା ସୁଖକର ଅନୁଭବର ପରିପନ୍ଥୀ।

ପ୍ରତ୍ୟେକ ବ୍ୟକ୍ତି ଏକ ସମାଜରେ ଜୀବନ ନିର୍ବାହ କରେ ଓ ସାମାଜିକ ଜୀବନର ଆଧାର ହେଲା ପାରିବାରିକ ଜୀବନ । ପରିବାର ଭିତରେ ଯଦି ପାରସ୍ପରିକତା, ସମଭାଗିତା ଓ ଶାନ୍ତିପୂର୍ଣ୍ଣ ପରବେଶ ରହେ ଏହା ଜୀବନଧାରାକୁ ସୁଖମୟ ଓ ପ୍ରୀତିପୂର୍ଣ୍ଣ କରିଥାଏ । ପାରିବାରିକ ଜୀବନରେ ଯଦି ପରସ୍ପର ଭିତରେ ତିକ୍ତତା ଓ ଅବୁଝାମଣା ପ୍ରାଧାନ୍ୟ ନିଏ ତେବେ ଜୀବନଯାତ୍ରା ସୁଖକର ହୁଏ ନାହିଁ । ସେହିପରି ଆମର ସାମାଜିକ ପରିବେଶ ଆମର ସୁଖ, ଶାନ୍ତିକୁ ଅନେକାଂଶରେ ପ୍ରଭାବିତ କରିଥାଏ । ଅତୀତରେ ସମାଜରେ ବହୁ ଅଜ୍ଞତା, କୁସଂସ୍କାର, ରୋଗବାଧକ, ଅସହାୟବୋଧ, ଭୟ ଇତ୍ୟାଦି ରହିଥିଲା । ସେହି ପରିବେଶରେ ପାରଲୌକିକ ଜୀବନବୋଧ ଆମର ଆଦର୍ଶ ଭାବେ ସ୍ୱୀକୃତ ହୋଇଥିଲା । ସେହି ମାନସିକତାରେ କେତେକ ଅତୀନ୍ଦ୍ରିୟ ଶକ୍ତିରେ ବିଶ୍ୱାସ ଦୃଢ଼ ରହିଥିଲା ଓ ମଣିଷ ନିଜକୁ ସବୁଥିରେ ଅସହାୟ ମନେ କରୁଥିଲା । ଆଜିର ପରିସ୍ଥିତିରେ ଏହି ଉପଲବ୍ଧି ଆସିଛି ଯେ ମଣିଷର ପ୍ରୟାସରେ ଜୀବନର ମାନ ଉନ୍ନତ ହୋଇପାରିବ । ଆମର ଦାରିଦ୍ର୍ୟ, କୁସଂସ୍କାର, ଅସହାୟବୋଧ ସାମାଜିକ ପ୍ରୟାସରେ ପରିବର୍ତ୍ତିତ ହେବା ସମ୍ଭବ । ଉନ୍ନତ ସ୍ୱାସ୍ଥ୍ୟସେବା, ଶିକ୍ଷା, କର୍ମସଂସ୍ଥାନ ଓ ସାମାଜିକ ବିକାଶ ଯୋଜନାବଦ୍ଧ ଭାବେ କରାଯାଇ ପାରିବ । ସାମାଜିକ ପରିବେଶ ଉନ୍ନତ ହୋଇ ନାଗରିକ ଶୃଙ୍ଖଳାବୋଧ ଜୀବନଧାରାରେ ପ୍ରତିଫଳିତ ହେଲେ ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇପାରିବ । ସାମାଜିକ ଜୀବନଧାରାରେ ପାରସ୍ପରିକତା ଓ ସମ୍ବେଦନପୂର୍ଣ୍ଣ ମନୋଭାବ ଯେତେ ଅଧିକ ପ୍ରସାରିତ ହୋଇପାରିବ, ଜୀବନ ସେତେ ଅଧିକ ପ୍ରୀତିପୂର୍ଣ୍ଣ ହୋଇପାରିବ ।

ଧାର୍ମିକ ଆବେଗ ଅପେକ୍ଷା ନୈତିକ ଦୃଷ୍ଟିଭଙ୍ଗୀ ଓ ମାନବିକତାବୋଧ ସାମାଜିକ ଜୀବନକୁ ଉନ୍ନତ କରିଥାଏ । ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ସ୍ୱର୍ଗ, ମୁକ୍ତି, ମୋକ୍ଷ ଇତ୍ୟାଦି ପାରଲୌକିକ ବିଶ୍ୱାସର ପ୍ରାଧାନ୍ୟ ରହିଥାଏ । ମାନବବାଦୀ ଦୃଷ୍ଟିଭଙ୍ଗୀରେ ଐହିକ ଜୀବନ ଓ ସମାଜକୁ ପ୍ରାଧାନ୍ୟ ଦିଆଯାଏ । ସାଧୁତା, କର୍ତ୍ତବ୍ୟପରାୟଣତା, ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଜୀବନର ମାନକୁ ଉନ୍ନତ କରିବା ସହ ସାମାଜିକ ପରିବେଶକୁ ମଧ୍ୟ ଉନ୍ନତ କରିଥାଏ । ଏକ ଉନ୍ନତ ସାମାଜିକ ପରିବେଶ ବ୍ୟକ୍ତିଚେତନାକୁ ଭଲ ଦିଗରେ ପ୍ରଭାବିତ କରିବାର ସମ୍ଭାବନା ରଖିଥାଏ । ବ୍ୟକ୍ତିର ସୁଖ, ଶାନ୍ତି ସାମାଜିକ ପରିସ୍ଥିତିଦ୍ୱାରା ଯେ ଗଭୀର ଭାବେ ପ୍ରଭାବିତ ହୋଇଥାଏ ଏହା ଆମ ସମୟର ଏକ ବଡ ଉପଲବ୍ଧି । ସାମାଜିକ ଜୀବନ ପ୍ରବାହକୁ ଗୁଣାତ୍ମକ ଅବଦାନ ଦେବାଦ୍ୱାରା ଜୀବନ ଅଧିକ ସୃଜନାତ୍ମକ ହୋଇଥାଏ ।

(ପ୍ରଗତିବାଦୀ, ୩୧.୦୫.୨୦୧୭)

# ଇସ୍ରୋର ଅନୁଭୂତି

ଇସ୍ରୋ ହେଉଛି ଇଣ୍ଡିଆନ୍ ସ୍ପେସ ରିସର୍ଚ୍ଚ ଅର୍ଗାନାଇଜେସନ ବା ଭାରତୀୟ ଅନ୍ତରୀକ୍ଷ ଗବେଷଣା ସଙ୍ଗଠନ । ମହାକାଶ ବିଜ୍ଞାନର ଗବେଷଣା ପାଇଁ ଭାରତ ସରକାରଙ୍କ ଏହି ଅନୁଷ୍ଠାନ କର୍ଣ୍ଣାଟକ ରାଜ୍ୟର ବେଙ୍ଗାଲୁର ସହରରେ ରହିଛି । ନିକଟରେ ବେଙ୍ଗାଲୁର ରହଣିକାଳରେ ଓଡିଶାର ଜଣେ ବୈଜ୍ଞାନିକ ଓ ଲେଖକ ବନ୍ଧୁ ଯେ ସେଠାରେ କାର୍ଯ୍ୟକରନ୍ତି ଇସ୍ରୋ ଦେଖିବାକୁ ଆମନ୍ତ୍ରଣ କଲେ । ସେହି ଅନ୍ତରୀକ୍ଷ ଗବେଷଣା ଅନୁଷ୍ଠାନଟି ଦେଖିବା ପାଇଁ ବହୁତ ଆଗ୍ରହ ଥିଲା । ବନ୍ଧୁଙ୍କ ସହାୟତାରେ ସେହି ଗବେଷଣା ଅନୁଷ୍ଠାନଟି ଦେଖିବା ଓ ତାର କାର୍ଯ୍ୟସୂଚୀ ଜାଣିବାର ସୁଯୋଗ ମିଳିଲା । ଏହା ତାର ସଂକ୍ଷିପ୍ତ ଆଲେଖ୍ୟ ।

ସଭ୍ୟତାର ଇତିହାସରେ ଆକାଶରେ ଉଡିବାର ଜ୍ଞାନ ବିଂଶଶତାବ୍ଦୀ ଆରମ୍ଭରେ ମଣିଷ ହାସଲ କଲା । ଧୀରେ ଧୀରେ ସେଥିରେ ଅଗ୍ରଗତି ହୋଇଚାଲିଲା ଓ ବିମାନ ଯାତ୍ରା ପୃଥିବୀର ଦୂରତାକୁ ହ୍ରାସ କରିବାରେ ସହାୟକ ହେଲା । ବିଂଶଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ମହାକାଶ ଯାତ୍ରା ନେଇ ଗବେଷଣା ଆରମ୍ଭ ହେଲା । ପୃଥିବୀର ଦୁଇ ବୃହତ୍ ଶକ୍ତି ରୁଷ ଓ ଆମେରିକା ପ୍ରତିଯୋଗିତାମୂଳକ ଭାବେ ଏହି ଗବେଷଣା କ୍ଷେତ୍ରରେ ଅଗ୍ରଗତି କରିଚାଲିଲେ । ସୋଭିଏତ୍ ରୁଷ ଷାଠିଏ ଦଶକରେ ପୃଥିବୀର ବାୟୁମଣ୍ଡଳ ଛାଡି ସ୍ପୁଟନିକ୍ ମହାକାଶଯାନ ପ୍ରେରଣ କଲା । ଏହା ଥିଲା ୧୯୫୭ ମସିହାର ଘଟଣା । ଏହାପରେ ୧୯୬୯ ମସିହାରେ ଆମେରିକା ପ୍ରଥମେ ଚନ୍ଦ୍ରପୃଷ୍ଠକୁ ଯାନ ସହ ମଣିଷ ପଠାଇଲା । ଆପୋଲୋ-୧୧ ନାମକ ଏହି ଯାନରେ ତିନିଜଣ ମହାକାଶଚାରୀ ଚନ୍ଦ୍ର ଅଭିମୁଖେ ଯାତ୍ରା ଆରମ୍ଭ କଲେ ଓ ମଣିଷ ଚନ୍ଦ୍ରପୃଷ୍ଠରେ ଜୁଲାଇ ୨୦ ତାରିଖରେ ପାଦ ପକାଇବାରେ ସଫଳ ହେଲା । ମହାକାଶ ଯାତ୍ରା ବୈଜ୍ଞାନିକ ସଫଳତାର ଏକ ବଡ ନିଦର୍ଶନ । ବିଗତ ବର୍ଷ ଗୁଡିକ ମଧ୍ୟରେ ଏଥିରେ ଅଧିକରୁ ଅଧିକ ଗବେଷଣା ଅବ୍ୟାହତ ରହିଛି ଓ ପୃଥିବୀର ବିଭିନ୍ନ ଦେଶ ଏଥିରେ ସାମିଲ ହୋଇଛନ୍ତି । ଏବେ ସୌରମଣ୍ଡଳର ବିଭିନ୍ନ ଗ୍ରହକୁ ମହାକାଶ ଯାନ ପଠାଇବାରେ ବହୁ ସଫଳତା ମିଳିଲାଣି । ପୃଥିବୀର ଏକ ଦୂରତମ ଗ୍ରହ ଶନିଗ୍ରହକୁ ଯାନ ଯାଇ ଫେରିଲାଣି । ପାୟୋନିୟର-୨ ନାମକ ଯାନ ପ୍ରଥମେ ସେଠାକୁ ପଠାଯାଇଥିଲା । ସେହି ଯାନଟି ପୃଥିବୀଠାରୁ ୩୨୦କୋଟି କି.ମି. ଯିବାପରେ ସେହି ଗ୍ରହର

ଫଟୋ ଉତ୍ତୋଳନକରି ସ୍ୱୟଂକ୍ରିୟ ଭାବେ ପୃଥିବୀକୁ ପ୍ରେରଣ କଲା । ଏକ ଉଡାଜାହାଜ ଯଦି ଘଣ୍ଟାକୁ ୧୪୦୦ କି.ମି. ବେଗରେ ନିରନ୍ତର ଭାବେ ଶନିଗ୍ରହକୁ ଯାତ୍ରାକରେ ତେବେ ଶନିଗ୍ରହରେ ପହଞ୍ଚିବାକୁ ତାକୁ ପାଖାପାଖି ଶହେବର୍ଷ ଲାଗିଯିବ । କିନ୍ତୁ ମହାକାଶ ଯାତ୍ରାର ପାୟୋନିୟର ଯାନଟି ପୃଥିବୀରୁ ପ୍ରେରଣ ହେବାର ଛ' ବର୍ଷପରେ ଶନିଗ୍ରହର କକ୍ଷରେ ପହଞ୍ଚି ସେହି ଗ୍ରହର ଫଟୋଚିତ୍ର ପଠାଇବାରେ ସଫଳ ହେଲା । ଏହିଥିରୁ ମହାକାଶ ଯାତ୍ରା କ୍ଷେତ୍ରରେ ଆମର ସଫଳତା ବେଶ୍ ଅନୁମେୟ ।

ଆମ ଦେଶ ମହାକାଶ ଗବେଷଣା କ୍ଷେତ୍ରରେ ବି ଅନେକ ସଫଳତା ହାସଲ କରିବାକୁ ସମର୍ଥ ହେଲାଣି । ଆମର ମହାକାଶ ଗବେଷଣାର ପଥ ପ୍ରଦର୍ଶକ ହେଉଛନ୍ତି ବିକ୍ରମ ସରାଭାଇ(୧୯୧୯-୧୯୭୧) । ମହାକାଶ ଗବେଷଣା କେବଳ ସୌରମଣ୍ଡଳ ବିଷୟରେ ତଥ୍ୟ ଦେବାକୁ ଉଦ୍ଦିଷ୍ଟ ନୁହେଁ ବରଂ ଦେଶର ଅର୍ଥନୈତିକ ବିକାଶ ଓ ପ୍ରାଯୁକ୍ତିକ ଜ୍ଞାନକୌଶଳ କ୍ଷେତ୍ରରେ ଏକ ନିର୍ଣ୍ଣାୟକ ଭୂମିକା ନେଇଥାଏ । ସରାଭାଇଙ୍କ ଉଦ୍ୟମରେ ଫିଜିକାଲ ରିସର୍ଚ୍ଚ ଲାବୋରୋଟରି ସ୍ଥାପନ କରାଯାଇ ଉପଗ୍ରହ ପ୍ରେରଣ ସଂପର୍କୀୟ ଗବେଷଣା ଆରମ୍ଭ ହୋଇଥିଲା । ତାଙ୍କର ଜୀବନକାଳ ମାତ୍ର ବାଉନ୍ ବର୍ଷ ହୋଇଥିଲେ ବି ସେ ମହାକାଶ ଗବେଷଣା ଓ ଉପଗ୍ରହ ପ୍ରେରଣ କ୍ଷେତ୍ରରେ ଆନ୍ତର୍ଜାତିକ ସ୍ତରରେ ଭାରତବର୍ଷକୁ ପରିଚିତ କରାଇଛନ୍ତି । ପ୍ରଥମ ଭାରତୀୟ ଉପଗ୍ରହ ଆର୍ଯ୍ୟଭଟ୍ଟର ପରିକଳ୍ପନା ତାଙ୍କର ଉଦ୍ୟମରେ ଆରମ୍ଭ ହୋଇଥିଲା । ସେ ଏହାର ନକ୍ସା ପ୍ରସ୍ତୁତ କରିଥିଲେ, ତେବେ ତାଙ୍କର ଆକସ୍ମିକ ଦେହାନ୍ତ ଦେଶର ମହାକାଶ ଗବେଷଣା କ୍ଷେତ୍ରରେ ଥିଲା ଏକ ଅପୂରଣୀୟ କ୍ଷତି । ତାଙ୍କ ପରେ ସେ ଯେଉଁ ଭିତ୍ତିପ୍ରସ୍ତର ପକାଇଥିଲେ ତାହା ବେଶ୍ ଅଗ୍ରଗତି କରିଚାଲିଲା ଓ ଆଜି ଆମ ଦେଶ ଅନ୍ତରୀକ୍ଷ ଗବେଷଣା କ୍ଷେତ୍ରରେ ଯଥେଷ୍ଟ ଅଗ୍ରଗତି କରିପାରିଛି ।

ଇସ୍ରୋ ଅନୁଷ୍ଠାନର ପ୍ରବେଶଦ୍ୱାରରେ ସରାଭାଇଙ୍କର ଫଟୋଚିତ୍ର ରହିଛି । ବେଙ୍ଗାଲୁରର ଇସ୍ରୋ ଓ ଥିରୁଭନ୍ତପୁରମ୍‌ର ବିକ୍ରମ ସରାଭାଇ ସ୍ପେସ୍ ସେଣ୍ଟର ମିଳିତ ଭାବେ ଏହି ଅନ୍ତରୀକ୍ଷ ଗବେଷଣା କ୍ଷେତ୍ରରେ କାର୍ଯ୍ୟ କରୁଛନ୍ତି । ଥିରୁଭନ୍ତପୁରମ୍‌ର ଅନ୍ତରୀକ୍ଷ ଗବେଷଣା କେନ୍ଦ୍ରକୁ ସରାଭାଇଙ୍କ ନାମରେ ଭାରତ ସରକାର ନାମିତ କରିଛନ୍ତି । ସରାଭାଇଙ୍କ ଅବଦାନର ସ୍ୱୀକୃତି ସ୍ୱରୂପ ତାଙ୍କୁ ଶାନ୍ତିସ୍ୱରୂପ ଭଟନଗର ପୁରସ୍କାର, ପଦ୍ମଭୂଷଣ ଓ ମରଣୋତ୍ତର ପଦ୍ମବିଭୂଷଣ ସମ୍ମାନ ମଧ୍ୟ ଦିଆଯାଇଛି । ଇସ୍ରୋରେ ବୈଜ୍ଞାନିକ ବନ୍ଧୁ ପ୍ରଥମେ ନେଇ ଏକ ଭିଡିଓ କାର୍ଯ୍ୟକ୍ରମ ଦେଖାଇଲେ । ପୃଥିବୀ, ଗ୍ରହମଣ୍ଡଳର ସ୍ଥିତି, ମହାକାଶ

ଯାନ କିପରି ପଠାଯାଏ, ସେଠାରେ ଏହା କିପରି କାର୍ଯ୍ୟକରେ, ପୃଥିବୀକୁ କିପରି ଫଟୋଚିତ୍ର ଉତ୍ତୋଳନ କରି ପଠାଏ, ଯାନର ପରିଚାଳନା ପାଇଁ ଆବଶ୍ୟକ ହେଲେ ନିୟନ୍ତ୍ରଣ କକ୍ଷରୁ କିପରି ନିର୍ଦ୍ଦେଶ ପାଏ ଏସବୁକୁ ଦେଖିବା ବେଶ୍ ଚିତ୍ତାକର୍ଷକ ଥିଲା। ଭିଡିଓ ଚିତ୍ର ଦେଖିବା ପରେ ଦର୍ଶକ ଗ୍ୟାଲେରିରେ ରହିଥିବା ବିଭିନ୍ନ ସମୟର ମହାକାଶ ଯାନର ଫଟୋଚିତ୍ର ଦେଖିବାର ଅବକାଶ ମିଳିଲା। ମହାକାଶ ଗବେଷଣାର ଧାରାବାହିକ ଇତିହାସ, ସଫଳତା ଓ ବିଫଳତାର କାହାଣୀ ଓ ଦେଶର ଶହ ଶହ ଧୂରୀଣ ବୈଜ୍ଞାନିକମାନଙ୍କର ଉଚ୍ଚମାନର ଗବେଷଣା ବିଷୟରେ କିଛି ଧାରଣା କରିହେଲା।

କିଛି ଦଶନ୍ଧି ତଳେ ସାଟେଲାଇଟ କମ୍ୟୁନିକେସନ ବିଷୟରେ ପ୍ରଥମେ ଯେତେବେଳେ ପଢୁଥିଲି ସେ ବିଷୟରେ କିଛି ସ୍ପଷ୍ଟଭାବନା ମୁଁ କରିପାରୁନଥିଲି। ପୃଥିବୀରୁ ଉପଗ୍ରହ ପ୍ରେରଣଦ୍ୱାରା କିପରି ଯୋଗାଯୋଗ ସମ୍ଭବ ହେବ ତାହା ଦର୍ଶନର ଛାତ୍ର ଭାବେ ମୋତେ ଅସ୍ପଷ୍ଟ ବୋଧ ହେଉଥିଲା। ତେବେ ଉପଗ୍ରହ ମାଧ୍ୟମରେ ଶବ୍ଦ ଓ ଚିତ୍ରପ୍ରେରଣ କିପରି ସମ୍ଭବ ହେଉଛି ତାହାର ବୈଜ୍ଞାନିକ ପ୍ରକ୍ରିୟାଟିକୁ ସେଠାରେ ସ୍ପଷ୍ଟ ଭାବରେ ବୁଝିହେଲା। ଆମେ ସମସ୍ତେ ଏବେ ମୋବାଇଲ ଫୋନ ସହ ଅଭ୍ୟସ୍ତ, ଟେଲିଭିଜନର ଶହ ଶହ ଚାନେଲରୁ ନିଜ ରୁଚି ମୁତାବକ କାର୍ଯ୍ୟକ୍ରମ ଦେଖିପାରୁଛେ, ଏଟିଏମ୍‌ରୁ ଟଙ୍କା ଉଠାଇପାରୁଛେ। ଏସବୁ ଓ ଏପରି ଅନେକ କାର୍ଯ୍ୟ ଉପଗ୍ରହ ମାଧ୍ୟମରେ ସଫଳ ହେଉଛି। ପ୍ରତ୍ୟେକ ଦେଶ ନିଜର ଉପଗ୍ରହ ପ୍ରେରଣ କରିଛି, ଯାହା ପୃଥିବୀ ବାହାରେ ମହାଶୂନ୍ୟରେ ରହି ବିଶ୍ୱବାସୀଙ୍କୁ ସାହାଯ୍ୟ କରୁଛି। ଏହା ପଶ୍ଚାତରେ ଥିବା ବୈଜ୍ଞାନିକ ତତ୍ତ୍ୱ, ଜଟିଳ ବୈଷୟିକ କୌଶଳ ଆମର ସାଧାରଣ ଅବବୋଧର ବହିର୍ଭୂତ, ହେଲେ ଆମେ ଆମର ନିତିଦିନର ଜୀବନଧାରାରେ ଏହାର ବହୁ ସୁଫଳ ଲାଭକରି ପାରୁଛେ। ଆମେ ଯେତେବେଳେ ମୋବାଇଲ ଫୋନରେ ବହୁ ଦୂର ସ୍ଥାନର ବନ୍ଧୁଙ୍କ ସହ କଥା ହେଉଛେ, ତାହାର ବୈଜ୍ଞାନିକ ପ୍ରକ୍ରିୟାଟିକୁ ସେଠାରେ ଦେଖିବାର ସୁଯୋଗ ମିଳିଲା। ଶବ୍ଦ ଆଲୋକ ତରଙ୍ଗରେ ରୂପାୟିତ ହୋଇ ଆଲୋକ ଗତିରେ ଇଲେକ୍‌ଟ୍ରିକାଲ ସିଗ୍‌ନାଲ ମାଧ୍ୟମରେ ଏକ ସ୍ଥାନରୁ ଉପଗ୍ରହକୁ ଯାଉଛି, ଉପଗ୍ରହ ନିର୍ଦ୍ଧାରିତ ସ୍ଥାନର ଟାୱାରକୁ ପଠାଉଛି। ସେଠାରେ ଆଲୋକ ତରଙ୍ଗ ପୁନଶ୍ଚ ଶବ୍ଦ ତରଙ୍ଗରେ ପରିବର୍ତ୍ତିତ ହେଉଛି ଓ ସଂପୃକ୍ତ ବ୍ୟକ୍ତିଙ୍କ ମୋବାଇଲରେ ତାହା ଶୁଣାଯାଉଛି। ଏହି ସମସ୍ତ ପ୍ରକ୍ରିୟା ମାତ୍ର କେତୋଟି ସେକେଣ୍ଡରେ ସଂପୂର୍ଣ୍ଣ ହେଉଛି। ମୋବାଇଲରେ କଥା ହେବା, ଟେଲିଭିଜନରେ ଦୃଶ୍ୟଦେଖିବା ଓ ଶବ୍ଦଶୁଣିବା କୃତ୍ରିମ ଉପଗ୍ରହ ଯୋଗୁ ସମ୍ଭବ ହୋଇପାରୁଛି। ରିମୋଟ ସେନସିଂ ସାଟେଲାଇଟ ମାଧ୍ୟମରେ ପୃଥିବୀର ଆଲୋକ ରଶ୍ମି ଉପଗ୍ରହ ଉତ୍ତୋଳନ କରୁଛି। ତାହାକୁ ନିର୍ଦ୍ଧାରିତ କେନ୍ଦ୍ରକୁ ପଠାଉଛି।

ଫଳରେ କେଉଁ ଅଞ୍ଚଳରେ ନଦୀ, ଜଙ୍ଗଲ, ଖଣି, ପେଟ୍ରୋଲ ଇତ୍ୟାଦି ରହିଛି ତାହା ସହଜରେ ଜାଣିବା ସମ୍ଭବ ହେଉଛି । ଏକ ସହରର ପ୍ଲାନିଂ କିପରି କରାଯିବ, କିପରି ରାସ୍ତା ତିଆରି ହେବ, କେଉଁଠି କ'ଣ ପ୍ରାକୃତିକ ଧାତୁ ଇତ୍ୟାଦି ମିଳିବ ତାହା ଉପଗ୍ରହ ମାଧ୍ୟମରେ ଏବେ ସହଜରେ ଜାଣିହେଉଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ପାଗ ସମ୍ବନ୍ଧୀୟ ପୂର୍ବସୂଚନା । ଏକ ସପ୍ତାହ ପାଇଁ ପାଗର ସ୍ଥିତି କ'ଣ ରହିବ, ଝଡବର୍ଷା ହେବ ନା ପାଗ ଶୁଖିଲା ରହିବ ଏହା ଉପଗ୍ରହ ମାଧ୍ୟମରେ ଏବେ ଆକଳନ କରାଯାଇ ପାରୁଛି । କୌଣସି ଝଡବାତ୍ୟାର ବହୁ ଆଗରୁ ସୂଚନା ମିଳିପାରୁଛି । ଉପଗ୍ରହ ଯେଉଁ ଫଟୋ ଉତ୍ତୋଳନ କରି ପ୍ରେରଣ କରୁଛି ତାହାର ଚିତ୍ରପଟକୁ ଦେଖି ପାଗବିଜ୍ଞାନୀମାନେ ପାଗ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ସୂଚନା ଦେଇ ପାରୁଛନ୍ତି । ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯିବାବେଳେ ଆମ ମୋବାଇଲ ଯୋଗେ ଆମେ ପୂରା ରାସ୍ତା ଜାଣିପାରୁଛେ । ଏହାକୁ ଜିଓପୋଜିସନିଂ ସିଷ୍ଟମ ବା ଜିପିଏସ କୁହାଯାଉଛି । ଗୋଟିଏ ସହରରୁ ଆଉ ଗୋଟିଏ ସହରକୁ ଆମେ ଗାଡିରେ ଯିବାବେଳେ ଉଗପ୍ରହ ମାଧ୍ୟମରେ ରାସ୍ତାର ସୂଚନା ପାଉଛେ, କାରଣ ପ୍ରତ୍ୟେକ ସହରର ଭୌଗୋଳିକ ସ୍ଥିତି ଉପଗ୍ରହ ଭିତରେ ରହିଛି । ଇଣ୍ଟରନେଟ, ଇମେଲ ଇତ୍ୟାଦି ସକଳ ଅତ୍ୟାଧୁନିକ ଯୋଗାଯୋଗ କୃତ୍ରିମ ଉପଗ୍ରହ ମାଧ୍ୟମରେ ଉପଲବ୍ଧ ହୋଇପାରୁଛି । ଏସବୁ ଆମର ଜ୍ଞାନ ଓ ଜୀବନଧାରାକୁ ସହଜ, ସୁଗମ କରିବାରେ ସହାୟକ ହେଉଛି । ଏହା ସହିତ ବିଭିନ୍ନ ଗ୍ରହର ସ୍ଥିତି, ପରିବେଶ, ଜଳବାୟୁ, ଜୀବସତ୍ତାର ସମ୍ଭାବନା ଇତ୍ୟାଦି ବିଷୟରେ ସଠିକ୍ ତଥ୍ୟ ଉପଗ୍ରହ ମାଧ୍ୟମରେ ଜାଣିହେଉଛି ।

ଏହି ପଚାଶ ଷାଠିଏ ବର୍ଷ ଭିତରେ ମହାକାଶ ବିଜ୍ଞାନ ଆମ ଜ୍ଞାନର ଦିଗନ୍ତକୁ ବିସ୍ତାରିତ କରିବା ସହ ସଭ୍ୟତାର ରୂପରେଖରେ ଆଶାତୀତ ପରିବର୍ତ୍ତନ ଆଣିପାରିଛି । ବିଜ୍ଞାନର ଏହି ଚମକପ୍ରଦ ଉଦ୍‌ଭାବନକୁ ମନ୍ଦଦିଗରେ ବି ବିନିଯୋଗ କରାଯାଇପାରେ । ତାହା ହିଁ ସଭ୍ୟତାର ବିଡମ୍ବନା ।

(ପ୍ରଗତିବାଦୀ. ୦୪.୦୭.୨୦୧୭)

# ବ୍ୟକ୍ତିଚେତନା : ବିକାଶ ବନାମ ଅଧୋଗତି

ପ୍ରତ୍ୟେକ ମଣିଷ ଜଣେ ବ୍ୟକ୍ତି, ତାର ଏକ ବ୍ୟକ୍ତିସତ୍ତା ରହିଛି। ବ୍ୟକ୍ତିସତ୍ତାଟି ଧୀରେ ଧୀରେ ସାମାଜିକ ସ୍ତରକୁ ପ୍ରସାରିତ ହୁଏ। ଏହି ପ୍ରସାରଣ ମଧ୍ୟ ଦେଇ ବ୍ୟକ୍ତିର କେତେ କେତେ ସାମାଜିକ ପରିଚୟ ସୃଷ୍ଟି ହୁଏ। ବିଶ୍ୱାସ, ବୃତ୍ତି, ଭାଷା, ଧର୍ମ, ଜାତୀୟତା ଇତ୍ୟାଦିକୁ ଆଧାର କରି ବ୍ୟକ୍ତିର କେତେକ ଅସ୍ମିତା ସୃଷ୍ଟି ହୁଏ। କେତେକ ପରିଚୟ ସହଜାତ, କେତେକ ପରିଚୟ ଆହରିତ। ଜାତି, ଜାତୀୟତା ଜନିତ ପରିଚୟ ସହଜାତ, ଯେଉଁଥିରେ ବ୍ୟକ୍ତିର କୌଣସି ନିଜସ୍ୱ ନିଷ୍ପତ୍ତି ନ ଥାଏ। ଭାରତୀୟ ସମାଜରେ ବା ଏକ ଜାତିଭିତ୍ତିକ ବ୍ୟବସ୍ଥାରେ ବ୍ୟକ୍ତିର ଜାତି ଉତ୍ତରାଧିକାରୀ ସୂତ୍ରରେ ବାପା, ମା'ଙ୍କ ଠାରୁ ଆସିଥାଏ। ବାପା ମା'ଙ୍କର ଜାତିଗତ ପରିଚୟଟି ବ୍ୟକ୍ତି ପାଖକୁ ସଂଚାରିତ ହୋଇଥାଏ। ସେହିପରି ଧର୍ମ, ଜାତୀୟତା ବି ଜଣେ ଉତ୍ତରାଧିକାରୀ ଭାବରେ ପ୍ରାପ୍ତ ହେବା ଦେଖାଯାଏ। ସାମାଜିକ ଓ ସାଂସ୍କୃତିକ ପରିବେଶ ସହିତ ଶିକ୍ଷା, ବୃତ୍ତି ବ୍ୟକ୍ତି ପାଇଁ କାଳକ୍ରମେ ଭିନ୍ନ ପରିଚୟ ସୃଷ୍ଟି କରିଥାଏ। ସାମାଜରେ ବହୁ ବୃତ୍ତି ରହିଥାଏ ଓ ଜଣେ ବ୍ୟକ୍ତି ପ୍ରବୃତ୍ତି ଓ ପରିସ୍ଥିତି ନେଇ କୌଣସି ବୃତ୍ତିକୁ ଆଧାରକରି ସ୍ୱାବଲମ୍ବୀ ହେବା ଦେଖାଯାଏ। କିଏ କାରିଗର ହୁଏ, କିଏ କଳାକାର ହୁଏ, କିଏ କୃଷକ ହୁଏ, କିଏ ଶିକ୍ଷକ ହୁଏ ବା ଅନ୍ୟ ଯାହାକିଛି ହୋଇପାରେ। ଏହିପରି ଦେଖିଲେ ବ୍ୟକ୍ତିର ବିଭିନ୍ନ ସାମାଜିକ ଅସ୍ମିତା ବା ପରିଚୟ ସୃଷ୍ଟି ହୁଏ। ବୃତ୍ତିଗତ ପରିଚୟ ବ୍ୟତୀତ ଅନ୍ୟାନ୍ୟ ପରିଚୟ କେତେକ ବ୍ୟକ୍ତି ମଧ୍ୟ ସମାଜରେ ନେଇପାରନ୍ତି। କିଏ ନେତା, କିଏ ଲେଖକ, କିଏ ସମାଜସେବୀ ବା ସେପରି ଅନ୍ୟ ଯାହା ବି ହୋଇପାରନ୍ତି। ସମାଜରେ ବ୍ୟକ୍ତିର ଏକାଧିକ ପରିଚୟ ବା ଅସ୍ମିତା ରହିବା ଏକ ସାଧାରଣ ଘଟଣା। ବ୍ୟକ୍ତିର ଯାହା କିଛି ପରିଚୟ ତାହା ସାମାଜିକ ପରିସରରେ ହିଁ ଅର୍ଥପୂର୍ଣ୍ଣ ହୋଇଥାଏ। ସମାଜ ବ୍ୟତୀତ ବ୍ୟକ୍ତି ପରିଚୟର ଅର୍ଥ ନ ଥାଏ।

ସମାଜ ଏକ ସମ୍ବନ୍ଧିତ ଜୀବନବୋଧ। ପରିବାରଠାରୁ ବୃହତ୍ତର ମାନବଜାତି ପ୍ରତି ଏହି ସମ୍ବନ୍ଧ ପରିବ୍ୟାପ୍ତ। ଜଣେ ସାଧାରଣ ବ୍ୟକ୍ତିର ଆନୁଗତ୍ୟ, କର୍ତ୍ତବ୍ୟ ହୁଏତ ପରିବାର, ସଂପର୍କୀୟ ଓ ଗୋଷ୍ଠୀ ଭିତରେ ସୀମାବଦ୍ଧ ହୋଇଥାଏ। ଜଣଙ୍କର ବୌଦ୍ଧିକ ଓ ନୈତିକ ପରିସର ହୁଏତ ଏକ କ୍ଷୁଦ୍ର ଗୋଷ୍ଠୀ ଭିତରେ ସୀମାବଦ୍ଧ। ଅନ୍ୟ କାହାର ପରିସରଟି ଏକ

ବ୍ୟାପକ ସ୍ତରକୁ ପ୍ରସାରିତ ହେବା ସମ୍ଭବ। ଯାହାଙ୍କର କର୍ମକ୍ଷେତ୍ର ଓ ଦାୟିତ୍ୱ ଯେତେ ବିସ୍ତାରିତ ତାଙ୍କର କର୍ତ୍ତବ୍ୟର କ୍ଷେତ୍ରଟି ସେତେ ବ୍ୟାପକ ହେବା ଏକ ସାଧାରଣ ଅନୁଭବ। ଜଣଙ୍କର ସାମାଜିକ ପରିସରଟି କ୍ଷୁଦ୍ର ହେଉ ବା ବୃହତ୍ ହେଉ, ପ୍ରତ୍ୟେକ ସମ୍ଭାବନା କ୍ଷେତ୍ରରେ ଏକ ପାରସ୍ପରିକତାର ଭାବନା ରହିଥାଏ। ଏହି ପାରସ୍ପରିକତାର ସର୍ବନିମ୍ନ ଅଭିବ୍ୟକ୍ତି ହେଉଛି ଆମର ପାରିବାରିକ ଜୀବନ। ପାରିବାରିକ ଜୀବନ ଭିତରେ ଯେଉଁ ସହଭାଗିତା ଓ ଆଦାନ ପ୍ରଦାନର ମନୋଭାବ ଆସିଥାଏ, ତାହା ପ୍ରସାରିତ ହୁଏ ଗୋଷ୍ଠୀଜୀବନକୁ ବା ବୃହତ୍ତର ସାମାଜିକ ପରିବେଶକୁ। ସେହିପରି ପାରିବାରିକ ଜୀବନରୁ ହିଁ ଏକ ଏକତ୍ୱର ମନୋଭାବ ବିକଶିତ ହୋଇଥାଏ। ତ୍ୟାଗ, ସହଭାଗିତା, ଏକତ୍ୱବୋଧ ଇତ୍ୟାଦି ଆମର ସାମାଜିକ ମୂଲ୍ୟବୋଧ। ଏଥିରେ ବ୍ୟକ୍ତିଗତ ସ୍ୱାର୍ଥ ବାହାରେ ସାମୂହିକ ବିକାଶ ଓ ଲକ୍ଷ୍ୟକୁ ପ୍ରାଧାନ୍ୟ ଦିଆଯାଏ। ସାମୂହିକ ଲକ୍ଷ୍ୟ ବା ହିତସାଧନ ପାଇଁ ସ୍ଥଳ ବିଶେଷରେ ବ୍ୟକ୍ତିକୁ ତ୍ୟାଗ ସହିବାକୁ ପଡେ। ବରଂ ତ୍ୟାଗ ଭିତରେ ବ୍ୟକ୍ତି ଜୀବନର ଉତ୍କର୍ଷ ଯେ ନିହିତ ଏହା ବି ସମାଜର ଏକ ସ୍ୱୀକୃତ ମୂଲ୍ୟବୋଧ। ବ୍ୟକ୍ତିଗତ ବା ପାରିବାରିକ ସ୍ୱାର୍ଥକୁ ପରିହାର କରି ଏକ ବୃହତ୍ତର ଗୋଷ୍ଠୀର ମଙ୍ଗଳ ସାଧନ ପାଇଁ ମାନସିକତାରୁ ହିଁ ମଣିଷର ଗୋଷ୍ଠୀଜୀବନ ଗ୍ରାମ, ସହର, ରାଷ୍ଟ୍ର, ମାନବ ସମୂହ ପ୍ରତି ବିସ୍ତାରିତ ହୋଇପାରିଛି। ମଣିଷର ଆଦିମ ଗୋଷ୍ଠୀଜୀବନରୁ ଆରମ୍ଭ ହୋଇଥିବା ଯାତ୍ରା ବିଶ୍ୱ ଓ ଆନ୍ତର୍ଜାତିକ ସ୍ତରକୁ ବ୍ୟାପିବାରେ ରହିଛି ମାନବିକ ତ୍ୟାଗ ଓ ସଦିଚ୍ଛା। ମାନବ ସମାଜ ସଂପ୍ରତି ଯେଉଁ ସ୍ଥିତିକୁ ଆସିଛି ଏହା ପଛରେ କେତେ ତ୍ୟାଗ, ନିଷ୍ଠା, ସାଧନା ଓ ମହତ୍ତର ଆବେଗମାନ ରହିଛି। ବିଶ୍ୱ ଇତିହାସରେ ଯେଉଁମାନେ ନିଜର ସାଧନା, ପ୍ରୟାସ, ଜିଜ୍ଞାସା ଓ ଗବେଷଣା ମଧ୍ୟ ଦେଇ ନୂତନ ଆଲୋକ ଦେଖାଇଛନ୍ତି ସେମାନେ ହୁଏତ ମହାକାଳରେ ବିସ୍ମୃତ ହୋଇଗଲେ ବି ସେମାନଙ୍କ ଅବଦାନରୁ ସଭ୍ୟତାର ଯେ ଉତ୍ତରଣ ଘଟିଛି ଏହା ଅନସ୍ୱୀକାର୍ଯ୍ୟ। ଗୋଟିଏ ଭାଷାର ଯିଏ ଲିପି ଉଦ୍ଭାବନ କରିଛନ୍ତି, ଯିଏ ପୋଷାକ ପ୍ରସ୍ତୁତ କରିବାର କଳା ଶିଖାଇଛନ୍ତି, ଚିକିତ୍ସା କ୍ଷେତ୍ରକୁ ଯିଏ ଅବଦାନ ଦେଇଛନ୍ତି, ନୈତିକ ମୂଲ୍ୟବୋଧ ଜନିତ ବିଚାରକୁ ଯିଏ ସମାଜରେ ପ୍ରସାର କରିଛନ୍ତି ଇତ୍ୟାଦି ବହୁ କ୍ଷେତ୍ରରେ ଯେଉଁମାନଙ୍କର କିଛି କୃତି ଓ କୃତିତ୍ୱ ରହିଛି ସେମାନେ ସଭ୍ୟତାକୁ ଆଗକୁ ନେଇଛନ୍ତି। ଅବଶ୍ୟ ସଭ୍ୟତାର ବିକାଶ ଏକ ପ୍ରକ୍ରିୟା ଭାବେ ବହୁ ସୃଜନଶୀଳ ବ୍ୟକ୍ତିଙ୍କର ଅବଦାନଦ୍ୱାରା ଅଗ୍ରଗାମୀ ହୋଇଛି। ବିଶ୍ୱ ଦୃଶ୍ୟପଟରେ କେତେ କେତେ ଭାଷାରେ କାଳଜୟୀ ସାହିତ୍ୟ ସୃଷ୍ଟି ହୋଇଛି, କେତେ କେତେ କଳାକୃତି ମାନବଜାତିର ଐତିହ୍ୟ ହୋଇପାରିଛି, ଦାର୍ଶନିକ ଭାବନାମାନ ଚିନ୍ତାରାଜ୍ୟରେ ବୌଦ୍ଧିକ ଉତ୍ତରଣ ସୃଷ୍ଟିକରିଛି, ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନମାନ ସଭ୍ୟତାକୁ ଲମ୍ଫ ଦେଇଛି ଓ ନୂଆ ନୂଆ ପ୍ରଯୁକ୍ତି ଜୀବନଯାତ୍ରାକୁ

ସୁଗମ କରିଛି । ଯେଉଁ ସୃଜନଶୀଳ, ଚିନ୍ତାଶୀଳ ଓ ଜିଜ୍ଞାସୁମାନେ ଜାତୀୟତା, ଧର୍ମ, ସଂସ୍କୃତି ନିର୍ବିଶେଷରେ ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଛନ୍ତି ସେହିମାନେ ମାନବଜାତିର ପଥ ପ୍ରଦର୍ଶକ ଓ ମାନବିକ ଶ୍ରେୟର ମହାନ ଅଧିକାରୀ ।

ମାନବିକ ସୃଜନଶୀଳତା ଓ ସମ୍ବେଦନଶୀଳତା ସଭ୍ୟତାର ଉତ୍ତରଣ ପୃଷ୍ଠଭୂମିରେ ଦୁଇଟି ମହତ୍ତର ଉପଲବ୍ଧି । ସୃଜନଶୀଳ ବ୍ୟକ୍ତିମାନଙ୍କର ଅବଦାନ ଓ ସମ୍ବେଦନଶୀଳ ବ୍ୟକ୍ତିମାନଙ୍କର ମହତ୍ତର ଜୀବନବୋଧ ସଭ୍ୟତାର ଭୌତିକ ଓ ନୈତିକ ବିକାଶ କ୍ଷେତ୍ରରେ ନିର୍ଣ୍ଣାୟକ ହୋଇରହିଛି । ଏସବୁ ସଭ୍ୟତାର ମହତ୍ତର ଦିଗ । ତେବେ ବିଡମ୍ବନାର ବିଷୟ ମାନବ ସଭ୍ୟତାରେ କେତେ କେତେ ଅନ୍ଧକାରର ଦିଗ ରହିଛି । ସଭ୍ୟତାର ଆଲୋକ ଯେତେ ପ୍ରସାରିତ ଓ ବିଚ୍ଛୁରିତ ହେଲେ ମଧ୍ୟ ସେହି ଅନ୍ଧକାରମାନ ଅପସରି ଯାଉ ନାହିଁ । ଆମ ସଂସାରରେ କେତେ ଭେଦଭାବ ଓ ବିଚ୍ଛିନ୍ନତାଭାବ ରହିଆସିଛି । ନାନା ଭେଦଭାବ ଜନିତ କାରଣରୁ ମାନବ ସମାଜ ଭାଗ ଭାଗ ହୋଇରହିଛି ଓ ସ୍ଥଳ ବିଶେଷରେ ନାନା ହିଂସା ଓ ପ୍ରତିହିଂସାର ମନୋଭାବ ସୃଷ୍ଟି କରିଆସିଛି । ଏକ ଅସ୍ମିତା ବହନ କରୁଥିବା ଏକ ଜନଗୋଷ୍ଠୀ ଅନ୍ୟ ଏକ ସାମାଜିକ ପରିଚୟ ବହନ କରୁଥିବା ଜନସମୂହକୁ ଶତ୍ରୁର ଦୃଷ୍ଟିରେ ଦେଖିଆସିଛି । ଏହା ଜାତୀୟତା, ଧର୍ମ, ବର୍ଣ୍ଣ ଇତ୍ୟାଦି ବହୁ କାରଣରୁ ହୋଇଛି । ହୁଏତ ବିଭିନ୍ନ ଭୌଗୋଳିକ, ଐତିହାସିକ, ସାମାଜିକ ବା ସାଂସ୍କୃତିକ କାରଣରୁ ବ୍ୟକ୍ତି ଓ ଗୋଷ୍ଠୀମାନଙ୍କର ଭିନ୍ନ ଭିନ୍ନ ଅସ୍ମିତା ସୃଷ୍ଟି ହୋଇଛି । ଏହା ଯେତେ ଆକସ୍ମିକ ହେଲେ ମଧ୍ୟ ଏହାକୁ ଆଧାରକରି ନାନା ହିଂସା, ବର୍ବରତା ଓ ଅମାନବିକ ଦୃଷ୍ଟି ସଂସାରରେ ରହିଆସିଛି । ପଡୋଶୀ ରାଷ୍ଟ୍ରମାନଙ୍କ ଭିତରେ କେତେ କେତେ ଶତ୍ରୁତା ପ୍ରକାଶ ପାଉଛି ଓ ଗୋଟିଏ ରାଷ୍ଟ୍ରର ଜନଗଣ ଅନ୍ୟ ଏକ ରାଷ୍ଟ୍ରର ଜନସମୂହକୁ ମିତ୍ରର ଦୃଷ୍ଟିରେ ନେଇପାରୁ ନାହାନ୍ତି । ଧର୍ମ, ପୂଜାସ୍ଥଳ ଓ ଈଶ୍ୱରଙ୍କୁ ଆଧାର କରି ଗୋଷ୍ଠୀ ଗୋଷ୍ଠୀ ଭିତରେ ଅଲଂଘ୍ୟ ପ୍ରାଚୀର ସୃଷ୍ଟି ହୋଇଛି । କାହାର ପୂଜାସ୍ଥଳ ପବିତ୍ର, କାହାର ଈଶ୍ୱର ଶକ୍ତିମାନ, କାହାର ଧର୍ମଗ୍ରନ୍ଥ ଶାଶ୍ୱତ ଏହାକୁ ନେଇ କେତେ କେତେ ଅହେତୁକ ବିଦ୍ୱେଷ ସଭ୍ୟତାର ଇତିହାସରେ ସୃଷ୍ଟି ହୋଇଛି । ଏପରିକି ଗୋଟିଏ ଦେଶ ଓ ସମାଜର ଜନଗଣଙ୍କ ଭିତରେ ସ୍ତରୀଭୂତ ବୈଷମ୍ୟ ଯୁଗ ଯୁଗ ଧରି ରହିଆସିଛି । ଏକ ଗାଁ, ସହର ଓ ଦେଶରେ ରହୁଥିବା ଜନଗଣ ଏପରି ସ୍ତରୀଭୂତ ଭେଦଭାବ ଭିତରେ ରହିଆସିଛନ୍ତି ଯେ ସେମାନଙ୍କ ଭିତରେ ଏକ ସଂହତିପୂର୍ଣ୍ଣ ସାମାଜିକ ସମ୍ବନ୍ଧ ସୃଷ୍ଟି ହୋଇପାରୁ ନାହିଁ । ବିଚ୍ଛିନ୍ନତା, ଭେଦଭାବ ଓ ବୈଷମ୍ୟ ଭିତରୁ ହିଂସା, ସନ୍ତ୍ରାସବାଦ ଓ ଅସହିଷ୍ଣୁତା ସମାଜରେ ତୀବ୍ର ହୋଇଉଠୁଛି । ଈର୍ଷା, ଉତ୍ପୀଡନ,

ନୃଶଂସତା ଓ ନିଷ୍ଠୁରତା କେତେ କେତେ ଭାବରେ ସମାଜରେ ବ୍ୟକ୍ତ ହେଉଛି । ଆଦିମ ସମୟରୁ ରହି ଆସିଥିବା ବର୍ବରତା ନୂଆ ନୂଆ ରୂପରେ ଏବେ ବି ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ପ୍ରତିଫଳିତ ହେବା ଏକ ବିଡମ୍ବନା ନିଶ୍ଚୟ ।

ଜ୍ଞାନବିଜ୍ଞାନ, ଆଧୁନିକ ପ୍ରଯୁକ୍ତି, କେତେ କେତେ ମହତ୍ତର ମୂଲ୍ୟବୋଧ, ଆନ୍ତର୍ଜାତିକ ମନୋଭାବ, ଗଣତାନ୍ତ୍ରିକ ଜୀବନଶୈଳୀ, ସାର୍ବଜନୀନ ଦୃଷ୍ଟିଭଙ୍ଗୀ ଇତ୍ୟାଦି ଆମ ଚେତନାର ମହତ୍ତର ଉତ୍ତରଣ । ତେବେ ଏହାର ବିପରୀତ ଆବେଗ ଯେପରି ହିଂସା, ସାଂପ୍ରଦାୟିକ ବିଦ୍ୱେଷ, ମାନବିକ ନିଷ୍ଠୁରତା ଇତ୍ୟାଦି ଆମ ନୈତିକ ଅଧୋଗତିର ଚିତ୍ର କିଛି ପ୍ରଦାନ କରିଥାଏ । ଏହି ଦ୍ୱନ୍ଦ୍ୱ ଓ ବିରୋଧାଭାସରୁ ସମାଜ କିପରି ମୁକ୍ତ ହେବ ତାହା ଏବେ ବି ଆମ ପାଇଁ ଏକ ଆହ୍ୱାନ । ମଣିଷ ମଣିଷ ଭିତରେ ଏକ ନୀତିନିଷ୍ଠ ସମ୍ବନ୍ଧ ପ୍ରତିଷ୍ଠା ଏବେ ବି ଏକ ସୁଦୂରପ୍ରସାରୀ ସ୍ୱପ୍ନ । ମଣିଷ ସମାଜରୁ ସକଳ ନୈତିକ ବିଚ୍ୟୁତି ଓ ବିକୃତିକୁ ଦୂରକରିବାର ସମ୍ଭାବନା ଯେ ନାହିଁ ଏହା କୁହାଯାଇ ନପାରେ । କେତେ କେତେ ବିଫଳତା ଭିତରେ ସଭ୍ୟତା ଯେପରି ଆଗକୁ ଯାଇଛି ଆମର ନୈତିକ ସ୍ଖଳନର ଯେ ହୁଏତ ବିଲୋପ ହେବ, ଏହା ଆଶା କରାଯାଇପାରେ ।

(ପ୍ରଗତିବାଦୀ, ୧୮.୧୦.୨୦୧୭)

# ମାନବିକ ପ୍ରୟାସ ବନାମ ନିୟତି

କିଛି ଦିନ ତଳେ ଆନ୍ଧ୍ର ପ୍ରଦେଶର ବିଶିଷ୍ଟ ସମାଜସେବୀ, ଗାନ୍ଧୀବାଦୀ ଓ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ନିରୀଶ୍ୱରବାଦୀ ଲବଣମ୍ ଓଡ଼ିଶା ଆସିଥିଲେ। କିଛି ଅନ୍ତରଙ୍ଗ ଆଳାପ ଭିତରେ ସେ ଫିନ୍‌ଲ୍ୟାଣ୍ଡର ଏକ ଅନୁଭୂତି ବର୍ଣ୍ଣନା କରୁଥିଲେ। ସେ ଫିନ୍‌ଲ୍ୟାଣ୍ଡରେ ଥିବା ବେଳେ ବିଭିନ୍ନ କାର୍ଯ୍ୟକ୍ରମ ଭିତରେ ସହରର ଏକ ମାଧ୍ୟମିକ ବିଦ୍ୟାଳୟକୁ ଥରେ ଅତିଥି ହୋଇ ଯାଇଥିଲେ। ପିଲାମାନଙ୍କ ସହ କିଛି ଅନ୍ତରଙ୍ଗ ଆଳାପ ପାଇଁ ବିଦ୍ୟାଳୟର ଅଧ୍ୟକ୍ଷ ତାଙ୍କୁ ଏକ ଶ୍ରେଣୀକୁ ଯିବାକୁ କହିଲେ। ଭାରତବର୍ଷରୁ ଜଣେ ବିଶିଷ୍ଟ ସମାଜସେବୀ ଓ ଗାନ୍ଧୀବାଦୀ ବୁଦ୍ଧିଜୀବୀ ଅତିଥି ଆସିଥିବାରୁ ପିଲାମାନେ ତାଙ୍କୁ ଅତି ଆନନ୍ଦରେ ସମ୍ମାନର ସହ ସ୍ୱାଗତ କଲେ। ପିଲାମାନଙ୍କ ସହ ଖୁସିରେ ଭାବ ବିନିମୟ ଭିତରେ ସେ ଜାଣିବାକୁ ପାଇଲେ ଯେ ସେହି ପିରିଅଡ୍‌ରେ ତାଙ୍କର "ଧର୍ମ ଓ ନୈତିକ ଶିକ୍ଷା" ପଢା ଯାଉଥିଲା। ପିଲାଙ୍କ ପାଖରୁ ଏହା ଶୁଣି ସେ ପିଲାଙ୍କୁ ପ୍ରଶ୍ନ ପଚାରିଲେ-ଧର୍ମ ଅନୁଯାୟୀ ଜୀବନର ଲକ୍ଷ୍ୟ କ'ଣ? ପିଲାମାନେ ହାତ ଟେକିବାରୁ ସେ କେତେଜଣଙ୍କୁ ପଚାରିବାରୁ ସେମାନେ ସମସ୍ତେ କହିଲେ-ସ୍ୱର୍ଗପ୍ରାପ୍ତି। "ବହୁତ ସୁନ୍ଦର କଥା", ତେବେ "ସ୍ୱର୍ଗ ପ୍ରାପ୍ତି କେବେ ହେବ" ବୋଲି ପୁଣି ପଚାରିଲେ। ସବୁ ପିଲା ହାତ ଟେକିଲେ। ଉତ୍ତର ପଚାରିବାରୁ ପିଲାମାନେ କହିଲେ-ମୃତ୍ୟୁପରେ। "ସୁନ୍ଦର"-ଏହାପରେ ସେ ପୁନଶ୍ଚ ପିଲାମାନଙ୍କୁ ପଚାରିଲେ-ତେବେ ଆମେ କ'ଣ କରିବା ଉଚିତ୍? ଏଥର ପିଲାମାନେ ପରସ୍ପର ମୁହଁକୁ ଚାହିଁଲେ ଓ ହାତ ଟେକିଲେ ନାହିଁ। ମାତ୍ର ଜଣେ ଛାତ୍ର ହାତ ଟେକିବାରୁ ତାଙ୍କୁ ଯେତେବେଳେ ସେ ପଚାରିଲେ, ଛାତ୍ର ଜଣଙ୍କ ଉତ୍ତର ଦେଲେ-ଆମେ ମରିଯିବା ଉଚିତ୍। ଏହି ଉତ୍ତରରେ ହଠାତ୍ ଶ୍ରେଣୀର ପରିବେଶ ଭାବଗମ୍ଭୀର ହୋଇଗଲା ଓ ଯେଉଁ ଶିକ୍ଷୟିତ୍ରୀ ଏହି ବିଷୟ ପଢାଉଥିଲେ ସେ ବହୁତ ଅପମାନିତ ବୋଧକଲେ। ଏହାପରେ ଏହି ଘଟଣାକୁ ନେଇ ବିଦ୍ୟାଳୟରେ ଏକ ଗମ୍ଭୀର ଆଲୋଚନା ହେଲା। ଏପରିକି ସେହି ଘଟଣା ସାଧାରଣରେ ମଧ୍ୟ ଚର୍ଚ୍ଚାର ବିଷୟ ହେଲା। ପରିଣାମ ସ୍ୱରୂପ ଧର୍ମ ଓ ନୈତିକ ଶିକ୍ଷା କ୍ଷେତ୍ରରେ ଏକ ସଂସ୍କାର ମଧ୍ୟ ଆସିଥିଲା।

କିଛି ବର୍ଷ ତଳେ ବାରିପଦାଠାରେ ଏକ ଧର୍ମଗୋଷ୍ଠୀର ସମ୍ମିଳନୀ ଚାଲିଥିବା ଅବସରରେ ସେଠାରେ ଏକ ଅଗ୍ନିକାଣ୍ଡ ଘଟିଥିଲା। ସେହି ଅଗ୍ନିକାଣ୍ଡରେ ଶତାଧିକ ଭକ୍ତ ଜୀବନ୍ତ ଦଗ୍ଧ ବା ପୋଡ଼ି ହୋଇ ଯାଇଥିଲେ। ଏହା ଏକ ଅତି ଦୁଃଖଦ ଘଟଣା ଥିଲେ ମଧ୍ୟ ସେତେବେଳେ କେତେକ ଭକ୍ତ ଏହାକୁ "ଈଶ୍ୱରଙ୍କର ଇଚ୍ଛା" ବୋଲି ମଧ୍ୟ ଅଭିହିତ କରିଥିଲେ। ସାଧାରଣତଃ ବିଭିନ୍ନ ଧର୍ମବିଶ୍ୱାସୀ ଲୋକମାନେ କେଉଁଠାକୁ ତୀର୍ଥ କରିଗଲା ବେଳେ, କେଉଁ ଦିଅଁ ଦର୍ଶନ କଲାବେଳେ ବା କୌଣସି ବିଶେଷ ଧର୍ମ ଉତ୍ସବ ପାଳନ କଲାବେଳେ ଯଦି କୌଣସି ଦୁର୍ଘଟଣାବଶତଃ ଭକ୍ତ ବା ସାଧାରଣ ଲୋକ ମୃତ୍ୟୁ ମୁଖରେ ପଡନ୍ତି ତେବେ ସେହି ଘଟଣାକୁ ଈଶ୍ୱରଙ୍କର ଇଚ୍ଛା କହି ସାନ୍ତ୍ୱନା ପାଇଥାନ୍ତି। ଯେଉଁ ଲୋକମାନେ ଦୁର୍ଘଟଣାରେ ଶିକାର ହୁଅନ୍ତି 'ସେମାନଙ୍କୁ ଈଶ୍ୱର ମୁକ୍ତି ଦେଲେ' ବୋଲି ବିଶ୍ୱାସ କରନ୍ତି ଓ ବକ୍ତବ୍ୟ ମଧ୍ୟ ଦିଅନ୍ତି।

ଫିନ୍‌ଲ୍ୟାଣ୍ଡରେ ପିଲାଙ୍କର ଉତ୍ତର ବା ଭକ୍ତମାନଙ୍କର ମନ୍ତବ୍ୟ ଭିତରେ ଏକ ପ୍ରକାରର ଦୃଷ୍ଟିଭଙ୍ଗୀ ନିହିତ। ତାହା ହେଲା ଏକ ଭିନ୍ନ ଜଗତର ସ୍ୱପ୍ନ। ତେବେ ଏହି ଭାବନାର ନକାରାତ୍ମକ ଦୃଷ୍ଟିଭଙ୍ଗୀଟି ସୁସ୍ପଷ୍ଟ। ତା ହେଲା ସମାଜର ଦୁଃଖ ଦୁର୍ଦ୍ଦଶା ଓ ଅନ୍ୟର ଯନ୍ତ୍ରଣା ପ୍ରତି ଏକ ସ୍ପର୍ଶକାତରଶୂନ୍ୟ ମନୋଭାବ। ଧାର୍ମିକ ମାନସିକତାରେ ଆମର ସଂସାର ଓ ଆମର ଜୀବନ ଯେତିକି ଗୁରୁତ୍ୱପୂର୍ଣ୍ଣ ନୁହେଁ ତା ଅପେକ୍ଷା ଏକ କଳ୍ପିତ ସ୍ୱର୍ଗ ଓ ମୃତ୍ୟୁପରେ ଜୀବନ ଅଧିକ ମହତ୍ତ୍ୱପୂର୍ଣ୍ଣ। ପୃଥିବୀର ଅଧିକାଂଶ ଧର୍ମରେ ବାସ୍ତବ ଜୀବନକୁ ଅଳୀକ, ସାମାଜିକ ସମ୍ବନ୍ଧକୁ ତୁଚ୍ଛ ଓ ଏକ ଗୁଣାତ୍ମକ ଜୀବନକୁ ଦୁଇ ଦିନର ଖେଳ ବୋଲି ବିଚାର କରାଯିବା ଦେଖାଯାଏ। ସେଥିପାଇଁ ପ୍ରତ୍ୟେକ ଧର୍ମରେ ମୁକ୍ତି, ମୋକ୍ଷ, ନିର୍ବାଣ, ଈଶ୍ୱରପ୍ରାପ୍ତି, ସ୍ୱର୍ଗବାସ ଇତ୍ୟାଦି କଳ୍ପିତ ଭାବନା ସୃଷ୍ଟି କରାଯାଇଛି। କେବଳ ସେତିକି ନୁହେଁ ଧର୍ମର ପରିଭାଷାରେ ସ୍ୱର୍ଗ ଓ ଭଗବାନଙ୍କୁ ଯେପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଦିଆଯାଇଛି ସେହିପରି ଭାଗ୍ୟ ଓ ସବୁ କିଛି ବିଧିନିର୍ଦ୍ଦିଷ୍ଟ ବୋଲି ଭାବନା ମଧ୍ୟ ସୃଷ୍ଟି କରାଯାଇଛି। ଭାଗ୍ୟ ଓ ଭଗବାନଙ୍କର ଆଶ୍ରୟ ନେଇ ମଣିଷ ନିଜର ଜୀବନ ଓ ସାମାଜିକ ଘଟଣା ପ୍ରତି ମଧ୍ୟ ସ୍ପର୍ଶକାତରଶୂନ୍ୟ ମନୋଭାବ ସୃଷ୍ଟି କରିଛି। ଏହି ପରିପ୍ରେକ୍ଷୀରେ ଏକ ବ୍ୟକ୍ତିଗତ ଅନୁଭୂତି ଏଠାରେ ଉଲ୍ଲେଖ କରୁଛି।

ମୁଁ କଲେଜରେ ଛାତ୍ର ଥିବା ବେଳେ ଛୁଟିରେ ଗାଁକୁ ଗଲେ ଗ୍ରାମରେ ସାଧାରଣ ଲୋକମାନଙ୍କ ସହ ମିଶି ସେମାନଙ୍କ ଭିତରେ କିଛି ସଚେତନତା ସୃଷ୍ଟି କରିବାକୁ ଚେଷ୍ଟା କରୁଥିଲି। ଏକଦା ଗାଁର ଦଳିତ ବସ୍ତିରେ ଯାଇ ଲୋକମାନଙ୍କ ସହ କିଛି ଅନ୍ତରଙ୍ଗ ଆଳାପ

ଭିତରେ ଅନ୍ୟାନ୍ୟ କଥା ସହ ସବୁ ପିଲାମାନଙ୍କୁ ପାଠ ପଢାଇବାକୁ ମୁଁ ମୋ ଗାଁର ଦଳିତ ଲୋକମାନଙ୍କୁ ନିବେଦନ କରିଥିଲି । ପାଠ ପଢିଲେ ପିଲାମାନଙ୍କର ସଚେତନତା ଆସିବ, ସାମାଜିକ ସମ୍ମାନ ବଢିବ ଓ ସେମାନେ ସ୍ୱାବଲମ୍ବୀ ହୋଇପାରିବେ ବୋଲି ଲୋକମାନଙ୍କୁ ବୁଝାଇବା ଭିତରେ ଜଣେ ବୟସ୍କ ଲୋକ କହିଲେ, "ବିଧାତା ଆମ କପାଳରେ ପାଠ ଲେଖି ନାହିଁ ବାବୁ ।" ତାଙ୍କର ଏହି କଥା ଶୁଣି ମୁଁ ତାଙ୍କୁ ଉତ୍ତର ଦେଇଥିଲି-ତୁମ କପାଳରେ ପାଠ ନାହିଁ ବୋଲି କିଏ ଲେଖିଛି ? ଯେ ତୁମ କପାଳରେ ପାଠ ନାହିଁ ବୋଲି ଲେଖିଛି ଓ ଅନ୍ୟ କପାଳରେ ପାଠ ହେବା ଲେଖିଛି ସେ ତୁମର ଶତ୍ରୁ ଓ ମଣିଷ ଜାତିର ମଧ୍ୟ ଶତ୍ରୁ । ଯଦି ସେହି ବିଧାତାଙ୍କୁ ମୁଁ ଦେଖନ୍ତି ତେବେ ସେ ଏପରି ବୈଷମ୍ୟ ସୃଷ୍ଟି କରିଥିବାରୁ ତାଙ୍କୁ ଧିକ୍କାର ନ କରି ଛାଡ଼ନ୍ତି ନାହିଁ ।

ଜଣେ ସାଧାରଣ ମଣିଷ ଯେ କି ଗୋଟିଏ ବ୍ୟବସ୍ଥାରେ ନିଷ୍ପେଷିତ ହୋଇ ରହିଛି ସେ ଜୀବନର ଘଟଣା ପ୍ରବାହକୁ ଏକ ବିଧିନିର୍ଦ୍ଦିଷ୍ଟ ବ୍ୟବସ୍ଥା ବୋଲି ଧରି ନେଇଛି । ସମାଜରେ ରାଶି ରାଶି ଅନ୍ୟାୟ, ଶୋଷଣ ଓ ଅତ୍ୟାଚାରକୁ ସ୍ୱୀକାର କରିବା କ୍ଷେତ୍ରରେ ପ୍ରତିବାଦର ସାମର୍ଥ୍ୟକୁ ମଧ୍ୟ ଲୋକମାନେ ହରାଇ ବସିଛନ୍ତି । ଆର୍ଥିକ ଦୃଷ୍ଟିରୁ ଯେଉଁମାନେ ଶୋଷିତ, ସାମାଜିକ ଦୃଷ୍ଟିକୋଣରୁ ଯେଉଁ ମଣିଷମାନେ ଯୁଗ ଯୁଗ ଧରି ଅନ୍ୟାୟର ଶରବ୍ୟ ହୋଇଛନ୍ତି ସେମାନଙ୍କ ମଧ୍ୟରେ ସେହି ଧାର୍ମିକ ମାନସିକତା ଭାଗ୍ୟ, କର୍ମଫଳ, ପୂର୍ବଜନ୍ମର ପରିଣାମର ଭାବନା ବଦ୍ଧମୂଳ ହୋଇ ରହିଛି । ଏକ ବୈଷମ୍ୟପୂର୍ଣ୍ଣ ସାମାଜିକ ସ୍ଥିତିକୁ ସମାଜରେ ସ୍ଥାୟୀ କରିବା ପାଇଁ ଧର୍ମକୁ ଆୟୁଧ ଭାବେ ନିଆଯାଇଛି ।

ଧାର୍ମିକ ମାନସିକତାଦ୍ୱାରା ପରିଚାଳିତ ହୋଇ ଅନ୍ୟାୟପୂର୍ଣ୍ଣ ଓ ଅମାନବିକ ବ୍ୟବସ୍ଥାକୁ ସମାଜରେ କିପରି ଲୋକମାନେ ସମର୍ଥନ ଦେଇଥାନ୍ତି ଓଡ଼ିଶାରେ କୋରଡ଼ାଗଡ଼ ଗ୍ରାମରେ ମନ୍ଦିର ପ୍ରବେଶକୁ ନେଇ ହୋଇଥିବା ବିବାଦ ତାହାର ଏକ ଜ୍ୱଳନ୍ତ ଉଦାହରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକ ପଞ୍ଚାୟତର ଏକ ଗ୍ରାମ କୋରଡ଼ାଗଡ଼ର ଘଟଣା ଏକ ପ୍ରତୀକ ଯେଉଁଥିରୁ ଆମ ସମାଜରେ ଧାର୍ମିକ ମାନସିକତା ବିଷୟରେ ଧାରଣା କରିହେବ । ସେହି ଗ୍ରାମର ଘଟଣା ପଶ୍ଚାତର ମାନସିକତା ଯେ ସମାଜରେ ଭରପୁର ହୋଇ ରହିଛି ଏହାହିଁ ବିଡମ୍ବନା କହିବାକୁ ହେବ । ସମାଜର କେତେକ ବ୍ୟବସ୍ଥା ଯେତେ ଅନୈତିକ, ଅମାନବିକ ଓ ଅସମ୍ବିଧାନିକ ହେଲେ ମଧ୍ୟ ତାହାକୁ ଧରି ରଖିବାକୁ ପ୍ରୟାସ ହୋଇଛି ଧର୍ମ ନାମରେ । ଭାରତୀୟ ସମାଜରେ ଜାତିପ୍ରଥା, ଅସ୍ପୃଶ୍ୟତା ଯୁଗ ଯୁଗ ଧରି ତିଷ୍ଠି ରହିବା

ପଶ୍ଚାତରେ ଧାର୍ମିକ ବିଶ୍ୱାସ ଓ ସମାଜର ପ୍ରଭାବଶାଳୀ ପୂଜକ ଶ୍ରେଣୀର ଏହାକୁ ସମର୍ଥନ ପରି କାରଣ ଗୁରୁତ୍ୱପୂର୍ଣ୍ଣ ମନେ ହୋଇଛି । ସମାଜ ସଂସ୍କାରକ ବା ମାନବିକ ଅଧିକାରର ପ୍ରବକ୍ତାମାନଙ୍କ ସ୍ୱର କ୍ଷୀଣ ହୋଇ ରହିଛି । ଭାରତରେ ସାମାଜିକ ଆନ୍ଦୋଳନ ଦୃଢ଼ ଭିତ୍ତି ନେଇପାରି ନାହିଁ । ପରାଧୀନ ଭାରତରେ ଗାନ୍ଧୀଜୀଙ୍କ ନେତୃତ୍ୱରେ ହରିଜନମାନଙ୍କର ସାମାଜିକ ଉନ୍ନତି ପାଇଁ ପ୍ରୟାସ ବା ଆମ୍ବେଦକରଙ୍କର ମାନବିକ ଅଧିକାର ପାଇଁ ସଂଗ୍ରାମ ସ୍ୱାଧୀନ ଭାରତରେ ସେପରି କିଛି ବଳିଷ୍ଠ ଭିତ୍ତି ନେଲା ନାହିଁ । ସାମାଜିକ ଆନ୍ଦୋଳନ କେବଳ ଆଞ୍ଚଳିକ ସ୍ତରରେ ସୀମିତ ରହିଲା ଓ ଜାତୀୟ ପ୍ରଭାବ ସୃଷ୍ଟି କରିପାରିଲା ନାହିଁ । ଏବେ ତ ଏହା ନିଷ୍ପ୍ରଭ ପ୍ରାୟ । ସ୍ୱାଧୀନତା ପରେ ଶିକ୍ଷାର ପ୍ରସାର ଓ ଆଇନଗତ ବ୍ୟବସ୍ଥାଦ୍ୱାରା ଏହା ଦୂର ହୋଇଯିବ ବୋଲି ଭାବନା ସୃଷ୍ଟି ହୋଇଥିଲା । ଅବଶ୍ୟ ସଂପ୍ରତି ବୃତ୍ତିଗତ ଢାଞ୍ଚାରେ ପରିବର୍ତ୍ତନ, ସାମାଜିକ ଗତିଶୀଳତା ବୃଦ୍ଧି, ଆଧୁନିକ ଜୀବନଶୈଳୀ ତଥା ଶିକ୍ଷାର ବିକାଶ ଫଳରେ ଅତୀତର ଜାତିଗତ ଅନମନୀୟ ମାନସିକତାରେ କେତେକ ପରିବର୍ତ୍ତନ ସୃଷ୍ଟି ହୋଇଛି । ତେବେ ସାମାଜିକ ବୈଷମ୍ୟ, କୁସଂସ୍କାର ଓ ଧାର୍ମିକ ଶୋଷଣ ଭିନ୍ନ ଭିନ୍ନ ରୂପରେ ଓ ନୂଆ ନୂଆ କଳେବରରେ ପ୍ରକାଶିତ ହେବାରେ ଲାଗିଛି ଏବଂ ବିଡମ୍ବନାର ବିଷୟ ଆଧୁନିକ ପ୍ରଯୁକ୍ତି ଯଥା ଦୂରଦର୍ଶନ, ସମ୍ବାଦପତ୍ର ଜନିତ ଗଣମାଧ୍ୟମରେ ଅବୈଜ୍ଞାନିକ ମନୋଭାବ, କୁସଂସ୍କାର ଓ ଧାର୍ମିକ ଭାବପ୍ରବଣତାକୁ ଅତି ସୂକ୍ଷ୍ମ ଭାବରେ ପ୍ରସାର କରାଯାଉଛି ।

କ୍ଷମତାର ଅଧିକାର ଜନିତ ଲକ୍ଷ୍ୟ ପାଇଁ ଧର୍ମଗତ ବିଦ୍ୱେଷକୁ ଆୟୁଧ କରାଯାଉଛି । ଧର୍ମଗତ ଓ ଜାତିଗତ ବିଭେଦକୁ କୌଶଳର ସହ ପ୍ରସାର କରି ସମାଜକୁ ଭାଗ ଭାଗ କଲେ ତାହାଦ୍ୱାରା ରାଜନୈତିକ ଲକ୍ଷ୍ୟ ହାସଲ ହୋଇପାରିବ ବୋଲି ଭାବନାକୁ ମଧ୍ୟ କେତେକ ରାଜନୈତିକ ଦଳ ଗ୍ରହଣ କରୁଛନ୍ତି । ସେଥିପାଇଁ ସୁଦୂର ଯୋଜନା ମଧ୍ୟ କରାଯାଉଛି । ଲୋକମାନଙ୍କର ବାସ୍ତବ ସମସ୍ୟାଠାରୁ ଜନଗଣଙ୍କର ଦୃଷ୍ଟିକୋଣକୁ ଫେରାଇ ନେବାକୁ ଧର୍ମ ଜନିତ ଭାବପ୍ରବଣତା ବେଶ୍ ସହାୟକ ମନେ ହେଉଛି ।

ସେହିପରି ଏକ ବଳିଷ୍ଠ ସାମାଜିକ ଆନ୍ଦୋଳନ ଅଭାବରେ ଏବଂ ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରସାର ପାଇଁ ସେପରି କିଛି ଗୁରୁତ୍ୱପୂର୍ଣ୍ଣ ଜାତୀୟ କାର୍ଯ୍ୟକ୍ରମ ନ ଥିବାରୁ ଜନମାନସ ମାନସିକ ଜଡ଼ତା ଭିତରେ ଏବେ ମଧ୍ୟ ରହିଛି । ଭାରତବର୍ଷରେ ଆବିର୍ଭାବ

ହେଉଥିବା କେତେ ବାବା, ମାତା ନିଜକୁ ଅଲୌକିକ ଶକ୍ତିସଂପନ୍ନ, ଭଗବାନଙ୍କ ଅବତାର ବୋଲି ପ୍ରଚାର କରିବାରେ ଲାଗିଛନ୍ତି ଓ ଆମର ଧର୍ମଭିରୁ ଶିକ୍ଷିତ ଜନଗଣ ଲକ୍ଷ ଲକ୍ଷ ସଂଖ୍ୟାରେ ବାବା, ମାତାଙ୍କର ଭକ୍ତ ପାଲଟୁଛନ୍ତି । ସାଧାରଣ ଜୀବନ ପ୍ରବାହରେ ନାଗରିକ ଶୃଙ୍ଖଳାବୋଧ, କର୍ତ୍ତବ୍ୟ ପରାୟଣତା, ସାଧୁତା, ସମ୍ବେଦନଶୀଳତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ହେବା ପରିବର୍ତ୍ତେ ତାହାର ବିପରୀତ ମୂଲ୍ୟଚୟର ପ୍ରସାର ଘଟୁଛି । ଧର୍ମ ଓ ଆଧ୍ୟାତ୍ମିକତାର ଦ୍ୱାହି ଦେଇ ଜନଗଣଙ୍କୁ ନାନା ଭାବରେ ଶୋଷଣ କରାଯାଉଛି ଓ ଏପରିକି ଛାତ୍ର ଅବସ୍ଥାରୁ ପିଲାମାନଙ୍କର ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀକୁ ନଷ୍ଟ କରାଯାଉଛି ।

ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ସାମ୍ପ୍ରଦାୟିକତା ଓ ସନ୍ତ୍ରାସବାଦ ପରି ମାନବିକତା-ବିରୋଧୀ ଭାବନା ଧର୍ମ ଜନିତ ପାର୍ଥକ୍ୟ ଯୋଗୁଁ ବିସ୍ତାର ଲାଭ କରୁଛି । ଧାର୍ମିକ ବିଚ୍ଛିନ୍ନତା ଜନିତ ମାନସିକତାକୁ କୌଶଳତାର ସହ ପ୍ରସାର କରାଯାଉଛି ଯଦ୍ୱାରା ଅନ୍ୟ ଧର୍ମ, ସଂସ୍କୃତି ଓ ଜୀବନଧାରା ପ୍ରତି ଏକ ବିଦ୍ୱେଷପୂର୍ଣ୍ଣ ମନୋଭାବ ସୃଷ୍ଟି ହେବ । ସୁସଙ୍ଗଠିତ ଭାବରେ ଅନ୍ୟ ଧର୍ମ ଓ ବିଶ୍ୱାସକୁ ବିରୋଧ କରିବାକୁ ଏପରି ମସ୍ତିଷ୍କ ପ୍ରକ୍ଷାଳନ କରାଯାଉଛି ଯଦ୍ୱାରା ନିଜର ଧର୍ମବିଶ୍ୱାସ ଓ ଦେବତାଙ୍କୁ ପବିତ୍ର ଭାବି ଅନ୍ୟ ଧର୍ମର ବିଶ୍ୱାସ ସକଳକୁ ବିରୋଧ କରିବା ଏକ କର୍ତ୍ତବ୍ୟ ବୋଲି ମନେ କରାଯାଉଛି । ଏପରିକି କେତେକ ଅନ୍ୟର ପୂଜାସ୍ଥଳକୁ ଧ୍ୱଂସ କଲେ ବା ଅନ୍ୟ ଧର୍ମର ବ୍ୟକ୍ତିଙ୍କୁ ଆକ୍ରମଣ କଲେ ନିଜ ଧର୍ମର ଦିଅଁ ଦେବତାର ଆଶୀର୍ବାଦ ମିଳିବ ବୋଲି ବିଶ୍ୱାସ କରୁଛନ୍ତି । ନିଜର ବିଶ୍ୱାସକୁ ଶ୍ରେଷ୍ଠ ଓ ନିଜ ଧର୍ମର ବାଣୀକୁ ପବିତ୍ର ବୋଲି ଗ୍ରହଣ କରୁଥିବା ବ୍ୟକ୍ତିମାନେ ନିଜର ଧର୍ମ ପାଇଁ ଜୀବନ ଦେବାକୁ ବା ଜୀବନ ନେବାକୁ ଏକ ପବିତ୍ର କାର୍ଯ୍ୟ ମନେ କରୁଛନ୍ତି । ଏହା ଅତୀତରେ ଭୟଙ୍କର ଭାବରେ ସାମାଜିକ ଜୀବନର ଧାରା ଥିଲା ଓ ଏବେ ମଧ ସେହି ଦୃଷ୍ଟି ଧାର୍ମିକ ବିଶ୍ୱାସର ପ୍ରଭାବ ଥିବା ସମାଜରେ ରହିଛି । ପୁନଶ୍ଚ ରାଜନୈତିକ ସଙ୍ଗଠନ ଯେଉଁଠି ଏହି ଭାବଧାରାକୁ ସମର୍ଥନ ଦେଉଛି ତାହାର ପରିଣାମ ସ୍ୱରୂପ ସାମ୍ପ୍ରଦାୟିକତା ଓ ସନ୍ତ୍ରାସବାଦ ସକଳ ମାନବିକ ଦୃଷ୍ଟି ଓ ସମ୍ବେଦନଶୀଳ ମୂଲ୍ୟବୋଧକୁ ଧ୍ୱଂସ କରିଚାଲିଛି ।

ମୋଟ୍‌ଉପରେ କହିଲେ ମାନବିକ ଅଧିକାର, ବ୍ୟକ୍ତିମର୍ଯ୍ୟାଦାବୋଧ, ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ସର୍ବଜନହିତୈଷୀ ଜୀବନ ଦର୍ଶନ ସଭ୍ୟ ଜୀବନଧାରାର ସାର୍ବଜନୀନ ମୂଲ୍ୟଚୟ ହେଲେ ମଧ ଏହା କେବେ ଧାର୍ମିକ ମାନସିକତାରେ ଗୃହୀତ ହେଉ ନାହିଁ । ଧର୍ମ ସର୍ବଦା ଏକ

ପାରଲୌକିକ ଜୀବନର ସ୍ୱପ୍ନ ଦେଇଛି ଓ ବାସ୍ତବ ଜୀବନ ଓ ସାମାଜିକ ସମ୍ବନ୍ଧକୁ ତୁଚ୍ଛ ଦୃଷ୍ଟିରେ ଦେଖିଆସିଛି । ସାମାଜିକ ଅନ୍ୟାୟ ଓ ମଣିଷ ପ୍ରତି ବିଦ୍ୱେଷକୁ ମଧ୍ୟ ଏହା ଉଦ୍ରେକ କରାଇଛି । ଧର୍ମର ସାର୍ବଜନୀନ ଆବେଦନ ପରିବର୍ତ୍ତେ ଧର୍ମର ନକାରାତ୍ମକ ଦିଗ ସବୁ ଯୁଗରେ ଓ ଅଧିକାଂଶ ସମାଜରେ କାୟାବିସ୍ତାର କରି ରହିଛି । ଆଧୁନିକ ଜ୍ଞାନ ଓ ପ୍ରଯୁକ୍ତିକୁ ଆୟୁଧ ଭାବରେ ନେଇ କୁସଂସ୍କାର ଓ ଅପସଂସ୍କୃତିକୁ ବିସ୍ତାର କରାଯାଉଛି । ତେବେ ସମାଜକୁ ଏଥିରୁ ମୁକ୍ତ ହେବାକୁ ହେଲେ ସାମାଜିକ ନ୍ୟାୟ, ବିଚାରଶୀଳତା, ମାନବିକତା ଓ ବୃହତ୍ତର ମଣିଷ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ପରି ମୂଲ୍ୟଚୟକୁ ବ୍ୟାପକ କରାଇବାର ଅଛି । ଏକ ଗୁଣାତ୍ମକ ଜୀବନର ଏହା ହିଁ ମାନଦଣ୍ଡ । ବ୍ୟଷ୍ଟି ଜୀବନରେ ହେଉ ବା ଗୋଷ୍ଠୀ ଜୀବନରେ ହେଉ ଏହି ସକଳ ମୂଲ୍ୟଚୟର ବିକାଶ ହିଁ ଏକ ସଭ୍ୟ ଓ ଗୁଣାତ୍ମକ ଜୀବନର ପରିଚୟ ବହନ କରେ । ଧାର୍ମିକ ମାନସିକତା ପରିବର୍ତ୍ତେ ଏହି ମୂଲ୍ୟଚୟ ପ୍ରତି ପ୍ରତିବଦ୍ଧତା ବ୍ୟଷ୍ଟି ବା ଗୋଷ୍ଠୀ ଜୀବନକୁ ମହତ୍ତର କରିଥାଏ ।

# ଅଧ୍ୟୟନ ବନାମ ଅଜ୍ଞତା

ଓଡ଼ିଶାର ଜଣେ ପ୍ରବୀଣ ଅଧ୍ୟାପକ ଯେ ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଭାବେ କାର୍ଯ୍ୟ କରି ଅବସର ଗ୍ରହଣ କରିଛନ୍ତି ଅଳ୍ପ ଦିନ ତଳେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଆସିଥିଲେ। କିଛି ଅନ୍ତରଙ୍ଗ ଆଳାପ ଭିତରେ ତାଙ୍କ ପିଲାବେଳର ଗୋଟିଏ କଥା ମୋତେ କହିଲେ ଯାହାକି ଏକ ଅନୁରୂପ ସ୍ମୃତି ମୋତେ ମନେ ପକାଇଦେଲା। ଅଧ୍ୟାପକ ମହାଶୟ କହିଲେ ଯେ ପ୍ରାୟ ପଚାଶ ବର୍ଷ ତଳେ ସେ ନବମ ଶ୍ରେଣୀରେ ପଢୁଥାନ୍ତି। ତାଙ୍କ ଗ୍ରାମ ପାଖରେ ଏକ ମେଳା ଦେଖିଯିବା ବେଳେ ତାଙ୍କ ବାପା ତାଙ୍କୁ ଏକ ଟଙ୍କା ଦେଇଥିଲେ। ଛାତ୍ର ବୟସରୁ ଅଧ୍ୟୟନ ପିପାସା ରଖିଥିବା ଅଧ୍ୟାପକ ଜଣକ ପଞ୍ଚସ୍ତରି ପଇସା ଦେଇ ଏକ "ଗୀତା" କିଣିକରି ଆଣିଲେ। ସେ ଘରକୁ ଫେରିବା ବେଳକୁ ତାଙ୍କର ପୁରୋହିତ କୌଣସି କାର୍ଯ୍ୟରେ ତାଙ୍କ ଘରକୁ ବୁଲି ଆସିଥିଲେ। ତାଙ୍କ ହାତରେ ଏକ ବହି ଦେଖି ତାଙ୍କୁ ପଚାରିଲେ-କ'ଣ ବହି ଆଣିଛୁ ଦେଖାଇଲୁ ? ସେ ବହିଟି ଦେଖାଇବା ପରେ ପୁରୋହିତ ତାଙ୍କ ବାପାଙ୍କୁ କହିଲେ-ତୁମ ପୁଅ ଏହି ବହି ପଢିବା ଠିକ୍ ହେବ ନାହିଁ। ତୁମେ ଚଷା ଲୋକ। ସେ ଭବିଷ୍ୟତରେ ଲଙ୍ଗଳ ଧରି ଚାଷ କରିବ। ଯେଉଁମାନେ ଲଙ୍ଗଳ ଧରି ଚାଷ କରିବେ, ସେମାନେ ଗୀତା ପଢିବା ଏକ ଅଧର୍ମ କାର୍ଯ୍ୟ। ବିଶେଷକରି ଶୂଦ୍ର ଲୋକମାନେ ଗୀତା, ଉପନିଷଦ, ବେଦ ପରି ଶାସ୍ତ୍ର ପଢିଲେ ପରିବାରର୍ ଅମଙ୍ଗଳ ହୁଏ। ଅଧ୍ୟାପକ ମହାଶୟ କହିଲେ ଯେ ସେଦିନ ତାଙ୍କ ବାପା ସେ କିଣିଥିବା ବହିଟିକୁ ବ୍ରାହ୍ମଣଙ୍କୁ ଦାନ କରିଦେଲେ।

ଏହି ଘଟଣା ପ୍ରାୟ ଚାଳିଶ ବର୍ଷ ତଳର ଏକ ଅନୁରୂପ ଅନୁଭୂତିକୁ ମୋ ସ୍ମୃତିକୁ ଆଣିଲା। ମୁଁ ବି ହାଇସ୍କୁଲର ଛାତ୍ର ଥାଏ। ମୋର ଜଣେ ଅତି ନିକଟ ସଂପର୍କୀୟ ଆମ ଗାଁ ପାଖର ଯୋରନ୍ଦା ମେଳାକୁ ପ୍ରତିବର୍ଷ ବାସନ ଦୋକାନ ନେଇ ଯା'ନ୍ତି। ସେଠାରେ ଏକ ସପ୍ତାହ ଦୋକାନ ଦେଇ ବେଶ୍ କିଛି ଲାଭ କରନ୍ତି। ଗୋଟିଏ ବର୍ଷ ତାଙ୍କର ବ୍ୟବସାୟ ଟିକିଏ ମାନ୍ଦା ଧରିଲା, ତାଙ୍କର ଆଶା ମୁତାବକ ଲାଭ ହେଲା ନାହିଁ। କିଛି ମନଦୁଃଖରେ ଥାନ୍ତି। ତାଙ୍କର ଧର୍ମଗ୍ରନ୍ଥ, ପୁରାଣ, ପ୍ରାଚୀନ କାବ୍ୟ କବିତା ଉପରେ ଆଗ୍ରହ ଥାଏ ଓ ସେ ସେପ୍ରକାର ବହି କିଣନ୍ତି ଓ ପଢନ୍ତି। ସେବର୍ଷ ଯୋରନ୍ଦା ଯାତ୍ରାରୁ ସେ "ଚଣ୍ଡିପାଠ" ପାଇଁ ବହିଟିଏ କିଣିକରି

ଆଣିଥାନ୍ତି । ଦିନେ ସ୍କୁଲରୁ ଫେରି ଜାଣିବାକୁ ପାଇଲି ଯେ ତାଙ୍କ ଘରେ ଏକ ପଞ୍ଚମେଳାର ଆୟୋଜନ ହୋଇଛି ଓ ସେଠାକୁ ଯିବାକୁ ହେବ । ମୁଁ ସନ୍ଧ୍ୟାରେ ତାଙ୍କ ଘରକୁ ଗଲି । ତାଙ୍କର ପୁରୋହିତ ମନ୍ତ୍ର ଇତ୍ୟାଦି ପଢ଼ି ପୂଜା କଲେ । ପୂଜା ଶେଷରେ ମୋର ସଂପର୍କୀୟ ଏକ ନୂଆ କନାରେ ଗୁଡ଼ାଇ କିଛି ପୁରୋହିତଙ୍କୁ ଦାନ କଲେ । ତାଙ୍କୁ କ'ଣ ଦାନ ଦିଆଗଲା ବୋଲି କୌତୂହଳୀ ହୋଇ ମୁଁ ପଚାରିବାରୁ ଜାଣିଲି ଯେ ସେ ଯେଉଁ ଚଣ୍ଡି ବହି ଆଣିଥିଲେ ତାକୁ ପୁରୋହିତଙ୍କୁ ଦାନ କରିଦେଲେ । ଜଣେ ଅବ୍ରାହ୍ମଣ ହୋଇ ସେ ଚଣ୍ଡିପାଠ କରିବା ପାଇଁ ବହି ଆଣିଥିବାରୁ ତାଙ୍କର ବ୍ୟବସାୟରେ କ୍ଷତି ହେଲା । ଏହାକୁ ଅଧିକ ଦିନ ଘରେ ରଖିଥିଲେ କିଛି ବିପର୍ଯ୍ୟୟ ହୋଇଥାନ୍ତା । ତେଣୁ ପୁରୋହିତଙ୍କ ନିର୍ଦ୍ଦେଶକ୍ରମେ ସେ ଚଣ୍ଡି ପୁସ୍ତକଟିକୁ ଦାନ କରିଦେଲେ ଓ ସେ ଯେଉଁ ପାପ ଅର୍ଜନ କରିଛନ୍ତି ତାର ପ୍ରାୟଶ୍ଚିତ ସ୍ୱରୂପ ମେଳା କରି ପାପ କ୍ଷାଳନ କଲେ ।

ଅଧ୍ୟାପକ ମହାଶୟଙ୍କର କାହାଣୀ ଓ ମୋର ନିଜର ଅନୁଭୂତି ଗୋଟିଏ ମାନସିକତାର ପରିପ୍ରକାଶ । ତାହା ହେଲା ଅବ୍ରାହ୍ମଣ ଓ ବିଶେଷକରି ଶୂଦ୍ର ବ୍ୟକ୍ତିମାନେ କୌଣସି ଧର୍ମଶାସ୍ତ୍ର ପଢ଼ିବା ଏକ ଗର୍ହିତ କାର୍ଯ୍ୟ । ଆମର ଅତୀତର ସାମାଜିକ ବ୍ୟବସ୍ଥାରେ ଶୂଦ୍ରମାନେ ଜ୍ଞାନ ଆହରଣ କରିପାରିବେ ନାହିଁ ବୋଲି ଆମ ଦେଶରେ ରଚିତ ସଂହିତାମାନଙ୍କରେ ନିର୍ଦ୍ଦେଶ ରହିଛି । ଯେଉଁ ସଂହିତାମାନ ହିନ୍ଦୁ ଧର୍ମର ନୈତିକ ଭିତ୍ତି ହୋଇ ଯୁଗ ଯୁଗ ଧରି ରହିଛନ୍ତି ସେଥିରେ ଶୂଦ୍ରମାନଙ୍କୁ ଜ୍ଞାନ ଆହରଣରୁ ବଞ୍ଚିତ କରିବା ସହ ସଂପତ୍ତି ଅର୍ଜନର ଅଧିକାର ଓ ଅସ୍ତ୍ରଧାରଣ ଅଧିକାରରୁ ମଧ୍ୟ ବଞ୍ଚିତ କରାଯାଇଛି । ଆମ ଦେଶର ଚତୁର୍ବର୍ଣ୍ଣ ବ୍ୟବସ୍ଥା ଶୂଦ୍ରମାନଙ୍କୁ ଅତ୍ୟନ୍ତ ଅସହାୟ କରି ରଖିବା ହେତୁ ସେମାନେ ସର୍ବଦା ଅନ୍ୟ ବର୍ଗର ଲୋକମାନଙ୍କଦ୍ୱାରା ଶୋଷିତ ହୋଇ ରହିଛନ୍ତି । ଶିକ୍ଷାରୁ ବଞ୍ଚିତ ହୋଇ ରହିବା ଫଳରେ ସେମାନେ ଏହି ଅନ୍ୟାୟ ଓ ଅତ୍ୟାଚାରପୂର୍ଣ୍ଣ ବ୍ୟବସ୍ଥାରୁ ମୁକ୍ତି ପାଇବା ପାଇଁ କେବେହେଲେ ପ୍ରୟାସ କରିନାହାନ୍ତି । ଶିକ୍ଷାଦ୍ୱାରା ଜାଣିବାର ସୁଯୋଗ ଆସେ ଓ ଚିନ୍ତା କରିବା ପାଇଁ ମଣିଷ ଅବକାଶ ପାଇଥାଏ । ତେବେ ଶିକ୍ଷାରୁ ଓ ଅର୍ଥଲାଭରୁ ବଞ୍ଚିତ ହୋଇ ରହିଥିବା ଦଳିତ ଓ ପଛୁଆ ବର୍ଗ ଚିରଦିନ ପାଇଁ ଦାସତ୍ୱ ଭିତରେ ରହି ଆସିଛନ୍ତି ଓ ଏହାକୁ ଭାଗ୍ୟ ଓ କର୍ମଫଳ ବୋଲି ମଧ୍ୟ ବିଶ୍ୱାସ କରିଛନ୍ତି । ବିଭିନ୍ନ ଦେଶରେ ସମାଜର ଶକ୍ତିଶାଳୀ ବା ବିତ୍ତଶାଳୀ ଲୋକମାନେ ହୁଏତ ଅନ୍ୟମାନଙ୍କୁ ଶୋଷଣ କରିଛନ୍ତି, କିନ୍ତୁ ଆମ ଦେଶରେ ଏହି ଶୋଷଣ ସହ ଦଳିତମାନଙ୍କୁ ଯୁଗ ଯୁଗ ଧରି ଅସହାୟ କରି ରଖିବାକୁ ପ୍ରୟାସ ହୋଇଛି । ଗୋଟିଏ ବ୍ୟବସ୍ଥାକୁ ଏପରି କରାଯାଇଛି ଯେପରି ସମାଜରେ ଶୋଷିତ ହୋଇ ରହିଥିବା ବ୍ୟକ୍ତି କେବେହେଲେ ଏହି ଅନ୍ୟାୟରୁ ମୁକ୍ତି ପାଇଁ ବିପ୍ଳବ କରିପାରିବେ ନାହିଁ ।

ପୁନଶ୍ଚ ଗୋଟିଏ ଅନ୍ୟାୟ ବ୍ୟବସ୍ଥାକୁ ଧର୍ମୀୟ ସ୍ୱୀକୃତି ଦେବା ପାଇଁ ପ୍ରୟାସ ହୋଇଛି। ଧର୍ମର ଏକ ବଳିଷ୍ଠ ପ୍ରଭାବ ସାମାଜିକ ଜୀବନରେ ରହିଥିବାରୁ ଏହି ବ୍ୟବସ୍ଥା ବିରୁଦ୍ଧରେ କୌଣସି ବିପ୍ଳବ ସଙ୍ଗଠିତ ହୋଇପାରି ନାହିଁ। ଏହି ବ୍ୟବସ୍ଥାରେ ଅତ୍ୟାଚାରିତ ଓ ଅସମ୍ମାନିତ ହେଉଥିବା ଲୋକମାନେ ଜାତି ବ୍ୟବସ୍ଥା ଲଙ୍ଘନ କରିବାକୁ କେବେହେଲେ ସମର୍ଥ ହୋଇ ନାହାନ୍ତି। ଅଧିକନ୍ତୁ ଆମର ଧର୍ମୀୟ ମାନସିକତାରେ ଶ୍ରୁତି ଓ ସ୍ମୃତି ଭିତରେ ରହିଥିବା ନିର୍ଦ୍ଦେଶକୁ ଜଣେ ମାନିବାକୁ ବାଧ୍ୟ ବୋଲି ଆମ ସମାଜରେ ବିଶ୍ୱାସ ରହିଛି। ବିଚାରଶୀଳତାର ପ୍ରୟୋଗ କରିବା ପାଇଁ ଶାସ୍ତ୍ରରେ ନାନା ବାରଣ ମଧ୍ୟ ରହିଛି। ସୁତରାଂ ଜଣେ ପୂଜକ ବା ଉଚ୍ଚ ଶ୍ରେଣୀର ବ୍ୟକ୍ତି ଶାସ୍ତ୍ରୀୟ ବିଧାନକୁ ଅଲଙ୍ଘନୀୟ ବୋଲି ବିଶ୍ୱାସ କରି ଆସିଛି। ବିଚାରଶୀଳତା ଓ ମାନବିକତାର ଊର୍ଦ୍ଧ୍ୱରେ ଶାସ୍ତ୍ରକୁ ରଖିବା ପାଇଁ ସ୍ମୃତି ଗ୍ରନ୍ଥମାନଙ୍କରେ ମଧ୍ୟ ପ୍ରୟାସ ହୋଇଛି। ତାର ପରିଣତି ସ୍ୱରୂପ ଗୋଟିଏ ବ୍ୟବସ୍ଥା ଯେତେ ଯୁକ୍ତିବିରୋଧୀ, ନୀତିବିରୋଧୀ ଓ ମାନବିକତା-ବିରୋଧୀ ହେଲେ ମଧ୍ୟ ଯୁଗ ଯୁଗ ଧରି ସାମାଜିକ ମନସ୍ତତ୍ତ୍ୱ ଭିତରେ ପ୍ରାଧାନ୍ୟ ନେଇ ଆସିଛି ଓ ସ୍ୱାଧୀନତା ପର୍ଯ୍ୟନ୍ତ ଅତୀତର କୌଣସି ସଂସ୍କାରବାଦୀ ଆନ୍ଦୋଳନ ସାମାଜିକ ଦୃଶ୍ୟପଟରେ ସେପରି କ୍ରାନ୍ତିକାରୀ ପରିବର୍ତ୍ତନ ସୃଷ୍ଟି କରିପାରି ନାହିଁ।

ଅଧ୍ୟାପକ ମହାଶୟଙ୍କର ଘଟଣା ଓ ମୋ ନିଜର ଅନୁଭୂତି ସ୍ୱାଧୀନତା ପ୍ରାପ୍ତି ପରର ଘଟଣା। ସ୍ୱାଧୀନତା ପ୍ରାପ୍ତି ପରେ ଶିକ୍ଷାର କିଛି ବିକାଶ ଯୋଗୁଁ କେତେକାଂଶରେ ଏକ ମୁକ୍ତ ପରିବେଶ ସୃଷ୍ଟି ହେଲା। ଫଳରେ ମେଧାବୀ ଛାତ୍ରମାନଙ୍କର ପଢିବା ପାଇଁ କିଛି ଅବକାଶ ମିଳି ପାରୁଥିଲା। ଅଧ୍ୟାପକ ମହାଶୟ ଯାହାଙ୍କୁ ଦିନେ ଗ୍ରାମର ବ୍ରାହ୍ମଣ ପୁରୋହିତ ଜଣକ ଗୀତା ପଢିବାକୁ ବାରଣ କରିଥିଲେ ସେ ପରେ ସଂସ୍କୃତରେ କିଛି ପାଣ୍ଡିତ୍ୟ ଅର୍ଜନ କଲେ ଓ ବିଭିନ୍ନ ପ୍ରାଚୀନ ଗ୍ରନ୍ଥ ମଧ୍ୟ ପଢିଲେ। ଅଧୀନ ମଧ୍ୟ ହେତୁବାଦୀ ଦୃଷ୍ଟିଭଙ୍ଗୀ ରଖିବା ଭିତରେ କିଞ୍ଚିତ ପଢିବାକୁ ଜୀବନରେ ପ୍ରୟାସ କରିଛି। ତେବେ ସାମାଜିକ ପରିସ୍ଥିତିରେ କିଛି ପରିବର୍ତ୍ତନ ସତ୍ତ୍ୱେ ଜଣେ ଅବ୍ରାହ୍ମଣ ବ୍ୟକ୍ତି ଯେତେ ଶାସ୍ତ୍ର, ପୁରାଣ ପଢିଲେ ମଧ୍ୟ କୌଣସି ମନ୍ଦିର, ଦେଉଳରେ ପୂଜା କରିବାକୁ ସାମାଜିକ ସ୍ୱୀକୃତି ପାଇ ନାହିଁ। ଅତୀତରେ ପଢିବାର ଅଧିକାର ନଥିଲା, ସଂପ୍ରତି ସାମାଜିକ ପରିବର୍ତ୍ତନ ପ୍ରକ୍ରିୟାରେ ସେହି ଅଧିକାର ସ୍ୱାଧୀନୋତ୍ତର ଭାରତରେ ସୃଷ୍ଟି ହୋଇଛି। ତେବେ ସାମାଜିକ ଜୀବନ ପ୍ରବାହରେ ଜଣେ ଅଶିକ୍ଷିତ ଓ ସଂସ୍କୃତ ବିଶେଷ ଜାଣି ନଥିବା ପୂଜକ ମଧ୍ୟ ପୂଜା କରି ପାରୁଛି, ଅଥଚ ଜଣଙ୍କର ସମସ୍ତ ପାଣ୍ଡିତ୍ୟ ଥିଲେ ମଧ୍ୟ ସେ ଜାତିଗତ ମାନଦଣ୍ଡରେ ଏବେ ବି ସେହି ଅଧିକାର ପାଇ ନାହିଁ।

ସାମାଜିକ ବିଷମତାକୁ ବିରୋଧ କରି ସ୍ୱାଧୀନ ଭାରତରେ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଗ୍ରହଣ କରାଯାଇଛି । ଏକ ପ୍ରଗତିଶୀଳ ସମ୍ବିଧାନ ମାଧ୍ୟମରେ ଆମ ରାଷ୍ଟ୍ରୀୟ ଆଦର୍ଶଗୁଡ଼ିକୁ ବ୍ୟକ୍ତ କରାଯାଇଛି । ଏ ଯୁଗର କେତେକ ସର୍ବମାନ୍ୟ ଆଦର୍ଶ ଯଥା ସମତା, ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର, ଧର୍ମ ନିରପେକ୍ଷତା ଇତ୍ୟାଦି ମୂଲ୍ୟଚୟକୁ ଆମ ଜାତୀୟ ଲକ୍ଷ୍ୟ ଭାବେ ସମ୍ବିଧାନରେ ସ୍ୱୀକୃତି ଦିଆଯାଇଛି । ସ୍ୱାଧୀନୋତ୍ତର ଭାରତରେ ଶିକ୍ଷାର ମଧ୍ୟ ପ୍ରସାର ହୋଇଛି । ପରିଣାମତଃ ସାମାଜିକ ଗତିଶୀଳତା ବୃଦ୍ଧି ପାଇଛି, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର କିଛି ବିକାଶ ହୋଇଛି, ବୃତ୍ତିଗତ ଢାଞ୍ଚାରେ ଅନେକ ପରିବର୍ତ୍ତନ ଆସିଛି । ସମାଜର ଅର୍ଥନୈତିକ ଓ ସାଂସ୍କୃତିକ ଦୃଶ୍ୟପଟରେ ବେଶ୍ ପରିବର୍ତ୍ତନ ହୋଇ ଚାଲିଛି । ଏସବୁ ସତ୍ତ୍ୱେ ଅତୀତର ମନୁବାଦୀ ବ୍ୟବସ୍ଥା ତଥାପି ହିନ୍ଦୁ ସାମାଜିକ ମନସ୍ତତ୍ତ୍ୱକୁ ପ୍ରଭାବିତ କରି ରଖିଛି ।

ଏହି ମନୁବାଦୀ ବ୍ୟବସ୍ଥା ତିଷ୍ଠି ରହିବା ପଶ୍ଚାତରେ ନାନା ମନସ୍ତାତ୍ତ୍ୱିକ, ଆର୍ଥିକ ଓ ସାଂସ୍କୃତିକ କାରଣମାନ ରହିଛି । ବିଶେଷକରି ସମାଜର ଉଚ୍ଚ ସୋପାନରେ ଥିବା ବ୍ୟକ୍ତିମାନେ ଏହି ବ୍ୟବସ୍ଥାକୁ ଧରି ରଖିବାକୁ ପ୍ରୟାସ କରି ଆସିଛନ୍ତି । ସେମାନେ ସମାଜର ବିଭିନ୍ନ କ୍ଷେତ୍ରକୁ ନିୟନ୍ତ୍ରଣ କରୁଥିବାରୁ ଓ ସେମାନଙ୍କର ସାମାଜିକ ପ୍ରଭାବ ଥିବା ହେତୁ ଏକ ଅନ୍ୟାୟ ବ୍ୟବସ୍ଥା ସାମାଜିକ ସ୍ତରରେ ଅତୁଟ ରହିଛି । ତେବେ ସମାଜର ଦଳିତ ଶ୍ରେଣୀ ଓ ପଛୁଆ ବର୍ଗର ଲୋକମାନେ ନିଜର ଅଜ୍ଞତା ଯୋଗୁଁ ବ୍ୟବସ୍ଥାର ମଧ୍ୟ ପରୋକ୍ଷ ସମର୍ଥକ ହେବା ମନେ ହୁଏ । କାରଣ ସେମାନେ ମଧ୍ୟ ଶହ ଶହ ଭାଗରେ ବିଭକ୍ତ ହୋଇ ରହିଛନ୍ତି ଓ ସ୍ଥଳବିଶେଷରେ ସେହି ବ୍ରାହ୍ମଣବାଦୀ ଶୋଷଣକୁ ପରୋକ୍ଷ ଭାବେ ସମର୍ଥନ କରୁଛନ୍ତି । ଯେଉଁ ବ୍ୟବସ୍ଥାରେ ସେମାନେ ଶୋଷିତ, ପଦଦଳିତ ହୋଇଛନ୍ତି ସେହି ବ୍ୟବସ୍ଥାରୁ ମୁକ୍ତ ହେବାକୁ ସେମାନେ ପ୍ରୟାସ କରିପାରୁ ନାହାନ୍ତି । ସେମାନେ ସେହି ଧର୍ମୀୟ ପରମ୍ପରା, ପୂଜା ପାର୍ବଣ, ଦେଉଳ, ମନ୍ଦିରକୁ ଗ୍ରହଣ କରୁଛନ୍ତି । ଏପରିକି କେଉଁ ବାବାଙ୍କର ଭକ୍ତ ପାଲଟୁଛନ୍ତି, ଭାଗ୍ୟ, କର୍ମଫଳ ଇତ୍ୟାଦିକୁ ଗ୍ରହଣ କରୁଛନ୍ତି । ସେମାନଙ୍କର ସରଳତା ଓ ଅଜ୍ଞତାର ସୁଯୋଗ ନେଇ ମନୁବାଦର ନୂଆ ନୂଆ ସଂସ୍କରଣ ଭିତରେ ଦଳିତ, ପଛୁଆ ଲୋକମାନଙ୍କୁ ଭାଗ୍ୟ, ଭଗବାନ, କର୍ମଫଳ, ହୋମ, ଯଜ୍ଞ, ବାବାବାଦ ଭିତରେ ପଙ୍ଗୁ କରି ରଖାଯାଉଛି । ସ୍ଥଳବିଶେଷରେ ସଂସ୍କୃତିକରଣ କରିଆରେ ଏହି ବ୍ରାହ୍ମଣବାଦୀ କାର୍ଯ୍ୟସୂଚୀ କରିବାଦ୍ୱାରା ନିଜର ସାମାଜିକ ସ୍ଥିତିରେ କିଛି ଉନ୍ନତି ହେବ ଭାବି ସେମାନେ ମଧ୍ୟ ଏହି ବ୍ୟବସ୍ଥାର ସମର୍ଥକ ହେଉଛନ୍ତି ।

ଅର୍ଥାତ୍ ସମାଜରେ କିଛି ବ୍ୟକ୍ତି ବେଶ୍ ଚତୁରତାର ସହ ଶୂଦ୍ର ଓ ଦଳିତ ଲୋକମାନଙ୍କୁ ସାମାଜିକ ବାସ୍ତବତାଠାରୁ ଦୂରେଇ ନେବାକୁ କେତେ କେତେ କୁସଂସ୍କାରକୁ ବେଶ୍ ପ୍ରଚାର

କରୁଛନ୍ତି । ସମସ୍ୟା ବହୁଳ ଜୀବନରେ ଓ ବୈଜ୍ଞାନିକ-ହେତୁବାଦୀ ସଚେତନତା ଅଭାବରେ କୁସଂସ୍କାରକୁ ବ୍ୟାପକ କରାଯାଉଛି । ପ୍ରହେଳିକା ପୂର୍ଣ୍ଣ ମନେ ହେଲେ ବି ଆଧୁନିକ ପ୍ରଯୁକ୍ତିକୁ ଆଧାର କରି (ଯଥା ଦୂରଦର୍ଶନ, ରେଡ଼ିଓ, ସମ୍ବାଦପତ୍ର ଇତ୍ୟାଦି) ଆଜି ନଗର, ସହରଠାରୁ ଆରମ୍ଭ କରି ଗାଁ ପର୍ଯ୍ୟନ୍ତ କୁସଂସ୍କାରକୁ ବ୍ୟାପକ କରାଯାଉଛି । ଫଳିତ ଜ୍ୟୋତିଷ, ସଂଖ୍ୟାବିଦ୍ୟା ବା ନିଉମରୋଲୋଜି, ବାସ୍ତୁ ଶାସ୍ତ୍ର ଇତ୍ୟାଦିକୁ ଗାଁଠାରୁ ସହର ପର୍ଯ୍ୟନ୍ତ ଲୋକମାନେ ବିଶ୍ୱାସ କରୁଛନ୍ତି । ଜଣେ ଅଶିକ୍ଷିତ ଆଦିବାସୀ ତା' ପରିବାରରେ କିଛି ରୋଗ ବା ଅଘଟଣ ପାଇଁ ତା'ର ପ୍ରତିବେଶୀକୁ ବେଳକେ ହତ୍ୟା କରୁଛି, ଗାଁର ପୂଜକ ହୋଇଥିବା ଜଣେ ବ୍ୟକ୍ତି ନିଜର ମନସ୍କାମନା ପୂରଣ ପାଇଁ ତା'ର ଦିଅଁ ପାଖରେ ଏକ ପଶୁକୁ ବଳି ପକାଉଛି ବା ସହରର ଜଣେ ଭଦ୍ରମହିଳା ନିଜର ଏକ ସନ୍ତାନ କାମନା କରି କେଉଁ ରହସ୍ୟମୟ ବାବାଙ୍କର ଭକ୍ତ ହୋଇ ତାଙ୍କର ଆଶ୍ରୟ ନେଉଛି । ସେହିପରି ଗୋଟିଏ ଧର୍ମର କଳ୍ପିତ ଦେବତାଙ୍କର ପୀଠସ୍ଥଳ ସ୍ଥାପନ ପାଇଁ ଅନ୍ୟ ଧର୍ମର ପୀଠସ୍ଥଳକୁ ଭାଙ୍ଗିବା ପାଇଁ ଜନଗଣଙ୍କୁ ଉତ୍ତେଜିତ କରାଯାଇ ପାରୁଛି । ଜଣେ ବ୍ୟଙ୍ଗ ଚିତ୍ରକର କୌଣସି ଧାର୍ମିକ ପ୍ରବକ୍ତାଙ୍କର ବ୍ୟଙ୍ଗ ଚିତ୍ର ଆଙ୍କିଥିବାରୁ ତାଙ୍କର ମୁଣ୍ଡକାଟ ପାଇଁ ଜଣେ ମନ୍ତ୍ରୀ ବି ଆହ୍ୱାନ ଦେଉଛନ୍ତି । ଜଣେ ମତାନ୍ଧ ବ୍ୟକ୍ତି ରାଜନୈତିକ ସୋପାନରେ କ୍ଷମତା ହାସଲ କରିପାରିଲେ ସଙ୍ଗଠିତ ଭାବେ କ୍ଷମତାର ଅପପ୍ରୟୋଗ କରି ସମାଜରେ ସାମ୍ପ୍ରଦାୟିକ ଉତ୍ତେଜନା ଓ ବିଦ୍ୱେଷ ସୃଷ୍ଟି କରୁଛନ୍ତି । ଏପରିକି ରାଜନୈତିକ ଦୂରଭିସନ୍ଧି ରଖି ସମାଜରେ ସାମ୍ପ୍ରଦାୟିକ ବିଦ୍ୱେଷ, କୁସଂସ୍କାର ଓ ମଧ୍ୟଯୁଗୀୟ ମାନସିକତାକୁ ବ୍ୟାପକ କରାଯାଉଛି । ରାଜନେତାଙ୍କଠାରୁ ଆରମ୍ଭ କରି ଗାଁର ନିରୀହ ସାଧାରଣ ମଣିଷଟିଏ ମଧ୍ୟ କୁସଂସ୍କାରର ଜାଲରୁ ମୁକ୍ତ ହେଉ ନାହିଁ । ଶିକ୍ଷିତ-ଅଶିକ୍ଷିତ, ଗାଁ ବାଲା-ସହରୀ, ସାଧାରଣ ମଣିଷ-ଉଚ୍ଚ ପଦବୀରେ ଥିବା ବ୍ୟକ୍ତି, ସବୁ କ୍ଷେତ୍ରରେ କୁସଂସ୍କାର ନାନା ରଙ୍ଗରେ ରହିଛି । ଏକ ସରଳ ନିରୀହ ବ୍ୟକ୍ତି ବୃହତ୍ତର ସମାଜ ଉପରେ ଆସ୍ଥାବାନ ହୋଇ ନପାରି ଓ ଭୟ ତଥା ଉତ୍କଣ୍ଠା ଯୋଗୁଁ ନାନା କୁସଂସ୍କାରକୁ ଗ୍ରହଣ କରୁଛି । ଜଣେ ଧୂର୍ତ୍ତ ବାବା ଲୋକମାନଙ୍କର ଅଜ୍ଞତାର ସୁଯୋଗ ନେଇ ନିଜକୁ ଅଲୌକିକ ଶକ୍ତିସମ୍ପନ୍ନ ବୋଲି ଘୋଷଣା କରୁଛନ୍ତି ।

କେବଳ ଯେ ବ୍ୟକ୍ତି ସ୍ତରରେ ଏହା ହେଉଛି ତା ନୁହେଁ, ଆମର ସାଧାରଣ ଜୀବନ ପ୍ରବାହରେ ମଧ୍ୟ ଏହି ମାନସିକତାର ପ୍ରଭାବ ରହିଛି । କୌଣସି ଏକ ଅତ୍ୟାଧୁନିକ ବୈଜ୍ଞାନିକ କାର୍ଯ୍ୟ ପାଇଁ ରାହୁ କାଳକୁ ଅଶୁଭ ମନେ କରାଯାଉଛି, କୌଣସି ମନ୍ତ୍ରୀମଣ୍ଡଳର ଶପଥ ଗ୍ରହଣ ପାଇଁ ଶୁଭ ମୁହୂର୍ତ୍ତ ସ୍ଥିର ହେଉଛି, ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷା ବର୍ଷ ଆରମ୍ଭ ପାଇଁ ଏକ ଭଲ ଦିନ ଦେଖାଯାଉଛି, ଏକ ବୃହତ୍ ପ୍ରକଳ୍ପ ଆରମ୍ଭରେ ଶୁଭ ଦିଆଯିବା

ନାମରେ ହୋମ-ଯଜ୍ଞ ହେଉଛି ଇତ୍ୟାଦି..। ଏହିପରି ହିସାବ କଲେ ବହୁ ଘଟଣା ଆମର ଜନଜୀବନରୁ ବାହାରି ପାରିବ।

ଅତୀତରେ ବହୁ କୁସଂସ୍କାର ଗଣତାନ୍ତ୍ରିକ ଦୃଷ୍ଟିଭଙ୍ଗୀ ଓ ମାନବିକତାର ପରିପନ୍ଥୀ ଥିବା ବେଳେ ଆଧୁନିକ ଜୀବନ ପ୍ରବାହର ଅନେକ କୁସଂସ୍କାର ସାମାଜିକ ଓ ବୌଦ୍ଧିକ ପ୍ରଗତିର ପରିପନ୍ଥୀ ହୋଇ ରହିଛି। ଏହିପରି କ୍ଷୟଶୀଳ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା ପାଇଁ ଜାତୀୟ ସ୍ତରରେ ସେପରି ଉଦ୍ୟମ ହୋଇ ନାହିଁ। କେତେକ ହେତୁବାଦୀ ବା ପ୍ରଗତିଶୀଳ ବୁଦ୍ଧିଜୀବୀ ନାନା ପ୍ରତିକୂଳ ସ୍ଥିତି ଭିତରେ ଏସବୁ କ୍ଷେତ୍ରରେ ସ୍ୱର ଉତ୍ତୋଳନ କରୁଥିଲେ ମଧ୍ୟ ଏହାର ପ୍ରଭାବକୁ ପ୍ରତିହତ କରିପାରୁ ନାହାନ୍ତି। ପୁନଶ୍ଚ ଦେଶର ଗଣମାଧ୍ୟମ, ସମ୍ବାଦପତ୍ର ଇତ୍ୟାଦି ଏ କ୍ଷେତ୍ରରେ ସେପରି କିଛି ଭୂମିକା ନେଇପାରି ନାହାନ୍ତି। ଆମ ଦେଶର ବିଶ୍ୱବିଦ୍ୟାଳୟ ବା ଉଚ୍ଚତର ଶିକ୍ଷାନୁଷ୍ଠାନମାନଙ୍କର ଆଭିମୁଖ୍ୟ ଭିତରେ ସାମାଜିକ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା ପାଇଁ ସୁଚିନ୍ତିତ କାର୍ଯ୍ୟକ୍ରମ ନାହିଁ।

ତେବେ ଏକ ସାମାଜିକ କ୍ରାନ୍ତି ପାଇଁ କ'ଣ କରାଯିବ ? ବିଶେଷକରି ଯେଉଁ ଅହେତୁକ ମାନସିକତା ସମାଜରେ ଏକ ବୈଷମ୍ୟପୂର୍ଣ୍ଣ ବ୍ୟବସ୍ଥାକୁ ଦୃଢ କରିବା ପାଇଁ ନାନା ଭାବରେ ଧର୍ମ, ପରମ୍ପରା ଓ ଆଧ୍ୟାତ୍ମିକତା ଆଳରେ ବିକାଶଲାଭ କରିଛି ତାହାର କିପରି ପରିବର୍ତ୍ତନ ହେବ ? ସମାଜରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ବିଚାରଶୀଳ ଓ ମାନବିକ ଦୃଷ୍ଟି ଅପରିହାର୍ଯ୍ୟ ମନେ ହେଉଥିବାରୁ ଏହାକୁ ସମାଜରେ କିପରି ପରିବ୍ୟାପକ କରିହେବ ସେ ନେଇ ଗଭୀର ଚିନ୍ତନ ଓ କାର୍ଯ୍ୟସୂଚୀ ଆବଶ୍ୟକ। ସେହି କାର୍ଯ୍ୟସୂଚୀର ଏକ ଅଂଶ ସ୍ୱରୂପ କିଛି ପ୍ରଗତିଶୀଳ ସାହିତ୍ୟ ଓ ଜନଚେତନାକୁ ଆନ୍ଦୋଳିତ କଲା ପରି ବଳିଷ୍ଠ ଲେଖାର ଉପଯୋଗିତା ମଧ୍ୟ ଅନସ୍ୱୀକାର୍ଯ୍ୟ। ଏହି ଲକ୍ଷ୍ୟ ଦିଗରେ ପ୍ରଗତିଶୀଳ ପତ୍ରପତ୍ରିକା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ। ଓଡ଼ିଶାର ଜନଜୀବନରେ ବ୍ୟକ୍ତିମର୍ଯ୍ୟାଦା, ମାନବିକ ଅଧିକାର, ଗଣତାନ୍ତ୍ରିକ ବିଚାରଧାରା, ବୈଜ୍ଞାନିକ ଦୃଷ୍ଟିକୋଣ ଓ ସର୍ବୋପରି ସାମାଜିକ ନ୍ୟାୟର ବିକାଶ ପାଇଁ ବିଭିନ୍ନ ପ୍ରଗତିଶୀଳ ପତ୍ର ପତ୍ରିକାର ଏକ ସ୍ୱତନ୍ତ୍ର ଭୂମିକା ଯେ ରହିଛି, ଏହା ନିଃସନ୍ଦେହ ମନେହୁଏ।

# ବାଡି ବାଇଗଣ ବନାମ ପୋଥି ବାଇଗଣ

ଗୋଟିଏ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେଇ ଜଣେ ବନ୍ଧୁଙ୍କ ଘରେ ରାତ୍ରିଯାପନ ପାଇଁ ଯାଇ ରହିଲି । ଖରା ଦିନ, ଭୀଷଣ ଗରମ ଅନୁଭୂତ ହେଉଥାଏ । ବନ୍ଧୁ ଓ ବନ୍ଧୁ ପତ୍ନୀଙ୍କ ସହ ସୁଖ ଦୁଃଖ କଥା ହେଉଥାଏ । ହଠାତ୍ ଘରର କରେଣ୍ଟ ଚାଲିଗଲା । ବାହାରକୁ ଆସି ଦେଖିଲା ବେଳକୁ ପଡ଼ିଶା ଘରମାନଙ୍କରେ କରେଣ୍ଟ ରହିଛି ଓ କେବଳ ବନ୍ଧୁଙ୍କ ଘରର କରେଣ୍ଟ ଚାଲିଯାଇଛି । ବନ୍ଧୁ କହିଲେ-ତାଙ୍କ ମିଟରରେ କିଛି ଅସୁବିଧା ରହିଛି, ଏଣୁ ମଝିରେ ମଝିରେ କରେଣ୍ଟ ଚାଲିଯାଉଛି । ବନ୍ଧୁଙ୍କର ପୁଅ ଇଲେକ୍‌ଟ୍ରିକାଲ ଇଂଜିନିୟର, ପୁଅ ବି ଘରେ ଥା'ନ୍ତି । ମୁଁ କହିଲି-ପୁଅ ତ ଅଛନ୍ତି, ସେ ବୋଧହୁଏ ଠିକ୍ କରିଦେବେ । ବନ୍ଧୁ ପତ୍ନୀ କହିଲେ-ସେ ଏସବୁ ପାରୁ ନାହିଁ, ଲାଇନ୍‌ସମ୍ୟାନ ଡାକି ଏହାକୁ ଠିକ୍ କରିବାକୁ ପଡୁଛି । ବନ୍ଧୁ ପତ୍ନୀଙ୍କର ଏହି ମନ୍ତବ୍ୟରେ ପୁଅ କହିଲେ-ମୁଁ କ'ଣ ଆଇଟିଆଇ ପଢିଛି ଯେ ଏସବୁ ଜାଣିବି, ଏସବୁ କରିବାକୁ ମୋତେ ଆଇଟିଆଇ ନ ପଢାଇ ଇଂଜିନିୟରିଂ କାହିଁକି ପଢାଉଥିଲ । ତେବେ ପୁଅ ସଙ୍ଗେ ସଙ୍ଗେ ସ୍କୁଟର ବାହାର କରି ପାଖରେ ରହୁଥିବା ଜଣେ ବ୍ୟକ୍ତିଙ୍କୁ ଡାକିକରି ଆଣିଲେ । ସେ ମାତ୍ର ଚାରି/ପାଞ୍ଚ ମିନିଟ୍ ଭିତରେ ମିଟର ଦେଖି ଠିକ୍ କରିଦେବାରୁ କରେଣ୍ଟ ଆସିଲା । ମୁଁ ତାଙ୍କୁ ପଚାରିଲି-ଆପଣ କ'ଣ ପଢିଛନ୍ତି ? ଆଇଟିଆଇରେ କୋର୍ସ କରି ଇଲେକ୍‌ଟ୍ରିସିଆନ୍ ହୋଇଛନ୍ତି କି ? ସେ ଉତ୍ତର ଦେଲେ-ସେ ସେସବୁ କିଛି ପଢି ନାହାନ୍ତି । ଜଣେ ଲାଇନ୍‌ସମ୍ୟାନ୍ କର୍ମଚାରୀଙ୍କ ସହିତ କାମ କରି ଏସବୁ ଶିକ୍ଷା କରିଛନ୍ତି । ଅଭିଜ୍ଞତା ଭିତରୁ କରେଣ୍ଟ କିପରି ଚାଲିଯାଏ ସେ ସବୁ ଜାଣନ୍ତି । ଫ୍ୟାନ୍ ଇତ୍ୟାଦି ବି ସଜାଡ଼ନ୍ତି । ଫ୍ୟାନ୍ କଥା ପଡ଼ିବାରୁ ବନ୍ଧୁ ସେହି ଇଲେକ୍‌ଟ୍ରିସିଆନ୍‌ଙ୍କୁ କହିଲେ-ତାଙ୍କ ଫ୍ୟାନ୍ ରେଗୁଲେଟରଟି କେବଳ ପାଞ୍ଚ ପାଖରେ ଚାଲୁଛି, ଅନ୍ୟ ସ୍ଥାନରେ ଚାଲୁ ନାହିଁ । ଟିକିଏ ଦେଖିଦିଅ । ତାହାକୁ ସେଦିନ ସମୟ ଅଭାବରୁ ସେ ପରେ ଆସି ଦେଖିବାକୁ କହିଲେ । ପୁଅଙ୍କୁ ମୁଁ କଥା ଛଳରେ ପଚାରିଲି-ତୁମେ ରେଗୁଲେଟର ଇତ୍ୟାଦି କିପରି ଠିକ୍ ହୁଏ ଜାଣିପାରିବ କି ନାହିଁ ? ପୁଅ କହିଲେ-ଏସବୁ ବିଷୟରେ ତାଙ୍କର ଅଭିଜ୍ଞତା ନାହିଁ ।

ଏହା ଏକ ସାଧାରଣ ଘଟଣା । ତେବେ ଏହା ଉପରେ କେତେ ପ୍ରଶ୍ନ ମନକୁ ଆସୁଛି । ଯାହା ସମାଜର ଜଣେ ଅପାଠୁଆ ବ୍ୟକ୍ତି କରିଦେଇ ପାରୁଛନ୍ତି ତାହା ବୈଷୟିକ ଡିଗ୍ରୀ ପାଇଥିବା ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି କରିପାରୁ ନାହାନ୍ତି । ଆମର ପାଠ କ'ଣ କେବଳ ପୋଥି ବାଇଗଣ

ହୋଇ ରହିଛି, ଏହା ବାସ୍ତବ ଜୀବନ ପାଇଁ ଉପଯୋଗୀ ହୋଇପାରୁ ନାହିଁ। ଓଡ଼ିଆରେ 'ପୋଥି ବାଇଗଣ ନା ବାଡ଼ି ବାଇଗଣ' ବୋଲି ଢଗ ରହିଛି। ଏହାର ତାତ୍ପର୍ଯ୍ୟ ହେଉଛି ବାଇଗଣର ସ୍ୱାଦ ବିଷୟରେ ପୋଥିରୁ ପଢିବା ଓ ବାଇଗଣ ଫଳାଇ ତା'ର ସ୍ୱାଦ ଚାଖିବା ଭିତରେ ଫରକ ରହିଛି। ପୋଥିରେ ଅନେକ କଥା ଲେଖାଯାଇଛି, ହେଲେ ସେ ସବୁ ବାସ୍ତବ ଜୀବନରେ ପ୍ରତିଫଳିତ ହେଉଛି କି ନାହିଁ ତାହା ହିଁ ଗୁରୁତ୍ୱପୂର୍ଣ୍ଣ। ସେହି ପରିପ୍ରେକ୍ଷୀରେ ଆମର ଶାସ୍ତ୍ର ବଚନ ଓ ସାଧାରଣ ଜୀବନ ଭିତରେ କିପରି ଆକାଶ ପାତାଳ ତଫାତ୍ ରହିଛି ତାହାର ସମ୍ୟକ୍ ଆଲୋଚନା ଏଠାରେ କରିବା।

ଆମ ଶାସ୍ତ୍ରରେ କୁହାଯାଇଛି – ଏକଂ ସତ୍ ବିପ୍ରା ବହୁଧା ବଦନ୍ତି। ସତ୍‌କୁ ସତ୍ତା ବା ସତ୍ୟ ଭାବରେ ନିଆଯାଏ, ତେବେ ଏଠାରେ ଆମେ ସତ୍ୟ ଅର୍ଥରେ ଏହାକୁ ଗ୍ରହଣ କରିବା। ସତ୍ୟକୁ ଏକ ପରମାର୍ଥିକ ତତ୍ତ୍ୱ ଭାବରେ କଳ୍ପନା କରାଯାଇଛି। ସତ୍ୟର ନାନା ପ୍ରୟୋଗ ଆମ ଭାଷାରେ କରାଯାଏ। ବାସ୍ତବରେ ଦେଖିଲେ କୌଣସି ଘଟଣାର ବର୍ଣ୍ଣନା ଦେବାବେଳେ ଆମେ ଯେଉଁ ବାକ୍ୟ ବ୍ୟବହାର କରୁ ତାହାରି ପୃଷ୍ଠଭୂମିରେ ଏକ ବର୍ଣ୍ଣନା(description) ସତ୍ୟ କି ମିଥ୍ୟା କୁହାଯାଏ। ଘଟଣାଟି ଯେପରି ଘଟିଛି ତାକୁ ସେହିପରି ବର୍ଣ୍ଣନା କଲେ ବର୍ଣ୍ଣନାଟି ସତ୍ୟ ବୋଲି ଗୃହୀତ ହୁଏ, ନହେଲେ ଯଦି ବାସ୍ତବ ଘଟଣା ବର୍ଣ୍ଣନା ଭିତରେ ପାର୍ଥକ୍ୟ ବା ଅମେଳ ରହେ ତେବେ ବର୍ଣ୍ଣନାଟି ମିଥ୍ୟା ବୋଲି ନିଆଯାଏ। ସୁତରାଂ ସତ୍ୟ-ମିଥ୍ୟା ଏକ ବିବରଣୀ ବା କଥନ ପରିପ୍ରେକ୍ଷୀରେ ବ୍ୟବହୃତ ହୁଏ ଓ ଏହା ଏକ ବିବରଣୀର ତାର୍କିକ ସ୍ୱରୂପ ଭାବରେ ନିଆଯାଏ। କିନ୍ତୁ ସତ୍ୟକୁ ଏଠାରେ ଏହି ଭାବେ ଗ୍ରହଣ କରାନଯାଇ ଏହାକୁ ଏକ ପରମାର୍ଥିକ ସତ୍ତା ବା ତତ୍ତ୍ୱ ଭାବରେ ଅନୁମାନ କରାଯାଇଛି। "ସତ୍ୟ ହିଁ ଈଶ୍ୱର"-ଗାନ୍ଧୀଙ୍କର ଏହି ଉକ୍ତିଟି ବେଶ୍ ଜଣାଶୁଣା। ଏଠାରେ ସତ୍ୟ ଏକ ଅମୂର୍ତ୍ତ ପ୍ରତ୍ୟୟ (abstract concept)। ଈଶ୍ୱର ମଧ୍ୟ ଏକ କାଳ୍ପନିକ ତତ୍ତ୍ୱ। ଯେଉଁ ପ୍ରତ୍ୟୟଟି ବାସ୍ତବ ଅନୁଭୂତିର ଉର୍ଦ୍ଧ୍ୱରେ ତାହା ନେଇ ବିଭିନ୍ନ କଳ୍ପନା କରାଯାଇପାରେ। ଯେତେବେଳେ କୁହାଯାଏ ଯେ ସତ୍ୟର ସ୍ୱରୂପ ଏକ, କିନ୍ତୁ ତାହା କ'ଣ ଆମେ ଜାଣୁନା, ତେଣୁ ତାହାର ବର୍ଣ୍ଣନା କ୍ଷେତ୍ରରେ ଭିନ୍ନତା ରହିବା ଅବଶ୍ୟମ୍ଭାବୀ ହୁଏ। ଈଶ୍ୱର, ଜୀବନର ଅନ୍ତିମ ଲକ୍ଷ୍ୟ ଓ ପୁରୁଷାର୍ଥ (human destiny)ର ସ୍ୱରୂପ କ'ଣ ତାହା ନେଇ ନାନା କଳ୍ପନା ଓ ତତ୍ତ୍ୱର ଅବତାରଣା ମଣିଷ କରିଛି। ଗୋଟିଏ ବୈଜ୍ଞାନିକ ସିଦ୍ଧାନ୍ତ କ୍ଷେତ୍ରରେ ସାର୍ବଜନୀନ ସହମତି ଥାଏ କାରଣ ତାହା ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଆଧାରରେ ସ୍ଥିରୀକୃତ ହୋଇଥାଏ। ଗୋଟିଏ ବୈଜ୍ଞାନିକ ସିଦ୍ଧାନ୍ତକୁ ଭୁଲ ପ୍ରମାଣିତ କରି ଅନ୍ୟ ଏକ ସିଦ୍ଧାନ୍ତ କେହି ଅବତାରଣା କଲେ ତାହା ବସ୍ତୁନିଷ୍ଠ ପରୀକ୍ଷଣ ସାହାଯ୍ୟରେ ସ୍ୱୀକୃତ ହୋଇଥାଏ।

ସେ କ୍ଷେତ୍ରରେ ଯାହାଙ୍କର ସିଦ୍ଧାନ୍ତକୁ ତ୍ରୁଟିପୂର୍ଣ୍ଣ ବୋଲି ଦର୍ଶାଗଲା ସେ ନୂତନ ସିଦ୍ଧାନ୍ତକୁ ବିରୋଧ କରନ୍ତି ନାହିଁ ବରଂ ସ୍ୱାଗତ କରନ୍ତି ଯେହେତୁ ନୂତନ ସିଦ୍ଧାନ୍ତ ବୈଜ୍ଞାନିକ ପ୍ରଣାଳୀ ଆଧାରରେ ଗୃହୀତ ହୋଇଥାଏ। ବିଜ୍ଞାନରେ ଯାହା କୁହାଯାଏ ତାତ୍ତ୍ୱିକ ପୃଷ୍ଠଭୂମିରେ ତାହା କୁହାଯାଇ ପାରିବ ନାହିଁ। ଈଶ୍ୱର, ଆତ୍ମା, ପୁରୁଷାର୍ଥ ଇତ୍ୟାଦି ଭାବନାଗୁଡ଼ିକ କାଳ୍ପନିକ ଓ ଅମୂର୍ତ୍ତୀୟ ହୋଇଥିବାରୁ ସେ ନେଇ ନାନା ସିଦ୍ଧାନ୍ତ ରହିବା ସ୍ୱାଭାବିକ। ଆମର ଚିନ୍ତାରାଜ୍ୟରେ ଏସବୁ ନେଇ ବିଭିନ୍ନ ମତ ବି ରହିବା ଦେଖାଯାଏ। କାହା ପାଇଁ ଈଶ୍ୱର ଏକ, କାହା ପାଇଁ ଅନେକ, କାହା ପାଇଁ ସେ ପ୍ରକୃତି ତ କାହା ପାଇଁ ଶକ୍ତି, କାହା ପାଇଁ ସେ ଏକ ବ୍ୟକ୍ତିସତ୍ତା ତ କାହା ପାଇଁ ସେ ଅବ୍ୟକ୍ତିକ ଏହିପରି ନାନା କଳ୍ପନା ଦେଖିବାକୁ ମିଳେ। ଈଶ୍ୱରଙ୍କ ସଂପର୍କରେ ଯେପରି ନାନା କଥା କୁହାଯାଏ ସେହିପରି ଆତ୍ମା, ପୁରୁଷାର୍ଥ, ଜୀବନର ଅନ୍ତିମ ଲକ୍ଷ୍ୟ ନେଇ ନାନା ତାତ୍ତ୍ୱିକ ମତ ରହିଛି। ଏଗୁଡ଼ିକ ଅନୁଭୂତି ଆଧାରିତ ନ ହୋଇ କଳ୍ପନାର ବିଷୟ ହୋଇଥିବାରୁ ଏ ନେଇ ନାନା ସିଦ୍ଧାନ୍ତର ଅବତାରଣା ହୋଇଛି। ତେବେ ଯେତେବେଳେ କୁହାଯାଏ - ଏକଂ ସତ୍ ବିପ୍ରା ବହୁଧା ବଦନ୍ତି - ସେ କ୍ଷେତ୍ରରେ ଏକ ଉଦାରବାଦୀ ଦୃଷ୍ଟିର ସୂଚନା ରହିଛି। ଯେହେତୁ ଏସବୁ ଅମୂର୍ତ୍ତୀୟ ଭାବନା, ସୁତରାଂ ଏ ସବୁର ସ୍ୱରୂପ ନେଇ ବିଜ୍ଞ ଲୋକମାନେ ନାନା କଳ୍ପନା କରିଛନ୍ତି। ତାତ୍ପର୍ଯ୍ୟ ହେଉଛି ସବୁ ନଦୀର ପଥ ଭିନ୍ନ ଭିନ୍ନ ହେଲେ ବି ସଙ୍ଗମ ସ୍ଥଳ ଏକ, ସୁତରାଂ ଏ କ୍ଷେତ୍ରରେ ପରସ୍ପର ପ୍ରତି ଆକ୍ଷେପ, ପ୍ରତିଆକ୍ଷେପ ବା ଉଗ୍ରବାଦ ଗ୍ରହଣଯୋଗ୍ୟ ନୁହେଁ। ଅନେକାନ୍ତବାଦ ହିଁ ଗ୍ରହଣଯୋଗ୍ୟ।

କିନ୍ତୁ ପରିତାପର ବିଷୟ ଯେ ଆମ ସମାଜରେ ଓ ବିଶେଷତଃ ବିଭିନ୍ନ ସାମ୍ପ୍ରଦାୟିକ ଗୋଷ୍ଠୀ ମଧ୍ୟରେ ନିଜ ଗୋଷ୍ଠୀର ମତ ନେଇ ଉଗ୍ର ମାନସିକତା ରହି ଆସିଛି। ମଣିଷ କିପରି ଜୀବନକୁ ଉନ୍ନତ ସୋପାନକୁ ନେଇପାରିବ ଓ ସମାଜର କଲ୍ୟାଣ ସାଧନ କରିପାରିବ ସେ ନେଇ ବିଭିନ୍ନ ପନ୍ଥାକୁ ଶାସ୍ତ୍ରରେ ସ୍ୱୀକୃତି ଦିଆଯାଇଛି। ଜୀବନର ଶ୍ରେୟ ପ୍ରାପ୍ତି ପାଇଁ ଯେ ଅନେକ ପନ୍ଥା ରହିଛି, ଜଣେ ବ୍ୟକ୍ତି ଯେକୌଣସି ଶ୍ରେୟକୁ ଆଧାର କରି ଏକ ନୀତିବାନ ଓ ଆଦର୍ଶ ଜୀବନ ବଞ୍ଚିପାରିବ ଏହାହିଁ ଶାସ୍ତ୍ରର ପ୍ରତିଶ୍ରୁତି। ତେବେ ବାସ୍ତବ ଜୀବନରେ ଏହାର ପ୍ରତିଫଳନ ବିଡ଼ମ୍ବିତ ହୋଇ ରହିଛି। ଶାସ୍ତ୍ରର ଉଦାରବାଦୀ ଆଦର୍ଶ ଓ ସତ୍ୟ ପ୍ରତି ଉନ୍ମୁକ୍ତ ମାନସିକତା ବାସ୍ତବ ଜୀବନରେ ପ୍ରତିଫଳିତ ହୋଇପାରୁ ନାହିଁ, ବରଂ ନିଜ ଗୋଷ୍ଠୀର ଆଦର୍ଶକୁ ଚିରନ୍ତନ ବୋଲି ଭାବିବାର ପରିଣାମରୁ ସାମ୍ପ୍ରଦାୟିକ ଉଗ୍ରବାଦ ରହିଆସିଛି। ଯେ ମୋ ଧର୍ମର ବିଶ୍ୱାସ ଗ୍ରହଣ କରନ୍ତି ନାହିଁ ବା ମୋ ଧର୍ମର ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି ନାହିଁ ସେ ମୋର ବିରୋଧୀ। ଏହି ଦୃଷ୍ଟିଭଙ୍ଗୀ ଯେତେ ନୀତିବିରୋଧୀ ବା ମାନବିକତାବିରୋଧୀ ହେଲେ ବି

ଏହାହିଁ ସାମାଜିକ ଜୀବନରେ ଅନେକାଂଶରେ ରହିଛି। ଶାସ୍ତ୍ରର ଉଦାର, ଅନେକାନ୍ତବାଦୀ ଅନୁସନ୍ଧିତ୍ସୁ ଦୃଷ୍ଟି ଜୀବନର ବାସ୍ତବ ଆଦର୍ଶ ହେଉ ନାହିଁ।

'ବସୁଧୈବ କୁଟୁମ୍ବକମ୍' - ସମସ୍ତ ବିଶ୍ୱ ଏକ କୁଟୁମ୍ବ ବା ପରିବାର ଏକ ମହାନ ବିଚାର। ଯେଉଁ ଦରଦୀ ପ୍ରାଣରୁ ଏହି ମହତ୍ତର ନିର୍ଯ୍ୟାସ ବାହାରିଥିଲା ସେ ଜଣେ ମାନବହିତୈଷୀ ଦାର୍ଶନିକ ହୋଇଥିବେ। ଦାର୍ଶନିକମାନେ ସବୁ ଯୁଗରେ ସଭ୍ୟ ଜୀବନଧାରାର ପଥ ପ୍ରଦର୍ଶକ ହୋଇଛନ୍ତି। ଅନ୍ତରରେ ମାନବିକତାର ଉପଲବ୍ଧି ଭିତରୁ ଏହି ବିଚାର ମଣିଷର ମନକୁ ଆସିଥିବ। ସବୁ ସଂସ୍କୃତିରେ ଏହିପରି ମହତ୍ତର ବିଚାରର ଅନେକ ଉପାଦାନ ରହିଛି। ତେବେ ଶାସ୍ତ୍ରର ଏହି ମହାନ୍ ବାଣୀ ସମଗ୍ର ବିଶ୍ୱ ପାଇଁ ଏକ ମହତ୍ତର ବାର୍ତ୍ତା ଦେଇଥାଏ। କିନ୍ତୁ ପରିତାପର ବିଷୟ ଯେ ଆମ ସଂସ୍କୃତିର ଏହି ମହତ୍ତର ବାଣୀଟି କେବଳ ଆମର ପୋଥି ବାଇଗଣ ହୋଇ ରହିଛି, ଏହା ଆମ ସାମାଜିକ ଜୀବନଧାରାରେ ପ୍ରତିଫଳିତ ହୋଇ ନାହିଁ। ବରଂ ଜନ୍ମଭିତ୍ତିକ ଜାତି ବ୍ୟବସ୍ଥା ଓ ଉଚ୍ଚ ନୀଚ ଭେଦଭାବ ଭାରତୀୟ ଜନଜୀବନର ଅସ୍ଥି ମଜ୍ଜାଗତ ହୋଇ ରହିଛି। ଶହ ଶହ ବର୍ଷର ଭେଦଭାବ ଜନିତ ଦୃଷ୍ଟିଭଙ୍ଗୀ ଜନଜୀବନର ମନକୁ ଏପରି ବ୍ୟାଧିଗ୍ରସ୍ତ କରିଛି ଯେ ଏହା ବିରୁଦ୍ଧରେ ଯେତେ ଆନ୍ଦୋଳନ ହୋଇଥିଲେ ବି ଏହାର ମୂଳ ଭୁଷୁଡୁ ନାହିଁ। ସ୍ୱାଧୀନ ଭାରତରେ ରାଜନୈତିକ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରଚଳନ ହୋଇ ଏହା କାଳକ୍ରମେ ସୁଦୃଢ଼ ଭିତ୍ତି ନେଉଥିଲେ ମଧ୍ୟ, ଜାତିଆଣ ମାନସିକତା ଓ ଅସ୍ପୃଶ୍ୟତାର ବିଲୋପ ହେଉ ନାହିଁ। ଖୁବ୍ ନିକଟରେ କେରଡ଼ାଗଡ଼ ଗ୍ରାମରେ ଦଳିତମାନଙ୍କର ମନ୍ଦିର ପ୍ରବେଶ ନେଇ ହୋଇଥିବା ଆନ୍ଦୋଳନ ଓ ବିରୋଧର କାହାଣୀ ଜାତୀୟ ସ୍ତରରେ ଆଲୋଡ଼ନ ସୃଷ୍ଟି କରିଥିଲା। ସେହି ଗ୍ରାମରେ ଯେଉଁ ଜାତିଆଣ ପ୍ରତିକ୍ରିୟା ପ୍ରକାଶ ପାଇଥିଲା ତାହା ମୋଟାମୋଟି ଭାବରେ ଗ୍ରାମୀଣ ପରିବେଶରେ ରହିଆସିଛି। ରାଜନୈତିକ ଗଣତନ୍ତ୍ର ଆମ ଦେଶରେ ସାମାଜିକ ଗଣତନ୍ତ୍ରର ଭିତ୍ତି ଉପରେ ପ୍ରତିଷ୍ଠା ହୋଇପାରୁ ନାହିଁ। ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ସ୍ୱାମୀ ବିବେକାନନ୍ଦ ଓ ମହାତ୍ମା ଗାନ୍ଧୀଙ୍କ ପରି ଆଧ୍ୟାତ୍ମିକ ପୁରୁଷଗଣ ବା ଜ୍ୟୋତିରାଓ ଫୁଲେ, ଆମ୍ବେଦକର ଓ ପେରିୟାରଙ୍କ ପରି ସମାଜ ସଂସ୍କାରକମାନେ ଅସ୍ପୃଶ୍ୟତାର ଦୈତ୍ୟକୁ ସମାଜରୁ ସଂପୂର୍ଣ୍ଣ ହଟାଇପାରି ନାହାନ୍ତି।

'ବସୁଧୈବ କୁଟୁମ୍ବକମ୍' ବା 'ସର୍ବେ ଭବନ୍ତୁ ସୁଖୀନ' ଆମ ପ୍ରାର୍ଥନାର ସଙ୍ଗୀତ ହୋଇ ପାରିବ, କିନ୍ତୁ ସମାଜର ବାସ୍ତବ ଜୀବନଧାରାରେ ପ୍ରତିଫଳିତ ହେବ ନାହିଁ। ଆମ ଶାସ୍ତ୍ରର ମହନୀୟତା ଓ ଆମ ସଂସ୍କୃତିର ବିଶ୍ୱଦୃଷ୍ଟି ବିଷୟରେ ଆମ ଦେଶରେ କେତେ ଭାଷଣ ଚାଲେ, କେତେ ପ୍ରବଚନ ସଭାରେ କୁହାଯାଏ, କିନ୍ତୁ ବାସ୍ତବ ଜୀବନରେ ମଣିଷ ମଣିଷ

ଭିତରେ ନାନା ସଂକୀର୍ଣ୍ଣତାର ପ୍ରାଚୀର ଥାଏ । ପୋଥିର ଆଦର୍ଶ ଓ ଜୀବନର ବାସ୍ତବତା ଭିତରେ ସର୍ବଦା ବିରାଟ ପାର୍ଥକ୍ୟ ରହିଥାଏ ।

ଆମ ଦେଶରେ ଆଧ୍ୟାତ୍ମିକତାର ନାନା ଜୟଗାନ କରାଯାଏ । ଏହି ଆଧ୍ୟାତ୍ମିକତାର ଉତ୍ସ କ'ଣ ବୋଲି ଜିଜ୍ଞାସାରୁ କୁହାଯାଏ ଯେ ବେଦ, ଉପନିଷଦ, ବ୍ରହ୍ମସୂତ୍ର, ଭଗବଦ୍‌ଗୀତା ଇତ୍ୟାଦି ବିଶିଷ୍ଟ କୃତିଗୁଡ଼ିକରେ ଆଧ୍ୟାତ୍ମିକତାର ମହାନ୍ ଆଦର୍ଶ ପ୍ରତିଫଳିତ । ଅବଶ୍ୟ ଏହି ସବୁ ଶାସ୍ତ୍ର ଭିତରେ ମଣିଷର ଜୀବନକୁ ଉଚ୍ଚ ସ୍ତରକୁ ନେଇଯିବାର ଅନେକ ପ୍ରେରଣା ରହିଛି । ଏହି ସବୁର ଆଧାରରେ ହିନ୍ଦୁଧର୍ମର ଭିତ୍ତି ଗଢ଼ି ଉଠିଛି ଓ ଏହା ପୃଥିବୀର ପ୍ରାଚୀନ ଧର୍ମ ବୋଲି ଗ୍ରହଣ କରାଯାଏ । ଅବଶ୍ୟ ଆମ ଦେଶର ଏହି ମହାନ କୃତିଗୁଡ଼ିକ ଯେଉଁ ସମୟରେ ଲେଖା ଯାଇଥିଲା ସେ ସମୟରେ ମଣିଷର ଆବଶ୍ୟକତା ଖୁବ୍ ସୀମିତ ଥିଲା ଓ ସାମାଜିକ ଜୀବନ ଏତେ ଜଟିଳ ନ ଥିଲା । ସୀମିତ ଆବଶ୍ୟକତା ଓ ସେହି ପରିବେଶରେ ଜୀବନ ନିର୍ବାହ କରୁଥିବା ସେ ଯୁଗର ଚିନ୍ତାଶୀଳ ଲୋକମାନେ ଏକ ପରମାର୍ଥିକ ସତ୍ତାର ଓ ଭିନ୍ନ ଜଗତର ପରିକଳ୍ପନା ଭିତରେ ମୋକ୍ଷ ଓ ଈଶ୍ୱରପ୍ରାପ୍ତିକୁ ଜୀବନର ପରମ ଲକ୍ଷ୍ୟ ଭାବିବା ସ୍ୱାଭାବିକ ଥିଲା । ଏହା ହିଁ ସେତେବେଳେ ଧର୍ମର ଭିତ୍ତି ଥିଲା । ସନାତନ ଧର୍ମର ଭିତ୍ତି ଥିଲା ନୈତିକତା ଓ ପାରଲୌକିକ ପ୍ରାପ୍ତି । କିନ୍ତୁ ସାମାଜିକ ବିବର୍ତ୍ତନଧାରାରେ ସନାତନ ଧର୍ମ, ବୈଦିକ ଧର୍ମ, ବ୍ରାହ୍ମଣ୍ୟଧର୍ମ ପରେ ହିନ୍ଦୁଧର୍ମରେ ରୂପାନ୍ତରିତ ହେଲା । ସାଧାରଣ ଜନଜୀବନରେ ଧର୍ମର ଆଦର୍ଶ ଥିଲା ଲୋକମାନଙ୍କ ହୃଦୟରେ ପବିତ୍ର ଭାବ ସୃଷ୍ଟି କରିବା । ଏବେ ବି ଦେଶର ସାଧାରଣ ମଣିଷ ଦେଉଳ, ମନ୍ଦିରରେ ଯାଇ ପ୍ରାର୍ଥନା କରିବା ଭିତରେ ମାନସିକ ଶାନ୍ତି ବା ପବିତ୍ର ଭାବ ଆଣିବାକୁ ଇଚ୍ଛା କରିଥାଏ । କର୍ମକ୍ଳାନ୍ତ ଜୀବନରୁ ସମୟ ନେଇ ମନ୍ଦିରକୁ ଗଲେ ସେ କିଛି ଧର୍ମର ପ୍ରେରଣା ପାଇବ ଯାହା ତାକୁ ପବିତ୍ର ବା ନୀତିନିଷ୍ଠ ଭାବେ ବଞ୍ଚିବାକୁ ଅନୁଭବ ଦେବ ବୋଲି ସାଧାରଣ ମଣିଷ ବିଶ୍ୱାସ କରେ ।

କିନ୍ତୁ ଏବେ ଧର୍ମରୁ ସେହି ମହତ୍ତର ପ୍ରେରଣା ଆସୁ ନାହିଁ । ବରଂ ଧର୍ମ ରାଜନୈତିକ ଲୋକଙ୍କ ହାତରେ ଅସ୍ତ୍ର ପାଲଟିଛି । ଧର୍ମ ଲୋକଙ୍କୁ ପବିତ୍ର ହୃଦୟର ଅଧିକାରୀ ହେବାର ଅନୁଭବ ଦେଉ ନାହିଁ, ବରଂ ଲୋକଙ୍କୁ ଅକ୍ଳେଶରେ ମତୁଆଲ କରିପାରୁଛି । ଅନ୍ତରରେ କୌଣସି ମାନବିକତାର ଅନୁଭବ ରଖିନଥିବା ବ୍ୟକ୍ତିମାନେ ନିଜକୁ ଧର୍ମନେତା ଭାବେ ଘୋଷିତ କରି ଧର୍ମର ମଙ୍ଗ ଧରିଛନ୍ତି । ଅତ୍ୟନ୍ତ ଅସହିଷ୍ଣୁ ଓ ଅହଙ୍କାରୀ ଲୋକଙ୍କ ହାତରେ ଧର୍ମ ଏକ ରାଜନୈତିକ ଅସ୍ତ୍ର ପାଲଟି ଯାଇଛି । ଆମ ଶାସ୍ତ୍ରରେ ଧର୍ମର ଭିତ୍ତି ହେଉଛି ଆଧ୍ୟାତ୍ମିକତା, ଯାହା ମଣିଷ ଭିତରେ

ମହନୀୟତାର ଅନୁଭବ ଦେଇଥାଏ ତଥା ଶାନ୍ତି, ସଦ୍‌ଭାବନା ଓ ମାନବିକତାର ପ୍ରେରଣା ସୃଷ୍ଟି କରିଥାଏ। କିନ୍ତୁ ଏବେ ସ୍ୱଘୋଷିତ ଧର୍ମନେତାମାନେ ଧର୍ମକୁ ଆଧାରକରି ମଣିଷ ମଣିଷ ଭିତରେ ବାଡ଼ ପକାଇଛନ୍ତି। ଧର୍ମରୁ ଆଧ୍ୟାତ୍ମିକତାକୁ ଲୋପ କରି ସେମାନେ ଧର୍ମର ଯେଉଁ ଗର୍ଜନ ଛାଡ଼ୁଛନ୍ତି ତାହା କୌଣସି ମହତ୍ତ୍ୱର ଅନୁଭବ ସୃଷ୍ଟି କରିବା ପରିବର୍ତ୍ତେ ଲୋକଙ୍କ ମୁଣ୍ଡରେ ପିତ ଚଢାଉଛି। ପରିଣାମ ହେଉଛି ଦଙ୍ଗା, ହିଂସା, ଗୃହଦାହ ଓ ନାନା ବିଭତ୍ସ କାର୍ଯ୍ୟ। ଯେଉଁଠି କ୍ରୋଧ, ହିଂସା, ଅମାନବିକତା ଓ ବର୍ବରତା ରହେ ସେଠି କେଉଁ ଧର୍ମ ରହିବ। ଆମ ଶାସ୍ତ୍ରର ବାଣୀ ଓ ଆମ ଜନଜୀବନର ଘଟଣା ପ୍ରବାହ ଭିତରେ ରହିଛି ଅପରିସୀମ ବ୍ୟବଧାନ।

ବହୁ ଜନ ସୁଖାୟ ଓ ବହୁ ଜନ ହିତାୟ-ସେହିପରି ଆମ ଶାସ୍ତ୍ରର ଏକ ଉନ୍ନତ ପ୍ରେରଣା। ସମାଜର ବୃହତ୍ତର କଲ୍ୟାଣ ହିଁ ମୋର ଶ୍ରେୟ ଓ ଏହା ହିଁ ସର୍ବୋଦୟର ବିଚାର। ଏହି ଦର୍ଶନର ପ୍ରେରଣା ଥିଲା ସମାଜଠାରୁ କମ୍ ନେବା ଓ ସମାଜକୁ ଯେତେ ଅଧିକ ଅବଦାନ ଦେଇହେବ ନିଃସଙ୍କୋଚରେ ତାହା ପ୍ରଦାନ କରିବା। ଜଣେ ମହାନୁଭବୀ ଅନ୍ଧ କବିଙ୍କର ଅମର ଲେଖନୀରୁ ବି ଦିନେ ଏହି ବାଣୀ ଝଙ୍କୃତ ହୋଇଥିଲା-ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ, ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ। ଅନ୍ୟର ଦୁଃଖକୁ ଅନୁଭବ କରିବାର ହୃଦୟ ମଣିଷକୁ ମହାନ କରେ, ଏହା ହିଁ ଶାସ୍ତ୍ରବଚନ ହୋଇ ରହିଥିଲା। ଜଣେ ଗୌତମ ଦିନେ ମଣିଷର ଦୁଃଖକୁ ଦୂର କରିବାକୁ ଯାଇ ଯେଉଁ ମହାନ୍ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ତାହାର ଆଦର୍ଶ ଥିଲା ମଣିଷକୁ ଅଧିକ ମାନବିକ ଓ ସମ୍ବେଦନଶୀଳ କରିବା। ଏ ସମସ୍ତ ବିଚାରର ତାତ୍ପର୍ଯ୍ୟ ଥିଲା ଏକ ମାନବବାଦୀ, ନୀତିନିଷ୍ଠ ଓ ଉନ୍ନତ ଆଚରଣଯୁକ୍ତ ଭାବନାରେ ବ୍ୟକ୍ତି ଚରିତ୍ରକୁ ନିର୍ମାଣ କରିବା ତଥା ଏକ ଉନ୍ନତରୁ ଉନ୍ନତତର ଓ ମହତ୍ତର ସାମାଜିକ ପରିବେଶ ସୃଷ୍ଟି କରିବା। ତ୍ୟାଗର ମନୋଭାବ, ଆତ୍ମଶୃଙ୍ଖଳା, ପ୍ରଜ୍ଞା, ଉନ୍ନତ ଦୃଷ୍ଟି, ନୈତିକ ଜୀବନଧାରା, କରୁଣାର ଅନୁଭବ, ସମାଜପ୍ରତି ଦାୟିତ୍ୱବୋଧ ଇତ୍ୟାଦି ଭାବନା ଯେଉଁ ସମାଜରେ ଯେତେ ଅଧିକ ପ୍ରତିଫଳିତ ସେ ସମାଜ ସେତେ ଉନ୍ନତ ହୋଇଥାଏ। ବ୍ୟକ୍ତି ପାଇଁ ହେଉ ବା ଗୋଷ୍ଠୀ ପାଇଁ ହେଉ ଏହି ଚିନ୍ତା ଶାସ୍ତ୍ରର ନିଷ୍କର୍ଷ ଯାହା ବହୁ ମନୀଷୀଙ୍କ ବିଚାରରେ ବ୍ୟକ୍ତ ହୋଇଥିଲା ଯାହାର ପରିପୂର୍ଣ୍ଣତା ଘଟିଥିଲା ଗାନ୍ଧୀଙ୍କ ପାଖରେ। ବିଚାରରେ, କଥାରେ ଓ କାର୍ଯ୍ୟରେ ଅହିଂସା ପାଳନ କରିବାରେ, ପନ୍ଥାର ପବିତ୍ରତା ଉପରେ ଗୁରୁତ୍ୱ ଦେବାରେ ଓ ମଣିଷର ସମ୍ମାନକୁ ସର୍ବାଧିକ ମହତ୍ତ୍ୱ ଦେବାରେ ଗାନ୍ଧୀ ଆଜି ବିଶ୍ୱ ବିବେକର ପ୍ରତୀକ ହୋଇ ଯାଇଛନ୍ତି।

ତେବେ ଆଜି ବୁଦ୍ଧ ବା ଗାନ୍ଧୀ କେଉଁଠି ? ସେମାନେ ଜାତୀୟ ଦୃଶ୍ୟପଟରୁ ଯେ ଆସ୍ତେ ଆସ୍ତେ ଅପସରି ଯାଉଛନ୍ତି ଏହା ମନେହୁଏ । ସନ୍ତ୍ରାସବାଦ ଓ ସାମ୍ପ୍ରଦାୟିକତାବାଦ ଯେଉଁ ଭାବରେ ମୁଣ୍ଡ ଟେକିଛି ଓ ସାଧାରଣ ଜୀବନ ପ୍ରବାହରେ ଅନୈତିକତାର ରାଜୁତି ଦେଖିବାକୁ ମିଳୁଛି ତାହା ଏହି ଆଶଙ୍କାକୁ ଦୃଢୀଭୂତ କରିବାରେ ଲାଗିଛି । ଯେ କୌଣସି ପନ୍ଥାରେ କ୍ଷମତା ହାସଲ କରିବା ଯଦି ଗଣତାନ୍ତ୍ରିକ ବ୍ୟବସ୍ଥାର ସାଧାରଣ ଘଟଣା ହୁଏ, ଲାଞ୍ଚ ମିଛ ଯଦି ପ୍ରଶାସନିକ ବ୍ୟବସ୍ଥାର ଅଙ୍ଗ ହୋଇପଡ଼େ, ଧର୍ମ ଯଦି ବିଦ୍ୱେଷ ଓ ଘୃଣାରେ ରୂପାନ୍ତରିତ ହୁଏ, କିଛି ହାତସଫେଇ ଚମତ୍କାରିତା ଦେଖାଇ କେହି ଅବତାର ବା ଭଗବାନ ପାଲଟିଯା'ନ୍ତି ଓ ଅନୈତିକ ଓ ଅସାଧୁ ଲୋକମାନେ ଜାତୀୟ ଦୃଶ୍ୟପଟରେ ପ୍ରାଧାନ୍ୟ ପାଆନ୍ତି ଅଥଚ ନ୍ୟାୟବାନ ଓ ଆଦର୍ଶବାଦୀ ବ୍ୟକ୍ତିଗଣ ଜାତୀୟ ଦୃଶ୍ୟପଟରୁ ଅପସରି ଯାଆନ୍ତି, ତେବେ ସମାଜର ଭବିଷ୍ୟତ କ'ଣ ହେବ ? ଆଜିର ସ୍ଥିତି ଆମକୁ ଯେ ଏକ କ୍ଷୟଶୀଳ ସମାଜର ଚିତ୍ର ଦେଉଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସୁତରାଂ ସମାଜରେ ଗୁଣାତ୍ମକ ଜୀବନର ବିକାଶ ପାଇଁ ଶାସ୍ତ୍ରରେ ଥିବା ମହତର ଜୀବନାଦର୍ଶ ଓ ମନୀଷୀମାନଙ୍କର ପ୍ରଦର୍ଶିତ ନୀତିବୋଧ କେବଳ ପୋଥି ବାଇଗଣ ହୋଇ ରହିଛି ଅଥଚ ଆମର ବାସ୍ତବ ଜୀବନଧାରାରେ ତାହାର ଆଶାନୁରୂପ ପ୍ରତିଫଳନ ହୋଇପାରୁ ନାହିଁ ।

# ସାଧୁତା ବନାମ ଧାର୍ମିକତା

## (୧)

କିଛି ଦିନ ତଳେ ଅନୁଗୁଳ ପାଖର ନାଲକୋସ୍ଥିତ ଏକ ସାଂସ୍କୃତିକ ସଙ୍ଗଠନର ଏକ କାର୍ଯ୍ୟକ୍ରମରେ ଅତିଥି ହୋଇ ଯାଇଥିଲି । ସେଠାରେ ଜଣେ ଅବସର ପ୍ରାପ୍ତ ଇଂଜିନିୟର ମୋ ସହ ଆଲୋଚନା ପ୍ରସଙ୍ଗରେ କହିଲେ ଯେ ସେ ଚାକିରୀ ଆରମ୍ଭରେ ବେଶ୍ ପୂଜାପାଠ କରୁଥିଲେ, ସ୍ନାନପରେ ଗୀତା ନିୟମିତ ପଢୁଥିଲେ, ପୂଜା ନ କଲେ ଅନ୍ନ ଜଳ ସର୍ଶ କରୁ ନ ଥିଲେ । ତାଙ୍କର ଅନେକ ଉପରସ୍ଥ କର୍ମଚାରୀ ମଧ୍ୟ ଏହିପରି କରୁଥିଲେ । ସେମାନଙ୍କ ପ୍ରଭାବରୁ ସେ ପୂଜା, ପ୍ରାର୍ଥନାକୁ ଜୀବନଧାରାରେ ମିଶାଇ ଦେଇଥିଲେ । ସେତେବେଳେ ସେ ପ୍ରାର୍ଥନା ପୂର୍ବରୁ ମଠା ପୋଷାକ ପିନ୍ଧୁଥିଲେ ଓ ମାଳା ମଧ୍ୟ ଗଡ଼ାଉଥିଲେ । କିଛି ବର୍ଷ ପରେ ସେ ଆମ୍ବେଦକରଙ୍କୁ ପଢିଲେ । ହିନ୍ଦୁ ବିଚାରଧାରା ବିଷୟରେ ସଚେତନ ହେଲେ, ମନୁବାଦୀ ବ୍ୟବସ୍ଥାର ଅନ୍ତର୍ନିହିତ ଧାରାକୁ ବୁଝିଲେ, ସାମାଜିକ ବାସ୍ତବତାକୁ ଗମ୍ଭୀରତାର ସହ ଅନୁଭବ କଲେ ଏବଂ ହେତୁବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିଷୟରେ ଜାଣିବାକୁ ପାଇଲେ । ଏହାପରେ ସେ ପୂଜାପୂଜି ଛାଡ଼ିଦେଲେ, ପ୍ରାର୍ଥନା କଲେ ନାହିଁ ବରଂ ସାମାଜିକ କାର୍ଯ୍ୟରେ ମନ ଦେଲେ । ସମାଜ ସେବା ପାଇଁ, ସମାଜର ନିଷ୍ପେଷିତ ମଣିଷର ଅଧିକାର ନେଇ କିଛି କରିବାକୁ ଆଗ୍ରହୀ ହେଲେ । ତେବେ ସେ ନିଜେ ବ୍ୟଙ୍ଗ କରି କହୁଥିଲେ ଯେ ତାଙ୍କର ପତ୍ନୀ ଯେଉଁ ପୂଜା-ଆରାଧନା ପାଇଁ ସମୟ ଦେଉଥିଲେ ଏବେ ମଧ୍ୟ ସେପରି କରୁଛନ୍ତି । ପତ୍ନୀ ବେଳକେ ତାଙ୍କୁ ସମାଲୋଚନା କରିଥାନ୍ତି ଯେ ସେ ଲକ୍ଷ୍ମୀଛଡ଼ା ହେଉଛନ୍ତି, କିଛି ଧର୍ମ କାର୍ଯ୍ୟ କରୁ ନାହାନ୍ତି (ପତ୍ନୀଙ୍କ ଦୃଷ୍ଟିରେ ଧର୍ମ କାର୍ଯ୍ୟ ହେଲା ଦେଉଳ ମନ୍ଦିର ଯିବା, ପୂଜା ପୂଜି କରିବା), ନାସ୍ତିକ ପାଲଟୁଛନ୍ତି ! ଭଦ୍ରଲୋକ ସ୍ୱୀକାର କରୁଥିଲେ ଯେ ସେ ଲକ୍ଷ୍ମୀଛଡ଼ା ହୋଇଛନ୍ତି । କାରଣ ସେ ଯନ୍ତ୍ରୀ ଭାବରେ ଆଗେ ବହୁତ ଲାଞ୍ଚ ନେଉଥିଲେ, ଅଫିସରେ ଭାଗ ବା ପରସେଣ୍ଟ ପାଉଥିଲେ । ଦରମା ବାହାରେ ଦୁଇ ପଇସା ବେଶ୍ ହେଉଥିଲା । ତୀର୍ଥ କରିଯିବାକୁ ସୁଯୋଗ ମିଳୁଥିଲା । ଦେଉଳ, ମନ୍ଦିର ବା ହୋମ ଯଜ୍ଞ ପାଇଁ କେହି ସାହାଯ୍ୟ ମାଗିଲେ ସେ ଅକୁଣ୍ଠରେ କିଛି ଦାନ ଦେଉଥିଲେ । ଲାଞ୍ଚ ଅର୍ଥରୁ ସେ ଏସବୁ କରିପାରୁଥିଲେ । ପୂଜା କରିବାବେଳେ ସେ ଈଶ୍ୱରଙ୍କର ଆଶୀର୍ବାଦ ପାଇଁ ପ୍ରାର୍ଥନା

କରୁଥିଲେ। ତାଙ୍କର ବିଶ୍ୱାସ ଥିଲା ଯେ ଈଶ୍ୱର ତାଙ୍କ ପ୍ରତି ସଦୟ, ତାଙ୍କୁ କିଛି ଟଙ୍କା ଅନାୟାସରେ ମିଳି ଯାଉଛି। ଦାନ, ଧର୍ମ କରୁଥିବାରୁ ତାଙ୍କର ସମ୍ମାନ ବଢୁଛି, ସାହି ବସ୍ତିରେ ପିଲାମାନଙ୍କୁ ଚାନ୍ଦା ଦେଉଥିବାରୁ ତାଙ୍କ ପ୍ରତି ସେମାନେ ସମ୍ମାନ ରଖୁଛନ୍ତି। କିନ୍ତୁ ଯେତେବେଳେ ସେ ଲାଞ୍ଚ ନେଲେ ନାହିଁ, ଦୁର୍ନୀତିରୁ ନିଜକୁ ଦୂରେଇ ରଖିଲେ ତାଙ୍କୁ ଅଭାବ ଧରିଲା, ସେ ଲକ୍ଷ୍ମୀଙ୍କଠାରୁ ଦୂରେଇ ଗଲେ। ପତ୍ନୀଙ୍କ କଥା ଯଥାର୍ଥ ବୋଲି ଭଦ୍ରଲୋକ ବ୍ୟଙ୍ଗ କରୁଥିଲେ।

ଭଦ୍ରଲୋକ ନିଜ ବିଷୟରେ ଯାହା କହିଲେ, ଏହାହିଁ ମୋଟାମୋଟି ସାମାଜିକ ସ୍ଥିତି। ଅନେକ ସମୟରେ ସମ୍ବାଦପତ୍ରରେ ବାହାରେ ଯେ ଅମୁକ ଭଦ୍ରଲୋକଙ୍କ ଘର ଭିଜିଲାନ୍ସ ଚଢାଉ କରି ତାଙ୍କର ବହୁ ସମ୍ପତ୍ତିର ଠାବ କରିଛନ୍ତି। ଲୋକ ସୁଯୋଗ ପାଇଲେ ଲାଞ୍ଚ ନେଉଛନ୍ତି। ଏପରିକି ଲାଞ୍ଚନେବାକୁ ସୁପରିକଳ୍ପିତ ଭାବେ ନିୟମକୁ ତର୍ଜମା କରୁଛନ୍ତି, ଦୁର୍ନୀତିମୂଳକ ଉପାୟରେ ବହୁ ଅର୍ଥ ଉପାର୍ଜନ କରୁଛନ୍ତି। ଏହା ତାଙ୍କ ପାଇଁ ଈଶ୍ୱରଙ୍କର ଆଶୀର୍ବାଦ ବୋଲି ଧାରଣା ପୋଷଣ କରୁଛନ୍ତି। ସେମାନେ ନାନା ପୂଜା ଆରାଧନାରେ ଲିପ୍ତ ରହୁଛନ୍ତି, ପତ୍ନୀମାନେ ନାନା ବ୍ରତ, ବାର କରୁଛନ୍ତି। ହେଲେ ନିଜର ସାମାଜିକ କର୍ତ୍ତବ୍ୟ କ୍ଷେତ୍ରରେ ଦୁର୍ନୀତିମୂଳକ କାର୍ଯ୍ୟ ପାଇଁ କୌଣସି ବିବେକର ଦଂଶନ ପାଉନାହାନ୍ତି। ଲାଞ୍ଚ ନେବା ଓ ନିଜ ପଦପଦବୀର ସୁଯୋଗ ନେଇ ସରକାରୀ ଅର୍ଥକୁ ବାଟମାରଣା କରିବାର ମନୋଭାବ ସମାଜରେ ବ୍ୟାପକ ହେବାରେ ଲାଗିଛି। ସମାଜରେ ସେହିପରି ଦେଉଳ, ମନ୍ଦିର, ଯଜ୍ଞ ଓ ସଂକୀର୍ଣ୍ଣତା ବଢିବାରେ ଲାଗିଛି। ଏହି କାର୍ଯ୍ୟକୁ ପବିତ୍ର ମନେ କରାଯାଉଛି। ପନ୍ଥାର ଔଚିତ୍ୟ ନେଇ ପ୍ରଶ୍ନ ମନକୁ ସ୍ପର୍ଶ କରୁନାହିଁ। ଯେଉଁ ସମାଜରେ ପନ୍ଥାର ପବିତ୍ରତା ନେଇ ଲୋକମାନେ ଓ ବିଶେଷକରି ରାଜନୀତି ଓ ପ୍ରଶାସନିକ ଦାୟିତ୍ୱରେ ଥିବା ବ୍ୟକ୍ତିମାନେ ସ୍ପର୍ଶକାତରଶୂନ୍ୟ ହୁଅନ୍ତି ତାହା ଯେ କ୍ଷୟଶୀଳତାର ଚିତ୍ର ଦିଏ ଏହା ନିଃସନ୍ଦେହ ମନେହୁଏ। ନାଗରିକ ଚେତନାର ସ୍ତର ନିମ୍ନରେ ଥିଲେ ପରିଣାମ ସ୍ୱରୂପ ଲୋକମାନେ ନିଜର ସ୍ୱାର୍ଥକୁ ଆଗରେ ରଖନ୍ତି। ନିଜର ସ୍ୱାର୍ଥ ପାଇଁ ଯେକୌଣସି ପନ୍ଥାର ଆଶ୍ରୟ ନିଅନ୍ତି। ଏଥିପାଇଁ ସେମାନଙ୍କର ପୂଜାକର୍ମ ଜନିତ ଧର୍ମଚେତନା ପ୍ରେରଣା ବା ନିର୍ଭୟ ଦିଏ। ତେବେ ଯେଉଁ ବ୍ୟକ୍ତିଗଣ ନିଜର ନାଗରିକ କର୍ତ୍ତବ୍ୟ ବିଷୟରେ ସଚେତନ ଥା'ନ୍ତି, ସେମାନେ ବିଚାରଶୀଳ ହୁଅନ୍ତି। ବିବେକବୋଧଦ୍ୱାରା ପରିଚାଳିତ ବ୍ୟକ୍ତିଗଣ ଦୁର୍ନୀତି କରନ୍ତି ନାହିଁ। ଅନ୍ୟାୟ କାର୍ଯ୍ୟରେ ସଂପୃକ୍ତ ହୋଇଗଲେ ମାନସିକ ସ୍ତରରେ ଯନ୍ତ୍ରଣା ପା'ନ୍ତି। ବିବେକର ଦଂଶନ ଯୋଗୁଁ ମାନସିକ ଆଘାତ ପା'ନ୍ତି ଏବଂ ନିଜର ପାରିବା ପଣିଆର ଅହମିକା କରନ୍ତି ନାହିଁ।

ଏହା ସହିତ ସମାଜରେ ସାଧୁତା, କର୍ତ୍ତବ୍ୟ ପରାୟଣତା କେତେ ଦୂର ସାମାଜିକ ସ୍ୱୀକୃତି ଲାଭ କରୁଛି ? ସାଧୁତାକୁ ଜୀବନର ଶ୍ରେୟ ଭାବେ ଗ୍ରହଣ କରୁଥିବା ବ୍ୟକ୍ତିବିଶେଷ ଯଦି ବିଭିନ୍ନ ସ୍ତରରେ ନାନା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି, ଅଥଚ ଅସାଧୁ ଓ ଅନ୍ୟାୟ ଉପାୟରେ ଉପାର୍ଜନ କରୁଥିବା ଲୋକମାନେ ସାମାଜିକ ସମ୍ମାନର ଅଧିକାରୀ ହୁଅନ୍ତି ତେବେ ତାହାକୁ କି ପ୍ରକାର ବ୍ୟବସ୍ଥା କହିହେବ ? ସଭ୍ୟ ଜୀବନଧାରାରେ ସାଧୁତାକୁ ନା ଧାର୍ମିକ ଔପଚାରିକତାକୁ ଉଚ୍ଚ ସ୍ଥାନ ଦିଆଯିବ ?

ଜଣେ ହେତୁବାଦୀର ଅନୁଭବରେ ଧାର୍ମିକ ବିଶ୍ୱାସ, ଉପଚାର ଇତ୍ୟାଦି ବ୍ୟକ୍ତିଗତ ସ୍ତରରେ ଆବଦ୍ଧ ରହିବା ଆବଶ୍ୟକ। ପରନ୍ତୁ ସାଧୁତା ଓ କର୍ତ୍ତବ୍ୟନିଷ୍ଠା ସଭ୍ୟ ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ ହେବା ଦରକାର। କାରଣ ସାମାଜିକ ଜୀବନଧାରାରେ ଏହି ମୂଲ୍ୟଚୟର ପ୍ରତିଫଳନ ଯେତେ ଅଧିକ ହୁଏ ସମାଜ ସେତିକି ସଭ୍ୟ ଓ ସଂସ୍କୃତି-ସଂପନ୍ନ ହୋଇଥାଏ। ହେତୁବାଦୀ ଜୀବନଦର୍ଶନରେ ନୈତିକ ମୂଲ୍ୟଚୟ ପ୍ରତି ପ୍ରତିବଦ୍ଧତା ଉନ୍ନତ ଜୀବନଧାରାର ସ୍ୱାକ୍ଷର ବହନ କରେ।

(୨)

ମାନବିକ ଅଧିକାରର ବାର୍ତ୍ତା ପ୍ରଚାର କରୁଥିବା "ବ୍ରେଭ ମାଇଣ୍ଡ" (Brave Minds) ପତ୍ରିକା ସହ ସଂପୃକ୍ତ ଦୁଇ ଜଣ ଜର୍ମାନ ନାଗରିକ, ଫ୍ରିଜ ହେରିକ ହୋଭେଲସ ଓ ସିମୋନ ମସ୍କ, ଓଡ଼ିଶାରେ କେତେକ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ। ସେମାନେ କଟକର ଦି ୟୁନିଭର୍ସଠାରେ ଭାଷଣ ଦେଇ ଭୁବନେଶ୍ୱର ଆସି କଲିକତା ଗଲେ। କଟକ ଭାଷଣ ପରେ ମୁଁ ସେମାନଙ୍କ ସହ ଭୁବନେଶ୍ୱର ଫେରୁଥାଏ ଓ ଗାଡ଼ିରେ ଆମେ ଏଣୁ ତେଣୁ କଥା ହେଉଥାଉ। ଆଲୋଚନା ପ୍ରସଙ୍ଗରେ ମୁଁ ସେମାନଙ୍କୁ ଜର୍ମାନୀର ସାମାଜିକ ଜୀବନ ଓ ପାରିବାରିକ ବନ୍ଧନ ବିଷୟରେ ପଚାରୁଥିଲି। ଭଦ୍ରଲୋକ ଓ ଭଦ୍ର ମହିଳା ତାଙ୍କ ଦେଶର ଉନ୍ନତ ସାମାଜିକ ବ୍ୟବସ୍ଥା ବିଷୟରେ କହୁଥିଲେ। ସାମାଜିକ ଜୀବନରେ କର୍ତ୍ତବ୍ୟନିଷ୍ଠା, ଉଚ୍ଚ ନାଗରିକ ଶୃଙ୍ଖଳାବୋଧ, ବ୍ୟକ୍ତିମର୍ଯ୍ୟାଦାବୋଧ ପରି ମୂଲ୍ୟଚୟ ସୁପ୍ରତିଷ୍ଠ। ଯେକୌଣସି ଅଫିସରେ କାର୍ଯ୍ୟ ଠିକ୍ ଭାବରେ ହୁଏ। ଲାଞ୍ଚ ମିଛ ଏସବୁ ତାଙ୍କ ବ୍ୟବସ୍ଥାରେ ନାହିଁ କହିଲେ ଚଳେ। ତାଙ୍କ ଦେଶର ଆଇନକାନୁନ

ଏତେ କଠିନ ବା ଜଟିଳ ନୁହେଁ। ଜଣେ ସାଧାରଣ ବ୍ୟକ୍ତିର କାର୍ଯ୍ୟ ଅକ୍ଳେଶରେ ହୁଏ, ତାଙ୍କ ବ୍ୟବସ୍ଥାରେ ସାଧାରଣ ନାଗରିକ କୌଣସି ଅସୁବିଧାର ସମ୍ମୁଖୀନ ହୁଏ ନାହିଁ।

ତେବେ ଭଦ୍ରଲୋକ କହିଲେ ଯେ, ତାଙ୍କ ଦେଶର ପାରିବାରିକ ବନ୍ଧନ ଏତେ ସୁଦୃଢ଼ ନୁହେଁ। ପିଲାମାନେ ପ୍ରାପ୍ତବୟସ୍କ ହେବା ପରେ ସ୍ୱାଧୀନ ଭାବେ ସବୁ କାର୍ଯ୍ୟ କରନ୍ତି। ବାପା, ମା'ଙ୍କର ସେମାନଙ୍କ ଉପରେ କୌଣସି ନିୟନ୍ତ୍ରଣ ରହେ ନାହିଁ। ସେମାନେ କ'ଣ ପଢ଼ିବେ, କେଉଁ କାର୍ଯ୍ୟ କରିବେ, କେଉଁ ଜାଗାରେ ବିବାହ କରିବେ, କେଉଁଠି ରହିବେ ଇତ୍ୟାଦି ଏହି ସବୁ କାର୍ଯ୍ୟରେ ସଂପୂର୍ଣ୍ଣ ସ୍ୱାଧୀନତା ସେମାନେ ଉପଭୋଗ କରନ୍ତି। ବାପା, ମା' ପିଲାଙ୍କ ଉପରେ କିଛି ମତ ଲଦି ଦିଅନ୍ତି ନାହିଁ ବା କିଛି ଇଂପୋଜ୍ କରନ୍ତି ନାହିଁ। ଗୋଟିଏ ସ୍ୱାଧୀନ ବାତାବରଣ ଭିତରେ ପିଲାମାନେ ଗଢ଼ି ଉଠନ୍ତି।

ଭଦ୍ରଲୋକ ଆମ ଦେଶର ସାମାଜିକ ବ୍ୟବସ୍ଥା ବିଷୟରେ ମୋତେ ପଚାରିଲେ। ମୁଁ ଆଲୋଚନା ଭିତରେ କହିଲି ଯେ ଆମ ସାମାଜିକ ବ୍ୟବସ୍ଥାରେ ପାରିବାରିକ ବନ୍ଧନ ବେଶ୍ ସୁଦୃଢ଼। ଝିଅମାନଙ୍କୁ ବିବାହ ଦେବା ପରିବାରର କର୍ତ୍ତବ୍ୟ। ଘରେ ବୁଢ଼ା, ବୁଢ଼ୀ ଓ ବୟସ୍କ ଲୋକମାନେ ସାଧାରଣତଃ ପିଲାମାନଙ୍କ ଉପରେ ନିର୍ଭରଶୀଳ। ତିନି ପୁରୁଷର ଲୋକମାନେ ଏକାଠି ରୁହନ୍ତି। ସାଧାରଣ ପରିବାରରେ ଓ ଗ୍ରାମୀଣ ପରିବେଶରେ ବୁଢ଼ା, ବୁଢ଼ୀ ସେମାନଙ୍କର ପୁଅ ବୋହୂ ଓ ନାତି ନାତୁଣୀ ଏକାଠି ରୁହନ୍ତି। ଆମ ସମାଜରେ ଜରା ନିବାସ ନାହିଁ। ସାମାଜିକ ପ୍ରୀତିବନ୍ଧନ ପ୍ରାୟତଃ ପରିବାରରେ ଥାଏ। ପରିବାରର ଭଲ ମନ୍ଦ ଓ ସୁଖ ଦୁଃଖକୁ ସମସ୍ତେ ସମଭାଗୀ ହୋଇ ଗ୍ରହଣ କରନ୍ତି।

ମୋ ଠାରୁ ଏହା ଶୁଣିବା ପରେ ଭଦ୍ରଲୋକ କହିଲେ ଯେ ଭାରତୀୟ ସମାଜ ଆଜି ଯେପରି ସୁଦୃଢ଼ ପାରିବାରିକ ବନ୍ଧନ ଭିତରେ ରହିଛି ତାଙ୍କ ସମାଜ ଅତୀତରେ ସେପରି ଥିଲା। ତେବେ ତାଙ୍କ ଦେଶରେ ଆଧୁନିକ ପ୍ରଯୁକ୍ତିଦ୍ୱାରା ଅସମ୍ଭବ ବିକାଶ ହେତୁ ପାରିବାରିକ ବନ୍ଧନ ଶିଥିଳ ହୋଇଗଲା। ବ୍ୟକ୍ତି ମର୍ଯ୍ୟାଦାର ଭାବନା ଓ ମାନବିକ ଅଧିକାର ନେଇ ସାମାଜିକ ଜୀବନ ପ୍ରବାହରେ ଯେଉଁ ସାଂସ୍କୃତିକ ଆଲୋଡ଼ନ ଆସିଲା ତଦ୍ୱାରା ପାରିବାରିକ ସମ୍ବନ୍ଧ କୋହଳ ହୋଇଗଲା। କଥା ପ୍ରସଙ୍ଗରେ ମଧ୍ୟ ସେମାନେ କହିଲେ ଯେ ପ୍ରାୟ ପ୍ରତ୍ୟେକ ଲୋକର ସ୍ୱାସ୍ଥ୍ୟ ବୀମା (health insurance) ରହିଛି, ଦେହ ପା ଅସୁସ୍ଥ ହେଲେ ସେମାନେ ହସ୍ପିଟାଲରେ

ରହିବେ, ଆଧୁନିକ ଚିକିତ୍ସାର ସୁଯୋଗ ନେବେ । ଡାକ୍ତରଖାନାରେ ଡାକ୍ତର, ନର୍ସ ରୋଗୀ ପ୍ରତି ସହାନୁଭୂତିଶୀଳ ଓ ଏହି ସବୁ କାରଣ ଯୋଗୁଁ ପାରିବାରିକ ଲୋକଙ୍କର ଆବଶ୍ୟକତା ପ୍ରାୟ ନ ଥାଏ । ଏହା ସହିତ ପ୍ରାପ୍ତ ବୟସ୍କ ପ୍ରତ୍ୟେକ ବ୍ୟକ୍ତି, ପୁରୁଷ ନାରୀ ନିର୍ବିଶେଷରେ କିଛି ରୋଜଗାରକ୍ଷମ କାମ କରନ୍ତି ଓ ପ୍ରାୟତଃ ସ୍ୱାବଲମ୍ବୀ ହୋଇଥାନ୍ତି ।

ଏହି ପରିପ୍ରେକ୍ଷୀରେ କେତେକ ସାଧାରଣ କଥା ମନକୁ ଆସିଥାଏ । ଆମ ଦେଶର ଓ ସାମାଜିକ ବ୍ୟବସ୍ଥାର ପରିଣତି ସମ୍ଭବତଃ ଏକ ସୁଦୃଢ ପାରିବାରିକ ସ୍ଥିତି ପାଇଁ ଅନୁକୂଳ ହୋଇ ରହିଛି । କର୍ମସଂସ୍ଥାନ ନେଇ ଅନିଶ୍ଚିତତା, ସାଧାରଣ କ୍ଷେତ୍ରରେ ଦୁର୍ନୀତି ଓ ଭ୍ରଷ୍ଟାଚାର, ଡାକ୍ତରଖାନାମାନଙ୍କର ଅବସ୍ଥା ଓ ଗାଁ ଗହଳର ପରିବେଶ ପାରିବାରିକ ବନ୍ଧନକୁ ସୁଦୃଢ କରିବାରେ ସାହାଯ୍ୟ କରିଛି । ଆମେ ଯେହେତୁ ଏକ ବୃହତ୍ତର ସମାଜ ଉପରେ ଯଥେଷ୍ଟ ଆସ୍ଥା ରଖିପାରୁ ନାହୁଁ ଓ ଏକ ଅନିଶ୍ଚିତ ପରିସ୍ଥିତିର ସମ୍ମୁଖୀନ ହେଉଛୁ, ତେଣୁ ଆମର ପାରିବାରିକ ବନ୍ଧନ କିଛିଟା ଅତୁଟ ରହିଛି । ଏକ ସମୟରେ ସାରା ପୃଥିବୀରେ ଯୌଥ ପରିବାର (joint family) ବ୍ୟବସ୍ଥା ଥିଲା, ଆସ୍ତେ ଆସ୍ତେ ଏହା ଭାଙ୍ଗି ପଡୁଛି । ସବୁ ଦେଶରେ ଏହାର ଏକ ପ୍ରାକୃତିକ ବିଲୟ ହେଉଥିବା ମନେ ହେଉଛି । ଅତୀତରେ ଭାଇମାନେ ବାପାଙ୍କର ସଂପତ୍ତିକୁ ବାଣ୍ଟିକରି ଭିନ୍ନେ ହେଉଥିଲେ । ଏବେ ପ୍ରାକୃତିକ ଧାରାରେ ସେମାନେ ପରସ୍ପର ଠାରୁ ପୃଥକ ହୋଇ ଯାଉଛନ୍ତି । ପିଲାମାନେ କର୍ମ ସଂସ୍ଥାନ ପାଇଁ ଦୂର ସ୍ଥାନକୁ ଯାଉଛନ୍ତି । ଆଧୁନିକ ଜୀବନଧାରାରେ ଗୋଟିଏ ବା ଦୁଇଟି ପିଲା ଭିତରେ ପରିବାରକୁ ସୀମିତ ରଖା ଯାଉଛି । ଏପରିକି ବାପା, ମା'ଙ୍କ ସହ ସମ୍ପର୍କ ପରିବର୍ତ୍ତିତ ପରିସ୍ଥିତିରେ ସୁଦୃଢ ରହିପାରୁ ନାହିଁ । ଆମ ସମାଜର ଯୌଥ ବ୍ୟବସ୍ଥା ଆସ୍ତେ ଆସ୍ତେ ଭାଙ୍ଗି ପଡୁଛି । ଆମ ସମାଜ ମଧ୍ୟ ପାଶ୍ଚାତ୍ୟ ଦେଶମାନଙ୍କର ସମାଜ ବ୍ୟବସ୍ଥା ଆଡ଼କୁ ଅଗ୍ରସର ହେଉଛି । ପରିବର୍ତ୍ତିତ ଆର୍ଥିକ ବ୍ୟବସ୍ଥା ସାମାଜିକ ସ୍ତରରେ ବହୁ ପରିବର୍ତ୍ତନ ଆଣୁଛି । ତେବେ ୟୁରୋପୀୟ ଦେଶମାନଙ୍କରେ ଯେପରି ସଚେତନତା ଆସିଛି, ଆମ ଦେଶରେ ତାହା ନାହିଁ । ଜଣଙ୍କର କାର୍ଯ୍ୟ ଯେତେ ଆଇନ ସଙ୍ଗତ ହେଲେ ବି ତାହା ଅକ୍ଲେଶରେ ସରକାରୀ କଳ ଭିତରେ ହୋଇପାରୁ ନାହିଁ ।

ତେବେ ପ୍ରଶ୍ନ ଉଠୁଛି – ଏକ ଉନ୍ନତ ସାମାଜିକ ବ୍ୟବସ୍ଥାର ସ୍ୱରୂପ କ'ଣ ? ପାରିବାରିକ ବନ୍ଧନ ଦୃଢ ରହିଲେ ସମାଜ ବ୍ୟବସ୍ଥା ଉନ୍ନତ ହୁଏ ନା ସାମାଜିକ ପରିବେଶରେ ନାଗରିକ ଶୃଙ୍ଖଳାର ସ୍ତର ଉନ୍ନତ ହେଲେ ସମାଜ ଉନ୍ନତ ହୁଏ ? ସେହିପରି ସମାଜରେ ଧର୍ମଭାବର

ପ୍ରଭାବ ରହିଲେ, ପୂଜାପାଠ ବଢ଼ିଚାଲିଲେ, ଦିଅଁଦେବତା ପ୍ରଭାବ ବିଷୟରେ ଲୋକମାନଙ୍କର ମାନସିକତାକୁ ଆକୃଷ୍ଟ କଲେ ସମାଜ ଉନ୍ନତ ହୁଏ ନା ଧର୍ମନିରପେକ୍ଷ ଦୃଷ୍ଟିଭଙ୍ଗୀର ବିକାଶଦ୍ୱାରା ସମାଜ ଉନ୍ନତ ହୁଏ ?

ମନସ୍ତାତ୍ତ୍ୱିକ ସ୍ତରରେ ବ୍ୟକ୍ତି ଯେତେବେଳେ ବୃହତ୍ତର ସମାଜ ଉପରେ ପୂର୍ଣ୍ଣ ଆସ୍ଥା ରଖିପାରେ ନାହିଁ ଓ ତା ଭିତରେ ଭୟ, ହତାଶାବୋଧ, ଅନିଶ୍ଚିତ ମନୋଭାବ ଅଧିକ ହୁଏ ସେ ଧର୍ମ, ଠାକୁର, ଈଶ୍ୱର ଓ ଦେବତାର ଶରଣାପନ୍ନ ହୁଏ। ମନୁଷ୍ୟ ଯେତେବେଳେ ପରିସ୍ଥିତି ଭିତରେ ଚାପି ହୋଇଯାଏ, ପ୍ରତିକୂଳ ଅବସ୍ଥାକୁ ଅତିକ୍ରମ କରିବାକୁ ବାଟ ପାଏ ନାହିଁ ସେ ଧର୍ମବିଶ୍ୱାସୀ ହୁଏ। ବିଶେଷକରି ସାମାଜିକ ପରିବେଶରେ ଯେତେବେଳେ ଧାର୍ମିକ ଭାବପ୍ରବଣତାର ବହୁଳ ପ୍ରଭାବ ଥାଏ, ବ୍ୟକ୍ତି ମାନସିକତାକୁ ଏହା ଆକୃଷ୍ଟ କରିଥାଏ। ଆମ ସାମାଜିକ ମନସ୍ତତ୍ତ୍ୱରେ ଏହାର ଯଥେଷ୍ଟ ପ୍ରତିଫଳନ ଦେଖିବାକୁ ମିଳେ। ଏଠାରେ କିଛି ଉଦାହରଣ ଦେବାକୁ ଉଚିତ୍ ମନେ କରୁଛି।

ବର୍ଷର ଗୋଟିଏ ସମୟରେ ରାସ୍ତାରେ ହଜାର ହଜାର ଯୁବକ ଯୁବତୀ ଏପରିକି ବୟସ୍କ ଲୋକମାନେ ବାହୁଙ୍ଗି ଧରି କଳସୀରେ ଜଳ ନେଇ ଶିବପୀଠମାନଙ୍କୁ ଚାଲିବାର ଦୃଶ୍ୟ ଆମେ ଦେଖୁଛେ। ସବୁ ସହରରେ ହଜାର ହଜାର ଲୋକ ଏହି କାର୍ଯ୍ୟରେ ସପ୍ତାହ ସପ୍ତାହ ବ୍ୟାପୀ ସମୟ ଦେଉଛନ୍ତି। ଗତ ବର୍ଷ ଖବର କାଗଜରେ ଏ ବିଷୟରେ କେତେକ ବିବରଣୀ ପ୍ରକାଶ ପାଇଥିଲା। ସେହି ବିବରଣୀ ଅନୁଯାୟୀ କେତେକ ସାମ୍ବାଦିକ ସେହି ଯୁବକ ଯୁବତୀମାନଙ୍କୁ ସେମାନେ କାହିଁକି ପାଣି ନେଇ ଯାଉଛନ୍ତି ବୋଲି ପଚାରିଥିଲେ। ପାଣି ନେଇ ଯାଉଥିବା ଲୋକମାନେ ଯେଉଁ ଉତ୍ତର ଦେଇଥିଲେ ତାହାର ଦୁଇଟି ତାତ୍ପର୍ଯ୍ୟ ଥିଲା। କିଏ ବି.ଏ. ପାସ୍ କରି ରହିଛି ଚାକିରୀ ମିଳୁ ନାହିଁ, କିଏ ଦୁଇଥର ମାଟ୍ରିକ ପରୀକ୍ଷା ଦେଇଥିଲେ ମଧ୍ୟ ମାଟ୍ରିକ ପାସ କରିପାରୁ ନାହିଁ, କାହାର ବାପା ବେମାର ପଡ଼ିଛି ଯେ ଭଲ ହେଉ ନାହିଁ, କାହାର ଭଉଣୀ ପାଇଁ ବିବାହ ପ୍ରସ୍ତାବ ଭାଙ୍ଗି ଯାଉଛି, କାହାର ବ୍ୟବସାୟରେ କ୍ରମାଗତ କ୍ଷତି ହେଉଛି ଏହିପରି ନାନା ବ୍ୟକ୍ତିଗତ ଅସୁବିଧାର ସମ୍ମୁଖୀନ ହୋଇ ସେମାନେ ମାନସିକ କରି ଶିବ ମନ୍ଦିରରେ ପାଣି ଢାଳିବାକୁ ଯାଉଛନ୍ତି। ଆଉ କେତେକ କିଛି ରୋଜଗାର ପାଇଁ ଭଡ଼ାରେ ଯାଉଛନ୍ତି। କୌଣସି ବ୍ୟବସାୟୀ ବା ଧନଶାଳୀ ଲୋକ ପାଣି ଆଣି ପୂଜା କରାଇ ଜଣେ ଯୁବକକୁ ନେଇକରି ଯିବାକୁ କହିଛି। ଯୁବକ ପାଣି ନେଇ ରାସ୍ତାରେ ଚାଲି ଚାଲି

ଯାଉଛି। ବ୍ୟବସାୟୀ ବା ମାନସିକ କରିଥିବା ଲୋକଟି ଯେଉଁଦିନ ପାଣି ଢଳାଯିବ ସେହି ସ୍ଥାନକୁ ଗାଡ଼ି ମଟରରେ ଆସି ପାଣି ଢାଳି ପୁଣ୍ୟ ଅର୍ଜନ କରୁଛି। ତା ପାଇଁ ରାସ୍ତାରେ ପାଣି ଧରି ଆସିଥିବା ଯୋଗୁଁ ଦୂରତା ଓ ଦିନ ଅନୁସାରେ ଯୁବକଙ୍କୁ ମୂଲ ଦେଉଛି। ତେବେ ଜଣେ ନିଜେ ଯାଇ ଢାଳୁ ବା କାହାଦ୍ୱାରା ବୁହାଇ ଢାଳୁ ଏ ପ୍ରତ୍ୟେକ କ୍ଷେତ୍ରରେ ଏକା ପ୍ରକାରର ମନସ୍ତତ୍ତ୍ୱ ରହିଛି। ତାହା ହେଉଛି ସେ ପ୍ରତିକୂଳ ସ୍ଥିତିରେ ରହିଛି, ତାହାର କୌଣସି କାମନା ପୂରଣ ହୋଇପାରୁ ନାହିଁ, ତେଣୁ ସେ କଳ୍ପିତ ଦିଅଁଙ୍କର ଶରଣାପନ୍ନ ହେଉଛି। ଏହା ହିଁ ଲୋକଙ୍କର ମୋଟାମୋଟି ମାନସିକ ସ୍ଥିତି। ଯେତେବେଳେ ମଣିଷ ସାମାଜିକ ବ୍ୟବସ୍ଥାରେ ନିରୂପାୟ ହେଉଛି ସେତେବେଳେ ଦିଅଁ ଦେବତା ତାର ଲକ୍ଷ୍ୟ ପୂରଣ କରିବେ ଭାବି ସେ ଏହି ପ୍ରକାର ଧାର୍ମିକ ଔପଚାରିକତାରେ ବିଶ୍ୱାସ କରୁଛି।

ସେହିପରି ଏବେ ବିଭିନ୍ନ ଜାଗାରେ କିଛି ବାବା ଓ ରହସ୍ୟବାଦୀ ବ୍ୟକ୍ତି ପ୍ରବଚନ ଦେଉଛନ୍ତି। ସହରରେ ବଡ଼ ବଡ଼ ପୋଷ୍ଟର ଦ୍ୱାରା ସେମାନଙ୍କର ପ୍ରଚାର ହେଉଛି। ହଜାର ହଜାର ଲୋକ ପ୍ରବଚନ ଶୁଣିବାକୁ ଯାଉଛନ୍ତି। ସେହି ବାବା ପ୍ରବଚକମାନେ ସାଧାରଣ ଲୋକଙ୍କର ମନସ୍ତତ୍ତ୍ୱ ବିଷୟ ବେଶ୍ ଜାଣନ୍ତି। ସମସ୍ତେ ସମସ୍ୟା ଭିତରେ ରହିଛନ୍ତି। ପ୍ରତ୍ୟେକ ଲୋକର କିଛି ନା କିଛି ସମସ୍ୟା ରହିଛି। ଏସବୁ ବାସ୍ତବ ସମସ୍ୟାଠାରୁ ଲୋକଙ୍କର ଦୃଷ୍ଟିକୁ ଫେରାଇ ନେବାକୁ ତାଙ୍କୁ ଜୀବନର ଅଳୀକତା, ଅସାରତା ନେଇ ଭାଷଣ ଦେଉଛନ୍ତି। ସ୍ଥଳବିଶେଷରେ କିଛି ଚମତ୍କାରିତା ଦେଖାଇ ଲୋକଙ୍କର ବିଶ୍ୱାସ ସୃଷ୍ଟି କରୁଛନ୍ତି। ଚମତ୍କାରିତାଦ୍ୱାରା ସେମାନେ ଯେ ଅଲୌକିକ ଶକ୍ତିର ଅଧିକାରୀ ଏହି ବାର୍ତ୍ତା ଲୋକମାନଙ୍କୁ ଦେଉଛନ୍ତି। ପ୍ରବଚକମାନେ ସତ୍‌ସଙ୍ଗ, ସାଧୁ ସନ୍ଥଙ୍କର ସେବା, ଧର୍ମକାର୍ଯ୍ୟ କରିବାଦ୍ୱାରା ଜୀବନରେ ଯଥାର୍ଥ ଶାନ୍ତି ମିଳିବ ବୋଲି ଲୋକଙ୍କୁ କହୁଛନ୍ତି। ଲୋକମାନଙ୍କୁ ଏକ ଭିନ୍ନ ଜଗତର ସ୍ୱପ୍ନ ଦେଉଛନ୍ତି। ଜୀବନର ବାସ୍ତବ ସମସ୍ୟାଠାରୁ ଲୋକଙ୍କର ଦୃଷ୍ଟିକୁ ଫେରାଇ ନେଇ ସ୍ୱପ୍ନ ବିଭୋର କରୁଛନ୍ତି। ଯେହେତୁ ଆମର ବୃହତ୍ତର ପରିବେଶରେ ନାଗରିକ-ସଚେତନତା ନାହିଁ ତେଣୁ ରହସ୍ୟମୟ ଭାବନାକୁ କେତେ ରଙ୍ଗ ରସ ଦେଇ ସେସବୁକୁ ପ୍ରସାର କରାଇବାରେ ସେମାନେ ସଫଳ ହେଉଛନ୍ତି। ବାବାମାନଙ୍କର ବିପଣୀ ଏଠାରେ ଖୁବ୍ ଭଲ ଚାଲୁଛି।

ପୁନଶ୍ଚ ଆମ ଦେଶର ଗଣମାଧ୍ୟମ-ସମ୍ବାଦପତ୍ର ଓ ଦୂରଦର୍ଶନ - ଜରିଆରେ ଏତେ ଅହେତୁକ, ଅମୂଳକ ଓ ଅବୈଜ୍ଞାନିକ ସମ୍ବାଦ ଓ ସିରିଏଲ ପ୍ରସାର କରାଯାଉଛି ତାହା ସମାଜକୁ ବିଭ୍ରାନ୍ତ କରିବାରେ ଭୂମିକା ନେଉଛି। ବିଭିନ୍ନ ସିରିଏଲର ବିଷୟବସ୍ତୁ ଭିତରେ ହିଂସା, ଚକ୍ରାନ୍ତ,

ଅଲୌକିକ ଭାବନା ଓ ଯୌନ ବ୍ୟଭିଚାର ରହିଛି । ଜୀବନର ମହତ୍ତର ଆକାଂକ୍ଷା ପ୍ରତି ଇଙ୍ଗିତ ନାହିଁ କିମ୍ବା କଳାତ୍ମକ ଅଭିବ୍ୟକ୍ତିର ପ୍ରେରଣା ନାହିଁ । ଆଧୁନିକ ପ୍ରଯୁକ୍ତି ସମାଜରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ କେତେ ସହାୟକ ହୋଇପାରନ୍ତା । ଏହା ଜୀବନକୁ କେତେ ସୁଖପ୍ରଦ ଓ ପ୍ରୀତିପ୍ରଦ କରିପାରିବାର ଅବକାଶ ଆଣିଛି । କେଉଁଠି ଖାଦ୍ୟାଭାବ ଦେଖାଦେଲେ ସେଠାକୁ ଖାଦ୍ୟ ଯାଇ ପାରୁଛି, କେଉଁ ଜାଗାରେ ପ୍ରାକୃତିକ ବିପତ୍ତି ପଡ଼ିଲେ ସେଠାକୁ ସମଗ୍ର ପୃଥିବୀର ସାହାଯ୍ୟ ପହଞ୍ଚି ପାରୁଛି । ବିଭିନ୍ନ ରୋଗକୁ ନିୟନ୍ତ୍ରଣ କରିବା ପାଇଁ ବିଶ୍ୱରେ ସଙ୍ଗଠନମାନ କାର୍ଯ୍ୟକରୁଛି । ତେବେ ବିଡ଼ମ୍ବନାର ବିଷୟ ଆମ ଦେଶ ପରି ବିକାଶଶୀଳ ଦେଶମାନଙ୍କରେ ଅବୈଜ୍ଞାନିକ ଭାବନା ଭରପୂର ହୋଇ ରହିଛି । ଅଶିକ୍ଷିତ ଲୋକଙ୍କ ଅପେକ୍ଷା ଶିକ୍ଷିତ ଲୋକମାନଙ୍କ ପାଖରେ ଏହି କୁସଂସ୍କାର ଅଧିକ ରହିଛି । ସବୁରି ପଛରେ ରହିଛି ମନସ୍ତାତ୍ତ୍ୱିକ ଓ ସ୍ଥଳବିଶେଷରେ ଅର୍ଥନୈତିକ କାରଣ । ଏହି ମନସ୍ତାତ୍ତ୍ୱିକ କାରଣ ଯୋଗୁଁ ଲକ୍ଷ ଲକ୍ଷ ଲୋକ କେଉଁଠି ଯାଇ ବୁଡ଼ ପକାଉଛନ୍ତି, କେଉଁ ପୂଜାପୀଠରେ ଦିଅଁ ଦର୍ଶନ ପାଇଁ ରୁଣ୍ଡ ହେଉଛନ୍ତି, କେଉଁ ଦିଅଁଙ୍କ ମୁଣ୍ଡରେ ପାଣି ଢାଳୁଛନ୍ତି, ହଜ କରି ବାହାରୁଛନ୍ତି ଇତ୍ୟାଦି ଇତ୍ୟାଦି । ଏହି ବିଶ୍ୱାସ ରକ୍ତ ମଜ୍ଜାଗତ ହୋଇ ରହିଛି ।

କିନ୍ତୁ ହେତୁବାଦୀ ଅନୁଭବରେ ମଣିଷ ହିଁ ତାର ଜୀବନର ନିୟାମକ । ଯେଉଁଠି ସଚେତନ ଭାବେ ମଣିଷ ସଙ୍ଘବଦ୍ଧ ହୋଇ ଜୀବନର ଗୁଣାତ୍ମକ ବିକାଶ ପାଇଁ ସଯତ୍ନ ପ୍ରୟାସ କରିଛି ସେଠି ସଭ୍ୟ ଜୀବନଧାରାର ବିକାଶ ହୋଇଛି, ସଂସ୍କୃତିର ଚକ ଆଗକୁ ଯାଇଛି । କିନ୍ତୁ ଯେଉଁଠି ମଣିଷ ଭାଗ୍ୟ, ଭଗବାନ ହୋଇ ଅତୀନ୍ଦ୍ରିୟ ବିଶ୍ୱାସକୁ ଗୁରୁତ୍ୱ ଦେଇଛି ସେଠି ତା଼ର ବିକାଶ ବାଧାପ୍ରାପ୍ତ ହୋଇଛି । ଆମ ସଂସାରରେ ଯାହା କିଛି ଜୀବନକୁ ଉନ୍ନତ଼ କରାଇଛି ସେସବୁ ହେଉଛି ମଣିଷ ହାତ ଓ ବୁଦ୍ଧିର କରାମତି । ମଣିଷ ତାର ପ୍ରୟାସ ଓ ପ୍ରଚେଷ୍ଟା ଯୋଗୁଁ ସମାଜକୁ ସରସ, ସୁନ୍ଦର କରିପାରେ, ଅଥଚ ମଣିଷର ଚେଷ୍ଟା ନ ରହିଲେ ସମାଜ ଆଗକୁ ଯାଇପାରେ ନାହିଁ ।

ମଣିଷ ଓ ତା'ର ସମାଜ କିପରି କ୍ରମୋନ୍ନତ ବିକାଶ ସାଧନଦ୍ୱାରା ଅଧିକ ସଂସ୍କୃତି ସଂପନ୍ନ ହୋଇପାରିବ ତାହା ନିର୍ଭର କରେ ମଣିଷର ଜୀବନ-ଦର୍ଶନ ଉପରେ । ମଣିଷ ମରଣଶୀଳ, ମୃତ୍ୟୁ ହିଁ ବ୍ୟକ୍ତି ଜୀବନର ଶେଷ ପରିଣାମ । କିନ୍ତୁ ମଣିଷ ଜାତି ସବୁଦିନ କିପରି ରହିବ ଓ ଉନ୍ନତରୁ ଉନ୍ନତତର ହେବ ଏହି ପ୍ରୟାସ ଜୀବନ ପ୍ରତି ସକାରାତ୍ମକ

ଆଭିମୁଖ୍ୟ ଯୋଗୁଁ ସମ୍ଭବ ହୋଇଥାଏ । ପରଲୋକ, ପାରଲୌକିକ ବିଶ୍ୱାସ, ମୁକ୍ତି, ମୋକ୍ଷ ଏସବୁ ଧାର୍ମିକ କଳ୍ପନା ମାତ୍ର, ଏହାର କୌଣସି ବାସ୍ତବତା ନାହିଁ ବୋଲି ବିଚାରଶୀଳ ଭାବନାରେ ଆସିଥାଏ । ଆମେ ଯେଉଁ ଜୀବନଟି ବଞ୍ଚୁ, ଯେଉଁ ସାମାଜିକ ସମ୍ପର୍କଟିକୁ ଆମ ଚତୁଃପାର୍ଶ୍ୱରେ ଦେଖୁ ତାକୁ ଉନ୍ନତ କରିବା ପାଇଁ ମଣିଷର ଯେଉଁ ଅବିରତ ପ୍ରୟାସ ରହିଛି ତାହାହିଁ ସମାଜର ସାଂସ୍କୃତିକ ଉତ୍ତରଣ ଘଟାଇଛି । ଏହି ପ୍ରୟାସ ଯୋଗୁଁ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି । ସାମାଜିକ ବିଧାନ ଓ ମୂଲ୍ୟବୋଧର ଉଦ୍ରେକ ହୋଇଛି । କେତେ କେତେ ସାମାଜିକ ଅନୁଷ୍ଠାନ ମାଧ୍ୟମରେ ବ୍ୟକ୍ତି ଓ ସମଷ୍ଟିଗତ ଜୀବନଧାରାକୁ ଉନ୍ନତ କରାଯାଇ ପାରୁଛି । ଏସବୁର ସମ୍ମିଳିତ ପରିଣାମରୁ ଆଧୁନିକ ଜୀବନଧାରା ସମ୍ଭବ ହୋଇଛି । ଆଧୁନିକ ଜୀବନ ପ୍ରବାହ ପଶ୍ଚାତରେ ସାମାଜିକ ବିବର୍ତ୍ତନର ଏକ ସୁଦୀର୍ଘ ଇତିହାସ ରହିଛି । ସେହି ଧାରାରେ ଧର୍ମ, ବିଜ୍ଞାନ, ଶିକ୍ଷା, ରାଜନୀତି ଇତ୍ୟାଦି କ୍ଷେତ୍ରରେ କେତେ କେତେ ବୈଚାରିକ ଭାବନା ଆସିଛି । ତେବେ ହେତୁବାଦୀ ଅନୁଭବରେ ସ୍ୱାଧୀନ ଭାବରେ ଚିନ୍ତା କରିବା, ମୁକ୍ତ ମନ ପୋଷଣ କରିବା ଓ ବୈଜ୍ଞାନିକ ପ୍ରଣାଳୀକୁ ବସ୍ତୁନିଷ୍ଠ ଜ୍ଞାନର ମାନଦଣ୍ଡ ଭାବେ ନେବା ହେଉଛି ସଭ୍ୟ ଦୃଷ୍ଟିଭଙ୍ଗୀ । ସେହିପରି ମାନବିକତାବାଦ, ସମତା ଓ ବ୍ୟକ୍ତିମର୍ଯ୍ୟାଦାବୋଧକୁ ଜୀବନ ଦର୍ଶନ ଭାବେ ଗ୍ରହଣ କରିବା ଏହାର ଅନ୍ତଃସ୍ୱର କହିଲେ ଅତ୍ୟୁକ୍ତି ହେବ ନାହିଁ ।

# ଉଦାରତା ବନାମ ରକ୍ଷଣଶୀଳତା

ମୋର ଜଣେ ଦଳିତ ଛାତ୍ରଙ୍କ ବିଷୟରେ ଲେଖୁଛି । ମୋର ଅଧ୍ୟାପନା ଜୀବନର ଆରମ୍ଭରେ ୧୯୭୪-୧୯୭୫ରେ ସେ ମୋର ଛାତ୍ର ଥିଲେ । ଛାତ୍ର ଜୀବନରୁ ସେ ଥିଲେ ଅତି ସରଳ, ଭଦ୍ର, ବିନୟୀ ଓ ବୁଦ୍ଧିମାନ । ଗୋଟିଏ ମଫସଲ ଗ୍ରାମରୁ ଆସି ବହୁ ପ୍ରତିକୂଳ ଆର୍ଥିକ ସ୍ଥିତି ଭିତରେ ରହି ସଂଗ୍ରାମକରି ପାଠ ପଢୁଥିଲେ । ଅତ୍ୟନ୍ତ ଖରାପ ଆର୍ଥିକ ସ୍ଥିତି ଯୋଗୁଁ ବି.ଏ. ପରେ ରହିଗଲେ, ଏମ୍.ଏ.ରେ ନାମ ଲେଖାଇ ପାରିଲେ ନାହିଁ । ସୁଖର କଥା ବି.ଏ. ପାସ୍ କରିବାର ଏକ ବର୍ଷ ପରେ ଗୋଟିଏ ବ୍ୟାଙ୍କରେ ଚାକିରୀ ଖଣ୍ଡିଏ ପାଇ ଆଶ୍ୱସ୍ତ ହେଲେ । ତାଙ୍କର କର୍ତ୍ତବ୍ୟନିଷ୍ଠା ଓ ଉତ୍ତମ ବ୍ୟବହାର ଭିତରେ ବ୍ୟାଙ୍କରେ ପରେ ଅଫିସର ହୋଇଗଲେ ଓ ବର୍ତ୍ତମାନ ଖୁବ ଭଲ ପରିସ୍ଥିତିରେ ରହିଛନ୍ତି ।

ଚାକିରୀ କରିବା ପରେ ପରେ ତାଙ୍କରି ଗ୍ରାମର ପଛୁଆ ବର୍ଗରୁ ଆସିଥିବା ଜଣେ ସାଧାରଣ ଝିଅ ସହ ମାନସିକ ସ୍ତରରେ ସମ୍ବନ୍ଧ ଗଢି ଉଠିଲା । ଉଭୟ ବିବାହ ପାଇଁ ସ୍ଥିର କଲେ । ହେଲେ ଝିଅଙ୍କ ପରିବାରରୁ ବହୁ ବିରୋଧ ହେଲା । ପରେ ଉଭୟ ଗାଁରୁ ଅଜ୍ଞାତରେ ଚାଲି ଆସି ସେମାନଙ୍କର ସଂସାର ଆରମ୍ଭ କଲେ । ଗାଁରେ ଦୁଇ ଜାତିଙ୍କ ଭିତରେ ଭୟଙ୍କର ବିବାଦ ସୃଷ୍ଟି ହେଲା । କୋର୍ଟରେ ତାଙ୍କ ନାମରେ କେସ୍ ହେଲା, ହେଲେ ତାଙ୍କ ପତ୍ନୀଙ୍କର ସାହସିକ ବକ୍ତବ୍ୟ ଯୋଗୁଁ ସେ ଅଧିକ ଅସୁବିଧାର ସମ୍ମୁଖୀନ ହେବାରୁ ରକ୍ଷା ପାଇଲେ । ତାଙ୍କର ଶ୍ୱଶୁର ଯେ ସାଧାରଣ କୌଳିକ ବୃତ୍ତି କରି ପରିବାର ଚଳାଉ ଥିଲେ ଦିନକ ପାଇଁକି ଝିଅ ଜ୍ୱାଇଁଙ୍କର ମୁହଁ ଦେଖିବାକୁ ଆଗ୍ରହ ପ୍ରକାଶ କରିନାହାନ୍ତି ।

ବିବାହର ଗୋଟିଏ ବର୍ଷ ନାନା ଭୟ, ଉତ୍ତେଜନା ଓ ଅଶାନ୍ତି ଭିତରେ ରହିଥିଲେ । ଦୁଃଖ ପରେ ସୁଖର ଦିନ ଆସେ । ଏବେ ପୁଅ, ବୋହୂ, ଝିଅ, ଜ୍ୱାଇଁଙ୍କୁ ନେଇ ତାଙ୍କର ସୁଖର ସଂସାର । ଝିଅ ବାଣୀବିହାରରେ ଏମ୍.ଏ. ପଢୁଥିଲା ବେଳେ ଜଣେ ଉଚ୍ଚ ଜାତିର ପୁଅକୁ ଭଲ ପାଇଲେ । ତାଙ୍କର ଝିଅ ଯେଉଁ ଯୁବକକୁ ଭଲ ପାଇଲେ ସେ ଯୁବକ ଚାହିଁଲେ ତାଙ୍କ ପରିବାରକୁ ପ୍ରସ୍ତାବ ଝିଅ ଘରୁ ଯାଉ । ଝିଅ ବି ସେୟା ବାରମ୍ବାର ବାପାଙ୍କୁ କହିଲା । ବାଧ୍ୟ ହୋଇ ଛାତ୍ର ବନ୍ଧୁ

ଜଣଙ୍କ ପ୍ରସ୍ତାବ ନେଇ ପୁଅ ଘରକୁ ଗଲେ । କିଛି ଆଲୋଚନା ପରେ ପୁଅ ଝିଅଙ୍କର ଏହା ନିଷ୍ପତ୍ତି ଥିବାରୁ ପୁଅ ପରିବାର ଏଥିରେ ସମ୍ମତ ହେଲେ ଓ ବିବାହ ଖୁବ୍ ଜାକଜମକରେ ସଂପନ୍ନ ହେଲା । କେବଳ ପୁଅ ବାପାଙ୍କର ଅନୁରୋଧରେ ସେମାନଙ୍କର ବ୍ରାହ୍ମଣ ସ୍ଥିତି ପ୍ରତି କିଛି ସାମାଜିକ ଅସମ୍ମାନ ସୃଷ୍ଟି ନ ହେବା ପାଇଁ ବୈଦିକ ବିବାହ ହୋଇ ଝିଅକୁ ଜଣେ ବ୍ରାହ୍ମଣ ବନ୍ଧୁ ବିବାହ କରାଇ କନ୍ୟା ଦାନ କଲେ । ସେଥିପାଇଁ ଛାତ୍ର ବନ୍ଧୁ ଜଣଙ୍କ ତାଙ୍କର ଜଣେ ବ୍ୟାଙ୍କ ସହକର୍ମୀଙ୍କୁ ଅନୁରୋଧ କରି ଏହା କଲେ । ତେବେ ତାଙ୍କର ପୁଅ ବେଳକୁ ଏ ସମସ୍ୟା କିଛି ରହିଲା ନାହିଁ । ଉଭୟ ପରିବାରରେ ପ୍ରସ୍ତାବ ପଡ଼ିଲା ଓ ଝିଅ ପକ୍ଷ ପୁଅ ବାପାଙ୍କର ପଦ ମର୍ଯ୍ୟାଦା, ଆର୍ଥିକ ସ୍ଥିତି ଓ ପୁଅର କର୍ମସଂସ୍ଥାନକୁ ଦେଖି ଅକ୍ଲେଶରେ ସମ୍ମତ ହେଲେ । ପୁଅ ଝିଅଙ୍କର ବିବାହ ସୁରୁଖୁରୁରେ ବୈଦିକ ମତରେ ହେଲା । ଏହା ଭିତରେ ସହରରେ ବି ସେ ଘର କରି ନେଇଛନ୍ତି । ଏକଦା ଏତେ ସଂଗ୍ରାମ କରି ପାଠ ପଢୁଥିବା ଓ ନିଜର ବିବାହ ବେଳକୁ ଭୟଙ୍କର ସାମାଜିକ ବିରୋଧର ସମ୍ମୁଖୀନ ହୋଇଥିବା ଛାତ୍ର ଜଣଙ୍କ ପୁଅ ଝିଅଙ୍କୁ ବିବାହ ଦେଇ ମାନସିକ ସ୍ଥିରତା ଭିତରେ ସୁଖରେ ରହିଛନ୍ତି ।

ତେବେ ଗୋଟିଏ ପିଢ଼ିର ବ୍ୟବଧାନ ଭିତରେ ଯେଉଁ ସାମାଜିକ ପରିବର୍ତ୍ତନ ହୋଇଛି ତାହା ସ୍ୱାଗତଯୋଗ୍ୟ । ଅନ୍ତତଃ ଆଧୁନିକ ଶିକ୍ଷା ଓ ସଭ୍ୟ ଜୀବନଧାରା ବିଷୟରେ ସଚେତନ ଥିବା ବ୍ୟକ୍ତିବିଶେଷ ଆନ୍ତର୍ଜାତି ବିବାହକୁ ଏତେ ବିରୋଧ କରୁ ନାହାନ୍ତି ଯାହାକି ଗୋଟିଏ ପିଢ଼ି ପୂର୍ବରୁ ଏକ ଭୟଙ୍କର ସାମାଜିକ ସମସ୍ୟା ଥିଲା । ତେବେ ଆର୍ଥିକ ସ୍ଥିତି, ସାମାଜିକ ପଦମର୍ଯ୍ୟାଦା, ଶିକ୍ଷା ଇତ୍ୟାଦି ପ୍ରଶ୍ନ ପାରିବାରିକ ସହମତି ଥିବା ଅନ୍ତର୍ଜାତି ବିବାହ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ହେଉଛି । ସମାଜରେ ଅନ୍ତର୍ଜାତି ବା ଜାତିବିହୀନ ବିବାହ ଯେତେ ବ୍ୟାପକ ଭାବେ ସଂଘଟିତ ହେବ ଜାତିଆଣ ଅନମନିୟତା ସେତେ ହ୍ରାସ ପାଇବ ବୋଲି ବହୁ ମାନବବାଦୀ ଓ ପ୍ରଗତିଶୀଳ ସଂସ୍କାରକ ଚିନ୍ତା କରିଥିଲେ ।

ତେବେ ଏଠାରେ ଆଉ ଗୋଟିଏ ବିଷୟ ଆସୁଛି । ଏହି ପିଢ଼ିର ଦଳିତ ଛାତ୍ରଛାତ୍ରୀମାନେ ଯେଉଁମାନେ ଭଲ ପରିବେଶରେ ରହି ଭଲ ଶିକ୍ଷାନୁଷ୍ଠାନମାନଙ୍କରେ ପାଠ ପଢୁଛନ୍ତି, ଏକ ମୁକ୍ତ ଓ ସ୍ୱାଧୀନ ପରିବେଶରେ ଗଢି ଉଠିଛନ୍ତି ସେମାନେ ଆମର ସାମାଜିକ ବ୍ୟବସ୍ଥାର ଅମାନବିକ ପ୍ରଥାଗୁଡ଼ିକ ବିଷୟରେ ସେତେ ସଚେତନ ନୁହଁନ୍ତି । ଆମର ଶିକ୍ଷା ବ୍ୟବସ୍ଥାରେ ଆମର ସାମାଜିକ ଇତିହାସ ପ୍ରାୟତଃ ପଢାଯାଏ ନାହିଁ । ପରିଣାମତଃ ମନୁବାଦୀ

ବ୍ୟବସ୍ଥା ଓ ଏହାର ଅନ୍ତର୍ନିହିତ ଭାବଧାରା ନେଇ ଯୁବସମାଜ ଏତେ ସଚେତନ ହେବା ମନେହୁଏ ନାହିଁ। ହୁଏତ ସ୍ଥଳବିଶେଷରେ ସେମାନେ ସଂରକ୍ଷଣର ସୁବିଧା ନେଇ ଶିକ୍ଷାନୁଷ୍ଠାନରେ ନାମ ଲେଖାଇ ଥିବାରୁ ବେଳକେ କିଛିଟା ଆକ୍ରୋଶର ସମ୍ମୁଖୀନ ହୋଇଥାନ୍ତି। ତେବେ ଏହା ସେପରି କିଛି ଗୁରୁତର ସାମାଜିକ ସମସ୍ୟା ନୁହେଁ।

ସହରୀ ଜୀବନର ମୁକ୍ତ ପରିବେଶ, ଶିକ୍ଷାର ପ୍ରସାର ଓ ଆର୍ଥିକ ଢାଞ୍ଚାରେ କିଛି ପରିବର୍ତ୍ତନ ପରିପ୍ରେକ୍ଷୀରେ ବର୍ତ୍ତମାନର ଯୁବ ପିଢି ଗ୍ରାମୀଣ ଜୀବନଧାରାର ଛୁଆଁ ଅଛୁଆଁ ପରିବେଶ, ରୁଦ୍ଧ ଜାତି ବ୍ୟବସ୍ଥା, ସୀମିତ ସାମାଜିକ ଆଦାନ ପ୍ରଦାନ ଓ ଦଳିତ ଲୋକଙ୍କର ଅମର୍ଯ୍ୟାଦାଜନକ ସାମାଜିକ ସ୍ଥିତି ବିଷୟରେ କଳ୍ପନା କରିପାରିବେ ନାହିଁ। ତେବେ ବିଡ଼ମ୍ବନାର ବିଷୟ ଯେଉଁ ବ୍ୟବସ୍ଥାର ପରିଣାମ ସ୍ୱରୂପ ଗ୍ରାମରେ ଏହି ବିଭେଦମୂଳକ ସାମାଜିକ ସ୍ଥିତି ଗୋଟିଏ ପିଢି ତଳେ ବଳବତ୍ତର ଥିଲା ଓ ଏବେ ମଧ୍ୟ ଗ୍ରାମୀଣ ଜୀବନଧାରାରେ ରହିଛି ତାହା ବିଷୟରେ ସଚେତନ ନ ଥିବା ଯୁବ ଗୋଷ୍ଠୀ ସେହି ବ୍ୟବସ୍ଥାକୁ ଧରି ରଖିବାକୁ ଆଗ୍ରହୀ ହେବା ମନେହୁଏ। ବସ୍ତୁତଃ ସହରରେ କରିଥିବା ଘରର ପ୍ରତିଷ୍ଠା ପାଇଁ ବ୍ରାହ୍ମଣ ସହାୟତାରେ ହୋମ, ଯଜ୍ଞ କରିବାକୁ ଓ ଜନ୍ମ, ବିବାହ ଇତ୍ୟାଦି କାର୍ଯ୍ୟରେ ପୂଜକମାନଙ୍କୁ ଡ଼ାକି କର୍ମକାଣ୍ଡ କରିବାକୁ ମଧ୍ୟ ଶିକ୍ଷିତ ଦଳିତ ଯୁବକମାନେ ଆଗ୍ରହୀ ହେବା ଦେଖାଯାଏ। ପୂଜାପାର୍ବଣର ପରମ୍ପରାକୁ ସାମାଜିକ ଐତିହ୍ୟ ବୋଲି ଗ୍ରହଣ କରିବାର ମାନସିକତା ମଧ୍ୟ ପ୍ରକାଶ ପାଏ। ଏପରିକି ନିଜ ଧର୍ମ ଓ ପରମ୍ପରାକୁ ଉଦାରବାଦୀ କହି ଅନ୍ୟ ଧର୍ମ ପରମ୍ପରା ପ୍ରତି ବିଦ୍ୱେଷମୂଳକ ମନୋଭାବ ମଧ୍ୟ ପ୍ରକାଶ କରିବାର ଦୃଷ୍ଟାନ୍ତ କିଛି କମ୍ ନୁହେଁ।

ସମସ୍ୟାଟିକୁ ଅନ୍ୟ ଦୃଷ୍ଟିରୁ ଦେଖିଲେ ମନୁବାଦର ପୃଷ୍ଠପୋଷକତା କରୁଥିବା ବ୍ୟକ୍ତିବିଶେଷ ପରିବର୍ତ୍ତିତ ସାମାଜିକ ପରିସ୍ଥିତିରେ ମଧ୍ୟ କିଛିଟା ଉଦାରତା ଦେଖାଇବା ଦେଖାଯାଏ। ଆର୍ଥିକ ସ୍ଥିତିରୁ ସ୍ୱଚ୍ଛଳ ଥିବା ବା ସାମାଜିକ ପ୍ରତିପତ୍ତି ଥିବା ଦଳିତ ବ୍ୟକ୍ତିଙ୍କର ପରିବାରରେ ଆବଶ୍ୟକୀୟ ପୂଜା, କର୍ମକାଣ୍ଡ ସମାହିତ କରିବାରେ ପୂଜକ ଶ୍ରେଣୀର ବ୍ୟକ୍ତି ବିଶେଷ ଏତେ ଜାତିଗତ ବୈଷମ୍ୟକୁ ଗୁରୁତ୍ୱ ଦେଉ ନଥିବା ଦେଖାଯାଏ, ଯାହା ଗୋଟିଏ ପିଢି ତଳେ ଅଚିନ୍ତନୀୟ ଥିଲା। ସମ୍ଭବତଃ ଆର୍ଥିକ ପ୍ରାପ୍ୟର ଆଶା ଯୋଗୁଁ କିଛିଟା ନମନିୟତା ପୂଜକ ଶ୍ରେଣୀ ଭିତରେ ପ୍ରକାଶ ପାଉଥିବା ଦେଖାଯାଏ। ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ଓ ପଦପଦବୀରେ ଥିବା ଦଳିତ ବ୍ୟକ୍ତିମାନଙ୍କର ପରିବାରରେ ଏସବୁ କାର୍ଯ୍ୟ କରିବା ନେଇ ସମାଜରେ ବା ସହରୀ ଜୀବନରେ ଏତେ ପ୍ରତିବନ୍ଧକ ପ୍ରାୟତଃ ନାହିଁ।

ଏସବୁ ସତ୍ତ୍ୱେ ସମାଜରେ ଏକ ସଂସ୍କାରବାଦୀ ଚେତନାର ବିକାଶ ସେପରି ତ୍ୱରାନ୍ୱିତ ହେଉଛି କି ? ଏକ ସଂସ୍କାରବାଦୀ ଚେତନାର ମୂଳଭିତ୍ତି ଏ ଯୁଗର କେତେକ ସାର୍ବଜନୀନ ମୂଲ୍ୟବୋଧଦ୍ୱାରା ପରିପୁଷ୍ଟ ହେଇଥିବା ମନେହୁଏ। ବିଶେଷକରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଆଧାରିତ ହେତୁବାଦ, ବ୍ୟକ୍ତିମର୍ଯ୍ୟାଦା ଆଧାରିତ ମାନବବାଦ ଓ ସାମାଜିକ ନ୍ୟାୟ ଆଧାରିତ ଗଣତାନ୍ତ୍ରିକ ଚେତନା ଏ ଯୁଗର କେତେକ ସର୍ବମାନ୍ୟ ମୂଲ୍ୟବୋଧ କହିଲେ ଅତ୍ୟୁକ୍ତି ହେବ ନାହିଁ। ତେବେ ଏହି ମୂଲ୍ୟବୋଧର ବିକାଶଦ୍ୱାରା ସମାଜରେ ଏସବୁ ମୂଲ୍ୟବୋଧ ବ୍ୟଷ୍ଟି ଓ ଗୋଷ୍ଠୀ ଜୀବନରେ ପ୍ରତିଫଳିତ ନ ହୋଇ କେବଳ ଆର୍ଥିକ ବାଧ୍ୟବାଧକତା ଜନିତ କାରଣ ନେଇ ପରିସ୍ଥିତିରେ କିଛି ଉଦାରତା ପ୍ରକାଶ ପାଇବା ବ୍ୟବସ୍ଥାରେ ଗୁଣାତ୍ମକ ପରିବର୍ତ୍ତନ ନୁହେଁ। ପରନ୍ତୁ ଏକଦା ମନୁବାଦୀ ବ୍ୟବସ୍ଥା ସମାଜରେ ଯେଉଁ ସାମାଜିକ ବିଭେଦ ଓ ତାକୁ ଆଧାର କରି ଆର୍ଥିକ ଶୋଷଣର ଜାଲ ବିସ୍ତାର କରିଥିଲା ତାକୁ ନୂଆ ରଙ୍ଗରେ ପ୍ରସାର କରିବାକୁ ପ୍ରୟାସ କରିବା ପ୍ରତୀୟମାନ ହୁଏ।

ତେବେ ଯେଉଁ ବ୍ୟବସ୍ଥା ଓ ତାହାର ଅନ୍ତର୍ନିହିତ ଦର୍ଶନଦ୍ୱାରା ସମାଜର ଅଗଣିତ ମଣିଷ ଲାଞ୍ଛିତ ଓ ଶୋଷିତ ହୋଇ ପୁରୁଷ ପୁରୁଷ ଧରି ରହିଥିଲେ, ସେହି ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉଠାଇ ଯଦି ସେମାନେ ତାକୁ ପରିବର୍ତ୍ତନ କରିବାରେ ସମର୍ଥ ହୋଇ ନାହାନ୍ତି ତେବେ ବ୍ୟବସ୍ଥାରେ ଯେ ମୌଳିକ ପରିବର୍ତ୍ତନ ଘଟିଛି ତାହା କୁହାଯାଇ ପାରିବ ନାହିଁ। ବରଂ ସ୍ଥଳବିଶେଷରେ ଦଳିତ ସଚେତନ ବ୍ୟକ୍ତିବିଶେଷ ନିଜର କିଛିଟା ଆର୍ଥିକ ସ୍ୱଚ୍ଛଳତା ଯୋଗୁଁ ନିଜର ସାଂସ୍କୃତିକ ଉତ୍‌ଥାନର ଭ୍ରମରେ ପଡ଼ି ମନୁବାଦୀ ବ୍ୟବସ୍ଥାର ନିଗଡ଼ ଭିତରକୁ ପ୍ରବେଶ କରିବାକୁ ଚାହୁଁଛନ୍ତି। ଗୋଟିଏ ଦୁଇଟି ପିଢି ତଳେ ମନୁବାଦୀ ସାମାଜିକ ପରମ୍ପରାରେ ଦଳିତ ହୋଇ ରହିଥିବା ଏକ ଜନଗୋଷ୍ଠୀର ଏକ ସୀମିତ ଅଂଶ ଯଦି ସଂପ୍ରତି ସେହି ପରମ୍ପରାରେ ଗୃହୀତ ହେଉଛନ୍ତି ତାହାକୁ ନିଜର ସାଂସ୍କୃତିକ ଉତ୍ତରଣ ବୋଲି ମନେକରିବା ଯଥାର୍ଥ ହେବ କି ? ବ୍ୟବସ୍ଥାରେ ପରିବର୍ତ୍ତନ ନ ଘଟିଲେ ଏହା କେଉଁ ସାମାଜିକ ଲକ୍ଷ୍ୟ ପୂରଣ କରିବ ? ବରଂ ପୂଜକ ଗୋଷ୍ଠୀର ଶୋଷଣ ବଳୟ ଭିତରକୁ ସମାଜର ଦଳିତ ଗୋଷ୍ଠୀର ସଂପନ୍ନ ବ୍ୟକ୍ତିମାନେ ପ୍ରବେଶ କରି ସେହି ଶୋଷଣ ବଳୟକୁ ଅଧିକ ପ୍ରସାରିତ କରିବା ସମାନ ହେବ ନାହିଁ କି ?

ଏହାର ବଳିଷ୍ଠ ଉଦାହରଣ ଆମର ସାମାଜିକ ଜୀବନର ଘଟଣା ପ୍ରବାହରୁ ଅନୁମେୟ। ଗତ କିଛି ଦଶନ୍ଧି ଭିତରେ ଗାଁଠାରୁ ସହର ପର୍ଯ୍ୟନ୍ତ ବିଭିନ୍ନ ଜାଗାରେ ନୂଆ ପୂଜାପୀଠ, ମନ୍ଦିରମାନ ନିର୍ମାଣ ହେଉଛି। କେତେକ ଧାର୍ମିକ ପୂଜା, ମାନସିକ, ପର୍ବପର୍ବାଣି

ଯାହା ଖୁବ୍ ସୀମିତ ପରିସରରେ ଅତି ମୁଷ୍ଟିମେୟ ଲୋକ ନିର୍ବାହ କରୁଥିଲେ ଏହା ଏବେ ଆଶାତୀତ ଭାବେ ବୃଦ୍ଧି ପାଇବାରେ ଲାଗିଛି। କେଉଁ କଳ୍ପିତ ଦିଅଁ ଦେବତା ମଣିଷର ଅଭିଳଷିତ ଲକ୍ଷ୍ୟ ପୂରଣ କରିବେ ବୋଲି ମନୋଭାବ ନେଇ ସମାଜର ଯୁବ ପିଢି ବିଶ୍ୱାସ କରୁଛନ୍ତି। ସମସ୍ୟା ବହୁଳ ଜୀବନ ସଂଗ୍ରାମରେ କେତେ ବାବା ଧାର୍ମିକ କାର୍ଯ୍ୟରେ ମନ ଦେବାକୁ ଲୋକମାନଙ୍କୁ ପ୍ରବଚନ ମାଧ୍ୟମରେ ପ୍ରଚୋଦିତ କରୁଛନ୍ତି। ସେହିପରି ଦେଶର ଗଣମାଧ୍ୟମ ଧାର୍ମିକ ବିଶ୍ୱାସ ଆଧାରିତ ନାନା ଅହେତୁକ ବିଶ୍ୱାସ ଓ ପାରଲୌକିକ ଭାବନାକୁ ପ୍ରଚାର କରୁଛି। ଏସବୁର ଏକ ସମ୍ମିଳିତ ପ୍ରଭାବ ସମାଜର ଯୁବ ଗୋଷ୍ଠୀକୁ ନାନା ଭାବରେ ପ୍ରଭାବିତ କରୁଛି। ସାମାଜିକ ବ୍ୟବସ୍ଥାରେ ଏକ ପ୍ରତିକୂଳ ଆର୍ଥିକ ସ୍ଥିତିରେ ଥାଇ ସୁବିଧା ସୁଯୋଗରୁ ବଞ୍ଚିତ ହେଉଥିବା ଜନଗଣ, ବିଶେଷ କରି ଦଳିତ ଯୁବଗୋଷ୍ଠୀ, ଏହି ସମ୍ମୋହନ ଯୁକ୍ତ ପ୍ରଚାରରେ ପ୍ରଭାବିତ ହେଉଛନ୍ତି। ସାମାଜିକ ସଚେତନତା ଓ ହେତୁବାଦୀ ଦୃଷ୍ଟିଭଙ୍ଗୀର ଅଭାବରେ ସେମାନେ ସେମାନଙ୍କର ଦୁର୍ଗତି ପାଇଁ ଭାଗ୍ୟ, କର୍ମଫଳକୁ ଦୋଷ ଦେଇ ଏସବୁରୁ ତ୍ରାଣ ପାଇଁ ନାନା ଧାର୍ମିକ ବିଶ୍ୱାସ, ମାନସିକ, ପୂଜା, କର୍ମକାଣ୍ଡକୁ ଗ୍ରହଣ କରୁଛନ୍ତି। ଏସବୁ କରିବାଦ୍ୱାରା ଦୈବୀ ଆଶୀର୍ବାଦରୁ ସେମାନଙ୍କ ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ହେବା ସହ ସାମାଜିକ ସ୍ତରରେ ସମ୍ମାନ ବଢିବ ବୋଲି ବିଶ୍ୱାସ କରୁଛନ୍ତି।

ତେବେ ଏହା ଯେ ଏକ ଭ୍ରାନ୍ତି ଏହା ମନେହୁଏ। କୌଣସି ଧାର୍ମିକ ମାନସିକ ବା ପୂଜାପାର୍ବଣ ସେମାନଙ୍କ ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ଆଣିବ ନାହିଁ, ବରଂ ସେମାନଙ୍କୁ ଅଧିକ ଶୋଷିତ କରିବ। ସେମାନଙ୍କର ଚେତନା ଯେତିକି ଧାର୍ମିକ ଚିନ୍ତା, ପୂଜା, କର୍ମକାଣ୍ଡ ଭିତରେ ନିମଜ୍ଜିତ ହେବ ସେମାନେ ସେତିକି ମନୁବାଦୀ ବ୍ୟବସ୍ଥାରେ ଦଳିତ ଓ ଶୋଷିତ ହୋଇ ରହିବେ। ସେମାନଙ୍କର ଧାର୍ମିକ ଅନୁରକ୍ତି ମନୁବାଦୀ ଶୋଷଣକୁ ଅଧିକ ବଳିଷ୍ଠ କରିବ। ଯେତେ ପୂଜାସ୍ଥଳୀ ଓ ଧାର୍ମିକ କାର୍ଯ୍ୟକଳାପ ସମାଜରେ ବୃଦ୍ଧି ପାଇବ ତାହାର ସୁଫଳ ସମାଜର ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ହିଁ ପାଇବ। ଧର୍ମ ନାମରେ ଏକ ଶୋଷଣବାଦୀ ବ୍ୟବସ୍ଥାକୁ ଅଧିକ ଜୀବନ୍ତ କରି ରଖାଯିବ, ଫଳରେ ଦଳିତ ଯୁବକମାନେ ଏକ ଅନ୍ୟାୟ ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବେ ନାହିଁ।

କୌଣସି କାଳ୍ପନିକ ଦିଅଁ ଦେବତା ମଣିଷର ସମସ୍ୟାକୁ ସମାଧାନ କରନ୍ତି ନାହିଁ ବା ଜନଗଣଙ୍କର ଜୀବନଧାରଣ ମାନରେ ଉନ୍ନତି ଆଣନ୍ତି ନାହିଁ। ମଣିଷର ଉଦ୍ୟମ, ଉନ୍ନତ ସାମାଜିକ ବ୍ୟବସ୍ଥା ଓ ମାନବବାଦୀ ଚେତନାଦ୍ୱାରା ସମାଜର ସାଂସ୍କୃତିକ ବିକାଶ ସମ୍ଭବ ହୋଇଥାଏ। ଶୋଷଣରହିତ ଓ ସମତାପୂର୍ଣ୍ଣ ବ୍ୟବସ୍ଥାର ପ୍ରଚଳନ ଫଳରେ ସମାଜର ପ୍ରଗତି ତ୍ୱରାନ୍ୱିତ ହୋଇଥାଏ। ତେବେ ଆଜିର ଦୃଶ୍ୟପଟରେ ଶିକ୍ଷାର ମହତ୍ତ୍ୱ, ଯୁଗ ଚେତନା ଓ ପ୍ରତିଯୋଗିତାର ମୂଲ୍ୟକୁ ବୁଝି ପାରୁଥିବା ଯୁବକ ଯୁବତୀମାନେ ନିଜର ଜୀବନଧାରାରେ ପରିବର୍ତ୍ତନ ଆଣିବାକୁ ସମର୍ଥ ହେବେ। ଅଥଚ ଯେଉଁମାନେ କିଛି ରହସ୍ୟମୟ ଭାବନା ଭିତରେ ରହି ନିଜର ଭାଗ୍ୟ, କର୍ମଫଳରେ ବିଶ୍ୱାସ କରି କଳ୍ପିତ ଦିଅଁ ଦେବତା ସେମାନଙ୍କ ସ୍ଥିତିରେ ପରିବର୍ତ୍ତନ ଆଣିବେ ବୋଲି ଭାବିବେ ସେମାନେ ବାସ୍ତବତାଠାରୁ ଦୂରେଇ ଯିବେ। ଯେଉଁମାନେ ମାନବିକ ମର୍ଯ୍ୟାଦାକୁ ପ୍ରାଧାନ୍ୟ ଦିଅନ୍ତି ଓ ଏକ ଶୋଷଣମୁକ୍ତ ସମାଜର ସ୍ୱପ୍ନ ଦେଖନ୍ତି ସେମାନେ ସାମାଜିକ ବାସ୍ତବତା ବିଷୟରେ ଜନଗଣଙ୍କୁ, ବିଶେଷକରି ସମାଜର ଦଳିତ ଓ ଶୋଷିତ ବର୍ଗକୁ ସଚେତନ କରାଇବା ସେମାନଙ୍କ ପାଇଁ ବଡ଼ ଆହ୍ୱାନ ମନେହୁଏ।

# ଭୁବନ ଗ୍ରାମ : ଏକ ବ୍ୟକ୍ତିଗତ ଆଲେଖ୍ୟ

ଏକଦା ଭାରତର ସବୁଠାରୁ ବଡ଼ ଗ୍ରାମ ଥିଲା ଢେଙ୍କାନାଳ ଜିଲ୍ଲାର ଭୁବନ ଗ୍ରାମ । ଏହି ଗ୍ରାମଟି ଥିଲା ଦୁଇଟି ପଞ୍ଚାୟତ । ତେବେ ଯେତେବେଳେ ଗ୍ରାମର ଲୋକସଂଖ୍ୟା ୧ ୯ ୭ ୧ ଜନଗଣନା ଅନୁଯାୟୀ ଦଶ ହଜାରରୁ ଅଧିକ ହେଲା, ତାର କିଛି ବର୍ଷପରେ ଗ୍ରାମଟି ଏକ ବିଜ୍ଞାପିତ ଅଞ୍ଚଳ ବା ଏନ୍.ଏ.ସି. ଘୋଷିତ ହେଲା । ଗ୍ରାମୀଣ ଜୀବନର ଯାହା ସବୁ ସାଧାରଣ ଲକ୍ଷଣ, ସେ ସବୁ ଭୁବନରେ ପରିଲକ୍ଷିତ ହୋଇଥାଏ । ଏହି ଗ୍ରାମଟିରେ ମୋର ଜନ୍ମ ଓ ଗ୍ରାମୀଣ ଜୀବନଧାରା ସହ ମୁଁ ଏକଦା ଘନିଷ୍ଠ ଭାବରେ ସମ୍ବନ୍ଧିତ ଥିଲି । ତେବେ ବୟସର ଅପରାହ୍ନରେ ଗ୍ରାମ ସହିତ ସମ୍ବନ୍ଧ ଶିଥିଳ ହୋଇ ଆସିଲାଣି ଓ ଗ୍ରାମକୁ ଯିବା ପ୍ରାୟତଃ ପରିସ୍ଥିତି ଯୋଗୁଁ ସମ୍ଭବ ହେଉ ନାହିଁ । ତେବେ ଗ୍ରାମର ବହୁ ବିଷୟ ସ୍ମୃତିରେ ଅମଳିନ ରହିଛି ।

ବ୍ରାହ୍ମଣୀ ନଦୀକୂଳରେ ଅବସ୍ଥିତ ଏହି ଗ୍ରାମଟି କଂସାବାସନ କୁଟୀର ଶିଳ୍ପ, କେତେକ ଅନନ୍ୟ ପରମ୍ପରା ଓ ସ୍ୱାଧୀନତା ପୂର୍ବରୁ ପ୍ରଜାମଣ୍ଡଳ ଆନ୍ଦୋଳନ ପାଇଁ ଓଡ଼ିଶାରେ ବେଶ୍ ଜଣାଶୁଣା । ଗାଆଁରେ ଏବେ ସହରୀ ଜୀବନର ବହୁ କଥା ଉପଲବ୍ଧ ହେଲାଣି, ତଥାପି ଅନେକ ବିଷୟ ପୂର୍ବପରି ରହିଛି । ଭୁବନରେ ଅଧିକାଂଶ ଜାତିର ଲୋକ ବାସ କରନ୍ତି ଓ ଗାଆଁର ତିନି ଶେଷ ମୁଣ୍ଡରେ ଦୁଇଟି ପାଣ ସାହି ଓ ଗୋଟିଏ ହାଡି ସାହିରେ ଦଳିତ ଲୋକମାନେ ପିଢି ପିଢି ଧରି ରହି ଆସିଛନ୍ତି । (ଏବେ ବି ସେମାନଙ୍କୁ ଅନେକ ଲୋକ ହରିଜନ କହୁଛନ୍ତି) । ଆମ ପିଲାବେଳୁ ଦଳିତ ଲୋକମାନଙ୍କର ଦାରିଦ୍ର୍ୟ ଆମେ ଦେଖୁଛୁ । ସେମାନଙ୍କର ଜମିବାଡ଼ି ନାହିଁ, ଘର କହିଲେ ମୁଣ୍ଡ ଗୁଞ୍ଜିବା ପାଇଁ ସାଧାରଣ ଝାଟିମାଟିର ଘର । ସେମାନେ ପ୍ରାୟ କଠିନ ପରିଶ୍ରମ କରି କିମ୍ବା ମୂଲ ଲାଗି ଜୀବନ ନିର୍ବାହ କରିବାର ଚିତ୍ର ପିଲାଟି ବେଳୁ ମୁଁ ଦେଖି ଆସିଛି । ସେମାନେ ଗାଆଁରେ ଅସ୍ପୃଶ୍ୟ ବୋଲି ପରିଗଣିତ ହୁଅନ୍ତି । ପିଲାବେଳେ ଦେଖିଛି ଯେ ସେମାନଙ୍କ ଜୀବନ ବଡ଼ ଦୟନୀୟ । ସର୍ବସାଧାରଣ କୂଅ ପୋଖରୀରୁ ସେମାନେ ପାଣି ନେଇପାରିବେ ନାହିଁ । ପୋଖରୀରେ ସେମାନଙ୍କର ତୁଠ ଭିନ୍ନ ଓ ଏଥି ସହିତ ସାଧାରଣ ଶ୍ମଶାନମାନଙ୍କରେ ସେମାନେ ଶବଦାହ କରିପାରିବେ ନାହିଁ । କେଜାଣି କାହିଁକି ପିଲା ବେଳୁ ଅର୍ଥାତ୍ ସ୍କୁଲ ଜୀବନରୁ ସେମାନଙ୍କର ଦୁରାବସ୍ଥା ମୋତେ କଷ୍ଟ ଦିଏ ଓ ଅସ୍ୱସ୍ତିକର ଲାଗେ ।

ପାଣ ସାହିର ସ୍ତ୍ରୀଲୋକମାନେ ସବର୍ଣ୍ଣ ସାହିମାନଙ୍କୁ କୋଳି, କେନ୍ଦୁ, ଦାନ୍ତକାଠି ବିକ୍ରିକରି ଆଣିଲେ ଲୋକେ ଚାଉଳ ଗଣ୍ଡିଏ ଦେଇ ତାହା କିଣିବେ କିନ୍ତୁ କେହି ସେମାନଙ୍କୁ ଛୁଇଁବେ ନାହିଁ। କେହି ଅଜାଣତରେ ଛୁଇଁ ଦେଲେ ଗାଧୋଇବାକୁ ପଡ଼ିବ। ଗ୍ରାମୀଣ ପରିବେଶରେ ସେମାନଙ୍କ ପ୍ରତି ଏହି ଅମାନବୀୟ ବ୍ୟବହାର ମୋ ମନରେ ପ୍ରତିକ୍ରିୟା ସୃଷ୍ଟିକରେ, କିନ୍ତୁ ମୁଁ କିଛି କହିପାରେ ନାହିଁ।

୧୯୬୪ ମସିହାରେ ମୁଁ ନବମ ଶ୍ରେଣୀର ଛାତ୍ର ଥାଏ। ସେହି ବର୍ଷ ଆମ ଗ୍ରାମକୁ ବିନୋବାଜୀ ତାଙ୍କ ଭୂଦାନ ପଦଯାତ୍ରା ସମୟରେ ଆସିଥିଲେ। ଓଡ଼ିଶାର ବହୁ ବିଶିଷ୍ଟ ଗାନ୍ଧୀବାଦୀମାନେ ବିନୋବାଙ୍କ ସହିତ ଆସିଥାନ୍ତି। ଆମେ ଛାତ୍ରମାନେ ବିନୋବାଙ୍କ କାର୍ଯ୍ୟକ୍ରମ ପାଇଁ ଭୂଦାନ ଗୀତ ଗାଇ ଗାଁରୁ ଟଙ୍କା, ଚାଉଳ ସଂଗ୍ରହ କରିଥିଲୁ। ଆମ ହାଇସ୍କୁଲ ପଡ଼ିଆରେ ଅପରାହ୍ନ ଚାରିଟାରେ ସଭାର ଆୟୋଜନ ହୋଇଥାଏ। ଗାଆଁର ପ୍ରାୟ ପାଞ୍ଚ/ଛଅ ହଜାର ଲୋକ ସଭାରେ ଥାଆନ୍ତି। ବାଡ଼ ଦିଆଯାଇ କେଉଁପଟେ କିଏ ବସିବେ ତାହା ଗାଆଁର ମୁଖିଆମାନେ ସ୍ଥିର କରିଥାନ୍ତି। ଦଳିତ ଲୋକମାନେ ଟିକିଏ ଦୂରରେ ଅଲଗା ବସିବେ। ବିନୋବା ଯେତେବେଳେ ସଭାମଞ୍ଚକୁ ଆସିଲେ ଦୂରରେ କାହିଁକି ଲୋକମାନେ ବସିଛନ୍ତି ପଚାରିଲେ। କୁହାଗଲା ଯେ ସେମାନେ ହରିଜନ ଲୋକ, ତେଣୁ ଗାଆଁର ଲୋକମାନେ ଦୂରରେ ତାଙ୍କ ପାଇଁ ବସିବାକୁ ବ୍ୟବସ୍ଥା କରିଛନ୍ତି। ସେହି ସଭାରେ ବିନୋବା ପ୍ରଥମେ ହିନ୍ଦୁ ଅସ୍ପୃଶ୍ୟତା ବିରୁଦ୍ଧରେ କହିଲେ। ଅସ୍ପୃଶ୍ୟତା ଏକ ସାମାଜିକ କଳଙ୍କ, ଏହା ମାନବିକତାବିରୋଧୀ ବୋଲି ମନ୍ତବ୍ୟ ଦେଲେ। ଏହାପରେ ଭୂଦାନ କର୍ମୀମାନେ ଦଳିତମାନଙ୍କ ପାଖକୁ ଯାଇ ସେମାନଙ୍କୁ ଡାକି ଆଣି ସଭାରେ ବସାଇଲେ। ସାମାନ୍ୟ ଗୁଞ୍ଜରଣ ହେଲା, ତେବେ ସମସ୍ତେ ଏକାଠି ବସିଲେ ଓ ବିନୋବାଙ୍କର ଭାଷଣ ଶୁଣିଲେ। ଏହି ଘଟଣା ମୋ ପରି କେତେକ ଛାତ୍ରମାନଙ୍କୁ ବହୁତ ସ୍ପର୍ଶ କରିଥିଲା। ଆମର ଲକ୍ଷ୍ୟ ରହିଲା ଅସ୍ପୃଶ୍ୟତା ଓ ଜାତିପ୍ରଥାକୁ ବିରୋଧ କରିବା। ତେବେ ଗାଁର ଓ ସାହିର ବୟସ୍କ ଲୋକମାନେ ବିରୋଧ କଲେ ମଧ୍ୟ ଆମେ ହାଇସ୍କୁଲ ସ୍ତରରୁ ଏହି କୁତ୍ସିତ ପ୍ରଥା ବିରୁଦ୍ଧରେ ଯତ୍ କିଞ୍ଚିତ୍ ଆମର ସ୍ୱର ଉତ୍ତୋଳନ କରୁଥିଲୁ। ଆମକୁ କେହି ବାରଣ କଲେ ଆମେ ବିନୋବା, ରମା ଦେବୀ, ମାଳତୀ ଦେବୀ, ନବବାବୁ(ସେମାନେ ବିନୋବାଙ୍କ ସହ ଆମ ଗାଆଁକୁ ଯାଇଥିଲେ) ଇତ୍ୟାଦିଙ୍କ ଉଦାହରଣ ଦେଇ ଲୋକମାନଙ୍କୁ ବୁଝାଇବାକୁ ପ୍ରୟାସ କରୁ। ଦଳିତ ପିଲାମାନେ କିପରି ପାଠ ପଢିବେ, ସ୍କୁଲକୁ ଯିବେ ଆମେ ଦଳିତ ଲୋକମାନଙ୍କୁ ଏହି କଥା କହୁ। ତେବେ ସେମାନଙ୍କର

ଉତ୍କଟ ଦାରିଦ୍ର୍ୟ ଯୋଗୁଁ ସେମାନେ ପ୍ରାୟତଃ ପ୍ରାଥମିକ ସ୍ତରରୁ ପାଠ ଛାଡ଼ି ଦିଅନ୍ତି ଓ ଉଚ୍ଚଶିକ୍ଷା ସ୍ତରକୁ ଆସି ପାରନ୍ତି ନାହିଁ।

ସତୁରୀ ଦଶକରେ ଭୁବନ ଏନ୍‌ଏସି ହେଲା, କଲେଜ୍ ସ୍ଥାପିତ ହେଲା ଓ ସହରୀ ପରିବେଶ ଆସ୍ତେ ଆସ୍ତେ ଗାଆଁରେ ପ୍ରବେଶ କଲା। ଗାଆଁରେ ସେଲୁନ୍ ଖୋଲିଲା, ରିକ୍ସା ପ୍ରଚଳନ ହେଲା, ସାହି ବସ୍ତିକୁ ପାଇପ୍ ପାଣି ଯୋଗାଣ ହେଲା। ଗାଆଁରେ ତା ପୂର୍ବରୁ ଧାନକଳ ବସିଲା। ତେବେ ଗାଆଁର ସେଲୁନ୍‌ମାନଙ୍କରେ ଦଳିତ ଲୋକମାନେ ବାଳ କାଟି ପାରୁ ନଥିଲେ କିମ୍ବା ଧାନକଳମାନଙ୍କରେ ଧାନ ପେଷାଇ ପାରୁ ନଥିଲେ। ଆମେ କେତେକ ଯୁବକ ଏଥିପାଇଁ ଗାଆଁର ଲୋକମାନଙ୍କୁ ବୁଝାଇବାକୁ ଚେଷ୍ଟା କରିଛୁ, ତେବେ ଏହି ଘଟଣାକୁ ନେଇ ଗାଆଁରେ ପ୍ରତିକ୍ରିୟା ହୋଇଛି ଓ ଭୟଙ୍କର ଅଶାନ୍ତି ହେବା ଆଶଙ୍କାରେ ତାହା ସଫଳ ହୋଇନାହିଁ। ମୁଁ ୧୯୭୪ରେ ଅଧ୍ୟାପକ ହେଲାପରେ ମୋର ଆତ୍ମବିଶ୍ୱାସ ବଢ଼ିଲା। ୧୯୭୮ ମସିହାରେ ଦଶହରା ଛୁଟିରେ ମୁଁ ଗାନ୍ଧୀଜୀଙ୍କ ଉପରେ ଆମ ଗ୍ରାମରେ ଏକ ତିନିଦିନିଆ ସମ୍ମିଳନୀ କରିବାକୁ ଆୟୋଜନ କଲି। ତାହା ସହିତ ହାଡ଼ି ସାହିରେ ଦଳିତମାନଙ୍କ ସହ ଏକ ସାଧାରଣ ପଂକ୍ତି ଭୋଜନର କାର୍ଯ୍ୟକ୍ରମ ରଖିଲୁ। ଭୁବନର ସେତେବେଳକୁ ଅନେକ ଶିକ୍ଷିତ ଯୁବକ ବାହାରିଲେଣି। ତେବେ ମାତ୍ର ୨୦ ଜଣ ସାଥି ଆମ କାର୍ଯ୍ୟରେ ଯୋଗ ଦେଲେ ଓ ଅନେକ ଜାତି ଭିତରେ ଓ ପାରିବାରିକ ସ୍ତରରେ ବିରୋଧ ହେବ ବା ବାସନ୍ଦର ଭୟ ରଖି ପ୍ରତିଶ୍ରୁତି ଦେଇ ମଧ୍ୟ ଆସିଲେ ନାହିଁ। ଆମେ ଖବର ପାଇଲୁ ଯେ ଗାଆଁର ରକ୍ଷଣଶୀଳ ଲୋକମାନେ ଆମର ଏହି ପଂକ୍ତି ଭୋଜନ କାର୍ଯ୍ୟକ୍ରମକୁ ବିରୋଧ କରୁଛନ୍ତି ଓ ହୁଏତ ସେଠାରେ ଖାଇବା ବେଳେ ସେମାନେ କିଛି ଗଣ୍ଡଗୋଳ କରିବେ। ଆମେ ସ୍ଥିର କଲୁ ଯେ ଯଦି ଆମ ଗାଆଁର ଲୋକମାନେ ଆମକୁ ଆକ୍ରମଣ କରିବେ ବା ବାଡ଼େଇବେ ତେବେ ଆମେ ଅହିଂସ ରହି ତାକୁ ବିରୋଧ କରିବୁ। ତେବେ ସେପରି କିଛି ଅଘଟଣ ହେଲା ନାହିଁ। ବରଂ ଏହାକୁ ନେଇ ଅନେକ ଗୁଞ୍ଜରଣ ସୃଷ୍ଟି ହେଲା ଓ ଆମ ବିରୁଦ୍ଧରେ ପ୍ରକାଶ୍ୟରେ କିଛି ପଦକ୍ଷେପ ନେଲେ ସେମାନେ ଆଇନ ଦ୍ୱାରା ଦଣ୍ଡିତ ହୋଇପାରନ୍ତି ବୋଲି ଭୟରେ ଗ୍ରାମର ଜାତିବାଦୀ ଲୋକମାନେ ଆଉ ଅଗ୍ରସର ହେଲେ ନାହିଁ।

ଏସବୁ ଘଟଣା ଭିତରେ ମୋର ଦୃଢ ବିଶ୍ୱାସ ସୃଷ୍ଟି ହେଲା ଯେ ଜାତିପ୍ରଥା ଜନିତ ଉଚ୍ଚ ନୀଚ ଭେଦଭାବ ଆମ ସମାଜର ସବୁଠାରୁ ବଡ଼ କଳଙ୍କ। ଏହି ବ୍ୟବସ୍ଥାକୁ ଦୂର କରିବା ପାଇଁ ଜାତିବିହୀନ ବିବାହ (Casteless marriage)ର ପ୍ରସାର ହେବା ଆବଶ୍ୟକ।

ଜାତିପ୍ରଥାକୁ ନିର୍ମୂଳ କରିବାକୁ ହେଲେ ଅନ୍ତର୍ଜାତି ବିବାହ ବ୍ୟାପକ ହେବା ଦରକାର । ଏହା ସହିତ ମନୁବାଦୀ ବ୍ୟବସ୍ଥା ଓ ତତ୍‌ସଂଲଗ୍ନ ବ୍ରାହ୍ମଣବାଦୀ ପରମ୍ପରାକୁ ପ୍ରତ୍ୟାଖ୍ୟାନ କରିବା ଦରକାର । ସୁତରାଂ ଜାତି-ଜାତକ-ଯୌତୁକ-ବ୍ରାହ୍ମଣ ବିହୀନ ବିବାହ ଦ୍ୱାରା ସମାଜରେ ଏକ ସଂସ୍କାରବାଦୀ ଚେତନାର ବିକାଶ ହୋଇପାରିବ । ଫଳରେ ଆମ ଦେଶର ସାମାଜିକ ବ୍ୟବସ୍ଥାରେ ଗଣତାନ୍ତ୍ରିକ ମୂଲ୍ୟବୋଧର ପ୍ରସାର ହେବ । ଏହି ବିଚାରଦ୍ୱାରା ପରିଚାଳିତ ହୋଇ ମୋର ଏକ ବ୍ୟକ୍ତିଗତ ନିଷ୍ପତ୍ତି ହେଲା ଯେ ମୁଁ ଯଦି ବିବାହ କରିବି ତେବେ ଜାତିବିହୀନ ବିବାହ କରିବି ଓ ରକ୍ଷଣଶୀଳ ପରମ୍ପରାକୁ ଗ୍ରହଣ କରିବି ନାହିଁ । ଏ କ୍ଷେତ୍ରରେ ନାନା ଶଙ୍କା ଓ ଆଶଙ୍କା ରହିଲା । ନିଜର ସାନ ଭାଇ, ଭଉଣୀମାନେ କାଳେ ମୋ ପାଇଁ ଜୀବନରେ ନାନା ଅସୁବିଧାର ସମ୍ମୁଖୀନ ହେବେ ସେହି ଆଶଙ୍କା ଓ ବିବେକର ଦଂଶନରେ ମୁଁ ବିବାହ ନ କରିବାକୁ ସ୍ଥିର କରିନେଲି । ଏହା ସହିତ ବହୁ ଆର୍ଥିକ ଚାପ, ଭାଇ ଭଉଣୀଙ୍କର ଶିକ୍ଷାର ଦାୟିତ୍ୱ ଥିବାରୁ ବିବାହ ମୋ ପାଇଁ ଅନୁକୂଳ ହେବ ନାହିଁ ବୋଲି ମୁଁ ଧରିନେଲି । ବରଂ ବିବାହ ନ କରି ପାରିବାରିକ ଦାୟିତ୍ୱରୁ ମୁକ୍ତ ରହିଲେ ଯତ୍ କିଞ୍ଚିତ୍ ସାମାଜିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିପାରିବି ଏହି ଦୃଷ୍ଟିଭଙ୍ଗୀ ମୋର ଆସିଲା । ମୁଁ ଯେହେତୁ ଜଣେ ଭଲ ଛାତ୍ର ଥିଲି ଓ ସରକାରୀ କଲେଜରେ ଅଧ୍ୟାପକ ଥିଲି, ଆମ ଜାତିରୁ ବହୁ ସ୍ୱଚ୍ଛଳ ପରିବାରରୁ ମୋ ପାଇଁ ପ୍ରସ୍ତାବ ଆସୁଥାଏ ଓ ମୁଁ ବିନୟର ସହ ସେସବୁକୁ ମନା କରୁଥାଏ । ତେବେ ଘଟଣାଚକ୍ରରେ ଜଣେ ଆର୍ଯ୍ୟ-ସମାଜର ସନ୍ନ୍ୟାସୀଙ୍କ ସହ ମୋର ସମ୍ପର୍କ ଘନିଷ୍ଠ ହେଲା । ସେ ବି ବେଶ୍ ଦରଦୀ ଓ ବହୁ ସଂସ୍କାରବାଦୀ ଚେତନାର ବ୍ୟକ୍ତି ।

ମୋର ବାପା, ମା' କିଛି ସାଙ୍ଗ ସାଥି ମୋର ବିବାହ ପାଇଁ ସ୍ୱାମୀଜୀଙ୍କର ସାହାଯ୍ୟ ଲୋଡ଼ିଲେ । ତେବେ ସେ ମୋର ଦୃଷ୍ଟିଭଙ୍ଗୀ ଓ ମନୋଭାବ ବିଷୟରେ ମୋର ବାପା, ମା'ଙ୍କୁ ଜଣାଇଲେ ଓ ମୋର ବାପା, ମା' ପାଠ ନ ପଢ଼ିଥିଲେ ମଧ୍ୟ ମୋର ସଂସ୍କାରବାଦୀ ମନୋଭାବକୁ ଗ୍ରହଣ କଲେ । ମୁଁ 'ସର୍ବୋଦୟ' ପତ୍ରିକାରେ ବେଳେବେଳେ ଲେଖୁଥିଲି ଓ ଗାନ୍ଧୀ ସ୍ମାରକନିଧିରେ ସମ୍ପୃକ୍ତ ଥିଲି । ସୁତରାଂ ଶ୍ରୀମତୀ ମାଳତୀ ଚୌଧୁରୀ ମୋତେ ଜାଣିଥିଲେ ଓ ତାଙ୍କ ସହ ସ୍ୱାମୀଜୀଙ୍କର ବେଶ୍ ଭଲ ପରିଚୟ ଥିଲା । ଏହି ପରିସ୍ଥିତିରେ ମୋର ଜାତିବିହୀନ ବିବାହ ସ୍ୱାମୀଜୀ ସ୍ଥିର କରିଦେଲେ ଓ ମାଳତୀଦେବୀଙ୍କ ବାଜିରାଉତ ଛାତ୍ରାବାସ ପରିସରରେ କିଛି ସହଯୋଗୀଙ୍କ ଉପସ୍ଥିତିରେ ଆମର ଅଣପାରମ୍ପରିକ ବିବାହ ନିରାଡମ୍ବର ଭାବେ ସମ୍ପନ୍ନ ହେଲା । ମୋର ଏହି ସବୁ କାର୍ଯ୍ୟ ସମ୍ପର୍କୀୟଙ୍କ ଭିତରେ, ଜାତିରେ ଓ ଗ୍ରାମରେ ଆଲୋଡନ ସୃଷ୍ଟି କଲା । ଆମର ନିଜର ସମ୍ପର୍କୀୟମାନେ ଆମ ପରିବାର ସହିତ ସମ୍ପର୍କ ଛିନ୍ନ କରିଦେଲେ । ଗ୍ରାମର କିଛି ଜାତିବାଦୀ

ଲୋକ ଆମର ପରିବାର ପାଇଁ କେତେକ କଟକଣା ପାଇଁ ବି ଯୋଜନା କଲେ। ତେବେ ଆସ୍ତେ ଆସ୍ତେ ଆମର ସଂସ୍କାରବାଦୀ କାର୍ଯ୍ୟକ୍ରମ, ବନ୍ଧୁ ସାଥିଙ୍କର ମୋ ପ୍ରତି ସମର୍ଥନ ସବୁ ବିରୋଧକୁ କାଳକ୍ରମେ ଦୂର କରିଦେଲା।

ହାଇସ୍କୁଲ ଓ ଏପରିକି କଲେଜର ଛାତ୍ର ଥିବା ବେଳେ ମୋର ଧାରଣା ହେଉଥିଲା ଯେ ଆମ ଗ୍ରାମର ଲୋକମାନେ ବହୁ ରକ୍ଷଣଶୀଳ ଓ ସେମାନେ ଆଧୁନିକ ଜୀବନଧାରା ଓ ମୂଲ୍ୟବୋଧଠାରୁ ଦୂରରେ ରହିଛନ୍ତି। କିନ୍ତୁ ଧୀରେ ଧୀରେ ମୁଁ ଯେତେବେଳେ ବୃହତ୍ତର ସାମାଜିକ ପରିବେଶ ବିଷୟରେ ଜାଣିବାକୁ ପାଇଲି ସେତେବେଳେ ମୋର ଧାରଣା ଦୂର ହୋଇଗଲା। ଜାତିଆଣ ବିଚାର ଯେ ଏକ ମାନସିକତା ଓ ଯୁଗ ଯୁଗର ଧାର୍ମିକ ପରମ୍ପରାର ପରିଣତି ଏହା ମୋର ବିଚାର ସ୍ତରକୁ ଆସିଲା। ହିନ୍ଦୁ ସମାଜ ବ୍ୟବସ୍ଥା, ଜାତି ପ୍ରଥା, ବହୁ କୁସଂସ୍କାର ଇତ୍ୟାଦି ବିଷୟରେ ଯତ୍ କିଞ୍ଚିତ ଅଧ୍ୟୟନରୁ ମୁଁ ସାମାଜିକ ପରିବେଶ ବିଷୟକୁ ବୁଝିଲି। କାଳକ୍ରମେ ଜ୍ୟୋତିରାଓ ଫୁଲେ, ପେରିୟାର, ଆମ୍ବେଦକର, ଗୋରା ଓ ଗାନ୍ଧୀଙ୍କୁ ଅଧ୍ୟୟନ କରିବାଦ୍ୱାରା ଭାରତୀୟ ସମାଜର ପରିସ୍ଥିତିକୁ ବୁଝିବାରେ ସ୍ୱଚ୍ଛତା ଆସିପାରିଲା।

ଏବେ ସମାଜ ବେଶ୍ ଆଗକୁ ଗଲାଣି। ମୋର ମଧ୍ୟ ନିଜ ଗ୍ରାମ ସହିତ ସମ୍ପର୍କ କମି ଆସିଲାଣି। ତେବେ ଗାଆଁକୁ ଗଲେ ଦଳିତ ସାହିମାନଙ୍କୁ ଯାଇଥାଏ। ସେଠିକାର ପରିବେଶ ଅନେକଟା ବଦଳି ଗଲାଣି। ମୋ ପିଲାବେଳର ପରିବେଶ ଏବେ ନାହିଁ। ଦଳିତ ସାହିକୁ ଇଲେକ୍‌ଟ୍ରିକ୍, ପାଣି ପାଇପ୍ ଗଲାଣି। କିଛି ଲୋକ ଭଲ ଘର ବି କଲେଣି। ପୁଅ, ଝିଅ ପାଠ ପଢିଲେଣି। ଅସ୍ପୃଶ୍ୟତାର ମନୋଭାବ ଅନେକଟା କମି ଆସିଲାଣି। ତଥାପି ସେମାନେ ଦେଉଳ ମନ୍ଦିର ଭିତରେ ପ୍ରବେଶ କରିପାରୁ ନାହାନ୍ତି। ଧାନକଳମାନଙ୍କରେ ସପ୍ତାହରେ ଗୋଟିଏ ଦିନ ଧାନ ପେଷାଇ ପାରୁଛନ୍ତି। ବର୍ତ୍ତମାନ ପିଢ଼ିର ଲୋକମାନେ ଏହାକୁ ବିରୋଧ କରୁନାହାନ୍ତି। ହେଲେ ମାନସପଟରୁ ଜାତିଆଣ ମନୋଭାବ ଯାଇନାହିଁ। ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ମୂଲ୍ୟବୋଧଗୁଡ଼ିକ ସମାଜରେ ଦୃଢ଼ଭିତ୍ତି ନେଇ ନାହିଁ। ବରଂ ଅନ୍ୟ ଗ୍ରାମ ତୁଳନାରେ ଭୁବନରେ ଅନେକ କିଛି ପରିବର୍ତ୍ତନର ଅବହାଓ୍ୱା ମୁଁ ଅନୁଭବ କରୁଛି। କିନ୍ତୁ ଦାରିଦ୍ର୍ୟ ଓ ନିରକ୍ଷରତାର ମାତ୍ରା ଦଳିତ ଲୋକଙ୍କ ଭିତରେ ସବୁଠାରୁ ବେଶି ଉତ୍କଟ ହୋଇ ରହିଛି।

ଆସ୍ତେ ଆସ୍ତେ ହେତୁବାଦରେ ମୋର ପ୍ରତ୍ୟୟ ଦୃଢ଼ ହେଲା। ହେତୁବାଦ ମୋ ପାଇଁ ସବୁଠାରୁ ଶ୍ରେଷ୍ଠ ଜୀବନ ଦର୍ଶନ ହେଲା। ହେତୁବାଦର ଏହି ବାଣୀ ମୋତେ ପ୍ରେରଣା ଦେଲା

ଯେ, ମଣିଷ ହିଁ ତାର ସମାଜ, ସଂସ୍କୃତି, ପରମ୍ପରା ଓ ବିଚାରବୋଧର ନିର୍ମାତା। କୌଣସି ଈଶ୍ୱର, ଦେବତା ମଣିଷର ଭାଗ୍ୟ ବା ପରିସ୍ଥିତି ପରିବର୍ତ୍ତନ କରିପାରିବେ ନାହିଁ। ବରଂ ମଣିଷର ପ୍ରୟାସଦ୍ୱାରା ଉନ୍ନତ ବ୍ୟବସ୍ଥାର ବିକାଶ ହୋଇପାରିବ ଓ ଜୀବନର ଗୁଣାତ୍ମକ ମାନ ଉନ୍ନତ ହେବ। ଆଧୁନିକ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଗଣତାନ୍ତ୍ରିକ ମୂଲ୍ୟବୋଧ, ମାନବବାଦୀ ବିଚାରଧାରା ଓ ସୃଜନାତ୍ମକ କଳାର ବିକାଶଦ୍ୱାରା ସମାଜ ଉନ୍ନତ ହୋଇପାରିବ। ଏସବୁ ହିଁ ହେତୁବାଦର ସାରମର୍ମ। ହେତୁବାଦୀ ଜୀବନ ଦର୍ଶନ ପାରଲୌକିକ ଜୀବନର ପରିକଳ୍ପନା କରେନାହିଁ ବରଂ ମଣିଷର ସମାଜକୁ ଉନ୍ନତ, ନ୍ୟାୟପୂର୍ଣ୍ଣ, ସମତାଭିତ୍ତିକ ଓ ମାନବବାଦୀ କରିବାକୁ ପ୍ରୟାସ କରେ। ହେତୁବାଦୀମାନେ ସବୁ ସଭ୍ୟତାରେ କ୍ରାନ୍ତିକାରୀ ବିଚାରକ ଓ ନ୍ୟାୟପୂର୍ଣ୍ଣ ସମାଜର ସ୍ୱପ୍ନଦ୍ରଷ୍ଟା।

ମୁଁ ଛାତ୍ର ଜୀବନରୁ ଏକ ଭେଦଭାବପୂର୍ଣ୍ଣ ସାମାଜିକ ବ୍ୟବସ୍ଥାରେ ପ୍ରତିକ୍ରିୟାଶୀଳ ହେଉଥିଲି। ଆଜି ଜୀବନର ଚଲାପଥରେ ବହୁ ବାଟ ଆସିବା ପରେ ବି ଯେତେବେଳେ ଚାରିପାଖର ସମାଜକୁ ଦେଖେ ସେତେବେଳେ ପ୍ରାଣରେ ବିଦ୍ରୋହ ସୃଷ୍ଟି ହୁଏ। କାହିଁକି ସମାଜରେ ସଭ୍ୟ ମୂଲ୍ୟବୋଧଗୁଡ଼ିକର ଭିତ୍ତି ଦୃଢ଼ ହେଉନାହିଁ। କାହିଁକି ଚାରିଆଡ଼େ ଏତେ ଦୁର୍ନୀତି ବ୍ୟାପୁଛି। ଆମର କର୍ମ-ସଂସ୍କୃତି ଏତେ ନିମ୍ନମାନର ହୋଇ କାହିଁକି ରହିଛି ? ଏକବିଂଶ ଶତାବ୍ଦୀରେ ବି ଜାତି-ଧର୍ମକୁ ନେଇ ସମାଜ ଭାଗ, ଭାଗ ହେଉଛି, ସାମ୍ପ୍ରଦାୟିକତାର ପ୍ରସାର ହେଉଛି, ଜାତିଆଣ ମାନସିକତା ସମାଜରେ ବଳବତ୍ତର ରହିଛି। ପୂଜା, ପାର୍ବଣ ଓ ଧାର୍ମିକ ଆବେଗ ମାନବିକ ମୂଲ୍ୟବୋଧ ପ୍ରସାର କରିବା ପରିବର୍ତ୍ତେ କୁସଂସ୍କାର, ଜାତିଆଣ ମନୋଭାବ ଓ ଅହେତୁକ ପରମ୍ପରାମାନ ସୃଷ୍ଟି କରି ଚାଲିଛି। ହିଂସା ଓ ସନ୍ତ୍ରାସବାଦ ବଢ଼ିବାରେ ଲାଗିଛି।

ଏବେ ବି ମୋର ସ୍ୱପ୍ନ ଭିତରେ ମୁଁ ଭାବେ ଯଦି ସମାଜରୁ ଜାତି, ଧର୍ମମାନ ଲୋପ ପାଆନ୍ତା ତେବେ ଆମ ସମାଜ ଓ ସଂସାର କେତେ ମନ୍ଦ ଓ ଅନ୍ୟାୟ(evil and injustice)ରୁ ମୁକ୍ତ ହୋଇ ପାରନ୍ତା। ଶୁଦ୍ଧ ମାନବିକତା, ମାନବିକ ମର୍ଯ୍ୟାଦା, ମାନବିକ ଅଧିକାର, ମୂଲ୍ୟବୋଧଗୁଡ଼ିକ ଯଦି ଜୀବନରେ ନିର୍ଣ୍ଣାୟକ ହୋଇ ରୁହନ୍ତା ତେବେ ସମ୍ଭବତଃ ସମାଜର ଗୁଣାତ୍ମକ ଉତ୍ତରଣ ସମ୍ଭବ ହୋଇପାରନ୍ତା। ପ୍ରତ୍ୟେକ ମଣିଷର ଯେ ସମ୍ମାନର ସହ ବଞ୍ଚିବାର ଅଧିକାର ରହିଛି-ଏହି ମୂଲ୍ୟବୋଧ କିପରି ସମାଜରେ ଦୃଢ଼ ହୋଇପାରିବ-ଏକ ସମତାଭିତ୍ତିକ, ନ୍ୟାୟ ଆଧାରିତ ଓ ମାନବବାଦୀ ସମାଜର ରୂପରେଖ କିପରି ଦୃଢ଼ଭିତ୍ତି ନେବ। ଏବେ ବି ଗ୍ରାମୀଣ ପରିବେଶରେ ଯେଉଁ ଜାତିଭିତ୍ତିକ ଭେଦଭାବ ଓ ଶୋଷଣ ରହିଛି ତାହାକୁ ପରିବର୍ତ୍ତନ

କରିବାକୁ ରାଜନୈତିକ ଦଳମାନଙ୍କର ବିଶେଷ କିଛି କାର୍ଯ୍ୟକ୍ରମ ନାହିଁ। ସମାଜର କେତେକ ସଂସ୍କାରିତ ଚେତନାର ବ୍ୟକ୍ତି, ବ୍ୟକ୍ତିଗତ ସ୍ତରରେ ଯାହା କାର୍ଯ୍ୟ କରୁଛନ୍ତି। କେତେ ଆଇନ ରହିଛି, ଏସବୁ ସତ୍ତ୍ୱେ ଆମ ମାନସିକତା ଭିତରେ ସଭ୍ୟ ମୂଲ୍ୟବୋଧଗୁଡ଼ିକ ଦୃଢ଼ ହୋଇନାହିଁ। ସେଗୁଡ଼ିକର ପ୍ରସାର ପାଇଁ ପ୍ରାଥମିକ ଶିକ୍ଷା ସ୍ତରରୁ ଯଦି ପ୍ରୟାସ ହୁଅନ୍ତା ତେବେ ହୁଏତ ସମାଜରେ ପରିବର୍ତ୍ତନର ଧାରା ତ୍ୱରାନ୍ୱିତ ହୋଇପାରନ୍ତା। ବିଶେଷକରି ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସଭ୍ୟ ଆଚରଣ କିପରି ଜୀବନର ଗୁଣାତ୍ମକ ମାନ ବୃଦ୍ଧିରେ ସହାୟକ ତାହାକୁ ଶିକ୍ଷାସ୍ତରରେ ଅନ୍ତର୍ଭୁକ୍ତ କଲେ ସମାଜରେ ପରିବର୍ତ୍ତନ ଆସିପାରନ୍ତା। ଏହା ସହିତ ଆମର ଗଣମାଧ୍ୟମ ଓ ସମ୍ବାଦପତ୍ର ସଂସ୍କାରିତ ଚେତନାର ବିକାଶ ଦିଗରେ ମଧ୍ୟ ଏକ ମୁଖ୍ୟ ଭୂମିକା ନେଇପାରନ୍ତା। କିନ୍ତୁ ପରିତାପର ବିଷୟ ଏ କ୍ଷେତ୍ରରେ ସେପରି ବିଶେଷ ନିଷ୍ଠାପର ଉଦ୍ୟମ ଜାତୀୟ ସ୍ତରରେ ହୋଇନାହିଁ। ଫଳରେ ମଧ୍ୟଯୁଗୀୟ ଆଦର୍ଶମାନ ଏବେ ବି ସମାଜରେ ବଳବତ୍ତର ରହିଛି। ଧର୍ମ, ପରମ୍ପରା, ସଂସ୍କୃତି ନାମରେ ନାନା ଅମାନବିକ, ଅହେତୁକ ଓ ବ୍ୟକ୍ତିମର୍ଯ୍ୟାଦା ବିରୋଧୀ ପ୍ରଥା ଏବେ ବି ସମାଜରେ ରହିଆସିଛି।

ତେବେ ପଚାଶ ବର୍ଷ ତଳର ସମାଜ ଓ ଆଜିର ସମାଜ ଭିତରେ ପାର୍ଥକ୍ୟର ପରିବେଶଟି ବେଶ୍ ଅନୁଭୂତ ହେଉଛି। ତଥାପି ସଭ୍ୟ-ମୂଲ୍ୟବୋଧଗୁଡ଼ିକର ପ୍ରସାର ପାଇଁ ଆମକୁ ଆହୁରି ଅନେକ ବାଟ ଯିବାକୁ ଅଛି।

# ଜଣେ ନିଷ୍ଠାବାନ ପ୍ରଧାନ ଶିକ୍ଷକଙ୍କ ସ୍ମୃତିରେ

ଉମେଶ ଚନ୍ଦ୍ର ମିଶ୍ର (୧୯୨୦-୨୦୦୫) ଥିଲେ ଜଣେ ଆଦର୍ଶ ପ୍ରଧାନ ଶିକ୍ଷକ। ଚଉତିରିଶ ବର୍ଷର ଶିକ୍ଷକତା ଭିତରେ ପ୍ରାୟ ତିରିଶ ବର୍ଷ ଧରି ସେ ବିଭିନ୍ନ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଭାବେ ଅତିବାହିତ କରିଛନ୍ତି। ତେବେ ଭୁବନ ହାଇସ୍କୁଲରେ ସେ କେବଳ ଅଠେଇଶ ବର୍ଷ ପ୍ରଧାନ ଶିକ୍ଷକ ରହିଥିଲେ। ଭୁବନ ଗ୍ରାମର ଶିକ୍ଷା, ସାଂସ୍କୃତିକ ପରିବେଶ ଓ ସାମାଜିକ ଜୀବନପ୍ରବାହର ସେ ଅଭିନ୍ନ ଅଙ୍ଗ ହୋଇଯାଇଥିଲେ। କର୍ମକ୍ଷେତ୍ରରୁ ୧୯୮୦ରେ ଅବସର ନେଇ ସେ ଭୁବନ ଗ୍ରାମରେ ଘରକରି ରହିଲେ। ଭୁବନ ଗ୍ରାମ ଥିଲା ଓଡ଼ିଶାର ଓ ଭାରତର ସବୁଠାରୁ ବଡ ଗ୍ରାମ। ତେବେ ଭୁବନ ଗ୍ରାମରେ ସ୍ୱାଧୀନତା ପରେ ହାଇସ୍କୁଲଟିଏ ଅଞ୍ଚଳର ବିଶିଷ୍ଟ ଲୋକଙ୍କ ଉଦ୍ୟମରେ ୧୯୪୮ ମସିହାରେ ପ୍ରତିଷ୍ଠା ହୋଇଥିଲା। ଏହି ବେସରକାରୀ ବିଦ୍ୟାଳୟଟି ୧୯୬୨ରେ 'ସି' ଟାଇପ୍ ସ୍କୁଲରେ ଓ ୧୯୬୯ରୁ 'ଏ' ଟାଇପ୍ ସ୍କୁଲରେ ପରିଣତ ହେଲା। ଢେଙ୍କାନାଳ ଜିଲ୍ଲାର ଏକ ପ୍ରମୁଖ ଉଚ୍ଚବିଦ୍ୟାଳୟ ଭାବେ ଭୁବନ ହାଇସ୍କୁଲ ଯେଉଁ ସ୍ଥାନ ନେଇଥିଲା ସେଥିରେ ଉମେଶ ଚନ୍ଦ୍ର ମିଶ୍ରଙ୍କର ସବୁଠାରୁ ଅଧିକ ଅବଦାନ ରହିଥିଲା। ମୋର ସୌଭାଗ୍ୟ ଯେ ମୁଁ ଭୁବନ ହାଇସ୍କୁଲର ଛାତ୍ର ଥିଲି ଓ ସେ ମୋର ହେଡମାଷ୍ଟର ଥିଲେ।

ଜଣେ ଆଦର୍ଶ ଶିକ୍ଷକର ଯେଉଁ ଗୁଣ, ନିଷ୍ଠା ଓ ଚରିତ୍ର ରହିବା କଥା ସେସବୁର ସେ ପ୍ରତୀକ ଥିଲେ। ସେ ଥିଲେ ଏକ ଆକର୍ଷଣୀୟ ବ୍ୟକ୍ତିତ୍ୱର ଅଧିକାରୀ। ଦେଶର ସ୍ୱାଧୀନତା ପୂର୍ବରୁ ଓ ସ୍ୱାଧୀନତା ପରେ ପରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଯେତେବେଳେ ଶିକ୍ଷାର ପ୍ରସାର ହେଲା ଓ ବିଭିନ୍ନ ସ୍ଥାନରେ ହାଇସ୍କୁଲମାନ ସ୍ଥାପିତ ହେଲା ସେହି ସମୟରେ ବହୁ ନିଷ୍ଠାବାନ, ମେଧାବାନ ଓ ଚରିତ୍ରବାନ ବ୍ୟକ୍ତିମାନେ ଶିକ୍ଷକତାକୁ ବୃତ୍ତି ଭାବରେ ଗ୍ରହଣ କରୁଥିଲେ। ସେହି ପିଢିର ଶିକ୍ଷକମାନଙ୍କର ନିଷ୍ଠା, କର୍ତ୍ତବ୍ୟପରାୟଣତା ଓ ଶିକ୍ଷାଦାନ ପ୍ରତି ଆନ୍ତରିକତା ଥିଲା ଆଦର୍ଶସ୍ଥାନୀୟ। ନୀତି, ନୈତିକତା ସେମାନଙ୍କ ଜୀବନବୋଧର ଅପରିହାର୍ଯ୍ୟ ଆଦର୍ଶ ଥିଲା। ଆଜି ଶିକ୍ଷା କ୍ଷେତ୍ରରେ ଏକ ଅବକ୍ଷୟର ପରିବେଶ ଯାହାର କାରଣ ବହୁବିଧ। ତେବେ ଗୋଟିଏ ସମୟରେ ଓ ସେହି ପିଢିରେ ଯେଉଁ ଉଚ୍ଚକୋଟିର ନୀତିବାନ ଶିକ୍ଷକମାନେ ରହିଥିଲେ ସେମାନେ ଧୀରେ ଧୀରେ ଆମ ଜନଜୀବନରୁ ବିସ୍ମୃତ ହୋଇଯାଉଛନ୍ତି। ଏହି ସ୍ଥିତିରେ ଆନନ୍ଦର ବିଷୟ

ଓଡ଼ିଶାର କିଛି ଶିକ୍ଷକ ଓ ଶିକ୍ଷାବିତ୍‌ମାନଙ୍କ ଜୀବନଗାଥା, ଆଦର୍ଶ, ଏକନିଷ୍ଠତା ଓ ମହତ୍ତର ଜୀବନବୋଧ ପ୍ରତି ପ୍ରତିବଦ୍ଧତା ବିଷୟରେ କିଛି ଆକର୍ଷଣୀୟ ଗ୍ରନ୍ଥ "ତ୍ରିରଙ୍ଗା ସାଂସ୍କୃତିକ ପରିଷଦ" ତରଫରୁ ପ୍ରକାଶ କରିବାରେ ଯେଉଁ ଉଦ୍ୟମ ହୋଇଛି ତାହା ଏକ ସାଧୁ ପ୍ରୟାସ। ଏହି ପୃଷ୍ଠଭୂମିରେ ମୋ ହେଡ଼୍‌ମାଷ୍ଟର ଓ ଜଣେ ନୀତିନିଷ୍ଠ ବ୍ୟକ୍ତିଙ୍କ ବିଷୟରେ ଦୁଇପଦ ଲେଖିବା ମୋ ପାଇଁ ସୌଭାଗ୍ୟର ବିଷୟ।

ଉମେଶଚନ୍ଦ୍ର ମିଶ୍ରଙ୍କର ଜନ୍ମ ୧୯୨୦ ମସିହାରେ ଆଜିର ଅନୁଗୁଳ ଜିଲ୍ଲାର ଖଲାରି ଖମାର ଗ୍ରାମରେ। ରେଭେନ୍ସା ମହାବିଦ୍ୟାଳୟରୁ ବି.ଏସସି. ଓ ରାଧାନାଥ ଟ୍ରେନିଂ କଲେଜରେ ଡି.ଇଡି.(ସଂପ୍ରତି ଯାହାକୁ ବି.ଇଡି. କୁହାଯାଇଛି) କଲାପରେ ସେ ୧୯୪୬ରୁ ତାଳଚେର ହାଇସ୍କୁଲରୁ ତାଙ୍କର କର୍ମମୟ ଜୀବନ ଆରମ୍ଭ କରନ୍ତି। ତାପରେ କିଛି ଦିନ ତଳମୂଳ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟକରି ୧୯୫୪ରେ ଭୁବନ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ଯୋଗଦିଅନ୍ତି। ଏକ ବେସରକାରୀ ବିଦ୍ୟାଳୟକୁ ଆସି ଏହାର ପ୍ରଧାନ ଶିକ୍ଷକ ଦାୟିତ୍ୱ ନେବା ପରେ ବିଦ୍ୟାଳୟଟିର ବିକାଶପର୍ବ ତାଙ୍କରି ପ୍ରୟାସରେ ଆରମ୍ଭ ହୁଏ। ତାଙ୍କରି ନିଷ୍ଠା ଓ ଉଦ୍ୟମ ଯୋଗୁଁ ପରବର୍ତ୍ତୀ ସମୟରେ ଏହା ସରକାରୀ ବିଦ୍ୟାଳୟ ହୁଏ ଓ ଛାତ୍ରସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଏ। ଏପରିକି ଏକ ଗ୍ରାମୀଣ ପରିବେଶରେ ହାଇସ୍କୁଲରେ ହଷ୍ଟେଲ ସ୍ଥାପିତ ହୋଇ ପ୍ରାୟ ଶହେରୁ ଅଧିକ ଛାତ୍ର ଛାତ୍ରାବାସରେ ରହି ଅଧ୍ୟୟନ କରନ୍ତି।

ମୁଁ ଭୁବନ ହାଇସ୍କୁଲରେ ୧୯୬୩ରୁ ୧୯୬୭ ଚାରିବର୍ଷ ଛାତ୍ର ରହିଥିଲି। ଆମ ସମୟରେ ପ୍ରତି ଶ୍ରେଣୀରେ ଦୁଇଟି ଲେଖାଏଁ ସେକ୍‌ସନ ଥାଏ। ସାର୍‌ ଦଶମ ଓ ଏକାଦଶ ଶ୍ରେଣୀରେ ଗଣିତ ଓ ଇଚ୍ଛାଧୀନ ଗଣିତ ପଢ଼ାଉଥିଲେ। ତାଙ୍କର ଶିକ୍ଷାଦାନ ପ୍ରଣାଳୀ ଥିଲା ସରଳ, ପ୍ରାଞ୍ଜଳ ଓ ଆକର୍ଷଣୀୟ। ଗଣିତ ପ୍ରତି ଆଗ୍ରହ ଓ ଉତ୍ସୁକତା ସୃଷ୍ଟି କରିବାରେ ତାଙ୍କର ପାଠପଢା ଏବେ ବି ସ୍ମୃତି ଭିତରେ ଅମଳିନ ରହିଛି। ଗଣିତକୁ ଏତେ ସୁନ୍ଦର ଓ ଆକର୍ଷଣୀୟ ଧାରାରେ ପଢା ଯାଇପାରେ ତାହା ଜଣେ କୁଶଳୀ ଶିକ୍ଷକଙ୍କ ପାଖରେ ହିଁ ସମ୍ଭବ।

ସେ ମଝିରେ ମଝିରେ ଅନ୍ୟ ଶିକ୍ଷକମାନଙ୍କର ପାଠପଢାକୁ ଦେଖିବା ପାଇଁ ଶ୍ରେଣୀମାନଙ୍କୁ ପରିଦର୍ଶନ କରୁଥିଲେ। ସୁତରାଂ ସବୁ ଶିକ୍ଷକମାନେ ନିଷ୍ଠାପର ସହ ପଢାଇବାକୁ ଉଦ୍ୟମ କରୁଥିଲେ ଓ ବିଦ୍ୟାଳୟର ଶୈକ୍ଷିକ ବାତାବରଣ ଅତି ସୁନ୍ଦର ରହିଥିଲା। ସାର୍‌ଙ୍କର

କଠୋର ଶୃଙ୍ଖଳାବୋଧ ଓ ସମୟାନୁବର୍ତ୍ତିତା ଉଚ୍ଚ ସ୍ତରର ଥିଲା । ସ୍କୁଲର ପରିବେଶରେ କ୍ଲାସ ଆରମ୍ଭ ହେବା ପୂର୍ବରୁ ସମବେତ ପ୍ରାର୍ଥନା ହେଉଥିଲା ଓ ସେହି ପ୍ରାର୍ଥନାରେ ଶିକ୍ଷକମାନେ ଓ ପ୍ରଧାନଶିକ୍ଷକ ଯୋଗ ଦେଉଥିଲେ । ପ୍ରାର୍ଥନା ପରେ ସେହିଦିନର ଖବରକାଗଜ ପୃଷ୍ଠାରୁ ଦେଶ ବିଦେଶର ମୁଖ୍ୟ ଖବର ଛାତ୍ରମାନଙ୍କୁ ଜଣାଇ ଦିଆଯାଉଥିଲା ଓ ଏହାପରେ ଶ୍ରେଣୀରେ ପାଠପଢା ଆରମ୍ଭ ହେଉଥିଲା । ପ୍ରତି ଶନିବାର ଦିନ ଶେଷ ପିରିଅଡଟିରେ କ୍ଲାସଟିଚର ଆସୁଥିଲେ ଓ ପିଲାମାନଙ୍କ ଭିତରେ ତର୍କ ପ୍ରତିଯୋଗିତା ପ୍ରତି ଶ୍ରେଣୀରେ ହେଉଥିଲା । ସ୍କୁଲ ଲାଇବ୍ରେରିରେ ଯେଉଁ ବହି ସବୁ ଥିଲା, ଛାତ୍ରମାନଙ୍କୁ ପଢିବାକୁ ପରାମର୍ଶ ଦିଆଯାଉଥିଲା ଓ ଆଗ୍ରହୀ ଛାତ୍ରମାନେ ଲାଇବ୍ରେରୀ ସାର୍‌ଙ୍କଠାରୁ ବହି ନେଇ ପଢିବାକୁ ପ୍ରେରଣା ପାଉଥିଲେ ।

ବିଦ୍ୟାଳୟର ଶୈକ୍ଷିକ ପରିବେଶ ସହ ସାଂସ୍କୃତିକ ପରିବେଶକୁ ସୁନ୍ଦର ଓ ଉନ୍ନତ ରଖିବା ପାଇଁ ହେଡମାଷ୍ଟରଙ୍କର ବହୁ ଦୂରଦୃଷ୍ଟି ରହିଥିଲା । ଖେଳ, ବାର୍ଷିକୋତ୍ସବ, ଗଣେଶ ପୂଜା ଓ ସରସ୍ୱତୀ ପୂଜା ସମୟରେ ସମବେତ ଭୋଜି ଓ ନାଟକ ପରିବେଷଣ ବିଦ୍ୟାଳୟର ଜୀବନକୁ ଚଳଚଞ୍ଚଳ କରି ରଖିଥିଲା । ପାଠପଢା ସହିତ ଶିକ୍ଷାତିରିକ୍ତ କାର୍ଯ୍ୟକ୍ରମ ମାଧ୍ୟମରେ ପିଲାମାନଙ୍କ ମଧ୍ୟରେ ସୃଜନଶୀଳ ଆବେଗ ସୃଷ୍ଟି କରିବାକୁ ପ୍ରୟାସ ହେଉଥିଲା । ଛାତ୍ରମାନଙ୍କୁ କିଶୋର ବୟସରେ ସୃଜନଶୀଳତାର ଯେଉଁ ପ୍ରେରଣା ଓ ଅନୁରାଗ ମିଳେ ତାହା ସେମାନଙ୍କ ଭିତରେ କଳା, ସଂସ୍କୃତି ଇତ୍ୟାଦି ପ୍ରତି ଶ୍ରଦ୍ଧା ସୃଷ୍ଟି କରେ । ସେତେବେଳର ଶିକ୍ଷକମାନେ ପିଲାମାନଙ୍କ ଭିତରେ ଯେଉଁ ଜୀବନବୋଧର ବାର୍ତ୍ତା ଓ ଆଦର୍ଶ ସୃଷ୍ଟି କରୁଥିଲେ ତାହା ସେମାନଙ୍କ ଭବିଷ୍ୟତ ପାଇଁ ପ୍ରେରଣାଦାୟକ ଉତ୍ସ ହୋଇ ରହୁଥିଲା । ପ୍ରଧାନ ଶିକ୍ଷକ ଓ ଅଧିକାଂଶ ଶିକ୍ଷକଙ୍କର ବିଚାର ଓ ସ୍ୱପ୍ନ ଥିଲା ଯେ ସେମାନଙ୍କର ପ୍ରତ୍ୟେକଟି ଛାତ୍ର ଜଣେ ଉତ୍ତମ ନାଗରିକ ଓ ଭଲ ମଣିଷ ହେଉ । ଶିକ୍ଷାବର୍ଷର ଆରମ୍ଭରେ ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନେ ପିଲାମାନଙ୍କୁ ଶୃଙ୍ଖଳିତ ଓ ଆଦର୍ଶବାନ ଛାତ୍ର ହେବାକୁ ପ୍ରେରଣା ଦେଉଥିଲେ । ଏକାଦଶ ଶ୍ରେଣୀରେ ମାଟ୍ରିକ ପରୀକ୍ଷା ପାଇଁ ଫର୍ମପୂରଣ କରିବାପରେ ପିଲାମାନଙ୍କୁ ଆବେଗଭରା ବିଦାୟ ଦିଆଯାଉଥିଲା ଓ ସାର୍‌ମାନେ ସମସ୍ତଙ୍କର ଶୁଭକାମନା କରୁଥିଲେ । ଏସବୁ ପ୍ରଧାନଶିକ୍ଷକଙ୍କର ତତ୍ତ୍ୱାବଧାନ ଭିତରେ ସମାହିତ ହେଉଥିଲା । ମୋଟଉପରେ ବିଦ୍ୟାଳୟ ଜୀବନ ପିଲାମାନଙ୍କର ଭବିଷ୍ୟତ ନିର୍ମାଣ ପାଇଁ ମୂଳଭିତ୍ତି ପକାଉଥିଲା । ସ୍କୁଲର ହେଡମାଷ୍ଟରଙ୍କର ଦୂରଦୃଷ୍ଟି, ଶୃଙ୍ଖଳିତ ଭାବ ଓ ସହକର୍ମୀମାନଙ୍କ ଭିତରେ ଦାୟିତ୍ୱବୋଧ ସୃଷ୍ଟି କରିବାରେ ପ୍ରମୁଖ ଭୂମିକା ରହିଥାଏ । ମୋ ହେଡମାଷ୍ଟର ଏହି ସମସ୍ତ ସୁଗୁଣର ଅଧିକାରୀ ଥିଲେ । ତାଙ୍କ ସହକର୍ମୀମାନଙ୍କର ତାଙ୍କ ପ୍ରତି

ଯେପରି ସମ୍ମାନବୋଧ ଥିଲା ଛାତ୍ରମାନଙ୍କର ସେହିପରି ଭୟ ଓ ଭକ୍ତି ରହିଥିଲା। ସାର୍ କେତେବେଳେ ବାରଣ୍ଡାରେ ଚାଲିଗଲେ ବା ଖେଳପଡ଼ିଆକୁ ଆସିଲେ ପିଲାମାନେ ନୀରବ ହୋଇ ଯାଉଥିଲେ। ଆମେ ଭୁବନ ହାଇସ୍କୁଲରେ ପଢୁଥିବା ବେଳେ ତାହା ସେତେବେଳେ ଏକ ସି.ଟାଇପ ସରକାରୀ ବିଦ୍ୟାଳୟ ଥିଲା। ଯେଉଁ ଶିକ୍ଷକ ସେଠାରୁ ଅନ୍ୟତ୍ର ବଦଳି ହେଉଥିଲେ ତାଙ୍କୁ ପ୍ରଧାନଶିକ୍ଷକଙ୍କ ସଭାପତିତ୍ୱରେ ବିଦାୟ ଦିଆଯାଉଥିଲା। ମୋଟଉପରେ ତାଙ୍କ ଯୋଗୁ ବିଦ୍ୟାଳୟର ଶୈକ୍ଷିକ ଓ ସାଂସ୍କୃତିକ ଅନୁଶାସନ ଉଚ୍ଚମାନର ଥିଲା।

ଏହାଛଡ଼ା ସେ ଥିଲେ ଜଣେ ଗୁଣଗ୍ରାହୀ ଓ ପ୍ରତିଭାନୁରାଗୀ ମଣିଷ। କୌଣସି ଛାତ୍ରଙ୍କର ସଫଳତାର ସମ୍ବାଦ ପାଉଥିଲେ ସେ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ ଓ ହୃଦୟଭରା ଆଶୀର୍ବାଦ ଦେଉଥିଲେ। ମୁଁ ବି.ଏ. ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେବା ଓ ଏମ୍.ଏ. ଶ୍ରେଣୀରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ନେବା ଖବର ପାଇ ସେ ମୋତେ ଯେଉଁ ଆବେଗଭରା ଆଶୀର୍ବାଦ ଓ ଶୁଭେଚ୍ଛା ଦେଇଥିଲେ ତାହା ମୋ ସ୍ମୃତିରେ ଅମଳିନ ରହିଛି। ମୋ ପରି ତାଙ୍କର ବହୁ ପୁରାତନ ଛାତ୍ର ତାଙ୍କଠାରୁ ପରବର୍ତ୍ତୀ ଜୀବନରେ ବହୁ ପ୍ରେରଣା ଲାଭ କରିଛନ୍ତି। ସେ ସମୟର ସାର୍‌ମାନଙ୍କର ସ୍ମୃତି ମନକୁ ଆସିଲେ ମୋର ଅନୁଭବ ହୁଏ ଯେ ସେହିମାନେ ଥିଲେ ଆମ ବ୍ୟକ୍ତିତ୍ୱର ବିନ୍ଧାଣୀ ଓ ଆମର ପଥପ୍ରଦର୍ଶକ।

ମୁଁ ସ୍କୁଲରେ ଛାତ୍ର ଥିଲାବେଳେ ଦୁଇଟି ଘଟଣା ଏବେ ବି ସ୍ମୃତିରେ ଅମଳିନ ରହିଛି। ସାର୍‌ଙ୍କର ଉଦ୍ୟମ ଯୋଗୁ ଆମ ବିଦ୍ୟାଳୟରେ ସେତେବେଳେ ଦୁଇଦିନ ଧରି ଏକ କ୍ୟାରିୟର' ସମ୍ମିଳନୀ ହୋଇଥିଲା। ପିଲାମାନେ ମାଟ୍ରିକ ପରୀକ୍ଷା ପରେ କେଉଁ କେଉଁ କ୍ଷେତ୍ରରେ କ'ଣ ପଢି କିପରି ସେମାନଙ୍କର ଭବିଷ୍ୟତ ଗଠନ କରିବେ ଏହି ବିଷୟରେ ଅନେକ ବିଶିଷ୍ଟ ବ୍ୟକ୍ତି ଆସି ଆମମାନଙ୍କୁ ପରାମର୍ଶ ଦେଇଥିଲେ। କଲେଜ ସ୍ତରରେ କଳା, ବିଜ୍ଞାନ, ବାଣିଜ୍ୟ ଇତ୍ୟାଦି ପାଠକ୍ରମ ବିଷୟରେ ତାହା ଆମକୁ କିଞ୍ଚିତ ଭାବନା ଦେଇଥିଲା। ଏହା ସହିତ ସରକାରୀ ସ୍ତରରେ କେତେ କେତେ ପ୍ରକାରର ବୃତ୍ତି ରହିଛି ଓ ସରକାରୀ କର୍ମସଂସ୍ଥାନ ବାହାରେ ଜଣେ କିପରି ସ୍ୱାବଲମ୍ବୀ ହୋଇପାରିବ ସେ ବିଷୟରେ ଆମେ ସ୍କୁଲ ଜୀବନରେ କିଛି ଧାରଣା ପାଇଥିଲୁ। ଦ୍ୱିତୀୟ ଘଟଣାଟି ହେଉଛି ଆମେ ଛାତ୍ର ଥିବାବେଳେ ଭୁବନ ହାଇସ୍କୁଲ ପରିସରରେ ଆମ ଜିଲ୍ଲାର ପ୍ରଧାନଶିକ୍ଷକମାନଙ୍କର ଏକ ସମ୍ମିଳନୀ ଦୁଇଦିନ ଧରି ହୋଇଥିଲା। ଆମେମାନେ ସ୍ୱେଚ୍ଛାସେବକ ଭାବେ ଆଗନ୍ତୁକ ଅତିଥିମାନଙ୍କର ଦାୟିତ୍ୱ ବୁଝୁଥିଲୁ। ସେହି

ସମୟରେ ଛାତ୍ରମାନଙ୍କଦ୍ୱରା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ରାତିରେ ପରିବେଷଣ କରାଯାଇଥିଲା । ଗୀତ, ନାଚ, ଏକାଙ୍କିକା ଇତ୍ୟାଦି ସାର୍‌ମାନଙ୍କ ନିର୍ଦ୍ଦେଶନାରେ ପିଲାମାନେ ପ୍ରଦର୍ଶନ କରିଥିଲେ । ଏହାଛଡ଼ା ରାଜ୍ୟସ୍ତରରେ ହେଉଥିବା ସ୍କାଉଟ ସମ୍ମିଳନୀରେ ବା ବିଜ୍ଞାନ ପ୍ରଦର୍ଶନୀରେ ଆମ ବିଦ୍ୟାଳୟ ଭାଗନେଇ ଭଲ କରିବା କ୍ଷେତ୍ରରେ ସାର୍‌ଙ୍କର ପ୍ରେରଣା ରହିଥିଲା । ଏହିପରି ପ୍ରତ୍ୟେକ କ୍ଷେତ୍ରରେ ପିଲାମାନେ ଯେପରି ଉପସ୍ଥାପନ ପାଇବେ ସେଥିପାଇଁ ସେ ଯତ୍ନଶୀଳ ଥିଲେ । ତାଙ୍କର ନିଷ୍ଠା ଓ ପ୍ରେରଣା ଯୋଗୁ ଭୁବନ ହାଇସ୍କୁଲ ଜିଲ୍ଲାସ୍ତରରେ ଓ ରାଜ୍ୟସ୍ତରରେ ନିଜର ଏକ ପରିଚୟ ସୃଷ୍ଟି କରିପାରିଥିଲା ।

ବିଦ୍ୟାଳୟର ଦାୟିତ୍ୱକୁ ସେତେବେଳର ହେଡମାଷ୍ଟରମାନେ ପବିତ୍ର କର୍ମ ବୋଲି ବିଚାର କରୁଥିଲେ । ନିଜର କର୍ତ୍ତବ୍ୟ ପ୍ରତି ସେମାନଙ୍କର ଏକ ଉତ୍ସର୍ଗୀକୃତ ମନୋଭାବ ରହିଥିଲା । ତେବେ ସାର୍ ଥିଲେ ଜଣେ ଜଞ୍ଜାଳୀ ମଣିଷ । ଚାରିପୁଅ ଓ ଦୁଇଝିଅଙ୍କୁ ସେ ଭଲ ମଣିଷ କରି ଗଢି ପାରିଛନ୍ତି । ଏହା ସହିତ ତାଙ୍କର ପୁତୁରା, ଭଣଜା ମଧ୍ୟ ଆସି ସାର୍‌ଙ୍କ ତତ୍ତ୍ୱାବଧାନ ଭିତରେ ରହି ଭୁବନରେ ପାଠ ପଢୁଥିଲେ । ଗ୍ରାମୀଣ ପରିବେଶରେ ସେତେବେଳେ ବିଜୁଳି ଆଲୋକ ନଥିଲା । ଏହି ପରିସ୍ଥିତିରେ ଏକ ବଡ ପରିବାରରେ ସାର୍ ପାରିବାରିକ ଜଞ୍ଜାଳକୁ ତୁଲାଇବା ସହ ଜୀବନର କର୍ମକ୍ଷେତ୍ରକୁ ଅତି ନିଷ୍ଠାର ସହ ପାଳନ କରିଥିଲେ ।

୧୯୫୪ରୁ ୧୯୭୫ ପର୍ଯ୍ୟନ୍ତ ଭୁବନ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟକରିବା ପରେ ସାର୍‌ଙ୍କର ୧୯୭୫ରେ ଆଠମଲ୍ଲିକର ମହେନ୍ଦ୍ର ହାଇସ୍କୁଲକୁ ବଦଳି ହେଲା । ମହେନ୍ଦ୍ର ହାଇସ୍କୁଲରେ ସେତେବେଳେ କିଛି ବିଶୃଙ୍ଖଳା ଓ ଜଟିଳ ପରିସ୍ଥିତି ସୃଷ୍ଟି ହୋଇଥିଲା । ସେହି ସ୍କୁଲର ପରିସ୍ଥିତିରେ ସୁଧାର ଆଣିବା ପାଇଁ ଜଣେ ଦକ୍ଷ ଓ ଅଭିଜ୍ଞ ପ୍ରଧାନଶିକ୍ଷକଙ୍କୁ ପଠାଇବା ପରିପ୍ରେକ୍ଷୀରେ ସାର୍ ସେଠାକୁ ବଦଳି ହେଲେ । ଅଳ୍ପଦିନ ଭିତରେ ସେ ମହେନ୍ଦ୍ର ହାଇସ୍କୁଲର ପରିସ୍ଥିତିକୁ ସୁଧାର କରି ସେଠାରେ ସୁସ୍ଥ ଶୈକ୍ଷିକ ପରିବେଶ ପ୍ରତିଷ୍ଠା କରିଥିଲେ । ଆଠମଲ୍ଲିକର ତତ୍‌କାଳୀନ ଏସଡିଓ ଶ୍ରୀ ଏସ୍.ଏନ୍. ମହାପାତ୍ର ମହେନ୍ଦ୍ର ହାଇସ୍କୁଲର ଗଭର୍ଣ୍ଣିଂବଡିର ସଭାପତି ଭାବେ ସାର୍‌ଙ୍କ ସମ୍ପର୍କରେ ଲେଖିଥିଲେ-

Sri Umesh Chandra Mishra, took over as Head Master, Mahendra High School, Athamallik on 1.11.1975. By sheer dint of his skill, efficiency, administrative capacity combined with amiable trait in deal-

ings, he has saved the school from a near collapse; which was the situation obtaining at the time of his joining. I am extremelu happy to note, as President of Mahendra High School, that the school is presently on an even keel and is definitely moving in the direction of improvement and progress.

ମହେନ୍ଦ୍ର ହାଇସ୍କୁଲର ପରିସ୍ଥିତିରେ ଉନ୍ନତି ଆଣିବା ପରେ ସାର୍ ପୁନଶ୍ଚ ଭୁବନ ହାଇସ୍କୁଲକୁ ୧୯୭୭ରେ ବଦଳି ହେଲେ। ଏହି ସମୟରେ ତାଙ୍କର ନିଷ୍ଠା, ଦକ୍ଷତା ଓ ଉତ୍ସର୍ଗୀକୃତ କାର୍ଯ୍ୟ ପାଇଁ ୧୯୭୯ ସାଧାରଣତନ୍ତ୍ର ଦିବସରେ ରାଜ୍ୟପାଳଙ୍କଦ୍ୱାରା ପୁରସ୍କୃତ ହୋଇଥିଲେ। ପୁରସ୍କାର, ମାନପତ୍ର ଜଣେ ଶିକ୍ଷକଙ୍କର ଅସଲ ପରିଚୟ ନୁହେଁ, ବାସ୍ତବ ପରିଚୟ ସେ କିପରି ତାଙ୍କର ଛାତ୍ର ଓ ସହକର୍ମୀଙ୍କଦ୍ୱାରା ଆଦୃତ ହୋଇଛନ୍ତି ଓ ସେହିମାନଙ୍କ ହୃଦୟରେ ସ୍ଥାନ ପାଇଛନ୍ତି। ଏହି ମାନଦଣ୍ଡରୁ ସାର୍ ଥିଲେ ଜଣେ ଉଚ୍ଚକୋଟିର ଶିକ୍ଷକ ଓ ଉତ୍ତମ ମଣିଷ।

ଭୁବନ ହାଇସ୍କୁଲରେ ସାର୍ ପ୍ରଥମ ଯୋଗ ଦେଇଥିଲେ ୧୯୫୪ରେ। ସେତେବେଳେ ଭୁବନରେ ବାହାରୁ ଆସି ଚାକିରୀ କରିଥିବା ଲୋକଙ୍କ ସଂଖ୍ୟା ମୁଷ୍ଟିମେୟ ଥିଲା। ଓଡ଼ିଶାର ବିଶିଷ୍ଟ ଲେଖକ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ବଡ ଭାଇ ଡାକ୍ତର ଭାଗବତ ଦାସ ଭୁବନରେ ସେତେବେଳେ ଡାକ୍ତର ଥିଲେ ଓ ଭୁବନ ଗ୍ରାମରେ ବେଶ୍ ଜନପ୍ରିୟ ଥିଲେ। ସେତେବେଳେ ସେମାନେ ମିଶି 'ଟାଉନ ରିକ୍ରେସନ କ୍ଲବ' ନାମରେ ଗୋଟିଏ ସଙ୍ଗଠନ କରିଥିଲେ ଓ ତା'ରି ଜରିଆରେ ସମାଜସେବାମୂଳକ କାର୍ଯ୍ୟକ୍ରମମାନ କରୁଥିଲେ। ଏହି କ୍ଲବ ତରଫରୁ ଅଧିକାଂଶ ବର୍ଷ ନାଟକ ଅଭିନୟ କରାଯାଉଥିଲା ଓ ସାର୍ ସେଥିରେ ଏକ ଭୂମିକାରେ ଅଭିନୟ କରି ସବୁ ମହଲରେ ପ୍ରଶଂସିତ ହେଉଥିଲେ। ଗ୍ରାମର ସାଂସ୍କୃତିକ ଜୀବନର ସେ ଅଂଶବିଶେଷ ହୋଇ ଯାଇଥିଲେ।

ଭୁବନ ଗ୍ରାମର ସବୁ ଶିକ୍ଷିତ ଲୋକଙ୍କର ସେ ସାର୍ ଥିଲେ। ସବୁ ସ୍ତରରେ ସେ ଜଣାଶୁଣା ତଥା ଏକ ଆଦରଣୀୟ ଓ ସମ୍ମାନିକ ବ୍ୟକ୍ତି ଥିଲେ। ୧୯୮୦ରେ ଅବସର ପରେ ସେ ଭୁବନରେ ସ୍ଥାୟୀ ଭାବେ ରହିଲେ ଓ ଗ୍ରାମର ସମସ୍ତ ବୌଦ୍ଧିକ, ସାଂସ୍କୃତିକ ଓ ସାମାଜିକ ଜୀବନର ଅଙ୍ଗ ହୋଇ ଉଠିଥିଲେ। ଭୁବନରେ ଯେଉଁ କିଛି ବୌଦ୍ଧିକ

ଆଲୋଚନା ଓ ସାଂସ୍କୃତିକ କାର୍ଯ୍ୟକ୍ରମମାନ ବିଭିନ୍ନ ବ୍ୟକ୍ତି ବା ସଙ୍ଗଠନମାନ ଆୟୋଜନ କରୁଥିଲେ ଅଧିକାଂଶ ତାଙ୍କର ପରାମର୍ଶ ନେଉଥିଲେ । ଭୁବନ ଗ୍ରାମରେ ଦୁଇଟି କଲେଜ ହେବା, ବାଳିକା ବିଦ୍ୟାଳୟ ପ୍ରତିଷ୍ଠା ହେବା ଓ କେତେକ ଆଧାତ୍ମିକ ସଙ୍ଗଠନ ସ୍ଥାପନ ହେବା ସବୁରି ମୂଳରେ ତାଙ୍କର ସହଯୋଗ ଓ ପରାମର୍ଶ ରହିଥିଲା । ଅବସର ପରେ ପଚିଶ ବର୍ଷ ଅତିବାହିତ କରି ସାର୍ ୨୦୦୫ ଜାନୁୟାରୀ ୧୫ ତାରିଖ ଦିନ ସଂସାରରୁ ବିଦାୟ ନେଲେ । ତାଙ୍କର ଦେହାନ୍ତ ଖବର ସମଗ୍ର ଅଞ୍ଚଳରେ ଏକ ଶୋକାକୁଳ ପରିବେଶ ସୃଷ୍ଟି କରିଥିଲା । ସାର୍‌ଙ୍କ ଜୀବନ କାହାଣୀ ଥିଲା ଭୁବନ ଅଞ୍ଚଳର ଅର୍ଦ୍ଧଶତାବ୍ଦୀର ଇତିହାସ ।

ସାର୍‌ଙ୍କ ଚେହେରାକୁ ଧୋତି ଓ ପଞ୍ଜାବି ସୁନ୍ଦର ଶୋଭା ପାଉଥିଲା । ତାଙ୍କର ସୁନ୍ଦର ଓ ସୌମ୍ୟ ଚେହେରାର ବି ଏକ ଆକର୍ଷଣ ଥିଲା । ସେ ସମସ୍ତଙ୍କ ଭିତରେ ବାରି ହୋଇପଡୁଥିଲେ । ଛାତ୍ରମାନଙ୍କ ପାଇଁ ସେ ଯେପରି ଥିଲେ ଗୁରୁ, ପରବର୍ତ୍ତୀ ଜୀବନରେ ହୋଇଗଲେ ଶୁଭାକାଂକ୍ଷୀ ଉଦାର ଅଭିଭାବକ । ତାଙ୍କର ପବିତ୍ର ସ୍ମୃତି ପ୍ରତି ଅନ୍ତରର ଗଭୀର ଶ୍ରଦ୍ଧାଞ୍ଜଳି ବ୍ୟକ୍ତ କରୁଛି ।

# ଅନନ୍ୟ ଚିନ୍ତନର ଅନ୍ୟ ନାମ : କିଶନ ପଟ୍ଟନାୟକ

କିଶନ ପଟ୍ଟନାୟକଙ୍କ ଅବର୍ତ୍ତମାନରେ ଅନେକ ସ୍ମୃତି ମନକୁ ଛୁଇଁ ଯାଉଛି । ତେବେ ବ୍ୟକ୍ତିଗତ ସ୍ତରରେ ସମ୍ପର୍କ ଓ ନିବିଡ଼ତା ସମ୍ବନ୍ଧରେ ଉଲ୍ଲେଖ କରିବାକୁ ଉଚିତ ମନେକରୁ ନାହିଁ । ବରଂ ତାଙ୍କ ବ୍ୟକ୍ତିତ୍ୱର ଯେଉଁ ଦିଗ ମୋ ପାଇଁ ଥିଲା ଚୁମ୍ବକୀୟ ଆକର୍ଷଣ ସେ ବିଷୟରେ କିଞ୍ଚିତ୍ ସୂଚନା ଦେବାକୁ ଚାହୁଁଛି । ତାଙ୍କର ଗଭୀର ଅଧ୍ୟୟନ, ବୌଦ୍ଧିକ ସ୍ପଷ୍ଟତା, ମାନବବାଦୀ ବିଚାରଦୃଷ୍ଟି, ସମାଜବାଦୀ ଦର୍ଶନ ପ୍ରତି ଅଙ୍ଗୀକାରବଦ୍ଧତା ତଥା ମୂଲ୍ୟବୋଧ ଆଧାରିତ ରାଜନୈତିକ ବିଚାରାଦର୍ଶ ପ୍ରତି ମୁଁ ଆକୃଷ୍ଟ ହୋଇଥିଲି । ସମସ୍ତ ରାଜନୈତିକ ଆଶା, ପ୍ରତ୍ୟାଶାର ଊର୍ଦ୍ଧ୍ୱରେ ରହି ସେ ଜଣେ ବୁଦ୍ଧିଜୀବୀ ଭାବେ ଜାତୀୟ ଜୀବନରେ ନିଜର ସ୍ୱାକ୍ଷର ଆଙ୍କି ଯାଇଛନ୍ତି । ଦୀର୍ଘ ଚାରି-ପାଞ୍ଚ ଦଶନ୍ଧି ଧରି ଆମ ସାମାଜିକ ତଥା ଜାତୀୟ ଜୀବନର ନାନା ସଂଘାତ ତଥା ସମସ୍ୟାଗୁଡ଼ିକ ଉପରେ ଗଭୀର ଅଭିନିବେଶ କରି ସେ ଯେଉଁ ଦିଗ୍‌ଦର୍ଶନ ବ୍ୟକ୍ତ କରିଛନ୍ତି ତାହା ତାଙ୍କୁ ବୁଦ୍ଧିଜୀବୀ ମହଲରେ ବେଶ୍ ଆଦୃତ କରାଇଛି । ତାଙ୍କର ଭାଷଣ ଓ ଲେଖା ମାଧ୍ୟମରେ ଜଣେ ଶ୍ରୋତା ବା ପାଠକକୁ ସେ ଯେଉଁ ବୌଦ୍ଧିକ ସ୍ତରକୁ ଉତ୍ତରିତ କରି ନେଇଯାନ୍ତି ତାହା ତାଙ୍କ ସୃଜନଶୀଳ ପ୍ରତିଭାର ଅନ୍ୟ ଏକ ପରିଚୟ । ଜଣେ ଦାର୍ଶନିକର ପ୍ରଜ୍ଞା, ବୁଦ୍ଧିଜୀବୀର ବିଶ୍ଳେଷଣ ଓ ସୃଜନଶୀଳ ସମାଲୋଚକର ସ୍ପଷ୍ଟତାର ଏକକ ସମନ୍ୱୟ ତାଙ୍କଠାରେ ଘଟିଥିଲା । ସମୟେ ସମୟେ ସେ ଯେଉଁ ଆକର୍ଷଣୀୟ କାବ୍ୟିକ ଅଭିବ୍ୟକ୍ତି ଭିତରେ ମତ ଉପସ୍ଥାପନ କରନ୍ତି ତାହା ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖିଥାଏ । କୌଣସି ଆଲୋଚନାଚକ୍ର ବା କର୍ମଶାଳାରେ ସେ ଥାନ୍ତି ଶ୍ରୋତାଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ଓ ତାଙ୍କର ଭାଷଣ ଶୁଣିବାକୁ ସମସ୍ତଙ୍କ ଭିତରେ ଏକ ଉତ୍କଣ୍ଠାଭରା ଉତ୍ସୁକତା ରହିଥିବାର ବହୁ ପ୍ରତ୍ୟକ୍ଷ ଅନୁଭୂତି ମୁଁ ଲାଭ କରିଛି ।

କିଶନ ବାବୁ ତାରୁଣ୍ୟରୁ ରାଜନୀତିରେ ଥିଲେ ଓ ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଦର୍ଶନରେ ଅବିଚଳିତ ଆସ୍ଥା ରଖିଥିଲେ । ତେବେ ସେ କୌଣସି କ୍ଷମତା ବଳୟ ଭିତରକୁ ଯାଇ ନାହାନ୍ତି

ଓ ଥରଟିଏ ସାଂସଦ ହେବା ଛଡ଼ା ନିର୍ବାଚନ ପ୍ରତିଦ୍ୱନ୍ଦିତାରେ ଆଉ ବିଜୟୀ ହୋଇନାହାନ୍ତି । ଏହି ଦୃଷ୍ଟିରୁ ସେ ହୁଏତ ଜଣେ ଅସଫଳ ରାଜନେତା । ତେବେ ନିର୍ବାଚନରେ ବିଜୟୀ ହେବା କ'ଣ ରାଜନୈତିକ ସଫଳତାର ମାନଦଣ୍ଡ ? ବହୁ ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ରାଜନୀତି କ୍ଷେତ୍ରରେ ଅସଫଳ ନାୟକ । ଏପରିକି କିଶନ ବାବୁଙ୍କ ମତାନୁସାରେ ଗାନ୍ଧୀ, ଲୋହିଆ ଓ ଜୟପ୍ରକାଶଙ୍କ ପରି ରାଷ୍ଟ୍ରନୀତିଜ୍ଞ ଭାରତୀୟ ରାଜନୈତିକ ଦୃଶ୍ୟପଟରେ ମଧ୍ୟ ଅସଫଳ । ଗାନ୍ଧୀ ଏହି ଦୃଷ୍ଟିରୁ ଅସଫଳ ଯେ ତାଙ୍କ ପରିକଳ୍ପିତ ସ୍ୱାଧୀନ ଭାରତ କେବେ ସମ୍ଭବ ହେଲା ନାହିଁ, ଜୟପ୍ରକାଶଙ୍କର ସ୍ୱପ୍ନ ଅଧୁରା ରହିଗଲା ଓ ଲୋହିଆଙ୍କ ଆଦର୍ଶବୋଧଠାରୁ ରାଜନୈତିକ ବ୍ୟବସ୍ଥା ସମ୍ପୂର୍ଣ୍ଣ ଦୂରେଇଗଲା । ସ୍ୱାଧୀନ ଭାରତ ପାଇଁ ଗାନ୍ଧୀ, ଜେପି ଓ ଲୋହିଆଙ୍କର ଅନେକ ସ୍ୱପ୍ନ ଥିଲା । ଏକ ସ୍ୱାବଲମ୍ବୀ, ନ୍ୟାୟଭିତ୍ତିକ ସମାଜର ସ୍ୱପ୍ନ ସେମାନଙ୍କୁ ବିଭୋର କରିଥିଲା । ସେମାନେ ଭାବିଥିଲେ ଯେ ଭାରତବର୍ଷ ସାମ୍ରାଜ୍ୟବାଦ କବଳରୁ ମୁକ୍ତି ଲାଭ କଲା ପରେ ତାର ଜନସାଧାରଣ ମର୍ଯ୍ୟାଦାବାନ୍ ନାଗରିକ ଭାବେ ଜୀବନଧାରଣ କରିବେ ଏବଂ ସ୍ୱଚ୍ଛ ଓ ଦୁର୍ନୀତିମୁକ୍ତ ପ୍ରଶାସନ ପାଇବେ । ପ୍ରତ୍ୟେକ କର୍ମଦକ୍ଷ ବ୍ୟକ୍ତି ସ୍ୱାବଲମ୍ବୀ ହୋଇପାରିବ, ସ୍ୱାସ୍ଥ୍ୟ ସେବା ପାଇବ ଓ ଶିକ୍ଷାର ଅବକାଶ ପାଇବ । ସମାଜରେ ଏକ ଉନ୍ନତ ଜୀବନ ପାଇଁ ବାତାବରଣ ଆସିବ ଓ ଆମ ସମାଜରୁ ଅନେକ କଳୁଷ ଅପସରି ଯିବ । ତେବେ ପ୍ରଶ୍ନ ଉଠେ, ଏହି ସବୁ ପ୍ରଶ୍ନ ଜଣେ ସାଧାରଣ ନାଗରିକ ପାଇଁ ସ୍ୱାଧୀନତାର ଅର୍ଦ୍ଧ ଶତାବ୍ଦୀ ପରେ କେତେ ପ୍ରାପ୍ତ ଓ କେତେ ସୁଗମ ହୋଇଛି । ଏହି ସ୍ୱପ୍ନ ରଖି କିଶନ ବାବୁ ମଧ୍ୟ ସମାଜବାଦୀ ବିଚାରଧାରା ପ୍ରତି ଏକଦା ଆକୃଷ୍ଟ ହୋଇଥିଲେ । ମାର୍କ୍ସ, ଗାନ୍ଧୀ ଓ ଲୋହିଆ ତାଙ୍କୁ ବହୁ ଭାବରେ ପ୍ରଚୋଦିତ କରିଥିଲେ । ସେମାନେ ସମସ୍ତେ ଥିଲେ ଏକ ସମତାଭିତ୍ତିକ, ନ୍ୟାୟାଧାରିତ ସମାଜ ବ୍ୟବସ୍ଥାର ବାର୍ତ୍ତାବହ । ସମାଜବାଦର ମୂଳତତ୍ତ୍ୱ ହେଉଛି ଆଧୁନିକ ବିଶ୍ୱର ଏକ ବଳିଷ୍ଠ ରାଜନୈତିକ ବିଚାରଧାରା । ଏକ ଶୋଷଣହୀନ, ନ୍ୟାୟାଧାରିତ ଓ ସମତାଭିତ୍ତିକ ସମାଜ ବ୍ୟବସ୍ଥା ଏହି ଦର୍ଶନର ମୂଳମନ୍ତ୍ର । ଯେଉଁ ରାଷ୍ଟ୍ର ଏହି ଲକ୍ଷ୍ୟ ପୋଷଣ କରେ ତାହା ଯେ ଏକ ଗଣତାନ୍ତ୍ରିକ ରାଷ୍ଟ୍ର କିମ୍ବା ପ୍ରତ୍ୟେକ ଗଣତାନ୍ତ୍ରିକ ରାଷ୍ଟ୍ର ଯେ ଏହି ଲକ୍ଷ୍ୟ ପରିପୋଷଣ କରେ ତାହା କୁହାଯାଇ ପାରିବ ନାହିଁ । ତେବେ କିଶନ ବାବୁ ରାଜନୈତିକ ସ୍ତରରେ ଗଣତନ୍ତ୍ର ଓ ଅର୍ଥନୈତିକ ସ୍ତରରେ ସମାଜବାଦ ଏହି ଦୁଇ ଆଦର୍ଶ ଭିତରେ ସମନ୍ୱୟ ରକ୍ଷା କରି ସାମାଜିକ ପୁନର୍ନିର୍ମାଣର ସ୍ୱପ୍ନ ଦେଖିଥିଲେ । ସେହି ଆଦର୍ଶର ବୌଦ୍ଧିକ ଭିତ୍ତି ଉଦାର ମାନବିକତା ଉପରେ ପର୍ଯ୍ୟବସିତ ଥିଲା । ସମାଜବାଦର ଅନ୍ୟ ଏକ ସିଦ୍ଧାନ୍ତ ମାନବବାଦୀ ଦର୍ଶନର ଭିତ୍ତି ସହ ମଧ୍ୟ ସମତାଳଯୁକ୍ତ ମନେ ହୁଏ । ସଭ୍ୟତାର ସକଳ କୀର୍ତ୍ତିକରଣୀ, ଶିକ୍ଷା, ସଂସ୍କୃତି ସବୁ କିଛି ମଣିଷର ବିଚାର ଓ ପ୍ରୟାସର ପ୍ରତିଫଳନ । ମଣିଷ ତାର ସମାଜ ଓ ରାଜନୈତିକ ବ୍ୟବସ୍ଥାର ନିର୍ଣ୍ଣାୟକ, କୌଣସି କଳ୍ପିତ ଈଶ୍ୱର ନୁହନ୍ତି । ତେବେ ପରିତାପର

ବିଷୟ ସମାଜର ପ୍ରାଜ୍ଞ, ବିଚାରଶୀଳ ଓ ଦରଦୀ ଦାର୍ଶନିକଙ୍କର ସ୍ୱପ୍ନର ଦୁନିଆଁ କେବଳ ବୌଦ୍ଧିକ ବିଚାର ସ୍ତରରେ ଇଉଟୋପିଆ ମାତ୍ର; ବାସ୍ତବ ଦୁନିଆରେ କୁଟିଳ ରାଜନୀତି, କୂଟନୀତି, ଶୋଷଣ, ସାମ୍ପ୍ରଦାୟିକ ବିଦ୍ୱେଷ ହିଁ ସର୍ବଦା ଜନଜୀବନରେ ପ୍ରଭାବ ବିସ୍ତାର କରି ଆସିଛି। କ୍ଷମତାଧର କୌଶଳୀ ବ୍ୟକ୍ତିମାନେ ନାନା ପ୍ରକାର ମିଥ୍ୟା ମୋହ ଓ ସ୍ୱପ୍ନ ଦେଖାଇ ଜନତାକୁ ବଶୀଭୂତ କରି ରଖିଛନ୍ତି। ଏହା ବିରୁଦ୍ଧରେ ପ୍ରଜ୍ଞାବାନ ବ୍ୟକ୍ତିମାନେ ବିଭିନ୍ନ ଯୁଗରେ ସମସାମୟିକ ସମାଜର ଅନ୍ତର୍ଚେତନାକୁ ଜାଗ୍ରତ କରିବାକୁ ଚେଷ୍ଟା କରିଛନ୍ତି, ବୈଚାରିକ ସ୍ତରରେ ସଭ୍ୟ ଜୀବନଧାରା ଓ ମାନବିକ ମୂଲ୍ୟବୋଧର ସୂତ୍ର ଦେଇଛନ୍ତି। କିଶନ ବାବୁ ସେହିପରି ଜଣେ ପ୍ରଜ୍ଞାବାନ ବ୍ୟକ୍ତି ଯେ କି ଆମ ସାମାଜିକ ଅପସଂସ୍କୃତି, ରାଜନୈତିକ ଦୂରଭିସନ୍ଧି ତଥା ଅର୍ଥନୈତିକ ପ୍ରତିଗାମୀ ବ୍ୟବସ୍ଥାର ମନ୍ଦ ଦିଗଗୁଡ଼ିକ ବିଷୟରେ ବିଭିନ୍ନ ଲେଖା ମାଧ୍ୟମରେ ଜନଚେତନାକୁ ଉଜ୍ଜୀବିତ କରିବାକୁ ପ୍ରୟାସ କରିଆସିଛନ୍ତି। ଜନଗଣଙ୍କୁ ନାନା ଭାବରେ ସଚେତନ କରିବା ପାଇଁ ପ୍ରୟାସ କରିଛନ୍ତି। ଏଠାରେ ସଫଳତା ବା ବିଫଳତା ଏକ ବ୍ୟକ୍ତିଗତ ପ୍ରଶ୍ନ ନୁହେଁ। ସଭ୍ୟତାର ଇତିହାସରେ କ୍ରାନ୍ତିକାରୀ ଚିନ୍ତାନାୟକଗଣ ସମସାମୟିକ ସମାଜରେ ପ୍ରାୟତଃ ଅସଫଳ ହୋଇଛନ୍ତି। ହେଲେ ସେମାନଙ୍କ ବିଚାରଧାରା ମଧ୍ୟ ଦେଇ ଯେଉଁ ସାର୍ବଜନୀନ ଆବେଦନଟି ଚିନ୍ତାରାଜ୍ୟକୁ ଆସିଛି ଓ ସଭ୍ୟତାର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ସୃଜନାତ୍ମକ ସ୍ୱାକ୍ଷର ବହନ କରିଛି ତାହା ସେମାନଙ୍କର ସଫଳତା କହିବାକୁ ହେବ। କିଶନ ବାବୁ ସେହି କଷଟିରେ ଯେ ଏକ ସଫଳ ଜୀବନର ଅଧିକାରୀ ହୋଇଛନ୍ତି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ।

ଏହି ପୃଷ୍ଠଭୂମିରେ କିଶନ ବାବୁ ତିନୋଟି କ୍ଷୟଶୀଳ ଅଥଚ ପ୍ରଭାବଶାଳୀ ଆଲୋଡନକୁ ପ୍ରତିହତ କରିବାକୁ ଯେଉଁ ବୌଦ୍ଧିକ ଆଲୋଡନର ବାର୍ତ୍ତା ଗତ ଏକ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ହେବ ପ୍ରଚାର କରିଆସିଛନ୍ତି, ତାହାକୁ ତାଙ୍କ ଅବଦାନର ମୁଖ୍ୟ ବିଭବ କୁହାଯାଇପାରେ। ଜଗତୀକରଣ ସଂସ୍କୃତି ମଧ୍ୟ ଦେଇ ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କୁ ସାମ୍ରାଜ୍ୟବାଦ ଯେପରି କବଳିତ କରିବାକୁ ଯାଉଛି ତାହା ବିରୁଦ୍ଧରେ ସେ ନିରନ୍ତର ସ୍ୱର ଉଠାଇଛନ୍ତି। ସେହିପରି ଆମ ଦେଶର ସାମାଜିକ ଦୃଶ୍ୟପଟରେ ସାମ୍ପ୍ରଦାୟିକତାର ଯେଉଁ ବିଦ୍ୱେଷାତ୍ମକ ବିଷାକ୍ତ ବାତାବରଣ ସୃଷ୍ଟି ହୋଇଛି ତାକୁ ମଧ୍ୟ ପ୍ରତିହତ କରିବାକୁ ସେ ଅନ୍ତରଙ୍ଗ ପ୍ରୟାସ କରିଛନ୍ତି। ତୃତୀୟରେ ଆଧୁନିକ ପ୍ରଯୁକ୍ତି ଜନିତ ବିକାଶଧାରା ସହ ପରିବେଶ ସୁରକ୍ଷାର ପ୍ରଶ୍ନକୁ ଗମ୍ଭୀରତାର ସହ ବିଚାର କରିବାକୁ ଚେଷ୍ଟା କରିଛନ୍ତି। ଅର୍ଥାତ୍ ଜଗତୀକରଣ, ସାମ୍ପ୍ରଦାୟିକତା ଓ ବିକାଶ ଜନିତ ପରିବେଶର ଅସନ୍ତୁଳନ ବିରୁଦ୍ଧରେ ସେ

କ୍ରମାଗତ ସ୍ୱର ଉତ୍ତୋଳନ କରିଛନ୍ତି । ସମତା, ମାନବିକ ଅଧିକାର ଓ ଏକ ସୁସ୍ଥ ପରିବେଶ-ପୁଷ୍ଟ ବିଶ୍ୱ ପାଇଁ ସେ ବିଭିନ୍ନ ଜନ ଆନ୍ଦୋଳନ ଭିତରେ ବୌଦ୍ଧିକ ଆଧାର ସୃଷ୍ଟି କରିଛନ୍ତି ।

ସମାଜବାଦୀ ଓ ମାନବବାଦୀ ଚେତନାରେ ଉଦ୍‌ବୁଦ୍ଧ କିଶନ ବାବୁ ସାମନ୍ତବାଦ, ପୁଞ୍ଜିବାଦ, ଉପନିବେଶବାଦ ଓ ସାମ୍ରାଜ୍ୟବାଦର ସ୍ୱରୂପ ବିଷୟରେ ଗଭୀର ଅନୁଶୀଳନ କରି ଏସବୁ ବିଷୟରେ ନିଜସ୍ୱ ସ୍ପଷ୍ଟ ବିଚାର ବିଭିନ୍ନ ଲେଖାରେ ଉପସ୍ଥାପିତ କରିଛନ୍ତି । ସାମ୍ପ୍ରତିକ ବିଶ୍ୱରେ ସାମ୍ୟବାଦ ବା ସମାଜବାଦର କୌଣସି ସକାରାତ୍ମକ ଧାରା ନ ଥିଲେ ମଧ୍ୟ ସେ ସମାଜବାଦର ଏକ ନୂତନ ଦିଗ୍‌ବଳୟ ଆଡକୁ ଆମର ଦୃଷ୍ଟି ଆକର୍ଷଣ କରାଇଛନ୍ତି । ଊନବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ସାରା ବିଶ୍ୱରେ ସାମ୍ରାଜ୍ୟବାଦର ସୁଯୋଗ ନେଇ ଆଧୁନିକ ପ୍ରଯୁକ୍ତି ବିଦ୍ୟା ବଳରେ ୟୁରୋପ ସମୃଦ୍ଧ ହେଲା ଓ ୟୁରୋପର ଉପନିବେଶଗୁଡ଼ିକ ଦରିଦ୍ର ହେବାକୁ ଲାଗିଲେ । ତେବେ ଉପନିବେଶବାଦ ବିରୁଦ୍ଧରେ ବିଭିନ୍ନ ରାଷ୍ଟ୍ରରେ ବିପ୍ଲବ ଓ ଗଣମାଧ୍ୟମ ଦେଇ ସ୍ୱାଧୀନତର ସୂର୍ଯ୍ୟୋଦୟ ହୋଇଥିଲା । ମାତ୍ର ରାଜନୈତିକ ଉପନିବେଶବାଦ ପରିବର୍ତ୍ତେ ଆଧୁନିକ ସମୃଦ୍ଧ ରାଷ୍ଟ୍ରସମୂହ ସମ୍ପ୍ରତି ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡ଼ିକୁ ପୁନଶ୍ଚ ଅର୍ଥନୈତିକ ସାମ୍ରାଜ୍ୟବାଦ ଭିତରେ କବଳିତ କରି ରଖିଛନ୍ତି । ଆଧୁନିକ ପ୍ରଯୁକ୍ତିର ସହାୟତାରେ ତୃତୀୟ ବିଶ୍ୱର ରାଷ୍ଟ୍ର ସମୂହର ସମୃଦ୍ଧି ସମ୍ଭବ ବୋଲି କେତେ କେତେ ସ୍ୱପ୍ନ ଦେଖାଇ ସେସବୁ ଦେଶର କଞ୍ଚାମାଲ ଓ ଶସ୍ତା ଶ୍ରମକୁ ବିନିଯୋଗ କରି ସେମାନଙ୍କ ବଜାରକୁ ନିୟନ୍ତ୍ରଣ କରି ଚାଲିଛନ୍ତି । ଆଧୁନିକ ପୁଞ୍ଜିବାଦ ସାମ୍ରାଜ୍ୟବାଦର ନୂଆ କଳେବର ଭିତରେ ଏପରି ପୁଷ୍ଟ ହୋଇ ଚାଲିଥିବା ପର୍ଯ୍ୟନ୍ତ ସମାଜବାଦର ଆବେଦନ ରହିବା ଅବଶ୍ୟମ୍ଭାବୀ ମନେହୁଏ । ଆଧୁନିକ ପ୍ରଯୁକ୍ତି ଓ ବିକାଶ ଯେ ନିରବଧି ଅବିଚ୍ଛିନ୍ନ ଭାବେ ଚାଲିପାରିବ ନାହିଁ ଓ ଏହି ପ୍ରକ୍ରିୟା ପ୍ରକୃତିର ସୀମିତ ସଂସାଧନଗୁଡ଼ିକୁ ବିଲୋପ କରିଦେବା ସହ ପ୍ରାକୃତିକ ଭାରସାମ୍ୟକୁ ବିପର୍ଯ୍ୟସ୍ତ କରିଦେବ; ଏହି ଭାବନା କିଶନ ବାବୁ ବହୁ ଭାବରେ ବ୍ୟକ୍ତ କରିଛନ୍ତି । ସେହି ସ୍ଥିତିରେ ପରିବେଶର ସଂରକ୍ଷକ ସୁସଂହତ ଏକ ପ୍ରଯୁକ୍ତିର ବିକାଶକୁ ତ୍ୱରାନ୍ୱିତ କରିବା ସହ ଏକ ବିକେନ୍ଦ୍ରିତ ବ୍ୟବସ୍ଥା ପ୍ରତି ସେ ବାରମ୍ବାର ଦୃଷ୍ଟି ଆକର୍ଷଣ କରିଛନ୍ତି । ତାଙ୍କ ବିଚାରରେ ଏହାହିଁ ହେବ ଆଧୁନିକ ଜୀବନଧାରାରେ ସମାଜବାଦର ନୂତନ ଦାୟିତ୍ୱ । ପୁଞ୍ଜିବାଦର ଉପଭୋକ୍ତାବାଦୀ ଅପସଂସ୍କୃତି, ପରିବେଶର ଧ୍ୱଂସସାଧନ ଓ ଭୟଙ୍କର ଅସମତା ବିରୁଦ୍ଧରେ ସମାଜବାଦ ଏକ ଶୋଷଣହୀନ, ପ୍ରକୃତିଧର୍ମୀ ଜୈବ-ବ୍ୟବସ୍ଥାର ପ୍ରଚଳନ ପାଇଁ ଯେ ବାଟ ଦେଖାଇବ ସେପରି ଏକ ବିଶ୍ୱାସ ଓ ପ୍ରତ୍ୟାଶା ସେ ପୋଷଣ କରି ଆସୁଥିଲେ ।

ସାମ୍ପ୍ରଦାୟିକତା ବିରୁଦ୍ଧରେ ତାଙ୍କର ସୁଚିନ୍ତିତ ମତ ମଧ୍ୟ ନାନା ଭାବେ ବ୍ୟକ୍ତ ହୋଇଛି। ଧର୍ମ ଯଦି ଆଧ୍ୟାତ୍ମିକତା, ମାନବିକତା ଓ ସମତା ଉପରେ ଆଧାରିତ ହୁଏ ତେବେ ତାହା ଜୀବନର ଗୁଣାତ୍ମକ ବିକାଶ ଘଟାଇ ଥାଏ। କିନ୍ତୁ ଧର୍ମ ବ୍ୟକ୍ତି ମାନସରେ ଯଦି ଅନ୍ୟ ଧର୍ମାବଲମ୍ବୀମାନଙ୍କ ପ୍ରତି ଦ୍ୱେଷ ଓ ଘୃଣା ସୃଷ୍ଟି କରେ, ତେବେ ତାହା ସାମ୍ପ୍ରଦାୟିକତାର ରୂପ ନିଏ। ଫାଶୀବାଦ ଓ ସାମ୍ପ୍ରଦାୟିକତା ପରସ୍ପର ସହ ସଂଶ୍ଳିଷ୍ଟ। କୌଣସି ଜାତି ବା ଗୋଷ୍ଠୀ ବିରୁଦ୍ଧରେ କ୍ରମାଗତ ବିଦ୍ୱେଷ ସୃଷ୍ଟି କରିବା ଓ ସେମାନଙ୍କର ଧନଜୀବନ ଓ ଅଧିକାରକୁ ବଳପ୍ରୟୋଗ ପୂର୍ବକ ଅପହରଣ କରିବାର ସଙ୍ଗଠିତ ଔଦ୍ଧତ୍ୟ ହେଉଛି ସାମ୍ପ୍ରଦାୟିକତା। ସେହିପରି ଧର୍ମ ମଧ୍ୟ ଅସମତାର ବିଷ ମଞ୍ଜି ବହନ ଓ ବପନ କରିଥାଏ। କାରଣ ଧର୍ମରେ ପୂଜକ, ପୁରୋହିତ କର୍ମକାଣ୍ଡର ପ୍ରାଦୁର୍ଭାବ ଯୋଗୁଁ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀକୁ ସୁବିଧା ମିଳିଥାଏ। ଧର୍ମୀୟ ବିଶ୍ୱାସ ଧାରାରେ ଜନଗଣଙ୍କ ଭିତରେ ଏକ ରୁଦ୍ଧ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବା, ଧର୍ମରେ ବିଷମତା, ବିଦ୍ୱେଷ ଓ ବିଭେଦ ଭାବନାକୁ ପୁଷ୍ଟ କରୁଥିବା ପରମ୍ପରା ସକଳକୁ ଜାବୁଡ଼ି ଧରି ରଖିବା ଯୋଗୁଁ କଟ୍ଟରବାଦ୍ ମୁଣ୍ଡ ଟେକିଥାଏ। ତେବେ ସାମ୍ପ୍ରଦାୟିକତା ଓ ମୌଳବାଦ ବା କଟ୍ଟରବାଦ ସମ୍ପର୍କରେ ସେ ଐତିହାସିକ ବିବରଣୀ ପ୍ରଦାନ କରି ମତପୋଷଣ କରନ୍ତି ଯେ ମୌଳବାଦ ଯୋଗୁଁ ଦେଶରେ କେବେହେଲେ ଐକ୍ୟ ବା ସଂହତି ସ୍ଥାପିତ ହୋଇନାହିଁ। ବରଂ ହିନ୍ଦୁମାନଙ୍କର ମନମସ୍ତିଷ୍କରେ ଉଦାରବାଦୀ ବିଚାର ପ୍ରାଧାନ୍ୟ ନେବା କାଳରେ ସମାଜରେ ଏକତା ଓ ସଂହତିର ପ୍ରତିଷ୍ଠା ହୋଇଛି। ଅବଶ୍ୟ ସାମ୍ପ୍ରଦାୟିକ ରାଜନୀତିକୁ ପ୍ରଭାବଶୂନ୍ୟ କରିବା ପାଇଁ ସେ ଧର୍ମକୁ ପ୍ରତ୍ୟାଖ୍ୟାନ କରିନାହାନ୍ତି ବରଂ ଧର୍ମର ଉଦାରବାଦୀ ମୂଲ୍ୟଚୟ ତଥା ସର୍ବଜନ-ହିତୈଷୀ ଆବେଦନକୁ ପ୍ରସାର କରାଇ ସାମ୍ପ୍ରଦାୟିକତା ଓ କଟ୍ଟରବାଦକୁ ମୁକାବିଲା କରିବାର ପ୍ରସ୍ତାବ ରଖିଛନ୍ତି। ତେବେ ସାମ୍ରାଜ୍ୟବାଦ ଓ ସାମ୍ପ୍ରଦାୟିକତା ମଧ୍ୟରେ ସେ ଏକ ସୂକ୍ଷ୍ମ ସମ୍ବନ୍ଧର ଅବତାରଣା କରିଛନ୍ତି। ଯେତେବେଳେ ଏକ ରାଷ୍ଟ୍ର ଋଣ ଯନ୍ତାରେ ଫସି ଯାଇଥିବ ଓ ଜନଗଣଙ୍କୁ କର୍ମସଂସ୍ଥାନ, ସ୍ୱାସ୍ଥ୍ୟସେବା ପରି ଜନମଙ୍ଗଳକାରୀ ସାହାଯ୍ୟ ଇତ୍ୟାଦି ଯୋଗାଇବାରେ ବିଫଳ ହେଉଥିବ ସେତେବେଳେ ଆର୍ଥିକ ଦୁର୍ଗତିଠାରୁ ଜନଗଣଙ୍କ ଦୃଷ୍ଟି ଅପସାରିତ କରି ସମାଜର ବିଭିନ୍ନ ଗୋଷ୍ଠୀମାନଙ୍କ ମଧ୍ୟରେ ବିଦ୍ୱେଷ ଓ ପ୍ରତିହିଂସାର ଭାବନାକୁ ତାହା ଉତ୍ତେଜିତ କରିବ। ସେହିପରି ସାମ୍ରାଜ୍ୟବାଦୀ ଶକ୍ତିଗଣ ଯେତେବେଳେ ବ୍ୟାପକ ଓ ଦୀର୍ଘ ସମୟ ପାଇଁ ଆର୍ଥିକ ଶୋଷଣର ଷଡଯନ୍ତ୍ର କରନ୍ତି ସେମାନେ ଶୋଷିତ ଜନଗଣଙ୍କ ଭିତରେ ଥିବା ଗୋଷ୍ଠୀମାନଙ୍କ ମଧ୍ୟରେ ଘୃଣା ଓ ସଂଘର୍ଷର ମନୋଭାବକୁ ଉଦ୍ରେକ କରନ୍ତି। ଅର୍ଥାତ୍ ସାମ୍ରାଜ୍ୟବାଦୀ ଶୋଷଣ ପାଇଁ ସାମ୍ପ୍ରଦାୟିକ ବିଦ୍ୱେଷକୁ ଆଧାର କରାଯାଏ।

ସାମ୍ରାଜ୍ୟବାଦ ଓ ସାମ୍ପ୍ରଦାୟିକତା ଜଗତୀକରଣ ପ୍ରକ୍ରିୟାରେ ଯେ ସମତାଳଯୁକ୍ତ ଏହା ସେ ଦର୍ଶାଇଛନ୍ତି ।

ଗତ ଏକ ଦଶନ୍ଧି ଧରି କିଶନ ବାବୁ ଏକ ବିକଳ୍ପ ବିକାଶର ଭାବନାକୁ ନେଇ ଗମ୍ଭୀର ଭାବରେ ଚିନ୍ତା ପ୍ରକଟ କରିଛନ୍ତି । ବିଶେଷ କରି ଆଧୁନିକ ପ୍ରଯୁକ୍ତି ଓ ବିକାଶ ଯେ ମଣିଷ ଜାତିକୁ ଏକ ଭୟାନକ ସ୍ଥିତି ଭିତରକୁ ଟାଣି ନେଉଛି ତାହା ସେ ଦର୍ଶାଇଛନ୍ତି । ଆଧୁନିକ ପ୍ରଯୁକ୍ତି ନିରନ୍ତର ବା ସ୍ଥାୟୀ ବିକାଶର ପ୍ରତିବନ୍ଧକ ଓ ପରିବେଶର ବିଧ୍ୱଂସକାରୀ । ଦୁନିଆଁରେ ଯେଉଁ ପରିବେଶ ଆନ୍ଦୋଳନ ଆରମ୍ଭ ହୋଇଛି ଓ ଯାହାକି ତାଙ୍କର ମତରେ ବିଂଶ ଶତାବ୍ଦୀର ଶେଷ ଗୁରୁତ୍ୱପୂର୍ଣ୍ଣ ଆନ୍ଦୋଳନ ତାହାର ସୁଫଳ 'ବିକଶିତ' ରାଷ୍ଟ୍ରମାନଙ୍କର ଜନତାକୁ ନିଶ୍ଚୟ ମିଳିଛି । ଅନ୍ତତଃ ବିକଶିତ ରାଷ୍ଟ୍ରମାନଙ୍କର ଜନଗଣଙ୍କ ଚେତନା ଭିତରେ ଏହି ଭାବନା ସୃଷ୍ଟି ହୋଇଛି ଯେ ପ୍ରଦୂଷଣମୁକ୍ତ ଖାଦ୍ୟ, ଜଳ ଓ ବାୟୁ ସେମାନଙ୍କର ଏକ ଅଧିକାର । କିନ୍ତୁ ବିକାଶଶୀଳ ବା ଗରିବ ଦେଶମାନଙ୍କର ଜନସାଧାରଣ ପରିବେଶ ସମସ୍ୟା ନେଇ ସଚେତନ ନୁହନ୍ତି ଓ ଏପରିକି ପରିବେଶ ଆନ୍ଦୋଳନକୁ ସେମାନେ ବେଳେ ବେଳେ ବିରୋଧ କରିଥାନ୍ତି । କିଶନ ବାବୁ ଏହାର ଆର୍ଥିକ ଓ ଅନ୍ୟାନ୍ୟ ଦିଗ ବିଷୟରେ ଗମ୍ଭୀର ଭାବେ ଚିନ୍ତା କରିଛନ୍ତି । ତାଙ୍କ ମତରେ ଆନ୍ତର୍ଜାତିକ ସ୍ତରରେ ପରିବେଶ ଆନ୍ଦୋଳନ ନେଇ ଏକ ଗଣଚେତନା ଜାଗ୍ରତ କରିବାକୁ ହେବ । ଆର୍ଥିକ ବିଷମତାକୁ କମାଇବା ପାଇଁ ଏକ ନୂତନ ଅର୍ଥବ୍ୟବସ୍ଥା ଓ ଏକ ବିକଳ୍ପ ବିକାଶନୀତି ସମଗ୍ର ବିଶ୍ୱସ୍ତରରେ ବୁଦ୍ଧିଜୀବୀମାନେ ବିଚାର କରିବା ଆବଶ୍ୟକ । ପ୍ରଚଳିତ ପ୍ରଯୁକ୍ତି ବିଦ୍ୟା ଯେପରି ଏକ ଶୋଷଣଯୁକ୍ତ ବ୍ୟବସ୍ଥାକୁ ଉଦ୍ରେକ କରାଉଛି ତାକୁ ପରିବର୍ତ୍ତନ କରି ଏକ ବୈକଳ୍ପିକ ପ୍ରଯୁକ୍ତି ଓ ଏକ ନୂତନ ଜୀବନଶୈଳୀ ବିଷୟରେ ବିଚାର ବିମର୍ଶ କରିବାକୁ ସେ ନାନା ଲେଖାରେ ନିବେଦନ କରିଛନ୍ତି । ମୋଟ ଉପରେ କହିଲେ ସମାଜର ଯେ କୌଣସି ସମସ୍ୟା ଉପରେ ଗମ୍ଭୀର ଚିନ୍ତା ପ୍ରକଟ କଲାବେଳେ ସେ ବ୍ୟକ୍ତି ଓ ସମୂହ, ଧର୍ମ ଓ ନୀତି ଏବଂ ପରିବେଶ ଓ ବିକାଶ ଭିତରେ ଯେଉଁ ସମନ୍ୱୟକାରୀ ସିଦ୍ଧାନ୍ତର ଅବତାରଣା କରନ୍ତି ତାହା ଏକ ସୃଜନଶୀଳ ଚେତନାର ପରିଚୟ ଦେଇଥାଏ ।

ସେହିପରି ମାନବିକ ଅଧିକାର, ସାମାଜିକ ନ୍ୟାୟ ଇତ୍ୟାଦି ପ୍ରସଙ୍ଗ ଉପରେ ସେ ନିଜର ସୁଚିନ୍ତିତ ସିଦ୍ଧାନ୍ତମାନ ପ୍ରଦାନ କରିଛନ୍ତି । ସମାଜର ସାଧାରଣ ବ୍ୟକ୍ତିଟିର ଜୀବନ, ଜୀବିକା, ଅଧିକାର ଓ ସୁରକ୍ଷା ତାଙ୍କ ଚେତନାରେ ସର୍ବଦା ଅଗ୍ରାଧିକାର ପାଇଛି । ଗଭୀର ମାନବିକ ସଂପ୍ରୀତି ଓ ସଂପୃକ୍ତିର ଅବବୋଧ ଦ୍ୱାରା ସେ ଆଲୋଡିତ ହୋଇ ସମାଜର ଅତି

ସାଧାରଣ ମଣିଷର ସମସ୍ୟାର ସମାଧାନକୁ କୌଣସି ବିକାଶଧାରାର ଅସଲ କଷଟି ଭାବେ ଗ୍ରହଣ କରିଛନ୍ତି । ସତେ ଯେପରି ଗାନ୍ଧୀଙ୍କ ମନ୍ତ୍ର ବୈଚାରିକ ସ୍ତରରେ ତାଙ୍କ ପାଇଁ ଶ୍ରେଷ୍ଠ କଷଟି ହୋଇଛି । ମାଟିର ମଣିଷ ପାଇଁ ତାଙ୍କର ବିଚାର ତାଙ୍କୁ ତତ୍ତ୍ୱଦର୍ଶୀ କରିଛି ।

ସାମଗ୍ରିକ ଭାବେ କିଶନ ବାବୁ ଏକ ମହତ୍ତର ଜୀବନ ଓ ସଂପ୍ରୀତିପୂର୍ଣ୍ଣ ସାମାଜିକ ସମ୍ବନ୍ଧ ପାଇଁ ସର୍ବଦା ସ୍ୱପ୍ନ ଦେଖିଛନ୍ତି । ନିଜର ଯାହା କିଛି ଆଦର୍ଶ ତାଙ୍କୁ ଜୀବନଶୈଳୀରେ ପ୍ରତିଫଳିତ କରିବାକୁ ପ୍ରୟାସ କରିଛନ୍ତି । ସ୍ୱାର୍ଥର ଊର୍ଦ୍ଧ୍ୱରେ ରହି ବିବେକର ଅନ୍ତଃସ୍ୱର ଦ୍ୱାରା ପ୍ରଭାବିତ ହୋଇଛନ୍ତି । ବ୍ୟକ୍ତିସତ୍ତା ସ୍ତରରୁ ସେ ବିସ୍ତାରିତ ବିଶ୍ୱ ସ୍ତରକୁ ରୂପାନ୍ତରିତ ହୋଇଛନ୍ତି । ବିଚାରରେ ଓ ଏକ ଅଭିନବ ଚିନ୍ତନରେ । ଏହି ଅନନ୍ୟ ଚିନ୍ତକଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

# ବିପ୍ଳବିନୀ ମାଳତୀ ଦେବୀ

"ମାଳତୀ ଦେବୀ ରଣଚଣ୍ଡୀ" ମୁଁ ଏହା ବିଦ୍ୟାଳୟରେ ଛାତ୍ର ଥିବାବେଳେ ଚାରି ଦଶନ୍ଧି ତଳେ ଶୁଣିଥିଲି । ଜଣେ କଳହ-ପ୍ରବଣା ବା କଳିହୁଡ଼ୀ ଉଗ୍ର ମହିଳାଙ୍କୁ ରଣଚଣ୍ଡୀ କୁହାଯାଏ । ଏହା ସାଧାରଣତଃ ଅସମ୍ମାନଜନକ ଅର୍ଥରେ ବ୍ୟବହୃତ ହୋଇଥାଏ । କିନ୍ତୁ କେତେକ ଶବ୍ଦମାନଙ୍କର ଅର୍ଥ ପ୍ରତୀକଧର୍ମୀ ଓ ସେମାନଙ୍କର ପ୍ରଧାନ ଅର୍ଥ ପଶ୍ଚାତରେ ଭିନ୍ନ ଅର୍ଥ ଲୁକ୍କାୟିତ ଭାବରେ ରହିଥାଏ । ମାଳତୀ ଦେବୀଙ୍କୁ, ଶ୍ରଦ୍ଧାରେ ହେଉ ବା ରାଗରେ ଯେଉଁମାନେ 'ରଣଚଣ୍ଡୀ' କହୁଥିଲେ ସେମାନେ ତାଙ୍କ ବ୍ୟକ୍ତିତ୍ୱର କିଛି ବୈଶିଷ୍ଟ୍ୟ ନିଶ୍ଚୟ ଲକ୍ଷ୍ୟ କରିଛନ୍ତି । ତାଙ୍କର ପ୍ରଶଂସକ ଓ ସମାଲୋଚକ ( ? ) ଉଭୟ ତାଙ୍କ ଭିତରେ ସାଲିସହୀନ ଦୃଷ୍ଟିଭଙ୍ଗୀର ପରିଚୟ ପାଇଛନ୍ତି । ସେହି ପରିଚୟ ହୁଏତ ସମସ୍ତଙ୍କ ପାଇଁ ଏକା ପ୍ରକାର ନୁହେଁ ।

ସମାଜର ଜଣେ ଜଣେ ବ୍ୟକ୍ତି ପ୍ରଚଳିତ ଗୁଳା ଭିତରେ ଯିବାକୁ ଚାହାନ୍ତି ନାହିଁ । ବିଚାରଶୀଳ ଭାବରେ ସେମାନେ ନୂଆ ବାଟ ଖୋଜନ୍ତି, ନୂତନର ସନ୍ଧାନ କରନ୍ତି । ସେହି ଅନ୍ୱେଷଣ ଭିତରେ ସେମାନେ ସମାଲୋଚିତ ହୁଅନ୍ତି ଓ ସ୍ଥଳବିଶେଷରେ ନାନା ମୂଲ୍ୟ ମଧ୍ୟ ଦିଅନ୍ତି । ତଥାପି ସେହି ସାଲିସହୀନ ବ୍ୟକ୍ତିମାନେ ଯେଉଁ ଅମଡ଼ାବାଟକୁ ବାଛନ୍ତି ତାହା କାଳକ୍ରମେ ସଂସ୍କୃତିସଂପନ୍ନ ଆଚରଣର ସ୍ୱୀକୃତି ପାଏ ଓ ସେହି ବାଟର ପଥିକମାନେ ସମାଜ ପାଇଁ କ୍ରାନ୍ତିର ବାର୍ତ୍ତାବହ ହୁଅନ୍ତି । ଆମେ ସେମାନଙ୍କୁ ଉଗ୍ର, ରଣଚଣ୍ଡୀ ବା ସେପରି କିଛି ବିଶେଷଣ ଦେଇପାରୁ କିନ୍ତୁ ସେମାନେ ହିଁ ପ୍ରଗତିଶୀଳ ମୂଲ୍ୟବୋଧର ସୂତ୍ରଧର ଅଟନ୍ତି ।

ଆଜକୁ ସାତ ଆଠ ଦଶନ୍ଧି ତଳେ ସେତେବେଳ ସମାଜରେ ପ୍ରଚଳିତ ବ୍ୟବସ୍ଥା ବିରୋଧରେ ଯାଇ ମାଳତୀ ଦେବୀ ଓ ନବବାବୁ ପରସ୍ପରକୁ ଜୀବନସାଥୀ କରିବା ପାଇଁ ଯେଉଁ ନିଷ୍ପତ୍ତି ନେଇଥିଲେ ତାହା ଏକ ସାହସିକ ପଦକ୍ଷେପ ଥିଲା । ସମାଜର ଜାତି ବ୍ୟବସ୍ଥା ଅଦ୍ୟାବଧି ବଳବତ୍ତର ଥିବା ବେଳେ ଓ ଜାତିବିହୀନ ବିବାହ ସମାଜର ସାଧାରଣ ଧାର ପରିବର୍ତ୍ତେ ବ୍ୟତିକ୍ରମ ବୋଲି ଗ୍ରହଣ କରାଯାଉଥିବା ସମୟରେ ସେତେବେଳେ ଏକ ପାରମ୍ପରିକ ବ୍ୟବସ୍ଥା ବିରୋଧରେ ଯିବା ନିଶ୍ଚିତ ଭାବେ ଦୃଢ଼ ମନୋବଳର ପରିଚୟ ଦିଏ । କବିଗୁରୁ ରବୀନ୍ଦ୍ରନାଥଙ୍କର

ଶାନ୍ତିନିକେତନ ଉଭୟଙ୍କ ମଧ୍ୟରେ ସମ୍ବନ୍ଧ ପ୍ରତିଷ୍ଠା ପାଇଁ ମାଧ୍ୟମ ଥିଲା ଓ ଉଭୟ ସେଠାରେ ଅଧ୍ୟୟନ ଅବସରରେ ପରସ୍ପରକୁ ଜାଣିବାର ସୁଯୋଗ ପାଇଥିଲେ । ଉଭୟଙ୍କର ଜୀବନଦୃଷ୍ଟି, ଆଦର୍ଶ ଓ ଆଭିମୁଖ୍ୟ ଭିତରେ ଯେଉଁ ସାମଞ୍ଜସ୍ୟ ଥିଲା ତାହା ତାଙ୍କ ଭିତରେ ମମତାର ବନ୍ଧନକୁ ଦୃଢ କରିଥିଲା । ସେହି ମମତ୍ୱବୋଧ ପାଖରେ କିଛିଟା ପାରିବାରିକ ବିରୋଧ ଓ ଜାତିଗତ ସାମାଜିକ ପରମ୍ପରା ମୂଲ୍ୟହୀନ ହୋଇଯାଇଥିଲା ।

ନବବାବୁ ଓ ମାଳତୀ ଦେବୀ ଉଭୟ ଆଭିଜାତ୍ୟପୂର୍ଣ୍ଣ ପରିବାରରୁ ଆସିଥିଲେ ବି ନିଜର ସମସ୍ତ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇଥିଲେ । ଗାନ୍ଧୀଜୀଙ୍କର ରଚନାତ୍ମକ କାର୍ଯ୍ୟସୂଚୀରେ ଅନୁପ୍ରାଣିତ ହୋଇ ସେହି ଲକ୍ଷ୍ୟ ସାଧନରେ ନିଜକୁ ବ୍ରତୀ କରାଇଥିଲେ । ଏକ ସ୍ୱାଧୀନ, ଶ୍ରେଣୀହୀନ ଓ ଶୋଷଣହୀନ ରାଷ୍ଟ୍ର ଗଠନ ପାଇଁ ସେତେବେଳର ସମାଜରେ ଯେଉଁ ରାଜନୈତିକ ଆଲୋଡ଼ନଟି ଥିଲା ସେଥିରେ ଉଭୟ ସମ୍ପୂର୍ଣ୍ଣ ଭାବରେ ଝାସ ଦେଇଥିଲେ । ନିଜର ସମ୍ଭ୍ରାନ୍ତ ବଂଶ ଆଭିଜାତ୍ୟକୁ ପାଦରେ ଠେଲି ଦେଇ ସମାଜର ନିଃସ୍ୱ ସାଧାରଣ ମଣିଷ ପାଖରେ ପହଞ୍ଚି ସେମାନଙ୍କର ସୁଖଦୁଃଖରେ ଭାଗୀ ହୋଇ ସେମାନଙ୍କର ଆର୍ଥିକ, ମାନସିକ ଓ ନୈତିକ ବିକାଶ ସାଧନରେ ବ୍ରତୀ ହୋଇଥିଲେ । ସମାଜର ସାଧାରଣ ମଣିଷ ସହିତ ନିଜକୁ ମିଶାଇ ଦେବା ଭିତରେ ଏକ ଶ୍ରେଣୀହୀନ ଓ ସମତାଭିତ୍ତିକ ସମାଜର ସ୍ୱପ୍ନ ଯେ ସେମାନଙ୍କୁ ଏକଦା ବିଭୋର କରିଥିଲା, ଏହା କହିବା ଅତ୍ୟୁକ୍ତି ହେବ ନାହିଁ । ତାହା ଅଣଖିଆ ପରି ଏକ ମଫସଲ ଗାଁରେ ରହି ଲୋକଙ୍କର ଆର୍ଥିକ ସ୍ଥିତିରେ ଉନ୍ନତି ଆଣିବା ପାଇଁ ହେଉ ବା ଗାଁକୁ ଗାଁ ବୁଲି ଲୋକମାନଙ୍କ ଭିତରେ ସ୍ୱାଧୀନତା ପାଇଁ ଜାଗରଣ ସୃଷ୍ଟି କରିବା ପାଇଁ ହେଉ ସବୁରି କ୍ଷେତ୍ରରେ ସେ ନିଜକୁ ଅତି ସାଧାରଣ ମଣିଷ ଭିତରୁ ଜଣେ ଭାବୁଥିଲେ । ସର୍ବୋଦୟ ସମାଜ ପ୍ରତିଷ୍ଠା ପାଇଁ ଜୀବନବ୍ୟାପୀ ଯେଉଁ ସ୍ୱପ୍ନ ତାଙ୍କର ଥିଲା ସେଥିରେ ସେ ପ୍ରାସାଦର ସମ୍ଭୋଗ ଭିତରେ କିପରି ଆବଦ୍ଧ ହୋଇ ରହିଥାନ୍ତେ ? ସମାଜର ସବୁ ଲୋକଙ୍କର କଲ୍ୟାଣ ଓ ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ କେତେ କେତେ ଭାଷଣ ଦିଆଯାଇ ପାରେ ବା କେତେ କେତେ ସିଦ୍ଧାନ୍ତର ଅବତାରଣା କରାଯାଇ ପାରେ କିନ୍ତୁ ସାଧାରଣ ମଣିଷ ସହିତ ଏକାଠି ରହି ତାର ସୁଖଦୁଃଖରେ ଭାଗୀ ହୋଇ ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ବୈଷମ୍ୟ ବିରୋଧରେ ଲଢିବା ବାସ୍ତବରେ ଅତି କଠିନ କାର୍ଯ୍ୟ ଅଟେ । କିନ୍ତୁ ମାଳତୀଦେବୀ ଏହି କଠିନ ରାସ୍ତାରେ ପଥିକ ହୋଇଛନ୍ତି । ସାଧାରଣ ମଣିଷର ଅଧିକାର, ମର୍ଯ୍ୟାଦା ପାଇଁ ସଂଗ୍ରାମକରି ଅସାଧାରଣ ପାଲଟିଛନ୍ତି ।

ସ୍ୱାଧୀନତା ପୂର୍ବରୁ କେତେକ ଗଡ଼ଜାତରେ ଅନେକ ଅନ୍ଧକାନୁନ ରହିଥିଲା ଓ ବେଠି, ଭେଟି ଏବଂ ଶୋଷଣଦ୍ୱାରା ଲୋକମାନଙ୍କୁ ଡଳିତଳାନ୍ତ କରାଯାଉଥିଲା ତାହା ବିରୋଧରେ ନବବାବୁ ଓ ମାଳତୀଦେବୀ ନିଷ୍ଠାପର ଭାବରେ ଲୋକମାନଙ୍କୁ ସଙ୍ଗଠିତ କରିବା ପାଇଁ ଅଣ୍ଟା ଭିଡ଼ିଥିଲେ। ଢେଙ୍କାନାଳ ବା ନୀଳଗିରିର ପ୍ରଜାମଣ୍ଡଳ ଆନ୍ଦୋଳନ ପଛପଟରେ ସେମାନଙ୍କର ଭୂମିକା ଓ ସ୍ୱାଧୀନତାର ଆରମ୍ଭ କାଳରେ ଗଡ଼ଜାତ ମିଶ୍ରଣ ପ୍ରକ୍ରିୟାରେ ସେମାନଙ୍କର ଅବଦାନ ଆଜି ଇତିହାସର ବିଷୟବସ୍ତୁ। ସମାଜର ଅନ୍ୟାୟ, ଅନୀତି, ଶୋଷଣ ବିରୋଧରେ ରଣ ହୁଙ୍କାର ଦେଇ ଏକ ସଂଗ୍ରାମୀ ଜୀବନକୁ ନିର୍ଭୀକ ଭାବରେ ଆଦରି ନେଇଥିବା ମଣିଷଟିକୁ କେହି ରଣଚଣ୍ଡୀ କହିପାରେ, କିନ୍ତୁ ଏହାଦ୍ୱାରା ତାର ବୈପ୍ଳବିକ ଜୀବନାଦର୍ଶକୁ ନ୍ୟୁନ କରାଯାଇ ପାରିବ ନାହିଁ।

ଗାନ୍ଧିଯୁଗରେ ଯେତେବେଳେ ସ୍ୱାଧୀନତା ସଂଗ୍ରାମ ସାରା ଦେଶରେ ବିସ୍ତାର ଲାଭକରିଥିଲା ସେହି ସମୟରେ ମାଳତୀଦେବୀ ଜାତୀୟ ସ୍ରୋତ ଭିତରେ ନିଜକୁ ମଧ ସାମିଲ କରିଥିଲେ। ଲବଣ ସତ୍ୟାଗ୍ରହ ପାଇଁ ହେଉ କିମ୍ବା ଭାରତଛାଡ଼ ଆନ୍ଦୋଳନ ପାଇଁ ହେଉ ପ୍ରତ୍ୟେକ ମୁଖ୍ୟ ଜାତୀୟ କାର୍ଯ୍ୟକ୍ରମ ସହିତ ସେ ଓ ତାଙ୍କ ପରିବାରର ସମସ୍ତେ ଝାସ ଦେଇଥିଲେ। ମାଳତୀଦେବୀ ଜାତୀୟ କାର୍ଯ୍ୟକ୍ରମରେ ଯୋଗ ଦେବା ସହିତ ଜାତୀୟ କାର୍ଯ୍ୟସୂଚୀକୁ ଓଡ଼ିଶାରେ ରୂପରେଖ ଦେବାରେ ଅଗ୍ରଣୀ ଭୂମିକା ନେଇଥିଲେ। ଏପରିକି ସେ ନିଜର ପୁଅ ଝିଅକୁ ନେଇ ବନ୍ଦୀ ଜୀବନ କଟାଇଛନ୍ତି। ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ପିଲାଙ୍କର ହିତକୁ ଗୁରୁତ୍ୱ ନ ଦେଇ ଜାତୀୟ ଲକ୍ଷ୍ୟ ହାସଲ ଦିଗରେ ନିଜକୁ ଉତ୍ସର୍ଗ କରିବା ଓ ସେ ପାଇଁ ଯେକୌଣସି କଷ୍ଟବରଣ କରିବା ଗୋଟିଏ ବିପ୍ଳବୀ ବ୍ୟକ୍ତିତ୍ୱର ପରିଚୟ ଦେଇଥାଏ। ଏ କ୍ଷେତ୍ରରେ ତାଙ୍କର ନିଜସ୍ୱ ବୈଶିଷ୍ଟ୍ୟ ମଧ ପରିଲକ୍ଷିତ ହୁଏ। ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଲଢ଼ିବା ସହିତ ଓଡ଼ିଶାରେ କଂଗ୍ରେସ ଦଳ ଭିତରେ ଯେଉଁ ସାମ୍ୟବାଦୀ ଚେତନାର ସୂତ୍ରପାତ ହୋଇଥିଲା, ସେଥିରେ ନବବାବୁ ଓ ମାଳତୀଦେବୀ ଅଗ୍ରଣୀ ଥିଲେ। କାର୍ଲମାର୍କସ ଓ କ୍ରୁପଟୋକିନ୍‌ଙ୍କ ପରି ଚିନ୍ତାନାୟକମାନଙ୍କର ବୈପ୍ଳବିକ ସିଦ୍ଧାନ୍ତକୁ ନେଇ ଶ୍ରମଜୀବୀ ମଣିଷର ମୁକ୍ତି ପାଇଁ ଯେଉଁ ସମାଜବାଦୀ ଆନ୍ଦୋଳନ ପୃଥିବୀର କେତେକ ଦେଶରେ ମୁଣ୍ଡ ଟେକିଥିଲା ସେଥିରେ ଅନୁପ୍ରାଣିତ ହୋଇ ନବବାବୁ ଓ ମାଳତୀଦେବୀ ଏକ ଶୋଷଣହୀନ ସାମ୍ୟ ସମାଜ ପାଇଁ ସଙ୍ଗଠନ ଆରମ୍ଭ କରିଥିଲେ। କଂଗ୍ରେସ ଭିତରେ ସେତେବେଳେ ଏହି ଆଦର୍ଶକୁ ପ୍ରସାର କରିବା ଜାତୀୟ ପୃଷ୍ଠଭୂମିରେ ସେମାନଙ୍କର ଉଲ୍ଲେଖନୀୟ ଅବଦାନ ଅଟେ। ମାଳତୀଦେବୀ ନିଜର ସମସ୍ତ ବ୍ୟକ୍ତିଗତ ଅଳଙ୍କାରକୁ କର୍ମୀସଂଘ ହାତରେ ପ୍ରଦାନ କରି "ସାରଥି" ନାମରେ ଏକ ପତ୍ରିକା ପ୍ରକାଶ କରିଥିଲେ। ଏହି ପତ୍ରିକା ସମାଜବାଦୀ ବିଚାରର ପ୍ରସାର କ୍ଷେତ୍ରରେ ଏକ ମାଇଲଖୁଣ୍ଟ ଥିଲା।

ସ୍ୱାଧୀନତା ପରେ ଦେଶରେ ଏକ ଶୋଷଣହୀନ ଓ ସର୍ବୋଦୟ ସମାଜର ପ୍ରତିଷ୍ଠା ପାଇଁ ମାଳତୀଦେବୀ ଅବିରତ ସଂଗ୍ରାମ କରିଛନ୍ତି । ସାମାଜିକ ନ୍ୟାୟ ଓ ଅର୍ଥନୈତିକ ସମତା ବ୍ୟତୀତ ରାଜନୈତିକ ସ୍ୱାଧୀନତାର ମୂଲ୍ୟ ଯେ ନାହିଁ ଏହା ସେତେବେଳେ ବହୁ ଦେଶପ୍ରେମୀ ଅନୁଭବ କରିଛନ୍ତି । ବିନୋବାଙ୍କର ଭୂଦାନ ଆନ୍ଦୋଳନ ଏ କ୍ଷେତ୍ରରେ ଏକ କ୍ରାନ୍ତିକାରୀ ପଦକ୍ଷେପ ଥିଲା । ମାଳତୀଦେବୀ ସକ୍ରିୟ ରାଜନୀତିଠାରୁ ଦୂରରେ ରହି ସମାଜରେ କ୍ରାନ୍ତି ପାଇଁ ନିଜର ନିଷ୍ଠାପର ପ୍ରୟାସ ଶେଷ ପର୍ଯ୍ୟନ୍ତ ଚାଲୁ ରଖିଛନ୍ତି । ନବଜୀବନ ମଣ୍ଡଳ, ବାଜିରାଉତ ଛାତ୍ରାବାସ, ଜୀବନ ବିଦ୍ୟାଳୟ ଜରିଆରେ ମୌଳିକ ଶିକ୍ଷାର ପ୍ରସାର ପରି ବହୁ ଅନୁଷ୍ଠାନ ଜରିଆରେ ମୌଳିକ ଶିକ୍ଷାର ପ୍ରସାର ପରି ବହୁ ଅନୁଷ୍ଠାନ ଗଠନ କରିବାରେ ମୁଖ୍ୟ ଭୂମିକା ନେଇଛନ୍ତି । ଗିରିବେଷ୍ଟିତ ଦୁର୍ଗମ କୋରାପୁଟ, ଫୁଲବାଣୀ ଓ ଗଞ୍ଜାମ ଜିଲ୍ଲାର ବହୁ ଅଞ୍ଚଳରେ ପଦଯାତ୍ରା କରି ଆଦିବାସୀ ଓ ଦଳିତ ଜନସାଧାରଣଙ୍କର ସ୍ୱାର୍ଥ ପାଇଁ ଅବିରତ ପ୍ରୟାସ କରିଛନ୍ତି । ବଣ ଜଙ୍ଗଲ ଭିତରେ ସାହୁକାର ଓ ଜମିଦାରଙ୍କର ଶୋଷଣରେ ଲୁଣ୍ଠିତ ଓ ଅତ୍ୟାଚାରିତ ହେଉଥିବା ଦଳିତ ଜନଗଣଙ୍କର ଆର୍ଥିକ ସ୍ଥିତିକୁ ବଦଳାଇବାକୁ ତଥା ସେମାନଙ୍କର ଅଧିକାର ବିଷୟରେ ସେମାନଙ୍କୁ ସଚେତନ କରାଇବାକୁ ନିଷ୍ଠାପର ଉଦ୍ୟମ କରିଛନ୍ତି । ସମାଜ ସେବାରେ ନିଜକୁ ନିୟୋଜିତ କରି ରଖିଥିବା କର୍ମୀ ତଥା ସମାଜର ଦଳିତ ଏବଂ ନିଷ୍ପେଷିତ ଲୋକଙ୍କ ପିଲାଙ୍କର ଶିକ୍ଷା ପାଇଁ 'ବାଜିରାଉତ ଛାତ୍ରାବାସ' ପ୍ରତିଷ୍ଠା କରିଛନ୍ତି । ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆଣିବା ପାଇଁ ଶିକ୍ଷା ମାଧ୍ୟମରେ ସ୍ୱାବଲମ୍ବନଶୀଳତା ଓ ସାମାଜିକ ଉତ୍ତରଦାୟିତ୍ୱ ସୃଷ୍ଟି କରିବାରେ ତାଙ୍କ ଅନୁଷ୍ଠାନର ଭୂମିକା ସର୍ବସ୍ୱୀକୃତ ।

ମାଳତୀଦେବୀ କବିଗୁରୁଙ୍କ ଅନୁଷ୍ଠାନରେ ଅଧ୍ୟୟନ କରି ଓ ତାଙ୍କଦ୍ୱାରା ପ୍ରଭାବିତ ହୋଇ ନିଜ ଜୀବନକୁ କଳାମୟ କରି ପାରିଥିଲେ । ସଙ୍ଗୀତ, ନୃତ୍ୟ, ଚାରୁକଳା ପ୍ରତି ତାଙ୍କର ରହିଥିବା ସହଜାତ ଶ୍ରଦ୍ଧା ଜୀବନର ନାନା ବାସ୍ତବତା ଭିତରେ କେବେ ବି ମଳିନ ହୋଇଯାଇ ନଥିଲା, ଅଧିକନ୍ତୁ ଜୀବନକୁ ଅଧିକ ସୃଜନଶୀଳ ଓ ରସସିକ୍ତ କରି ପାରିଥିଲା । ନିଜ ଅନୁଷ୍ଠାନର କିଶୋର କିଶୋରୀମାନଙ୍କ ପ୍ରତି ତାଙ୍କର ମାତୃସୁଲଭ ଅନୁରାଗ ଏକ କଳାତ୍ମକ ସମ୍ବନ୍ଧରେ ପରିଣତ ହୋଇଥିଲା । ନିଜର ଈପ୍ସିତ ଲକ୍ଷ୍ୟ ଦିଗରେ ସମାଜର ଅଗ୍ରଗତି ବିଚ୍ୟୁତ ହେଉଥିବାର ଦେଖି ଏହି କଳାପ୍ରିୟ ମଣିଷଟି ବେଳକେ ବିଦ୍ରୋହୀ ହୋଇଛି । ବୌଦ୍ଧିକ ବିଳାସ ଭିତରେ ହିଂସା-ଅହିଂସାର ତାତ୍ତ୍ୱିକ ବ୍ୟାଖ୍ୟାକୁ ନେଇ କିଛି ମଣିଷ ବେଶ୍ ସନ୍ତୁଷ୍ଟ ଥା'ନ୍ତି । କିନ୍ତୁ ସମାଜର ଅନ୍ୟାୟ, ଶୋଷଣ, ଅତ୍ୟାଚାର ବିରୋଧରେ କେତେକ ବ୍ୟକ୍ତି ହିଂସାତ୍ମକ ପନ୍ଥାର ଆଶ୍ରୟ ନେଇ ପରିବର୍ତ୍ତନ ଚାହିଁଥାନ୍ତି । ଗୋଟିଏ ଅନ୍ୟାୟ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା କ୍ଷେତ୍ରରେ ଯେଉଁଠି ଅହିଂସ ଓ ଆଇନଗତ ବିରୋଧ ନିରର୍ଥକ ହୁଏ ସେଠାରେ ମଣିଷ ପ୍ରତିଶୋଧ ପରାୟଣ ହେବା ସ୍ୱାଭାବିକ

ହୋଇଥାଏ । ଏକଦା ନକ୍ସଲପନ୍ଥୀ ଆନ୍ଦୋଳନ ଏହି ପ୍ରତିକ୍ରିୟାର ପରିପ୍ରକାଶ ଥିଲା । ମାଳତୀଦେବୀ ଓ ନବବାବୁ ନକ୍ସଲପନ୍ଥୀ ଆନ୍ଦୋଳନ ପଶ୍ଚାତରେ ଥିବା ଏହି ଆବେଗକୁ ଅନୁଭବ କରିଥିଲେ । ଏହି ହିଂସାତ୍ମକ ବିପ୍ଳବୀମାନଙ୍କୁ ସେମାନେ ନୈତିକ ସମର୍ଥନ ଜଣାଇବା ପଶ୍ଚାତରେ ଦଳିତ ମଣିଷ ପ୍ରତି ମମତ୍ୱବୋଧ ଓ ସାମାଜିକ ନ୍ୟାୟ ପାଇଁ ସେମାନଙ୍କର ବ୍ୟାକୁଳତା ବେଶ୍ ସୁସ୍ପଷ୍ଟ । ସମାଲୋଚନାକୁ ଭ୍ରୂକ୍ଷେପ ନ କରି ନାଗରିକ ସୁରକ୍ଷା ଓ ମାନବିକ ଅଧିକାର କ୍ଷେତ୍ରରେ ସେମାନେ ନୂଆ ଦିଗନ୍ତ ସୃଷ୍ଟି କରିଛନ୍ତି । ଦୁର୍ନୀତି, ରାଜନୈତିକ ଭ୍ରଷ୍ଟାଚାର ବିରୋଧରେ ଜୟପ୍ରକାଶଙ୍କ ଆନ୍ଦୋଳନରେ ନବବାବୁ ଓ ମାଳତୀଦେବୀ ଓଡ଼ିଶାରେ ଅଗ୍ରଣୀ ଭୂମିକା ନେଇଛନ୍ତି । ଦୁର୍ନୀତି, ଅନ୍ୟାୟ ଓ ଅତ୍ୟାଚାର ବିଲୋପ କରି ସମାଜରେ ନ୍ୟାୟ, ସମତା ଓ ଭ୍ରାତୃତ୍ୱ ପ୍ରତିଷ୍ଠା ପାଇଁ ଯେତେବେଳେ ସ୍ୱର ଉଠିଛି, ମାଳତୀଦେବୀ ତାହାକୁ ସମର୍ଥନ ଦେଇଛନ୍ତି । ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସୁ ଏହାହିଁ ତାଙ୍କ ଜୀବନରେ ସର୍ବଦା ଧ୍ୟେୟ ହୋଇଛି ।

ବ୍ୟକ୍ତିଗତ ଜୀବନରେ ମାଳତୀଦେବୀ ହେତୁବାଦୀ ଜୀବନଦୃଷ୍ଟିର ପକ୍ଷପାତୀ ଥିଲେ । ସାହିତ୍ୟ, ସଙ୍ଗୀତ, କଳା ପ୍ରତି ଏତେ ଅନୁରାଗ ଥିବା ମଣିଷଟି ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯେ ରହିଥିଲା ତାହା ବେଶ୍ କୌତୂହଳପ୍ରଦ । ଅଲୌକିକତା ବା ଚମତ୍କାରିତାରେ ସେ ବିଶ୍ୱାସୀ ନ ଥିଲେ । ଅନୁଗୁଳ ନିକଟସ୍ଥ ରନ୍ତଲେଇ ଗ୍ରାମରେ ଯେଉଁ ନେପାଳୀ ବାବା ଅଲୌକିକ ଶକ୍ତିର ଅଧିକାରୀ ବୋଲି କହି ଲୋକମାନଙ୍କୁ ଠକି ଆସୁଥିଲା ଓ ହଜାର ହଜାର ଲୋକ ପ୍ରଚାରରେ ଭୁଲି ଦୂରଦୂରାନ୍ତରୁ ହୁକୁମ ଔଷଧ ପାଇଁ ଆସୁଥିଲେ ତାର ପ୍ରକୃତ ରହସ୍ୟ ପଦାକୁ ଆଣିବାରେ ମାଳତୀଦେବୀ ପ୍ରମୁଖ ଭୂମିକା ନେଇଥିଲେ । ଲୋକମାନଙ୍କର ଧର୍ମଗତ ଭାବପ୍ରବଣତାର ସୁଯୋଗ ନେଇ ଦେଶରେ ଅନେକ ବାବା, ମାତାମାନେ ଅବତାର ପାଲଟି ସାଧାରଣ ମଣିଷକୁ ବେଶ୍ ଠକିଥାନ୍ତି । ଏହାକୁ ବିରୋଧ କରିବା ଓ ଲୋକମାନଙ୍କ ଭିତରେ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ କରାଇବାକୁ ସେ ସର୍ବଦା ଗୁରୁତ୍ୱ ଦେଇଛନ୍ତି ।

ଜାତି, ଧର୍ମ ଇତ୍ୟାଦି ସଂକୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱରେ ଥାଇ ସେ ମଣିଷକୁ ଭଲ ପାଇଛନ୍ତି । ସାମ୍ପ୍ରଦାୟିକ ଗଣ୍ଡଗୋଳ ସମୟରେ ସମାଜରେ ଶାନ୍ତି ଓ ସଦ୍‌ଭାବ ଫେରାଇ ଆଣିବାକୁ ବହୁବାର ପ୍ରୟାସ କରିଛନ୍ତି । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଯେଉଁ ସାମ୍ପ୍ରଦାୟିକ ବିଦ୍ୱେଷ ସୃଷ୍ଟି ହୋଇଥିଲା ତାହାର ଦୂରୀକରଣ ପାଇଁ ସେ ଯତ୍‌ପରୋନାସ୍ତି ଉଦ୍ୟମ କରିଛନ୍ତି । ତାଙ୍କରି ଉଦ୍ୟମ ଯୋଗୁଁ ୧୯୪୬ରେ କଟକରେ ହିନ୍ଦୁ ଓ ମୁସଲମାନଙ୍କ ଭିତରେ କନ୍ଦଳକୁ

ଏଡ଼ାଯାଇ ପାରିଛି। ସେ ନୂଆଖାଲିରେ ମହାତ୍ମାଗାନ୍ଧୀଙ୍କ ସହ ଯୋଗଦେଇ ସାମ୍ପ୍ରଦାୟିକ ସଦ୍‌ଭାବ ପାଇଁ ପ୍ରୟାସ କରିଛନ୍ତି। ରାଉରକେଲାରେ ସାମ୍ପ୍ରଦାୟିକ ଦଙ୍ଗା ସମୟରେ ସେ କ୍ଷତିଗ୍ରସ୍ତ ପରିବାରମାନଙ୍କର ପଛରେ ଛିଡ଼ାହୋଇ ସେମାନଙ୍କର ଆତ୍ମବିଶ୍ୱାସ ଫେରାଇ ଆଣିଛନ୍ତି। ସେହିପରି ହିନ୍ଦୁ ସମାଜର କୁସଂସ୍କାର, ଜାତିପ୍ରଥା ଓ ଅସ୍ପୃଶ୍ୟତା ବିରୋଧରେ ସେ ସର୍ବଦା ସ୍ୱର ଉତ୍ତୋଳନ କରି ଆସିଛନ୍ତି। ଯେଉଁ ପ୍ରଥା ବା ବ୍ୟବସ୍ଥା ବ୍ୟକ୍ତି ମର୍ଯ୍ୟାଦାର ପରିପନ୍ଥୀ, ତାକୁ ସେ ସର୍ବଦା ବିରୋଧ କରିଛନ୍ତି।

ନିଜ ଆଶ୍ରମର ବହୁ ଛାତ୍ରଛାତ୍ରୀ ଓ କର୍ମୀଙ୍କୁ ମାତୃସୁଲଭ ସ୍ନେହ ମମତା ଯେପରି ଦେଇଛନ୍ତି ସେହିପରି ବେଳେବେଳେ ଅନୁଶାସନ ଜନିତ କିଛିଟା କର୍ତ୍ତୃତ୍ୱ ମଧ୍ୟ ଜାହିର କରିଛନ୍ତି। ସାମାଜିକ ଅନ୍ୟାୟ ଓ ଶୋଷଣ ବିରୋଧରେ ବେଳେବେଳେ ରଣହୁଙ୍କାର ଦେଇଛନ୍ତି ଅଥଚ ବଣ କାନ୍ତାରର ସାଧାରଣ ଆଦିବାସୀ ସହିତ ଆତ୍ମୀୟତାର ବନ୍ଧନ ଯୋଡ଼ିଛନ୍ତି। ଅହିଂସା ଓ ସତ୍ୟାଗ୍ରହର ଆଦର୍ଶକୁ ଶ୍ରେଷ୍ଠ ମୂଲ୍ୟବୋଧ ଭାବରେ ଗ୍ରହଣ କରିଛନ୍ତି, ପୁନଶ୍ଚ ସମତା ଓ ସାମାଜିକ କ୍ରାନ୍ତି ପାଇଁ ଲଢୁଥିବା ପ୍ରତିକ୍ରିୟାଶୀଳ ବିପ୍ଳବୀମାନଙ୍କର ସ୍ୱାଧୀକାର ପାଇଁ ଆଇନର ସହାୟତା ଯୋଗାଇ ନୈତିକ ସମର୍ଥନ ଦେଇଛନ୍ତି। ଏଇସବୁ ବିରୋଧାଭାସ ହୁଏତ ତାଙ୍କ ପାଖରେ ରହିଛି। ତଥାପି ସାମଗ୍ରିକ ଭାବରେ ତାଙ୍କ ବ୍ୟକ୍ତିତ୍ୱର ଏକ ନିଜସ୍ୱ ଶୈଳୀ ରହିଛି। ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସୁ, ସବୁ ମଣିଷ, ମଣିଷର ଗୌରବ ନେଇ ବଞ୍ଚନ୍ତୁ, ଶୋଷଣ ଓ ଅନ୍ୟାୟର ମୂଳୋତ୍ପାଟନ ହେଉ ଏହି ଭାବନା ସର୍ବଦା ତାଙ୍କୁ ପ୍ରଭାବିତ କରିଛି। ଏହି ଲକ୍ଷ୍ୟ ଦିଗରେ ପରିଚାଳିତ ହୋଇ ସେ ଭିନ୍ନ ଭିନ୍ନ ସମୟରେ ନୂଆ ପଥରେ ପଥିକ ହୋଇଛନ୍ତି।

ଓଡ଼ିଶାର ଜନ ଜୀବନରେ ମାଳତୀଦେବୀ ଦୀର୍ଘ ସାତ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ଧରି ପ୍ରମୁଖ ଭୂମିକା ନେଇଛନ୍ତି। ଅଗଣିତ ମଣିଷ, ସହକର୍ମୀ ଓ ଛାତ୍ରଛାତ୍ରୀ ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣରେ ପ୍ରଭାବିତ ହୋଇଛନ୍ତି। ସେ ଥିଲେ ସାମାଜିକ ନ୍ୟାୟ ଓ ମାନବିକ ଅଧିକାରର ସତର୍କ ପ୍ରହରୀ। ସେ ଅନ୍ୟାୟ ଓ ଶୋଷଣ ଦୂର କରିବାକୁ ରଣଚଣ୍ଡୀ ସାଜୁଥିଲେ ମଧ୍ୟ ସେ ଅନ୍ତରରେ ଥିଲେ ମମତାମୟୀ, ଅନ୍ୟର ଦୁଃଖରେ ଦୁଃଖୀ ହେଉଥିବା ଓ ସମସ୍ତଙ୍କର ମଙ୍ଗଳ ଚାହୁଁଥିବା ଏକ ଦରଦୀ ମଣିଷ। ତାଙ୍କର ସ୍ଥାନ ଅପୂରଣୀୟ।

# ସର୍ବୋଦୟର ସ୍ୱପ୍ନଦ୍ରଷ୍ଟା : ମଦନମୋହନ

## (୧)

ମଦନ ମୋହନ ସାହୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରକାଶିତ ହେବାକୁ ଯାଉଥିବା ସ୍ମରଣିକା ପାଇଁ ଲେଖିବା ମୋ ପାଇଁ କଷ୍ଟଦାୟକ। ଯାହାଙ୍କ ସହିତ ପରିଚୟ ପରେ ଗଭୀର ଆତ୍ମୀୟତା ଆସି ପାରିଥିଲା ଓ ଯେ ମୋତେ ପୁତ୍ରତୁଲ୍ୟ ମନେକରି ମୋ ଜୀବନର ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡ଼ିକ ସହିତ ସଂପୃକ୍ତ ହୋଇଥିଲେ ତାଙ୍କ ପାଇଁ ଲେଖିବା ବେଳକୁ ଅତୀତର ସ୍ମୃତିଗୁଡ଼ିକ ମୋତେ ବ୍ୟଥିତ କରୁଛି। ତାଙ୍କର ଆଦର୍ଶ ଓ ବିଚାରଧାରା ପ୍ରତି ମୁଁ ଆକୃଷ୍ଟ ହୋଇଥିଲି। ସେ ମଧ୍ୟ ମୋତେ ତାଙ୍କର ସ୍ନେହ ଓ ଶ୍ରଦ୍ଧା ଭିତରେ ଆପଣାର କରି ନେଇଥିଲେ। ମୋର ବହୁ ସୁଖ ଦୁଃଖରେ ଭାଗୀ ହୋଇଥିଲେ ଓ ତାଙ୍କର ହାତ ଅବଶ ହେବା ପର୍ଯ୍ୟନ୍ତ ପନ୍ଦର ବର୍ଷରୁ ଊର୍ଦ୍ଧ୍ୱ ଧରି ମୋତେ ନିୟମିତ ପତ୍ର ଲେଖୁଥିଲେ। ମୁଁ ତାଙ୍କର ପୁଅ, ପୁତୁରା ବା ସେପରି କିଛି ସଂପର୍କୀୟ ବୋଲି ଧାରଣା ଅନ୍ୟମାନେ କରିଥିଲେ ଓ ଏପରିକି କେତେକ ତାଙ୍କ ମୃତ୍ୟୁ ସମ୍ବାଦରେ ମୋ ପାଖକୁ "ଶୋକବାର୍ତ୍ତା" ପଠାଇଥିଲେ। ଆଜି ସେ ନାହାନ୍ତି, କିନ୍ତୁ ତାଙ୍କ ସହ ବହୁ ସ୍ମୃତି ମନ ଭିତରେ ଅମଳିନ ହୋଇ ରହିଛି। ସେ ସ୍ମୃତି କ'ଣ ଭୁଲି ହେବ।

ମୋର ତାଙ୍କ ସହ ପ୍ରଥମ ସାକ୍ଷାତ ୧୯୭୮ରେ ହୁଏ। ତା ପୂର୍ବରୁ ଦୁଇଟି ଘଟଣାରେ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲି। ଯେତେଦୂର ମନେପଡୁଛି ମାସିକ ପତ୍ରିକା "ମାନସ"ର ୧୯୭୪ ମସିହାର ଏକ ସଂଖ୍ୟାରେ(କେଉଁ ମାସର ସଂଖ୍ୟା ମୋର ମନେ ନାହିଁ) ଜଣେ ଆମେରିକୀୟ ଯୁବକ ଆଇଜାକ୍ ଟୁସିସ୍‌ମ୍ୟାନଙ୍କର ଏକ ଇଂରାଜୀ ପ୍ରବନ୍ଧର ଅନୁବାଦ "ମୋ ଭାରତ ମୃତ" ଶୀର୍ଷକରେ ପ୍ରକାଶ ପାଇଥିଲା। ବୁଦ୍ଧ, ଶଙ୍କର, ବିବେକାନନ୍ଦ ଓ ଗାନ୍ଧୀଙ୍କୁ ପଢ଼ି ଟୁସିସ୍‌ମ୍ୟାନ ଭାରତୀୟ ଦର୍ଶନ ଓ ପ୍ରାଚ୍ୟ ବିଦ୍ୟା ଶିକ୍ଷା କରିବାକୁ ଆଗ୍ରହ ନେଇ ଜଣେ ବିଦ୍ୟାର୍ଥୀ ଭାବରେ ଆମ ଦେଶକୁ ଆସିଥିଲେ। କିନ୍ତୁ ସେ ଆମ ଦେଶର ଉଚ୍ଚ ଶିକ୍ଷା କ୍ଷେତ୍ରରେ ଯେଉଁ ଅବକ୍ଷୟର ଚିତ୍ର ଦେଖିଥିଲେ ସେଥିରେ ନିରାଶ ହୋଇ ଭାରତ ଛାଡ଼ି ଚାଲି ଯାଇଥିଲେ। ଆମର ଉଚ୍ଚ ଶିକ୍ଷା ଓ ସାମାଜିକ ଜୀବନର ଯେଉଁ କ୍ଷୟଶୀଳ ଚିତ୍ରଟି ନିଖୁଣ ଭାବରେ ସେ ତାଙ୍କ

ଲେଖାରେ ପ୍ରଦର୍ଶନ କରିଥିଲେ ତାହା ଯେକୌଣସି ଜଣେ ସଚେତନ ନାଗରିକଙ୍କୁ ମର୍ମାହତ କରିବ। ସେହି ଲେଖା ପରେ ମଦନ ବାବୁ "ମୋ ଭାରତ ମୃତ ନୁହେଁ" ବୋଲି ଏକ ପ୍ରବନ୍ଧ ଲେଖିଥିଲେ। ଏହି ଲେଖାଟି ନୈରାଶ୍ୟ ଭିତରେ ଆଶା ସଞ୍ଚାର କରିଥିଲା। ଆମର କ୍ଷୟଶୀଳତାକୁ ପ୍ରତିହତ କରି ଜାତୀୟ ଜୀବନକୁ ଓ ଶିକ୍ଷା ବ୍ୟବସ୍ଥାକୁ କିପରି ଉନ୍ନତ କରାଯାଇ ପାରିବ ତାର କିଛି ଦିଗ୍‌ଦର୍ଶନ ସେ ଦେଇଥିଲେ। ଏହି ଲେଖାଟି ପଢ଼ି ମୁଁ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲି। ଦ୍ୱିତୀୟରେ ସତୁରୀ ଦଶକରେ ଜୟ ପ୍ରକାଶଙ୍କ ଆନ୍ଦୋଳନ ଦ୍ୱାରା ସାରା ଭାରତରେ ଯେଉଁ ଜାଗରଣ ସୃଷ୍ଟି ହୋଇଥିଲା ଓଡ଼ିଶାରେ ସେହି ଆନ୍ଦୋଳନ ସହ ସଂଶ୍ଲିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ମଦନ ବାବୁଙ୍କର ନାମ ମୁଁ ସମ୍ବାଦପତ୍ରରେ ପଢ଼ିବାକୁ ଯାଉଥିଲି। ସେହି ଆନ୍ଦୋଳନ ସମାଜରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ଆଣିବ ବୋଲି ସେତେବେଳେ ଯୁବକ ଭାବରେ ମୁଁ ବିଶ୍ୱାସ କରୁଥିଲି। ସେହି ଆନ୍ଦୋଳନରେ ମଦନ ବାବୁଙ୍କ ଭୂମିକା ସଂପର୍କରେ ଜାଣିବାକୁ ପାଇ ମୁଁ ତାଙ୍କ ପ୍ରତି ମଧ୍ୟ ଆକୃଷ୍ଟ ହୋଇଥିଲି।

ତାଙ୍କ ସହ ଏହି ଭାବଗତ ପରିଚୟକୁ ନେଇ ମୁଁ ତାଙ୍କୁ ୧୯୭୮ରେ ସାକ୍ଷାତ କରି ଆମ ଗ୍ରାମ ଭୁବନରେ ଗାନ୍ଧୀଙ୍କ ବିଚାର ଉପରେ ଆମେ ଆୟୋଜନ କରିଥିବା ଏକ ଆଲୋଚନା ଚକ୍ରରେ ଯୋଗ ଦେବାକୁ ଅନୁରୋଧ କରିଥିଲି। ସେ ଆମର ଅନୁରୋଧ ରକ୍ଷାକରି ଭୁବନ ଆସି ଆମ ଗହଣରେ ରହି କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ। ଆଲୋଚନା ଚକ୍ର ବ୍ୟତୀତ ଆମର କେତେକ ସାମାଜିକ କାର୍ଯ୍ୟକ୍ରମ ମଧ୍ୟ ରହିଥାଏ। ବିଶେଷ କରି ଗାଁ ଗହଳ ପରିବେଶରେ ଅସ୍ପୃଶ୍ୟତା ଅନେକାଂଶରେ ଥିବାରୁ ଗାଁର ଲୋକମାନଙ୍କ ଭିତରେ ସାମାଜିକ ଚେତନା ସୃଷ୍ଟି କରିବା ପାଇଁ ଆମେ କେତେକ କାର୍ଯ୍ୟକ୍ରମ ରଖିଥିଲୁ। "ହରିଜନ ବସ୍ତିରେ ପଂକ୍ତି ଭୋଜନ" ସେହି କାର୍ଯ୍ୟକ୍ରମର ଏକ ଅଂଶବିଶେଷ ଥିଲା। ଆମର କାର୍ଯ୍ୟକ୍ରମ ସଂପର୍କରେ ଅଭିହିତ ହେଲାପରେ ସେ ବି ଆମ ସହିତ ଏହି କାର୍ଯ୍ୟକ୍ରମ ଗୁଡ଼ିକରେ ଅଂଶଗ୍ରହଣ କରି ନାନା ଭାବରେ ଆମକୁ ପ୍ରଭାବିତ କରିଥିଲେ।

ଏହାପରେ ୧୯୮୦ ମସିହାରେ ମୁଁ ବଲାଙ୍ଗିର ସ୍ଥିତ ରାଜେନ୍ଦ୍ର ମହାବିଦ୍ୟାଳୟକୁ ବଦଳି ହୋଇକରି ଗଲି। ସେ ସମୟରେ ସେ ବଲାଙ୍ଗିରରେ ଥିବା ତାଙ୍କର ଝିଅ, ଜ୍ୱାଇଁଙ୍କ ପାଖକୁ ଆସୁଥିଲେ ଓ ସେହିଠାରେ ହିଁ ମୁଁ ତାଙ୍କର ନିବିଡ଼ ସଂପର୍କରେ ଆସିବାର ସୁଯୋଗ ପାଇଲି। ଆସ୍ତେ ଆସ୍ତେ ଆମ ଭିତରେ ଆତ୍ମୀୟତାର ସମ୍ବନ୍ଧ ଗଢି ଉଠିଲା। ପ୍ରତିବର୍ଷ ଯେପରି ହେଲେ ଆମ ଭିତରେ ସାକ୍ଷାତ ହେଉଥିଲା, ଚିଠିପତ୍ରର ଆଦାନ ପ୍ରଦାନ ନିୟମିତ

ରହିଥିଲା ଓ କୌଣସି ସଙ୍ଗୋଷ୍ଠୀରେ ଏକତ୍ର ଯୋଗ ଦେବାବେଳେ ତାଙ୍କ ସହିତ ଏକାଠି ରହି ଭାବବିନିମୟ କରିବାର ସୌଭାଗ୍ୟ ମିଳୁଥିଲା। ଏହିପରି ସ୍ନେହ ମମତାର ବନ୍ଧନ ସୁଦୃଢ଼ ହୋଇଥିଲା।

## (୨)

ମଦନ ବାବୁ ଗାନ୍ଧୀ ବିଚାରାଦର୍ଶକୁ ଶ୍ରେୟ ଭାବରେ ଗ୍ରହଣ କରି ନିଜର ଜୀବନଧାରାକୁ ସେହି ଆଦର୍ଶରେ ପରିଚାଳିତ କରିଥିଲେ। ସ୍ୱାଧୀନୋତ୍ତର ଭାରତବର୍ଷରେ ସକ୍ରିୟ ରାଜନୀତି ଠାରୁ ଦୂରରେ ରହି ସର୍ବୋଦୟ ଜୀବନ ଦର୍ଶନକୁ ସେ ଅନ୍ତଃକରଣରେ ଗ୍ରହଣ କରିଥିଲେ। ରାଜନୈତିକ ସ୍ୱାଧୀନତା ଅପେକ୍ଷା ସାମାଜିକ ନ୍ୟାୟ ଓ ଅର୍ଥନୈତିକ ସମତା ଯେ ଅଧିକ ମହତ୍ତ୍ୱପୂର୍ଣ୍ଣ ତାହା ତାଙ୍କର ବିଶ୍ୱାସ ଥିଲା। ମଦନ ବାବୁ ତାଙ୍କର ବିଭିନ୍ନ ଲେଖା ଓ ପ୍ରବନ୍ଧମାନଙ୍କରେ ଏକ ଆଦର୍ଶ ସମାଜର ଚିତ୍ର ଦେଉଥିଲେ। ବୈଚାରିକ ସ୍ତରରେ ସର୍ବୋଦୟ ଦର୍ଶନକୁ ଗ୍ରହଣ କରି ସେହି ଆଦର୍ଶର ରୂପାୟନ ପାଇଁ ରାଷ୍ଟ୍ରୀୟ ଜୀବନରେ ସୃଷ୍ଟି ହୋଇଥିବା ପ୍ରତ୍ୟେକଟି ଜାତୀୟ କାର୍ଯ୍ୟସୂଚୀରେ ନିଜକୁ ସମ୍ପୂର୍ଣ୍ଣ ମିଶାଇ ଦେଇଥିଲେ। ଏକ ଅହିଂସ ବିପ୍ଳବ ଜରିଆରେ ଗ୍ରାମ ସ୍ୱରାଜ୍ୟ ସ୍ଥାପନ କରି ସମାଜର ଅର୍ଥନୈତିକ ଢାଞ୍ଚାରେ ମୌଳିକ ପରିବର୍ତ୍ତନ ଆଣିବା ପାଇଁ ବିନୋବା ତାଙ୍କର ଭୂଦାନ ଆନ୍ଦୋଳନ ଆରମ୍ଭ କରିଥିଲେ। ସେତେବେଳର ସମାଜରେ ଏହି ପଦକ୍ଷେପ ବହୁ ଆଶା ସଞ୍ଚାର କରିଥିଲା। ମଦନ ବାବୁ ଓଡ଼ିଶାରେ ଅନ୍ୟମାନଙ୍କ ସହିତ ସେହି ଆନ୍ଦୋଳନର ପୁରୋଭାଗରେ ଥିଲେ। ପଶ୍ଚିମ ଓଡ଼ିଶାର ବହୁ ଗ୍ରାମଦାନ କ୍ଷେତ୍ରରେ ତାଙ୍କର ନିଷ୍ଠାପର ଉଦ୍ୟମ ରହିଥିଲା। ଭୂଦାନ ଆନ୍ଦୋଳନ ଆଜି ଇତିହାସର ବିଷୟବସ୍ତୁ ହୋଇଗଲାଣି। କିନ୍ତୁ ସେହି ବର୍ଷଗୁଡ଼ିକରେ ଭୂଦାନ ଆନ୍ଦୋଳନ ଜରିଆରେ ସେ ଓଡ଼ିଶାରେ ବିନୋବାଙ୍କ ସହିତ ପଦଯାତ୍ରା କରିଥିଲେ। ପରେ "ଭୂଦାନ ସ୍ମୃତି" ନାମରେ ପ୍ରାୟ ପଚାଶଟିରୁ ଊର୍ଦ୍ଧ୍ୱ ଲେଖା ଓଡ଼ିଆ ସର୍ବୋଦୟ ପତ୍ରିକାରେ ସେ ଲେଖିଥିଲେ। ସେହି ଲେଖାଗୁଡ଼ିକରେ ଗ୍ରାମ ସ୍ୱରାଜ୍ୟ ଓ ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ସେ ତାଙ୍କର ଯେଉଁ ମହନୀୟ ଅନୁଭୂତିର ନିଛକ ଚିତ୍ର ଦେଇଥିଲେ ତାହା ଅବିସ୍ମରଣୀୟ।

ପୁନଶ୍ଚ ଜୟ ପ୍ରକାଶଙ୍କ ଆନ୍ଦୋଳନ ସମୟରେ ଯାହାକୁ ସେତେବେଳେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ କୁହାଯାଉଥିଲା, ସେ ଥିଲେ ଓଡ଼ିଶାର ଜଣେ ଅଗ୍ରଗାମୀ ନେତା। ଏକ ନ୍ୟାୟମୂଳକ ଓ ଉନ୍ନତ ସମାଜର ସ୍ୱପ୍ନ ଭିତରେ ସେ ବିଭୋର ହୋଇଥିଲେ। ରାଜନୈତିକ

ଦୁର୍ନୀତି, କେନ୍ଦ୍ରୀୟ ଅର୍ଥନୈତିକ ଢ଼ାଞ୍ଚା, ପ୍ରଶାସନିକ ଦାୟିତ୍ୱହୀନତା ଇତ୍ୟାଦି ବିରୁଦ୍ଧରେ ଜୟ ପ୍ରକାଶଙ୍କ ଆନ୍ଦୋଳନ ସେ ସମୟରେ ଏକ କ୍ରାନ୍ତିକାରୀ ପଦକ୍ଷେପ ଥିଲା । ଜରୁରୀକାଳୀନ ପରିସ୍ଥିତିରେ ସେ ଉଣେଇଶ ମାସ କାଳ ରାଜନୈତିକ ବନ୍ଦୀ ହୋଇ ରହିଥିଲେ । ଜରୁରୀକାଳୀନ ପରିସ୍ଥିତି ପରେ ନିର୍ବାଚନରେ ପ୍ରାର୍ଥୀ ହେବାକୁ ସମସ୍ତ ଅନୁରୋଧକୁ ସେ ପ୍ରତ୍ୟାଖ୍ୟାନ କରିଥିଲେ । ବ୍ୟକ୍ତିଗତ ଅଭିଳାଷ ବା ରାଜନୈତିକ ସ୍ୱାର୍ଥର ଊର୍ଦ୍ଧ୍ୱରେ ସେ ଥିଲେ । ଗାନ୍ଧୀ ଯୁଗର ମୂଲ୍ୟବୋଧର ସେ ଥିଲେ ଜଣେ ନିଷ୍ଠାପର ଅନୁସରଣକାରୀ । ସ୍ୱାର୍ଥ ଅପେକ୍ଷା ପରାର୍ଥ ଥିଲା ତାଙ୍କ ରାଜନୈତିକ ଚରିତ୍ରର ବୈଶିଷ୍ଟ୍ୟ ।

ତାଙ୍କର ରାଜନୈତିକ ଚିନ୍ତନ ନିଶ୍ଚୟ ରହିଥିଲା । ପରିବର୍ତ୍ତିତ ସାମାଜିକ ଓ ଅର୍ଥନୈତିକ ପରିସ୍ଥିତିରେ ଗାନ୍ଧୀବାଦର କିପରି ନୂତନ ପ୍ରୟୋଗ ହୋଇପାରିବ ସେ କ୍ଷେତ୍ରରେ ସେ ଥିଲେ ଜଣେ ସୃଜନଶୀଳ ବିଚାରକ । କୌଣସି ବିଚାରକୁ ଅନ୍ଧାନୁକରଣ କରିବା ତାଙ୍କ ସ୍ୱଭାବର ପରିପନ୍ଥୀ ଥିଲା । ଗାନ୍ଧୀ ବିଚାରଧାରା ପ୍ରତି ତାଙ୍କର ଭାବଗତ ବନ୍ଧନ ସୁଦୃଢ଼ ଥିଲେ ବି ମୁକ୍ତ ମନ ନେଇ ସବୁକୁ ବିଚାର କରିବା ଓ କୌଣସି ଚିନ୍ତନର ପ୍ରୟୋଗରୁ ତାର ମୂଲ୍ୟାୟନ କରିବାରେ ସେ ଗୁରୁତ୍ୱ ଦେଉଥିଲେ ।

ମୁଁ ଯେତିକି ଅନୁଭବ କରିଛି ସେ ତାଙ୍କର ବ୍ୟକ୍ତିଗତ ଜୀବନାଦର୍ଶରେ ଥିଲେ ହେତୁବାଦୀ । କୌଣସି ପ୍ରଚଳିତ ଧର୍ମୀୟ ବିଶ୍ୱାସ, ପୂଜା, ଆରାଧନା ଇତ୍ୟାଦି ପ୍ରତି ସେ ବିମୁଖ ଥିଲେ । ଜାତିପ୍ରଥା ଓ ସାମ୍ପ୍ରଦାୟିକତାର ସେ ଥିଲେ ବିରୋଧୀ । ସମାଜରୁ ଜାତି ବ୍ୟବସ୍ଥାର ବିଲୋପ ପାଇଁ ଅନ୍ତର୍ଜାତି ବିବାହକୁ ସେ ଗୁରୁତ୍ୱ ଦେଉଥିଲେ । ତାଙ୍କର ପାରିବାରିକ ସମ୍ବନ୍ଧ ଭିତରେ ସେ ଏହାକୁ ପ୍ରୟୋଗ କରିଥିଲେ ଓ ଏ କ୍ଷେତ୍ରରେ ଅନ୍ୟମାନଙ୍କ ପାଇଁ ପ୍ରେରଣାଦାୟକ ଥିଲେ ।

ଜଣେ ଉଚ୍ଚକୋଟିର ପ୍ରାବନ୍ଧିକ ଭାବରେ ସେ ନିଜକୁ ପ୍ରତିଷ୍ଠା କରି ପାରିଥିଲେ । ଓଡ଼ିଶାର ପତ୍ରପତ୍ରିକାରେ ସେ ଅନେକ ପ୍ରବନ୍ଧ ଲେଖିଛନ୍ତି । କେତେକ ସମ୍ବାଦପତ୍ରରେ ସେ ନିୟମିତ ସ୍ତମ୍ଭ ଲେଖୁଥିଲେ ଓ ନିଜର ଏକ ପାଠକ ଶ୍ରେଣୀ ସୃଷ୍ଟି କରିଥିଲେ । ହେଲେ ସେ ଯେ ବହୁ କବିତା ଲେଖିଛନ୍ତି-ତାଙ୍କର ଏହି ପରିଚୟଟି ହୁଏତ ଅନେକ ଜାଣି ନଥିବେ । କାରଣ ମୋ ଜାଣିବା ଭିତରେ ତାଙ୍କର କବିତା ବିଶେଷ ପ୍ରକାଶିତ ହୋଇନାହିଁ । ଜରୁରୀକାଳୀନ ପରିସ୍ଥିତିରେ ସେ ବନ୍ଦୀଜୀବନ କଟାଉଥିବା ବେଳେ କାରାବାସରେ ଶତାଧିକ କବିତା ଲେଖିଥିଲେ । ୧୯୮୨-୧୯୮୩ ମସିହାରେ ତାଙ୍କର ୪/୫ଟି କବିତା ଖାତା ନକଲ କରି ଦେବାକୁ ମୋତେ

ଦେଇଥିଲେ । ସେଗୁଡ଼ିକ ଉତାରିବା ଭିତରେ ମୁଁ ତାଙ୍କ କବି ପ୍ରତିଭାର ପରିଚୟ ପାଇଥିଲି । ଯେତେଦୂର ମନେପଡୁଛି ଅଧିକାଂଶ କବିତାରେ ସେ ସାମାଜିକ ବାସ୍ତବତାର ଚିତ୍ର ନିଖୁଣ ଭାବରେ ପ୍ରଦାନ କରିବା ସହ ଗୋଟିଏ ଉନ୍ନତ ସମାଜ ଓ ମହତ୍ତର ଜୀବନ ପାଇଁ ବ୍ୟାକୁଳତା ପ୍ରକାଶ କରିଥିଲେ । ସେହି କବିତାଗୁଡ଼ିକ ପ୍ରକାଶିତ ହେଲେ ଓଡ଼ିଶାର ସୁଧୀ ପାଠକବୃନ୍ଦ ତାଙ୍କ କବି ପ୍ରତିଭା ସଂପର୍କରେ ଅବଗତ ହୋଇ ପାରନ୍ତେ ।

ସେ ଅନେକାଂଶରେ ଥିଲେ ଏକ ସ୍ୱାଭିମାନୀ ଓ ସାଲିସହୀନ ମଣିଷ । ନିଜର ଭାବନା ଓ ଦୃଷ୍ଟିଭଙ୍ଗୀକୁ ଠୋକ୍‌ଠାକ୍ ଭାବରେ ପ୍ରକାଶ କରିବାରେ ସେ କେବେ ବି କୁଣ୍ଠାବୋଧ କରୁ ନଥିଲେ । ଫଳରେ କେତେକ କ୍ଷେତ୍ରରେ ଅନ୍ୟମାନଙ୍କ ସହିତ ତାଙ୍କର ମତାନ୍ତର ହେଉଥିଲା । କିନ୍ତୁ ତାଙ୍କର ମତ ଓ ଭାବନା ପଶ୍ଚାତରେ ଥିବା ତାଙ୍କର ଗଭୀର ଆତ୍ମବିଶ୍ୱାସ ଓ ଯୁକ୍ତିଶୀଳତା ତାଙ୍କ ବିରୋଧୀଙ୍କୁ ମଧ୍ୟ ବେଳକେ ସ୍ପର୍ଶ କରୁଥିଲା ।

ଜୀବନର କିଛି ବର୍ଷ ଶିକ୍ଷକତା ଭିତରେ ସେ ଅତିବାହିତ କରିଛନ୍ତି । ଜଣେ ଉଚ୍ଚକୋଟିର ଶିକ୍ଷକ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ଅଧ୍ୟୟନ ଓ ଅନୁସନ୍ଧିତ୍ସା ତାଙ୍କ ଜୀବନର ମହତ୍ତ୍ୱପୂର୍ଣ୍ଣ ବିଭବ ଥିଲା । ଅତ୍ୟନ୍ତ ପରିଣତ ବୟସରେ ମଧ୍ୟ ସେ ଅଧ୍ୟୟନରେ ବହୁ ସମୟ ଦେଉଥିଲେ । ପ୍ରତ୍ୟହଃ ଗୁଡ଼ିଏ ଚିଠି ଲେଖିବା ଓ ଅନ୍ୟମାନଙ୍କ ସହିତ ନିୟମିତ ପତ୍ର ସମ୍ବନ୍ଧ ରଖିବା ତାଙ୍କର ଏକ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା ।

ସେ ଯେଉଁଠି ରହୁଥିଲେ ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣରେ ଅନ୍ୟମାନଙ୍କୁ ଅନୁପ୍ରାଣିତ କରି ପାରୁଥିଲେ । ଏକଦା ଶ୍ରୀ ଅଲେଖ ପାତ୍ରଙ୍କର ଅଭିନବ କର୍ମକ୍ଷେତ୍ର ନୃସିଂହନାଥର "ନିସର୍ଗ ନିବାସ" ତାଙ୍କର ବାସସ୍ଥଳୀ ଥିଲା । ନିସର୍ଗ ନିବାସ ଓଡ଼ିଶା ତଥା ଭାରତବର୍ଷର ପରିବେଶ ବିଜ୍ଞାନୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ବିଶେଷକରି ନୃସିଂହନାଥରେ ପ୍ରସ୍ତାବିତ ବକ୍‌ସାଇଟ କାରଖାନା ବିରୁଦ୍ଧରେ ଯେଉଁ ଜାଗରଣ ସେ ଅଞ୍ଚଳରେ ସୃଷ୍ଟି ହୋଇଥିଲା ତାର ପୃଷ୍ଠଭୂମିରେ ନିସର୍ଗ ନିବାସର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ମଦନ ବାବୁ ଓ ଅଲେଖ ବାବୁ ସେ ଅଞ୍ଚଳରେ ଯେଉଁ ଜାଗରଣ ଆଣି ପାରିଥିଲେ ତାହା ଅବିସ୍ମରଣୀୟ ।

ତାଙ୍କର ଅନେକ ସ୍ୱପ୍ନ ଥିଲା । ଏକ ଶୋଷଣବିହୀନ, ସମତା ଭିତ୍ତିକ ଓ ଅହିଂସ ସମାଜ ପାଇଁ ତାଙ୍କ ପ୍ରାଣର ବ୍ୟାକୁଳତା ଥିଲା ଅସୀମ । ସମାଜ ଓ ରାଷ୍ଟ୍ର, ଗାନ୍ଧୀ ଆଦର୍ଶରୁ କିପରି ଦୂରେଇ ଯାଉଛି ସେ ପାଇଁ ସେ ବ୍ୟଥିତ ହେଉଥିଲେ । ଆଦର୍ଶ ସବୁ ଅପହଞ୍ଚ ବୋଲି ସେ ନିଜେ ଏକ ଲେଖାରେ ବ୍ୟକ୍ତ କରିଥିଲେ । ଆଦର୍ଶ ଅପହଞ୍ଚ, କିନ୍ତୁ ଆଦର୍ଶର ଅନୁଧାବନ

ପାଇଁ ପ୍ରୟାସ ନଥିବା ବା ଆଦର୍ଶର ବିପରୀତ ଦିଗରେ ସମାଜର ମଙ୍ଗକୁ ନେବା ହେଉଛି ପରିତାପର ବିଷୟ। ସମସ୍ତ ଗାନ୍ଧୀବାଦୀ ଓ ସାମାଜିକ କ୍ରାନ୍ତି ଚାହୁଁଥିବା ନିଷ୍ଠାପର ବ୍ୟକ୍ତିଙ୍କ ପାଇଁ ତାହା ଅନୁଶୋଚନାର କାରଣ ହୋଇଛି। ସର୍ବୋଦୟ ବିଚାର ଏକ ଉଚ୍ଚ ଆଦର୍ଶ, ଏକ ଇଉଟୋପିଆ। ମଦନ ବାବୁଙ୍କର ସାମଗ୍ରିକ ବିଚାର ପରିପ୍ରେକ୍ଷୀରେ ସେ ଥିଲେ ସେହି ଇଉଟୋପିଆର ଜଣେ ନିଷ୍ଠାପର ସମର୍ଥକ, ଜଣେ ଡ୍ରିମର (dreamer)। ତାଙ୍କ ନିଜର ଅନୁଭବକୁ ସେ ନିଜେ ମଧ୍ୟ ବେଳକେ କେଉଁଠି କେଉଁଠି ବ୍ୟକ୍ତ କରୁଥିଲେ- "ସର୍ବୋଦୟ ବିଚାର ଓ ଚିନ୍ତନର ମୃତ୍ୟୁ ନାହିଁ, କିନ୍ତୁ ସେହି ଆଦର୍ଶ ପାଇଁ ଆଚାର କ୍ଷୀଣରୁ କ୍ଷୀଣତର ହେବାରେ ଲାଗିଛି।"

## (୩)

ମଦନ ବାବୁଙ୍କ ଦେହାନ୍ତର ଏକ ବର୍ଷ ପୂର୍ବରୁ ତାଙ୍କ ସହିତ ଶାସନରେ ଶେଷ ସାକ୍ଷାତ ହୋଇଥିଲା। ସେତେବେଳକୁ ଉଦ୍ଦାମତା ହଜି ଯାଇଥିଲା, ପାଦ ଶିଥିଳ ହୋଇ ଆସିଥିଲା, ହାତରେ କଲମ ଧରିବାର ଶକ୍ତି ନ ଥିଲା। ସେ ସଂପୂର୍ଣ୍ଣ ଅଚଳ ସ୍ଥବିର ପାଲଟି ଯାଇଥିଲେ। ପ୍ରତ୍ୟହଃ ସମ୍ବାଦପତ୍ର ପଢ଼ିବା, ବିବିସି ସମ୍ବାଦ ଶୁଣିବା ଇତ୍ୟାଦି ଯାହା ତାଙ୍କର ନିତ୍ୟ ନୈମିତିକ ଅଭ୍ୟାସ ଥିଲା ତାହା ପ୍ରାୟ ବନ୍ଦ ହୋଇ ସାରିଥିଲା। ଜରାଜୀର୍ଣ୍ଣ ଶରୀରରେ ପୁଅ, ବୋହୂଙ୍କର ସେବା ଓ ଯତ୍ନ ଭିତରେ ସେ ତଥାପି ପ୍ରଫୁଲ୍ଲ ଥିଲେ। ନିଜର ପରିଚିତ ବା ଆତ୍ମୀୟ ଲୋକଙ୍କୁ ଦେଖିଲେ ଉତ୍‌ଫୁଲ୍ଲିତ ହେଉଥିଲେ। କ୍ଷୀଣ ସ୍ୱର ଭିତରେ ଭଲ ମନ୍ଦ ପଚାରୁଥିଲେ। ସଂସାରର କୋଳାହଳଠାରୁ ଦୂରରେ ରହି ଜୀବନର ମହାଯାତ୍ରା ପାଇଁ ସେ ପ୍ରସ୍ତୁତ ହୋଇ ରହିଥିଲେ। ତାଙ୍କ ପାଖରୁ ବିଦାୟ ନେଇ ଆସିବା ବେଳେ ଅନ୍ତର ଦୁଃଖରେ ଭରି ଯାଇଥିଲା। ସେ ବି ଏହା ଅନୁଭବ କରି ନିଶ୍ଚଳ ଭାବରେ ବିଦାୟ ଦେଇଥିଲେ। ତାଙ୍କ ଅନ୍ତରର ବିଦାୟକାଳୀନ ଭାଷା ତାଙ୍କର ସଦୟ ଦୃଷ୍ଟି ଭିତରୁ ଜାଣି ହେଉଥିଲା।

ମୋ ପରି ଅନେକଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ। ତାଙ୍କର ସାନ୍ନିଧ୍ୟ ଗୋଟିଏ ଯୁଗର ମୂଲ୍ୟବୋଧର ଇଙ୍ଗିତ ଦେଉଥିଲା। ଆଜିର କ୍ଷୟଶୀଳ ପରିବେଶରେ ସେ ଥିଲେ ବର୍ତ୍ତିକା ସଦୃଶ। ଜୀବନର ସକଳ ଆଦର୍ଶର ଅଧୋଗତି ବେଳେ ଜଣେ ଜଣେ ମଣିଷଙ୍କର ସାନ୍ନିଧ୍ୟ ମନରେ ଆଶା ସଞ୍ଚାର କରିଥାଏ ଓ ଏକ ସକାରାତ୍ମକ ଜୀବନ-ଦୃଷ୍ଟି ସୃଷ୍ଟି କରିଥାଏ। ତାଙ୍କ ସାନ୍ନିଧ୍ୟ ଓ ପ୍ରେରଣା ଆଜି ନିର୍ବାପିତ।

ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ମୋର ଶ୍ରଦ୍ଧାଞ୍ଜଳି ବ୍ୟକ୍ତ କରୁଛି।

# ଜଣେ ସ୍ନେହାର୍ଦ୍ର ମଣିଷ : ନାରାୟଣ ଚନ୍ଦ୍ର ପାଢ଼ୀ

## (କ)

## ବ୍ୟକ୍ତିତ୍ୱର ଝଲକ

ଡ. ନାରାୟଣ ଚନ୍ଦ୍ର ପାଢୀଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ଅବସରରେ ତାଙ୍କ ବିଷୟରେ ଏକ ସ୍ମରଣିକା ପ୍ରକାଶ ପାଉଥିବା ବିଷୟ ବନ୍ଧୁ ଶରତ ଚନ୍ଦ୍ର ପାଣିଗ୍ରାହୀ ଜଣାଇଲେ । ଡ. ପାଢୀଙ୍କ ସହିତ ମୋର ସୁସଂପର୍କ ଥିଲା । ଯାଜପୁରସ୍ଥିତ ଏନ୍.ସି. କଲେଜରେ ଆମେ ଏକାଠି ସହକର୍ମୀ ଥିଲୁ ଓ ସେ ଆମର ବିଭାଗୀୟ ମୁଖ୍ୟ ଥିଲେ । ତାଙ୍କ ବିଷୟରେ ଦୁଇ ପଦ ଲେଖିବା ବେଳକୁ ଅନେକ ପୁରୁଣା ସ୍ମୃତି ମନ ଭିତରକୁ ଆସୁଛି । ସେ ଯେ ଏତେ ଶୀଘ୍ର ଚାଲିଯିବେ ତାହା ବିଶ୍ୱାସ ଆସୁ ନାହିଁ । ମୋ ଜାଣିବାରେ ତାଙ୍କର ସେପରି କିଛି ଅସୁସ୍ଥତା ନ ଥିଲା । ତେବେ ମୃତ୍ୟୁ ରୂପକ କ୍ରୁର କାଳ କିପରି ଆଚମ୍ବିତ ଭାବେ ଆସିଥାଏ, ତାହା ଭାବିଲେ ଅନ୍ତର ଦୁଃଖରେ ଭରିଯାଉଛି । ଭୁବନେଶ୍ୱରରେ ମୁଁ ସମ୍ଭବତଃ ପ୍ରଥମେ ତାଙ୍କର ଦେହାନ୍ତ ଖବର ପାଇଲି ଯାଜପୁରର ଜଣେ ପୁରାତନ ଛାତ୍ରଙ୍କ ପାଖରୁ । ମନ ଦୁଃଖରେ ଭରିଗଲା । ଇଚ୍ଛାଥିଲା ଟିକିଏ ଯାଇ ତାଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇବାକୁ । କିନ୍ତୁ ସେ ସମୟରେ ମୋର ଏକ ଅସ୍ତ୍ରୋପଚାର ଏଥିରେ ପ୍ରତିବନ୍ଧକ ସାଜିଥିଲା । ନୀରବରେ ଅନ୍ତରର ଶ୍ରଦ୍ଧାଞ୍ଜଳି ଦୂରରେ ଥାଇ ଜଣାଇଲି ।

ସେ ଆମର ଥିଲେ ପ୍ରିୟ ପାଢ଼ୀ ସାର୍ । ଏକ ଅତ୍ୟନ୍ତ ନିରହଙ୍କାରୀ ବ୍ୟକ୍ତିତ୍ୱ । ଅନାବିଳ ସ୍ନେହ ଶ୍ରଦ୍ଧା ଥିଲା ତାଙ୍କ ବ୍ୟକ୍ତିତ୍ୱର ଏକ ଆକର୍ଷଣ । ସେ ଥିଲେ ସ୍ୱଳ୍ପଭାଷୀ ଓ ମିଷ୍ଟଭାଷୀ । ମୋର ତାଙ୍କ ସହ ପରିଚୟ ୧୯୭୭/୭୮ରେ ସେ ବାଣୀବିହାରରେ ପିଏଚ୍.ଡି. କରିବା ସମୟରେ ହୋଇଥିଲା । ମୁଁ ୧୯୮୮ରେ ଫୁଲବାଣୀରୁ ଯାଜପୁରକୁ ବଦଳି ନିର୍ଦ୍ଦେଶ ପାଇଲି, ଯେତେବେଳେ ସେ ଯାଜପୁରରେ ରହିଥିଲେ । ପତ୍ରଟିଏ ଲେଖି

**ଅନୁରୋଧକଲି, ମୁଁ ଯାଜପୁରରେ ଯୋଗ ଦେବା ଅବସରରେ ମୋ ପାଇଁ ରହିବା ଜାଗାଟିଏ ସାମୟିକ ଭାବେ ବୁଝିଦେବା ପାଇଁ। ତାର କିଛି ଦିନ ପରେ ମୁଁ ଯାଜପୁରକୁ ଯୋଗ ଦେବାକୁ ଆସିଲା ବେଳେ ସେ ମୋ ପାଇଁ କେତେକ ଅଧ୍ୟାପକ ରହୁଥିବା ଏକ ମେସ୍‌ରେ ସ୍ଥାନଟିଏ ରଖିଥାନ୍ତି। ଫଳରେ ମୁଁ ଯାଜପୁରରେ ଭଡ଼ାଘରଟିଏ ଯୋଗାଡ଼ କରିବା ପର୍ଯ୍ୟନ୍ତ ସେହି ମେସ୍‌ରେ ରହିଲି। ପ୍ରତିଦିନ ମୋର ସୁବିଧା ଅସୁବିଧା ବିଷୟ ପଚାରନ୍ତି। କାଳକ୍ରମେ ଆମ ଭିତରେ ଆତ୍ମୀୟତାର ବନ୍ଧନ ବେଶ୍ ଦୃଢ଼ ହୋଇ ଉଠିଲା। ସେ ମୋଠାରୁ ବୟସରେ ୧୨/୧୩ ବର୍ଷ ବଡ଼ ଥିବାରୁ ମୋର ଶିକ୍ଷକ ହୋଇପାରିଥାନ୍ତେ। ତେବେ ସର୍ବଦା ସଖା ଓ ବନ୍ଧୁତାର ହାତ ବଢ଼ାଉ ଥିଲେ। ଅନାବିଳ ସ୍ନେହ, ଶ୍ରଦ୍ଧା ଓ ଆନ୍ତରିକତାରେ ମୋତେ ଆପଣାର କରି ନେଇଥିଲେ।**

**ତାଙ୍କ ଭିତରେ ଏକ ଜିଜ୍ଞାସାବୋଧ ରହିଥିଲା। ଜଣେ ପ୍ରବୀଣ ଓ କର୍ତ୍ତବ୍ୟରତ ଅଧ୍ୟାପକ ଭାବେ ତାଙ୍କର ସୁଖ୍ୟାତି ଥିଲା। ତାଙ୍କର ବ୍ୟକ୍ତିତ୍ୱର ପ୍ରଭାବ ଯୋଗୁଁ ଏନ.ସି. କଲେଜରେ ଦର୍ଶନ ବିଭାଗର ଗୌରବ ରହିଥିଲା। ଦର୍ଶନ ପ୍ରତି ଛାତ୍ରମାନଙ୍କର ସ୍ୱାଭାବିକ ଆକର୍ଷଣ ସୃଷ୍ଟି ହେଉଥିଲା ଓ ଦର୍ଶନ ବିଭାଗରେ ସମସ୍ତ ଅନର୍ସ ସ୍ଥାନ ପୂରଣ ହୋଇଯାଉଥିଲା।** ସମସ୍ତ କ୍ଲାସ୍ ନିୟମିତ ହେବା, ଯଥା ସମୟରେ କୋର୍ସ ଶେଷ ହେବା, ଆବଶ୍ୟକ ବେଳେ ପିଲାଙ୍କୁ ପରାମର୍ଶ ଦେବା, ବିଭାଗରେ ନିୟମିତ ବିଭିନ୍ନ କାର୍ଯ୍ୟକ୍ରମ କରିବା ଆମ ବିଭାଗରେ ସୁଚାରୁରୂପେ ସମାହିତ ହେଉଥିଲା। ସବୁଥିରେ ତାଙ୍କର ନିଷ୍ଠା, ଆନ୍ତରିକତା ଓ ସହଭାଗିତା ଆମ ପାଇଁ ପ୍ରେରଣାଦାୟକ ଥିଲା।

ଅଧ୍ୟାପନା ସହିତ ତାଙ୍କ ପାଖରେ ସାରସ୍ୱତ ସାଧନା ପାଇଁ ଅନୁରାଗକୁ ନାନା ଭାବରେ ମୁଁ ଅନୁଭବ କରିଛି। ଷ୍ଟାଫ୍ କମନ୍‌ରୁମ୍‌ରେ ବା ଆମ ବିଭାଗର ସେମିନାରରେ ବିଭିନ୍ନ ବିଷୟ ଆଲୋଚନା ଭିତରେ ସେ ବେଶ୍ ଭାବୋଦ୍ଦୀପକ ମନ୍ତବ୍ୟ ଦେଇଥାନ୍ତି। ତେବେ ଏ କ୍ଷେତ୍ରରେ ତାଙ୍କର ବୌଦ୍ଧିକ ଉଦାରତା ମୋତେ ବେଶି ଭଲ ଲାଗିଥାଏ। ସେ ଥିଲେ ଈଶ୍ୱର ବିଶ୍ୱାସୀ, ପୂଜା ପ୍ରାର୍ଥନା ଇତ୍ୟାଦିକୁ ଜୀବନଶୈଳୀରେ ମିଶାଇ ଦେଇଥିଲେ। ମୁଁ କିନ୍ତୁ ମୋର ଆତ୍ମବିଶ୍ୱାସରେ ଥିଲି ଜଣେ ହେତୁବାଦୀ ଓ ଆଗ୍ନୋଷ୍ଟିକ୍। ଏ ବିଷୟରେ ଆମ ଭିତରେ ନାନା ଆଲୋଚନା, ଯୁକ୍ତିତର୍କ ହେଉଥିଲା। ବୌଦ୍ଧିକ ବିଚାର କ୍ଷେତ୍ରରେ ଆମ ଭିତରେ ପାର୍ଥକ୍ୟ ରହିଥିଲେ ବି ମୋର ତାଙ୍କ ପ୍ରତି ଅନେକ ସ୍ନେହ ଓ ଶ୍ରଦ୍ଧା ରହିଥିଲା। ମୁଁ ତାଙ୍କ ପାଖରେ କେବେ କିଛି ଈର୍ଷା ବା ଅସୂୟାଭାବର ସାମାନ୍ୟ ସୂଚନା ପାଇ ନାହିଁ। ତାଙ୍କର ଉନ୍ମୁକ୍ତ ଅନୁସନ୍ଧିତ୍ସା, ବୌଦ୍ଧିକ ଉଦାରତା ଓ ସୃଜନଶୀଳତା ମୋ ପାଇଁ ପ୍ରେରଣାଦାୟକ ଥିଲା।

କଲେଜମାନଙ୍କରେ ଅଧ୍ୟାପନା ସହିତ ନାନା ପ୍ରକାର ଅତିରିକ୍ତ ଦାୟିତ୍ୱ ନେବାକୁ ହୋଇଥାଏ। ସେ ଯେହେତୁ ନିଷ୍ଠାବାନ୍ ଓ ଦକ୍ଷ ଅଧ୍ୟାପକ ଥିଲେ ତେଣୁ ତାଙ୍କୁ ବିଭିନ୍ନ ଦାୟିତ୍ୱ ସମ୍ଭାଳିବାକୁ ପଡୁଥିଲା। ସବୁ କାର୍ଯ୍ୟର ଚାପ ସତ୍ତ୍ୱେ ତାଙ୍କ ଭିତରେ ସୃଜନଶୀଳ ବ୍ୟକ୍ତିସତ୍ତାଟିଏ ରହିଥିଲା। ସମୟ ପାଇଲେ ସେ ସୃଜନ ସାଧନାରେ ନିଜକୁ ନିୟୋଜିତ ରଖୁଥିଲେ। କୌଣସି ପ୍ରକାର ଖଣ୍ଡ-ମାନସିକତା ତାଙ୍କୁ ସ୍ପର୍ଶ କରିନଥିଲା। ବରଂ ଜିଜ୍ଞାସାବୋଧ, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଓ ଗବେଷଣା ପାଇଁ ମନନଶୀଳତା ତାଙ୍କ ପାଖରେ ରହିଥିଲା। ଅବସର ପରେ ବିଭିନ୍ନ ଲେଖାଲେଖି କରିବାରେ ସେ ନିଜର ସମୟକୁ ନିୟୋଜିତ କରୁଥିଲେ ଓ ପ୍ରାୟ ଦଶ ଖଣ୍ଡ ପୁସ୍ତକ ରଚନା କରିବା ତାଙ୍କ କୃତିତ୍ୱର ସ୍ୱାକ୍ଷର ବହନ କରେ। ବିଶେଷକରି ତର୍କଶାସ୍ତ୍ର ଓ ନୀତିଶାସ୍ତ୍ର ଉପରେ ରଚିତ ତାଙ୍କର ପୁସ୍ତକ ଛାତ୍ରଛାତ୍ରୀଙ୍କ ପାଖରେ ବେଶ୍ ଆଦୃତ ହୋଇଥିବା ମୁଁ ଲକ୍ଷ୍ୟ କରିଛି। ତାଙ୍କର ପ୍ରତ୍ୟୟଗତ ସ୍ପଷ୍ଟତା ଓ ସାବଲୀଳତା ତାଙ୍କ ପୁସ୍ତକମାନଙ୍କୁ ସୁଖପାଠ୍ୟ କରିଥିବା ମୋର ମନେହୁଏ।

ଅଧ୍ୟାପନା ଓ ବୌଦ୍ଧିକତା ପ୍ରତି ତାଙ୍କର ଯେପରି ପ୍ରତିବଦ୍ଧତା ଥିଲା ସେହିପରି ମଧ୍ୟ ତାଙ୍କ ପାଖରେ ହୃଦୟବତ୍ତା ଥିଲା। ସ୍ମୃତିରୁ ଦୁଇଟି ଘଟଣା ଉଲ୍ଲେଖ କରୁଛି। ଏନ୍.ସି. କଲେଜରେ +୨ ତର୍କଶାସ୍ତ୍ର ଖାତାର ମୂଲ୍ୟାୟନରେ ସେ ମୁଖ୍ୟ ପରୀକ୍ଷକ ରହୁଥିଲେ ଓ ପ୍ରାୟ ୮/୧୦ ଜଣ ସହକାରୀ ପରୀକ୍ଷକ ତାଙ୍କ ଅଧୀନରେ ଖାତା ଦେଖୁଥିଲେ। ଯେଉଁଦିନ ତର୍କଶାସ୍ତ୍ରର ଖାତା ଦେଖା ସରିବ ସେଦିନ ଏକ ଭୋଜିର ଆୟୋଜନ ତାଙ୍କରି ନିର୍ଦ୍ଦେଶରେ ହେଉଥିଲା। ମୂଲ୍ୟାୟନ କେନ୍ଦ୍ରର ଦାୟିତ୍ୱରେ ଥିବା ସମସ୍ତ କର୍ମଚାରୀମାନଙ୍କୁ ଆମନ୍ତ୍ରଣ କରାଯାଇ ଏକ ସୁନ୍ଦର ସନ୍ଧ୍ୟାକୁ ସମସ୍ତେ ଉପଭୋଗ କରୁଥିଲେ। ଗୀତ ଗାଇ, ମଜା କଥା କହି ଆମେ ଏକାଠି ହୋଇ ଭୋଜିଖାଇ ଫେରୁଥିଲୁ। ପାଢ଼ୀ ସାର୍‌ଙ୍କ ନିର୍ଦ୍ଦେଶରେ ଏସବୁ ସୁନ୍ଦର ଭାବରେ ଆୟୋଜିତ ହେଉଥିଲା ଓ ଆମେ ଯେଉଁମାନେ ତାଙ୍କ ଅଧୀନରେ ଖାତା ଦେଖୁଥିଲୁ ସମସ୍ତେ ତାଙ୍କ ସ୍ନେହ ସୌହାର୍ଦ୍ଦ୍ୟରେ ଗଭୀର ଭାବରେ ପ୍ରଭାବିତ ହେଉଥିଲୁ। ତାଙ୍କ ପାଖରେ ବିସ୍ତାରିତ ହୃଦୟବତ୍ତା ସେତେବେଳେ ଅନ୍ୟ ସମସ୍ତଙ୍କ ପାଇଁ ଆଦର୍ଶ ସ୍ଥାନୀୟ ଥିଲା।

ମୁଁ ଏନ୍.ସି. କଲେଜରେ ଯୋଗ ଦେବା ପରେ ମୋତେ ଅନ୍ୟାନ୍ୟ ଦାୟିତ୍ୱ ସହ ରେଡକ୍ରସ୍‌ର ଦାୟିତ୍ୱ ଦିଆଯାଇଥିଲା। ରେଡକ୍ରସ୍‌ର ନିୟମ ଇତ୍ୟାଦି ପଢ଼ିବା

ପରେ ମୁଁ କଲେଜରେ ଏହାକୁ ସକ୍ରିୟ କରିବାରେ କେତେକ ପଦକ୍ଷେପ ନେଇଥିଲି। ପ୍ରଥମତଃ କଲେଜ ପରିବେଶକୁ କିପରି ପରିଷ୍କାର ପରିଚ୍ଛନ୍ନ ରଖାଯିବ ତାହାକୁ ପ୍ରାଥମିକତା ଦେଇଥିଲି। ସେଥିପାଇଁ ପ୍ରତ୍ୟେକ ରବିବାର ରେଡ୍‌କ୍ରସ୍ ସ୍ୱେଚ୍ଛାସେବୀମାନଙ୍କୁ ନେଇ ଆମେ କ୍ୟାମ୍ପସ୍‌କୁ ପରିଷ୍କାର କରୁଥିଲୁ ଓ ଛାତ୍ରଛାତ୍ରୀମାନଙ୍କୁ ସଚେତନ କରାଉଥିଲୁ। ପାଢ଼ୀସାର୍ ଆମର ଏହି କାର୍ଯ୍ୟକ୍ରମରେ ଏତେ ଆନନ୍ଦିତ ହୋଇଥିଲେ ଯେ ସେ ପ୍ରାୟତଃ ଆମ ଗହଣରେ ଉପସ୍ଥିତ ରହି ଛାତ୍ରଛାତ୍ରୀମାନଙ୍କୁ ପ୍ରେରଣା ଦେଉଥିଲେ।

ମୁଁ ଯାଜପୁରରେ ଥିବା ଭିତରେ ସେ ସେଠାରୁ ବଦଳି ହେଲେ ଓ ତାର କିଛି ଦିନ ପରେ ମୁଁ ମଧ ଯାଜପୁରରୁ ବଦଳି ହେଲି। ତେବେ ସେଠାରେ ଯେଉଁ କେତୋଟି ବର୍ଷ ଏକାଠି କାମ କରିଥିଲୁ, ସେ ଭିତରେ ଆମେ ପରସ୍ପରର ଏତେ ନିକଟତର ହୋଇଥିଲୁ ଯେ ଆମ ଭିତରେ ଏକ ସୌହାର୍ଦ୍ଦପୂର୍ଣ୍ଣ ସଂପର୍କ ରହି ଆସିଥିଲା। ବିଭିନ୍ନ ସେମିନାରରେ ବା ସରକାରୀ କାର୍ଯ୍ୟରେ ପ୍ରାୟତଃ ଏକାଠି ହେଉଥିଲୁ। ଦେଖାହେବା ମାତ୍ରେ ମୋ ପିଲାଙ୍କ ବିଷୟରେ ପ୍ରଥମେ ପଚାରିବେ। ତାଙ୍କର ସ୍ନେହଭରା ବ୍ୟବହାରରେ ସେ ସମସ୍ତଙ୍କୁ ଆପଣାର କରି ନେଉଥିଲେ। ତାଙ୍କର ସୃଜନଶୀଳତା ଓ ବୌଦ୍ଧିକତା ପରିବର୍ତ୍ତେ ତାଙ୍କର ଅନୁରାଗଭରା ହାର୍ଦ୍ଦିକତା ମୋତେ ସବୁଠାରୁ ବେଶି ଭଲଲାଗେ। କେଜାଣି କାହିଁକି ବ୍ୟକ୍ତିର ମଣିଷ ସ୍ୱଭାବଟି ମୋତେ ବେଶି ପ୍ରଭାବିତ କରିଥାଏ। ତାଙ୍କ ଭିତରର ଶ୍ରଦ୍ଧାଶୀଳତା ପ୍ରତି ମୁଁ ଅଧିକ ଆକର୍ଷିତ ହେଉଥିଲି। ତାଙ୍କର ମାର୍ଜିତ ଭାଷା ଓ ସ୍ନେହପୂର୍ଣ୍ଣ ବ୍ୟବହାର ମୋ ସ୍ମୃତିରେ ଏ ପର୍ଯ୍ୟନ୍ତ ଅମଳିନ ରହିଛି।

ପାଢ଼ୀ ସାର୍‌ଙ୍କ ସହିତ କେତେ ସ୍ମୃତି ରହିଛି। ତେବେ ସବୁ ସ୍ମୃତିଗୁଡ଼ିକ ଆସ୍ତେ ଆସ୍ତେ କାଳର ବକ୍ଷରେ ବିସ୍ମୃତ ହୋଇଯିବ। ମହାକାଳ ଭିତରେ କେଉଁ ସ୍ମୃତି ରହିବ। ତେବେ ଯେଉଁମାନଙ୍କ ସହ ଏକାଠି କାମ କରିବାର ସୁଯୋଗ ପାଇଛି ସେମାନଙ୍କ ଭିତରେ ପାଢ଼ୀ ସାର୍‌ଙ୍କ ବ୍ୟକ୍ତିତ୍ୱ ମୋତେ ବେଶ୍ ସ୍ପର୍ଶ କରିଛି। ତାଙ୍କର କର୍ତ୍ତବ୍ୟନିଷ୍ଠା, ଅକୃତ୍ରିମ ସ୍ନେହବତ୍ସଳ ହୃଦୟବତ୍ତା ମୁଁ ମୃତ୍ୟୁ ପର୍ଯ୍ୟନ୍ତ ଭୁଲିପାରିବି ନାହିଁ।

## (ଖ)

# ବିଚାରର ସ୍ପନ୍ଦନ

ଡ଼. ପାଢ଼ୀଙ୍କର ସଫଳ ଅଧ୍ୟାପନା ଜୀବନ ସହିତ ତାଙ୍କର ଦର୍ଶନ ସମ୍ପର୍କରେ ସୁଚିନ୍ତିତ ମନ୍ତବ୍ୟ ତାଙ୍କର ଲେଖାମାନଙ୍କରୁ ଦେଖିବାକୁ ମିଳିଥାଏ। ସେ ଲେଖିଥିବା ପୁସ୍ତକ ମଧ୍ୟରୁ 'ତର୍କଶାସ୍ତ୍ର' ସମ୍ପର୍କରେ ତାଙ୍କର ଇଂରାଜୀ ଓ ଓଡ଼ିଆରେ ଯୁକ୍ତ ଦୁଇ ପିଲାମାନଙ୍କ ପାଇଁ ଚାରିଖଣ୍ଡ ପୁସ୍ତକ ରହିଛି। ସେହିପରି ନୀତିଶାସ୍ତ୍ର ଉପରେ ତାଙ୍କର Basic Principles of Ethics ଓ Value System ନାମରେ ଦୁଇଟି ପୁସ୍ତକ ରହିଛି ଓ +୩ ସ୍ତରରେ ଦର୍ଶନ ବିଷୟ ପଢୁଥିବା ପିଲାମାନେ ଏହି ପୁସ୍ତକ ପଢ଼ନ୍ତି। ଏହା ସହିତ ତାଙ୍କ ପିଏଚ୍.ଡ଼ି ସନ୍ଦର୍ଭ Karma and Freedom ଏକ ଗବେଷଣାତ୍ମକ କୃତି। କର୍ମସିଦ୍ଧାନ୍ତର ନାନା ଦିଗନ୍ତର ଆଲୋଚନା ସହିତ ବ୍ୟକ୍ତି ସ୍ୱତନ୍ତ୍ରତାର କ'ଣ ସମ୍ପର୍କ ରହିଛି ସେ ସମ୍ବନ୍ଧରେ ଡ଼. ପାଢ଼ୀ ତାଙ୍କର ଏହି ପୁସ୍ତକରେ ସୁବିସ୍ତୃତ ଆଲୋଚନା କରିଛନ୍ତି। ଡ଼.ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଜୀବନୀ ଓ ବିଚାର ସମ୍ପର୍କରେ ସେ ଓଡ଼ିଆରେ ଯେଉଁ ବହିଟି ଲେଖିଛନ୍ତି ତାହା ମଧ୍ୟ ସାଧାରଣ ପାଠକଙ୍କ ପାଖରେ ବେଶ୍ ଆଦୃତ। ରାଧାକ୍ରିଷ୍ଣନ୍ ଦର୍ଶନ ଅଧ୍ୟାପକ ଭାବେ ତାଙ୍କର କର୍ମମୟ ଜୀବନ ଆରମ୍ଭକରି ନିଜର ପ୍ରଜ୍ଞା ଯୋଗୁଁ ଭାରତର ରାଷ୍ଟ୍ରପତି ହୋଇ ନିଜର ଯେଉଁ ବୌଦ୍ଧିକ ସ୍ୱାକ୍ଷର ରଖିଯାଇଛନ୍ତି ତାହାର ବିସ୍ତୃତ ଆଲୋଚନା ଡ଼. ପାଢ଼ୀଙ୍କର ରାଧାକ୍ରିଷ୍ଣନ୍ ବହିରୁ ଦେଖିବାକୁ ମିଳିଥାଏ।

ଏହା ବ୍ୟତୀତ ଡ଼. ପାଢ଼ୀଙ୍କର 'ଦର୍ଶନ ଦୃଷ୍ଟି' ନାମରେ ଏକ ଓଡ଼ିଆ ପ୍ରବନ୍ଧ ସଙ୍କଳନ ରହିଛି। ମନନଧର୍ମୀ ତେରଟି ଚିନ୍ତାଶୀଳ ପ୍ରବନ୍ଧକୁ ନେଇ ଏହି ଯେଉଁ ସଙ୍କଳନଟି ରହିଛି ସେଥିରେ ଦର୍ଶନର ଜଟିଳ ପ୍ରସଙ୍ଗମାନଙ୍କ ଉପରେ ସେ ଗଭୀର ଚିନ୍ତା ପ୍ରକଟ କରିଛନ୍ତି। ପ୍ରବନ୍ଧଗୁଡ଼ିକ ଯେଉଁପରି ସୁଖପାଠ୍ୟ ସେହିପରି ଚିନ୍ତା-ଉଦ୍ଦୀପକ। ଏହା ସହିତ ଦଶଟି ଇଂରାଜୀ ଦାର୍ଶନିକ ପ୍ରବନ୍ଧର ଏକ ସଙ୍କଳନ "Essays on Philosophy and Culture" ତାଙ୍କର ପ୍ରକାଶ ପାଇଛି। ବିଭିନ୍ନ ସେମିନାର୍‌ରେ ଉପସ୍ଥାପନ କରିଥିବା ଏହି ପ୍ରବନ୍ଧଗୁଡ଼ିକ ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦର୍ଶନ ପରମ୍ପରାର କେତେକ ମୌଳିକ ପ୍ରସଙ୍ଗ ଉପରେ ଲିଖିତ। ଗୋଟିଏ ଦାର୍ଶନିକ ପ୍ରଶ୍ନ ଉପରେ ଲେଖିବା ବେଳେ

ଡ଼. ପାଢ଼ୀ ସେହି ପ୍ରସଙ୍ଗଟିର ଯେଉଁ ଗମ୍ଭୀର ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ପ୍ରଦାନ କରିଛନ୍ତି, ସେଥିରୁ ତାଙ୍କ ବିଚାରଶୀଳ ଦୃଷ୍ଟିର ଯଥେଷ୍ଟ ପରିଚୟ ମିଳିଥାଏ। ଦର୍ଶନର ପରିସର ସହିତ ତର୍କଶାସ୍ତ୍ର, ସାହିତ୍ୟ, ନୀତିଶାସ୍ତ୍ର ସମ୍ପର୍କ ଓ କେତେକ ପ୍ରସଙ୍ଗକୁ ସେ ବିସ୍ତୃତ ଆଲୋଚନା କରି ତାଙ୍କ ବୌଦ୍ଧିକ ସ୍ୱଚ୍ଛତାର ପରିଚୟ ଦେଇଛନ୍ତି। ତେବେ "Essays on Philosophy and Culture" ର ସଙ୍କଳନ ପାଇଁ ସେ ପ୍ରବନ୍ଧଗୁଡ଼ିକୁ ସଂଗ୍ରହକରି ପ୍ରକାଶକଙ୍କୁ ଦେଇଥିଲେ ବି ବହିଟି ଆତ୍ମପ୍ରକାଶ କଲାବେଳକୁ ଡ଼. ପାଢ଼ୀଙ୍କର ଦେହାନ୍ତ ହୋଇଯାଇଥିଲା। ବ୍ୟକ୍ତି ତ ମରଣଶୀଳ, କିନ୍ତୁ ବ୍ୟକ୍ତିର ଚିନ୍ତା ଚେତନା ଯାହା ଲେଖାର ପୃଷ୍ଠା ଭିତରେ ରହିଥାଏ ତାହାର ମୃତ୍ୟୁ ହୁଏ ନାହିଁ। ତାହା କାଳର ବକ୍ଷରେ ରହିଥାଏ ଓ ଜଣେ ପାଠକକୁ ଲେଖକର ମୌଳିକତା ଓ ଭାବନା ସଂପର୍କରେ ସୂଚନା ଦେଇଥାଏ।

ଦର୍ଶନ କ'ଣ ? କ'ଣ ଏହାର ବିଷୟବସ୍ତୁ ? ଦାର୍ଶନିକମାନେ ବୌଦ୍ଧିକ ପାଗଳ ନା ଚିନ୍ତାରାଜ୍ୟର ବିପ୍ଳବୀ ? ଦର୍ଶନ ସଂପର୍କରେ ସମାଜରେ କେତେକ ଭ୍ରାନ୍ତଧାରଣା ରହି ଆସିଥିବା ଡ଼. ପାଢ଼ୀ ଲକ୍ଷ୍ୟ କରିଛନ୍ତି। ଦର୍ଶନରେ ନାନା ପ୍ରସଙ୍ଗ ଉପରେ ପ୍ରଶ୍ନ ଉଠିଥାଏ - ଏହାର ବିଷୟ ବସ୍ତୁ ଓ ପରିସର ନେଇ ବିଭିନ୍ନ ପ୍ରଶ୍ନ ଦର୍ଶନ ଉପରେ ଆଲୋଚିତ ହୋଇଥାଏ। ଦାର୍ଶନିକମାନେ ଯେ କୌଣସି ପ୍ରସଙ୍ଗ ଉପରେ ମୌଳିକ ପ୍ରଶ୍ନ ଉତ୍ଥାପନ କରିଥାନ୍ତି। ଆମ ଚତୁଃପାର୍ଶ୍ୱର ଜଗତକୁ ଆମେ ଦେଖୁ; ପ୍ରଶ୍ନ ଉଠେ 'ଜଗତ ସତ୍ୟ ନା ମିଥ୍ୟା', 'ପରିବର୍ତ୍ତନଶୀଳ ନା ଶାଶ୍ୱତ ?' 'ଆମେ ଯେଉଁ ଜୀବନ ବଞ୍ଚୁ ତାହାର କିଛି ଲକ୍ଷ୍ୟ ରହିଛି କି ?' 'ଜୀବନର ଘଟଣାପ୍ରବାହ ପୂର୍ବନିର୍ଦ୍ଦିଷ୍ଟ ନା ବ୍ୟକ୍ତି ସବୁ କ୍ଷେତ୍ରରେ ସ୍ୱତନ୍ତ୍ର ?' 'ଆମ ରାଜନୈତିକ ବ୍ୟବସ୍ଥାରେ ନ୍ୟାୟର ସ୍ୱରୂପ ଓ ସଂଜ୍ଞା କ'ଣ ?' 'ଆମର ଜ୍ଞାନ ପରିସରରେ ଜ୍ଞାନର ଭିତ୍ତି, ପ୍ରଣାଳୀ, ସୀମା ଓ ସ୍ୱରୂପକୁ କିପରି ସ୍ଥିର କରାଯିବ ?' 'ନିଜର ପରିବେଶ ଓ ଜୀବନ ଶୈଳୀକୁ ସୁନ୍ଦର କରିବାର ପ୍ରୟାସ ଭିତରେ ସୌନ୍ଦର୍ଯ୍ୟ କ'ଣ ଓ ଏହାର ସ୍ୱରୂପ ବ୍ୟକ୍ତି ଅଧୀକୃତ କି ?' ଏହିପରି ନାନା ପ୍ରଶ୍ନ ଦାର୍ଶନିକମାନେ ଅବତାରଣା କରିଛନ୍ତି। ସକ୍ରେଟିସ୍‌ଙ୍କ ଭାଷାରେ କହିଲେ ଦାର୍ଶନିକମାନେ ଡାଆଁସ ଭାବେ ଜଡ଼ତାର ନିଦ୍ରାରେ ଶୋଇଥିବା ମଣିଷମାନଙ୍କ ନିଦ୍ରା ଭଙ୍ଗ କରିବାକୁ ଚେଷ୍ଟା କରିଥାନ୍ତି।

ଏକଥା ସତ୍ୟ ଯେ ଦର୍ଶନର ସଂଜ୍ଞା ଓ ସ୍ୱରୂପ ଯୁଗକୁ ଯୁଗ ବଦଳି ଚାଲିଛି। ଗୋଟିଏ ଯୁଗରେ ଦର୍ଶନର ପରିସରରେ ମୌଳିକ ଓ କାଳ୍ପନିକ (speculative) ପ୍ରଶ୍ନମାନଙ୍କର ଗଭୀର ଚର୍ଚ୍ଚା ହେଉଥିଲା। 'ଅନ୍ତିମ ସତ୍ତା କ'ଣ', 'ଏହାର ସ୍ୱରୂପ ଚେତନ

ନା ଜଡ଼', 'ଏହା ଏକ ନା ଅନେକ' - ଏହି ପ୍ରଶ୍ନଗୁଡ଼ିକ ତତ୍ତ୍ୱମୀମାଂସା ପରିସରରେ ଆଲୋଚିତ ହୋଇ ନାନା ସିଦ୍ଧାନ୍ତର ଅବତାରଣା କରାଯାଇଥିଲା। ଏହି ପରିପ୍ରେକ୍ଷୀରେ ଦର୍ଶନ ଓ ବିଜ୍ଞାନର ପରିସର ଭିତରେ ପାର୍ଥକ୍ୟ ସୁସ୍ପଷ୍ଟ ମନେହୁଏ। ବିଜ୍ଞାନ ପ୍ରକୃତିରେ ନିହିତ ଥିବା ଏକରୂପତାକୁ ଆବିଷ୍କାର କରିବାକୁ ପ୍ରୟାସ କରେ। ଏହା କାର୍ଯ୍ୟ-କାରଣ ସମ୍ବନ୍ଧ ଆଧାରରେ ଘଟଣାମାନଙ୍କୁ ଆମର ଅନୁଭୂତି ମାଧ୍ୟମରେ ବ୍ୟାଖ୍ୟା କରେ। ସୁତରାଂ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପ୍ରଣାଳୀବଦ୍ଧ, ବସ୍ତୁନିଷ୍ଠ, ପରିବର୍ତ୍ତନ ସାପେକ୍ଷ, କାର୍ଯ୍ୟ-କାରଣ ନିୟମ ଆଧାରିତ ଓ ସାର୍ବଜନୀନ। ବିଜ୍ଞାନର ପରିସର ଯେପରି ସୁନିର୍ଦ୍ଦିଷ୍ଟ ଦର୍ଶନର ପରିସର ସେପରି ସୁନିର୍ଦ୍ଦିଷ୍ଟ ନୁହେଁ।

ଗୋଟିଏ ଯୁଗରେ ତତ୍ତ୍ୱମୀମାଂସା ଦର୍ଶନର ମୁଖ୍ୟ ପ୍ରସଙ୍ଗ ହୋଇରହିଥିଲା। କାଳକ୍ରମେ ପରସ୍ପର ବିରୋଧୀ ତାତ୍ତ୍ୱିକ ସିଦ୍ଧାନ୍ତମାନ ଦର୍ଶନ ପରିସରରେ ଆସିବା ଦ୍ୱାରା ତତ୍ତ୍ୱମୀମାଂସାର ଅସାରତା ନେଇ ଦର୍ଶନରେ ଗମ୍ଭୀର ଚର୍ଚ୍ଚା ହେଲା। ଦର୍ଶନରେ ତତ୍ତ୍ୱମୀମାଂସାର ଅସାରତା ଗୃହୀତ ହେଲା ଓ ଦର୍ଶନର ଆଭିମୁଖ୍ୟ ବିଶ୍ଳେଷଣାତ୍ମକ ହୋଇ ବୌଦ୍ଧିକ ଅସ୍ପଷ୍ଟତାକୁ ଦୂରକରିବାକୁ ପ୍ରୟାସ କଲା। କୁହାଗଲା ଆଧୁନିକ ଦର୍ଶନର ଲକ୍ଷ୍ୟ ହେଉଛି ବ୍ୟାଧି ଦୂରକରିବା (philosophy is therapeutic)। ତେବେ କେଉଁ ବ୍ୟାଧିକୁ ଦୂର କରିବାକୁ ଦର୍ଶନ ପ୍ରୟାସ କରେ ? ପ୍ରତ୍ୟେକ ବୌଦ୍ଧିକ ଅନୁଶୀଳନ କ୍ଷେତ୍ରରେ ଯେଉଁଠି କିଛି ଅସ୍ପଷ୍ଟତା, ତାର୍କିକ ବିଭ୍ରାନ୍ତି ଓ ଜଟିଳ ଚିନ୍ତାଜନିତ ତାତ୍ତ୍ୱିକ, କାଳ୍ପନିକ ସିଦ୍ଧାନ୍ତମାନ ସୃଷ୍ଟି ହୋଇଯାଉଛି ଦର୍ଶନ ଶାଣିତ ଯୁକ୍ତି ଓ ତର୍କଶୀଳତା ଆଧାରରେ ତାହାକୁ ଦୂର କରିବାକୁ ପ୍ରଯତ୍ନ କରିଥାଏ।

ଡ଼. ପାଢ଼ୀ ତାଙ୍କର ଏକ ପ୍ରବନ୍ଧ 'Philosophy, Science and Religion'ରେ ଏସବୁକୁ ସୁନ୍ଦର ଭାବେ ବ୍ୟାଖ୍ୟା କରିଛନ୍ତି। ପୁନଶ୍ଚ ବିଶିଷ୍ଟ ଲେଖକ ୱିଲ ଡୁରାଣ୍ଟଙ୍କର ଏକ ମତ ଉଲ୍ଲେଖ କରିଛନ୍ତି- 'ଦର୍ଶନ ହେଉଛି ସକଳ ବିଜ୍ଞାନର ଜନନୀ।' ବିଜ୍ଞାନ ଘଟଣାମାନଙ୍କୁ ଆମର ପର୍ଯ୍ୟବେକ୍ଷଣ ଦ୍ୱାରା ନିୟମ ଆଧାରରେ ବ୍ୟାଖ୍ୟା କରେ। ତେବେ ବିଜ୍ଞାନର ପରିସରରେ ଯେଉଁ ସୈଦ୍ଧାନ୍ତିକ ପ୍ରଶ୍ନମାନ ଉଠିଥାଏ ତାହା ଦର୍ଶନ ପରିସରରେ ଆଲୋଚିତ ହୁଏ। ଡ଼. ପାଢ଼ୀ ଏକ ସୁନ୍ଦର ଉପମା ଜରିଆରେ ଏହାକୁ ବ୍ୟାଖ୍ୟା କରିଛନ୍ତି। ଦର୍ଶନ ସକଳ ବିଜ୍ଞାନମାନଙ୍କର ଜନନୀ। ତେବେ

ପିଲାମାନେ ବୃଦ୍ଧିପାଇ ପକ୍ୱ ହେଲେ ମା'ର କିଛି କରିବାର ନଥାଏ। କିନ୍ତୁ ପିଲାମାନେ ଯେତେବେଳେ ବିଚାର-ବିଭ୍ରାଟ ଯୋଗୁଁ ଅସୁସ୍ଥତାର ଶିକାର ହୁଅନ୍ତି, ସେତେବେଳେ ମା' ସେମାନଙ୍କୁ ସେବା ଦେଇ ସେମାନଙ୍କର ଭ୍ରାନ୍ତିକୁ ଦୂର କରିଥାଏ।

ଧର୍ମ ସହ ଦର୍ଶନର କ'ଣ ସମ୍ପର୍କ ରହିଛି ? ପ୍ରତ୍ୟେକ ଧର୍ମର ଉତ୍ପତ୍ତି, କ୍ରମବିକାଶ, ସାମ୍ପ୍ରଦାୟିକ ଗୋଷ୍ଠୀ, ପ୍ରସାର, ମୁଖ୍ୟ ଗ୍ରନ୍ଥ ଇତ୍ୟାଦିକୁ ଐତିହାସିକ ସ୍ତରରୁ ଅଧ୍ୟୟନ କରାଯାଏ। ସେହିପରି ଧାର୍ମିକ ଚେତନାର ବିକାଶକୁ ସମାଜ-ବିଜ୍ଞାନ, ନୃତତ୍ତ୍ୱ ବିଜ୍ଞାନ ଓ ମନୋବିଜ୍ଞାନ ପାର୍ଥକ୍ୟ ସୁସ୍ପଷ୍ଟ ମନେହୁଏ। ବିଜ୍ଞାନ ପ୍ରକୃତିରେ ନିହିତ ଥିବା ଏକରୂପତାକୁ ଆବିଷ୍କାର କରିବାକୁ ସ୍ତରରେ ବି ବ୍ୟାଖ୍ୟା କରାଯାଏ। ତେବେ ଦର୍ଶନ ଧର୍ମ ସହ ସଂଶ୍ଳିଷ୍ଟ ପ୍ରତ୍ୟୟମାନଙ୍କର ବୌଦ୍ଧିକ ବିଶ୍ଳେଷଣ କରିଥାଏ। ସମାଜବିଜ୍ଞାନ ହେଉ ବା ପ୍ରାକୃତିକବିଜ୍ଞାନ ହେଉ ଏକ ବୈଜ୍ଞାନିକ ଅନୁଶୀଳନ କ୍ଷେତ୍ରରେ ଘଟଣାମାନଙ୍କର ବ୍ୟାଖ୍ୟା ଅନୁଭୂତି ଆଧାରରେ ହୋଇଥାଏ। ଦର୍ଶନ ଘଟଣାମାନଙ୍କୁ ବ୍ୟାଖ୍ୟା ନ କରି ଜ୍ଞାନ ଲାଭ ପାଇଁ ଆବଶ୍ୟକ ହେଉଥିବା ପ୍ରତ୍ୟୟଗୁଡ଼ିକର ସୈଦ୍ଧାନ୍ତିକ ଓ ବିଶ୍ଳେଷଣାତ୍ମକ ବ୍ୟାଖ୍ୟା କରିଥାଏ। ସେହିପରି ଧର୍ମର ମୌଳିକ ପ୍ରତ୍ୟୟମାନଙ୍କୁ ବ୍ୟାଖ୍ୟା କରିବା, ଧାର୍ମିକ ଆଲୋଚନାରେ ଭାଷାର ସ୍ୱରୂପକୁ ବୁଝାଇବା, ବିଶ୍ୱାସର ପରିସରକୁ ବ୍ୟାଖ୍ୟା କରିବା, ବିଶ୍ୱାସ ସହ ଜୀବନ ଦୃଷ୍ଟି କିପରି ରୂପରେଖ ନେଇଥାଏ ତାହାର ସୈଦ୍ଧାନ୍ତିକ ଭିତ୍ତିକୁ ଦର୍ଶନ ଅନୁଶୀଳନ କରିଥାଏ। ଦର୍ଶନର ବିଷୟବସ୍ତୁ ବର୍ଣ୍ଣନାତ୍ମକ ନୁହେଁ ବିଶ୍ଳେଷଣାତ୍ମକ। ଏହି ବିଶ୍ଳେଷଣ ପ୍ରାୟତଃ ଅମୂର୍ତ୍ତୀୟ (abstract) ସ୍ତରରେ ହୋଇଥାଏ।

କେତେକ ପ୍ରବନ୍ଧରେ ନୈତିକତାର ସଂଜ୍ଞା, ନୈତିକ ଜୀବନର ସ୍ୱରୂପ ଓ ନୈତିକ ଆଦର୍ଶର ମାନଦଣ୍ଡ ପ୍ରଶ୍ନମାନ ଉଠାଇ ସେ ସବୁର ବିଶ୍ଳେଷଣ କରିଛନ୍ତି। ନୈତିକତା, ମୂଲ୍ୟବୋଧ, ସାମାଜିକ ଶ୍ରେୟ କାହାକୁ କୁହନ୍ତି ? ଆମେ କେତେକ କାର୍ଯ୍ୟକୁ ନୈତିକ ଓ କେତେକ ବ୍ୟବହାରକୁ ଅନୈତିକ ବୋଲି କହିଲା ବେଳେ କେଉଁ ମାନଦଣ୍ଡ ଆଧାରରେ ଏହା ହୋଇଥାଏ ? ଭଲ-ମନ୍ଦର ସଂଜ୍ଞା କିପରି ନିର୍ଦ୍ଧାରିତ ହେବ ଓ ସେ କ୍ଷେତ୍ରରେ କ'ଣ ମାନଦଣ୍ଡ ରହିବ ? ଆମେ କାହିଁକି ଏକ ନ୍ୟାୟପୂର୍ଣ୍ଣ ଓ ନୀତି ଆଧାରିତ ଜୀବନଧାରାକୁ ସମାଜରେ ଗୁରୁତ୍ୱ ଦେବା ? କେତେକ କାର୍ଯ୍ୟକୁ

ସାମାଜିକ ସ୍ୱୀକୃତି ରହିବା ଓ କେତେକ କାର୍ଯ୍ୟକୁ ସାମାଜିକ ଜୀବନ ପ୍ରବାହରେ ନିଷେଧ କାହିଁକି କରାଯାଏ ? ଯାହା ଏକ କର୍ତ୍ତବ୍ୟ ବା ଯାହା ସମାଜସ୍ୱୀକୃତ ସେସବୁ କ'ଣ ସାର୍ବଜନୀନ ? ଆମର ରାଜନୀତି, ଅର୍ଥନୀତି, ସାଂସ୍କୃତିକ ପରମ୍ପରା ଇତ୍ୟାଦି ପ୍ରତ୍ୟେକ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ନୈତିକ ଉତ୍କର୍ଷକୁ କାହିଁକି ମୁଖ୍ୟ ସ୍ଥାନ ଦିଆଯାଏ ? ନ୍ୟାୟ ଓ ନୈତିକତା ସମାନ କି ?

ଏହି ସବୁ ପ୍ରସଙ୍ଗଗୁଡ଼ିକ ଯେତେ ସାଧାରଣ ଜଣାପଡ଼ିଲେ ବି ଏହାର ବିଶ୍ଳେଷଣ ବେଶ୍ ଜଟିଳ ମନେହୁଏ । ଡ଼. ପାଢ଼ୀ ଏହି ପ୍ରସଙ୍ଗଗୁଡ଼ିକର ଅବତାରଣା କରିଛନ୍ତି ଓ ସେସବୁର ବିଶ୍ଳେଷଣ କରିଛନ୍ତି । ଦର୍ଶନରେ ଏକ ମୌଳିକ ପ୍ରସଙ୍ଗର ଅବତାରଣା କରିବା ଗୁରୁତ୍ୱପୂର୍ଣ୍ଣ କାରଣ ସେହି ପ୍ରସଙ୍ଗଟିରୁ ନାନା ବୈଚାରିକ ସିଦ୍ଧାନ୍ତମାନଙ୍କର ଅବତାରଣା ହୋଇଥାଏ ।

ତେବେ ଯାହା ନୈତିକ ତାହା ଯଥାର୍ଥ ଏବଂ ମଙ୍ଗଳକର ତଥା ସାମାଜିକ ପୃଷ୍ଠଭୂମିରେ ତାହା ହିଁ ଶ୍ରେୟ । ପୁନଶ୍ଚ ଧର୍ମ ଓ ନୈତିକତାର ପରିସର ଭିନ୍ନ । ଧାର୍ମିକ ହେବା ଓ ନୀତିବାନ୍ ହେବା ପରସ୍ପର ଠାରୁ ପୃଥକ୍ । ଧାର୍ମିକ ମାନସିକତା ନୈତିକତା ପାଇଁ ଯେ ପ୍ରେରଣା ଦିଏ ଏହା କୁହାଯାଇପାରିବ ନାହିଁ ବା ପ୍ରତ୍ୟେକ ନୈତିକ କାର୍ଯ୍ୟ ପଶ୍ଚାତ୍‌ରେ ଯେ ଏକ ଧାର୍ମିକ ଉଦ୍ଦେଶ୍ୟ ଥାଏ ତାହା ମଧ୍ୟ ସତ୍ୟ ନୁହେଁ । ବସ୍ତୁତଃ ଧର୍ମ, ଈଶ୍ୱର, ନୈତିକତା ଭିତରେ ପ୍ରତ୍ୟୟଗତ ପାର୍ଥକ୍ୟ ଥିବା ସ୍ପଷ୍ଟ ମନେହୁଏ ।

'କର୍ମ, ଭାଗ୍ୟ ଓ ସ୍ୱତନ୍ତ୍ରତା' ପ୍ରବନ୍ଧରେ (Karma, Fate and Freedom) ଡ଼. ପାଢ଼ୀ କର୍ମ ସମ୍ପର୍କରେ କେତେକ ମୌଳିକ ପ୍ରଶ୍ନର ଅବତାରଣା କରିଛନ୍ତି । ପ୍ରତ୍ୟେକ କର୍ମର କ'ଣ ଫଳ ଅଛି ? କର୍ମର ଫଳ କର୍ତ୍ତାକୁ କିପରି ପ୍ରାପ୍ତ ହୁଏ ? ଜଣେ ବ୍ୟକ୍ତିର ବର୍ତ୍ତମାନର ସାମାଜିକ ସ୍ଥିତି କ'ଣ ତାର ପୂର୍ବ କର୍ମର ପରିଣତି ? ଜଣେ ବ୍ୟକ୍ତି ଯାହା କରେ, ସେ ପାଇଁ ସେ ଉତ୍ତରଦାୟୀ କି ନୁହେଁ ? ଯଦି କୁହାଯାଏ ଯେ ଜଣଙ୍କର ବର୍ତ୍ତମାନର ପରିସ୍ଥିତି ଓ ଜୀବନ ତାର ପୂର୍ବକର୍ମର ପରିଣତି ମାତ୍ର, ତେବେ ନୈତିକ ଦାୟିତ୍ୱ ଅପାଂକ୍ତେୟ ମନେହେବ ନାହିଁ କି ? କୌଣସି ବ୍ୟକ୍ତିକୁ ତାର କାର୍ଯ୍ୟ ପାଇଁ ଉତ୍ତରଦାୟୀ କରିବାର ଅର୍ଥ ହେଉଛି ପ୍ରଥମେ ବ୍ୟକ୍ତିର ସ୍ୱତନ୍ତ୍ରତାକୁ ସ୍ୱୀକାର କରିବା ।

ଜଣେ ଯେଉଁ କାର୍ଯ୍ୟ କରେ ତାହା ଯଦି କରିବାରେ ସେ ସ୍ୱାଧୀନ ନୁହେଁ ତେବେ ତାକୁ କିପରି ତାର କାର୍ଯ୍ୟ ପାଇଁ ଦାୟୀ କରାଯିବ ? କର୍ମଫଳ ଯାହା ଭାଗ୍ୟ କ'ଣ ତାହା କି ? ଏହି ସବୁ ପ୍ରସଙ୍ଗଗୁଡ଼ିକ ବେଶ୍ ଜଟିଳ ଓ ଦର୍ଶନ ପରିସରରେ ଏହାର ନାନା ଗମ୍ଭୀର ବ୍ୟାଖ୍ୟା ଦେଖିବାକୁ ମିଳେ। ଡ଼. ପାଢ଼ୀ ତାଙ୍କ ଆଲୋଚନାରେ ପୂର୍ବନିର୍ଦ୍ଦିଷ୍ଟବାଦ ଓ ଭାଗ୍ୟ ଭିତରେ ପାର୍ଥକ୍ୟ କରିଛନ୍ତି। ପ୍ରାକୃତିକ ଜଗତରେ କାର୍ଯ୍ୟ-କାରଣ ଶୃଙ୍ଖଳା ଓ ପ୍ରାକୃତିକ ନିୟମ ପୂର୍ବ ନିର୍ଦ୍ଦିଷ୍ଟ। ପ୍ରତ୍ୟେକଟି କାର୍ଯ୍ୟର କାରଣ ସୁନିର୍ଦ୍ଦିଷ୍ଟ। ତେବେ କାର୍ଯ୍ୟକାରଣ ଜନିତ ପୂର୍ବ ନିର୍ଦ୍ଦିଷ୍ଟବାଦ ସହ କର୍ମସିଦ୍ଧାନ୍ତର ମୌଳିକ ପାର୍ଥକ୍ୟ ରହିଛି। ସେହିପରି ପୂର୍ବନିର୍ଦ୍ଦିଷ୍ଟବାଦ ସହ ଭାଗ୍ୟବାଦର ମଧ୍ୟ ମୌଳିକ ପାର୍ଥକ୍ୟ ରହିଛି। ଭାଗ୍ୟବାଦ କ୍ଷେତ୍ରରେ କୌଣସି ଅଦୃଷ୍ଟ ଶକ୍ତିକୁ ସ୍ୱୀକାର କରାଯାଏ ଅଥଚ ପୂର୍ବନିର୍ଦ୍ଦିଷ୍ଟବାଦରେ କୌଣସି ଅଦୃଷ୍ଟ ଶକ୍ତି ବା ସତ୍ତାକୁ ନିଆ ନ ଯାଇ ପ୍ରାକୃତିକ ଶୃଙ୍ଖଳା, ଏକରୂପତାକୁ ଗ୍ରହଣ କରାଯାଏ।

କର୍ମସିଦ୍ଧାନ୍ତ ସହ ଭାଗ୍ୟ, ଅଦୃଷ୍ଟ ଶକ୍ତି, ପୂର୍ବନିର୍ଦ୍ଦିଷ୍ଟ ବା କାର୍ଯ୍ୟ-କାରଣ ସମ୍ପର୍କକୁ ସଂଶ୍ଲିଷ୍ଟ କରାଯାଇ ପାରିବ ନାହିଁ। କର୍ମଫଳ ସହ ଆତ୍ମା, ପୂର୍ବଜନ୍ମ, ଆତ୍ମାର ଅମରତ୍ୱ ପ୍ରସଙ୍ଗକୁ ସଂଶ୍ଲିଷ୍ଟ କଲେ ଏହାର ସୈଦ୍ଧାନ୍ତିକ ଭିତ୍ତି ରହସ୍ୟାତ୍ମକ ହେବ ଓ ଏହା କେବଳ ଏକ କାଳ୍ପନିକ ତତ୍ତ୍ୱର ରୂପ ନେବ। କର୍ମକୁ ଏସବୁରୁ ମୁକ୍ତକରି ସାମାଜିକ ଜୀବନ ପ୍ରବାହରେ ଏହାର ପ୍ରାସଙ୍ଗିକତାକୁ ସ୍ୱୀକାର କଲେ ଏହା ଅଧିକ ବୋଧଗମ୍ୟ ହେବ। ଏହା ସ୍ୱହିତ ବ୍ୟକ୍ତିର ସ୍ୱତନ୍ତ୍ରତା, ନୈତିକ ଉତ୍ତରଦାୟିତ୍ୱ, ସାମାଜିକ ଶ୍ରେୟ ସହ କର୍ମ ସଂଶ୍ଲିଷ୍ଟ ହେଲେ ଏହାର ସକାରାତ୍ମକ ତାତ୍ପର୍ଯ୍ୟ ରହିବ।

ଦାର୍ଶନିକମାନେ ସବୁ ସଭ୍ୟତାରେ ଓ ସବୁ ଯୁଗରେ କିପରି ନିଆରା ମଣିଷ ତାହାର କେତେକ ଦୃଷ୍ଟାନ୍ତ ଡ଼. ପାଢ଼ୀ ତାଙ୍କର କେତେକ ପ୍ରବନ୍ଧରେ ସୁନ୍ଦର ଭାବେ ବ୍ୟାଖ୍ୟା କରିଛନ୍ତି। ଗ୍ରୀକ୍ ଦାର୍ଶନିକ ଡ଼ାଇଓଜେନିସ୍ ଦିବାଲୋକରେ ଲଣ୍ଠନ ଜାଳି ରାସ୍ତା ଉପରେ ଯାଉଥିବା ଲୋକମାନଙ୍କ ମୁହଁକୁ ଖୋଜିଲା ଖୋଜିଲା ଆଖିରେ ଚାହିଁ ଯାଉଥିଲେ। ପ୍ରଶ୍ନ ହେଲେ ସେ କହୁଥିଲେ ଯେ ସେ ଭଲ ମଣିଷର ସନ୍ଧାନ କରୁଛନ୍ତି। ଜଣେ ସକ୍ରେଟିସ୍ ହାଟ ବଜାରରେ ସବୁଠି ଲୋକମାନଙ୍କୁ ଧର୍ମ କ'ଣ, ଈଶ୍ୱର କିଏ,

ସାମାଜିକ ନ୍ୟାୟର ତାତ୍ପର୍ଯ୍ୟ କ'ଣ ଇତ୍ୟାଦି ପ୍ରଶ୍ନ ପଚାରି ସମାଜରେ ଥିବା ଅନ୍ୟାୟ, ମତାନ୍ଧତା ଓ ବିଚାରହୀନତା ବିରୁଦ୍ଧରେ ସଚେତନ କରାଉଥିଲେ। ଦାର୍ଶନିକମାନେ ସାମାଜିକ ସ୍ଥିତାବସ୍ଥା ବା ଶତାବ୍ଦୀ ଶତାବ୍ଦୀ ଧରି ମାନି ଆସୁଥିବା ବିଚାରହୀନ ପରମ୍ପରା ବିରୁଦ୍ଧରେ ଚିନ୍ତାସ୍ତରରେ ପରିବର୍ତ୍ତନ ଆଣିବାକୁ ପ୍ରୟାସ କରିଛନ୍ତି। ବୈଜ୍ଞାନିକମାନେ ପ୍ରାକୃତିକ ଘଟଣାର ରହସ୍ୟକୁ ଜାଣିବାକୁ ଯେପରି କୌତୂହଳୀ ହୋଇଥାନ୍ତି, ଦାର୍ଶନିକମାନେ ସାମାଜିକ ଜଡ଼ତା ଓ ଅପସଂସ୍କୃତି ବିରୁଦ୍ଧରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବାକୁ ବୌଦ୍ଧିକ ସ୍ତରରେ ଆଲୋଡ଼ିତ ହୁଅନ୍ତି। ସେମାନଙ୍କର ସୃଜନଶୀଳ ପ୍ରତିଭାକୁ ସାଧାରଣ ମଣିଷମାନେ ପାଗଳାମି ଭାବିପାରନ୍ତି କିନ୍ତୁ ସେହି ପାଗଳାମି ପଶ୍ଚାତ୍‌ରେ ଥାଏ ସତ୍ୟ ଓ ନ୍ୟାୟର ସ୍ୱରୂପକୁ ଜାଣିବା ପାଇଁ ମୁକ୍ତମନର ଅନୁସନ୍ଧିତ୍ସା। 'ସତ୍ୟ ଓ ସୁନ୍ଦର', 'ଏ ପାଗଳାମି ବରଂ ଭଲ', 'ବସ୍ତୁ ଓ ଚେତନା' ଇତ୍ୟାଦି ପ୍ରବନ୍ଧମାନଙ୍କରେ ଡ଼. ପାଢ଼ୀ ଦର୍ଶନ ବିଷୟକୁ ବିଭିନ୍ନ ଆଖ୍ୟାୟିକା ଦେଇ ବ୍ୟାଖ୍ୟା କରିଛନ୍ତି।

ଦାର୍ଶନିକମାନଙ୍କର ବୈଶିଷ୍ଟ୍ୟ ହେଉଛି ଯେ ସେମାନଙ୍କର ପ୍ରଜ୍ଞା, ବିଚାରଶୀଳତା ଓ ଅନ୍ତର୍ଦୃଷ୍ଟିଦ୍ୱାରା ସେମାନେ ଜୀବନର ଉତ୍କର୍ଷ ବିଷୟରେ ଗମ୍ଭୀର ଚିନ୍ତା ପ୍ରକଟ କରିଥାନ୍ତି। ତେବେ ସ୍ଥଳବିଶେଷରେ ଯେଉଁ ଦର୍ଶନ ଜୀବନକୁ ଅଳୀକ ସମସ୍ତ ସମ୍ପର୍କକୁ ତୁଚ୍ଛ ଓ ସମସ୍ତ କୀର୍ତ୍ତିକରଣିକୁ ମାୟା ବୋଲି ନେଇଥାଏ ସେହି ଦାର୍ଶନିକ ବିଚାରର ନକାରାତ୍ମକ ପ୍ରଭାବ ସାମାଜ ଉପରେ ରହିପାରେ। ଦାର୍ଶନିକ ପରମ୍ପରା ଏହିପରି କେତେକ ବିଚାରଦ୍ୱାରା ଜୀବନର ପାରଲୌକିକ ସ୍ଥିତିକୁ ମହତ୍ତ୍ୱ ପ୍ରଦାନ କରିଥାଏ। କିନ୍ତୁ ଯେଉଁ ଦର୍ଶନ ମନୁଷ୍ୟକୁ ସବୁଠାରୁ ଅଧିକ ପ୍ରାଧାନ୍ୟ ଦିଏ ଓ ମନୁଷ୍ୟର ସକଳ ସମସ୍ୟାକୁ ଅନୁଶୀଳନ କରି ଜୀବନର ଗୁଣାତ୍ମକ ମାନକୁ ନିରନ୍ତର ଉନ୍ନତ କରିବାକୁ ପ୍ରୟାସ କରେ ତାହା ହେଉଛି ମାନବବାଦ। ମାନବବାଦର ମୂଳମନ୍ତ୍ର ହେଉଛି ମାନବସମ୍ବଳର ବିକାଶ ଓ ସମୃଦ୍ଧି ତଥା ମାନବବ୍ୟକ୍ତିତ୍ୱର ଉତ୍କର୍ଷ ସାଧନ। ଏହା ସହ ମାନବବାଦ ବିଶ୍ୱାସ କରେ ଯେ ମଣିଷଦ୍ୱାରା ସବୁ ସମସ୍ୟାର ସମାଧାନ ହୋଇପାରିବ ଓ ସାମାଜିକ କଲ୍ୟାଣ ସାଧିତ ହେବ। ମାନବ କଲ୍ୟାଣର ସାଧନ କ୍ଷେତ୍ର ହେଉଛି ଏହି ଜଗତ କେଉଁ ପରଜଗତ ନୁହେଁ। ଏକ ନ୍ୟାୟପୂର୍ଣ୍ଣ, ଅହିଂସ ଓ ସର୍ବଜନହିତୈଷୀ ସମାଜ ଗଠନ ହିଁ ମାନବବାଦର ମୂଳ ଲକ୍ଷ୍ୟ। ପାଶ୍ଚାତ୍ୟ ନବ ଜାଗରଣ ଯୁଗରେ ଏହି ଯେଉଁ ବିଚାର ଚିନ୍ତା ରାଜ୍ୟରେ ବିପ୍ଳବ ସୃଷ୍ଟିକଲା ଓ ଯାହା ପରେ କାର୍ଲମାର୍କ୍ସଙ୍କର କମ୍ୟୁନିଷ୍ଟ

ମାନିଫେଷ୍ଟୋରେ ପ୍ରତିଫଳିତ ହେଲା ତାହା ଏକ ନୂଆ ଦୁନିଆର ରୂପରେଖ ପାଇଁ ବହୁ ପ୍ରେରଣା ସୃଷ୍ଟି କରିପାରିଛି। ମାନବବାଦ ଅତୀନ୍ଦ୍ରିୟତା, ଅତିଜାଗତିକତା ଓ ଚମତ୍କାରିତାକୁ ଅସ୍ୱୀକାର କରି ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକତାବୋଧକୁ ପ୍ରାଧାନ୍ୟ ଦେଇଥାଏ। ଡ଼. ପାଢ଼ୀ ମାନବବାଦ ପ୍ରବନ୍ଧରେ ମାନବବାଦର ନାନା ଦିଗନ୍ତକୁ ସ୍ପର୍ଶ କରିବା ସହ ଏହାର ବିଭିନ୍ନ ଶ୍ରେଣୀ ବିଭାଗ କରି ସେ ସବୁର ତାତ୍ପର୍ଯ୍ୟକୁ ବ୍ୟାଖ୍ୟା କରିଛନ୍ତି। "ସ୍ଥିତିବାଦ ସମ୍ପର୍କରେ" ପ୍ରବନ୍ଧଟିରେ ଡ଼. ପାଢ଼ୀ ଅସ୍ତିତ୍ୱବାଦ ଦୃଷ୍ଟିଭଙ୍ଗୀରୁ ଜୀବନର ସଂଘର୍ଷ, ସଂଘାତକୁ ଦେଖାଇବା ସହ ଜୀବନର ନୂତନ ଅର୍ଥ ଓ ଲକ୍ଷ୍ୟକୁ ବ୍ୟକ୍ତ କରିଛନ୍ତି।

ମୋଟ ଉପରେ କହିଲେ ଡ଼. ପାଢ଼ୀ ଦର୍ଶନର ବିଭିନ୍ନ ପ୍ରସଙ୍ଗ ଉପରେ ତାଙ୍କର ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ଦେଇ ନିଜ ବୌଦ୍ଧିକ ସ୍ୱଷ୍ଟତାର ପରିଚୟ ଦେଇଛନ୍ତି। ଦର୍ଶନ ଆଲୋଚନା ବେଳେ ମତ ପାର୍ଥକ୍ୟ ନିଃସନ୍ଦେହ, ତେବେ ଜଣଙ୍କର ବିଚାରର ସ୍ୱଷ୍ଟତା, ଯୁକ୍ତିଶୀଳତା ହିଁ ମୁଖ୍ୟ କଥା। ଡ଼. ପାଢ଼ୀଙ୍କର ଭାବନାରୁ ତାଙ୍କ ସୃଜନଶୀଳତାର ସ୍ପନ୍ଦନକୁ ଅନୁଭବ କରିହୁଏ।



## ଧନେଶ୍ୱର ସାହୁ

ଲେଖକ ଅଧ୍ୟାପକ ଧନେଶ୍ୱର ସାହୁଙ୍କର ଜନ୍ମ ୧୯୪୯ରେ ଢେଙ୍କାନାଳ ଜିଲ୍ଲାର ଭୁବନରେ । ଦର୍ଶନ ଅଧ୍ୟାପକ ଭାବେ ୧୯୭୪ରୁ ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପନା କରି ୨୦୦୭ରେ ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟରୁ ଅବସର ଗ୍ରହଣ କରିଛନ୍ତି ।

ସମକାଳରେ ଓଡ଼ିଆ ପ୍ରବଂଧ ସାହିତ୍ୟ କ୍ଷେତ୍ରରେ ଅଧ୍ୟାପକ ସାହୁଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ପ୍ରବନ୍ଧ କ୍ଷେତ୍ରରେ ୨୦୧୦ର ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ୨୦୧୪ରେ ପେରିୟାର ଇଣ୍ଟରନେସନାଲ ଦ୍ୱାରା ପ୍ରଦତ୍ତ ଆୱାର୍ଡ ଓ ୨୦୧୭ରେ ଓଡ଼ିଶା ସରକାରଙ୍କ ଦ୍ୱାରା ସାହିତ୍ୟ ବିଭାଗରେ ବୟୋଜ୍ୟେଷ୍ଠ ସମ୍ମାନ ପାଇଛନ୍ତି ।

ଇଂରାଜୀ ପୁସ୍ତକ ବ୍ୟତୀତ ଓଡିଆରେ ଚାରୋଟି ପ୍ରବନ୍ଧ ସଂକଳନ, ଜୀବନ ଜିଜ୍ଞାସା, ଜୀବନ ଅନ୍ୱେଷା ଓ ପାଞ୍ଚଟି ଗବେଷଣାତ୍ମକ କୃତି ରହିଛି । ଏତଦ୍‌ବ୍ୟତୀତ ଗୋରା, ପେରିୟାର ଓ ଆମ୍ବେଦକରଙ୍କ କୃତିମାନଙ୍କୁ ଓଡ଼ିଆରେ ଅନୁବାଦ କରିଛନ୍ତି । ଜଣେ ପ୍ରାବନ୍ଧିକ, ସ୍ତମ୍ଭକାର, ସଂସ୍କାରକ ଓ ହେତୁବାଦୀ ଚିନ୍ତକ ଭାବରେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ ।






KITAB BHAVAN
Bhubaneswar
Email : contact@gyanajuga.com,
website : www.gyanajuga.com